# ଅମାଘ ଚନ୍ଦ୍ରିକା

ଦ୍ୱିତୀୟ ଭାଗ

ଫ୍ରେଣ୍ଡସ୍ ପବ୍ଲିଶର୍ସ * କଟକ

ଶ୍ରୀଯୁକ୍ତ ଜ୍ଞାନୀନ୍ଦ୍ର ବର୍ମାଙ୍କ
ଉପନ୍ୟାସର ଆଦ୍ୟ ସମାହାର

# ଜ୍ଞାନୀନ୍ଦ୍ର ଗ୍ରନ୍ଥାବଳୀ


ପ୍ରକାଶକ
**ସହଦେବ ପ୍ରଧାନ**
**ଫ୍ରେଣ୍ଡସ୍ ପବ୍ଲିଶର୍ସ,**
ବିନୋଦ ବିହାରୀ, କଟକ-୨

ପ୍ରଥମ ପ୍ରକାଶ
ଜାନୁଆରୀ, ୧୯୭୮

ମୂଲ୍ୟ କୋଡ଼ିଏ ଟଙ୍କା ମାତ୍ର

ମୁଦ୍ରାକର :
**ନବଜୀବନ ପ୍ରେସ,**
କଟକ-୨

ଅଗ୍ରଜପ୍ରତିମ
ଡକ୍‌ଟର ମାୟାଧର ମାନସିଂହଙ୍କୁ

# ମୁଖବନ୍ଧ

ଆଧୁନିକ କାଳରେ ହିଁ ଓଡ଼ିଆ ଉପନ୍ୟାସ ସାହି-
ତ୍ୟର ଜନ୍ମ । କେବଳ ଓଡ଼ିଶାରେ ନୁହେଁ
ଭାରତର ବିଭିନ୍ନପ୍ରାନ୍ତୀୟ ସାହିତ୍ୟର ଉପନ୍ୟାସ
ସୃଷ୍ଟି ମଧ୍ୟ ପ୍ରାଚୀନତା ଲାଭ କରି ନାହିଁ । ମୋଟ
ଉପରେ ଊନବିଂଶ ଶତାବ୍ଦୀର ଶେଷଭାଗ
ଭାରତର ବିଭିନ୍ନ ପ୍ରାନ୍ତୀୟ ଉପନ୍ୟାସ ସାହିତ୍ୟର
ଜନ୍ମକାଳ । ତାହା ପୂର୍ବରୁ ସବୁଠାରେ ପ୍ରଚଳିତ
ଥିଲା କାହାଣୀ, ମାତ୍ର ସେ ସବୁକୁ ଉପନ୍ୟାସର
ସ୍ଥାନ ଦିଆ ଯାଇ ପାରିବ ନାହିଁ । ତଥାପି,
ପ୍ରାନ୍ତୀୟ ଭାଷାର କାହାଣୀ ଗୁଡ଼ିକ ଆଜିର
ଉପନ୍ୟାସ ରଚନାର ସମୀକ୍ଷଣରେ ସାହିତ୍ୟିକ
ଗୁରୁତ୍ୱ ଲାଭ କରି ନ ପାରିଲେ ମଧ୍ୟ କାହାଣୀ
ଯେ ଉପନ୍ୟାସର ଜନନୀ ତାହା ସ୍ୱୀକାର କରି-
ବାକୁ ହୁଏ । ଏହି କାହାଣୀଗୁଡ଼ିକ ଗୋଟିଏ
ଗୋଟିଏ ମାହାର ବିନ୍ଦୁ ସଦୃଶ ଏବଂ ରୋମାଣ୍ଟିକ୍
କଥା ବସ୍ତୁର ସୃଷ୍ଟି-ସୁଷମାରେ ଉଚ୍ଛଳ ।
ଭାରତର ଅନ୍ୟାନ୍ୟ ପ୍ରାନ୍ତର କାହାଣୀ ଭଳି
ଉତ୍କଳ ପ୍ରାନ୍ତର କାହାଣୀ-ସଂପଦ ମଧ୍ୟ ପ୍ରାଚୀନ
ଓ ମନୋଜ୍ଞ । ତାହାର ରଚନାକାଳର ନିରୂ-
ପଣ ହୁଏତ କରିଯାଇ ନାହିଁ; ମାତ୍ର କାହାଣୀ-
ନିଚୟର ପାରିପାର୍ଶ୍ୱିକ ଚିତ୍ର ଯେ ତାହାର
ଐତିହାସିକ ପୃଷ୍ଠଭୂମି, ତାହା ସ୍ୱୀକାର କରିବାକୁ
ପଡ଼ିବ । ତଥାପି, କାହାଣୀର ଖଣ୍ଡଚିତ୍ରଗୁଡ଼ିକ
ଏପରି ଶାଶ୍ୱତ ଯେ ସେଠି ବର୍ଷ ଓ ଶତାବ୍ଦୀର

ବିଭଜନରେ ତାହାକୁ ସୀମିତ କରିବାର ଆବଶ୍ୟକତା ଅନାବଶ୍ୟକ ହୋଇ ପଡ଼େ । କିନ୍ତୁ ଉପନ୍ୟାସ-ସାହିତ୍ୟର ଆତ୍ମବିକାଶ ଫଳରେ ଘଟନା ଅପେକ୍ଷା ସମସ୍ୟା ଏବଂ ସମସ୍ୟାର ସଂଘାତରେ ଚରିତ୍ରଗୁଡ଼ିକ ଏପରି ଜଟିଳ ଓ ବିସ୍ତୃତ ହୋଇ ଉଠିଲା ଯେ ତାହାର ଚିତ୍ରଣ କାହାଣୀର ପରିସରଠାରୁ ହୋଇ ପଡ଼ିଲା ଅଧିକ ବ୍ୟାପକ ଓ ଗୁରୁତ୍ୱପୂର୍ଣ୍ଣ । ସେହି ସମସ୍ୟା-ସଂକ୍ଷୁବ୍ଧ କାଳର ବ୍ୟାପ୍ତି ଭିତରେ ଗୋଟିଏ ଗୋଟିଏ ମୁହୂର୍ତ୍ତ ମଧ୍ୟ ଅତି ମୂଲ୍ୟବାନ ହୋଇ ଛିଡ଼ା ହେଲା । ସମସ୍ୟା ଇତିହାସକୁ ଅବଲମ୍ବନ କରିବା ଫଳରେ ତାହା ବର୍ଷ, ମାସ ଓ ଦିବସରେ ବିଭଗ୍ନ ହୋଇ ଯେଉଁ ଖଣ୍ଡକାଳ ପ୍ରସ୍ତୁତ କଲା ଏବଂ ତାହାର ପରିବେଶ ମଧ୍ୟରେ କଥାବସ୍ତୁର ଯେଉଁ ବିବର୍ତ୍ତନ ଘଟିଲା ତାହା ଆଜି ହୋଇଛି ଉପନ୍ୟାସର ସମଧିକ ଗୁରୁତ୍ୱ ପ୍ରତିପାଦକ ।

ଫକୀରମୋହନ ହେଉଛନ୍ତି ଓଡ଼ିଆ ଉପନ୍ୟାସର ପ୍ରାଣପ୍ରତିଷ୍ଠାତା । ନିଜର ଶ୍ରେଷ୍ଠ ଉପନ୍ୟାସ "ଛମାଣ ଆଠଗୁଣ୍ଠ" ସେ ୧୮୯୭ ମସିହାରେ ଲେଖିଥିଲେ । କିନ୍ତୁ ଫକୀରମୋହନ ଉପନ୍ୟାସ ଲେଖିବାର ପ୍ରାୟ ନଅବର୍ଷ ପୂର୍ବରୁ ଉମେଶଚନ୍ଦ୍ର ସରକାର ଓଡ଼ିଆ ଭାଷାରେ ଉପନ୍ୟାସ ଲେଖାର ଭିତ୍ତି ସ୍ଥାପନ କରିଥିଲେ । ତାଙ୍କର "ପଦ୍ମମାଳୀ" ଉପନ୍ୟାସ ୧୮୮୮ରେ ରଚିତ ହୋଇଥିଲା । ଉମେଶଚନ୍ଦ୍ରଙ୍କ ପରେ ନାଟ୍ୟକାର ରାମଶଙ୍କର ରାୟ ଓଡ଼ିଆ ଉପନ୍ୟାସ ରଚନାରେ ଦ୍ୱିତୀୟ ସ୍ଥାନର ଅଧିକାରୀ ବୋଲି ବିବେଚନା କରାଯାଉ ଥିଲେ ମଧ୍ୟ ୧୮୭୮ରୁ ୧୮୮୦ ମସିହାରେ ଲିଖିତ ତାଙ୍କର ଅସମ୍ପୂର୍ଣ୍ଣ ଉପନ୍ୟାସ

"ସୌଦାମିନୀ" ପ୍ରତି ଦୃଷ୍ଟି ଦେଲେ ରାମଶଙ୍କର ସମସ୍ତଙ୍କ ଅଗ୍ରବର୍ତ୍ତୀ ବୋଲି ସ୍ୱୀକୃତି ଲାଭ କରିବେ । ୧୮୯୧ରେ ରାମଶଙ୍କର "ବିଳାସିନୀ" ଉପନ୍ୟାସ ଲେଖିଥିଲେ । ସ୍ଥୂଳତଃ ଏସବୁ ସାମାଜିକ ଭିତ୍ତି ସମ୍ବଳିତ ଉପନ୍ୟାସ । ଏହାର ସାତ ବର୍ଷ ପରେ ଗୋପାଳବଲ୍ଲଭ ଦାସ "ଭୀମା ଭୂଇଁଆ" ଉପନ୍ୟାସ ଲେଖି ସର୍ବପ୍ରଥମେ ଓଡ଼ିଆ ସାହିତ୍ୟକୁ ଆଦିବାସୀ-ଜୀବନ-ଚିତ୍ର ଉପହାର ଦେଲେ । "ଭୀମା ଭୂଇଁଆ" ଉପନ୍ୟାସ ଫକୀରମୋହନ "ଛମାଣ ଆଠ ଗୁଣ୍ଠ" ଲେଖିବାର ଏକ ବର୍ଷ ପରେ ଲେଖା ଯାଇଥିଲା । ୧୯୦୧ରେ ଫକୀରମୋହନ "ଲଛମା", ତତ୍ପରେ "ପ୍ରାୟଶ୍ଚିତ୍ତ" ଏବଂ ୧୯୧୪ରେ "ମାମୁଁ" ଉପନ୍ୟାସ ଲେଖିଥିଲେ । କବି ନନ୍ଦକିଶୋର ହେଉଛନ୍ତି ଓଡ଼ିଆ ଉପନ୍ୟାସର ପଞ୍ଚମ ସ୍ରଷ୍ଟା । "ମାମୁଁ" ରଚନାର ସମକାଳ ସେହି ୧୯୧୪ରେ ନନ୍ଦକିଶୋର "କନକଲତା" ଉପନ୍ୟାସର ଲେଖା ଆରମ୍ଭ କରିଥିଲେ ମଧ୍ୟ ୧୯୨୭ରେ ତାହା ସମାପ୍ତ କରିଥିଲେ । "କନକଲତା" ପରେ ଓଡ଼ିଆ ଉପନ୍ୟାସ ରଚନାର ଗୋଟିଏ ଯୁଗ ସମ୍ପୂର୍ଣ୍ଣ ହୋଇଗଲା । ଓଡ଼ିଆ ଉପନ୍ୟାସ ରଚନାର ଏହା ଆଦିଯୁଗ ହେଲେ ମଧ୍ୟ ତାହାର ଦାନ ଅତି ମହାନ । ଏହି ଆଦିକାଳ ମଧ୍ୟରେ ରଚିତ ନଅଖଣ୍ଡି ଉପନ୍ୟାସ ମଧ୍ୟରୁ କେତେକ ସ୍ୱକୀୟ ବିକାଶରେ ଭାସ୍ୱର ।

ସାହିତ୍ୟରେ ଗଦ୍ୟର ପ୍ରଭାବ ବଢ଼ି ଚାଲିବା ଫଳରେ ଆଜି ଉପନ୍ୟାସ ରଚନାର ପରିସର ବୃଦ୍ଧି ପାଇବାରେ ଲାଗିଛି । ସତ୍ୟବାଦୀ ଓ ସବୁଜ ଗୋଷ୍ଠୀର ଲେଖକଙ୍କ ପରେ ଓଡ଼ିଆ ଉପନ୍ୟାସର ସୃଜନଧାରା କ୍ରମେ ପ୍ରବହମାନତା ଲାଭ କରିଛି । ଯୁଗର ପରିବର୍ତ୍ତନ ଫଳରେ ଆଜି ଜାତି ଓ

ଦେଶ ଆଗରେ ଯେଉଁ ସବୁ ସମସ୍ୟା ଦେଖା ଦେଇଛି ଏବଂ ସେଥିଯୋଗୁ ଦୃଷ୍ଟିଭଙ୍ଗୀର ପରିବର୍ତ୍ତନଦ୍ୱାରା ଯେଉଁ ମାନସିକ ଦ୍ୱନ୍ଦ୍ୱ ଓ ଜିଜ୍ଞାସାର ସୃଷ୍ଟି ଘଟିଛି ତାହାର ପରିବେଷଣରେ ଆଜିର ସାହିତ୍ୟ ଋଦ୍ଧିମନ୍ତ । ଜୀବନର ଜଞ୍ଜାଳ ବୃଦ୍ଧି ଏବଂ ସୁଖ ସୁବିଧାର ସଙ୍କୋଚନ ଏବଂ କ୍ଷେତ୍ର ବିଶେଷରେ ତାହାର ବ୍ୟାପ୍ତି ଘଟିବା ଫଳରେ ଆଜିର ମଣିଷ ମନରେ ଯେଉଁ ଭଳି ଆଲୋଡ଼ନ ଘଟିଛି ତାହାର ଅନୁଶୀଳନ ପାଇଁ ଉପନ୍ୟାସହିଁ ହୋଇ ଉଠିଛି ପ୍ରକୃଷ୍ଟ ଆଧାର । ପୁଣି ସମସ୍ୟା ସାଙ୍ଗକୁ ଆସିଛି ନାନା ମତବାଦ ଓ ମନସ୍ତାତ୍ତ୍ୱିକ ଅବବୋଧ । କୃଷି-ସଭ୍ୟତାରେ ଧକ୍କା ଦେଇଛି ଶିଳ୍ପର ଜାଗୃତି ତଥା ବିପ୍ଳବ । ପୁରାତନ ଆଦର୍ଶ, ନୀତି ଓ ମର୍ଯ୍ୟାଦା ଭାଙ୍ଗି ପଡ଼ି ଜାଗି ଉଠିଛି ନୂତନର ଚଞ୍ଚଳତା, ବିଭ୍ରାନ୍ତି ଏବଂ ତତ୍ତ୍ୱ ପ୍ରଭାବିତ ନୂତନ ଦିଗ୍‌ଦର୍ଶନ । ଦ୍ୱିତୀୟ ମହାଯୁଦ୍ଧ କାଳ ଅତିକ୍ରମ କରି ସ୍ୱାଧୀନତା ଲାଭର ପରବର୍ତ୍ତୀ କାଳରେ ଆମେ ଠିଆ ହୋଇଛୁ ସାମନ୍ତବାଦର ବିଲୋପ ତଥା ମଧ୍ୟସ୍ୱତ୍ୱା-ଧିକାରର ବିଲୀୟମାନତାର ଚିତାଭସ୍ମ ଉପରେ । ଆମ ନିଜ କଣ୍ଠରେ ମଧ୍ୟ ଯୁଗପତ୍ ଜାଗି ଉଠିଛି ମଧ୍ୟବିତ୍ତର କ୍ରନ୍ଦନ ଏବଂ ଅଧଃ-ପତିତର ପ୍ରତୀକ ସମ୍ବେଦନା । ହାତରେ ପୁଣି ସମାଜବାଦର ଜୟଧ୍ୱଜା ଏବଂ ପଥରେ ଧନତା-ନ୍ତ୍ରିକର ଶୋଭାଯାତ୍ରା । ତେଣେ ଦୂରରେ ଚାଲିଛି ଗ୍ରହାନ୍ତର ଅଭିଯାନ ଓ ବିଜ୍ଞାନର ଜୟଯାତ୍ରା । ମଣିଷ ମାଟିରୁ ଉଠି ଆକାଶର ବକ୍ଷ ଚିରିବା ବେଳେ ଆକାଶର ଆକ୍ରୋଶ ମାଟିର ବକ୍ଷରେ ଖେଳାଇ ଦେଉଛି ବନ୍ୟା ଓ ମରୁଡ଼ିର ବିଭୀଷିକା । ତାହାର ଶତ ନିଷ୍ପେଷଣରେ ମଧ୍ୟ ଦେହ ଭିତରେ ସହିଷ୍ଣୁ ରହିଛି ଅଦେହର ଆଦିମ ତାଡ଼ନା ଏବଂ ସର୍ବୋପରି ଜାଗୃତ ହୋଇଛି

ବ୍ୟକ୍ତିଗତ ମନୁଷ୍ୟର ବିକାଶଶୀଳ ଅଭି-ବ୍ୟଞ୍ଜନା । ସେ ମଣିଷ ପୁଣି ଆଜ ନୁହେଁ ନିର୍ବାଣ ବାସନାରେ ନିଗୃହୀତ ; ପରନ୍ତୁ, ମହାବୋଧିର ପଥରେ ପ୍ରବର୍ଜିତ ଏବଂ ଉତ୍ତିଷ୍ଠିତ । ଏହି ସମସ୍ତ ବିଭବକୁ ଆଧେୟ ଓ ଆଙ୍ଗିକ କରି ଆଜର ଉପନ୍ୟାସ ଗତି, ପ୍ରଗତି ଓ କୁଟିଳ ଗତି ମଧ୍ୟରେ କକ୍ଷ ରଚନା କରି ଚାଲିଛି ମାନବତାର ଉଜ୍ଜୀବନ ପଥରେ ।

ଯୁଗ-ସନ୍ଧିର ଏହି ସମସ୍ୟା-ସଂକ୍ଷୁବ୍ଧ ଓ ଜୀବନ — ବିଚିତ୍ର ପରିପ୍ରେକ୍ଷୀରେ ମୋ ନିଜର ଉପନ୍ୟାସ ରଚନା କଭଲ ସାର୍ଥକତା ଆହରଣ କରିଛି ତାହାର ବିଚାରକ ସେହି କାଳ ଏବଂ ନିରାସକ୍ତ ରସ-ବିଦଗ୍ଧ ପାଠକଗୋଷ୍ଠୀ । ଦ୍ୱିତୀୟ ମହାଯୁଦ୍ଧର ପୂର୍ବ ଓ ପରବର୍ତ୍ତୀ କାଳର ପୃଷ୍ଠ-ଭୂମିରେ ମୋର ଲେଖନୀ କରିଛି ପରିକ୍ରମା । ମୁଁ କବିତା ଓ ଗଳ୍ପ-ଉପନ୍ୟାସ ଲେଖିବା ପ୍ରାୟ ଏକ ସଙ୍ଗରେ ଆରମ୍ଭ କରିଥିଲି । ଉଭୟ ଲେଖାରେ ମୁଁ ଏବେ ମଧ୍ୟ ପୂର୍ଣ୍ଣଚ୍ଛେଦ ଟାଣି ପାରି ନାହିଁ । ଅବଶ୍ୟ ପ୍ରକୃତିର ନିଷ୍ପେଷଣ କ୍ଷେତ୍ର ଓ ହୀନ ଚକ୍ରାନ୍ତର କ୍ରୀଡ଼ା ଭୂମି ଏହି ଓଡ଼ିଶାର ମାଟିରେ ପଚିଶ ବର୍ଷରୁ ଅଧିକ ପଦଚାରଣ ଶେଷ କରି ବର୍ତ୍ତମାନ ଛିଡ଼ା ହୋଇଛି ଆସି ପ୍ରାନ୍ତ ପ୍ରାସାଦର ପାଖରେ । ତାହା ପ୍ରଲମ୍ବ କିମ୍ବା ହ୍ରସ୍ୱ ହେବ ତାହା କେବଳ ଜାଣେ ସେହି ମହାକାଳ ।

ମୋ ଗ୍ରନ୍ଥାବଳୀର ପ୍ରଥମ ଭାଗ ପ୍ରକାଶିତ ହୋଇଥିଲା ୧୯୭୪ ମସିହାରେ । ପ୍ରକାଶକ 'ଫ୍ରେଣ୍ଡସ୍ ପବ୍ଲିଶର୍ସ'ଙ୍କ ସହ ପ୍ରତିବର୍ଷ ଗ୍ରନ୍ଥାବଳୀର ଗୋଟିଏ ଗୋଟିଏ ଭାଗ ପ୍ରକାଶ କରିବା ନିମିତ୍ତ ଏକ ସପ୍ତବାର୍ଷିକ ପ୍ରକଳ୍ପ କରାଯାଇଥିଲେ ମଧ୍ୟ ଦ୍ୱିତୀୟ ଭାଗର ପ୍ରକାଶ ପାଇଁ ତିନି ବର୍ଷରୁ ଊର୍ଦ୍ଧ୍ୱ ସମୟ ଗତ ହୋଇଗଲା । ତଥାପି ୧୯[illegible]ରେ

ଏହି ଦ୍ୱିତୀୟ ଭାଗଟିକୁ ଆଲୋକର ସ୍ପର୍ଶ ଦେଇ-ଥିବାରୁ ମୁଁ ପ୍ରକାଶକଙ୍କୁ ଧନ୍ୟବାଦ ଦେଉଛି । ଏହି ଦ୍ୱିତୀୟ ଭାଗରେ ସନ୍ନିବେଶିତ ଉପନ୍ୟାସର ରଚନାକାଳ ପ୍ରତ୍ୟେକ ଗ୍ରନ୍ଥର ଶେଷ ପ୍ରାନ୍ତରେ ଦିଆଯାଇଛି । ଏ ଉପନ୍ୟାସଗୁଡ଼ିକ ଭିତରୁ କେତୋଟିର ପ୍ରକାଶ ତୃତୀୟ ସଂସ୍କରଣ ଯାଏ ଯାଇଛି । ମାତ୍ର ଯେଉଁଟି ମୋ ବିଚାରରେ ଏ ସଂକଳନରେ ସର୍ବୋତ୍କୃଷ୍ଟ ସେହି "ଭୂମିକା" ଉପନ୍ୟାସ ବହୁ କାଳରୁ ପ୍ରଥମ ସଂସ୍କରଣରେହିଁ ଆବଦ୍ଧ ପଡ଼ିଯାଇଥିଲା । ସେ ଦଶା ତାହାର ପ୍ରକାଶକଙ୍କ ବ୍ୟାବସାୟିକ ଅସୁବିଧା ସୃଷ୍ଟି ହେତୁ ଘଟିଗଲା । ଯାହାହେଉ, ଗ୍ରନ୍ଥାବଳୀର ଏହି ଦ୍ୱିତୀୟ ଭାଗରେ ଉପନ୍ୟାସଟିର ସନ୍ନିବେଶ ଦୀର୍ଘ ଦିନର ଏକ ପ୍ରତୀକ୍ଷିତ ଆକାଙ୍କ୍ଷା ପୂର୍ତ୍ତି କରିଥିବାରୁ ମୋ ଲେଖାର ପାଠକମାନଙ୍କ ସହ ମୁଁ ନିଜେ ମଧ୍ୟ ଆନନ୍ଦିତ ହୋଇଛି । ଏହି ଦ୍ୱିତୀୟଭାଗଟି ମୋ ଉପନ୍ୟାସ-ସଂକଳନର ପ୍ରଥମ ଖଣ୍ଡ ; ଉପନ୍ୟାସର ଅନ୍ୟ ସଂକଳନ ଆଉ ହୁଏତ ତିନୋଟି ଖଣ୍ଡରେ ଆଧାରିତ ହେବ ।···ଗ୍ରନ୍ଥାବଳୀର ପ୍ରଥମ ଭାଗ ପ୍ରତି ରସ-ଲିପ୍ସୁ ପାଠକଗୋଷ୍ଠୀ ଯେଉଁ ପରି ଶ୍ରଦ୍ଧାଶୀଳ ହୋଇଥିଲେ ଏହି ଦ୍ୱିତୀୟ ଭାଗ ପ୍ରତି ସେମାନେ ତାହା ଅବ୍ୟାହତ ରଖିବେ ବୋଲି ମୁଁ ଆଶା କରୁଛି ।

ଜ୍ଞାନୀନ୍ଦ୍ର ବର୍ମା

୧।୧।୧୯୭୮

# ଆମ ସାହିତ୍ୟିକ

'ବୋଲେ ହୁଁ ଟି'ର ସ୍ରଷ୍ଟା ଶ୍ରୀ ଜ୍ଞାନୀନ୍ଦ୍ର ବର୍ମା ବାସ୍ତବରେ ଜଣେ ଜ୍ଞାନୀନ୍ଦ୍ର । ସାହିତ୍ୟ କ୍ଷେତ୍ରରେ ତାଙ୍କର ପ୍ରତିଭା ବହୁମୁଖୀ । ସେ କାବ୍ୟ, କବିତା, ଉପନ୍ୟାସ, ନାଟକ ବହୁତ ଲେଖିଛନ୍ତି, ତାଙ୍କ ଲେଖନୀର ଧାରା ଏବେ ବି ଅବ୍ୟାହତ ।

ବୟସରେ ପ୍ରୌଢ଼ । ଖର୍ବକାୟ । ମୁଖମଣ୍ଡଳରେ ଅନ୍ତର୍ନିହିତ ଶକ୍ତିର ବିପୁଳ ଆଭା ପ୍ରକଟିତ । ସାମ୍ବାଦିକତାକୁ ଯଦି ସାହିତ୍ୟର ଅଙ୍ଗ ଭାବରେ ଧରି ନିଆଯାଏ, ତା ହେଲେ, ସବୁକୁ ମିଶାଇ ଜ୍ଞାନୀନ୍ଦ୍ର ବର୍ମାଙ୍କ ପରିଚୟ ହେବ, କେବଳ ସେ ଜଣେ ସାହିତ୍ୟିକ । ସେ କଲେଜର ଉଚ୍ଚୀଧାରୀ ନୁହନ୍ତି, ଡକ୍ଟରେଟ ପାଇ ନାହାନ୍ତି କିମ୍ବା ତୋଷାମୋଦଦ୍ୱାରା ଉପରକୁ ଉଠିବାକୁ କେବେ ହେଲେ ଉଦ୍ୟମ କରି ନାହାନ୍ତି ।

'ଜ୍ଞାନୀନ୍ଦ୍ର ଗ୍ରନ୍ଥାବଳୀ' ନାମରେ କଟକର ଅନ୍ୟତମ ଅଗ୍ରଗାମୀ ପ୍ରକାଶନ ସଂସ୍ଥା 'ଫ୍ରେଣ୍ଡସ୍ ପବ୍ଲିଶର୍ସ' ବର୍ତ୍ତମାନ ତାଙ୍କର କାବ୍ୟ ନାଟକ ଖଣ୍ଡ ପ୍ରକାଶ କରିଛନ୍ତି । ଏଥିରେ ୯ଟି ବହି ସନ୍ନିବେଶିତ । ପ୍ରକାଶକ ଏହି ସଂକଳନର ପ୍ରାରମ୍ଭରେ ଲେଖିଛନ୍ତି "ଜ୍ଞାନୀନ୍ଦ୍ର ବର୍ମା ଆଧୁନିକ ଓଡ଼ିଆ ସାହିତ୍ୟର ଅନ୍ୟତମ ଅଗ୍ରଗାମୀ ନିର୍ମାତା ।" ଏହି ଉକ୍ତି ଯଥାର୍ଥ । କବି, ଔପନ୍ୟାସିକ ଶ୍ରୀ ବର୍ମାଙ୍କ ଲେଖା ଓଡ଼ିଆ ସାହିତ୍ୟରେ ସେପରି ବାହ୍ୟିକ ଆଲୋଡ଼ନ ଓ ବିପ୍ଳବ ସୃଷ୍ଟି କରି ନ ଥିଲେ ମଧ୍ୟ ପାଠକଙ୍କ ମନରେ ଯଥେଷ୍ଟ ପ୍ରଭାବ ପକେଇ ଆସିଛି । ତାଙ୍କ ଲେଖା ପଢ଼ିଲେ ଆନନ୍ଦ ମିଳେ, ନୂତନ ଚିନ୍ତାଧାରା ଓ ଶୈଳୀରେ ପାଠକ ଅଭିଭୂତ ହୁଏ ।

ମନେ ଅଛି, ପିଲାଦିନେ କବିଙ୍କ "ବୋଲେ ହୁଁ ଟି" ପଢ଼ିବା ପରେ କାହିଁକି କେଜାଣି ଏହାର ସ୍ରଷ୍ଟାଙ୍କୁ ଦେଖିବା ପାଇଁ ମନ ଭାରି ବ୍ୟଗ୍ର ହୋଇ ଉଠିଲା । ନିକଟରେ କଟକ ବେତାର କେନ୍ଦ୍ରରେ ଏହି ଲେଖାଟି ସଂକ୍ଷେପରେ ପରିବେଷିତ ହୋଇଥିଲା । ପୂର୍ବରୁ କାର୍ଯ୍ୟକ୍ରମ ଦେଖି, ଅଧ ଘଣ୍ଟାଏ ଆଗରୁ ରେଡ଼ିଓ ଖୋଲି ବସି ରହିବାକୁ ପଡ଼ିଥିଲା ।

କବି ବର୍ମା ଶିଳ୍ପୀ ବର୍ମାଙ୍କ ସହକାରୀ ଭାବରେ କଟକରେ ଅବସ୍ଥାନ କରୁଥାନ୍ତି ; ଶିଳ୍ପୀ ବର୍ମାଙ୍କ ସଙ୍ଗରେ କବି ବର୍ମାଙ୍କର ଜିଦ୍ ସଂଗ୍ରାମରି ହେଲା । କବି ୮ ଘଣ୍ଟା ମଧ୍ୟରେ ଗୋଟିଏ କାବ୍ୟ ନାଟିକା ଲେଖି ଦେବେ ବୋଲି ଜିଦ୍ ମାରିଲେ ।

ସକାଳ ୬ ଘଣ୍ଟାରୁ ଗୋଟିଏ ଘରେ ଦରଜା ବନ୍ଦ କରି ଲେଖା ଆରମ୍ଭ କଲେ । ଠିକ୍ ୨ଟା ବେଳେ ଆସି ବର୍ମାଙ୍କୁ "ବୋଲେ ହୁଁ ଟି" କାବ୍ୟ ନାଟିକା ଲେଖି ସାରି ଦେଇ ଦେଲେ ।......

କବି ବର୍ମାଙ୍କୁ କବି ହେବାର ପରିବେଶ ଯୋଗାଇବାରେ କୁସୁପୁର ଅଞ୍ଚଳ ଅଧିକ ସାହାଯ୍ୟ କରିଛି । କୁସୁପୁରର ଗୋଟିଏ ଦିଗରେ ସୁରୂପା ବିରୂପା ନଦୀ କୁଳୁ କୁଳୁ ହୋଇ ବୋହି ଯାଉଛି । ନଦୀର ଅପର ପାର୍ଶ୍ୱରେ ବଦନ୍ତିଅ ଓ ଉଦୟ ଗିରି ପର୍ବତମାଳା, ତାର ଦକ୍ଷିଣ ଦିଗରେ ଲଳିତଗିରି (ପୁଷ୍ପଗିରି) ପର୍ବତମାଳାର ସୌନ୍ଦର୍ଯ୍ୟ ଏବଂ ଗୁହିଆଡ଼େ ତାଳ, ନାରିକେଳ ଓ ଆମ୍ବ କୁଞ୍ଜ ମନକୁ ପଲ୍ଲବିତ କରିଦିଏ । ଏହି ଅଞ୍ଚଳର ଖଡ଼ଗ୍‌ପୁର ବଙ୍ଗଳାରେ ରହି ଫକୀର ମୋହନ "ଛମାଣ ଆଠଗୁଣ୍ଠ" ଉପନ୍ୟାସ ଓ ବଙ୍ଗୀୟ କବି ଋଷି ବଙ୍କିମଚନ୍ଦ୍ର ତାଙ୍କର ବିଖ୍ୟାତ 'ସୀତା ରାମ' ଉପନ୍ୟାସ ଲେଖିଥିଲେ । କବି ନନ୍ଦକିଶୋର ଏଠାର ପଲ୍ଲୀ ସୌନ୍ଦର୍ଯ୍ୟରେ ମୁଗ୍‌ଧ ହୋଇ 'ପଲ୍ଲୀ ଚିତ୍ର' ଲେଖିଥିଲେ । ଗଣକବି ବୈଷ୍ଣବ ପାଣି, କବି ପ୍ରାଣକୃଷ୍ଣଙ୍କର ମଧ୍ୟ ଏହି ଅଞ୍ଚଳରେ ଜନ୍ମ । ବାଗ୍ମୀ ବିଶ୍ୱନାଥ କର ଓ ପ୍ୟାରିମୋହନ ଆଚାର୍ଯ୍ୟ ମଧ୍ୟ ଏହି ଅଞ୍ଚଳରେ ଜନ୍ମ ଲାଭ କରିଥିଲେ । ଯେପରି ଜଣାଯାଏ, ଏହି ଅଞ୍ଚଳଟି କବିଙ୍କ ପାଇଁ ଉର୍ବର କ୍ଷେତ୍ର । ସେହି ପରିବେଶ କବି ବର୍ମାଙ୍କୁ ମଧ୍ୟ କବି ହେବାରେ ଯଥେଷ୍ଟ ସାହାଯ୍ୟ କରିଛି ।

ପୁଣି ଶିଳ୍ପୀ ବର୍ମା, କବି ପ୍ରାଣକୃଷ୍ଣ ଓ କବି ବର୍ମା କଟକରେ ଏକ ସଙ୍ଗରେ ରହି ଯେଉଁ ସାହିତ୍ୟ ଆଲୋଚନା ସଂସ୍ଥା 'ମୈତ୍ରୀ ମହଲ' ଗଢ଼ିଥିଲେ, ସେଥିରେ ଏମାନଙ୍କର ସାହିତ୍ୟ-ପ୍ରତିଭା ଯଥେଷ୍ଟ ଉତ୍କର୍ଷ ଲାଭ କରିଥିଲା । କବି ବର୍ମାଙ୍କର ଅଧିକାଂଶ କବିତା କଟକ, ପୁରୀ ଓ ତାଳଚେରରେ ରଚିତ । ତାଙ୍କର ଉପନ୍ୟାସ ମଧ୍ୟରୁ 'ଭୂମିକା', 'ଶତାବ୍ଦୀର ସ୍ୱପ୍ନଭଙ୍ଗ', 'ନୀଳଘୋଡ଼ା' ବରଗଡ଼ରେ ରଚିତ ।

କବି ବର୍ମାଙ୍କର ବଡ଼ ଗୁଣ ହେଉଛି, ସେ ନିଜର କୃତି କାହାରିକୁ ଦେଖାଇବାକୁ ଚାହାନ୍ତି ନାହିଁ । ସେ କହନ୍ତି, "ତା'ର ଯଦି ମୂଲ୍ୟ ଥିବ ଓ ମୁଁ ଯଦି ଅନ୍ତରର ପ୍ରେରଣାରେ ଲେଖିଥିବି, ତାହା ଦିନେ ସର୍ବଜନ ପ୍ରଶଂସିତ ହେବ ।"

ନାନା ଦିଗରୁ ନିଜ ଜୀବନର ସଂଘାତ ତାଙ୍କ କବିତା ଲେଖିବା ଶକ୍ତିକୁ ସଫଳୀକୃତ କରିବାରେ ସହାୟକ ହୋଇଛି ।

ସେ ଖୁବ୍ କମ କଥା କୁହନ୍ତି; କିନ୍ତୁ ଭାବନା ଖୁବ୍ ଅଧିକ । ଯେପରି ଦେଖାଯାଏ ସାମୟିକ ବିପ୍ଳବ ଓ ପରିବର୍ତ୍ତନର ଆହ୍ୱାନମୟୀ କବିତାରେ ସେ ଲୋକଙ୍କ ପ୍ରାଣରେ ପ୍ରଳୟ ସୃଷ୍ଟି କରି ଦେଇ ପାରନ୍ତି । ତାଙ୍କର ଏହି ଭାବନା ଖୁବ୍ ଜୀବନ୍ତ ପରି ଜଣାଯାଏ ।

ବର୍ମାଙ୍କର ପୁସ୍ତକ ମଧ୍ୟରେ ଭୂମିକା, ଶତାବ୍ଦୀର ସ୍ୱପ୍ନ ଭଙ୍ଗ, ନୀଳଘୋଡ଼ା— ଉପନ୍ୟାସ ; ବୋଲେ ହୁଁ ଟି, କଲରେଇ ଫୁଲ, ସ୍ୱର୍ଣ୍ଣ ଯୁଗର ସଂଧ୍ୟା— କାବ୍ୟ ନାଟିକା;

ଏକରସି—କବିତା ପୁସ୍ତକ ବ୍ୟତୀତ ବହୁ କବିତା ସେ ରଚନା କରିଛନ୍ତି । ବ୍ଲ୍ୟୁବାର୍ଡ ନାଟକ ଓ ନାନା ଉପନ୍ୟାସର ଅନୁବାଦ ଏବଂ ଏଲିୟଟ, ଏଜରା ପାଉଣ୍ଡ ଓ ହ୍ୱିଟ-ମ୍ୟାନ କବିତାର ଅନୁବାଦ ମଧ୍ୟ ପୁସ୍ତକ ଆକାରରେ ସେ ଲେଖିଛନ୍ତି ।

ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ୧୯୬୦ରେ ଶ୍ରୀ ବର୍ମା ଏକାଦିକ୍ରମେ "ସ୍ୱର୍ଣ୍ଣ ଯୁଗର ସଂଧ୍ୟା" କାବ୍ୟ ନାଟିକା ପାଇଁ ପ୍ରଥମ ଏବଂ ଏଜରାପାଉଣ୍ଡ କବିତା ଲାଗି ଅନୁବାଦ ସାହିତ୍ୟରେ ଦ୍ୱିତୀୟ ପୁରସ୍କାର ଲାଭ କରିଥିଲେ । ଡକ୍ଟର ମାନସିଂହଙ୍କ "ଓଡ଼ିଆ ସାହିତ୍ୟର ଇତିହାସ"ରେ କବିଙ୍କ ସାହିତ୍ୟର ମୂଲ୍ୟାଙ୍କନ କରି ଉଚ୍ଚ ଅଭିମତ ପ୍ରକାଶ କରାଯାଇଛି । ତାଙ୍କ ଲିଖିତ "ଚୈତନ୍ୟ ପ୍ରତାପରୁଦ୍ରଙ୍କ ତ୍ରାଣକର୍ତ୍ତା ନା ଧ୍ୱଂସକର୍ତ୍ତା" ପ୍ରବନ୍ଧ ଏବଂ "ଭୂଦାନ ଯଜ୍ଞ" କବିତା ଏକସମୟରେ ଘୋର ଚାଞ୍ଚଲ୍ୟ ସୃଷ୍ଟି କରିଥିଲା ।

ଶ୍ରୀଯୁକ୍ତ ବର୍ମା ବର୍ତ୍ତମାନ 'କଳିଙ୍ଗ'ର ସହକାରୀ ସଂପାଦକ । ପୂର୍ବରୁ ସେ 'ସମାଜ'ରେ ୧୦ ବର୍ଷ ଏବଂ 'ଦୈନିକ ଆଶା'ରେ ୩ବର୍ଷ ସହକାରୀ ସଂପାଦକ ପଦରେ ରହିଥିଲେ । ଦ୍ୱିତୀୟ ମହାଯୁଦ୍ଧ ସମୟରେ ବାମଣ୍ଡା ଦରବାରର ପୃଷ୍ଠ ପୋଷକତାରେ ପ୍ରକାଶିତ ସ୍ୱନାମଧନ୍ୟ "ଶଙ୍ଖ" ମାସିକ ପତ୍ରିକାର ସେ ପରିଚାଳନା ସଂପାଦକ ରୂପେ କାର୍ଯ୍ୟ କରିଥିଲେ । ତା ପୂର୍ବରୁ ସଚିତ୍ର ମାସିକ ପତ୍ରିକା "ଆରତି" ସହ ମଧ୍ୟ ସଂଶ୍ଳିଷ୍ଟ ରହି ତାର ଶ୍ରୀବୃଦ୍ଧିରେ ଯଥେଷ୍ଟ ସାହାଯ୍ୟ କରିଥିଲେ । ପ୍ରଥମେ ପ୍ରଥମେ ତାଙ୍କର କେତେକ ଲେଖା ଛଦ୍ମ ନାମରେ ପ୍ରକାଶ ପାଉଥିଲା । ଅଳ୍ପ କେତେକାଳ ଧରି ପ୍ରକାଶ ପାଇଥିବା ସଚିତ୍ର ଗଳ୍ପ ପତ୍ରିକା "ମୌସୁମୀ"ର ସଂପାଦନା ଦାୟିତ୍ୱ ମଧ୍ୟ ସେ ଗ୍ରହଣ କରିଥିଲେ ।

"ବୋଲେ ହୁଁ ଟି" ଦ୍ୱନେ ପଣ୍ଡିତ ନୀଳକଣ୍ଠଙ୍କ ଦ୍ୱାରା "ନବଭାରତ" ପତ୍ରିକାରେ ପ୍ରଶଂସିତ ହୋଇଥିଲା । କବିଙ୍କ ଭାଷାରେ "ଏହାର ପ୍ରଧାନ ବିଷୟବସ୍ତୁ ହେଲା ରୂପର ଅସାମାନ୍ୟ ଆକର୍ଷଣ ଓ ସ୍ୱୈର ଶାସନ ମଧ୍ୟରେ ଧନାଢ୍ୟ ହେଲେ ମଧ୍ୟ ଏକ ସାଧାରଣ ନାଗରିକ ପକ୍ଷରେ ରୂପସୀ ପତ୍ନୀକୁ ନିଜସ୍ୱ କରି ରଖିବାର ବିଡ଼-ମ୍ବନା ।, ଶେଷରେ ତିନୋଟି ଜୀବନର ଆହୂତି ମିଳନଧର୍ମୀ କାବ୍ୟ ଖଣ୍ଡରେ ଅପୂର୍ବ ବିପ୍ରୋଗାନ୍ତ ରସ ସୃଷ୍ଟି କରିଛି ।"

କାବ୍ୟର ଆରମ୍ଭ –

"ବୋଇତ ଲାଗିଲା ଯେବେ ଏ ଶଯ୍ୟା-ଦ୍ୱୀପରେ
ମନେ ପଡ଼େ ଲୀଳାବତି, ଭ୍ରମର କି ତାହା,
ଭାସି ଯାଉଥିଲା ଶଶୀ ଜୋଛନାର ରଥେ
ଆକାଶରେ ବିହଗଟି ଖୋଜୁଥିଲା ବାହା ।"

ଶେଷରେ—

"ଯୋଗୀ ସିନା ମଲା ଯୋଗୀଆଣୀ ପାଇଁ
ରଜା ମଲେ କାହା ପାଇଁ,
ଧେନେଶତ ରାଣୀ ରାଣ୍ଡ କରି ଗଲେ
ଏକା ଯୋଗୀଆଣୀ ପାଇଁ ।"

"କଲରେଇ ଫୁଲ" କାବ୍ୟନାଟିକା ମଧ୍ୟ ଏହିପରି ଏକ କାହାଣୀରୁ ଆହୃତ । "ବିଳାସପୂର୍ଣ୍ଣ ରାଜପୁରୀ ମଧ୍ୟରେ ଏକ ଚପଳ ଅଭିଭାବକଦ୍ୱାରା ପାପାଚରଣର ଉପକ୍ରମ ଏବଂ ଗୋଟିଏ ପ୍ରଭିନ୍ନଯୌବନା ଯୁବତୀର ତହିଁରୁ ରକ୍ଷା ପାଇବାର ପ୍ରଚେଷ୍ଟା । ଏହି ପ୍ରଚେଷ୍ଟାର ସଫଳତା ମଧ୍ୟରେ ଉତ୍‌ଥିତ ହୋଇଛି ସମାଜବାଦୀ ଦୃଷ୍ଟିରେ ମାନବତାର ଜୟଗାନ ।"

ଏହାର ଭାଷା ଅଧିକ ଆକର୍ଷକ, ମର୍ମସ୍ପର୍ଶୀ ଓ ଜୀବନ୍ତ ।

କଲରାପତ୍ରର କେଶରକ କେଶ
କଲରେଇ ଫୁଲ, କଲରେଇ ଫୁଲ,
ଲୋତକ ଆଖିରେ ତମେ ଯେ ଫେରି
ତେଜି ରାଜସୁଖ ପଲଙ୍କ ଶେଯ
ତମେ ଦେଖାଇଲ ନାରୀର ତେଜ ।

ତାଙ୍କର ପ୍ରତ୍ୟେକ କାବ୍ୟ-କବିତାର ଆଲୋଚନାର ଅବକାଶ ଏଠାରେ ନାହିଁ । କାରଣ, ପରିସର ସଂକ୍ଷିପ୍ତ । ଟି. ଏସ୍. ଏଲିୟଟ ଓ ଏଜ୍ରା ପାଉଣ୍ଡଙ୍କ କବିତା, ଏମିଲ୍ ଜୋଲାଙ୍କ "ନାନା" ଉପନ୍ୟାସ ଏବଂ ମେତର ଲିଙ୍କ୍‌ଙ୍କ "ନୀଳ ବିହଙ୍ଗ" ନାଟକର ସଫଳ ଅନୁବାଦ ଦ୍ୱାରା ସେ ଓଡ଼ିଆ ଅନୁବାଦ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ତାଙ୍କ ରଚିତ "ଭୂମିକା" ଉପନ୍ୟାସ ଶୈଳୀ ଓ ଚିନ୍ତାଧାରା ଦୃଷ୍ଟିରୁ ଓଡ଼ିଆ ଉପନ୍ୟାସ-ସାହିତ୍ୟର ଏକ ଭୂମିକା ସ୍ୱରୂପ । କେବଳ ପାଠକର ମନୋରଞ୍ଜନ କରିବା ତାଙ୍କ ଉପନ୍ୟାସର ଲକ୍ଷ୍ୟ ନୁହେଁ । ମଣିଷର ମାନସିକ ଓ ଅନ୍ୟାନ୍ୟ ଅବସ୍ଥାକୁ ବିଶ୍ଳେଷଣ କରି ନିର୍ଯାସ ପରିବେଷଣ କରିବା ତାଙ୍କ ଲେଖାର ବିଶେଷତ୍ୱ ।

ପୁନଶ୍ଚ "ଜ୍ଞାନୀନ୍ଦ୍ର କବିତାବଳୀ" ପ୍ରଥମ ଖଣ୍ଡ ଓଡ଼ିଶାର ଶ୍ରେଷ୍ଠ ପୁସ୍ତକ ପ୍ରକାଶକ 'ଗ୍ରନ୍ଥମନ୍ଦିର' ପ୍ରକାଶ କରିଛନ୍ତି । ଏହି କବିତାବଳୀର ମୁଖବନ୍ଧ ଲେଖିବାକୁ ଯାଇ ଓଡ଼ିଶାର ପ୍ରତିଷ୍ଠାବାନ କବି ଗୋଦାବରୀଶ ମହାପାତ୍ର କହିଛନ୍ତି, "କବି କେଉଁଠି ଅତୀତର ମାୟାରେ ଜଡ଼ିତ, ପ୍ରିୟାର ଗାଁରେ ସ୍ୱପ୍ନାଭିଭୂତ, 'ଜଡ଼ବାଦ'ରେ ବିଶ୍ଳେଷଣ-ପଟୁ, କେଉଁଠି 'ଉର୍ବଶୀ' ଚିନ୍ତାରେ ବିଭୋର । ଭାଷା କେଉଁଠି ଭାବ-ଗମ୍ଭୀର, କେଉଁଠି ତରଙ୍ଗିଳ, କେଉଁଠି ବା ଗିରି ନିର୍ଝରିଣୀ ପରି ପ୍ରବାହଶୀଳ । ଏହିସବୁ କବିତାରେ କବି ଗୋଟିଏ ମାଠିଆ ଭିତରେ ସମୁଦ୍ରକୁ ଭରି ଦେଇଛନ୍ତି ।"

କବି ବର୍ମା ସ୍ୱଲିଖିତ ଗ୍ରନ୍ଥାବଳୀ (ପ୍ରଥମ ଭାଗ)ର ଭୂମିକାରେ ଲେଖିଛନ୍ତି, "ଯେ କୌଣସି ନିର୍ମୋକର ତଳେ ଯେଉଁମାନେ ପ୍ରାଣ ସତ୍ତାର ସନ୍ଧାନରେ ଅଧିକ ତତ୍ପର ସେହିମାନଙ୍କଠାରେ ସାହିତ୍ୟର ମୂଲ୍ୟ ନିରୂପଣ ସମଧିକ ନ୍ୟାୟସଙ୍ଗତ ହୋଇଥାଏ ।"

କବି ବର୍ମାଙ୍କ ପ୍ରତିଭା ବହୁମୁଖୀ । ତାଙ୍କ କାବ୍ୟ କବିତାର ଆଲୋଚନା ଦେଶର ବୁଦ୍ଧିଆଡ଼ି ହେବା ଉଚିତ । ସମୟ ଆସିବ, ଯେବେ ତାଙ୍କ କୃତିର ଆଲୋଚନା ସମାଲୋଚନା ଆଜିଠାରୁ ଅଧିକ ହେବ । ଜାତି ତାଙ୍କୁ ଯେବେ ଶ୍ରେଷ୍ଠ ସମ୍ମାନ ଦାନ କରିବାକୁ କୁଣ୍ଠିତ ହେବ ନାହିଁ ।

**ସାହିତ୍ୟ ସମାଚାର**
ମଇ, ୧୯୬୪

# ଗ୍ରନ୍ଥ ସୂଚୀ


| ଗ୍ରନ୍ଥ | | | | ପୃଷ୍ଠା |
|---|---|---|---|---|
| ଭୂମିକା | | | ... | ୧ |
| ଶତାବ୍ଦୀର ସ୍ୱପ୍ନଭଙ୍ଗ | | | ... | ୨୬୭ |
| ଲାଲଘୋଡ଼ା | ... | | ... | ୨୫୩ |
| ଛଟି ହ୍ରଦର କାହାଣୀ | ... | | ... | ୩୪୧ |
| କୁମାରିକା ସଙ୍ଘ | ... | ... | ... | ୪୦୨ |
| ଜୀବନର ଛନ୍ଦ | ... | ... | ... | ୪୬୫ |

—ଏକ—

ଶିଖା···ଲୋ ଶିଖା···

ଡାକ ଶୁଣି ଶ୍ରୀମତୀ ଆସି ଠିଆହେଲା ଦ୍ୱାରବନ୍ଧ ପାଖରେ । ଶ୍ୟାମଳ ମୁହଁରେ ଯୌବନର ରକ୍ତାଭା । ନାକରେ ଝୁଲୁଛି ଗୋଟିଏ ସୁନାର ନୋଳକ । ଏଣ୍ଡୁଳା ମାଛର ଆଖି ପରି ଦୁଇ ନାକ ପୁଡ଼ା ଉପରେ ଉଜ୍ଜ୍ୱଳ ହୋଇ ଦିଶୁଛି ଦୁଇଟି ସୁନାର ମଉଚ । ଗୋଠା ପାଖର ଗାଲ ଉପରେ ଝୁଲି ପଡ଼ିଛି ଅଲରା ବଲରା ବାଳ, ଆଉ ପାଖର ବାଳତକ କଙ୍କତିକାର ଶାସନରେ ଶୃଙ୍ଖଳିତ ହୋଇ ବଶମ୍ୱଦ ପରି ନମ୍ରଭାବରେ ଲମ୍ବି ପଡ଼ିଛି କାନ୍ଧ ଉପରକୁ । ବୋଧହୁଏ ମୁଣ୍ଡ କୁଣ୍ଡାଉଥିଲା ସେ—ଭାଇର ଡାକରେ ହଠାତ୍ ଉଠି ଆସି ସ୍ରସ୍ତ ଲୁଗାକୁ ଘୋରେଇ ଦେଇଛି ତରବର କରି ମୁଣ୍ଡରେ । ଲୁଗାର କାନି ଭିତରେ ହାତ ପୂରେଇ, ସ୍ତନ ଉପରେ ରଖିଛି ସେଇ ହାତକୁ—ଯେପରି ବକ୍ଷର ପରିମାପକୁ ତାହା ଦ୍ୱାରା ଅନ୍ୟର ଦୃଷ୍ଟି ଏଡ଼ାଇବାକୁ ସେ କରୁଛି ଚେଷ୍ଟା । ଲୁଗା ଖଣ୍ଡିକ ବସନ୍ତୀ ରଙ୍ଗର କସ୍ତା ।

ପାଦଶବ୍ଦରୁ ଭଉଣୀର ଉପସ୍ଥିତି ବୁଝିପାରି ବଳଦକୁ କୁଣ୍ଡା ଗୋଳେଇ ଦଉଁ ଦଉଁ କହିଲା ମଦନ···

ବର ଗ୍ରେପା ଗଣ୍ଡା ଆଇଁଲୁ, ଏ କଜଳାଟା ଜମା ଖାଉନେଇଁ କାହିଁକି···

[illegible] କୁଲରେ ବରଗ୍ରେପା ଘେନି ଦ୍ୱାରବନ୍ଧ ପାଖକୁ ଆସୁ ଆସୁ ହଠାତ୍ ଫେରି ପଡ଼ିଲା ଶ୍ରୀମତୀ ।

ତାକୁ ଉଦ୍ଦେଶ୍ୟ କରି ଦୂରରୁ ହସି ହସି କହି ଉଠିଲା ଜାଫର୍—ସଲାମ୍ !

ତାହାପରେ ହସି ହସି କହି କହି ଆସି ପାଖରେ ପହଞ୍ଚିଲା ଜାଫର୍ ।

ସଲାମ୍ ଓସ୍କା !

କୁଣ୍ଡା ବାଲୁ ବାଲୁ ହାତରେ ଉଠି ପଡ଼ିଲା ମଦନ । ସଲାମ୍, ସଲାମ କହି ବାଁ ହାତରେ ବଂଧୁକୁ ତାହାର, ଜଡ଼େଇ ଧରିଲା ।

କିଛିକ୍ଷଣ ପରେ ପିଣ୍ଡା ପାଖକୁ ଚାଲିଯାଇ· ତାଳପତ୍ରରେ ବନ୍ଧା ହାତର ସାଗୁଆଣ୍ଡ ପୁଟୁଳାଟି ଦ୍ୱାରବନ୍ଧ ସେ ପାଖରେ ଥୋଇ, ସେଠାରେ ରହିଥିବା ବରଗୁଡ଼ପା ଚକ ଘେନି ଜାଫର୍ ମହନ୍ତି ପାଖରେ ପହଞ୍ଚି କହିଲି—

ଆରେ ଆଗେ ବଏଲ୍‌କୁ ଖୁଆଅ, ସେ ତ ଆମର ଜୀବନ ।

କିନ୍ତୁ ମହନ୍ତିର ଜୀବନ ନୁହେଁ ଏହି ବଳଦ ଯୋଡ଼ିକ । ସେ ଶଗଡ଼ ବୋହୁଥିଲି, ଅନେକ ଦିନୁ ସେ ଗାଡ଼ ଭାଙ୍ଗି ଦେଇଛି । ଚଷ ଜମି ବି ନାହିଁ ତା'ର ଗୁଣ୍ଠେ । ତଥାପି ଏହି ବଳଦ ହାଳକ ପ୍ରତି ତାର ବଡ଼ ଆସକ୍ତି—ବଡ଼ ଯତ୍ନ । ନିଜର ଅଳସ ସମୟକୁ ଏହି ବଳଦ ଯୋଡ଼ିକର ଚର୍ଯ୍ୟାରେ କଟାଇବାକୁ ସେ ଖୁବ୍ ସୁଖ ପାଏ । ବଳଦଯୋଡ଼ିକ ବି ସେଥିଲାଗି ହୋଇଛନ୍ତି ଖୁବ୍ ସୁନ୍ଦର । ଦେଖିଲେ ଆଖି ଲାଖିଯାଏ—ଦେହରୁ ମାଛି ଖସି ପଡୁଛି । କୌଣସି ଆବଶ୍ୟକତା ନ ଥାଇ, କୌଣସି କୌଣସି ରାଜାଘର ହାତୀ ବାନ୍ଧିବା ପରି ମହନ୍ତିର ଏ ବଳଦ ବାନ୍ଧିବା ସଉକ ।

ବରଗୁଡ଼ପା ଗୁଡ଼ାକ କୁଣ୍ଡରେ ପକେଇ ଦେବାରୁ ମହନ୍ତିକୁ ଆଉ ସେଠାରେ ବସି ରହିବାକୁ ହେଲି ନି । ଆନନ୍ଦରେ ନାକ ବୁଡ଼ା ଦେଇ ଖାଇବାକୁ ଲାଗିଲେ କଳଲା ଆଉ କପିଳା ।

ଏହାପରେ ହଠାତ୍ କହି ବସିଲି ଜାଫର୍···

ଶିଖର କଣ ହେଲି ଓସ୍ତାଦ ? ସିଏ ଏତେ ସରମ୍ କରୁଛି କିଆଁ ?

ସରମ ?

ହଁ, ମତେ ଦେଖି ତ ସିଏ ଭାଗୁଛି···

ଶ୍ରୀମତୀ ଉଦ୍ଦେଶ୍ୟରେ ଡାକ ଦେଲି ମହନ୍ତି । ତାହାର ଭୁଲ ସଂଶୋଧନ କରି ତାଳେ ପାଣି ଆଣି ଦ୍ୱାର ଏ ପାଖକୁ ଥୋଇ ଦେଇ ଦ୍ୱାରବନ୍ଧ ସେ ପାଖରେ ଚଳକୁ ମୁହଁ କରି ଛିଡ଼ାହେଲି ଆସି ଶ୍ରୀମତୀ । ଏହା ପୂର୍ବରୁ ସେ ମାଂସ ପୁଟୁଳାଟି ନେଇ ଯାଇଥିଲି ସେଠୁ ।

ଦୂରରେ ଏହି ସମୟରେ ପହଞ୍ଚିଲି ବୁଢ଼ା ଉଛବ ମାହାନ୍ତି । ଚଷ ବାସ କରି ବିଚରା ଏକ ରକମ ଚଳେ । କିନ୍ତୁ ଚଷା ନୁହେଁ ବୋଲି ସେ ଗର୍ବ କରେ । ଜାତିରେ ସେ କରଣ ।

ଶୀତଦିନ ହେଲେ ବି ଏ ପର୍ଯ୍ୟନ୍ତ ଶୀତ ସେପରି ଦେଖାଦେଇ ନି । କିନ୍ତୁ ଉଛବ ଦେହର ଜାଲିଆଳୀ ଖଣ୍ଡିକ ଶୀତକୁ ସ୍ୱାଗତ କରୁଛି ଯେମିତି !

ଉଛବ ଆଉ ଜାଫର କେହି ଏଠାରେ ନୂଆ ନୁହନ୍ତି । ନଈ ସେପାରି ନାନ୍‌କା ଗାଁରେ ଉଛବ ମାହାନ୍ତିର ଘର । ବିଲ ବାଡ଼ି ଭାଗ ବଖରା କରିବା ପାଇଁ ସେ ଅନେକ ଥର ବଳଦ ମାଗି ନିଏ ମହନ୍ତିଠାରୁ । ଆଉ ଜାଫର୍‌କୁ ଏଠି ନ ଚିହ୍ନେ କିଏ ?···ଜାଫର୍ ମହନ୍ତିର ଓସ୍ତାଦ—ଅନ୍ତରଙ୍ଗ ବନ୍ଧୁ । ଜାଫର୍ ଲାଗି ମହନ—ମହନ୍ତିର ଉଜୁଡ଼ି ଜାଫର୍ ଲାଗି ।

ସେହି ଅନେକ ଦିନର କଥା । ବାଲୁପା ଘାଟରୁ ପାରି ହୋଇ ସିପୁରଘାଇ ଭିତରେ ପଡ଼ିଛି ଜାଫର୍‌ର ଚମଡ଼ା ଗାଡ଼ । ଜିଲ୍‌ଲାବୋର୍ଡ଼ର ପକ୍‌କା ପୋଲ ହୋଇ ନି ସେତେବେଳକୁ

ସିପୁରଘାଇ ଉପରେ । ···ଆଗରେ ଅନ୍ୟ ଗାଡ଼ିଆଳ ଚ଼ାଲଗଲେଣି ବଳଦ ଅଡ଼େଇ, ଜାଫର୍ ଏକାକୀ ପଡ଼ିଛି ପଛରେ । ସେ ପାଖରୁ ଶଗଡ଼ ଯୋଝା ଫେରୁଥିଲେ ମହନ୍ନା ଆଉ ତାର ବାପ । ହଠାତ୍ ଘାଇ ଭିତରେ ଖଣାରେ ପଡ଼ିଲା ଜାଫର୍‌ର ବଳଦ । ଚମଡ଼ା ଗାଡ଼ି, ଚ଼ୂର ପାଖର ଗୋଳିଆ କଅ କଅ ପାଣି ଉପରେ ଭସିଯାଉଚ ତା'ର ଗନ୍ଧ, କେଉଁ ହିନ୍ଦୁ ଆସି ଜାଫର୍‌କୁ ସାହାଯ୍ୟ କରିବ ସେଠି ? ଜାଫର୍‌ର ବୁଦ୍ଧି ହଜିଯାଇଚ — କେବଳ ଦଣ୍ଡାକୁ ଧରି ସେ ଗାଡ଼ି ଚଳଉଥିଲା ପଛରୁ । ଦଣ୍ଡା ଗୁଡ଼ ଆଗକୁ ମଧ ଯାଇପାରୁ ନ ସେ । ଏହି ସମୟରେ ସେ ଦେଖିଲା, ଝିଙ୍ଗ ମୁଣ୍ଡରେ କାନ୍ଧ ଲଗେଇ ଦେଲା ଏକ ଭେଣ୍ଡିଆ । ବଳଦକୁ ଖଣାରୁ କାଢ଼ି ନେଉଛି ଏକ ମରଦ—ଉଭୟେ ହିନ୍ଦୁ ।

ତାହାପରେ ପଯ୍ୟା, ମାରିଲା ଜାଫର୍ ଦଣ୍ଡାକୁ ଗୁଡ଼ । ଗାଡ଼ି ଶେଷକୁ ଉପରେ ଛିଡ଼ାହେଲା ।

ଦୁଇ ଜଣଙ୍କର ଦେହ-ମୁଣ୍ଡକୁ ଭଲ କରି ତାନେ ଅନେଇ ଅସ୍ପଷ୍ଟ ସ୍ୱରରେ କହିଲା ଜାଫର୍—'ସଚ୍ଚା ମଣିଷ' । ତାହା ପରେ ସ୍ପଷ୍ଟଭାବରେ ସେ କହିଲା···

ସଲାମ୍···

ପ୍ରତିସଲାମ ଆଉ ପାଇଲା ନାହିଁ ଜାଫର୍ । କେବଳ ମହନ୍ନାର ବାପ ଜାଫରର ବାହୁକୁ ଆଉ ମୁହଁକୁ ଅନେଇ ଅନେଇ କହିଲା—

ଆମେ ସମସ୍ତେ ସମାନ । ମାଇପ ହାତରୁ ଖଡ଼ୁ କାଢ଼ି ଆମେ ଶଗଡ଼ରେ ହାତ ପକେଇଚେ । ଏଠି ଆଉ ଆଗ ପଛ ହେଲେ ଚଳିବ ? ଆଜି ଆମର ହୋଇଥାନ୍ତା ?— କଣ କଲାଶିର ତମ ଘର ?

ବାହାଦୁର୍ ନଗର ।

ହଁ, ହଁ, ସେଇଟାକୁ ଆମେ କଲାଶିର କହୁ—

କାନ ପାଖରେ ଗାମୁଛା ହଲେଇ ଖାଲି ମହନ୍ନା କହିଲା—

ଏକା ଘର ଗନ୍ଧ ।

ପାଖରେ ପହଞ୍ଚି ଉଛବ ମହାନ୍ତି ପଚାରିଲା —

ମିଆଁ ମୁଅ କେତେବେଳେ ମ ?

ଏତେ ହଠାତ୍ କେହି ଏହାର ଉତ୍ତର ଦେବାକୁ କର୍ତ୍ତବ୍ୟ ଭିତରେ ନେଲେ ନି । ତାହା ପରେ ଆପେ ଆପେ କହିଲା ଉଛବ—

ଗୋଡ଼ରେ ତ ଧୂଳି ବାଲି ନାଗିଚ ! ଏଇ ସାତେ ସାତେ ଆଇଚ ପରା—ଯା ଗୋଡ଼ ହାତ ଧୁଅ, ବସିବା, ସୁଖ ଦୁଖ ହବା, କୋଉ ଏବେ ବାଟ ଭିନା କୋଣ ହୋଇଛି—ଯିବା, ମୁଁ ବି ତ ଯିବି ଘରକୁ । ଏ କାଠୁଆ ଖଣ୍ଡକ ତମର ପରା ବାଲିରେ ପଡ଼ିଚ —

ଜାଫର୍ କେବଳ ଉତ୍ତର କଲା—ହୁଁ ।

ମହନ ଏ ପର୍ଯ୍ୟନ୍ତ ନିଜର କୁଣ୍ଡା ବୋଳା ହାତ ସଫା କରି ନା । ଶ୍ରୀମନ୍ତ ଯେଉଁ ପାଣି ଡାଲକ ଆଣି ରଖିଥିଲା ଦାଣ୍ଡ ଦୁଆର ମୁହଁରେ, ତାହା ଥିଲା ଅନ୍ୟ ପାଇଁ ଉଦ୍ଦିଷ୍ଟ । ମାତ୍ର ଉଛବର କଥାରୁ ଆଉ ଢଙ୍ଗରୁ ମହନ ଦେଖିଲା, ଉଛବ ମଉସାର ଆଖି ରହିଛି ଯାଇଁ ସେଇଠି—ଏ ଗପ ତାର ଖାଲି ଫାଙ୍କିତାଳି ।

ହଠାତ ଯାଇଁ ପାଣି ଡାଲଟା ଆଣି ସେଥିରେ ନିଜର ହାତ ଧୋଇ'ବସିଲା ମହନ । ଆଖିରେ ମଧ ଠାରିଦେଲା ଶ୍ରୀମନ୍ତକ ଭିତରକୁ ଚାଲିଯିବାକୁ ।

ଗାମୁଛାରେ ହାତ ପୋଛି ପକେଇ, ସେଥିରେ ଢହକୁ ଘୋଡ଼େଇ ଠିଆ ହୋଇ ପଡ଼ିଲା । ତାହାପରେ ଜାଫର୍‌କୁ କହିଲା ମହନ—

ଆସ ଓସ୍ତାଦ, ନଈଆଡ଼େ ବାହାରକୁ ଯିବା ଆସ; ବଡ଼ ଆଣିଚ ନା—?

ସେମାନେ ନଈଆଡ଼କୁ ଯିବା ଉପରେ, ଶ୍ରୀମନ୍ତ ଆସି ପଛରୁ ଡାକ କହିଲା—ଶୁଣେ ଫେରିବ ଘରି, କରିସିନି ମୋଟେ ନାଇଁ; ରାତି କରିବ ନେଇ—

ହ, ହ, ପିମ୍ପେଇ ଜାଳି ପଛେ ଖାଇବା, ମରେ ଶୁଣେ ଫେରଆସେ ନା ।

ପିଣ୍ଡା ଉପରେ ବସିପଡ଼ିଲା ଯାଇଁ ଉଛବ ମାହାନ୍ତି ।—ମହନ ସାଙ୍ଗରେ ଚାଲିଯାଉଛି ଜାଫର୍, ଶ୍ରୀମନ୍ତର ଦୃଷ୍ଟି ଏ ପର୍ଯ୍ୟନ୍ତ ସେହି ଜାଫର୍ ଉପରେ ।

ଜାଫର୍ ଘରି ଘରି ଆଚ୍ଛାଲୋକ—

ଅବସ୍ଥିତର ସ୍ଥାନ ଭେଦ ଅନୁସାରେ ଶ୍ରୀମନ୍ତ ଥାଏ ଉଛବର ପଛକୁ । କାନ୍ଧର ଚଉକାଠରେ ସେ ଭରା ଦେଇଚି ହାତ । ତାହାର କଥା ଶୁଣି ମୁହଁ ବୁଲେଇ ଶ୍ରୀମନ୍ତକ ଚାହିଁଲା ଉଛବ । ଟିକେ ଗୁମ୍ ମାରି ମୁହୂର୍ତ୍ତକ ବ୍ୟବଧାନ ପରେ ରିହର୍ଶାଲ ନ କରି ଥିବା ଅଭିନେତାର ସ୍ୱଗତୋକ୍ତି ପରି କହିଲା—

ଘରି ହମାକ୍ ହୋଇଗଲାଣି ପଠାଣ ଟୋକାର ।

କାମନା ଫଳବତୀ ହେଲା ଉଛବର—ତାହାର ଏ କଥା ଶ୍ରୀମନ୍ତର ଶ୍ରୁତିତଟରେ ପହିଁଥିଲା । ଏହାପରେ ଶ୍ରୀମନ୍ତ ସେଠୁ ଚାଲିଯିବାକୁ ବସିଲା, ମୁହଁରେ ହସ ଟାଣି କହି ଉଠିଲା ଉଛବ—

ଟିକେ ନିଆଁ ଆଣିଲୁ ମା,—ପିଙ୍କା ଲଗେଇବା ।

ଆଲୋ ମସଲାବଟା ତୋର ସରିଲା କି ଲୋ ?

ଘର ଭିତରୁ ଡାକ ଆସିଲା ତା'ର ମା'ର । ତରବର ହୋଇ ଉଛବ ଉଦ୍ଦେଶ୍ୟରେ ମୁହଁ ମୋଡ଼ି ଦେଇ ଚାଲିଗଲା ଶ୍ରୀମନ୍ତ ।

ତାହାପରେ ତାହାକୁ କେହି ନିଆଁ ନ ଦେବାର ଦେଖି, ନିଜେ ଘର ଭିତରକୁ ପଶିଯାଇ ପିଙ୍କାରେ ନିଆଁ ଧରେଇ ଫେରି ଆସିଲା ଉଛବ । ଘରୁ ଦାଣ୍ଡକୁ ଯାଉଁ ଯାଉଁ ସେ ପୁନର୍ବାର ସ୍ୱଗତୋକ୍ତି କହି ଚାଲିଆସିଲା···ହଁଆଳପ ତ ଘରି ମଜା ମାଇଲେ ପଠାଣ ମଇଁଷ କରି···

ନାକ ଅଗରେ ତାର ବଟା ମସଲାର ବାସନା । ଶିଳ ଉପରର ମସଲାବଟାର ଶବ୍ଦ ତାହାର କାନରେ । ସେହି ବାସନାକୁ ସେ ଭଲ ଭାବରେ ଅନୁଭବ କରିବା ପାଇଁ ଦଣ୍ଡକ ଲାଗି ସେ ପିଙ୍କାଟଣା ବନ୍ଦ କରିଦେଲା । ତାହାପରେ ଶୁଣିଲା ସେ ଶ୍ରୀମନ୍ତର ଗୁଣ୍ଡି···

କୋଉଠି ଅନେଇ ବସିଥିଲା ଏ ବୁଢ଼ା···

'ହଳେଇକ ଗନ୍ଧ ନୁଟବ', କହି ମା' ତାହାର ଦୁଆର ଚୁଲ୍ଲୀରେ ଆଉ ଦି ଖଣ୍ଡ ଜାଳ ଭରଦେଲା । ଚୁଲ୍ଲୀ ଉପରେ ପିତଳ ଆଣ୍ଠିକାରେ ସିଝୁଚ୍ଛି ସାଗୁଆଣ୍ଡ । ବାମ୍ଫ ଅଧିକ ହୋଇ ଡାଙ୍କୁଣୀ ଘଡ଼ଘଡ଼ ଶବ୍ଦ କଲା ।

ଦାଣ୍ଡରେ ଉଛବ କଚ୍ଛି ସମସ୍ତ ଛୁଡ଼ା ହୋଇ ପଡ଼ିଲା । ଆଖି ତାର ମନ୍ଥର ଗତରେ ଚାରଆଡ଼େ ବୁଲିଲା କ୍ଷଣକ ପାଇଁ । ଯେତେ କଥା ତାହାର କାନ ଶୁଣିଲା, ତା ଅତି ମାମୁଲି । ଯେମିତି କଂସାରି ଘର ପାରିକୁ କୁଳ ତାଉଁ ତାଉଁ । ଏହା ହିଁ ତ ସେମାନଙ୍କର ଜୀବନ । ତା ଛଡ଼ା, ଯେମିତି ଜଣେ ପଞ୍ଚମବାହିନୀର ସଭ୍ୟ ଏହି ଉଛବ । ଏ ସବୁ କଥା କେବଳ ତାହାର ପ୍ରକୃତ ମେଣ୍ଟନ ପାଇଁ, ସେଥିରେ ଏଇ ଘ୍ରୋଟକୋଟ କଥାକୁ ଟିକେ ବିହି ସହା ନ କଲେ ଚଳିବ କେମିତି !···ଏହି ସମୟରେ କଣ ଭାବି ମହନ୍ତି-ବୋଉ ଆସି ଦାଣ୍ଡକବାଟ ଧଡ଼୍ କିନା ପକେଇ ଦେଲା । କିନ୍ତୁ କବାଟ ଦେବା ପୂର୍ବରୁ ତାହାର ଆଖି ପଡ଼ିଲା ଉଛବ ଉପରେ । ତାହାପରେ ସେ ଝିଅ ଉଦ୍ଦେଶ୍ୟରେ କହିଲା···

ଆଲୋ ଶିର, ମଉସାକୁ ପଚାରିଲୁ, ମହନ ସାଙ୍ଗରେ କଣ କାମ ଅଛି,···ତା' ହେଲେ ଖଣ୍ଡେ ମସିଣା ପକେଇ ଦେ ପିଣ୍ଡାରେ—ଏମିତି ଛୁଡ଼ା ଛୁଡ଼ା ହେଇଚନ୍ତି କାହିଁକି···

ଉଛବ ଦାଣ୍ଡରୁ କହି ଉଠିଲା—ମୁଁ ଯାଉଛି ଲୋ ମା, ସିମିତି ଖାଲି ବୁଲିଚାଲି ଆଇଥେଲି । ସଞ୍ଜବେଳ୍ଟୁଟାରେ ପାଣିରେ ଫେରେ ପଶିବାକୁ ହବ, ଆଉ ଡେରି କଲେ ହବ···

ବାସ୍ତବିକ ଏଥର ଚାଲିବାକୁ ଆରମ୍ଭ କଲା ଉଛବ । ଯାଉଁ ଯାଉଁ ଆଖି ତା'ର ଗାଆଁର ଅନ୍ୟାନ୍ୟ ଚାଳ ଉପରେ ପଡ଼ୁଥାଏ—ଯୁଦ୍ଧ ସମୟ, କିରାସିନି ଅଭାବରୁ ସମସ୍ତେ ଦିନ ଥାଉଁ ଥାଉଁ ରନ୍ଧାବଢ଼ା ସାରି ଦଉଛନ୍ତି, ସେଥିଲାଗି ସମସ୍ତଙ୍କ ଚାଳ ଉପରେ ଉଠୁଥାଏ ଧୂଆଁ । ଧୂଆଁକୁ ଚାହିଁ ଚାହିଁ ଉଛବ ଭାବୁଥାଏ—ଏ ଧୂଆଁ ସଙ୍ଗରେ ସହନି ନାଆକ ଘର ଧୂଆଁରେ ଯଥେଷ୍ଟ ପ୍ରଭେଦ—ଗନ୍ଧ ତା'ର ଦୋସରା ।

ସେ ଏକ ବିସ୍ମୃତ ଦିନର କଥା, କେଉଁଦିନ ଉଛବ ମାହାନ୍ତି କ ପୂର୍ବ ଲିଜକର ମୁହଁ ଉପରେ ଉଢ଼ୁଣା ଟାଣୁଥିଲା ମହନ୍ତିବୋଉ; ଆଜ କିନ୍ତୁ ଆଉ ତାହାର ମନେ ନାହିଁ । ତେବେ ନୁହେଁ ପ୍ରକାଶ୍ୟ କି ନୁହେଁ ଗୋପ୍ୟ ଏହିପରି ଭାବରେ ଚାଲେ କଥା । କିଛି ସମୟ ପରେ ମୁଣ୍ଡ ଉପରକୁ ଟିକେ ଲୁଗା ଖସେଇ ଦେଇ ପୁନର୍ବାର ଆସି ଦାଣ୍ଡକୁ ଚାହିଁଲା ମହନ୍ତିବୋଉ । ଦାଣ୍ଡରେ ଉଛବର ବର୍ଣ୍ଣ-ଗନ୍ଧ ନାହିଁ—କିନ୍ତୁ ତାର ସ୍ମୃତି ଅଛି, ସେଥିପାଇଁ ସେହିଠାକୁ ଅନେଇ ଅନେଇ ମହନ୍ତିବୋଉ କହି ଉଠିଲା···

ନଟେଁ କିଛି ଫିସାଦ ଅଛି ବୁଢ଼ାର—ନଇଲେ କାହିଁକି ଏତେ ଠିଆ ଠିଆ ମାରୁଥିଲା ଏଠି । ଏତେ କୁରୁରୂପ କରି କଣ ହବ, ଏତେ ନାଗି ନାଗି ଘେଟିକର ନାକଟ ପାରି ନେଇ; ଆଉ ଚୁଙ୍ଗୁଡ଼ି ଚିପିଲେ ମୁଣ୍ଡରେ ବାଳ୍, ଇଏ ପୁଣି ଆମର କଣ କରିବ ।···

ଗ୍ରୁମୁକରଣ, ମଲ୍ ମୋ ଗ୍ରୁମୁକରଣ । ଗ୍ରୁମୁକରଣ ତା' ଖଞ୍ଜଣା ଗଣ୍ଡାକରେ ନା, ସବୁ-ଥିରେ । ଆମର ଖୁସି ହେଲ୍ ଆମେ ପଠାଣ ସଙ୍ଗେ ମିତ ବସିଲୁ, ଏଥିରେ ତମ ଧିଏରେ କାହିଁକି ନିଆଁ ନାଗି ଯାଉଚ ? ଏମିତି ଗାଁ ଖଣ୍ଡେ ମୁଁ ଦେଶ ଦୁନିଆରେ ଦେଖି ନେଇଁ—କା ଛୁଙ୍କିଲ୍ କାଶିଲକୁ ଖାଲି କାନଢ଼େର ରଇଚନ୍ତି ଲୋ ମା···

କହି କହି କଳଣୀଠା ଖଡ଼୍ କରି ଦେଇ ଦେଇ ଦାଣ୍ଡର ଯାଉଁଳି କବାଟ ବନ୍ଦକରି ଦେଲ୍ ମହନିବୋଉ । ଏତିକବେଳେ ତାହାର ପାଟି ଶୁଣି ଆର ଖଞ୍ଜାରୁ ଡାକଦେଲ୍ ଧନିଆ ମା···

କଣ ଲୋ ଅପା ?

ପାଟି କରି କହିଉଠିଲ୍ ମହନିବୋଉ···

ଏଇ ଉଛବ ମା'ନ୍ତ—କେତେ ଥକା ଥକା ମାରି, କେତେ ଛୁଡ଼ାଛୁଡ଼ା ମାରି ଦାଣ୍ଡ-ଦୁଆର ଅନେଇ ଅନେଇ ଯାଉଚ । ଆକୁ ପୁଣି ଚୋକାଠା ବଳଦ ଦବ ଜମି ଚଷିବାକୁ । କହିଲେ କହିବ ବୁଢ଼ାଠା, ପୁଅ ତ ଯାଇଁ କଲକତାରେ ରଇଲ୍, ସିଏ ଚଳିବ ପୁଣି କେମିତି । ଚଳୁ ତ ନ ଚଳୁ, ଆମେ ସେଥିକି ନଗା !

ଆଇଲଣି ଲୋ ଅପା, ଆଇଲଣି । ନରୁଗା କଥା କହୁଚ ନା ?

ହଁ—ଆଉ କଣ ତୋ ବିଅର କଥା କଉଚ....

କହି ହସିଉଠିଲ୍ ମହନିବୋଉ ।

ଏତିକବେଳେ ସ୍ୱରକୁ ତାହାର ନାକ ବାଟେ ବାହାର କରି କହିଲ୍ ଶ୍ରୀମନ୍ତି—ରସୁଣ କେଇ ପାଖୁଡ଼ା ବାଟିବି ବୋଉ ?

ସନ୍ତୁଳି କରି ଖାଇବ ଇଏ, ଚୋକା ଖଣ୍ଡିକ ମତେ ସନ୍ତୁଳି କରି ଖାଇବ । ମୁଁ କଣ ତୋ ଶାଶୁଘରକୁ ଯିବି କି ଲୋ ! କାଲି ସକାଳେ ଘରଦ୍ୱାର କରିବୁ, ସାଗୁ-ଆଡି ବାଟଣ ଆଉରି ଶିଖେଇ ଦି ବସି ତତେ ।

କିନ୍ତୁ ଏଇ ସାଗୁଆଡି କଥାଟା ଠେଇଁ ଆସେ ଚମକ ପଡ଼ିଲ୍ ମହନି-ବୋଉ । ଯେମିତି ସେ କଥା ନହସରେ ଶ୍ୱେର ଆଗରେ ଦେଇ ଦେଲ୍ ନିଜ ଗୁପ୍ତଧନର ସମ୍ବାଦ । ଏହାପରେ ବାରିବାଟେ ବୁଲି ଧନିଆ ମା' ଆସି ସେଇ ଖଂଜାରେ ପହଞ୍ଚିଲ୍ । ହଠାତ ଗୋଡ଼ କଚୁଡ଼ ହୋଇ ଚଢ଼ ଉଠି କହିଲ୍ ମହନିବୋଉ···

ସବୁ ଏଇ ଝିଅ ମୂର୍ତ୍ତିଙ୍କର କାର୍ତ୍ତି । ଦଶ ଦଶଥର ବାରିକି ଦଉଡ଼ୁଥିବ···

ଏତେ ଆକଟ ମାନିବା ଝିଅ ନୁହେଁ ଶ୍ରୀମନ୍ତି । ବୋଉର ମତଲବ ବୁଝି-ପାରି ସେ ମସଲ ପୋଛୁ ପୋଛୁ କହି ଉଠିଲ୍···

ବେଶ ହେଲ୍, ଆଚ୍ଛା ହେଲ୍ ମୁଁ ବାରିକି ଗଲି ।

ତାହାପରେ ସେ ଚୁଲୀ ପାଖରେ ବସି ଧନିଆ ମା'କୁ ଦେଖେଇ ଚୁଲୀରେ କଡ଼େଇ ବସେଇ ସାଗୁଆଡି ସନ୍ତୁଳିବାକୁ ଆରମ୍ଭ କଲ୍ । ଖଡ଼କାଠାକୁ କନ୍ଦଡ଼ଇ ଭିତରେ ଖଡ଼ ଖଡ଼ କରୁ କରୁ ସେ କହିଲ୍···

ଧନିଆକୁ କଇବ ସେ ଶୋଇ ପଡ଼ିବ ନେଇ ଖୁଡ଼ୀ, ମୁଁ ତୁଣ ନେଇଯିବି —ଆମର ସାଗୁଆଡି ରନ୍ଧା ହଉଚ ।

ଦୋସର ରକମର ମଣିଷ ଧନିଆ-ମା । କୌଣସି କଥା ଦେହକୁ ନ ନେଇ ସେ ସରଳ ଭାବରେ କହିଲା...

ନାଇଁ ଅପା, ସେଇ ନୁରୁଗା କଥା କହିବାକୁ ଆଇଥେଲି...କଲକତାରୁ ଆଇଚ ଯେ, ସାଙ୍ଗରେ ଗୋଟା ତେମିଣୀ ଧିଡକରି ଆଇଚ ।

ଏ କଥାକୁ ଶ୍ରୀମତୀ ମନେକଲା ଭିନ୍ନ ପ୍ରକାର । ତାହାର ବୋଉ ଡେକଚକା କୁହେ ତେକଚ, ସେଥିପାଇଁ ସେ ତେମିଣୀ କ ଆଉ କଛୁ ମନେକରି କହି ଉଠିଲା...

ତେମିଣୀ କଣ ଖୁଡ଼ୀ, ଉମୁଣି,—ଯିଏ କବାଟରେ ନାଗେ । ମଲା, ଆଲୁ ପୁଣି କଲକତା ଗାଁ'ରୁ ବୋହି କରି ଆଣିଚ କାହିଁକ ?

ତାହାର ଗୁମର ସବୁ ପ୍ରକାଶ କରିଦେବା ହେତୁ ଆଗରୁ ରାଗ ଥିଲା ମହନା ବୋଉର ଝିଅ ଉପରେ । ବର୍ତ୍ତମାନ ଝିଅର ଏ କଥାରେ ଜଳି ଉଠି ସେ କହିଲା...

ତୋର କଣ ବଣ୍ ପଢ଼ିଚ ଲୋ ଆମ କଥାରେ କଥା କହିବା...

ତାହାପରେ କଣ ଭାବି ନରମ ହୋଇ କହିଲା...

ତୁ ସେଥିରୁ କଣ ପାଇବୁ ? ଦେ, ଗୁଣ୍ଡେ ଗୁଣ୍ଡେ ଗାନ୍ଧି ଦେ ! ...ଏଁ ନିଆଁ-ନଗା ନଡ଼େଇ ଗୋଟା କୋଉଠି ନାଗିଚ ଯେ—ମଣିଷ ଅନ୍ଧାରରେ କଲବଲ ହେଇ ମଲା । ...ପୁଣି ଭଉଣି, ତେଲ ବୋତଲକ ଟଙ୍କା, ନେ, କେତେ ଜାଳବୁ ଜାଳ, ଗୁର-ଚ୍ଛକର କରସିନ ବୋତଲକ ଟଙ୍କା ! ...ମିଳୁତ ନେଇ, ଫେର୍ ମିଳୁଚ କେମିତି ?

ଧନିଆ ମା ସହଯୋଗ କରି କହିଲା—ଟଙ୍କା ଦେଲେ ସବୁ ମିଳୁଚ ଅପା ।

ମୁଁ ତ ସେଇଥି ନାଗି କୁଏ ଲୋ ଭଉଣୀ, ଏ ନଡ଼େଇ ଫଡ଼େଇ କଥା ମିଛ, ଏ ସତ୍ତଆନାଣିଆଙ୍କର ଖାଲି କଉଡ଼ି ଖାଇବା କଥା ।

କେଜାଣି କାହିଁକି ବୋଉର କଥା ଉପରେ ପୁଣି ଦି' କଥା କହିବାକୁ ଶ୍ରୀମତୀର ପାଟି ଖଲ ଖଲ ହେଲା । ପିଲାଦିନେ ମାମୁଁ ଘରେ ଥାଇଁ ଦି' ଅକ୍ଷର ପାଠ ପଢ଼ିଚ ସିଏ । ଏ ଲଢ଼େଇ କଥାକୁ ସେ ମିଛ ବୋଲି ଭାବେ ନା । ସେ କହିଲା—

ଆଉ ତମେ ଜମା କଉଡ଼ି ଖାଉ ନା; କୋଉଦିନ ବରି ହରଡ଼ି ବକି ଆନକା ଗାଁରେ ଆଁଜୁଳା ଆଁଜୁଳା ଟଙ୍କା ଧିଡି ଆଉଥେଲ ସବୁ । ଶେଷରେ ପୁଣି ଗୁର ଚ୍ଛକର ଧଣିଆ, ତାକୁ ବି ଲୋକେ ଟଙ୍କାକୁ ଗୌଣିଏ ତିନି ପା'ରେ ବକଲେ ।

ଏ କଥାର ଆଉ କେହି ଉତ୍ତର ଦେଲେ ନି ଶ୍ରୀମତୀକି । ଶେଷକୁ ଦି ଯା' ଯାକ ପିଣ୍ଡା ଉପରେ ବସି କଣ ଫୁସୁର ଫାସର ହେଲେ । ଶ୍ରୀମତୀର କାନରେ ମାଂସ ସନ୍ତୁଳାର ଚଡ଼ ଚଡ଼ ଶବ୍ଦ ।

ଏମାନଙ୍କର ବ୍ୟବହାର ଏହିପରି । ସାଗୁଆଡି ଭୁଣ ଦେଖି ପକେଇବ ବୋଲି ଯେଉଁ ଧନିଆ ମା'କୁ ଅବହେଳା କରିବାକୁ ଭାବୁଥିଲା ମହନାବୋଉ, ସେ ପୁଣି ତା' ସଙ୍ଗରେ ବର୍ତ୍ତମାନ ଅତି ଅନ୍ତରଙ୍ଗ ଭଳି କରୁଛି ଆଳାପ । କୂଟନୈତିକ ସନ୍ଧି କେବଳ ସାମରିକ ରାଜନୀତିଜ୍ଞମାନଙ୍କ ଭିତରେ ଆବଦ୍ଧ ନୁହେଁ, ଏହି ନିରୀହ ଗ୍ରାମ୍ୟ ଲଳନାମାନଙ୍କ ଭିତରେ ମଧ୍ୟ ଦେଖିବାକୁ ମିଳେ ପ୍ରଚୁର ।

## —ଦୁଇ—

ଯେଉଁ ଦୁଇ ଛନଘର ବାଘୁଡି ଅଛନ୍ତି ନଈ ଉପରେ ଘର କରି ସେମାନଙ୍କ ସଙ୍ଗରେ ମଦନର ସଦ୍‌ଭାବ ଥାଏ । ଭାସ୍କର ନାୟକ ଏ ଗାଁର ଡାଲବର ଲୋକ । ବାଗ-ବଗିଚ୍ଚ, ସମ୍ପତ୍ତି ବାଡ଼ି ଅଛି ଅନେକ । ନିଜ ଗାଁ ଏବଂ ପାଖ କେତେ ଖଣ୍ଡ ଗାଁରେ ଦୁଇ ଚାରି- ଛ' ପଇସାର ଜମିଦାରୀ ମଧ୍ୟ ଅଛି । ଏହି ଗରିବ ଲୋକଗୁଡ଼ିକ ତାଙ୍କର ବଡ଼ ଲୋକୀର ଯେତେ ଆଜ୍ଞାଧୀନ ନୁହନ୍ତି, ତା ଠାରୁ ମଦନର ମୈତ୍ରୀ ବନ୍ଧନସୂତ୍ରରେ ଅଧିକ ସ୍ନେହାଧୀନ । ବିପଦ ଆପଦରେ ସେମାନେ ଠିଆହୁଅନ୍ତି ମଦନ ପାଖରେ, ନିଜର ସାହ-ଚର୍ଯ୍ୟ ଉନ୍ମୁକ୍ତ ରଖି ମଦନ ଠିଆହୁଏ ମଧ୍ୟ ସେମାନଙ୍କର ଅମାବାସ୍ୟା ତିଥିରେ···

ହାଡ଼ିଆ ମା ବାଘୁଡିଆଣୀ ମଦନର ମା' ସଙ୍ଗରେ ବସିଛି ଧରମ ମା । କିନ୍ତୁ ହାଡ଼ିଆ ମା ମଦନବୋଉକୁ ଡାକେ ମିତ-ମା । ପ୍ରବାଦ ଅଛି, ହାଡ଼ିଆର ବାପ-ମା କାଳେ ଏ ଅଞ୍ଚଳର ଲୋକ ନୁହନ୍ତି । ଆଉ ସେମାନଙ୍କର ଜନ୍ମଗତ କୁଳ ମଧ୍ୟ ନ ଥିଲା ବାଘୁଡି । ପୁଷ୍ପଶରଘାତରେ ଦୁଇଟି ଭିନ୍ନ କୁଳର ଯୁବକ-ଯୁବତୀ ଦେଶାନ୍ତରୀ ହୋଇ ଶେଷରେ ବାଘୁଡିରେ ପରିଣତ ହୋଇଯାଇଛନ୍ତି । ହାଡ଼ିଆ ମା ଏ ଅଞ୍ଚଳକୁ ଆସିଲା ବେଳେ ତାହାର ଭାଷା ଏବଂ ଭୂଷଣ ମଧ୍ୟ ଥିଲା ଭିନ୍ନ ପ୍ରକାର । କ୍ରମେ ତାହାର ରୂପା-ନ୍ତର ଘଟିଛି । ସେଥିଲାଗି ତାହାର ନିଜର କଥାରେ ମଦନବୋଉକୁ ହାଡ଼ିଆ ମା' ଡାକେ ମୀତ ମା, ମାନେ ପ୍ରୀତିର ମା । ଧର୍ମ ଅପେକ୍ଷା ମୈତ୍ରୀକି ସ୍ୱୀକାର କରିଛି ସେ ବେଶୀ ।

ହାଡ଼ିଆ ମଦନର ଏକାନ୍ତ ଅନୁଗତ । ବାଟରେ ନଈ କୂଳକୁ ଆସୁ ଆସୁ ତାହାର ଓସ୍ତାଠାଉଁ ଯେଉଁ ସବୁ କଥା ଶୁଣିଲା ମଦନ, ସେଥିରେ ସେ ଉଚିତ ମନେ କଲାନି ଜାଫର୍‌ର କାଠୁଆ ଖଣ୍ଡିକ ରାତି ସାରା ନଈ ବାଲିରେ ପକେଇ ରଖିବାକୁ ।

କଥାଟା ମଦନ କି କହିବାକୁ ଯାଉଁ ଯାଉଁ ଜାଫର୍ ପାଟିରୁ ବାହାରି ପଡ଼ିଲା ଖୋଲଟି ।···ଦୋସ୍ତ, ଆଜ୍ ମେରସାଥ୍ ତୁହ୍ମରା ଗୁମୁକରନ୍ କା ବହୁତ୍ ତକଲିଫ ହୋଗିଆ । ମେଁ ଗୋସ୍ ଲିତାଥା, ଓ ବର୍ ମେ ବୋଲ୍ ରହାଁ କି ତୁମ୍ ମୁଝେ ରୁପିଆ ଲେକ୍‌ର ଦେ ଦୋ ।

ଜାଫର୍‌ର ଧାରଣା ହେଲା ନାହିଁ ଯେ, ମଦନ ଆଗରେ ତା'ର ଖୋଲ୍‌ଟି କହିବା ଅନୁଚିତ ହେଉଛି । ମଦନ କିନ୍ତୁ ଏହି ପ୍ରଥମ ଥର ଜାଫର୍‌ଠାରୁ ଖୋଲଟି ଶୁଣୁ ନି, ଏମିତି ଅନେକ ସମୟରେ କୌଣସି ଉତ୍ତେଜନା ହେତୁ ଜାଫର୍ ଖୋଲଟି ପ୍ରୟୋଗ କରିଥାଏ ଏବଂ ତାହା ଶୁଣିବାକୁ ହୋଇଥାଏ ମଦନକୁ ।

ଜାଫର୍‌ର କଥାତକ ଶୁଣୁ ଶୁଣୁ ମଦନ କହିଲା···

କଣ କହିଲ ତମେ ?

ସେହି ପୂର୍ବର ଉତ୍ତେଜନା—କ୍ୟା, ମେଁ କ୍ୟା ଡରପୋକ୍ ହୁଁ, ମେଁ ସାଫ ସାଫ୍ ବତଲା ଦିଆ…

ଏହିଠାରେ ମଦନ ପାଟିରୁ ମଧ୍ୟ ଅପଷ୍ଟ ଉଚ୍ଚାରଣ ସହ ବାହାରି ପଡ଼ିଲି ଖୋଲଚି—କ୍ୟା ବତ୍ଲାୟା ?

ମେଁ ଗୋସ୍ ନେହି ବେଚ୍ତା, ଆଉର୍ ମୋଫତ୍ ଭି ନେହି ଦେଗା ତୁମ୍‌କୋ ।

ମଦନ ଗୁମ୍ ମାରିଗଲା କିଛି ସମୟ । ଆଉ ଯେ କିଛି ଘଟିଥିବ ଏତିକରୁ ସେ କେବଳ ଅନୁମାନ କରିନେଲା । ସେ ଅନେକ ଦିନୁ ଅନେକ କଥା ଶୁଣି ଆସୁଛି ଗୁମୁକରଣ ଭକାରି ମାହାନ୍ତଙ୍କ ଠାରୁ ଏଇଥିପାଇଁ, ଆଉ ଭକାରି ମାହାନ୍ତଙ୍କର ଚରିତ୍ର ମଧ୍ୟ ଭଲ ଭାବରେ ତାଙ୍କୁ ଜଣା ।

ତାହାପରେ ପ୍ରଶ୍ୱାସ ତ୍ୟାଗ କରି ମଦନ କହିଲା…

ଠିକ୍ କରିଛ, ସେ ହିଁସୁକୁଡ଼ାକୁ ଆଉରି ଦି କଥା ଶୁଣେଇ ଦେଇଥିଲେ ବି ଠିକ୍ ହୋଇଥାନ୍ତା ।

ସେତେବେଳକୁ ସୂର୍ଯ୍ୟ ଅସ୍ତ ହୋଇଗଲାଣି । ଗୃହଆଡ଼େ ଏକ ଅସ୍ପଷ୍ଟ ଆଲୋକର ସତ୍ତା ପୃଥିବୀର ଯାବତୀୟ ସତ୍ତାକୁ କଥଞ୍ଚିତ ପ୍ରକାଶ କରୁଛି ମାତ୍ର । କାଠୁଆ ଖଣ୍ଡକୁ ବାଲିରୁ ଉଠେଇ ଆଣିବାକୁ ଯାଇଁ ହାଡ଼ିଆ ଆଉ ରାଘବା ବାଘୁତି ଠିଆ ହୋଇ-ଛନ୍ତି, ପାଖରେ ଜାଫର୍ ଆଉ ମଦନ । ଜାଫର୍ କାଠୁଆ ଭିତରକୁ ଅନେଇ ଦେଖିଲା ସେଠାରେ ଆହୁଲା ଖଣ୍ଡିକ ଦେଖାଯାଉ ନି । ଗୃହଆଡ଼କୁ ଅନେଇ ଅନେଇ ଦୂରରେ ଦୃଷ୍ଟି ପକେଇ ସେ ମଦନ କି କହିଲା—ସେ ବୁଢ଼ାକୁ ଡାକିଲ… ।

ମଦନ ଦେଖିଲା, ଜହ୍ନାଖାଇ ଗଛ ସିଧାରେ ଲୁଗାଟେକ ପାଣିରେ ପଶି ଚାଲୁଚି ଉଛବ ମଉସା । ମଉସା, ମଉସା ବୋଲି ଡାକ ପକେଇଲା ମଦନ ।

କିଛି ଯେମିତି ତାକୁ ଶୁଭୁନି ଏହିପରି ଭାବରେ ଚାଲିବାରେ ଲାଗିଛି ଉଛବ । ଦଉଡ଼ ଯାଇଁ, କିଛିଦୂର ପାଣିରେ ପଶି ମଦନ କହି ଉଠିଲା…

କହେ, ସେ ଆହୁଲା ଖଣ୍ଡିକ ନେଇ ଯାଉଚ କାହିଁକି ?

ଓଠରେ ହସ ଟାଣି ମୁହଁ ବୁଲେଇ କହିଲା ଉଛବ…

ବୁଢ଼ାଲୋକ, ପାଣି ଚଷି ଯିବାକୁ କିଛି ନ ପାଇ ଏ ଖଣ୍ଡିକ ଧରି ଆଇଲି । କାଲି ସକାଳେ ମୁଁ କଣ ଆଣି ଫେରେଇ ଦେଇ ନ ଥାନ୍ତି । …ଆଚ୍ଛା, ନେ, ନେ, ତୁ ବି ଏତେ ବାଟ ଆଇଲୁଣି—ନୁଗା ପଡ଼େ ମୋର ତିନ୍ତୁ…ମୁଁ ଯେମିତି ଚାଲିଯାଉଚି ।

ମଦନ କେବଳ କହିଲା—ଆସିଲାବେଳେ ତମେ ଫେରେ କେମିତି ଆଇଥେଲ ?

ବୁଢ଼ା ଆଉ କଥା ଶୁଣିଲା ନି । ଆହୁଲାଟାକୁ ଏହା ଭିତରେ ଉଛବ ମଦନ ଆଡ଼କୁ ଫୋପାଡ଼ ଦେଇଛି । ତାହା ଠିକ୍ ମଦନର ପାଖରେ ନ ପହଞ୍ଚି ଟିକେ ଦୂର୍ ଛଡ଼ାରେ ପଡ଼ିବାରୁ ଭାସିଗଲା କିଛି ଦୂର ସୁଅରେ । ମଦନ ଆଉ କିଛି ଦୂର ଯାଇଁ ଧରି ପକେଇଲା ଆହୁଲାକୁ । ବୁଢ଼ାଠାରୁ କୌଣସି ଉତ୍ତର ପାଇବାକୁ ତାହାର ଆଉ ଆଗ୍ରହ ନ ଥିଲା ସେତେବେଳକୁ ।

ଏହାର କିଛି ସମୟ ପରେ ସେମାନେ ଫେରିଥିଲେ ଘରକୁ । ପଠାଣ ପିଲା ଜାଫର୍ ଅନେକ ଦିନୁ ଏଣ୍ଡ ହିନ୍ଦୁଘରେ ଅତିଥି । ମଦନର ବାପ ସପନ ନାଏକ ଥିଲା-ବେଳେ ତାହାର ଆତିଥ୍ୟ ଯେତେ ପ୍ରଭାବଶାଳୀ ନ ଥିଲା, ଏବେ ତାହା ହୋଇଛି ଅତି ଅଧିକ । ଦୁ'ବର୍ଷରୁ କିଛି ବେଶି ହେବ କାଳ ହେଲାଣି ସପନ ନାଏକର । ବାପ-ପୁଅ ଦୁହେଁ ଗାଡ଼ି ବୋହି, ହଳ ଚଷି କୌଣସିମତେ ଚଳି ଯାଉଥିଲେ । ବାପର କାଳ ହେଲା ପରେ ମଦନର ସବୁ ଦିଗ ଅନ୍ଧାର ହୋଇଗଲା । ତାହାର ସାହାଯ୍ୟ ପାଇଁ ଯେ ଜଣେ ଭିନଗାଁର ବିଜାତୀୟ ଯୁବକ ବଦାନ୍ୟତା ଧରି ଅପେକ୍ଷା କରିଛି ଏହା ସେ ଭାବି ପାରି ନ ଥିଲା ଆଦୌ । ସେତେବେଳକୁ ସେମାନେ ଓସ୍କା ବସି ନ ଥିଲେ, ସେମାନଙ୍କ ବନ୍ଧୁତା ହୋଇ ନ ଥିଲା ମଧ ଏତେ ପ୍ରଗାଢ଼ । କେବଳ ସେହି ଗାଡ଼ିଚଲା ବାଟରେ କେତେଥର ସାକ୍ଷାତ୍ । ଧାନମଣ୍ଡଳ ଷ୍ଟେସନରେ ଦୈବାତ୍ କେଉଁଦିନ ଭେଟିବା ଯୋଗୁ ହୋଇଥାଏ କେତେଥର ଆଳାପ । ଶେଷକୁ ସେହି ପଡ଼ାଗରପୁର ହାଟରେ ଦେଖା । ସେତେବେଳକୁ ଗାଡ଼ି ବୁହା ଛାଡ଼ି ଦେଇଛି ଜାଫର । ଆଉ ଚେହେରା ମଧ ତାହାର ହୋଇଯାଇଛି କେତେକାଂଶରେ ଭିନ୍ନ—ପ୍ରାୟ ସୌମ୍ୟ । ନାନା ଅସୁବିଧାରେ ପଡ଼ି ବାଧ ହୋଇ—ମଦନ ଛାଡ଼ିଥାଏ ଶଗଡ଼ବୁହା । ଚେହେରା ବି ତାହାର ପରିବର୍ତ୍ତିତ ହୋଇଥାଏ ଖରାପ ଭାବରେ । ସେ ବିକ ଯାଇଥାଏ ସାରୁ । ନଈକୂଳରେ ଯେଉଁ ଗୃଷ ଜମି ଦଶ ଗୁଣ୍ଠ ଥିଲା, ତାକୁ ସେତେବେଳକୁ ନିଲମରେ ନେଇ ସାରିଛନ୍ତି ଭାସ୍କର ନାୟକ । ଯାହାହେଉ, ବାଡ଼ି ଦୁ'ଗୁଣ୍ଠକୁ ଆଶ୍ରା କରି ସେ ଚଳପାରିଚି କେତେ ଦିନ । ମା' ତାହାର ମଧ ଖୁବ୍ ଦୁସ୍ସିଆର । ପେଜ ତୋରାଣି ପିଇ ପଛେ ପିଲା ମୋର ବଞ୍ଚନ୍ତୁ, କିନ୍ତୁ ଭଗାଣ ଦ୍ୱାରରେ ଠିଆ ନ ହେଉନ୍ତୁ ଯେପରି, ଏହା ଥାଏ ତାହାର ମତ ।

ତାହାପରେ ମଦନଠାରୁ ସବୁ କଥା ବୁଝି ଜାଫର୍ ଆସିଲା ଦିନେ ତାଙ୍କ ଘରକୁ । ସେତେବେଳକୁ ସ୍ଥିର ହୋଇଥାଏ ଯେ, କଳାଶିରର କାଦର ଖାଁ ନୂଆ ଘର ତୋଳୁ ତୋଳୁ ପାଇଚି ଦଶଗରା ଟଙ୍କା । କେହି ବା ଆହୁରି ବେଶି, କେହି ବା ଆହୁରି କମ୍, କେହି ବା ଟଙ୍କାକୁ ସୁନା ବୋଲି ମଧ କହନ୍ତି । କିନ୍ତୁ କାଦର୍ ଖାଁର ଅକ୍ଳାନ୍ତ ପରିଶ୍ରମ ଯେ, ତାକୁ ସୌଭାଗ୍ୟଶାଳୀ ନ କରିଥିବ, ଏଥିରେ ସନ୍ଦେହ କରିବାର କିଛି ନାହିଁ । ଭିତର କଥା ଯାହାହେଉ ପଛକେ, ଯେଉଁଦିନ ପାଞ୍ଚଶ ଟଙ୍କା ଖଟେଇ ଝିଣ୍ଟେ ଦୋକାନ କରି ପୁଅକୁ ବସାଇଦେଲା କାଦର ଖାଁ, ସମସ୍ତେ ବୁଢ଼ାକୁ ପୁଞ୍ଜିବାନ୍ ବୋଲି ବିଶ୍ୱାସ କରିବାକୁ ବାଧ ହେଲେ ।...ତାହାପରେ ଆସିଲା ବଙ୍ଗଳାର ଦୁର୍ଭିକ୍ଷ ଏବଂ ଯୁଦ୍ଧର ବଜାର । ଧାନ ବିରି ଚଣାକୁ ଛାଡ଼ି ମଧ ଦାଣ୍ଡର ଧୂଳି ବାଲି ବି ମୂଲ୍ୟ ଦେଲା ସେଥିରେ । ଆଗରୁ ରଖିଥିବା ଗୁଆ ଆଉ ଯୋରଷତେଲରେ ମଧ ମୂଳଧନକୁ ଅନେକ ଗୁଣରେ ବଳି ଯାଇଥିଲା ଜାଫର୍‌ର ଲଭ ।

ସେତିକି ବେଳେ, ସେହି ସମୟରେ ମଦନ ହାତକୁ ଜାଫର୍ ବଢ଼ାଇ ଦେଲା ଶହେଟଙ୍କା । ଅନେକ ବେଳଯାଏ ବିଶ୍ୱାସ କରି ପାରିଲା ନି ମଦନ, ତାକୁ ଗଣି ତ ପାରି-ଲାନି ଜମା !...ଓଃ, ଶହେଟଙ୍କା ସେ ହାତରେ ଧରିଚି । ଶହେ ଟଙ୍କା ! ତାହାର ଛାତି ଭିତରେ ଯେପରି ବୁଦ୍‌ବୁଦ୍ ଖେଳିଗଲା ଅନେକ । କେବଳ ଅସ୍ପଷ୍ଟ ସ୍ୱରରେ ସେ କହିଲା...ଜାଫର ଭାଇ !

ତାହାର ସହସା ମନେପଡ଼ିଲା, ଏଇ ଜାଫର, ସେଦିନ ଦୁର୍ଗନ୍ଧମୟ ଚମଡ଼ା ଗାଡ଼ିଧରି ଗୁହାଁରି ରହିଥିଲା ସିପୁରଘାଇରେ । ସେଦିନ ବାପାଙ୍କୁ ତାହାର କହିଥିଲି ଏଇ ଜାଫର୍, ସଚ୍ଚା ମଣିଷ ।

କି ସଚ୍ଚା ! କାହିଁକି ନଗେଇ ଦେଇଥିଲୁ ତା'ର ଗାଡ଼ିରେ ! କେତେ ଲୋକଙ୍କ ଗାଡ଼ିରେ ଦାଗିଚି ଏଇ କାହିଁ । କାହିରେ ହୁଏ ତ ବଣ୍ଟି ଗଡ଼ି ଉଠିଛି ଭିତରେ ! ···ଓଃ ପଚ୍ଚ ଚମଡ଼ାର ଗାଡ଼ି ବୋହିଲାବାଲା ଏଇ ଜାଫର୍ । ତା' ଭିତରେ ପୁଣି ଏତେ ବାସନା···ଏଥିରେ ଆମକୁ ସେ ପୁଣି କହିବ 'ସଚ୍ଚା'? ଏଇ ଗାଁ ଲୋକଙ୍କ ଭିତରେ ଆମେ ହୁଏ ତ ବଳେଇ କୁକୁରଙ୍କ ଠାରୁ ହୀନ ହୋଇ ପଡ଼ିଲୁଣି—ହାଡ଼ ଗୃଖଣ୍ଡିକ, ଧାନ ମୁଠାକ ଲାଗି ସବୁବେଳେ ଝଣାଓଝଗିଁ ! ଏ ପର୍ଯ୍ୟନ୍ତ ସେପାଖର ଧୋବଲି ଲୋକ ପଞ୍ଚାକ ନାକଟେକି ଆମକୁ କହୁଛନ୍ତି ଚଷା । ଭାସ୍କରବାବୁ ଘର ଏବେ ବି ଆମକୁ କହୁଚନ୍ତି, ଛୋଟ ଲୋକ ! ଏଥିରେ ପୁଣି ଆମକୁ ଜାଫର୍ କହିବ—ସଚ୍ଚା !

ଏଡ଼ା ସେହି ବିଗତ ଦିନର କଥା । ଏ ଚିନ୍ତା ଆଉ ମହନ ମନରେ ଆଜି ଆସେ ନା । ସେ ଯଥେଷ୍ଟ ଯତ୍ନ କରିଛି ଜାଫରର ସମକକ୍ଷ ହେବା ପାଇଁ ମନୁଷ୍ୟତ୍ୱରେ । ତାହାବାଦେ, ଯେ ତାହାର ବନ୍ଧୁର ଶହେ ଟଙ୍କା ଅବଲୀଳାକ୍ରମେ ଗଣି ପାରିଚି । ଆଉ ତାହାର ବନ୍ଧୁକୁ ସେହି ମୂଳଧନତକ ଫେରାଇ ଦେବା ପରେ ସେ ମଧ୍ୟ ଅବଶିଷ୍ଟ ଟଙ୍କା-ଗୁଡ଼ିକୁ ଖୁବ୍ ଭଲ ଭାବରେ ଗଣିପାରିଚି । ସେ ଭଲକରି ଗଣି ଦେଖିଚି, ସେହି ଶହେଟଙ୍କା ଜନ୍ମ କରିଛି ଦଶ ଶହ ଟଙ୍କା । ଆଉ ସେ ଭଲଭାବରେ ବୁଝିଚି, ତାକୁ ଟଙ୍କା ଗଣି ଶିଖେଇଚି ଜାଫର୍—ତାକୁ ଟଙ୍କା ପାଇ ଶିଖେଇଚି ଜାଫର୍ ।

ପୁଣି ସେ ଅନେକ ଥର ଭାବିଚି, ଏତେ ଟଙ୍କା ହେଲା କେମିତି ଏତକ ଟଙ୍କାରୁ ! ସେ କଣ ଆଉ ଚେଷ୍ଟା କରିଛି ଏ ଗୁଡ଼ା ? ସମସ୍ତଙ୍କ ଭଳି ସେ ତ ଟଙ୍କାରେ ଗୃହ ଗୌଣୀ ଧଣିଆ କିଣି ଗୌଣିକରେ ବିକନ୍ତି । କି ଓଲୁ ସେଇ ଲୋକଗୁଡ଼ାକ···। ତାକୁ ଏତେ ଶସ୍ତାରେ ବିକଦେଲେ କାହିଁକି ? ସେ ଭାବି ଭାବି ଠିକ୍ କଲା ଏଇଠି ତାର ଚେଷ୍ଟା । ଚେଷ୍ଟା ?···ସେ ପୁଣି ସଚ୍ଚା ମଣିଷ ହେଲା କେମିତି ?

ମନ ତାହାର କୃଷାଣ-ସୁଲଭ ସାରଲ୍ୟରେ ଆର୍ତ୍ତନାଦ କରି ଉଠିଲା—ଜାଫର ଭାଇ, ଏହା ଗୁହାଁ ପଚା ଚମଡ଼ା ଗାଡ଼ି ବୋହିବା ଆହୁରି ଭଲ । ତମେ କାହିଁକି ସଚ୍ଚାମଣିଷର କାମ ଗୁଡ଼ି ଦେଇଚ ଜାଫର ଭାଇ ?

ତାହାପରେ·ସେ ତାହାର ସବୁ ଟଙ୍କାଯାକ ଠୁଳେଇ ଦିନେ ଜାଫରକୁ ଡାକିଲା । ଭୟାର୍ତ୍ତ ସ୍ୱରରେ ସେ ଧୀରେ ଧୀରେ କହିଲା···

ଏସବୁ ଚେଷ୍ଟା । ଶୁଦ୍ଧୁ ଚେଷ୍ଟା ଜାଫର୍ ଭାଇ ! ଶହେଟାଟଙ୍କାରୁ କେମିତି ଦଶ-ଶହ ଟଙ୍କା ବଢ଼ିଲା ଜାଫର ଭାଇ ? ମୋର ହାତ ଗୋଡ଼ ଏ ପର୍ଯ୍ୟନ୍ତ ଚଳୁଚି, ମୁଁ ଖଟି-କରି ଖାଇବି ଜାଫର ଭାଇ । ମୁଁ ଶାଗ ପଟାଳି କରି, ସାରୁ କନ୍ଦମୂଳ କରି ପୋଷି ହେବି ଜାଫର୍ ଭାଇ । ନ ହେଲେ ମୁଁ ତମଘରେ ମୂଲ ନାଗିବି ଜାଫର୍ ଭାଇ, ଏ ଟଙ୍କା ସବୁ ତମର ।

ଅଟ୍ଟହାସ କରି କହି ଉଠିଲା ଜାଫର୍······

ଆଉ ସେଇ ଠଙ୍କାକର ସାରୁ କନ୍ଦମୂଳକୁ ବାବୁମାନେ ଯେତେବେଳେ ଚ୍ଚାରଣା ପଇସା ପକେଇ ଦେଇ ଚ୍ଲଯିବେ, କଣ କହିବୁ ତାଙ୍କୁ ?

ଫେର୍ ?

ଫେର୍ ଆଉ କଣ ? ଠଙ୍କା ଧରିଲେ ବୁଦ୍ଧି ଆପେ ଆପେ ଆସିବ । ତୁ କିଛି ପାଠ ପଢ଼ିଚୁ ମହନ ଭାଇ ?

କି ପାଠ ପଢ଼ିଚି ବୋଲି ସେ ଜାଫରକୁ କହିବ । ଭାଗବତ ଠିକେ ପଢ଼ି ବୋଲି ପାରେ । ଯୋଖିଯାଖି ହିସାବ ଠିକେ କରିପାରେ । ଖଣ୍ଡି ଅକ୍ଷରରେ ନାଁଟା ତା'ର ଠିକେ ଲେଖିପାରେ — ଏଇ ତ ! ଆଉ କ'ଣ ପାଠ ପଢ଼ିଛି ବୋଲି କହିବ ? ତଥାପି ସେଦିନର ପାଠ ବି ଆଜି ଏ ଗାଁରେ ଆଉ ନାହିଁ । ବାଦବିବାଦରେ ସେ ଚାହାଳୀଖଣ୍ଡିକ ଉଠି-ଯାଇଚି ଆଜି ଗାଁରୁ ।

ତାହାର ଉତ୍ତରକୁ ଅପେକ୍ଷା ନ କରି ପୁଣି କହିଲା ଜାଫର···

ହେଇ, ସେପାରି ମାହାନ୍ତି ବସ୍ତିଟା ଯାକ ପାଠପଢ଼ା ଲୋକ । କଣ କରୁଚନ୍ତି ସିଏ ? ଠଙ୍କା ଦେଲେ ତତେ ଫାଶିକାଠରେ ଝୁଲେଇ ଦବାର ବାଟ କରିଦେବେ ସାଙ୍ଗେ ସାଙ୍ଗେ ।

ଏହାପରେ ମହନ କେବଳ ନୀରବ ରହିଲା । କିଛି ସମୟ ପରେ ପୁଣି ସେ ଚମକି ଉଠି କହି ପକେଇଲା······

ତା'ହେଲେ ତମେ ମତେ ସଚ୍ଚା ମଣିଷ କହିବ କେମିତି ?

ଖୁବ୍ ତାନେ ହସିଉଠିଲା ଜାଫର୍ ।

ସେଥିରେ ତୋର ଫାଇଦା କ'ଣ ଭାଇ ? ଶିଗ୍ଗିକ ଗୋଟା ପଠାଣ ଘରେ ସାଦି କରିଦେଲେ ମୁଁ ଯଦି ସଚ୍ଚା ମଣିଷ ବୋଲି କହିବି, ତୁ କରିବୁ ?···ଯା, ଯା ଆରେ ବାକ୍ସ ଅଛି ନା ତମର ? ଭଲ କରି ଠଙ୍କା ରଖ । ତୋର ସାଦି ହେଇ ନାଇ, ଶିଗ୍ଗିର ବି ସାଦିଘର ହବ । ଜିନ୍ଦଗୀ ବି ଆହୁରି ଅଛି···ଆରେ ଆଉରି ଠଙ୍କା ଦରକାର···

'ହୁଁ' ଏତିକି କହି ଉଠିଗଲା ମହନ ।

## —ତିନି—

ଆଉ ପିଁପେଇ ଜାଳିବାକୁ ପଡ଼ିଲା ନି । ଛଟାଙ୍କିଏ ହେବ କିରାସିନ ଲୁଚେଇ ରଖିଥିଲା ମହନ ବୋଉ, ସେତକ ସେ ବାହାର କରି ଝିଅ ପାଖରେ ଦେଇ କହିଲା— ଦେ, ନଟକିଣିଟା ପୋଛି ସଫା କରି ଦେ । କଣ କହିବ ପୁଅ ଜାଫର୍, ଏମିତି ଘର କରିଚନି ଯେ ଠିକେ ଆଲୁଅ ନାହିଁ ପାଟିକି ହାତ ନବାକୁ ।

ତାହାପରେ ଫୁସ୍‌ଫୁସ୍ ହୋଇ ଝିଅ ପାଖରେ ଆସି କହିଲା···ଆଲୋ, କୋଉ ଥିରେ ଖାଇବ କହଲେ ଜାଫର୍ ?

ସେତେବେଳକୁ ଲଣ୍ଠନ୍ ଲଗେଇ ସାରିଛି ଶ୍ରୀମନ୍ତ । ଚକ୍‌ଚକ୍ ଦିଶୁଚି ତାହାର ନାକର ଲୋଳକ ଆଉ ମରଚ, ଆଳୁଅ ବାଜି ଗାଲଟା ଦିଶୁଚି ସୁନ୍ଦର । ସ୍ଖେଟ ଝଙ୍କାର ତୋଳି କଥାରେ ସେ କହିଲା···

କଇ, ମଣିଷ ଯୌଉଥିରେ ଖାଆନ୍ତି···

ଆଲୋ, ତମକୁ କଣ ଧରମ ଗ୍ଛଡ଼ିଗଲା ନା କଣ ଲୋ ! ଥରକୁ ଥର, ଥରକୁ ଥର, ତମେ ଏମିତି କଲ । ପିତୃପୁରୁଷ ତ ଆଉ ପିଣ୍ଡପାଣି ପାଇବେନେଇଁ ଆମ ହାତରୁ, ଆଉ ମଲେ ବି ଟିକେ ଭାଇ ଭଗାରିଏ ଛୁଇଁବେ ନେଇଁ ଯେମିତି ତମେ ତାର ବାଟ କରି ଦେଇଗଲ ? ଶୁନୁକୁ ତ ସେ ଆଉଚି ଯାଉଚି ବୋଲି କେତେ ଫୁସୁରୁ ଫାସର୍···କେତେ ଆଖିଠାର୍···ଆଉରି ସେଥିରେ···ଆଲୋ, ତୁ ଏମିତି କାହିଁକି ସେ ପଠାଣ ନାଆଁରେ ଗୋଡ଼ ଠିଆ କରିବୁ କଲୋ ?

କେତେ ଗମ୍ଭୀରକୁ ଯେ ଗ୍ଳଲିଯାଉଚି ଏ କଥା ମହନବୋଉ ବୋଧହୁଏ ଭାବିପାରିଲା ନାହିଁ । ଦୁଃଖ ହେଲା ଶ୍ରୀମନ୍ତର — ପାଟିରେ ଲୁଗା ଗୁଞ୍ଜି ଶେଷକୁ କେବଳ ସେ ହସିବାକୁ ଲଗିଲା । ଏହି ସମୟରେ ତା ଭିତରେ ଯେପରି କିଏ କହିଲା···

ଜାଫର୍ ଭାଇ, ତମ ନାଁରେ ବୋଉ ମତେ କଣ କହୁଚି ଶୁଣୁଚ ? ଭାଇ, ବୋଉ ଭାରି ଦୁଷ୍ଟ, ତମେ ଜମା କିଛି ବୁଝ ନା, ମୁଁ ଆଜି ଖାଇବାକୁ ଦେବି ନି ଜାଫର୍ ଭାଇକି କହି ଦଉଚି ଏକା··· !

କେତେବେଳେ ପୁଣି କଣ ଭାବି କହିଲା ଶ୍ରୀମନ୍ତ···

କି, ବାବୁଘରେ କେମିତି ପଠାଣ ଦାରୁଗା ଆସି ଖାଇ ଦେଇ ଯାଉଚି । ସେଥର ପୁଣି ବାବୁଙ୍କର ରୂପା ବାସନରେ ଖାଇବାକୁ ଦେଲେ ସେଇ ପଠାଣ ଦୋପଟିକି ଯିଏ ଆଇଥେଲା ଯାଜପୁରୁ ।—ଓଃ ଖାଲି ଜାଫର୍ ଭାଇ ନିଆରା !

ମହନବୋଉ ତାହାର ମନକୁ ବୁଲେଇ ନେଇ କହିଲା—କୋଉ କଥା ହଉନେଇଁ ଏ ଗାଁ'ରେ । ସେକର ନା'କ କଥା ଆଉ କ' ନାଁ, କୋଉ କଥା ସିଏ ନ କରୁଚି ତା' ଧିଆନ୍ତକରେ । କୋଠାଘର, ସଫା ନୁଗା, ସବୁ କଥା ଯାଉଚି ସେଥିରେ ନୁଚ । ସେଦିନ ସେମିତି ନୁସୁଗାଁରୁ ଆଇଥେଲା କିଏ ଗାନ୍ଧୀ ବାଲା, ସମସ୍ତେ ବସି ଏକାଠି ଖାଇଲେ, ସେକଉ ବି ଖାଇଲା ତାଙ୍କ ସାଙ୍ଗରେ । ଖାଲି···

ମହନବୋଉ କେତେ ଗୁଡ଼ିଏ ପଦର ଆଦ୍ୟ ଅକ୍ଷର ପରିବର୍ତ୍ତିତ କରି ଉଚ୍ଚାରଣ କରେ । ତାର ଶଶୁର ନାଁ କାଳେ ଥିଲା ଭାଗବତ, ସେଥିଲାଗି ସେ ଭାସ୍କର ନାୟକଙ୍କୁ କୁହେ ସେକର ନା'କ । ଆଉ ତାହାର ବହୁପୂର୍ବରୁ ମରିଯାଇଥିବା ଦୁଇ ଦେଢ଼ଶୁରଙ୍କ ନାଁ ଥିଲା କାଳେ କୃଷ୍ଣ ଆଉ ପୁରସ୍ତମ । ସେଥିପାଇଁ ସେ କୃଷ୍ଣକୁ ନୁଷ୍ଟ କହେ । ଆଉ ପୁରସ୍ତମକୁ ନୁରସ୍ତମ କହିଲେ ମଧ୍ୟ କୁସୁନପୁର ଉଚ୍ଚାରଣ କଲା ବେଳେ ସେ ନୁସୁନପୁର ନ କହି ତାହାକୁ ନିଜର ବଗୃହରେ ଶ୍ରୁତିମଧୁର କରି କହେ ନୁସୁଗାଁ । ସେହିପରି 'ଧନିଆ ମା', ତାହାର ସ୍ୱାମୀ ଦୁର୍ଗାଚରଣ ବୋଲି ସେ ଦୁରୁଗାକୁ କହେ ନୁରୁଗା । ଏହିପରି କେତେ ଶବ୍ଦ ଯେ ଏମାନେ ନୂଆ ନୂଆ ତିଆରି କରନ୍ତି ତାହା ଶୁଣିବାର କଥା, ଉପଭୋଗର କଥା ମଧ୍ୟ । ବୋଧହୁଏ ଗୋଟିଏ ବହୁଭ୍ରାତୃକ-

ପରିବାରର ସବା ସାନ ବୋହୂ ଏଥିପାଇଁ କୌଣସି ବନ୍ଧ ପଡ଼ିପାରିବ ନାହିଁ ଶେଷକୁ, ପଦେ ସେ ପାଠ ପଢ଼ିଥାଏ ।

କିଛି ସମୟ ପରେ ପାଖକୁ ଲଗି ଆସି ମହନ୍ତ ବୋଉ ଝିଅକୁ ପଚାରିଲା···

ଆଲୋ, ଶିରି, ଜାଫର୍ କୁଆଡ଼େ ଗୋଟା ଅବଖୁରରେ ଅବଖୁରାଏ ସୁନା ମୋହର ଦେଇଚି ମୋ ପୁଅକୁ ।···ତଳ ସାଇ ରଜମା କଉଥିଲା···

ଏହିଠାରେ ଝିଅର ଜିଜ୍ଞାସାପୂର୍ଣ୍ଣ ଆଖିକି ଚାହିଁ ମହନ୍ତବୋଉ ବୁଝେଇ କହିଲା ପରି କହିଲା···ଆଲୋ ରଜମା ମ, ମଲ୍ ସେଇ ଯୋଉ ଟୋକୀଟା—ଧରମା ସାଙ୍ଗରେ ନଟଘଟ ହେଉଥିଲାମ ସିଏ···ଏଇକ୍ଷିଣି ବାବୁଘରେ କାମ କରୁଚି···

ସଳଖି ବସି ଜୋର୍‌ରେ ପଚାରିଲା ଶ୍ରୀମତୀ—କଣ କଉଥିଲା ?

ଦବ ପାଇଁ ମହନ୍ତବୋଉ କହିଲା···ମଲ୍, ତୁ ତ ମତେ ଖାଲି ଖେଦି ବସିବୁ···ଆଲୋ, ତମେ ଭାଇଭଉଣୀ ଦହେଁ ମୋ ଉପରକୁ ଏମିତି କାହିଁକି ହୁଅ ! ତମର ଭଲ ହେଲେ ମୋର କେତେ ସୁଖ ତମେ କଣ ବୁଝ ନା···

ହଁ, ତୋର ଯୋଉ ପାଟି, ନୁଣ ରୁଆଟା ବି ମିଳେଇବ ନେଇଁ, ନଇଲେ କାଇଁକି,···ମା'କୁ କଏ ନୁଚ୍ଚଏ !

ତାହାପରେ ସ୍ୱର ବଦଳେଇ କହିଲା ଶ୍ରୀମତୀ···

ହଁ, ହଁ, ଭଲ ହେଲା ସିଏ ଆମକୁ ସୁନା ଗଡ଼ୁଏ ଦେଲା । ସୁନା ଦେଲେ କେତେ ନା, ରୂପା ଦେଲେ କେତେ ନା, ଖପର ଦେଲେ କେତେ ।···ତାଙ୍କର ସେଥିରେ କି ବଶ୍ ପଡ଼ଚି···

ଝିଅର ଏ ଢଙ୍ଗ ଦେଖି କିଛି କହିଲା ନାହିଁ ଆଉ ମହନ୍ତବୋଉ । କେବଳ ମନେ ମନେ କହିଲା···କୋଟି ପରମାୟୁ ହଉ ଜାଫର୍‌ର ! ଭଗାଣଙ୍କ ଆଖି ଫୁଟିଯାଉ ମୋ ପୁଅର ବଢ଼ନ୍ତ ଦେଖି ।

ପୁଣି କେତେ ବେଳକରେ ଝିଅକୁ କହିଲା···ଆଲୋ ଶିରି, ତୁ ସେମାନ ଦେଖିଚୁ ନା, କଣ, ଖାଲି ଟଙ୍କା ଭଳିଆ ତ···ସିଏ ସୁନାରେ ହେଇଥିବ···

କଣ ଭାବୁ ଭାବୁ ଶ୍ରୀମତୀ ଅନ୍ୟମନସ୍କ ଭାବରେ କହିଲା—ହୁଁ ।

ବାହାର ଦୁଆରେ ଡାକଦେଲା ମହନ୍ତ । କବାଟ ଫିଟେଇବାକୁ ଉଠି ଯାଉଥିଲା ଶ୍ରୀମତୀ । କଣ ଭାବି ନେଉଣି ପଡ଼ କହିଲା···ବୋଉ, ତୁ ଯା ।

ଝିଅକୁ ଅନେଇ ଅନେଇ ମହନ୍ତ ବୋଉ ଚାଲିଗଲା ନନ୍ଧା ନନ୍ଧା କବାଟ ଫିଟେଇ ଦେବାକୁ ହାତରେ ଲଣ୍ଠନ୍ ଧରି ।

ଆଗରୁ ସୋରିଷଫୁଲ ରାଇତା ଆଉ ବରି ଡାଲି କରିଥିଲା ଶ୍ରୀମତୀ । ତାହାପରେ ଟିସ ରାନ୍ଧିଛି ଜାଫର୍ ଆଣିଥିବା ସାଗୁଆଡ । ଭାତ ବାଢ଼ୁ ବାଢ଼ୁ ସେ ଭାବିଲା, ସୋରିଷଫୁଲର ରାଇତା ଦବ କି ନାହିଁ । ନ ଦେବାକୁ ଠିକ୍ କରି କେବଳ ଡାଲି ଆଉ ମାଂସ ତରକାରି ବାଢ଼ିଲା ।

ବାଟ ଘରର ନଙ୍ଘାକୁ ଲଗି ଯେଉଁ ଷ୍ଟୋଟ ବଟ୍ଟନ୍କଆ ଦରଟି, ତା'ର ପିଣ୍ଡାରେ ଖାଇ ବସିଲେ ଜାଫର୍ ଆଉ ମହନ୍ନ। ବାରପାଖର କବାଟକୁ ଭଲ କରି ଦେଇ ଆସିଲ ମହନ୍ନବୋଉ୍।

ମାଂସ ତରକାରି କପର ଭାବରେ ଭଲ ହେବ ଏହା ଆଗରୁ ଜାଫର୍ ଏଠି ବତେଇ ଦେଇଛି। ସେଥିପାଇଁ କେତେକ ମସଲା ମଧ ଆଣିଦେଇଛି···ଦୂର ଛଡ଼ାରେ ଦହେଁ ବସି ଖାଉଥାନ୍ତି। ଖାଉଁ ଖାଉଁ ମହନ୍ନ କହିଲା—

ସୋରଷଫୁଲ ଗଇତା ଦେଲୁ ନେଇଁ···?

ସରମରେ ରଙ୍ଗା ଚଢ଼ଯାଇଁ ଦୁଇ ଖଣ୍ଡ ଷ୍ଟୋଟ ରେକାବିରେ ଗଇଠା ନେଇ ଥୋଇଲା ଶ୍ରୀମଣ୍ଡି। ଜାଫର୍ ଅନେଇ ଅନେଇ ହସିଦେଇ କହିଲା ଶ୍ରୀମଣ୍ଡିକ···

ତୁ ଠିକ୍ କରିଥେଲୁ ଶିର, ଗୋଷ୍ ପାଖରେ ଏ ଗଇତା ବଦନ୍ନଶ୍ କୁଣ୍ଡ।

ଦୂରକୁ ଅପସରି ଯାଇ ଗୋଟିଏ ଖୁଣ୍ଟକୁ ଭରା ଦେଇ ହସି ହସି ନରମ ସ୍ୱରରେ କହିଲା ଶ୍ରୀମଣ୍ଡି···ତମେ ଆଉ ଗୋଷ୍ କହିବ ନେଇ ଜାଫର୍ ଭାଇ।···ହଁ, ଆଉ ସାଗୁଆଡ଼ୁରୁ ହାଡ଼ ବାହାରଲେ କହିବ କଣ୍ଡା।

'ଆଚ୍ଛା, ଆଚ୍ଛା, ସ୍ୱାଦ୍ ରଖିବ,···କହି ଥରେ ଶ୍ରୀମଣ୍ଡିକ ଚୁହିଁଲ ଜାଫର୍।

କଛି ସମୟ ପରେ ମହନ୍ନର ମନରେ ଆତ୍ମପ୍ରକାଶ କଲ କେତେକ ଚନ୍ତା। ଏହି ମୂର୍ଖ, ଅଧଃପତିତ କ୍ଷତ୍ରିୟ ଯୁବକର ମନରେ ଦୃଢ଼ୀଭୂତ ହେବାକୁ ଲଗିଲା ଅଷ୍ଟତର ଏକ ମନସ୍ୱୀ ନରପତିଙ୍କର ସତ୍ୟ। ସେ ଇତିହାସ ପଢ଼ି ନାହିଁ। ହୁଏ ତ ସେ ଜାଣେ ନା, ଆମର ପ୍ରଗତିପର ଜୀବନ ପାଇଁ କଣ ଲୋଡ଼ା। ହିନ୍ଦୁ-ମୁସଲମାନ ଐକ୍ୟ ମଧରେ ଆଉ କ ମହତ୍ତର କାର୍ଯ୍ୟ ସାଧିତ ହେବ ସେ ମଧ ଜାଣେ ନା। ହୁଏ ତ ତାହାର ଦେଶ କମ୍ବା ବୃହତ୍ତର ପରସ୍ଥିତି ସମ୍ବନ୍ଧରେ କୌଣସି ଧାରଣା ନାହିଁ। ତଥାପି ସେ ଭାବିଲା—ତାହାର ସାଂପ୍ରତିକ ପରସ୍ଥିତି ଭିତରୁ ଯେଉଁ ସତ୍ୟର ଅନୁଭୂତି ସେ ସଂଗ୍ରହ କର ପାରଥିଲା, ତାହାର ସାହାଯ୍ୟରେ! ସେ ଭାବିଲା, ହେନେ ଯାହା ନିରକ୍ଷର ବିଖ୍ୟାତ ବାଦ୍‌ଶାହ ଆକ୍‌ବର ଭାବିବାକୁ ବାଧହୋଇଥିଲେ ଘଟନା ଚକ୍ରରେ ପଡ଼ି। ଆକ୍‌ବରଙ୍କ ନୂତନ ଧର୍ମ 'ଦୀନ୍‌ଇଲ୍ଲାହୀ'ର ନାମ ତା' ପାଖରେ ନିପଟ ସ୍ୱପ୍ନ—ତଥାପି ତାହାର ଅସଂସ୍କୃତ ଚନ୍ତା ସହ ସେ ଭାବିଲା, କୌଣସି ଏକ ନୂତନ ପନ୍ଥା, ମହତ୍ତର ଅବଲମ୍ବନ ଆବଶ୍ୟକ ଆମର ଜୀବନ ଧାରଣ ପାଇଁ।···

ଏହି ସମୟରେ ବ୍ୟାହତ ହେଲା ତାହାର ଚନ୍ତା ଜାଫର୍‌ର ବାକ୍ୟ ଧ୍ୱନିରେ। ଜାଫର୍ ଉତ୍ତେଜନା ସହ କହୁଚ···ଆମେ ଦୋନୋ ଦୋସ୍ତ, ଚୁଲ ଆମେ କୋଉଠି ଯାଇ କରି ନୟା ସଂସାର ବନେଇ ନବା। ଏ ଆଦ୍‌ମି ଲୋଗ୍ ସବ୍ ବଗଡ଼ ବାଜ୍‌ହେ।

ଆଉ ଥରେ ମାଂସ ଝୋଳ ହାପୁଡ଼ ନେଇ ପୁଣି କହିଲା ଜାଫର୍···

ଏକ୍‌ଠୋ ନକର୍ ଶୁନୋ ଓସ୍‌କା! ଆରେ ମୋ ଦୋକାନ ତ କେନାଲ୍ ବନ୍ଧ ଓପରେ। ଏ ଜୋ ଲୁସୁନ୍‌ପୁର୍‌କା ଗଜୁ ବାବୁ ହେ ନ—କଂଗ୍ରେସ୍‌ବାଲା, ଥୋଡ଼ା ଦନ୍ ଖଡ଼ଗ୍‌ପୁରେ ଆଶ୍ରମ ବସେଇ ଥେଲେ; ଓଇ ମେରା ଦୋକନ୍‌ମେ ଏକବ୍ରେଜ୍ ବୈଠ୍ ରହେଁ ଥେ। ଆରେ କ୍ୟା ହୁଆ ନା, ଆମ ଗାଁରେ ଏ ଜୋ ସାମଲ୍ ହେନ—ଭୋବ୍‌ନ

ବାବୁ, ଓଭି ବେଠ୍ ରହା ଥା । ଉସ୍ ବଖତ୍ ତମ ହିନ୍ଦୁଙ୍କର କଣ ପର୍ବ ଦିନ୍ ଥା ।···ହିଁ, ହିଁ, ମାଣ୍ ବସା । ଓ ଜୋ ଗୟାହେ ଥୋଡ଼ା ଦିନ୍ ବାଦ୍ । ହିଁ, ଏତିକବେଳେ ଆମ ଗାଁର ଜଣେ ପାଣ ଆସି ସଉଦା ନେଇ ଗଲା ମୋ ହାତରୁ । ଉସ୍କା ବାଦ୍ ଘେଵ୍ନ ବାବୁ ନେଲେ ମୋ ହାତରୁ ଗୁଡ଼ ଏକ୍ ସେର୍ । ଇସ ବଖତ୍ ଓଇ ରାଜୁ ବାବୁ କଲେ ଏକ୍ ମଜା । ଓଇ ପାଣକୁ ଡାକ କର ଧରଲେ ଏକ ହାତରେ, ଆଉ ଆରହାତରେ ଧରଲେ ଘେଵ୍ନବାବୁକୁ । ବେଚରା ତ ରାଗିକର ଲାଲ । ଏଇ ହାଲ୍ । କ୍ୟା ସମ୍-ଜାଓଗେ ବୋଲ । ମୁଁ ପାଣୁକୁ ଛୁଇଁଲ ମତେ ଛୁଇଁ ସେ ଗୁଡ଼ ନେଲେ ହେଲା ନେଇଁ ଖରାପ ; ଆଉ ରାଜୁବାବୁ ପାଣକୁ ଧର ତାଙ୍କୁ ଛୁଇଁଲେ ହେଇଗଲା ସବ୍ ମାରା ! ଓ ପାନ୍ ଭି ତୋମ୍‌ହରା ହିନ୍ଦୁ ହେ । କ୍ୟା ସମ୍‌ଜାଓଗେ ବୋଲ !

ଆଉ ଥରେ ଭାତ ଦେଇଗଲା ଏତିକବେଳେ ଶ୍ରୀମତୀ । ଜାଫର୍ ହାତ ଘୋରେଇ ନାହିଁ ନାହିଁ କରୁ କରୁ ଗରମ ଭାତ ପଡ଼ିଗଲା ତା'ହାତ ଉପରେ । ଦୁଃଖିତ ନ ହୋଇ, ଠୋ ଠୋ ହୋଇ ହସିଉଠିଲା ଜାଫର୍ ।

ମହନ ଆଉ କିଛି ଭାବି ପାରୁ ନ । ତାହାର ସାମାନ୍ୟ ମସ୍ତିଷ୍କ ଭିତରେ ଜାଫର୍‌ର କଥାଗୁଡ଼ାକ ଖାଲି ବାଁ କାଳିଆ ଦେଇ ବୁଲିଲା । ସେ କେବଳ ଦେଖିଲା, ଠୋ ଠୋ ହୋଇ ହସୁଚି ଜାଫର୍, ଆଉ ପସୁଣୀ ଖାଲି କର ଓଠରେ ହସ ଚାପି ଚାଲିଯାଉଚି ତାର ଭଉଣୀ । ମହନ ଟିକେ ଅସନ୍ତୁଷ୍ଟ ହେଲା ସେଥିରେ ।

ଏହା ପରେ ମହନର ମନେ ପଡ଼ିଲା ସେଦିନ ଜାଫର ସଙ୍ଗରେ ଓସ୍‌କା ବସିବା ବେଳର କଥା । ସପନଶର ମହାଦେବ ପାଖକୁ ମହନ ଯାଇଥାଏ ଅଶୋକାଷ୍ଟମୀ ଦେଖି । ନଈ ସେ ପାଖରେ ବାଟ କୋଶେ ପାଞ୍ଚପା ହେବ ସପନଶର । ସେ ପହଞ୍ଚି ଦେଖିଲା, ଆଉ କେତେ ପଠାଣ ଟୋକାଙ୍କ ସଙ୍ଗରେ ଜାଫର୍ ବୁଲୁଚି ବେଢ଼ା ଆଗର ବରଗଛ ତଳେ ଚଣାଭଜା ଚୋବେଇ । ମହନ ଗେଲେରେ ପଚାରିଲା ଜାଫର୍‌କୁ···

କି, ତମେ କେମିତି ଜାଫର୍ ଭାଇ ?

ଜାଫର୍ ହସି ହସି ତାକୁ କହିଲା···କି ଚଣାଭଜା, ଉଖୁଡ଼ାମିଠେଇ ଖାଇବାକୁ ।

ଏହାର କିଛି ସମୟ ପରେ ମହନ ଦେଖିଲା, ସେ ଗୋଟା କାଠର ପାତି-ମାଙ୍କଡ଼ କିଣୁଥାଏ ସେତେବେଳେ ତାହାର ଦାଦପୁଅ ଧନିଆ ପାଇଁ, ବେଢ଼ା ଭିତରକୁ ପଶିଆସୁଚି ଜାଫର୍ । ମହନର ସେତେବେଳେ ମନେହେଲା, ତାହାର ଟଙ୍କା ଯାକ ସବୁ ପଛେ ସେ ଫୋପାଡ଼ି ଦିଅନ୍ତା କିଂତୁ ଏକଥା ପ୍ରକାଶ କରିଦେଇ, ଧକ୍କା ଦେଇ ବାହାର କର ଦିଅନ୍ତା ଏଇ ପଠାଣ ଟୋକା ଜାଫର୍‌କୁ ମହାଦେବଙ୍କ ବେଢ଼ା ଭିତରୁ ।

ଏତିକବେଳେ ପଇସା ମାଗିଲା ତାକୁ ଦୋକାନୀ; ପଇସା ଦେଇ ସାରି ସେ ଦେଖିଲା, ଦୂରରୁ ତାକୁ ଡାକ ପକେଇଚି ଜାଫର୍, ହାତରେ ତାର ପେଣ୍ଠାଏ ନାଲି-ହଳଦୀ ଫୁଲ । ଯେଉଁଠି ବଣିଚ କଣ୍ଠା ବକୁଚି ମୟୂରୁ, କଡ଼ା ଖେଳ କରୁଚି ମ୍ୟାକୁବ୍, ସେଇଠି ଯାଇଁ ଛିଡ଼ା ହୋଇଛି ଜାଫର୍ ।

ମହନ୍ତଙ୍କ ଧରି ପାଖ ପଡ଼ିଆ ଭିତରକୁ ନେଇଗଲା ଜାଫର୍ । ମହନ୍ତଙ୍କ ସେ କହିଲା···କି ଫୁଲ ଏ କହିଲ ?

ମହନ୍ତ ଦେଖିଲା, ବେଡ଼ା ଭିତରକୁ ଯାଇଁ ଓସ୍କା ଫୁଲ ତୋଳି ଆଣିଛି ଜାଫର୍—ଖୁବ୍ ତ ସାହସ !

ମହନ୍ତର ଉତ୍ତର ନ ପାଇ ଜାଫର୍ କହିଲା···ଓସ୍କା ଫୁଲ, ତମର ମାପର୍ସ୍ବାଦ୍‌ରେ ଆମେ ସଙ୍ଗାତ ବସିପାରିବା ନେଇଁ—ଆମେ ଏଇଥିରେ ବସିବା ଓସ୍କା ।

ମହନ୍ତ ଆଉ କିଛି ଭାବିପାରିଲା ନାହିଁ।···ତାହାର କେବଳ ଧାରଣା ହେଲା, ବାସ୍ତବିକ୍ ସେ ସଚ୍ଚା ମଣିଷ ନୁହେଁ । ଏହା ଆଗରୁ ସେ କଣ ଭାବୁଥିଲା ଜାଫର୍‌କୁ !

ତାହାପରେ ଅଶୋକ କଡ଼ିରୁ ଗୋଟିଏ ଛିଣ୍ଡାଇ ଜାଫର୍ ଖୋଇଦେଲା ମହନ୍ତ କୁ, ମହନ୍ତ ଖୋଇଦେଲା ଜାଫର୍‌କୁ । ଜାଫର କଲା ସଲାମ୍, ମହନ୍ତ କଲା ଦଣ୍ଡବତ ।

ସେହି ଜାଫର୍, ଯାହାର ଅନୁଗ୍ରହରୁ ମୁଁ ଆଜି ବିରୂପାର ବାଲିକଣାଠାରୁ ସ୍ବତନ୍ତ୍ର ହୋଇ ପାରିଛି, ଯେଉଁ ଜାଫର୍ ଏତେ ମହତ୍, ମୁଁ ତାହା ପାଖରେ କି ଭଲ ବ୍ୟବହାର ଦେଖେଇ ପାରିଛି ? କୋଉ କାଳର କଥା, ମୋର ବି ଆଜି ମନେ ନାହିଁ ତାହାର ଗାଡ଼ିରେ କାନ୍ଧ ଲଗେଇ ଦେବାର କଥା । ସେହି କାମକୁ ଦୁନିଆରେ କେହି କେବେ କଣ ମୂଲ୍ୟ ଦେବାକୁ ଯାଇପାରେ ? ଆଉ ମୁଁ ହିନ୍ଦୁ, ମୁଁ ପଠାଣ ଜାଫର୍‌କୁ ମୋ ଘରେ କୁଣିଆ କରିପାରିବି, ଏଥିରେ ଲାଭ ହୋଇଯାଇଛି କଣ ଜାଫର୍‌ର ? ହୁଏ ତ ତାହାର ବର୍ତ୍ତମାନର ପ୍ରତିଷ୍ଠିତ ସମ୍ଭ୍ରମକୁ, ଭ୍ରୂକ୍ଷେପ ନ କରି ସେ ମୋତେ ଆସି ନିଜର କରୁଛି । ଆଉ ମୁଁ କରୁଛି କଣ ?···ସେହି ମୋର ପ୍ରିୟତମ ଓସ୍କା ହସିଲା, ହସି ଗ୍ଭଲିଗଲା ମୋର ଭଉଣୀ—ସେଥିରେ ମୁଁ ଅସହିଷ୍ଣୁ ହୋଇ ମୋର ହୃଦୟକୁ କରୁଛି କଳୁଷିତ !

ଏହିଭଳି ଭାଷାରେ ନୁହେଁ, ଏହିପରି ଚିନ୍ତାର ଅନୁଶୋଚନାରେ ଦଗ୍ଧ ହେବାକୁ ଲାଗିଲା ମହନ୍ତ । ଶେଷକୁ ସେ କେବଳ ଭାବିଲା—ଏ ହୃଦୟଟା କେମିତି ଯିବ ମୋର ବଦଳି !

ପାଣି ଗିଲାସକ ପିଇ ସାରି ଜାଫର୍ ପଚାରିଲା ମହନ୍ତଙ୍କ···ସରିଲା ଓସ୍କା ?

ବାସ୍ତବିକ୍ ମହନ୍ତର ଖିଆ ସରି ନ ଥାଏ; ସେ ଆଉ ନ ଖାଇ ପାଣି ପିଇଦେଇ କହିଲା—ହଁ ଉଠ !

ହାତ ଧୋଇ ସାରି ଦୁଇ ଜଣଯାକ ଟାଣିଲେ ଗୋଟା ଲେଖାଁ ବଡ଼ି । ଦୂରରେ ରେକାବିରେ ପାନ ଘେନି ଆସୁଥାଏ ଶ୍ରୀମତୀ ; କବାଟ ପିଟାଇ-ବଡ଼ି ଟାଣି ଟାଣି ଦାଣ୍ଡ-ପିଣ୍ଡାକୁ ଗଲା ମହନ୍ତ ।

ଶ୍ରୀମତୀ ହାତରୁ ପାନ ନେଉ ନେଉ କହିଲା ଜାଫର୍···

ମସଲା ଦେଇଛୁ ନା ଶିଷ୍ଠା···?

ନବଜରେ ହସିଉଠି ଶ୍ରୀମତୀ କହିଲା···

ନା, ତମର ଯିନା ଦୋକାନ—

ପାନ ଖଣ୍ଡେ ଗୋବେଇ ଗୋବେଇ ଦାଣ୍ଡକୁ ଚାଲିଗଲା ଜାଫର୍ । ଲଣ୍ଠନ ପାଖରେ ପାନ ଥାଳିଆ ଥୋଇ ଦେଇ ଖାଇବା ପାଇଁ ବୋଉ ପାଖକୁ ଚାଲିଗଲା ଶ୍ରୀମଣି ।

ସେତେବେଳକୁ ଶୀତ ପଡ଼ ଆସିଲାଣି । ଦାଣ୍ଡପିଣ୍ଡାରେ ପହଞ୍ଚି ପର୍କର ଦୂରକୁ ଛୁପ ଗୁଡ଼ି ଦେଇ ମଦନକୁ ପଚାରିଲା ଜାଫର୍—

ଶୀତ ଲାଗୁନେଇଁ ତମକୁ ଓସ୍କା ?

ବଡ଼ଟାକୁ ଆହୁରି ଜୋର୍‌ରେ ଟାଣିଦେଇ ସ୍ୱରରେ ଉତ୍ତେଜନା ଦେଇ କହିଲା ମଦନ—

ଆଜ ଆମେ ଏକା ବଛଣାରେ—ସାଙ୍ଗ ହୋଇ ଶୋଇବା ଓସ୍କା, କମ୍ବଳ ବ ଜମା ଖଣ୍ଡେ ।

## —ଚାରି—

ଭସାଣିରେ ଯିବାକୁ ହୁଏ ଜାଫରକୁ, ଘରକୁ ଫେରିଲେ । ତିନି ମାଇଲ୍ ତଳେ ବାହାଦୁରନଗର । କାଠୁଆ ଖଣ୍ଡକୁ ପାଣିରେ ଛାଡ଼ିଦେଲା ପରେ ହାଡ଼ିଆ ଆଉ ରାଧବା, ସେଥିରେ ବସି ଆହୁଲା ଚଳେଇଲା ଜାଫର୍ । ଭସାଣିରେ ଚାଲିଗଲା ଡଙ୍ଗା ଖୁବ୍ ଶୀଘ୍ର । କେତେକ ଦୂରଯାଏ ଓସକାକୁ ଚାହିଁ ରହି ମଦନ ଘରକୁ ଫେରିଲା । ଅତଡ଼ା ଉପରକୁ ଉଠି ଗ୍ରେଟ ରାସ୍ତାରେ ଗାଁ । ଭିତରକୁ ପଶିଲେ ଡାହାଣ ପଟେ ପଡ଼େ ଭାସ୍କର ନାୟକଙ୍କ ପାଳ । ମଦନ ଦେଖିଲା, ବାଳସୂର୍ଯ୍ୟର ତେଜ ଭିତରେ ଦେହରେ ଶାଲ୍ ଘୋଡ଼େଇ ହୋଇ ପାଳ ଭିତରେ ବୁଲୁଛନ୍ତି ଭାସ୍କରବାବୁ । ପାଳଙ୍ଗ ଶାଗ ତୋଳୁଛି ନରିଆ—ବାବୁଘର ଚାକର ।

ପାଳ ସଳଖରେ ହେଲାବେଳକୁ ମଦନ କାନରେ ପଡ଼ିଲା ବାବୁଙ୍କର ଡାକ । ମଦନ ଶୁଣିଲା, ବାବୁ ତାକୁ 'ମଦନ' 'ମଦନ' ବୋଲି ଡାକୁଛନ୍ତି । ବଡ଼ ଆଶ୍ଚର୍ଯ୍ୟ ଲାଗିଲା ତାକୁ—ନିଜର କାନକୁ ଯେପରି ଅବିଶ୍ୱାସ କଲା ସିଏ । ଏହା ପୂର୍ବରୁ କେବେ ସେ ବାବୁଙ୍କଠାରୁ ତାହାର ନାଁ ଶୁଣୁଥିଲେ ଶୁଣୁଥିଲା ମଦନା; ତାଙ୍କର ଗାଡ଼ି ମଧ୍ୟ ବୋହିଛି ସେ କେତେ ଥର, ତାକୁ ଆଉ ସେ କଣ ଡାକିବେ !

ବାଟ ଭାଙ୍ଗି ବାଉଁଶ ଝାଟିର ତାଟି ଖଣ୍ଡିକ ଆଡ଼େଇ ପାଳ ଭିତରକୁ ଗଲା ମଦନ । ତାକୁ ଡର ଲାଗେ ବାବୁଙ୍କ ପାଖକୁ ଯିବାକୁ— ସେଇ ଥରେ ଯାଇଥିଲା, ବାଘ ମଲାବେଳେ କରଜା ଆଣିବାକୁ କୋଡ଼ିଏ ଟଙ୍କା । ତାହାପରେ ଥରେ ଯାଇଥିଲା ଗୋଡ଼

ହାତ ତଳେ ପଡ଼ ତାହାର ଗୃଷଜମିତକ ଶାଗ ମୂଲରେ ନ ନେଇ କଛ୍ଛ ବଗ୍ଭର କର ବାକୁ । ତାହାପରେ ଯାହା ଯାଇଥିଲା ବାପ ଥିଲବେଳେ । ···ଚତୁର ଆଉ ବୁଦ୍ଧିମାନ ଲୋକ ଭାସ୍କର ନାୟକ—ଯେତେବେଳେ ସିଙ୍ଗାପୁରରେ ବାଜୁଥାଏ ଜାପାନର ଭେଣ୍ଟ, ସେହି ସମୟରେ ସେ ନୀଲାମ ନାଗରା ପିଟିଲେ ମହନ ନାୟକର ଦଶ ଗୁଣ୍ଠ ପାଳନ୍ଦା ଜମି ଉପରେ । ସେହିଦିନଠଉଁ ମହନ ଆଉ ବାବୁଙ୍କ ପାଖ ମାଡ଼େ ନା । ସୁଯୋଗକୁ ଘର ଖଣ୍ଡକ ତା'ର ଆସି ଗାଁର ଶେଷ କମ୍ବା ଆରମ୍ଭ ପାଖକୁ । ବଡ଼ଲୋକ ଘରର କୌଣସି ଶବ୍ଦ ଭାସି ଆସେ ନା ସେଠିକି ଖୁବ୍ ଚଞ୍ଚଳ—ସେପରି ଅନୁକୂଳ ପବନ ନ ପାଇଲେ ।

ଆଜି କିନ୍ତୁ ଡରିଲା ନି ମହନ । ବାବୁଙ୍କ କତିକୁ ଯିବାକୁ ତାହାର ନିଜର କୌଣସି ସ୍ୱାର୍ଥ ନାହିଁ ଆଜି । ହିସାବରେ କୁଆଡ଼େ ବାବୁ ତା'ର ହୁଅନ୍ତି ଭାଇ ଲେଖା । ସେଥିଲାଗି ମା' ତାହାର ସେକର ନା'କ ବୋଲି କଥା କହିଲାବେଳେ କୁହେ ପୁରୁଷ ହିସାବ କରି । ବଡ଼ ଲୋକ ଆଉ ଗରିବ ଲୋକର ହିସାବ ଯେ ଦୋସରା, ଏ କଥା ନିରୀହା କୃଷାଣୀ କିନ୍ତୁ ବୁଝେ ନା ।

ମହନ ପାଖରେ ପହଞ୍ଚିଲାରୁ ହସି ହସି କହିଲେ ଭାସ୍କର ନାୟକ···ତୋ ଉପରେ ମୁଁ ଭାରି ଖୁସି ମହନ ! ···ବସ୍···ବସ୍···, କୋଉଦିନୁ ଭାବୁଚି ତୋ ସାଙ୍ଗରେ ଦି' କଥା ହେବ ବୋଲି—ଆଉ ଭେଟ ହଉଚି କୋଉଠି ! ସେଇ ଯେତେବେଳେ ଶଗଡ଼ ବୋହୁଥେଲୁ ତୁ ତୋ ବାପା ସାଙ୍ଗରେ, ଶଗଡ଼ ଧୂଳିରେ ପୋତି ହୋଇ ପଡ଼ଥାଏ ତୋ ଧିଅ, ତା' ଭିତରୁ ମାର୍କ କରିଚି ତୋ ମୁହଁକୁ ଦେଖି, ତୁ ଜୀବନରେ କିଛି କରିବୁ । ବାଃ, ଭଲ କାମ କଲୁ, ଏମିତି ନ କଲେ ଏ ଗାଁଟା ଆଉ ଉଠିବ ଫେରେ କେମିତି ?

ମହନ କିଛି କହୁ ନ ଥାଏ । ତଥାପି ଆନନ୍ଦ ଲାଗୁଥାଏ ତାକୁ ବାବୁଙ୍କର କଥା ଶୁଣିବାକୁ—ପୁଣି ବାବୁ କରୁଚନ୍ତି ତାର ପ୍ରଶଂସା ।···ବଡ଼ଲୋକ ଯେତେ ଅତ୍ୟାଚାର କରି ଥାଉ ପଛେ ଗରିବ ଲୋକ ଉପରେ, ତାର ଯଦି ପଦେ କଅଁଳ କଥା ସେ ଶୁଣେ, ସେ ଅମୃତ ପାଇଲା ପରି ମନେକରେ ।

ଆରେ, କେତେ ଟଙ୍କା ଏ ବର୍ଷ ରବିଫସଲ ପାଇଁ ଦାଦନ ଲଗେଇ ଥେଲୁ ?

ଏହିଠାରେ ଶଙ୍କା ହେଲା ମହନର କିଛି କହିବା ପାଇଁ । ଅତି କାଇଲମାକୁଲ ହୋଇ ସେ କହିଲା, ଟଙ୍କା ଦେଢ଼ଶ ଲଗେଇଥିଲି ଜମା ।

ମୋଟେ ! କିଏ କହୁଥିଲା, ଏତିକି ବେଳକୁ ଦଶଗାଡ଼ ବାଗ ତୁ ମପେଇ ସାଇଲୁଣି ।

ମହନ ଧୀର ଭାବରେ କହିଲା···ଡଳକୁ ତାଳ କରିବାକୁ ଲୋକ ତ କମ୍ ନାହାନ୍ତି ଏ ଗାଁରେ । ମୋ ବାଗ ଜମା ଆଜି ଯାଏ ଆସିନେଇ । ମାମୁଁଙ୍କୁ ମୁଁ ଶହେଟା ଟଙ୍କା ଦେଇଥିଲି ଯେ, ସେଇ କିଛି ପଠେଇ ଦେଇଥିଲେ···

ଭାସ୍କରବାବୁ ମନେ ମନେ ଭାବିଲେ, ମହନା କଣ କହିବ ମୋ ଆଗରେ ମୁଁ ଦଶ ଗାଡ଼ ବାଗ ମପେଇଚି ! କାଲି ସକାଳର ମହନା, କଞ୍ଚା ବାଗ ଛୁଇଁ ଖାଇ ଖାଇ ହୁଏ ତ କେତେ ଦିନ କଟେଇ ଦେଇଚି—ତାହା ପୁଣି ପର ବଳରୁ ଲୁଚେଇ ଚୋରେଇ ।

...ତେର କରିଚ ସିଏ, ଦେଢ଼ଶ, ପୁଣି ମାମୁଁଙ୍କୁ ଦେଇଥିଲ ଶହେ, ତେର୍ କରିଚ ମହନା ।

କିଛିକ୍ଷଣ ପରେ ପୁଣି କହିଉଠିଲେ ଭାସ୍କର ନାୟକ...ଆରେ ମୁଁ କାହିଁକି ତତେ ଡାକିଲି କି...ଆମେ ତୋ କଥା ଏଥର ବୁଝିବା, ତମେ ସବୁ ତ ଆମର ଭାଇ, ତମର ଆଖି ଆଜି ବଡ଼ ହେଲା, ତମେ ଆଉ ଆମ ପାଖକୁ ଯିବ ଆସିବ କାହିଁକି— ଆମେ କ'ଣ ତା' ବୋଲି ଆଉ ତମକୁ ସବୁ ପର କରିଚୁ ? ହାଜ୍ନହରକତରେ ଯେତେ-ବେଳେ ତମେ ମୋ ଦୁଆରେ ଠିଆ ହେଇଚ, କାହାକୁ କଣ ମୁଁ ଫେରେଇ ଦେଉଛି ? ଦେଲେ ନେଲେ ସିନା ସବୁ କଥା, କଚିଶି ଦୋଉଡ଼ିବା କାମ କଣ ଭଲ ଲୋକ କରେ ? ତମ ଲାଗି ମୁଁ ପିଆଦା ଗୁମାସ୍ତା ପୋଷିଚି, କଣ ମୋର ଫାଇଦା ଅଛି ଏଥିରେ ? ଟଙ୍କା ତ ବେଙ୍କ୍‌ରେ ଜମା କରିଦେଲେ ମୋର ଜଞ୍ଜାଳ ଯାଆନ୍ତା...ଖାସ୍ ତମମାନଙ୍କ ପେଇଁ...। ଆରେ ମନେ ଅଛି ନା ତୋର ସପନ ଦାଦା ମରିବା ବେଳର କଥା ?

ଆଉ କେଉଁ ସପନ ଦାଦା ବୋଲି ମନେ କରିଥିଲା ମହନା । ପଛେ ପଛେ ସେ ବୁଝିପାରିଲା, ତାରି ବାପାକୁ, ଆଜି ତା'ର ମଲାର ଦ୍'ବର୍ଷ ପରେ ଭାସ୍କର ନାୟକ କହୁଚନ୍ତି ସପନ ଦାଦା ।

ମହନାର ଉତ୍ତର ଶୁଣିବା ଆଗରୁ ପୁଣି କହିଲେ ଭାସ୍କର ନାୟକ...

ତୋ'ର ତ ଜମି ବୋଲି ସେତିକି, ସେ ପାଲନ୍ଦା କଥା ତୋର ଆମେ ବୁଝିବା । ଆରେ ମହନ, ଟଙ୍କା ପଚିଶଟା ଆଜି ଦେଇଥିବୁ ତ—ନଈଆକୁ ମୁଁ ପଠେଇବି । ଗୁମାସ୍ତା ଆଜି ଯାଜପୁର ଯିବ ଯେ... ପାଖରେ ଗୋଟିଏ ପଇସା ରଖି ଦେଉଚନ୍ତି ଏ ଲୋକେ ? କେଉଁଠୁ କଣ ଖୁଳିକରି ପାଇଚ ନକୁଳ ମା'ନ୍ତି ପୁଅ ଯେ, ପାଟ ମଠା ଗହଣା ଗଣ୍ଠି ଥୋଇ, କଣ ଅମାନତ ଦବ ବୋଲି ଆମ ମିତ ବୋଉଠଉଁ କାଲି ଆସି ଛଅଶ ଟଙ୍କା ନେଇ ଯାଇଚ । ମତେ କଣ ଆଉ ଏ କଥା ଜଣା ! ନଈଆକୁ ମୁଁ ପଠେଇବି...ଆଁ...

ଭାସ୍କରବାବୁ ମାଗୁଚନ୍ତି ଟଙ୍କା, ପୁଣି ମହନାକୁ । ମହନ ଆଉ କିଛି ଭାବି ପାରିଲା ନାହିଁ । ଆନନ୍ଦ ବି ଲାଗିଲା ତାକୁ ଖୁବ୍, ସେ ଆଜି ବାବୁଙ୍କୁ ଦବ ପଚିଶ ଟଙ୍କା ଧାର । କିନ୍ତୁ ସରଳ ଯୁବକ ମହନ ଭାବିପାରିଲା ନାହିଁ ଯେ, ବାପ ମଲା ବେଳକୁ ତା'ଠୁ ତିରିଶ ଟଙ୍କାର ହ୍ୟାଣ୍ଡନୋଟ୍ ଲେଖେଇ ନେଇ ଓଳିଏ କାଳ ବସେଇ କୋଡ଼ିଏ ଟଙ୍କା ଦେଇଥିଲେ ଏଇ ଭାସ୍କରବାବୁ ।

ସଂକ୍ଷେପରେ ମହନ କହିଲା...ହଉ ।

ସେତେବେଳକୁ ବେଳ ଦଶଟା । ବିରୂପା ପାରି ହୋଇ ଭକାରି ମହାନ୍ତି ଆସି ପହଞ୍ଚିଲେ ଆନକାର କଚିଶି ଘରେ । କୁସୁନ୍ଦାସପୁର, ପଦ୍ମପୁର, ନାନାକା ଆଉ ଆନକାକୁ ମିଶେଇ ଆନକା ଇଲାକା । ଏହା ବର୍ତ୍ତମାନ ଜଣେ ଜମି-ଦାରଙ୍କ ଅଧୀନରେ । କେବଳ ଆନକା ଆଉ କୁସୁନ୍ଦାସପୁରରୁ କେତେ ପଇସାର ଅଧିକାର ଅଛି ଭାସ୍କର ନାୟକଙ୍କର । ନିଜର ଘରବାଡ଼ିରେ ନିଜେ ମାଲିକ ଭାସ୍କର ବାବୁ । ତାହା ଛଡ଼ା ନିଜର କେତେକ ସିକମ୍ ପ୍ରଜା ବି ଅଛନ୍ତି । ଏହି ଆନକା କଚି-

ଘର ଗ୍ରାମୁକରଣ ଭକାସି ମହାନ୍ତି । ଗ୍ରାମର ପ୍ରାୟ କେନ୍ଦ୍ରସ୍ଥାନରେ କଚଶ୍ମା । କଚଶ୍ମା ଆଗରେ ଗୋଟିଏ ପୁରୁଣା ବଉଳଗଛ । ବଉଳଗଛ ତଳେ ହନୁମାନ ଦେବତାଙ୍କ ମନ୍ଦିର । ଗାଁର ଅଧିଷ୍ଠାତ୍ରୀ ଦେବତା କିନ୍ତୁ ହନୁମାନ ନୁହନ୍ତି, ହିଙ୍ଗୁଳେଇ । ଗାଁର ଦକ୍ଷିଣ ପାଖରେ, ବିରୂପା କୂଳରୁ କିଛି ଦୂରରେ ହିଙ୍ଗୁଳେଇଙ୍କ ଆସ୍ଥାନ । କିନ୍ତୁ ଲୋକମାନଙ୍କ ଠାରୁ ହନୁମାନ ଦେବତା ଊଣା ଆରାଧନା ପାଆନ୍ତି ନାହିଁ । ରୋଗ ଭେଦରେ ଔଷଧ ଭେଦ ଥିଲା ପରି ମନାସ ଭେଦରେ ଏହି ଦୁଇ ଦେବତାଙ୍କର ପୂଜାର ଭେଦ ଅଛି । ଏହି ହନୁମାନଜୀଙ୍କୁ ସ୍ଥାପନା କରିଥିଲେ ଜଣେ ହିନ୍ଦୁସ୍ଥାନୀ ଜମିଦାର । ଏହି ଅଞ୍ଚଳ ସେତେବେଳେ ଥିଲା ତାଙ୍କର ଇଲାକା—ଆଉ ସେ ଥିଲେ ହନୁମାନସାଧକ । ଯେତେ-ବେଳେ କାର୍ଯ୍ୟୋପଲକ୍ଷରେ ସେ ଏହି ଆନକା କଚଶ୍ମାରେ ଅବସ୍ଥାନ କରୁଥିଲେ, ଇଷ୍ଟ ପୂଜାଲାଗି ସେ ସ୍ଥାପନା କରିଥିଲେ ଏଠାରେ ହନୁମାନଜୀଉ ।

କୁସୁଦାସପୁର ଓ ପଦଲପୁର ଆନକାର ପଡ଼ୋଶୀ ଗ୍ରାମ । ଏହି ଦୁଇ ଗ୍ରାମର ଲିଖିତ ନାମ ଯଥାକ୍ରମେ କୃଷ୍ଣଦାସପୁର ଓ ପଦ୍ମନାଭପୁର । ଏହି ପାଖ ଆଖ ଗ୍ରାମରେ କେବଳ ଗୋଟିଏ ଦୁଇଟି ଜାତିର ଅଧିବାସୀ ନୁହନ୍ତି, ସବୁ ଗାଁରେ ପ୍ରାୟ ବହୁ ଜାତିର ଲୋକ ଅଛନ୍ତି । ତେବେ ଗୋଟିଏ ଗୋଟିଏ ଗାଁରେ ଗୋଟିଏ ଗୋଟିଏ ଜାତିର ସଂଖ୍ୟା ଟିକେ ବେଶି । କିନ୍ତୁ ଗରିଷ୍ଠସଂଖ୍ୟା ସବୁଠାରେ ପ୍ରତିପତ୍ତି ଲାଭ କରି ନାହିଁ । ଗଣ-ତାନ୍ତ୍ରିକ ନିୟମର ଶାସନ ଉପରେ ଏହି ଅଞ୍ଚଳରେ ଅନେକଠାରେ ସଂଖ୍ୟାଲଘିଷ୍ଠ ମୁଷ୍ଟିମେୟ ଜାତି ପ୍ରାଧାନ୍ୟ ଓ ପ୍ରତିପତ୍ତି ଉପଭୋଗ କରି ଆସୁଛନ୍ତି ବହୁକାଳ ହେଲା ।

ଏକଦା ଏକ କ୍ଷତ୍ରିୟବହୁଳ ଜନପଦ ଥିଲା ଏହି ଆନକା । କିନ୍ତୁ ଅଶାତର ସେହି ସାଂଖ୍ୟ-ଶକ୍ତି ସେ ଜାତିର ଏବେ ଆଉ ନାହିଁ ଏହି ଗ୍ରାମରେ । କେଉଁ ଦୁର୍ବାର ପ୍ରେରଣାରେ ସେହି ଶକ୍ତିକୁ ଖର୍ବ କରି ତାହାର କେତେକାଂଶ ସନ୍ତାନ ଯେଉଁଦିନ ଜାତ୍ୟନ୍ତର ଗ୍ରହଣ କରି ନାନକାର କରଣବସ୍ତି ଗଢ଼ି ବସିଲେ, ତାହାର କୌଣସି ଇତିହାସ ଆଜ ମିଳେ ନା । କିନ୍ତୁ ସେମାନଙ୍କର ଦ୍ୱିତୀ ଆରୋହଣ ଯେ ସଂପୂର୍ଣ୍ଣ ଭାବରେ ବିପର୍ଯ୍ୟସ୍ତ ହୋଇଛି, ଏହା ସ୍ୱୀକାର କରିବାକୁ ହୁଏ ନିଃସନ୍ଦେହରେ, ସେମାନଙ୍କର ବହୁକାଳାବଧି ପରାଙ୍ଗପୁଷ୍ଟତା ଦେଖି । ସେମାନଙ୍କର ପ୍ରତିକ୍ରିୟାଶୀଳ ମନୋଭାବ ଏବେ ସୁଦ୍ଧା ସୁସ୍ପଷ୍ଟ ହସ୍ତ ସଙ୍କେତ କରେ ଯେ, ସେମାନେ ସର୍ବାଦୌ ଅସ୍ୱୀକାର କରିବାର ପ୍ରୟାସ ପାଉଥିଲେ ଏହି ମାଟିକ । ସେଥିପାଇଁ ସେମାନଙ୍କର ସୁକୁମାର ଇଳାବୃତ୍ତର ସ୍ୱପ୍ନ ଦୁରନ୍ତ ପାକସ୍ଥାନରେ ପରିଣତ ହୋଇଛି ଶେଷରେ ।

କଚଶ୍ମାରେ ପହଞ୍ଚି ଗ୍ରାମୁକରଣ ଦେଖିଲେ, ହ'ଟା ଗୋରୁ ଚରୁଚନ୍ତି କଚଶ୍ମା ହତାରେ । ଆଡ଼କୁ ସାଡ଼କୁ ଅନେଇଲେ । ଦେଖିଲେ, ଦୂରରେ ପଞ୍ଚାଏ ଟୋକା ମଲ ବଜେଇ ନଈକି ଚାଲଯାଉଛନ୍ତି ଗାଧୋଇ । ଆହୁରି ଟିକେ ସେ ନିରଖି ଚାହିଁଲେ ଦୂରକୁ,

ହର ତେଲୁଣୀ ପସର ମୁଣ୍ଡେଇ ବାହାର ଆସୁଚ ସାହି ଭିତରୁ । ମନେ ମନେ କହି ଉଠିଲେ ଘୁମୁକରଣେ···ନାଃ, ସିଏ କଣ ଜାଣିବ ।

ତାହା ପରେ କଟଣି ହତାରୁ ବାହାର ଆସିଲେ ରାସ୍ତା ଉପରକୁ—ଅନେଇ ଅନେଇ ଗୁଲଗଲେ ଗୁର ପହଣ୍ଡ ଆଗକୁ ।···ଓ—ହେଇ, ସେଠି ବଣି ନା'କ ବାଡ଼ରୁ ମଧୁର ଉରଡ଼ା ତୋଳୁଚ ରଜମା ।

ରଜମା—ରଜମା—ଲୋ ରଜମା···

ଅନେଇଲା ରଜମା କଟଣି ଆଡ଼କୁ । ମଲା, ଘୁମୁକରଣ ! ଘୁଞ୍ଚ ଲୁଗାଚକ ସଜାଡ଼ ଦେଇ ସେ ଅନେଇ ଛିଡ଼ା ହେଲା ଆଉ କଣ ଶୁଣିବ ବୋଲ ।

ଆ···ତ···ଆ'ତ, ଆଲୋ ଶୁଣି ଯା ।

ତାହା ପରେ ରଜମା ଦେଖିଲା, ହାତ ହଲେଇ ଘୁମୁକରଣେ ଡାକୁଛନ୍ତି ତାହାକୁ ଏକା । ବାଉଁଶ ନଗିଂଠା ଡେଇଁ ଦେଇ ବାଡ଼ରେ, ରଜମା ଗୁଲ ଗୁଲ ହୋଇ ଆସିଲା କଟଣି ଆଡ଼କୁ ।

ସାଗରପେଶା କୁଳର ଝିଅ ରଜମା । ବୟସ ଯଦ୍ୟପି ତାହାର ହେବ ନ ସେତେ କମ୍, ତେବେ ଯୌବନକୁ ଧରି ରଖିବାକୁ ତା'ର ମାଂସରେ ଯେମିତି ଅଠା ଅଛି ପ୍ରଚୁର । କେଉଁ କାଳରେ, ଏହି ନାୟକ ବଂଶର ବଡ଼ ଅଂଶର ଟୀକାୟତ ଭାଇ ବାହାବଳେନ୍ଦ୍ର ଗଜେନ୍ଦ୍ର ନାୟକ ପ୍ରଥମେ ଶୁଭ ଦେଇଥିଲେ ଏହି ସାଗରପେଶା ବଂଶର କେତେକ ଦାସୀ ରଖି । ତାହାପରେ ତାହାର ଉତ୍ତରସାଧକ ହୋଇଥିଲେ ତାଙ୍କ ପୁଅ ସୁମନ୍ତ-ବଡ଼ନାୟକ କେତେକ ଅଂଶରେ । ପ୍ରଥମେ, ଏହି ଗ୍ରାମର ଏହି ନବତନ ଜାତିର ସନ୍ତାନମାନେ ଆଖ୍ୟା ପାଇଥିଲେ କୋଠପୁଅ ବୋଲି । ତାହା ପରେ ହୋଇଗଲେ ସେମାନେ ସ୍ୱତନ୍ତ୍ର ପୃଥକ୍ । ଏବେ ସେମାନେ ସେହି ଅପ୍ରୀତିକର କୁଳ-ମୁଦ୍ରାର ଚତାଭସ୍ମ ଉପରେ ଗଢ଼ି ଦେଇଛନ୍ତି ଅଚଳସ୍ୱାତନ । ଆଜି ମଧ୍ୟ ସେମାନେ ଗର୍ବ କରନ୍ତି, ବର୍ତ୍ତମାନ ଏକ ଶ୍ରେଷ୍ଠ ପୁରୁଷଙ୍କର ଦାୟାଦ ବୋଲି । କାରଣ, ଏବେ ଲୋପ ପାଇଛି ସେହି ବାହା-ବଳେନ୍ଦ୍ରଙ୍କର ବଂଶ ଏହି ଗ୍ରାମରୁ ।

ଏହି କୁଳର କନ୍ୟା ରଜମା । ବାପ ନାଁ ତାର ଅଚ୍ୟୁତ ଦାସ । କିନ୍ତୁ ଏବେ ସେମାନେ ଦାସ ଜାଗାରେ ନାୟକ ଲେଖାଇଲେଣି । ପ୍ରାୟ ପନ୍ଦର ବର୍ଷ ବୟସ ବେଳେ ରଜମା ହୋଇଥିଲା ବୈଧବମା । କନ୍ୟାର ବୈଧବ୍ୟ ଦଶାରେ ବ୍ୟଥିତ ହୋଇ ବାପ ତାର ପୁନଶ୍ଚ ତାକୁ ବିବାହ ଦେଇଥିଲା ଟିକିଏ ଦୂରରେ, ବାଲବିଧବାର ପରିଚୟ ଦେଇ । କିନ୍ତୁ ଦାସକୁଳରେ ବିଧବାବିବାହ ଥିଲା, ନାୟକ ପଦକୁ ମୁଣ୍ଡେଇ-ବାକୁ ବସି ସେମାନେ ବିଚୃତ୍ତ ବିଧବାମାନଙ୍କ ଉପରେ ଲଦି ଦେବାକୁ ଲାଗିଲେ ପଥର ବୋଝ । ମାତ୍ର ନିଜର କନ୍ୟା ପାଇଁ ଅଚ୍ୟୁତର ଏହି ଛଦ୍ମ ପ୍ରୟାସ ମଧ୍ୟ ବିଡମ୍ବିତ ହେଲା ଦାରୁଣ ଭାବରେ । ଦ୍ୱିତୀୟ ବିବାହର ଦୁଇ ବର୍ଷ ପରେ ରଜମା ପୁଣି ଦେଖାଦେଲା ପିତ୍ରା-ଳୟରେ ପୂର୍ବର ଶ୍ରୀହୀନତା ଧରି ।

ସେତେବେଳକୁ ଯୌବନ-ବନ୍ୟାରେ ଉଚ୍ଛ୍ୱସିତ ରଜମାର ସର୍ବାଙ୍ଗ । ଅନ-ଙ୍ଗର ସହସ୍ର ଶରଘାତରେ ଜର୍ଜ୍ଜରିତ ତାହାର ଅନ୍ତର । ଆଉ ତାହାର ଅନ୍ତର-

ଦେବତା । ପ୍ରଗତିର ଜୟ-ଯାତ୍ରା ପାଇଁ ଯେଉଁ ଅଙ୍ଗଟି ଆମର ଅତ୍ୟନ୍ତ ବିକଳ, ତାହାର ପରିପ୍ରଶ୍ବରକାର କାର୍ଯ୍ୟ କରି ରଜନୀ ହୋଇ ଉଠିଲା ଶେଷରେ କେତେକାଂଶରେ ସ୍ୱୈରିଣୀ ।

ରଜନୀ ଏ ପର୍ଯ୍ୟନ୍ତ ମଧ୍ୟ ଘ୍ରମୁକରଣଙ୍କର ପାଖରେ ପହଞ୍ଚି ନ—ଦୂରରୁ ତାକୁ କହିଉଠିଲେ ଘ୍ରମୁକରଣ···

ଦେଖିଲୁ ଦେଖିଲୁ ମା, ଏ ଗୋରୁ ହିଟା ତମ ବାବୁଘରର ନା ଆଉ କା’ର !

ସେହିପରି ଦୂରରୁ ଥାଇ ଅବହେଳା ସହ ରଜନୀ ଅକ୍ଳେଶରେ କହିଲା···

ନାଁ······ ।

ଆଚ୍ଛା, ଆଚ୍ଛା, ଯା, ମୁଁ ସେଇଥି ସକାଶେ ଡାକୁଥିଲି, ଖେତ ବାଡ଼ କରିଚନ୍ତି ଲୋକେ, କୋଉଠି ପୁଣି ଭୁଣ୍ଡ ପୂରେଇ ଦେବେ ତ କଏ ନେଇ କାଞ୍ଜିଆ ବୁଦାରେ ପୂରେଇ ଦବ । ମୁଁ ସେଇ ନାଗି ଡାକିଲି, ତୋ ହାତରେ ଅଡ଼େଇ ଦେଇଥାନ୍ତି ତାଙ୍କ ଘରକୁ ବୋଲି···ଆଲୋ ବାବୁ ଅଛନ୍ତି ଘରେ ?

ମୁହଁ ବୁଲେଇ ଫେରି ପଡ଼ିଲାଣି ସେତେବେଳକୁ ରଜନୀ ! ଚାଲି ଯାଉଁ ଯାଉଁ ସେ କହିଲା···ଥେବେ । ଏ କଥାରେ ମଧ୍ୟ ପୂର୍ବର ସେହି ଅବହେଳାର ଝଙ୍କାର । ଯେପରି କାହା ପାଖରେ ବିନୟ ପ୍ରକାଶ କରିବାର ପାର୍ଥୀ ନୁହେଁ ଏହି ନାରୀ । ତାହାର କଥାକୁ ମଧ୍ୟ ସତ୍ୟ ଆଶ୍ରୟ କରେ ଖୁବ୍ କମ୍ ।

ତାହା ପରେ ତମ ତମ ହୋଇ କଚରୀ ଖୋଲିଲେ ଘ୍ରମୁକରଣ । ଯେପରି ଯୁଦ୍ଧ୍ୟମାନ ତାଙ୍କର ମନ । ଘର ଭିତରକୁ ପଶି ଯାଉଁ ଯାଉଁ ସେ କହିଲେ···ଶଳା ଗଲି କୁଆଡ଼େ, ଶଳା ନିମକ୍‌ହାରାମ୍ କୁଣ୍ଟି···ଆସୁ ଆଜ ।

ଦାଣ୍ଡ କବାଟ ଭିତରୁ ଲଗେଇ ଦେଇ, କଚରୀ ଖଞ୍ଜାର ବାଡ଼ କବାଟ ଫିଟେଇ ପଛପଟେ ବାହାରିଲେ ଭିକାରୀ ମହାନ୍ତି । କଚରୀ ହତାଟାକୁ ତାନେ ନିରିଖି ନେଲେ ଭଲକରି । ମାଣ୍ଡୁକା ପାହାଡ଼ର କଣ୍ଠାରେ ବାଡ଼ାବନ୍ଦୀ ହୋଇଥିଲା କଚରୀ ହତା ଅନେକ କାଳ ତଳେ । ବାଡ଼ର ବାଉଁଶ କାମଡ଼ା, ଖସି ଗଲାଣି ଅନେକ ଜାଗାରେ; ବାଡ଼ ମଧ୍ୟ ଠାଏ ଠାଏ ଭାଙ୍ଗିଯାଇଛି ଅନେକ ଦିନୁ । ହତାଟା ଯାକ ଖାଲି ଘାସ, ଅରମା; କାମିକା ଗଛର ନାମ ଗନ୍ଧ ନାହିଁ । ତଥାପି ସେଗୁଡ଼ିକୁ ତନ୍ନ ତନ୍ନ କରି ଅନେଇଲେ ଘ୍ରମୁକରଣେ ।

ଗୋରୁ ଦୁଇଟି ସେ ପର୍ଯ୍ୟନ୍ତ ଆନନ୍ଦରେ ଘାସ ଚରିବାରେ ଲାଗିଚନ୍ତି—କାନ ତାଙ୍କର ହଲୁଚି ମାଛି ଗୋଡ଼େଇ, ଡାଁଶ ଗୋଡ଼େଇ ବୁଲି ପଡ଼ୁଚି ଲାଞ୍ଜ । ମୁହଁ ତଳେ କାକୁଡ଼ିଆ ଘାସ ଛିଡ଼ିଯିବାର ଶବ୍ଦ—ରସ୍, ରସ୍, ରସ୍ ।

ପଶୁ ଦୁଇଟିକୁ ପର୍ଯ୍ୟବେକ୍ଷଣ କରି, ପାଟିରେ ତାହାର ବର୍ଣ୍ଣନା କରି, ଘ୍ରମୁକରଣେ ଚାଲିଗଲେ ବାଡ଼ ପାଖକୁ ।

—ଶଳା, ତୋଲି ସବୁ କଲେଣି । ଦଉଚ ଆଜ ଛଡ଼େଇ । ଶ-ଳା, ଶ-ଳା ଠିକ୍କିକ କାଠ ବୋଲି ମନେକରିଚନ୍ତି । ହୁଁ, ଶଳା, କଚରୀ ଖଣ୍ଡକୁ ମୋର ଉଜାଡ଼

ଦେଲେ । ହୁଁ···ମୁଁ ଥବାଯାକେ ତମେ ଶଳା ମୋ ଠଉଁ ଯଶ ନବ ବୋଲି ଭାବଚ ! ବହପ ବଢ଼ିଯାଇଚ । ହ୍ୟାପ୍ ଖୋଲିଟି ବଡେଇଲ ମତେ କାଲ ପଠାଣ ଠୋକାଠା । ଶଳା ଘରେ ପଠାଣ ପୂରେଇ ଖୋଉଚନ୍ତ—ବାହାରେ ନିଶ ଫୁଲେଇ ଚୁଲିଯାଉଚନ୍ତ—ଯେମିତି ଧନାଶେଠ ।

ଏତିକବେଳେ ହାତର ତେଲପଗ୍ଦ ବଙ୍କା ନାଗୁଣୀ ବାଡ଼ି ଖଣ୍ଡକରେ ମାର ଦେଲେ ଗୋଟା ଚିଅ ହତାର କଣ୍ଟାବାଡ଼ ଧିଅକୁ ଘୁମୁକରଣେ । କାମଡ଼ାର ଉଇଖିଆ ଗୋଟା ନଇ ଗଣ୍ଠି ଛୁଡ଼ଗଲା—ଝର୍ ଝର୍ କର ଜମା ହୋଇ ପଡ଼ିଲ ତଳେ ଉଇମାଟି ।

ପୁଣି ଥରେ ଗୁରଆଡ଼କୁ ଅନେଇଲେ । କୋଉଠି ଗୋଟା ଦୂରରେ ହଲ ଫେରବାର ଶବ୍ଦ ଶୁଭୁଛୁ ।

—କଏ ହ୍ୟାପ୍ ଏତିକ ବେଳୁ ଗହମ ବୁଣା ସାର ହଲ ଫିଟେଇଲା । ହଁ, ଏ ସଲଖରେ ହବାକୁ ଢେର ସମୟ ଅଛୁ !

ଦେଲେ ଆଉ ଦି ତିନି ପାହାର ବାଡ଼ଟାରେ ଭିକାରୀ ମହାନ୍ତି । କୋଉ କାଳର ପୁରୁଣା କଣ୍ଟା ବାଡ଼, ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିପଡ଼ିଲା । ତାହା ପରେ କହି କହି ଫେରିଲେ··ଠିକ୍ ହେଇଚ, ଶଳା ମୁଁ ଥବା ଯାକେ ତମେ ଏ ବାରିକ ଉଜାଡ଼ି ଦବ !

ତାହାପରେ ଆସି ପହଞ୍ଚିଲେ ବାଡ଼ପାଖ କଚରୀ ଓଳରେ । ପିଣ୍ଡା ଉପରକୁ ଚଢ଼ିଗଲେ ହାତ ପାଉଁଚ ଗୁଳକୁ । ଆରବର୍ଷର ଛପର—ଆସନ୍ତା ଫଗୁଣକୁ ଯାଇ ଛପରବନ୍ଦୀ ହେବ । ତଥାପି ମଧ ଧୋବ ଛଣ ଅଛୁ ତଳ ପାଖରେ । ସେଥିରୁ ତିନି ବଡ଼ା ଓଟାର ଆଣିଲେ ହାତରେ । ଆଉ କେତେ ଜାଗାରୁ ଟାଣିଆଣିଲେ କେରାଏ କେରାଏ ।

ବାସ୍ ଠିକ ହେଇଚ । ଏଁ, ବାଡ଼ଟା କୁଆଡ଼େ ଗଲା ?

ଗୋଟାଏ ହାତରେ ଗୁଳର କାଠ ପାରିଆକୁ ଧର ଆର ହାତରେ ଛଣ ଓଟାରୁଥିଲେ ସିଏ ।···ହଁ, ବାଡ଼ଟା ତଳେ ପଡ଼ିଚ ।

ବାଡ଼ଟା ହାତରେ ଧର ଗୁର ଛ'ଚିଅ ବଙ୍ଗେଇ କର ଦେଲେ ତଳେ । ପିଣ୍ଡାରୁ ମଧ ଖଣ୍ଡିଆ କରଦେଲେ କଛୁ ।···ହଁ, ଠିକ୍ ହେଇଚ ।

ଆରେ, ଗୋରୁ ଦଟା ଗୁଲିଯିବେ ନେଇ ତ କୁଆଡ଼େ ?

ଆ—ଆ—ଚ୍ୟୁ—ଚୁ—ଚୁ··

ତା'ସଙ୍ଗରେ ଛଣର ଖସ୍ ଖସ୍ ଶବ୍ଦ । ନିରୀହ ପଶୁ ଦୁଇଟି ସେ ଶବ୍ଦରେ ଆଖି ଉଠେଇଲେ ଉପରକୁ । ହଁ, ଘାସ ଖୁବ୍ ଖିଆହେଲାଣି—ଏଥରକ ଛଣ । ଧୀରେ ଧୀରେ ଗୋଡ଼ ବଢ଼େଇଲେ ଆଗକୁ । ଘୁମୁକରଣେ ଆସ୍ତେ ବନ୍ଦ କରଦେଲେ ବାଡ଼ କବାଟ । ଓଃ, ଏ ଶୀତମାସରେ ବ ଆଜ ଏତେ ଖରା !

ଅଧାହାତବାଲା ତୋରିଆ କାମିଜ୍ ଉପରେ ପଡ଼ିଚ ପୁରୁଣା ଶାନ୍ତିପୁରୀ ଗୁଦର···ଅନେକ ଦିନର କୁଞ୍ଚ ; କୁଞ୍ଚର ମୃ୍ୟଜୟମ୍ ସେଥିରେ । ଭିତରର ଚିରା ଫଟା ଜାଣିବାର ଉପାୟ ନାହିଁ ସେହି କୁଞ୍ଚର ଦୁର୍ଗ ଭେଦ କର ।

ଟାଙ୍ଗର ମୁଣ୍ଡରୁ ଝାଳ ପୋଛିଦେଲେ ଗୃଦରରୁ ଫୁଲାଏ ଧରି ହାତରେ । ତାହା ପରେ ପୋଛି ଆଣିଲେ ଗ୍ରାମୁକରଣେ ତାଙ୍କର ମୁହଁ ।

ଖାନ୍ଦାନି ଜଣ ତଳେ ପାନବୋଳର ଆସ୍ତରଣ ।

ଓଃ, ଗୃଦରଟାର ଇଜ୍ଜତ୍ ନେଇ ନେଲ୍ ଏଇ ବାଣ...

କେଉଁଦିନର ପଲ୍ଆମା ଧୋବଣୀର ବାସି ସରୁ ଗୃଦର, ଅଲ୍ଟ୍ରାମେରାଇନ୍ ପରିବର୍ତ୍ତେରେ ଦିଆଯାଇଛି ପ୍ରୁସିଆନ୍ ବ୍ଲୁ । ସେ ନାଳ ବି ହୋଇଯାଇଚି ସେଥିରେ ଟିକେ ବେଶି—ତା'ଉପରେ ଅନେକ ଦିନର ଧୂଳି । ନେଳି ସଂାହିର ଛିଟା ଲାଗିଛି ମଧ୍ୟ ସେଥିରେ । ତା' ଉପରେ ପାନବୋଳର ଦାଗ । ଖଇରର ଅଧିକ ମାତ୍ରା ଦିଆ ପାନ— ତାରି ବୋଳ । ...ଯାନେ ଦୋ ।

ଘର ଭିତରେ ପଶି, ଏଣେ ତେଣେ ଟିକେ ଆଖି ବୁଲେଇ ପୁଣି ଦାଣ୍ଡ ପଟକୁ ଗୃଲଲେ ଗ୍ରାମୁକରଣେ । ଦାଣ୍ଡପିଣ୍ଡାରୁ ପୁଣି ଗଲେ ହତାକୁ—ପୁଣି ଟିକେ ଆଗକୁ ।

ହଁ—ଗୋରୁ ଦିଟା ଠିକ୍ ଖାଉଚନ୍ତି—ତିନି ବଡ଼ା ଛଣ, ଦିହେଜ ସରିବ ନାଇ ଏଇକ୍ଷଣି । ...ହୁଁ, ଶଳା ଜାଫ୍ରାନ୍ କେଶର ଦେଇ ମାଂସ ଖାଇବ । ଶଳା ସବୁ ଶିଖିଲେଣି ପଠାଣ ଠଉଁ...

ସେଠୁ ଫେରି ଆସି ପିଣ୍ଡା ଉପରେ ଟହଲିଲେ—ଟହଲୁ ଟହଲୁ ପାଟିକରି ଉଠିଲେ ଗ୍ରାମୁକରଣେ...

କୁଆଡ଼େ ଗଲ୍ ଶଳା ଏତେବେଳ ଯାକେ—ଆରେ ଗୋକଳା... ଗୋକଳା ରେ...ହେ...

## —ପାଞ୍ଚ—

ଗୋକଳା ଆସିଲ୍ ଅନେକ ଡେରିରେ ।

ପଦଲ୍ପୁର ସିଂହସାହିରେ ଗୋକଳାର ଘର । ପୂରା ନାଁ ଗୋକଳ ସିଂ । ଗ୍ରାମୁକରଣଙ୍କ ବିଷଦୃଷ୍ଟିରେ ପଡ଼ିଥିବା ଜାତିରେ ଦୁର୍ଭାଗାର ଜନ୍ମ । କିନ୍ତୁ ନିଜର କର୍ମ-ପରାୟଣତାରେ ଆପଣାର ସୌଭାଗ୍ୟ ଗଢ଼ିନେଇଛି ଗୋକଳ—ଗ୍ରାମୁକରଣେ ହାଇ ମାରିଲେ ସେ ଚୁଟିକି ମାରିବାକୁ ଚେଷ୍ଟା କରେ ।

ବୟସ ଗୃଳିଶ ହେବ ବର୍ତ୍ତମାନ ଗୋକଳିକ । ଜଣ ହଲକ ଏବେ ବି ସତେଜ ଅଛି ଡେରି । ଯୌବନ ବେଳେ ଗୋରା ଥିଲା ନିଶ୍ଚେ ଗୋକଳ; ପିଆଦା ଗ୍ରକ-

ଖରେ ଖବ ଉବରେ ବୁଲି ବୁଲି ଯଦିବା ତାହାର ରଙ୍ଗଟା ଯାଇଛି ଟିକେ ବଦଳି, ଆଉ କିନ୍ତୁ ଅଛି ଠିକ୍ । ପଦଲପୁର ଜାଣର ମାଛ ଆଉ ବିରୂପାନଙ୍କର ଇଲଶି ଅନେକ କବର ନେଇଛନ୍ତି ଏଇ ଗୋକଳ ସିଂର ପେଟରେ ।

ବଡ଼ ଅଦ୍ଭୁତ ଏହି ଗୋକଳର ସ୍ୱଭାବ । ନିଆଁରେ ମାଛ-ଶୁଖୁଆ ପୋଡ଼ିଲେ ସେ ଅସନ୍ତୁଷ୍ଟ ହୋଇ ଉଠେ ଖୁବ୍ । ତାହାର ନିଜ ବଂଶରେ କାଳେ ଏ ସବୁ କିଛି ହୁଏ ନାହିଁ । କାରଣ ଏହାର ପଚାରିଲେ, ସେ କଠୋର ହୋଇ କହେ, ଅଗ୍ନି କେବଳ ଘିଅ ଖାଆନ୍ତି । ଆଉ କିଛି ଏ ବିଷୟରେ ପଚାରିଲେ ଗୋକଳ କହେ—ଅଗ୍ନି ଆମର ଇଷ୍ଟ; ଆମେ—ଅଗ୍ନିବଂଶୀ ।

ଅତୀତ ଭାରତରେ ସୂର୍ଯ୍ୟ ଓ ଚନ୍ଦ୍ର କୁଳ କ୍ଷତ୍ରିୟ ଛଡ଼ା ଶକ, ପହ୍ଳବ, ହୁନ୍ ଓ କୁଶାଣମାନଙ୍କ ସମ୍ମିଶ୍ରଣରେ ଯେଉଁ ଅଗ୍ନିକୁଳ କ୍ଷତ୍ରିୟ ବଂଶ ଗଢ଼ି ଉଠିଥିଲା, ସେହି ବଂଶର ରକ୍ତ ଅଛି ହୁଏ ତ ଏହି ଗୋକଳ ସିଂର ଦେହରେ । କାରଣ, ତାହାକୁ କେହି ରାଜପୁତ କହିଲେ ସେ ଅତ୍ୟନ୍ତ କ୍ରୁଦ୍ଧ ହୋଇ ଉଠେ । ତାହାର ଜ୍ଞାତିଭାଇମାନେ ଅଗ୍ନି-ଙ୍କର ଶୁଦ୍ଧତା ରକ୍ଷା ଲାଗି ଆଜିକାଲି ବିଶେଷ ଦୃଷ୍ଟି ନ ଦେଉଥିବାରୁ ଗୋକଳ ଦୁଃଖ କରେ ଅନେକ ସମୟରେ ।

ଯଦିଓ ପାରିପାର୍ଶ୍ୱିକ ସମାନସ୍କନ୍ଧ ଜାତିମାନଙ୍କ ସହିତ ବୈବାହିକ ସୂତ୍ରରେ ମିଶିଗଲେଣି ତାହାର ଜାତି, ତଥାପି ନିଜକୁ ସ୍ୱତନ୍ତ୍ର ବୋଲି ଭାବିବାରେ ଗୋକଳ ଗର୍ବ ଅନୁଭବ କରେ । ଯେତେ ବଡ଼ ଲୋକ ହୋଇ ଥାଉ ପଛକେ, ସେ ଯଦି ଗୋକଳର ଜାତି ଉପରେ କିଛି ଟିପ୍ପଣୀ କାଟିଲା, ସଙ୍ଗେ ସଙ୍ଗେ ପ୍ରକାଶ ପାଏ ଗୋକଳର ରୁଦ୍ରମୂର୍ତ୍ତି । ଖୋଲ୍ଟି ବି ବାହାରି ପଡ଼େ ତାହାର ଭୁଣ୍ଡିରୁ, ଗୋକଳ ଗର୍ଜି ଗର୍ଜି କହି ଉଠେ—ତୁମ୍ ଗୋଲମ୍, କୁତ୍ତେ...

ଜୀବିକା ଆଉ ଜାତି ସମ୍ବନ୍ଧରେ ଗୋକଳର ମତ ବି ଏକ ଅଦ୍ଭୁତ । ଜାତି ସଙ୍ଗରେ—ଜୀବିକାର କିଛି ସଂପର୍କ ନାହିଁ ବୋଲି ତାହାର ଧାରଣା । ଯୁକ୍ତି ପଡ଼ିଲେ ସେ କହେ—ଭିକ କେତେ ଲୋକ ମାଗନ୍ତି । ଅଶୀଳାର ଅଲଣୀ ମିଶ୍ର ବି ମାଗେ, ଜଗୁ ନାଥ କାଲନ୍ଦି ବଇଷ୍ଣମ ବି ମାଗେ—ଆଉ ଏଇଖିଣି ବଙ୍ଗଳାର ଲୋକ ବି ଆସି ଗାଁ ଗାଁରେ ଭିକମାଗି ବୁଲୁଚନ୍ତି—ଏଥିଲାଗି କଣ ତାଙ୍କ ଜାତି ହୋଇଗଲା ମାରି ? ମଧୁବାବୁଙ୍କୁ ଆମର ସା'ବ ଭଣ୍ଡାରୀ ଖିଅର କରୁଥିଲା—ସା'ବ କ'ଣ ହୋଇଗଲା ଏବେ ଆନକାର ବକଳା ଭଣ୍ଡାରୀ । ହୁଁଃ, ବୃଥା ତର୍କକରି ଖାଲି ସମୟ ଲୋକସାନ କରନ୍ତି ଏ ଲୋକେ ।

ତାହାପରେ ବସିଥିଲେ ଉଠିପଡ଼ି, ନିଶ ହଳକ ତାନେ ମୋଡ଼ି ଅଗକୁ ତାହାର ଡାହାଣ ମିଡି କରି ଭୂଇଁରେ ଠେଙ୍ଗା ଠୁକାଏ ଗୋକଳ ।

ସେ ଯାହାହେଉ, ଯେ ଏତେ ନିଦର୍ଶନ ପତ୍ରର ଅଧିକାରୀ, ଏହି ଆନକା କଚେରୀରେ ସେ ଜଣେ ସାମାନ୍ୟ ପିଆଦା । ପାଞ୍ଚ ଟଙ୍କା ତାର ବେତନ । କିନ୍ତୁ ସେହି ଗୋକଳର ଯୁକ୍ତିରେ ଆମକୁ ବିଚାର କରିବାକୁ ପଡ଼ିବ—ଜୀବିକା ଆଉ ମନୁଷ୍ୟତା ଭିନ୍ନ ।

ଏହା ଭିତରେ ନିଜ ହାତରେ ମଟିଘର ବଖରକ ଓଳେଇ ସେଥିରେ ମସିଣା ପକେଇ ଶିରସ୍ତା ଖେଳେଇ ଦେଇଥାନ୍ତି ଭିକାରୀ ମାହାନ୍ତି । ଗୋକଳ ସିଂ ପଧାଙ୍କ ହାତର ଚଡା ଉଅର ଠେଙ୍ଗା ଖଣ୍ଡିକ ଡେରିଦେଲା ଦାରବନ୍ଧରେ—ଛଣରେ ବନ୍ଧା ହୋଇଥିବା ମାଛ ପୁଟୁଳାଟା ଥୋଇଦେଲା ତଳେ । ପିଣ୍ଡା ଉପରେ ଧୂଳି ଧୂସର ପାଦକୁ କେତେଥର କଚୁଡ଼ି କେତେକାଂଶରେ ଧୂଳି ସଫା କରି ଆସିଲା ଘର ଭିତରକୁ ।

ଗ୍ରାମୁକରଣଙ୍କୁ ଆଜି ଗୋକଳର ଡେରି ଲାଗି କିଛି କହିବାର ଦେଖାଗଲା ନି—ଆଖି ତାଙ୍କର ଦେଖି ନେଇଚି ଗୋକଳ ତଳେ ଥୋଇଚି ମାଛ ପୁଟୁଳା । ପିତଳ ଫର୍ମାର ଚଶମାଟାକୁ କପାଳ ଉପରକୁ ଟେକି ଧରି ଗ୍ରାମୁକରଣେ କହିଲେ···

ତାକୁ ଆଉ ଏଠି ଥୋଇଲୁ କାହିଁକି···?

ଗୋକଳ ଗୁଞ୍ଜୁଣୀ ଧରି ବରଣ୍ଡା ଖରକିବାକୁ ଆସୁଥିଲା, ପ୍ରଶ୍ନର ଉତ୍ତର ଦେବାକୁ ନେଉଛି ପଡ଼ି କହିଲା···ବାବୁଘର କାଲି ମୋ ହାତରେ ପଇସା ଦେଇଥିଲେ—ଆଠଣା···, ସେ ବାବୁଘର ମାଛ···

ଆଗରୁ କଣ ସିହା ଖାତାରେ ଲେଖୁଥିଲେ ଗ୍ରାମୁକରଣେ, ପୁଣି ପକ୍ଷୀ କଲମର ଚର ଚର ଶବ୍ଦ ଶୁଣାଗଲା ସେହି ଖାତା ଉପରେ । କିଛି ସମୟ ଗୁଡ଼ି ପୁଣି ସେ ମୁହଁ ଉଠେଇ କହିଲେ···

ଆଉ, ଆମର କୁଆଡ଼େ ଗଲା ?

କଏ ଏତେ ଫଜତ୍ ହବ ମଇତି ସେ ଗୋଖାଙ୍କ ସାଙ୍ଗରେ ? କହିଲେ ତ ମୁହେଁ ମୁହେଁ ଜବାବ ଦେଇ ଦଉଚନ୍ତି···

କଣ ମୋଫତ୍ ଦଉଚନ୍ତି ନା କଣ ?···କରେ କଣ ହେଲେଣି କରେ ସିଏ··· ?

ସିଏ ବି ତ ସେୟା କହୁଚନ୍ତି···

ଯାଁ, ସେୟା କହୁଚନ୍ତି···କରେ ମୋ ଜମିଦାରୀରେ ମଛଦଆ···ମୁଁ ମାଛ ଖାଇବ ନେଇଁ ?

କଲମ ରଖି ଦେଇ ଠିଆ ହୋଇ ପଡ଼ିଲେ ଗ୍ରାମୁକରଣେ ।

ଗଲୁ, ଡାକଲୁ ସେ ହାଡ଼ଆ ବାନ୍ଧୁଡିକ । ହୁଁ, ମଛଦଆ ପଦ ମୁଁ ନ ଛଡ଼େଇଚି ସେ ଗୋଖାଙ୍କ ଠଉଁ···

ଏହା କହି ଘର ଭିତର ସାକ ବୁଲିବାକୁ ଲାଗିଲେ ଗ୍ରାମୁକରଣେ । ବୁଲି ବୁଲି କହିବାକୁ ଲାଗିଲେ—ଶଳା ସମସ୍ତେ ସଳା ହୋଇଚନ୍ତି···କରେ ଗୋକଳା, ବାବୁଘରେ ଆଣି ମାଛ ଯୋଗେଇବାକୁ ତୁ ଗୁକର କରିଚୁ ନା କଣ ?

ଏ କଥାରେ ତମ ତମ ହୋଇ ଗୁଞ୍ଜୁଣୀଟାକୁ ଆଣି ଗୋଟା କଣକୁ ଫୋପାଡ଼ି ଦେଇ ଠେଙ୍ଗା ଆଉ ମାଛ ପୁଟୁଳା ଧରି ଗ୍ଭଲିଗଲା ଗୋକଳ । ପିଣ୍ଡାରୁ ଓହ୍ଲାଉ ଓହ୍ଲାଉ ସେ କହିଲା···ଘରି ତ ଗୁକର !

ତାହା ପରେ ବର୍ ବର୍ ହୋଇ ଆହୁରି ଯେ କହି କହି ଗ୍ଭଲିଗଲା···ଟଙ୍କା ଦେଇ ମଛଦଆ ନେବେ, ପୁଣି ନିତି ମାହାଲିଆ ମାଛ ଯୋଗେଇବେ···ଲାଜ ତ···

ଏତକ କାନ୍ତୁ ଶୁଭିଲା ନାହିଁ ଗ୍ରାମୁକରଣଙ୍କୁ । ଗୋକଳର ଆଗ କଥା ଉପରେ

ଟିପ୍‌ପଣୀ କଲେ ଘ୍ରମୁକରଣେ···କଏ ଆଁକୁ ବଳ ଦେଲ୍‌ଣି ଦେଖାଯାଉଚ—ଶଳା, ଓଝା ଭଇଲ୍‌ଣି କଏ ଆଙ୍କ ଟଛରେ —ହୁଁ···

ତାହା ପରେ ପୁଣି ଯାଇଁ ଲେଖି ବସିଲେ ସେ— ଯେମିତି ସେ ଲେଖା ଉପରେ ବ ଅକସ ନେବାର ଅଛୁ ତାଙ୍କର ।

ପ୍ରାୟ ପନ୍ଦର ମିନଟ୍ ପରେ ଫେରଆସିଲା ଗୋକଳ । ଠେଙ୍ଗାଟାକୁ · ଦୂଲ୍ କର ରଖିଦେଇ ସେ କହିଲା···ଘରେ ନାଇଁ ହାଡ଼ଆ—ମହନା ସାଙ୍ଗରେ କୁଆଡ଼େ ଯାଇଚ···

ସ୍ୱଳ୍ପ ଉତ୍ତେଜିତ ସ୍ୱରରେ କହିଲେ ଘ୍ରମୁକରଣେ—

ଆରେ ମହନାବାକୁ କହିବାକୁ ପଡ଼ବ ଏଥର···ଜାଣିଲୁ···।

ଆହୁର କଣ କହିବାକୁ ସେ ଯାଉଥିଲେ, ହଠାତ୍ ଚେଇଁ ଉଠିଲା ପର ସେ କହିଲେ···ମଲ, ମଲ, ମୋର ତ ଜମା ହୋବ୍ ନାଇଁ— ଦେଖିଲୁ, ଦେଖି, ତାକୁ ଯାଇ ବାନ୍ଧି ପକା ତୁ—ଆଜ ତାକୁ କାଞ୍ଜି ଆବୁଦାରେ ଦବା—ଏ ପାଖ ଆଖରେ ନୁହେଁ ; ଏକଦମ୍ ନେଇ ଅରଖପୁର୍ କାଞ୍ଜି ଆବୁଦାରେ । ଭୂରେଇ ଦେ ଆଣି ଖଞ୍ଜା ଭିତରେ, ଭଲ କର କବାଟ ବନ୍ଦ କର ଦବୁ···

ଏ କଥାର କିଛୁ ହେତୁ ପାଇଲା ନାହିଁ ଗୋକଳ । ଏ କ ଢଙ୍ଗ ଆଜ ଘ୍ରମୁକରଣଙ୍କର ! କାହାକୁ କାଞ୍ଜି ଆବୁଦାରେ ଦବା ! କଣ ହେଇଚ ? ସେ ପଚ୍ଚରିଲା— କଣ କହୁଛନ୍ତି ?

ଗୋକଳର ଆଖିରେ ଆଖି ମିଶେଇ କହିଲେ ଘ୍ରମୁକରଣେ·· ଆରେ ସତ୍ୟାନାଶ କର ସାଇଲେଣି, ଏ ନା'କଆଙ୍କର ବଳଦ ଦିଟା ପଶି ବାଡ଼ିଘର ମୋର ଦୁଧ୍ୱଂସନ କର ସାଇଲେଣି । ଦେଖିଲୁ, ଦେଖିଲୁ, ସେ ବଳଦ ଦିଟା ଅଛନ୍ତି ନା ବାଡ଼ିରେ ।

ଏ କଥାରେ ଗୋକଳର ଆଖି ବୁଲିଲା ହତା ଭିତରେ । ଉତ୍ତରପାଖ, ସେଠି କୋଉ କାଳର ଶୁଖିଲା କଦଳୀଗଛର ମୂଳ କେତେଟା ଠିଆହେଇଛୁ । ଗ୍ରେଇଙ୍କ ଦାଉରୁ ଫଅଲ ରକ୍ଷା କରବା ପରବର୍ତ୍ତେ ଅନେକ ଦିନରୁ ଯେଉଁ ବଗିଚ୍ଚକୁ ଉଜାଡ଼ ଦିଆହୋଇଛୁ, ତାହାର ସ୍ମୃତି ସେଇ କଦଳୀ ଗଛର-ମୂଳରେ । ଆଉ ତା' ପାଖକୁ ଆଠ ଦଶଟା ଶୁଖିଲା ବାଇଗଣ ଗଛର ଡାଙ୍ଗ—ହୁଏ ତ ତାହାର ଆତ୍ମା ଯାଇ କେଉଁଠି ଜନ୍ମାନ୍ତର ନେବଣି ଅନେକ ଦିନୁ, କମ୍ବା ଇଥାର୍ ଭିତରେ ମିଶି ଯାଇଥିବ ନିର୍ଗୁଣ ବ୍ରହ୍ମରେ ।···ଗୋକଳ ଭାବଲା, ଏଯ୍ୟାକୁ କଣ ଗୋରୁ ଖାଇଗଲେ ଆଉ !···ପୁଣି ବାଡ଼ ତ ଯେମିତି ଅଛୁ—ତଟସ୍ଥା ସନ ଯାଇ ବାଡ଼ାବନ୍ଦୀ ହୋଇଥିଲା ହତା, ଭାଗ୍ୟକୁ ସେ ଠିଆ ହେଇଚ ଏ ପର୍ଯ୍ୟନ୍ତ । ଏହା ଭିତରେ ଆଉ ହେଇ ନାଇଁ ବାଡ଼ାବନ୍ଦୀ—ଅଥଚ ପ୍ରତିବର୍ଷ କଚରୀ ମରାମତିର ଖର୍ଚ୍ଚ ଲେଖାଚ୍ଚଲିଛୁ—ଭାଗ୍ୟକୁ ଏ ପର୍ଯ୍ୟନ୍ତ ବ ମଠର ମହନ୍ତ ରହିଲେ ଚଗଲା, ସିଏ ପୁଣି ବୁଢ଼ାର ଭଣଜା, ପାଞ୍ଚ ବର୍ଷ ତଳେ ଜମିଦାର ଥିଲେ ଦଖିଣ୍ଡିଗ—ହୁଁ, ସେତେବେଳେ କଣ ଥିଲା ଏଇ କଚରୀ···

ଏହିପରି ଭାବ ଭାବ ହତାର ଅନ୍ୟ ପାଖକୁ ଗ୍ଲଲା ଗୋକଳ । ସତେ ତ, ସେଠି କଣ ଗ୍ଲ ଓଲାର ପକେଇ ଛଣ ଜମା କରିଚନ୍ତି—ଶଳା ତ ସର୍ବ୍ୟାନାଶ କରିଚନ୍ତି କଚଗ୍ଲକ ।···ଗଲେ କୁଆଡ଼େ··· ?

ପାଖକୁ ଆସି ଗୋକଳ ଦେଖିଲା, ଅଲଗା ବଲଗା ହୋଇ ପଡ଼ିଥିବା ଛଣ ପାଖରେ କେବଳ ତିନି ଗ୍ଲର ଲଣ୍ଡା ଗୋବର । ଆଉ ଟିକେ ଆଗକୁ ଗଲା ଗୋକଳ ।

ଆରେ ହେଇ ତ, ଗ୍ଛଇରେ ଶୋଇ ପାକୁଳି କରୁଚନ୍ତି ଏଠି ।

ଦକ୍ଷିଣ ପାଖର ଓଳରେ ଶୋଇ ରହି ସେ ପର୍ଯ୍ୟନ୍ତ ରୋମନ୍ଥନରେ ରତ ଥାନ୍ତି ନିରୀହ ପଶୁ ଦୁଇଟି । ସେମାନଙ୍କର ପଛରେ ଷଡ୍‌ଯନ୍ତ୍ରର ଜାଲ, ସେମାନେ ଲେଶ ମାତ୍ର ପ୍ରଭାବରେ ପଡ଼ନାହାନ୍ତି ତାହାର ।

ଗୋରୁଙ୍କୁ ଅନେଇ ଅନେଇ ଗୋକଳ ଭାବିଲା, ବାଡ଼ ମରାମତି ହବନେଇ, ସେଥିନାଗି ଗୋରୁ ବାରିରେ ପଶୁଚନ୍ତି—ସେଥିରେ ଏବେ ଗୋରୁଙ୍କର ଦୋଷ କଣ ? ସେଥିଲାଗି ଗୋରୁ ଦି'ଟାଙ୍କୁ ଘରେ ବନ୍ଧ କରିବା କମ୍ବା ପାଉଣ୍ଡ୍‌କୁ ନବା, ତାକୁ ସେ କଥା ଭଲ ଲାଗିଲା ନି । ସେ କଣ ଆନ୍ଧିଆ ପାଣ ହେଇଚି, ଖଜରା ପାଣି ଟୋପା ପିଇବ ବୋଲି ବାଟଘାଟରୁ ଗୋରୁଗାଈ ଅଡ଼େଇ ନେଇ କାଞ୍ଜିଆବୁଦାରେ ପୂରେଇ ଦବ ।···ତାର ମନେପଡ଼ିଲା, ସେ ତ ବାବୁଘରକୁ ମାଛ ଆଣି ଦେଲା ବୋଲି ତା ହେଲା ଦୋଷ—ସେ କଣ ପିଆଦା ଗ୍ଲକରି କରିଚି ଆଉ କାଞ୍ଜିଆବୁଦାରେ ଗୋରୁ ନେଇ ପୂରେଇବାକୁ !

ପିଆଦାର କାରଖାନା ଭିତରେ ଦିନକୁ ଦଶ ଘଣ୍ଟା ତାହାର ବସା ଉଠା, କାଳେ କେଉଁଠି ସେଥିରୁ କିଛି ଲାଗିଥିବ ତା'ମୁଣ୍ଡରେ ତାକୁ ବର୍ତ୍ତମାନ ଖୋଜିବାକୁ ଚେଷ୍ଟାକଲା ଗୋକଳ । ମୁଣ୍ଡ ବାଳରେ ବାଁ ହାତର ଆଙ୍ଗୁଠି ଚଳେଇ, ଠେଙ୍ଗାଟାକୁ ଝୁଲେଇ ଖାଇବ ହାତରେ ଯାଇଁ ଗ୍ଛମୁକରଣଙ୍କ ଆଗରେ ପହଞ୍ଚିଲା ।

ଏହା ଭିତରେ ଗ୍ଛମୁକରଣଙ୍କ ମନ ହେଉଥାଏ ସେ ଯାଇ ଗୋକଳାକୁ ସାହାଯ୍ୟ କରି ପକାନ୍ତେ ଗୋରୁ ଦିଟାକୁ ବାନ୍ଧିବାରେ । କିନ୍ତୁ ଅସଲ ହୁସିଆର ଗ୍ଛମୁକରଣେ, ପଦାକୁ ବାହାରିବେ ସିଏ ଆଉ ଏତେବେଳେ, ପଡ଼ିଲେ ପଡ଼ିବ ଦୋଷ ସବୁ ଗୋକଳା ମୁଣ୍ଡରେ । ହୁଁ, ସିଏ କଣ କଲେ, ସିଏ ତ ବସି ଶିରସ୍ତା କାମ କରୁଚନ୍ତି ।

ଶିବଙ୍କର ସାପକୁ ନ ଖାଇ ପାରି ଗରୁଡ଼ର ଯେପରି ଦୁଃଖ ହୋଇଥିବ, ଏହିପରି ଦୁଃଖ ମୁହଁରେ ଖେଳେଇ କହିଉଠିଲା ଗୋକଳ······

ମଲା—ମଲା, ଇଏ ତ ବାବୁଘର ବଳଦ, ତାଙ୍କୁ ଆଉ କଣ କରିବା ?

ବିଚରା ଗୋକଳ ଏହା ପୂର୍ବର କଥା କିଛି ଜାଣି ନ ଥିଲା । ସେଥିଲାଗି ତାକୁ ଗ୍ଛମୁକରଣଙ୍କର କୋପଦୃଷ୍ଟିରେ ପଡ଼ିବାକୁ ହେଲା ହଠାତ୍ । ଚିତ୍କାର କରି କହି ଉଠିଲେ ଭିକାରୀ ମାହାନ୍ତି—

ବେଇମାନ୍, ନିମକ୍‌ହାରାମ୍—ବଦ୍‌ମାଏସ୍ ; ମୋ ସାଙ୍ଗରେ ପିଆଦ···

ଗୋକଳ ସିଂର ହାତରେ ଛଡା ଉଠିର ଠେଙ୍ଗା, ଦେହରେ ପଣ୍ଡୁ ଗୋଟାକର

ବଳ । ଷାଠିଏ ବର୍ଷର ବୁଢ଼ା ଗ୍ରାମୁକରଣଙ୍କ ହାତରେ ଗୃଖଣ୍ଡେ ଲମ୍ବର ପକ୍ଷୀ କଲମ ।

ଉଁ, ଏଇ ପକ୍ଷୀ କଲମ ଟିକକୁ ସିଏ ଡରିବ ପୁଣି ଏତେ ! କ'ଣ ତାହାର କାମରେ ଆସେ ଏହି କଲମ ! ମାସ ଶେଷରେ ତାର ଦରମାଟା ଥରେ ସିହାରେ ଲେଖାହୁଏ ଏଇଥିରେ । ସେ ପୁଣି ଟଙ୍କା ବୋଲ ପାଞ୍ଚଟା । କାଲ ସକାଳର ମହନା, ସିଏ ଆଜ ପାଞ୍ଚଟା ଟଙ୍କା ଫୋପାଡ଼ ଦଉଛ କାମ ପଇଲେ । ଆଉ ସେ ଏଇ ପାଞ୍ଚଟା ଟଙ୍କାରେ ପଡ଼ିଚ ଦଶ ବର୍ଷ ହେଲା । ହୁଁ, ଏହାକୁ ପୁଣି ସେ ଡରିବ ! ଏତେ ଆଖି ନାଲ୍ ସହିବ ଗ୍ରାମୁକରଣଙ୍କର ! ହୁଁଃ, ପୁଅଟା ତା'ର ହେଲେ ପାର ଯାଇଥାନ୍ତା—ଅଣ୍ଡାଁଛା ଏ ପର୍ଯ୍ୟନ୍ତ ବ ଗୃଶାଳିପାଠ ଶେଷ କଲା ନା···। ନାଃ, ନ ହଉ ପଛକେ କଚ୍ଛ···ଓଃ, ନାଉ କସି, କଖାରୁ କଷି ବ କାଟି ଆଣି ଦେଲ ଗଣ୍ଡିଖଣ୍ଡିଙ୍କ ପିଡ଼ାରୁ ଏଇ ଗ୍ରାମୁକରଣଙ୍କୁ— କେତେ ଲୋକଙ୍କର ନିଶ୍ୱାସ ମୋ ଉପରେ ପଡ଼ିଚ, ତେବେ ବ'ଏ ବୁଢ଼ାଟା ହେଲା ମୋ ଉପରେ ବେଗଳ—ନାଃ, ଆଉ ହବ ନେଇ···

ତାହାର ଅଜାଣତରେ ହାତର ମୁଠାଟା ଠେଙ୍ଗା ଉପରେ ଟାଣ ହେଇଗଲା—ହଠାତ୍ ଠୁକ ହୋଇଗଲା ଠେଙ୍ଗାର ପିତଳ ମୁଠିଟା ତଳେ । ତଳର ମାଟି ଉଖୁରିଗଲା ମଧ ଟିକେ ।

ତଥାପି ଗୋକଳର ମୁହଁ ନୀରବ । ଦଶ ବର୍ଷ ସେ କଟେଇଲାଣି ଏହି କାମରେ । ରସତଲାର ଦଖଣ୍ଡରା ତାକୁ ରଖିଥିଲେ ଏଠି ପିଆଦା । କାହାନ୍ତ ସେଇ ଦଖଣ୍ଡରା ? କାହା ଆଗରେ ଆଜ ସେ ଫେରାଦ ହେବ ! ବୁଢ଼ା ବ ଅଛି ସେଇ କାଳରୁ, ଆଉ ବୁଡା ଆଜ ତାହାର ଚେରକୁ କର ନେଇଛି କେତେ ମଜଭୁତ । ସେ କଥା ବ ଭାବଲା ଗୋକଳ ।

ମୁହଁକୁ ଅନାନ୍ତ ନାହିଁ କାହାକୁ ଗାଳ ଦେଲାବେଳେ ଗ୍ରାମୁକରଣେ । ଏଇଟା ତାଙ୍କର ଗୋଟା କାଇଦା । ସେଥିଲାଗି କଲମକୁ ଅନେଇ ଅନେଇ ସେ କହିଲେ···

କଣ ଅଗ୍ନି ସୁମରଣା କରୁଚ କ ସିଙ୍ଗେ ?

ବାସ୍ତବକ ନାଆଁ ନାଭ ନ ଥିଲା ଏ ପର୍ଯ୍ୟନ୍ତ ଗୋକଳର ମନରୁ । ଏ କଥାରେ ଆହୁର ପ୍ରଖର ହୋଇ ଜଳ ଉଠିଲା ସେହି ନାଆଁ । ହଠାତ୍ ଠେଙ୍ଗାଟା ପକେଇଦେଲା ସେ ତଳେ । ସଶବ୍ଦେ ଚମକ ଉଠିଲେ ଗ୍ରାମୁକରଣେ । ଦେଖିଲେ, ନଇଁ ଆସୁଛ ଗୋକଳା ତାଙ୍କ ପାଖକୁ ।

ଚଶମାଟା ନାକରୁ କାଢ଼ୁ କାଢ଼ୁ ଗୋକଳ ଧର ପକେଇଲା ତାଙ୍କର ହାତକୁ । ସେତେବେଳକୁ ଥର ଉଠିଲେଣି ଗ୍ରାମୁକରଣେ ।

ତାଙ୍କର ସକଳ ଭୟକୁ ବନାଶ କର ଗୋକଳ କେବଳ କହିଲା···

ନେଖିଦଅ—ନେଖିଦଅ, ଆଜ ମୁଁ ବରଖାସ୍ତ କଲ ଗୋକଳ ସିଂହ । କଚ୍ଛ ତା' ଉପରେ ଇଲାକାର ବାଙ୍କି ବୁକର ନାହିଁ·····

ବଲବଲ କର ଗୃହିଁରହିଲେ ଗୋକଳର ମୁହଁକୁ ଗ୍ରାମୁକରଣେ । ତାହାର ଅର୍ଥ, ଭୁ କଣ କହୁଚୁ ଗୋକଳ !

ସେହିପର ଥାଇଁ ଉତ୍ତେଜିତ ହୋଇ କହିଲା ଗୋକଳ—ଏକ ବାପ୍, ଏକ ବାତ୍ ।

## —ଛଅ—

ଗୁଳିଗଲା ଗୋକଳ ।

ତାହାର ଇଚ୍ଛା ହେଉଥାଏ, ଏହି ସ୍ୱାର୍ଥଗୃଧ୍ନୁ ବୃଦ୍ଧକୁ ଶୁଣାଇ ଦେଇଯାଆନ୍ତା ଦି' କଥା — କିନ୍ତୁ କଣ ଭାବି ସେ ସମ୍ବୃତ ହେଲା ସେଥିରୁ ।

ବଡ଼ ନିଶୂନ୍ ଲାଗିଲା ଗୁମ୍ମୁକରଣଙ୍କୁ କଟଣିଟା ବର୍ତ୍ତମାନ । ଏଠାରେ ଏପରି ଘଟିବା ଏହା ହିଁ ତାଙ୍କ ଇତିହାସରେ ବୋଧହୁଏ ପ୍ରଥମ । ତାଙ୍କର ଶର-ସନ୍ଧାନ ଏ ପର୍ଯ୍ୟନ୍ତ ହୋଇ ନି, ମାତ୍ର ଗୋଟାଏ ଧନୁ ଭାଙ୍ଗିଗଲା ଉଦ୍ୟୋଗ ପର୍ବରୁ । କିନ୍ତୁ ଶର ନଷ୍ଟ ହୋଇ ନାହିଁ, କିମ୍ବା ଲକ୍ଷ୍ୟଭ୍ରଷ୍ଟ ହୋଇ ନାହିଁ ; ଏହା ହିଁ ତାଙ୍କ ପକ୍ଷରେ ପରମ ଆଶ୍ୱାସନା । ଯାହାହେଉ, ସେ କିନ୍ତୁ ଭାବି ନ ଥିଲେ, ଆଳୁ ଖୋଳୁ ଖୋଳୁ ଅକସ୍ମାତ୍ ମହାଦେବର ସ୍ପର୍ଶ ପାଇବେ । କିନ୍ତୁ ଓସ୍ତାଦ୍ ଶିକାରୀ ସେ— ପୋଖତ୍ ଖେଳଓ୍ୟାଡ଼୍ ଏଥିକି ତବେ କରନ୍ତି ସେ କେତେକେ ! କେତେବେଳେ ନାଆ ଉପରେ ଗାଡ଼ି, କେତେବେଳେ ବା ଗାଡ଼ି ଉପରେ ନାଆ । ପବାର ଚେର ନ ହେଲେ କେତେ ବାର, ହରିଣ ନ ପାଇ ଶୂନ୍ୟର ମୂଲ୍ୟ ସେ ଭଲଭାବରେ ଜାଣନ୍ତି ।

କିଛି ସମୟ ପରେ କିନ୍ତୁ ମନଟା ତାଙ୍କର କ୍ରମେ ନରମ ଧରି ଆସିଲା । ଏହି ନରମ ମନର କୋମଳ ଭିତ୍ତି-ଭୂମି ଉପରେ କ୍ରମେ କ୍ରମେ କେତେକ ବର୍ଣ୍ଣ-ବ୍ୟଞ୍ଜନା ଦେଖାଦେଲା ଆସି । ଆଖି ଆଗରେ ଯେପରି ତାଙ୍କର ଛବି ଖଣ୍ଡିଏ ଫୁଟି ଉଠିଲା ଶେଷରେ···

ଏଁ, ଏ ଯେ ଦଖଣ୍ଡିରା ଖୋଦ୍, ହାତରେ ତାଙ୍କର ଆଲ୍‌ବାଲାର ନଳ । ତାଙ୍କର ସ୍ୱର ବି···

ଭିକାରି, ଏ ଗୋକଳ ରହିଲା ତୋର, ଆଉ ରସତଳାକୁ ମୁଁ ଓ୍ୟାସିଲ୍ କି ନେଇଯାଉଚି । ଏ ଖଣ୍ଡଙ୍କ ପାଖରେ ଖଣ୍ଡ ରଖିଲେ ଯାଇଁ ତୁ ଜିତିବୁ···ଆଉ ତୁ ଆକୁ ଅନେଇଲେ ତୋ ପେଇଁ ଜୀବନ ଦେଇ ଦବ ଏଇ ଗୋକଳା । ଗୋକଳ, ତୋର ମୁନିବ ଏଇ ଗୁମ୍ମୁକରଣ···ଜାଣିଲୁ···ଉଁ···

ଏଁ, ନୋକା, କରେ ଘୋଡ଼ା ଆସିଚି କି ସା'ନ୍ତଙ୍କର···ଏଁ, ଚିଠି, ଦେ ଦେ ।

ହୁଁ, ଚିଠିରେ ଲେଖିଚନ୍ତି ଦଖଣ୍ଡିରା—ଭିକାରି, ମୋର ଆଉ ଭଲ ହେବାର ଆଶା ନାହିଁ । ସେହି ଯେଉଁ ଘୋଡ଼ାରୁ ପଡ଼ି ଯାଇଥିଲି, ତାରି ଯଖମ ଏତେ ଦିନ ପୁଣି ବାହାରି, ଡାହାଣ ପାଖଟା ଯାକ ମୋର ଅଚଳ ହୋଇ ପଡ଼ୁଛି । ରସତଳା ବୁଝୁଚି

ମୋର ପୁତୁରା, ପ୍ରଭାତର ତ ପାଠପଢ଼ାରୁ ଏବେ ବି ମନ ଘୁଞ୍ଚୁ ନାହିଁ । ତତେ ଲାଗିଲା ଆନକା, ମାଲଗୁଜାରି କେବେ ଯେମିତି ବାକି ନ ପଡ଼େ...

ହା-ହା-ହା—କେଶବା ଆଜି କେଶବରାମ ଦାସ । ଅପା, ଅପା, ପୁଅ ତୋର ମରକନ୍ଦ ମଠର ମହନ୍ତ । ଲଛମନ୍ ରାମ୍ ଚମ୍ପଟ—ଆଜି ଯାକେ ଜାଲ କେଶବ-ରାମ ସାଜିଥିଲା ସିଏ । ସାଆନ୍ତେ, ତମର ଯୋଗୁ ଆଜି ମକଦ୍ଦମା ଜିତିଲୁ ସାଆନ୍ତେ—ତମରି ଯୋଗୁ କେଶବା ଆଜି କେଶବରାମ ଦାସ ।

ଫତେ, କଲା ଫତେ । ମାହାଲ ବାକି ଚାରି ହଜାର । ହେଇ ଧାପିକା ଦେଖିବେ କେଶବା । ଏଥର ଆନକା ଛଉକ ଆମର । ଆରେ, ଏ ଛଟି ଖଣ୍ଡକ ସେଇ କାଲର ନା...ଭିକାରି, ତତେ ଲାଗିଲା ଆନକା...ହି-ହି-ହି-ହି—ଦଆସିଲ୍ ଟା ଆଣିଲୁ କେଶବା...

ଆରେ, ଏ ବାଉରଣୀ ଟୋକୀଗୁଡ଼ା କଣ ମଠ ଭିତରେ ପଶୁଛନ୍ତି ? କହୋ କଣ୍ଟୁରି, ଇଏ କଣ ?...ଆଜ୍ଞା, ବଗିଚା କାମ କରୁଛନ୍ତି ସେଗୁଡ଼ା । ଆଉ ଏ କେଶବାଟା କଣ ଖାଲି ତାଙ୍କରି ଭିତରେ ବୁଲୁଚି—ଦିନରେ ଗୋଟା ପକେଟ୍‌ବତି ଧରିଚୁ କାହିଁକି ରେ କେଶବା ?

ମାମୁଁ, ତମର ଆନକା କଟାଗ୍ର । କଣ୍ଟୁରିବାବୁ ଆଉ ମୁଁ ଏଠି...କାଲି ରାମନବମୀ ମାମୁଁ...ହା-ହା-ହା—ସବୁ ଡେ-ଲାଇଟ୍ ଯାକ ମୁଁ ଜଳେଇବି—ନିଜେ ବି ପମ୍ପ୍ ଦେବ ।...ହା-ହା—ଗୋଟିପିଲାଙ୍କ ମୁହଁରେ ପାଉଡ଼ର ବି ମୁଁ ବୋଳିବି...ମାମୁଁ ତମର ଆନକା କଟାଗ୍ର । ମୁଁ ମରକନ୍ଦ ମଠର ମହନ୍ତ...

ବୁଝି ସାବଧାନ...କଣ୍ଟୁରିଆକୁ ସାବଧାନ କେଶବା...

ହଁ, ଆଜି ଦଖଲ ନବାର ଦିନ । ହେ ବାଜାବାଲା...ଖୁବ୍ ଜୋର୍‌ରେ ବଜା । ଆରେ ଗୋଟା ବାନା ବାନ୍ଧିଦିଅ ଏ ଗଛରେ । ହଁ, ଏ ଗଛଟା କାଟି ପକା । ହଁ ଜାଲ ପକା ସେ ପୋଖରୀରେ । ଆରେ ବାଘୁତିମାନେ, ମାଛ ମାର ତମେ ନଈରୁ... ରଘୁଆ, କରେ ଆମ୍ବପତ୍ର ଆଉ ନଡ଼ିଆ ଡାଳ ବାନ୍ଧ—କରେ କଦଳୀଗଛ ପୋତ ନୁ କାହିଁକି ?

ହେ ଗୋକଳା......

ଚମକି ଉଠିଲେ ଘୃମୁକରଣେ । ଅତୀତର ସ୍ୱପ୍ନ ସଙ୍ଗରେ କଠୋର ବାସ୍ତବତା ଆସି ଧକ୍‌କା ଖାଇଲା । ନୂଆ ଲୁଗା ବାଣ୍ଟିବାକୁ ସେ ଗୋକଳାକୁ କହିବା ପାଇଁ ଭୁଲିଗଲେ ଯେମିତି...

ଫେରି ଆସିଲେ ଘୃମୁକରଣେ ପୁଣି ବର୍ତ୍ତମାନ ଭିତରକୁ । ଜୀର୍ଣ୍ଣ ଅତୀତ । କଣ ସେଥିରେ ଅଛି ମଣିଷ ପାଇଁ ଆଉ ବେଶି ! ତଥାପି ବର୍ତ୍ତମାନ ଅତି ଅସୁସ୍ଥ । ବ୍ରଣମୟ । କିନ୍ତୁ ଅତି ପାଖର । ଘରପାଖରେ ମାୟା ବିସ୍ତାର କରିଛି ସେ ଘୃମୁକରଣଙ୍କର ।

ସେତିକିବେଳକୁ ସେ ଉଠି ନ ଥିଲେ ଗୋଟାଇ ଜାଗାରୁ—ଯେପରି ଭୂତ ଭେଟିଥିଲେ ସିଏ କିଛି ସମୟ ଆଗରୁ । ଭୂତ ନୁହେଁ ତ ଆଉ କଣ, ଗୋଟା ଜୀଅନ୍ତାଭୂତ

ଏଇ ଗୋକଳ ସିଂ । ତା ନ ହେଲେ କଏ ଏମିତି ରଗେ ! ଆରେ, ପେଟ ପୋଷିବାକୁ ମୁଣ୍ଡ ବିକଲେ ଯୋଡା ମାଡ଼ ବି ସହିବାକୁ ହୁଏ ; କଥା ପଦେ ବି ସହି ପାରିଲା ନାହିଁ ସିଏ ? ଓହୋ, ଦୁଧ ଦେଇ ସାପ ପୋଷିଥିଲି ମୁଁ ଆଜି ଯାକେ ! ଖୁବ୍ ଭଲ ହୋଇଚି— ଦଖଣ୍ଡରୁ ସବୁ ସ୍ମୃତି ପୋଛି ଚାଲିଯାଇଚି ଏଇ ଗୋକଳା । ଏଇ କଚେରୀଟାକୁ ଭାଙ୍ଗି— ନୂଆ କରି ଗଢ଼ିଦେଲେ ବି ଠିକ୍ ହୁଅନ୍ତା···ଏଇ ଲଢ଼େଇ, କୋଉଠି ଶଳା ଲାଗିଚି ଲଢ଼େଇ ?

ଏଁ—ହୁଁ, ନାଗରା ଦେଇ ଦବାକୁ ହବ—ଫିସାଦ କଣ କିଛି ନ ଶିଖିଚି ସିଏ ଆଜି ଯାକେ !···ଆରେ, ଦଧି ବେହେରା ଠଉଁ ବାହା ଭୋଇନା ଆଣିବାକୁ ଦି ଟଙ୍କାର ରସିଦ୍ ଲେଖି ଦେଇଥିଲି ତାକୁ; ଏଁ ପୁଣି ତ ଅଛି, କେଲୁଣୀ ଚନ୍ଦ୍ରଆଣୀ ଠଉଁ ଜୋରିମାନା ପାଞ୍ଚ ଟଙ୍କା ଆଦାୟ କରିବାକୁ କହିଥିଲି···ଓ, ଶଳା ବଡ଼ ବଦ୍‌ଖିଆଲ୍ ମୋର ! ନାଃ, ନାଗରା ଦେଇ ଦବାକୁ ହବ···ଇଲାକାରୁ ବାହାରି ଯାଇଚି ଗୋକଳ ସିଂ ।

ଉଠି ବାଡ଼ି ଧରିଲେ ଗ୍ରାମୁକରଣେ । ଚଷମାକୁ ଟିଣ ଖୋଳରେ ବନ୍ଦ କରି ପୂରେଇଲେ ପାକିଟିରେ ।

ଏଁ, ଆରେ କଏ ଅଛ ସେଠି ?

ଏଁ, କଏ ଚାଲି ଆସିଲା ଘର ଶୁଭିଲା···

ନର୍ମଦାସ୍ତିକ । ନର୍ମଦାସ୍ତିକ । ନର୍ମଦାସ୍ତିକ ।

ଆଉ କିଛି ନ ପାଇ ସର୍ପ ଭୟ ନିବାରଣ ମନ୍ତ୍ରଟା ଭୂତ ଭୟ ନିବାରଣ ପାଇଁ ପ୍ରୟୋଗ କଲେ ସେ ।

ନାଁ, ଆଉ କଣ !

ତଥାପି ମଧ ମୁହୂର୍ତ୍ତ ଧରିବା ପାଇଁ ନିଶ୍ୱାସ ବାରିବା ଲାଗି ନାକ ମୂଳେ ହାତ ଦେଲେ ଗ୍ରାମୁକରଣେ ।

ଏତିକିବେଳେ ବାହାର ରାସ୍ତା ଉପରେ ପାଟି ଶୁଭିଲା···

ଆରେ ତୁ ମତେ ଆ' କହିଲୁ···ଆଜିଯାକେ ତମର ଆମର ଗାଈ ପୁଅ ବଦଳ ହୋଇ ନେଇଁ···ତୁ ମତେ ଆ' କହିଲୁ ।

ହରି—ହରି—ହରି—ହରି—ଓହୋ···

ଗୋଡ଼ରେ ଶକ୍ତି ପଶିଲା ଗ୍ରାମୁକରଣଙ୍କର । "ଆରେ କଏ କି ରେ···କଏ କି ରେ···କଏ ମୂଷି"···କହି କହି ସେ ବାହାରି ଗଲେ କଚେରୀ ଘରୁ । ଆଉ, ଏହା ଦ୍ୱାରା ସେ ପ୍ରମାଣ କରି ଦେଇଗଲେ, ହରି ଏବଂ ଆସ୍ତିକ ଋଷିଙ୍କ ଅପେକ୍ଷା ଜ୍ଞାତିଭାଇର ଶକ୍ତି ଅଧିକ । ମୂଷା ତାଙ୍କର ପାଖରେ ନ ଥାଉ, ହେଇ ରାସ୍ତା ଉପରେ କଥା କହୁଚି ତ ସିଏ ! ଭୟ କଣ !

କୌଣସି ସୁଯୋଗ ଚାଲିଯିବା ଆଶଙ୍କାରେ ଝଟ କବାଟ ବନ୍ଦ କରି ଆଣି ତାଲା ଦେଇ ଦେଲେ ଗ୍ରାମୁକରଣେ । ପିଣ୍ଡାରେ ଠିଆ ହୋଇ ଅଣ୍ଟାଟା ସଳଖି ନେଲେ ଟିକେ—ମୁହଁଟା ପୋଛି ନେଲେ ଚାଦରରେ । ଏ କଚେରୀଟା ଆଜି ଯେମିତି ଭୂତ କୋଠି—ସେ ଆଉ ଏଠି ବେଶି ସମୟ ଅତିବାହିତ କରିବାକୁ ଚାହାନ୍ତି ନାହିଁ । କିନ୍ତୁ

ଦୁର୍ଯୋଗ ତ, ଏହି ସମୟରେ କାନରେ ତାଙ୍କର ପଡ଼ିଲା କାହାର ପଦଶବ୍ଦ । ସେ ମୁହଁ ଫେରେଇ ଦେଖିଲେ ଗୋଟାଏ ଗୋରୁ । ସେହି ସକାଳର ଗୋରୁ ଭିତରୁ ଗୋଟାକ ଦୋସର ଇଏ, ଏ କଥା ଭାବିବାର ତର ଲୋଡ଼ିଲେ ନାହିଁ ଗୁମୁକରଣେ । ଆସି ପୁଣି ପିଣ୍ଡା ଖଣ୍ଡରେ କାନ୍ଧ ଘଷି ହେଲାଣି ସିଏ ।

ହେଁ ଶଳା, ତମରି ଯୋଗୁ ଆଜ ଏତେ କାଣ୍ଡ...

ଦ୍ୱି ଖଣ୍ଡ ହୋଇ ଭାଙ୍ଗିଗଲା ନାଗୁର୍ଣୀ ବାଡ଼ି ଖଣ୍ଡିକ । ହାତ ମୁଠାଟା ବି ଝିମ୍‌ଝିମ୍ ହୋଇଗଲା ତାଙ୍କର । ପିଠିଟାକୁ ସାର୍କି ଦେଇ କେବଳ ଦୂରକୁ ଅପସରି ଗଲା ପଶୁଟା—ଅରମା ପାହାଡ଼ରେ ଝେକା ବାଜ ଯେମିତି ଚହଲି ଗଲା ତାହାର ଗୁଳ୍ମ-ଲତା ।

ବହୁତ ଦିନର ଚେଲ, ଅନେକ ଦିନର ଯତ୍ନ ଏବଂ ସ୍ପର୍ଶର ବିନିମୟରେ ଯଷ୍ଟି ଖଣ୍ଡିକ ଦେଇଗଲା କେବଳ ବ୍ୟଥା । ମନ ଓରମାନ ଯାହା ମେଣ୍ଟିଲା, ତାହା ହୋଇଗଲା ଅତି ତୁଚ୍ଛ ।

ମୂଷାକୁ ସେ ଡାକୁ ନ ଥିଲେ ତାକୁ ସାହାଯ୍ୟ କରିବେ ବୋଲି । ନିରାଶ୍ରୟର ଆଶ୍ରୟ ଆଶାରେ ତାଙ୍କର ଥିଲା ସେହି ଚିତ୍କାର । ଏବେ ପୁଣି ସେ ଲୋଡ଼ିଲେ ମୂଷାକୁ । ଯେମିତି ଅନ୍ଧାର ପରେ ଆଲୁଅ ଆସି ଅନ୍ଧାରକୁ ଆହୁରି ଭୟାବହ କରି ନିଭିଯାଇଛି ।

ଗୁମୁକରଣେ ଦେଖିଲେ, ରାସ୍ତା କଡ଼ର କନିଆର ଗଛ କଡ଼ରେ ଦିଶୁଛି ମୂଷା । ଟିକେ ସାମର୍ଥ୍ୟ ଖର୍ଚ୍ଚ କରି ସେ ଡାକିଲେ...

ମୂଷା—ରେ ମୂଷା,...ମୂଷା ରେ...

ବାସ୍ତବିକ ଏ ସ୍ୱର କରୁଣ । ଦାରୁଣ ଦୁଃଖରେ ଯେ ପଡ଼ିଥାଏ, ଏ ସ୍ୱର ପ୍ରସନ୍ନ ହୁଏ ତାହାକୁ ।...କେଉଁକାଳର କେତେ ପ୍ରିୟ ବାଡ଼ିଟି ତାଙ୍କର । ନଖିଆ ବଢ଼େଇର ହାତଯଶ ଧରି କେତେ ଯଶ ଦେଇ ଆସୁଥିଲା ସେ ତାଙ୍କୁ । କେତେ ଦୂରରୁ ପୁଣି ସେ ଆସିଥିଲା—ପଟ୍ଟନାଏକ ବଂଶର ବନ୍ଧୁ ପଠେଇଥିଲା ନୟାଗଡ଼ ମୂଲକରୁ । ତାହାର ପୁଣି ଏହି ଶୋଚନୀୟ ପରିଣତି !

ମୁରୁକୁଟିଆ ଘାସ ଉପରେ ଭଗ୍ନାଂଶ କଣ୍ଟଥାଏ ସେହି ବାଡ଼ି । ତାହାର ଫଳ ଯେପରି ଲେଖି ହୋଇଯାଉଚି ଗୁମୁକରଣଙ୍କ ଆଖିରେ ।

କଣ ବଡ଼ ପାର୍? ଆଁ, ଏ ବାଡ଼ି ଭାଙ୍ଗିଗଲା କେମିତି ?

ଗୁମୁକରଣେ ଦେଖିଲେ, ମୂଷା ପହଞ୍ଚିଛି ପାଖରେ । ପୁଣି ଦେଖିଲେ, ମୂଷା ଯାଉଁ ଧରୁଚି ସେଇ ଭଙ୍ଗା ବାଡ଼ିକ । ପାଟିକରି ଉଠିଲେ ଗୁମୁକରଣେ ।

ହାଁ ହାଁ ହାଁ...ସେମିତି, ସେମିତି ପଡ଼ି ଥାଉ ସେ । ଆରେ ଶୁଣିଲୁ...ଓହୋ, ମୋ ପରି ଲୋକ ସାଙ୍ଗରେ ଏତେ ବଦମାସି...ଆଉ ସେ ଇଲାକାରେ ନ କରୁଥିବ କଣ !

ଏଥିରେ ଆହୁରି ଆକାଙ୍କ୍ଷା ବଢ଼ିଗଲା ମୂଷାର । ହୃଷ୍ଟପୁଷ୍ଟ ଟୋକା...ଆଖି ଦିଟା ବି ଉଜଳ—ସେଥିରେ ସେ ଗୁହାଁରିଲା ବଡ଼ପାଙ୍କୁ ।

ଆରେ ତୁ ତାଜୁବ୍ ହବୁ ଶୁଣିଲେ ଯେ ସିଙ୍ଗ ଟୋକାର କଥା । ଗୋରୁଗୁଡ଼ାକ ପଶି କଟଗଣ ଘରଟାକୁ ଦୁର୍ଦ୍ଦଶନ କଲେ, ଗୋଡ଼େଇ ଯିବାକୁ କହିଲରୁ...କହିବ ମୋ

କାମ ନୁହେଁ ସିଏ—ମତେ ମାରେ କି ନ ମାରେ । ପୁଣି ମୋ ଜୀବନ···ସେ ଖଣ୍ଡିକ ଆଣି କେତେବେଳେ ଏଠି ଭାଙ୍ଗି ଫୋପାଡ଼ି ଦେଇଯାଇଚ, ଯେମିତି ମୁଁ ଦେଖିବି—ଠିକ୍ ସାମନାରେ ।···ହଁ, ସେମିତି ପଡ଼ିଥାଉ ସିଏ···ମତେ ସେଇ ଭଙ୍ଗା ବାଡ଼ି କହିବ···ତା'ର ବଦମାସି ମୋର ମନେ ପକେଇ ଦବ—

ଏତେ ଗମ୍ଭୀରକୁ ଫଶିପାରିଲା ନାହିଁ ମୂଷା । ପିଲଟା ବି ଆଉ ରକମ୍ । ବଡ଼ପା'ଙ୍କ ମନା ସତ୍ତ୍ୱେ ଭଙ୍ଗା ବାଡ଼ିକି ଗୋଟେଇ ଆଣି, ତାକୁ ଦେଖି ଦେଖି କହିଲା—

ନା, ବଡ଼ପା, ଇଏ ତ ଯୋଡ଼ି ହୋଇଯିବ । ଯୋଗିଆ କମାରକୁ କହିଲେ ଝଟା ନୂଆ ମୁଦିଆ ଏଠି ବସେଇ ଦବ ।

ତାହା ପରେ ଆହୁରି ପରୀକ୍ଷା କରି କହିଲା—ହଁ, ଠିକ୍ ତ ହବ ।

ହବ ! ଆଁ ! ହବ ବାପା ଏ ବାଡ଼ି ଖଣ୍ଡିକ ଯୋଡ଼ି । ତା' ହେଲେ ତ ଠିକ୍ ଆଉ, ଏଠି ପଡ଼ି ଥେଲେ କିଏ ହେଲେ ନେଇ ପାଇଥାନ୍ତା—ଭୁଲିଯାଇଥାନ୍ତି ମୁଁ ସବୁ କଥା । ଠିକ୍ ବାପା, ନୂଆ ମୁଦିଆ ବସେଇ ଦେଲେ ହବ—ଆଉ ତାକୁ ନିତି ଦେଖି ଦେଖି ନୂଆ ମୁଦିଆ ବି ବସି ରହିବ ଏ ମନରେ । ଆଉ ଭୁଲେ ତୋ ବଡ଼ପା !—ଆଁ, ମୂଷା, ଏକା ତୋ ଶରୀରକ ରଇଲା ଏତକ—ତୋର ତଜ୍‌ବିଜ୍ ଭଲ, ତୁ ବସିକରି କରିଆଣିବୁ ଯୋଗିଆ ଘରୁ ଆଁ ? ଆରେ, କାଲି ତୁ କଚଟୀକ ଆସିବୁ—କାଲି ଏଠି ଆମର ଫିଷ୍ଟ୍ ହବ, ତୁ ଜାଣି ନଇଁ ?

ହୋନ୍‌ହାର କମ୍ପା ନିର୍ବାହ କହିଲେ ଯା ବୁଝାଏ, ମୂଷା ସେଯୁ । ପଡ଼ଶା ଶିବ ମହାନ୍ତିଙ୍କ ପୁଅ । ଅସଲ ନାମ ମହେଶ୍ୱର । ସେ ଏତେ ହୋନ୍‌ହାର ଯେ, ଯଦିଓ ସେ ବର୍ଷେ ହେଲା ମାଇନର ପାଶ୍ କଲାଣି, ତଥାପି ତାକୁ ଏହି ତିନି ମାସ ତଳେ ଇଶର୍ ମିଶର୍ ଶବ୍ଦର ଅର୍ଥ ବୁଝିବାକୁ ପଡ଼ିଥିଲା ତାର ମା' ଠାରୁ ।

ସଂକ୍ରାନ୍ତି ଦିନ ଉତ୍ତରେଶ୍ୱରଙ୍କ ପାଦୁକ ପାଇ ମୁଣ୍ଡରେ ହାତ ବୋଳୁ ବୋଳୁ ସେ ତାହାର ବୋଉକୁ ପଚାରିଲା···ବୋଉ, ଇଶର୍ ମିଶର୍ ଗୋଟା ଫେର୍ କଣ ନାଁ ?

ହସି ହସି ବୋଉ ତାର ତାକୁ ଧେନି ଆସିଲେ ଦୁଆରକୁ, ସେଠି ସେ ପର୍ଯ୍ୟନ୍ତ ସ୍ୱୟଂ ଇଶର୍ ମିଶର୍ ଠିଆ ହୋଇଥାନ୍ତି ବିଦାୟୀ ଆଶାରେ ।

ଦେଖ, ତମ ପାଦୁକ ପିଉଚ ପିଲାଦିନୁ, ତମ ନାଁକୁ ସେ ବୁଝିପାରିନେଇ, କୁହୁଚ ଇଶର୍ ମିଶର୍ କଣ !

ଇଶର୍ ବି ନିଜେ ବୁଝି ପାରିଲେ ନାହିଁ ପିଲଟାର ଭୁଲ୍ କେଉଁଠି । ପାଦୁକ କମ୍ପା ବେଲପତ୍ର ଛଡ଼ା ଈଶ୍ୱରକୁ ଚହ୍ନିବା ଦରକାର ପଡ଼େ ନା ତାଙ୍କର । ସେ ଜାଣିବେ କାହିଁକି, ଈଶ୍ୱର ଈଶ୍ୱର କି ଇଶର୍ । କେବଳ ପୂରୁଖାର ଭଙ୍ଗୀରେ ହସି ଦେଇ ସେ କହିଲେ···

ନିଅ, ଆଉ ଟିକେ ପାଦୁକ ନିଅ ବାବା, ଇଶରଙ୍କ କୃପା ହେଲେ ବଳେ ହେଇଯିବ !

ତଥାପି, ମହେଶ୍ୱର ମନରେ ଭାବିଲା, ସେ ପଚାରନ୍ତା କେବେ ଇଶରଙ୍କ କୃପା ହବ—ଠାକୁର କଣ ତମକୁ ଏବୁ କଥା କହୁଛନ୍ତି ?···ଏପର୍ଯ୍ୟନ୍ତ ତା' ଆଗରେ

ମଧ୍ୟ ଅର୍ଥଶୂନ୍ୟ ଦୃଷ୍ଟି । ନାଁରୁ ଯାଇ ଗାଁରେ ପହଞ୍ଚିଗଲାଣି ସିଏ । ଆହୁରି ଦୁର୍ଜ୍ଞେୟ ।

ଏତିକିବେଳେ, "ଈଶ୍ୱର ଆଉ ମିଶ୍ର, ଈଶ୍ୱର ତାଙ୍କର ନାଁ, ମିଶ୍ର ତାଙ୍କର ସାଙ୍ଗି" ତାର ମା' କହି ଉଠିଲେ ହସି ହସି । ଆଉ ପୁଅ ହାତରେ ପଇସା ଦେଇ କହିଲେ, "ନେ, ନନାଙ୍କୁ ଦେଇଆ ।"

ସମବୟସ୍କା ନାରୀମାନଙ୍କ ମଧ୍ୟରେ ମହେଶ୍ୱରର ମା ଶିକ୍ଷିତା । କେତେବେଳେ ସେ ବହି ପଢ଼ିଲେ ଚଷମା ଦେଇ ପଢ଼ନ୍ତି । ବିତ୍ତବାନ୍ ନ ହେଲେ ମଧ୍ୟ ଏକ ସଂସ୍କୃତିବାନ୍ ଘରର ଝିଅ ।

ଈଶର ଦେଖିଲେ, ଚୌକଣୀ ଗ୍ଲେଜ୍ ଦୋ ପଇସିଟିଏ । ସେ ମନେ ମନେ କହି ବାହାରିଗଲେ—ଈଶର କରନ୍ତୁ ଯୁଦ୍ଧ ଏଇଖିଣି ନ ସରୁ, ଟ୍ରେନ୍ ଚକକେ ନ ମିଳୁ ପାଦୁକରେ ପେକଇବା ପେଇଁ, ଏକା ପଇସା ପରି ଏ ଦୋପଇସି ବି ଶୂନ୍ ହେଇ ଯାଉ ଦୁନିଆରୁ···ଅଣୀଟିଏ ଲେଖାଁ ହେଇ ଯାଉ ମୋର ବଦାଙ୍କି । କେତେ ଖରା-ତରାରେ ତୋ ପାଦୁକ ଘିଡି ବୁଲୁଚି, ହେ ଈଶର୍ ଭୁ ବୁଝ ।

ଏହିପରି ହୋନ୍‌ହାର୍ ଏକ ଅଜାତଶ୍ମଶ୍ରୁ ବାଳକ ପାଖରେ ଗୁମୁକରଣେ କହିଗଲେ ଅନେକ କଥା । କିନ୍ତୁ ସେଥିରୁ ସେ କେବଳ ବାଡ଼ ଖଣ୍ଡିକ ମରାମତି ହୋଇ ପାରିବାର ଦେଖିଲା । ସେମିତି, ଏ ଫିଷ୍ଟ୍ କଥାରୁ ବଡ଼ପା'ଙ୍କର କେତେ କଥା ଜାଣିବା ପାଇଁ ପ୍ରଶ୍ନ କରିବାର ବାଟ ଥିଲେ ମଧ୍ୟ ସେ କେବଳ ପଚାରିଲା···

କିଏ ସେଇ କଲିକତିଆ ନନା ରାନ୍ଧିବ ବଡ଼ପା ?

ବଡ଼ପା'ଙ୍କ ପାଟିରୁ ଉତ୍ତର ବାହାରିବା ଆଗରୁ ସେ ପୁଣି କହିଲା—ତମର କାହିଁକି ବିନା ପାଣ ଠଉଁ ଛେଳି ଆଣିଲ ବଡ଼ପା, ଓଃ, ସିଏ ଭାରି କାନ୍ଦୁଚି ଗୃହ, ତମ ପାଖକୁ ସିଏ ଆସିବ ଯେ···କେତେଥର ତା' ମାଇପ ଆସି ତମକୁ ଖୋଜିକରି ଗଲାଣି···

ଖୁଡ଼ୁତା-ପୁତୁରା ସେତେବେଳକୁ ଆଗେଇ ଗଲେଣି କିଛି ଦୂର । ଗାଁ ଦାଣ୍ଡ । ଦି' ପ୍ରହର ଦିନ । ଏଥିରେ ଆଉ ଭୟ ପାଇବାରେ କିଏ ଅଛି । ଏ ଖରା ଭିତରେ ଆଉ ଗୋକଳ ସିଂ ଲୁଚିପାରିବ କେଉଁଠି ? ତଥାପି ମଧ୍ୟ, ଲୋକଟିଏ ଭେଟିଲେ ଆଜି ତାକୁ ଗୁମୁକରଣେ ଅନେଇ ପାରୁ ନ ଥାନ୍ତି । ଏ ଲୋକଗୁଡ଼ାଙ୍କୁ ଗୋକଳ ସିଂ କହି ଦେଇଚି ନା କିଏ···ଗୋରୁ ଦି'ଟାକୁ ଫିସାଦ କରି କାଂଜିଆବୁଦାରେ ଦବାକୁ ବସି ଥିଲା ଗୁମୁକରଣ । ସେଥିପାଇଁ ସେ କେବଳ ନିଜ ଭଳି ଆଉ ଗୋଟିଏ ଲୋକକୁ କରିଥାନ୍ତି ତାଙ୍କର ସାଥୀ—ତାହା ତାଙ୍କର ଗୋଡ଼ ତଳର ଚେଚାଁ ଦକ୍ଷିଣମୁହାଁ ଛୁଇ ।

ଗାଁରେ କେବଳ ନିଶୁଆ ପ୍ରଜା ନ ଥା'ନ୍ତି । ଶ୍ମଶ୍ରୁହୀନ, ମାଖୁନା, କେଶହୀନ ପ୍ରଜା ବି ଅନେକ । ଯେଉଁମାନଙ୍କୁ ଟାଣି ଟାଣି ତାଙ୍କର ସବୁ ଶକ୍ତି ନିଃଶେଷ କରି ଦେଇଛନ୍ତି ଗୁମୁକରଣେ, ଟାଣିବା ଆଗରୁ ଯେ ନିଜକୁ କରିନିଅନ୍ତି ମୁକ୍ତ, ଯେ ଟଣା ହୋଇ ପାରିବେ ନାହିଁ ବି କେବେ, ନଗଣ୍ୟ ନୁହେଁ ସେମାନଙ୍କର ସଂଖ୍ୟା ଆନ୍‌କାରେ । ସେଥିଭିତରୁ ଯେ କେହି ଭେଟୁଥାନ୍ତି ଗୁମୁକରଣଙ୍କୁ, ସେମାନେ ଯେପରି ମାହେନ୍ଦ୍ରକ୍ଷଣର

ଯାଏଁ କମ୍ବା ସେ ସମସ୍ତଙ୍କର ଯେପରି ରୋହିଣୀ ନକ୍ଷତ୍ର—ଶନିଦୃଷ୍ଟିରୁ ସମସ୍ତେ ହେଉଥାନ୍ତି ବଞ୍ଚିତ । ଗ୍ରାମୁକରଣେ ଚାଲୁଥାନ୍ତି ଖାଲି ବାଟ—ଲମ୍ବା ଲାଗୁଥାଏ ଆଜି ଏହି ନିତ୍ୟକାଳର ପଥ ।

ପାଦତଳର ମାଟି ବି କିଛି ସମୟ ପରେ ଶତ୍ରୁତା କରି ବସିଲା ତାଙ୍କ ସଙ୍ଗରେ । ଗ୍ରାମ୍, ଗ୍ରାମ୍, ଯିଏ ମଣିଷର ଏକମାତ୍ର ଆଶ୍ରୟ; ଶେଷକୁ ସେ ହେଉଛି ବିରୋଧୀ । ଏଇଠି କାନରେ ତାଙ୍କର ପଡ଼ିଅଛି ପୁତୁରା ମହେଶ୍ୱରର କଥା—ସବୁକଥା ଭୁଲିଯାଇ ସେ ଉତ୍ତେଜିତ ହୋଇ କହିଉଠିଲେ···

ଆଁ, ଛେଳି ଆଣିଚନ୍ତି ! କାନ୍ଦୁ ଶଳା, କିଏ କହୁଥେଲା ତାକୁ ଛେଳି ପାଳିବାକୁ । ଚାଲ୍, ଚାଲ୍, ଜଲ୍‌ଦି ଚାଲ୍ ।

ପୁଣି ପାଦତଳେ ତାଙ୍କର ଆଖି ପଡ଼ିଲା । ଜ୍ୟୋତିଷ ହୋଇଥିଲେ ସେ ଗଣନା କରି ଜାଣିପାରିଥାନ୍ତେ କାହିଁକି ତାଙ୍କର ପାଦ ଅଟକିଲା ଏଠି । କିନ୍ତୁ କର୍ମବାଧା । ହଠାତ୍ ଖିଆଲ ପଡ଼ିଗଲା ତାଙ୍କର···

ଆରେ, କେଇ କୁଆଡ଼େ ନାହାନ୍ତି ତ ! ନାଃ, ବାଲିରେ ଯାଇ କେଇ ଜଣ ଗାଧୋଇକରି ଫେରୁଚନ୍ତି···ଆଉ କେଇ ଜଣ ଗାଧୋଉଚନ୍ତି ନଈରେ—ନାଃ···

ଓ, ଶତ୍ରୁତା ସାଧି ମତେ ଛୁଡ଼ା କରେଇ ନେଇ ଏ ମାଟି । ଠିକ୍—ଠିକ୍, କାଲି ଏଇଠି ସେ ପଠାଣ ଟୋକାଟା ମତେ ବେଇଜତ୍ କଲା···

ସେହି ମାଟିର ଆତ୍ମାକୁ ଦେଖିପାରିଲେ ଯେମିତି ଗ୍ରାମୁକରଣେ । ତାଙ୍କର ମାଟି, ତାଙ୍କର ଇଲାକାର ମାଟି, ଯେମିତି ତାଙ୍କର ଅପମାନରେ ସେ କାନ୍ଦୁଚି···

ଆରେ ମୂଷା, କାଲି ଯେମିତି ତୁ ଠିକ୍ ମନେକରିବୁ । ଏଇଠି ଆଣି ଅନାଶୀ ବନାଶୀ କି ଗୋଟା ମାଂସ ଭାତର ପାରୁଶ ଦେଇଯିବୁ— ଠିକ୍ ଏଇଠି, ତୋ ଡକ ରହିଲା ଏଇଟା । ।

ଅନୁସନ୍ଧିତ୍ସୁ ହୋଇ ଏହାର କାରଣ ପଚାରିଲା ମୂଷା ।

କାହିଁକି ବଡ଼ପା, ଏଇ ବାଘୁଡ଼ି ଗୋଟା କା'କୁ ଡାକି ଖାଇବାକୁ ଦେଲେ ତ ହବ ।

ପେଟ ଟାଣିବ, ପେଟ ଟାଣିବ, ଗ୍ରୋଟଲୋକ ହେଲେ କଣ ହେଲା, ତାଙ୍କର ବି ପେଟ ଟାଣିବ···ଆମ ସମସ୍ତଙ୍କର ବି ପେଟ ଟାଣିବ ମୂଷା । କେତେ ଲୋକଙ୍କର ଦୃଷ୍ଟି, ଡାଆଣୀ-ଚିରଗୁଣୀ, ଭୂତ-ପ୍ରେତ, କେତେ ମଡ଼ା ମଶାଣି ଏ ବାଲିରେ । ସେପାରିରୁ ଆମେ ସାଗୁଆଡି ବୋହି କରେ ଆଣିବା···ଏ ଶଳା ବାଇଜୀଙ୍କର ସିନା ସବୁ ହଜମ ହଉଛି···ଚାଲ୍—ଚାଲ୍···

କାହାକୁ ବଡ଼ାପା' ଶଳା ବୋଲି କହିଲେ ଏ କଥା ଜାଣିବାକୁ ମୂଷାର ଇଚ୍ଛା ହେଉଥାଏ । କିନ୍ତୁ ସେ ମନେକଲା, ବଡ଼ପାଙ୍କର ମନରେ ଯେମିତି ଅସୁଖ—ସେଥିପାଇଁ ଘୂରେଇ ଘୂରେଇ ସେ ପଚାରିଲା ଆଉ କଥା···

ବଡ଼ପା, ଆମେ କୁଆଡ଼େ ଏଇ ଆନ୍‌କା ନା'କଆଙ୍କର ବଂଶ ?

ତଳକୁ ଖସିଲେ ଅଡ଼ଡ଼ରୁ ଦୁଇ ଜଣଯାକ । ବଡ଼ପାଙ୍କର ମନେପଡ଼ିଲା

ପିଲାଦିନର ଇତିହାସ ପଢ଼ିବା କଥା । ମୁହଁରେ ଇତିହାସ ପଢ଼େଇ ଥିଲେ କୁଞ୍ଜ ମାଷ୍ଟ୍ରେ । ···କାବୁଲ୍, କାନ୍ଦାହାର, ଗଜନୀ, ହିରାଟ୍ । ଆଫଗାନରେ ଏ ଚାରି ସହର । ଶତଦ୍ରୁ, ଝେଲମ୍, ଚେନାବ୍, ବିତସ୍ତା ଆଉ ସିନ୍ଧୁ । ଏହି ପଞ୍ଚନଦୀ ଯୋଗୁଁ ପଞ୍ଜାବ । କାଳିଦାସ, ଶଙ୍କୁ, ଅମର ସିଂହ, ବରାହମିହିର, ଘଟକର୍ପର, କ୍ଷପଣକ, ବରରୁଚି, ଧନ୍ୱନ୍ତରୀ ଆଉ ବେତାଳଭଟ୍ଟ । ବିକ୍ରମାଦିତ୍ୟଙ୍କର ନବ ରତ୍ନ । ଏହା ପରେ ଆଉ କେତେ କଥା—ମହମ୍ମଦ ଘୋରୀର ଭାରତ ଆକ୍ରମଣ, ଜୟଚନ୍ଦ୍ର-ପୃଥ୍ୱୀରାଜ କଳି । ସୋମନାଥ ମନ୍ଦିର ଲୁଣ୍ଠନ । ଏହି ଇତିହାସ ଜ୍ଞାନରୁ ମଧ୍ୟ ଭିକାରୀ ମହାନ୍ତି ପରେ ଭାବିଥିଲେ, ବଡ଼ ବେଦରକାରୀ ଏଇ ଇତିହାସ । କଣ ଲାଗିଲା ଏ ପାଠ ମୋର କାମରେ ?···ତାଙ୍କର ବଡ଼ ରାଗ ହେଲା ମୂଷା ଉପରେ । କୋଉଠୁ ଗୋଟା ମିଛ କଥାକୁ ଏ ଟୋକା ଶୁଣି ବିଶ୍ୱାସ କରି ଶିଖିଲାଣି । ବାଳରେ ପାହୁଣ୍ଡ ପକାଉ ପକାଉ ସେ ଭୁରୁଡ଼୍ ଟାଏଁ ପକାଇଲେ ମୂଷାକୁ···

କିଏ କହୁଥିଲା ତତେ ଏ କଥା—ବୁଢ଼ୀମା ?···ଆରେ, ତୁ କଣ କା' ସାଙ୍ଗରେ ଗାଈପୁଅ ବଦଳ କଥା କହୁଥିଲୁ···କିଏ ସେ ?

ଧରମା···

ଠିକିଏ ଦବ ଯାଇଁ କହିଲା ମୂଷା । ପୁଣି କଣ ଭାବି—ସେ କହିଲା···ଉଡ଼ିଗଲା ଯେ, ମୋ ମାଛିଆ ପାରାକୁ ସେ ଆଉ ଦଉ ନେଇଁ···

ଧରମା ଦଉ ନେଇଁ ତୋ ମାଛିଆ ପାରା !! ଆରେ ଧରମା, ସେ ବାଳୀ ନା'କ ପୁଅ ନା, ମୋଟ ମୁଣ୍ଡେଇ ମୁଣ୍ଡେଇ ମଗଜ ଖରାପ ହୋଇଗଲାଣି କି ତା'ର···? ଆରେ ତୁ ପରା ବମ୍ବେଇ ମା'ନ୍ତ ନାତି···ତୋ ପାରାକୁ ପୁଣି ସିଏ ମାଡ଼ ବଇଚ···ଏଇ ନାଗି ନେଇ ଗାଈପୁଅ ତା' ପାଖରେ ଠିଆ କରୁଥିଲୁ ? କିଏ କହୁଚି ତତେ ସେ ଗାଁ'କୁ ଯିବାକୁ ? କରେ, ହଳ ଧରିବାକୁ ତୋର ମନ ହେଲାଣି କି ରେ···ଚାଲ୍ ଆଜ ଘରକୁ ଚାଲ୍···

ଏହାପରେ ପାଣି ପଡ଼ିଲା । ଲୁଗା ଟେକି ଦେଇ ଦୁହେଁ ପାଣିରେ ପଶିଲେ ଶୀତଳ ଜଳର ସ୍ପର୍ଶରେ ବୋଧହୁଏ ମନକୁ କଅଁଳ କରି କହିଲେ ବଡ଼' ପା···

ହଉ, ହଉ, ତତେ ମୁଁ ଦଶଟା ପାରା ଦେବି । ମତେ ଭଲ କଥାଟା ତୁ ଜଣେଇଚୁ ।

ଅଠର ବର୍ଷର ଟୋକା ମୂଷା । କୁଞ୍ଜ ମାଷ୍ଟ୍ରଙ୍କ କଥାରେ କାଖ୍ ବାଳଆ ଗୁଟ୍; କିନ୍ତୁ ବଡ଼ପାଙ୍କର ଏତିକି କଥାରେ ଦଶ ବର୍ଷ ତାହାର କଟିଗଲା । ଅଷ୍ଟମ ବର୍ଷ ଶିଶୁ-ଆତ୍ମାର ଆବେଗ ଧରି ସେ କହିଲା···

ତା' ହେଲେ ମୁଁ ଆହୁରି ଭାଡ଼ ଗଢ଼େଇବି···ମଞ୍ଚା ବି ଗୋଟା ପୋତିବି ଭଲ କରି । ···ନାଇଁ ବଡ଼ପା, ତମେ ନ'ଟା ପାରା ଦବ, ଆଉ ଗୋଟାକର ପଇସା ଦବ ମତେ — ମାଛିଆଟାକୁ ମୁଁ କିଣିଆଣିବି ତା'ଠୁଁ···

ଗତି ଚଞ୍ଚଳ ରେଳଇଂଜନ ସଙ୍ଗରେ ସେହି ଗାଡ଼ିର ଯାତ୍ରୀଙ୍କର ମଧୁର ବାକ୍ୟାଳାପର ସମ୍ପର୍କ ଭଲ ହୋଇ ଉଠିଲା ମହେଶ୍ୱରର କଥା । ବଡ଼ପାଙ୍କର ମନ ଘୂରୁଚି ଯେମିତି କେଉଁଠି ।

ପାଣି ସରିଲା ଏତେବେଳକେ । ପାଣିରୁ ଉଠୁ ଉଠୁ ଗ୍ରାମୁକରଣଙ୍କ ପାଟିରୁ ବାହାର ପଡ଼ିଲା···ଓହୋ, ଗୋଟା ଦଶା କଟିଲା ଏତେବେଳେ । ହୁଁ, ଠିକ୍ କରିବାକୁ ହବ । ···ନାଁଃ, ନାଗରା ଦବା ନେଇଁ ଆଉ, ବିନା ନାଗରାରେ ତ ଏତେ ତଖଲିପ୍—ହୁଁଃ, ଶଳା ବାକି ରଖିଥିବ ଯେ, ଆଉ ମୁଁ ନାଗରା ଦେବି—ଯା' ଶଳା ଖାଇଲେ ଖାଇଲା କେଇଟା ଟଙ୍କା···ଆରେ ମୂଷା, ତୋ ପାରା ମାଡ଼ ବସିଚ ଧରମା, ନା ? କଏ ଓଝା ରହିଲାଣି ଯ୍ୟାଙ୍କ ପଛରେ···ଆଚ୍ଛା···

ଏ ଅଭିଯୋଗଟା ଯେମିତି ସବୁ ଗୁହିଁ ବେଶି ଶକ୍ତ—ଏହା ଗ୍ରାମୁକରଣେ ଭାବୁଛନ୍ତି ଯେପରି । ଈଶପସ୍ ଫେବ୍ଲ ପଢ଼ି ନ ଥିଲେ ବି ଗ୍ରାମୁକରଣେ ତାହାର ଧାରା ଜାଣନ୍ତି ।

ବଡ଼ପା'ଙ୍କର କୋମଳ ଆଉ ସହାନୁଭୂତିପୂର୍ଣ୍ଣ ପ୍ରଶ୍ନରେ ମୂଷା ଉଲ୍ଲସିତ ହୋଇ କହିଲା···ମୁଁ ଧରିବ ନେଇଁ, ତା ପାରା ଉଡ଼ି ଆଇଲେ ଆଉ ମୁଁ ଛାଡ଼ଦେବ !

ବିବେହେଡ଼ା ଟୋକା, ମୁଁ ପଚାରୁଚ କଣ, ସେ କହୁଚ କଣ !···କେତେ, କେତେ ଆରେ ପାରା ଗୋଟାକର ଦାମ୍ ?

ଭୟମିଶ୍ରିତ ସ୍ୱରରେ ଶୁଭିଲା—ବାରଣା ।

ଦଶଟା ପାରାକୁ କେତେ ?

ଯେମିତି ମୂଷାର ଘା' ଉପରେ ପାଞ୍ଚଣ ପିଟିଲେ ଗ୍ରାମୁକରଣେ । ଇସ୍କୁଲର ରୁଅ-ବାଉଁଶ କ କଡ଼-ବରଗା ଏଠି ନାହିଁ, କାହାକୁ ଅନେଇ ମୂଷା ମାନସାଙ୍କ କଷିବ । ବଡ଼ ମୁସ୍କିଲରେ ପଡ଼ିଲା ମୂଷା । ଆଙ୍ଗୁଠିଗୁଡ଼ାକ ତ ଖୁବ୍ କମ୍ ।

ଅବଧାନ, ଅବଧାନ······

ଏଁ, ହଇ ହୋ ଶାମ, ତମେ ଯାଉଚ ଏଣେ କୁଆଡ଼େ ?

ଆଖି ଉଠେଇ ଗ୍ରାମୁକରଣେ ଦେଖିଲେ, ବାଜପୁରର ଶାମ ସେନାପତି । ପାଟିରେ ହସ, ଗାଲରେ ତାହାର ତରଙ୍ଗ । ସୁନାଖିଲ ଚକ୍ ଚକ୍ କରୁଚ ଦାନ୍ତରେ । ଓଠଟି ତାମ୍ବୁଳ ରାଗରେ ଲାଲ ।

କୁରାଡ଼ିଆ ଦଣ୍ଡବତଟାଏ କରି ଏକ ଦୃଷ୍ଟିରେ ଗ୍ରାମୁକରଣେ ଦେଖିଗଲେ ସବୁ । ପାଦରେ ପୁଣି ବାର୍ଣ୍ଣିଶ୍ ଚଟି । କାମିଜ ଆଉ ଲୁଗା ପୁଣି ଖୁବ୍ ଧୋବ୍ । ଏଁ—ଗାଁ ଧୋବାର ବାସି ନୁହେଁ ତ ଇଏ···ବୋଧା' ସେ କଲକତି ସଫା !

ପାଟିର ପାନ ଗରଦା ଗୁଡ଼ାକ ଭୁର୍ର୍ ଭୁର୍ର୍ କରି କାଢ଼ି ପକେଇ ନିଜର ପାକିଟି ଉଣ୍ଡାଳି ପକେଇ କହିଲେ···ପାନ ଖଣ୍ଡେ ଆଗେ ହଅ ହୋ···କଲ୍‌କତି-ପାନ—ବଟାଟା ଛାଡ଼ ଆସିଲ ନା କଣ କଚରାରେ ।

ହଁ, କଣ କଥା, କେବେ ଆସିଲ ? ସ୍ୱରରେ ପାନଖିଲର ପ୍ରଭାବ ।

ତାହା ପରେ ଆଗନ୍ତୁକଙ୍କୁ କହିବାର ଅବସର ନ ଦେଇ, ପାଟିର ପାନ ଉପରେ ଦି ଥର କଲଦାନ୍ତ ବଜେଇ ନେଇ କହିଉଠିଲେ ସେ ପୁନଶ୍ଚ, ଆରେ, ଏ ତ ଭରି ବାସୁଚ ହୋ ! ସତେ କଲ୍‌କତି ପାନ !

ଯୁକାଲିପଟସ୍ ଅଏଲ୍ ଟିକେ ଗୁଣ୍ଡିରେ ପକେଇ ଖାଏ—ଦାନ୍ତ ଟିକେ ମୋର ଖରାପ···

ଓ, ବଡ଼ ଖୁସିହେବି ! ···କଣ, ବନ୍ଧୁବାନ୍ଧବ ଅଛନ୍ତି କି ଆନ୍‌କାରେ ?

ନା, ଆପଣଙ୍କ ପାଖକୁ ଯାଉଥିଲି ।

ଏଁ, ମୋ ପାଖକୁ, ଆରେ···

ଏଇ ସମୟରେ ଆଖି ପଡ଼ିଲା ମୂଷା ଉପରେ ଘ୍ରାମୁକରଣଙ୍କର । ତାକୁ ପଚରା ହୋଇଥିଲା ମାନସାଙ୍କ, ସେ କଥା ବି ସେ ଭୁଲି ଯାଇଛନ୍ତି । ଏଇକ୍ଷଣି ବେଦରକାରୀ ସେ ଛୁଡ଼ା ହେବ କାହିଁକି—ତାହା ପରେ ଶାମ ସେନାପତିଙ୍କର କଣ କଥା ।···ଭୂତ ତ ଅନେକ ବେଳୁ ଘୁଡ଼ିଗଲାଣି ।

ଆରେ ଯାଃ···ଠିଆ ହେଲୁ ତୁ କାହିଁକି ମିଛରେ ? ହଁ, ବାଡ଼ିଖଣ୍ଡିକ ରଖି ଦବୁ ନେଇକରି···

ସେଇ ଗୃରଟା ବେଳର ଇସ୍କୁଲ ଛୁଟି ଘଣ୍ଟା ଆଜି ଥରେ ମୂଷାର କାନ ପାଖରେ ବାଜିଗଲା ଯେମିତି । ଇସ୍କୁଲର ଘର ବନ୍ଧଟା ଡେଇଁବ ବୋଲି ତାର ବିଶ୍ୱାସ ନ ଥାଏ । ତା ପରେ ସେ ମାରେ କେମିତି ଡିଆଁ । ସେଇ ପୁରୁଣା ଦିନକୁ ଏତେ ଦିନ ପରେ ସେ ଆଜି ଥରେ ଗୃଲିଗଲା । ବି ଖୋଜି ଗୃଲି ତାହାପରେ ମାରିଲା ଏକ ଦୌଡ଼ ।

## —ସାତ—

ଘ୍ରାମୁକରଣଙ୍କର ଫାଇଲ୍‌ରେ ଆଜି ଅନେକ କେଶ୍ ।

ବାଟରେ ଶାମ ସେନାପତିଙ୍କ ସଙ୍ଗରେ ଦେଖାହେଲା ପରେ ସେ ଆଉ ଗୋଟା ନୂଆ କେଶ ଯେମିତି ପାଇଲେ । ସେଥିରେ ସେ ଆସ୍ଥା ରଖିଛନ୍ତି ଖୁବ୍ ବେଶି ।

ହୁଁ, ସେ ଦିନର ଶାମ ସେନାପତି । ତିନି ଭାଇ ଯାକ ଫଡ଼ିଆ ବେପାର କରୁଥିଲେ କଲିକତାରେ । ତା'ପରେ ଶାମା ହେଲା ଚଟକଲରେ ସର୍ଦ୍ଦାର । ଆଜି ସେ କୋଠାଘର କରିଚି—ଆଉ, ସେଥିପାଇଁ ସେ ସମସ୍ତଙ୍କୁ କରିଯାଉଚି ନିମନ୍ତ୍ରଣ । ଓହୋ, କି ଅଏଲ୍ କହିଲା, ହୁଁ, କାଲିପଟସ ଅଏଲ୍ ; ଇଏ ବି ବାବୁଙ୍କର ପାନରେ ଦିଆହେଇ ଖିଆ ହଉଚି—ଦାନ୍ତ ଖରାପ କଥାଟା ଗୋଟା ଫାଲ୍ତୁ କଥା ।···ହୁଁ, ଶଗଡ଼ିଆ ପୁଅ ମଦନା ଏଥର ଖାଇଲା ଜାଫ୍ରାନ୍ କେଶର, ଶଳା ପୋସ୍ତଦାନା ବି ଦେଖି ନ ଥିଲେ—ଆଜି ଫଡ଼ିଆ ବେପାରୀ ଶାମ ସେନାପତି ଖାଉଚି କାଲିପଟସ୍ ।···ହଁ ,ଆଉ

ଫଟକା ତିଆରି କରି ଆମ ନାନ୍‌କାର ଶାମ-ଦାସ କ'ଣ ଖାଇବ ସେଇଟା ଖାଲି ଦେଖିବାକୁ ବାକି ରହିଲା ।···ହୁଁ···ଆଉ ଏ ଗୁଡ଼ାକ ଗଡ଼ଜାତରେ ପଶି ରହିଚନ୍ତି କଣ ଆଜଯାକେ···ଶାଳୁଆ ପତର ଗୁଣ୍ଡୁଚନ୍ତି ବସି···

ଏ ସମସ୍ତ କେବଳ ଭାବନାର ବସ୍ତୁ ଥିଲା, ଏତେବେଳ ଯାଏ । ବର୍ତ୍ତମାନ ସେ ଆସି ଗ୍ରାମ ଦାଣ୍ଡରେ ପହଞ୍ଚିଲେ—ଆଗକୁ ରହିଲା ବ୍ରାହ୍ମଣବସ୍ତି ଶତ୍ରୁଘ୍ନି ସାହି, ମଝିରେ ପରିଆ ଧୋବାର ଘର । ବାଟ ଭାଙ୍ଗି ସେ ପଶିଲେ କରଣ ବସ୍ତିକି । ପାଖ ଆଖିରେ ନାନ୍‌କାର କରଣ ବସ୍ତିକି ସମସ୍ତେ ମାହାନ୍ତି ସାହି କହନ୍ତି । ଦୂରରେ କୁସୁନ୍‌ପୁରର ଶରହଦ୍—ସେଇଠୁ ଆରମ୍ଭ ହୋଇଛି ମହାଜନ ବସ୍ତି, ଯାହାକୁ ସମସ୍ତେ ତେଲି ସାହି ବୋଲି କହନ୍ତି । ଏ ସାହି ସହିତ ନିତ୍ୟନୈମିତ୍ତିକ ସମ୍ପର୍କ ଏ ଅଞ୍ଚଳର । କିନ୍ତୁ ନାନ୍‌କା ଓ କୁସୁନପୁରର ଆହୁରି ଅନ୍ୟାନ୍ୟ ସାହି ମଧ୍ୟ ଅଛି । ବିରୂପା ନଦୀର ଦକ୍ଷିଣ ଓ ପଟାମୁଣ୍ଡାଇ କେନାଲ୍‌ର ଉତ୍ତରରେ ବାଇଶ ମାଇଲ୍‌ଠାରେ ଏହି ଗ୍ରାମ ଦୁଇଟି ବିଶାଳ । ପାଞ୍ଚ ହଜାରରୁ ଊଣା ହେବ ନାହିଁ ଏହାର ଜନସଂଖ୍ୟା ।

ସାହି ଭିତରକୁ ପଶି ଯାଇଁ ସେ ଖପା ହୋଇ ଉଠିଲେ ଆହୁରି ବେଶି । ଯେମିତି ସାରା ବସ୍ତିଟାକୁ ନିଆଁ ଲଗେଇ ଦିଅନ୍ତେ ଏହିକ୍ଷଣି । ଆଖିକି ତାଙ୍କର ଶୀତଳ କରିବା ପାଇଁ ଗୋଟିଏ ହେଲେ କାନ୍ଥ ଦେଖାଗଲା ନାହିଁ, ଯାହା ଗଢ଼ିଉଠିଛି ଇଟା ଆଉ ଚୂନରେ । ଗୋଟିଏ ଛପର ହେଲେ ଦେଖାଦେଲା ନାହିଁ, ଯାହା କରୁଗେଟେଡ୍ ଟିଣ କମ୍ବା ପକ୍‌କା ଛାତରେ ହୋଇଛି ତିଆରି । କାନ୍ଥମାନଙ୍କରେ ଚଟା, ଝୁଣ୍ଟି—କେଉଁଠି ବିଭାଘରର ଚିତା ବି ରହିଛି ଆଜଯାଏ । ଗୁଳ ଉପରେ ନଡ଼ାର ଛପର—କେଉଁଠାରେ ଗବିର, ଗୁରୁବାଙ୍କର ଗୁଳରେ କେତୋଟି ବୁଢ଼ା ପାଣିକଖାରୁ । ଶୁଭ୍ରଲ । ଡଙ୍କଗୁଡ଼ିକ ତାହାର ଶୁଖିଗଲାଣି କେଉଁକାଳରୁ । ଆନ୍‌କା କ୍ଷେତରେ ନଅବରକି ଅନେଇ ରହିଚ ସେହି କୁଷ୍ମାଣ୍ଡଗୁଡ଼ିକ ଯେମିତି ।

ଖାଇବାବେଳ ଏ ପର୍ଯ୍ୟନ୍ତ ଗଡ଼ି ଯାଇ ନି । ଶୀତ ଦିନ, ହୁଏ ତ ଆହୁରି ଦୁଇ ଘଣ୍ଟା ପର୍ଯ୍ୟନ୍ତ ରହିବ । ରୋଷାଇବାସ ବି ସରି ନି ଅନେକଙ୍କର । କେଉଁଠାରେ ସାଁଏ କରି ଶୁଭୁଛି କାଞ୍ଜିପାଣିର ଛୁଙ୍କ । ରସୁଣ ଫୁଟେଇ ବିଗିଡାଲି ବଘାରିବାର ବାସନା କେଉଁଠାରେ । ଏହି ସମୟରେ ତାହା ସଙ୍ଗରେ ଜଣେ ବର୍ଷିୟସୀର ସ୍ୱର ଶୁଭିଲା··· ଆଲୋ ବୋହୂ, ହେଙ୍ଗୁ ଦେଲୁ ନାଇଁ ଡାଲିରେ ! ଏଇଖିଣି ଆସିଲେ ମେଦିନୀ ନବ ଖଣ୍ଡ କରିବ ତୋ ଶଶୁର ।···ତୁ ସମାଳିବୁ ଲୋ, ତୁ ସମାଳିବୁ । ଛୁଆ, ଏମିତି ଘରୁ ଝିଅ ଆଣିବ କାଇଁକି—କଇ କଇ ପାଟି ଥୋବରା କରିବ କାଇଁକି ? ଖାଲି ବହି ପଢ଼ିଲେ ତ ଦୁଖ ବୋହିଗଲା···ଛୁଆ, ଏ ଅଣପଢ଼ୁଆଁସୀଙ୍କି କହିଲେ କେତେ ନ କହିଲେ କେତେ···?

କୋଳରେ ଗୋଟିଏ ଛୁଆ ଧରିଥିଲେ ବୋଧହୁଏ ସେହି ବର୍ଷିୟସୀ—ବୋହୂଙ୍କ ଉପରେ କଥା ସରେଇ, ନିରବୋଧ ଶିଶୁଟି ଉପରେ ସେ ସବୁ ରାଗ ଶେଷ କରି ତାକୁ କଣ୍ଢ଼ି ବସେଇ ଦେଲେ ତଳେ । ଭେଁ କରି ଚିତ୍‌କାର କରି ଉଠିଲା ଶିଶୁଟି ।

ପାଟିକର ଉଠିଲେ ଘୁମୁକରଣେ···ଘମ, ଘମ ଅଛୁ କ ରେ—କରେ, ଡାଳରେ ପିଲାଟା ହେଙ୍ଗୁ ପକେଇଲା ନେଇଁ ବୋଲ ଏତେ ପାଟି ! ହୁଁ···

ତାଙ୍କର ମନେ ହେଉଥାଏ, ସେ କହୁ ଦଅନ୍ତେ···ହୁଏ ତ ହେଙ୍ଗୁଟାକୁ ତମେ ଘୁଡ଼, ଦାନ୍ତ ଖରାପ ହବ—ବରଞ୍ଚ କାଲପଟସ୍ ଅଏଲ୍ ପକା···

କନ୍ତୁ ସେ କଛୁ ନ କହୁ ଆହୁର ଆଗକୁ ଆଗକୁ ଗ୍ଲଲେ । ଯେମିତ ତାଙ୍କ ଭତରେ ଆତ୍ମପ୍ରକାଶ କରଛୁ ହଟଲରର ଉଦ୍‌ବେଗ । ସେ ଯେପର ହଟଲର ଯର ଚତ୍କାର କଟବାକୁ ଗ୍ହାଁନ୍ତ—ଜାଗ, ଜର୍ମାନୀ-ସନ୍ତାନ ଜାଗ—ସାମ୍ୟବାଦ ମାଡ଼ ଆସୁଚ—ମାଡ଼ ଆସୁଚ ଦଳତର ଉତ୍‌ଥାନ—ମାଡ଼ ଆସୁଚ ଆମର ସଂସ୍କୃତ ଧ୍ୱଂସକାରୀ ଝଂଜା ।

ତାଙ୍କ ମନ ଭତରେ ଉବୁକ ଉଠୁଥାଏ ଖାଲ—ଯୁଦ୍ଧ, ଯୁଦ୍ଧରେ ଶଗଡ଼ଆ ପାଇଲ ଟଙ୍କା, ଯୁଦ୍ଧରେ ଚଷା ପାଇଲେ ଧନ, ଯୁଦ୍ଧରେ କୁଳସର୍ଦ୍ଦାର ତୋଳଲ କୋଠା । ହେ ନାନ୍‌କାବାସୀ, ତମେ ବହୁତ ଆଗରୁ ଧରଚ ଆଲୋକ ବର୍ତ୍ତିକା, ଆଜ କାହକ ତମ ଘର ଅନ୍ଧାର ! ତମେ ଯେଉଁ ପ୍ରେରଣାରେ ପାର ହୋଇଥିଲ ବରୂପା, କର୍ଦ୍ଦମରେ ଘୁଡ଼ ଆସିଥିଲ ଯେଉଁ ସଗର ସନ୍ତାନମାନଙ୍କୁ—ସେମାନେ ମର ନାହାନ୍ତି କପିଳ ମୁନର କୋପରେ । ଲଙ୍ଗଳ ଫାଳରେ ସେମାନେ ଓଲଟି ଆଜ କପିଳ ମୁନକ କରଛନ୍ତ ହତ୍ୟା । ଆଁ···

ଭାବ ପରବର୍ତ୍ତିତ ହେଲା ହଠାତ୍ ଘୁମୁକରଣଙ୍କର । ଯେପର କପିଳ ମୁନ ତାଙ୍କର ବନ୍ଧୁ, ସେ କୁଣ୍ଠିତ ହେଲେ ବନ୍ଧୁର ଅନଷ୍ଟ ଚନ୍ତା କରବାକୁ ।

ଗିଲରେ ଆଣ ବଟା ହୋଇ ସଫା ହୋଇ ନ ବୋଲ ଏତକବେଳେ ଘର୍ଧାବୋଉ ବାଟଣ ବାଟିବା ପାଇଁ ମୂଷାଘର ଖଞ୍ଜାକୁ ଯିବ ବୋଲ ମଝିର ଦୋକଡ଼ୀ ଟପିବାକୁ ବସିଥିଲା—ହଠାତ୍ ଦେଖି ପକେଇଲା ବୁଢ଼ାଙ୍କୁ । ନେଉଟି ପଡ଼ଲା ସେ ।

ଘୁମୁକରଣେ ଗ୍ଲଲେ ପୁଣି ଆଗକୁ । ପାଞ୍ଚ ହାତ ଯାଇଁ ଡାହାଣ ହାତ ସେ ବାଙ୍କିଲେ । ତାଙ୍କ କାନରେ ପଡ଼ଲା ମନ୍ଦ ମଧୁର ହାରମୋନୟମ୍‌ର ସ୍ୱର । ତାଙ୍କର ମନେହେଲ, ସେ ଯେପର କମାର ସାହ ପାର ହୋଇ ରୁକୁଟି ପୀଟରେ ଆସି ପହଞ୍ଚଛନ୍ତ—ଆଗରେ ରଘୁ ଶତପଥୀର ଆଖଡ଼ା ଘର । ସ୍ୱର ମୁଖର ।

ଭଲକର ଅନେଇଲେ ସେ ଘରକୁ । ଆଗରେ ଶିମ ଗଛର ଲତା—ଲତା ଲତାକେ ଫଳ । ସଜନାଗଛ ବ ପାଖରେ । ଠିକ୍ ତ, ରୁକୁଟି ପାଟ ହବ କାହିଁକ !

ଉଛବ, ଉଛବ ଅଛୁ···

ମାଟିଘରଟିର ଦ୍ୱାର ପାଖକୁ ଗ୍ଲଲେ ଘୁମୁକରଣେ । ଦୁଆରେ ଲାଉ ଲତାର ରଂଜା—ଲାଉ ବ ଝୁଲୁଚ ସେଥିରେ ।···ଆରେ କଣି ନାଉ ସାଗୁଆଡରେ ପଡ଼େ ପଗ···

ମସ୍ତିଷ୍କ ସଂଶୋଧନ କର ଦେଲା ସାଙ୍ଗେ ସାଙ୍ଗେ । ଆଗ କାଳର କଥା, ବଗି ଡାଳରେ ହେଙ୍ଗୁ—ସାଗୁଆଡ ସାଙ୍ଗରେ କଣି ନାଉ । ଜାଫ୍ରାନ୍ କେଶର ! କାଲପଟସ୍ ଅଏଲ୍ ! ଇତହାସ···ଇତହାସ । ପୋଡ଼ ସେହୁ ପୁରୁଣା ଇତହାସକୁ ।

ଜାଫ୍ରାନ୍ କେଶର, କାଲପଟେସ ଅଏଲ୍ । ସୁନ୍ଦର ବ ଶୁଭ୍ରତ !···ଗଢ଼ିବ ନୂତନ ଇତିହାସ !!

ଆରେ ଦୁର୍ଗା ଆସିଚ କଲକତାରୁ—ସେଇ ବଜଉଚ ହାର୍‌ମୋନିଆ !

ଦୁର୍ଗୁ···

ଏହି ମଧୁର ଆହ୍ୱାନର ପଛେ ପଛେ ସର୍ପିଳ ଗତିରେ ତାଙ୍କର ମନ ଭିତରେ ଖେଳି ବୁଲିଲା ଅସ୍ପୃଶ୍ୟତାର ଭୁଜଙ୍ଗ । ତାହାକୁ ରୂପ ଦେଇ ଭାସିଆସିଲା ସମୟର ସ୍ୱଳ୍ପ ବ୍ୟବଧାନରେ···

କେ ମିନ୍‌ସେ ଡାକୁଛେ ଗୋ···

ମିନ୍ ସେ ?

ସେ ପର୍ଯ୍ୟନ୍ତ ସେହି ଗ୍ଲେଟ କୁଟୀରର ମାଟି ଅଙ୍ଗନର ବାୟୁମଣ୍ଡଳରେ ହାର୍‌ମୋନିୟମ୍‌ର ସ୍ୱର ।

ହଁ, ଦୁର୍ଗୁ ବଲେ କେ ଡାକୁଛେ···

ପଚିଶ ହାତ ଦୂରରେ ବରୁଆ । ଅପ୍ରଶସ୍ତ ନୀର ଧାର ପରେ ତାହାର ବିସ୍ତୀର୍ଣ୍ଣ ସିକତା ଉପରେ ସୂର୍ଯ୍ୟାଲୋକ । ତାମ୍ରାଭ କୃଷି ଭୂମି ଉପରେ ଆନ୍‌କାର ପାଳନ୍ଧା ସେ ପାଖରେ—ମଣିଷର ହାତ ବାଜ ପାଲଟେଇଛି ସେ ତାହାର ରୂପ । ସେହି ମଣିଷର ହାତରେ ଶ୍ମଶାନ ପାଲଟିଛି ଅନନ୍ତ ପାଟ ଭୂମି—ତାହାର ପଛକୁ । ଏକ ପାଖରେ, ମାଟିତଡ଼ା ମଣିଷ ପୋକର ଘର, ଶିବର ଭଳି ଶୋଭା ପାଉଛି ନୀଳାଭ ବୃକ୍ଷରାଶିର ତଳେ । ଯୁଗ ଯୁଗ ଧରି ଏହି ଶିବର ତଳେ ମରି ହଜି ଗଲେଣି ଅସଂଖ୍ୟ ପୋକ । ତଥାପି ସେମାନେ ଆସୁଛନ୍ତି, ତଥାପି ସେମାନେ ତାଡ଼ୁଛନ୍ତି ଏହି ମାଟି । ଗୋଡ଼ ତଳର ଏହି ମାଟି ସଙ୍ଗରେ ସେମାନଙ୍କର ଅସୀମ କାଳର ଯୁଦ୍ଧ । ସେହି ଯୁଦ୍ଧର ପ୍ରତୀକ୍ଷାରେ ଗୁହଁ ରହିଛି ଏହି ସ୍କନ୍ଧାବାର—କୃଷାଣମାନଙ୍କର ପଲ୍ଲୀ—ଆନ୍‌କା, ଅଶୀଳା, କୁସୁନ୍ଦାସ ପୁର, ପଦଲିପୁର ଆଉ ଭୁଲୁକା ।

ଯେତେବେଳେ ଜଳି ଉଠିବ ଅଗ୍ନି ଭଳି ମୁଣ୍ଡ ଉପରେ ସୂର୍ଯ୍ୟ, ଯେତେବେଳେ ଦାଆ ଭଳି କାଟିବ ଦେହକୁ ତାହାର ତେଜ, ଯେତେବେଳେ ପିଙ୍ଗଳ ହେବ ଆକାଶ, ଯେତେବେଳେ ସବ୍‌ମେରାଇନ୍‌ର ଅନ୍ତଃସ୍ଥଳ ପରି ଉତ୍ତପ୍ତ ହୋଇ ଉଠିବ ଇଥର୍, ଶତାଧିକ ଡିଗ୍ରୀ ଉତ୍ତାପରେ ଯେତେବେଳେ ପୋଡ଼ି ହେଉଥିବ ମାଟି, ସେହି କଳା କଳା ପୋକଗୁଡ଼ାକ ସେହି ସ୍କନ୍ଧାବାର ତଳୁ ବାହାରି ଯେତେବେଳେ ହଳାୟୁଧରେ କରିବେ ତାହାକୁ ଆକ୍ରମଣ—ଉଡ଼ାଇ ତାଙ୍କର ରକ୍ତ ଧ୍ୱଜା । ପ୍ରତ୍ୟେକ ଯୁଦ୍ଧ ପରେ ପୃଥିବୀର ରଙ୍ଗ ବଦଳିଲା ପରି ସେମାନଙ୍କର ତୁମୁଳ ଯୁଦ୍ଧରେ ଏହି ବିରାଟ ପାଟଭୂମି ହେବ ରୂପାନ୍ତରିତ ।

ସେ ପାଖରେ, ପାଟ ଜମିର ପଛକୁ, ଚିରକାଳ ହେଲା ମୁଣ୍ଡେଇ ବସିଛି ଆକାଶକୁ ପାହାଡ଼ । ସେ ଯେପରି ଖୁବ୍ ଭଲ ପାଏ ଏହି ମଣିଷକୁ । ତାହାର ରକ୍ଷାଲାଗି ସେ ଯେମିତି ଉପରର ଆକ୍ରମଣକୁ ଅଟକେଇ ରଖିଛି ମୁଣ୍ଡରେ । ଘୃପି ବସିଛି ଶକ୍ତ

କରି ମାଟିକି । ସେ ଶୁଣୁଛି ଖାଲି କଳାମଣିଷର ଗୀତ । ପାହାଡ଼ର ତଳେ ତଳେ ରଣ କୁହୁଡ଼ର ସ୍ରୋତ—ଯେପରି ଶତାବ୍ଦୀର ମୃତ ମଣିଷର ଜମାଟ୍ ମାୟା ।

ଏହି ପାହାଡ଼ ଉପରେ କେବଳ ଆଖି ପଡ଼ିଲା ଗୁମୁକରଣଙ୍କର । ଉଚ୍ଚ ବହଡ଼ିଆ ପାହାଡ଼ ସଙ୍ଗରେ ମାଣ୍ଡୁକା ଆଉ ଆଲମ୍‌ଗିର୍ । କେବେହେଲେ ସେ ଯେମିତି ଯିବେ ନାହିଁ ସେଠିକି । ଏଡ଼େ ଉଚ୍ଚ ଜନ୍ତଷ ପାଖକୁ କିଏ ଯାଏ । ସିଏ ଏହି ନିମ୍ନଭୂମିର ଲୋକ—ଏହାରି ଭିତରେ ଖାଲ, ଉଞ୍ଚ, ଢିପ, କେତେ ରକମର ଲୁଚକାଳି ଖେଳିହୁଏ ଏଠି ! କଣ କରିବେ ସେ ସେଠି । ହୁଏ ତ ଉପରୁ ଖସି ପଡ଼ି ଗୋଡ଼ ହାତ ଭାଙ୍ଗିଯିବ ତାଙ୍କର ଏକଦମ୍ ।

ପାହାଡ଼କୁ ଅନେଇ ଅନେଇ ସେ ଯେମିତି ଭାବିଲେ, ଠିକ୍ କରିଚ, ଆଉ ଘୁଞ୍ଚୁଚ ନା ହଉଚ—କୋଉ କାଳରୁ ଏକଦମ୍ ମାଡ଼ି ବସିଚ ଏଇ ମାଟିକି, ଆଉ ଘୁଞ୍ଚୁଚ ନା ହଉଚ······

ଆଁ···

ଘୁଣ୍ଟିରେ ହାତ ମାରିଲେ ଗୁମୁକରଣେ । ଯେପରି ପାହାଡ଼ର ସେହି ଆକ୍ରମଣ ହିପ୍ନୋର ପ୍ରଭାବ ପଡ଼ିଲା ତାଙ୍କ ଘୁଣ୍ଟିରେ । ଅତିଷ୍ଠ ହୋଇ ଉଠି ସେ କହିଲେ···

ମିନ୍‌ସେ କଣ ଆରେ ଦୁର୍ଗା ? ମୁଁ ଭକାଗ୍ର ମା'ନ୍ତ—ଆସିଲୁ ଆଜ୍ଞେ···

କେବେ ଆସନ୍ତି ନାହିଁ ଗୁମୁକରଣେ ଏ ଆଡ଼େ । ସେ ପୁରୁଣା ଲୋକ, ସେ ଜାଣି ସର୍ଦ୍ଦାର ଏ ଗାଁର—ଦାଣ୍ଡବାରିଆ ; ଏତେ ଅନ୍ଧସନ୍ଧିକି ସେ ଆସିବେ କାହିଁକି, ଫୁରୁସତ୍ ବା କାହିଁ ? ଆଜି ଗୋଟା ଅବେଳାରେ ସେ କଚାରୀରୁ ଫେରି ପଡ଼ିଲେ ସିନା !

ମିଶିଗଲା ଯେମିତି ଦୁର୍ଗା ତଳର ମାଟି ଦେହରେ । କଲିକତାରୁ ସେ ଗୋଟା ମାଇକିନା ଆଣିଚି ସାଙ୍ଗରେ—ତାକୁ ଧରି ହାର୍‌ମୋନିଆ ବଜଉଚି ସିଏ—ତାକୁ ଶୁଣିଲେଣି ପୁଣି ଗୁମୁକରଣ ବଡ଼ପା' । ସେ ଆଉ ମୁଣ୍ଡ ଟେକିବ ଏଥିରେ କେମିତି ?

ରକ୍ଷାକଲା ଏତିକବେଳେ ବନା ପାଣର ଛେଳିଟା । ଦୁଆରେ ବନ୍ଧା ହୋଇ ଗୁମୁକରଣଙ୍କୁ ସେଇଠୁ ଜବାବ ଦେଲା; ଦୁର୍ଗା ପରିବର୍ତ୍ତରେ···

ଅର୍‌ର ମେଁ······

ଆରେ ଛେଳିଟା ଆଣ୍ ମ ଦେଖିବା !

ଗୁମୁକରଣଙ୍କର ସ୍ୱର ଯେପରି ବଦଳି ଯାଇଛି ତେର୍ । ଯେଉଁ ମାଂସରେ ପଡ଼ି ଜାଫ୍ରାନ୍ କେଶର, ନୂତନ ଇତିହାସର ସ୍ୱପ୍ନ ଦେଇଛି ଯେଉଁ ମାଂସ, ଯେଉଁ ମାଂସ ଆଜି ଉଦ୍‌ବୁଦ୍ଧ କରିଛି ଗୁମୁକରଣଙ୍କୁ କରିବାକୁ ଅନେକ କାମ, ସେହି ମାଂସର ଗନ୍ଧ ଧରି ଭାସି ଆସିଲା, ଅର୍‌ର୍ ମେଁ । ସ୍ୱର ବଦଳିବ ନାହିଁ ଏଥିରେ !

ଛେଳିଟିକୁ ଧରି ବାହାରକୁ ଆସିଲା ଆଉ ଜଣେ ଲୋକ । ତେଲଚିକଣା ପାତଳ ଦେହରେ ତାର ସରୁ ପଇତା, ଧୋବ ଧୋତିର ପିନ୍ଧା କାନିଟା ଫେରି ବୁଲି ହୋଇ ବନ୍ଧା ହୋଇଛି ଅଣ୍ଟାରେ । ତାହା ଉପରେ ନାଲି କଲ୍‌କତି ଡୋରିଆ ଗାମୁଛା । ସନ ନିଭା ଘସରା ପଇସା ଭଳି ମୁହଁ । ସହଜରେ ବୟସ ଧରି ହୁଏ ନା ସେଥିରୁ । ତଥାପି କମ୍ ହେବ ନାହିଁ ତାହାର ଉମର୍, ଟପିବ ତିରିଶ । ଚେହେରାରେ ଏକ

ଚପଳତାର ସ୍ଥପ ସୁସ୍ପଷ୍ଟ । କାନମୂଳର ବାଳ କ୍ଲପ୍‌ରେ କାଟି ଆସିଥିଲ ସେ କଲିକତାର ଶତ୍ରୁପୁର ରୋଡ୍‌ର କୌଣସି ସାଲୁନ୍‌ରୁ । ଉପର ବାଳରେ କୁଞ୍ଚ । ବାଳଗୁଡ଼ିକ ଖୁବ୍ ଚେଲିଆ । ଦେଖିଲେ ଜଣାହୁଏ, ଯେପରି ଦ୍ୱାପରର କୃଷ୍ଣ କଳିଯୁଗର ହାତଧରି ଦୁର୍ଭିକ୍ଷ ପୀଡ଼ିତ ବଙ୍ଗଳା ବାଟ ଦେଇ ଓଡ଼ିଶାରେ ଓହ୍ଲାଇଛନ୍ତି ।

ଲୋକଟିକୁ ଦେଖି କହିଉଠିଲେ ସ୍ଥମୁକରଣେ···

ଓ, ତମେ···

ଆ-ଜ୍ଞେ, ଆମି ପଦନ ପୁରୁତ୍···ଆଜ୍ଞେ ସ୍ଥଗଲ୍ ଖୁବ୍ ଭଲ ଆଛେ ।

ସେ ପର୍ଯ୍ୟନ୍ତ ଲୋକଟି ଉପରୁ ଦୃଷ୍ଟି ଫେରାଇ ନାହାନ୍ତି ସ୍ଥମୁକରଣେ । ଦେଖୁ ଦେଖୁ ସେ ଅର୍ଦ୍ଧ ସ୍ୱଗତରେ କହିଲେ···ତମକୁ ଦେଖିବାର କଥା···

—ହୁଁ, ଜାଫ୍ରାନ୍···

ସ୍ଥମୁକରଣଙ୍କର ପାଟିରୁ ଏତିକ ବାହାରୁ ବାହାରୁ ଲୋକଟି ଗୋଟିଏ ହାତର ଆଙ୍ଗୁଠିରେ ଗଣନାର ଅଭିନୟ କରି ମୁଖସ୍ଥ ଭଙ୍ଗୀରେ କହିଗଲା···

ଆଜ୍ଞେ···ଜାଫ୍ରାନ୍ କେଶର୍, ଆଲ ବକ୍‌ରା, ତାଲ୍ ମାଖ୍‌ନା, ଆଖ୍‌ରୁଟ୍, ପେସ୍ତା···

ଥାଉ-ଥାଉ-ଥାଉ-ଥାଉ, ଜାଫ୍ରାନ୍ ତ ଜାଣିଚ···

ତାହା ପରେ ଛେଳି ଉପରେ ଆଖି ବୁଲେଇ ନେଇ ଫେରି ପଡ଼ିଲେ ସ୍ଥମୁକରଣେ । ହୁଁ ଠିକ୍, ଆଜି ବନ୍ଦ; କାଲି ଇସ୍ତକ୍ ବନ୍ଦ କାବାର ହେବ କଟସାରେ ।

ପୁଣି ବାଜିଉଠିଲା ହାର୍‌ମୋନିୟମ୍ ।

ତାହା ପଛରେ ଶୁଭିଲା ନାୟିକଣ୍ଠର ସ୍ୱର । ବିଭାଗରେ ସେ ନାୟି ହେଲେ ମଧ୍ୟ ବୟସରେ ସେ ତରୁଣୀ । ତନ୍ୱୀ । ଶ୍ୟାମା । ଶ୍ରୀଲା ।

ନାନ୍‌କା ଗାଁର ଗୋଟିଏ କୋଣର ପବନ-ଚକ୍ରରେ ଘୂରିବାକୁ ଲାଗିଲା ବଙ୍ଗାଳୀ ଝିଅର ଗୀତ···

ହତଭାଗିନୀ···

କି ଧୂମ୍ ଆମାୟ ପେୟେଛିଲ ହତଭାଗିନୀ

ସେ ଯେ ପାଶେ ଏସେ ବସେଛିଲ ତବୁ ଜାଗି ନି···

ମୁଣ୍ଡ ଉପରେ ଲାଉ ରଞ୍ଜା । ଛେଳିଟିକୁ ବାନ୍ଧିଦେଇ, ଅଗଣାରେ ଛିଡ଼ାହୋଇ ପଡ଼ିଲା ପଦନ । ଗୋଟିଏ ହାତ ଲାଉ ରଞ୍ଜାର ବାଉଁଶ ବତାରେ ଲାଗେ ।—ଚରଣରେ ଛନ୍ଦ । ବଂଶୀ ଖଣ୍ଡିଏ ଯାହା କେବଳ ନାହିଁ ହାତରେ,କିନ୍ତୁ ଅବିକଳ ଭଙ୍ଗୀଟି ଫୁଟି ଉଠିଲା ପଦନ ପୁରୋହିତଙ୍କର—ଯେପରି ବନେ ଫୁଟିଉଠିଥିବ ଯାବଟର କୁଞ୍ଜ-କାନନର ଲତା ବିତାନର ତଳେ ।

କଷି ଲାଉରେ ଗୁଆଟିଆ ସାରୁ ପକେଇ ସେ ରାନ୍ଧି ସାରିଛି ଲୁଣ । ଅନେକ ଆଗରୁ ମୁଗଡାଲିର ପିଆଜ ଛୁଙ୍କରେ ମହକାଇ ଦେଇ ସାରିଛି ଏହି ସାନ ଅଗଣାକୁ । ବର୍ତ୍ତମାନ ସେ କେବଳ ସେଇଠି ଠିଆ ରହି ବାଳିକାର ଗୀତ ଶୁଣୁ ଶୁଣୁ ଭାବିବାକୁ

ଲାଗିଲା । ଅନେକ ଦିନ ବଙ୍ଗଳାରେ ରହିଛି ଲୋକଟି—ବାବୁଭାୟାଙ୍କର ଇଂରାଜୀ ମିଶା ବଙ୍ଗଳା କଥା ତା ପକ୍ଷରେ ପବିତ୍ର ଓ ପରମ ପ୍ରିୟ । ସେ ଭାବିଲା ତାହାର ସେହି ପ୍ରିୟ ଭାଷାରେ···

ତୁଇ ଘୁମ୍ ପେୟେ ଛିଲି କୋଥାୟ । ତୋର୍ ତଖନ୍ କି ଛିରି ଛିଲ ଏଇ ଆଜ୍‌କେର୍ । ଦୁଟି ଖେତେ ପେୟେ ତୁଇ ବାର୍ ବାର୍ ଆମାଦେର୍ ଓଖାନେ ଆସ୍‌ଲି ! ଗାନ୍ ତୋର କଣ୍ଠେ ଆଛେ ବଲେ କେ ଜାନ୍‌ତ ତଖନ୍ । କତ ଗାନ୍ ଫୁଟ୍‌ପାଥେର୍ ମଡ଼ାର୍ ଭେତର୍ ରଏ ଗେଲ । ଶୁନ୍‌ତେ ପାଇଲ ନା ତୋ କେଉ । ତୁଇ ଖେତେ ପେୟେ ଗାନ ଗାଇଲି, ଏତେ କି ତୁଇ ହଲି ହତଭାଗିନୀ ! ଯାକ୍ ଓ ତୋଦେର୍ କଥା ଭୁଲି । ଆମି କି ତୋମାୟ ଚିନି ନା । ଅଥ, ତୁଇ ଜଡ଼ିଏ ଦିଏଛିଲି ଆମାର୍ ମନ···

ଯେତେ ଅସଂଖ୍ୟ କୁସୁମ ଝଡ଼ି ପଡ଼ିଥିଲା ବଙ୍ଗଳାର ମନ୍ୱନ୍ତରର ଝଡ଼ରେ ବୃନ୍ତଚ୍ୟୁତ ହୋଇ, ସେଥିମଧ୍ୟରୁ ଆମର ଦୁର୍ଗାଚରଣ ପାଖରେ ବସି ଗାଉଥିବା ଏହି ବାଳିକାଟି ଗୋଟିଏ । ଏହାରି ସଙ୍ଗରେ ତିରିଶ ହଜାର କନ୍ୟା ବେଶ୍ୟାରେ ପରିଣତ ହୋଇ ଯାଇଛନ୍ତି ନିଜର ଜୀବନକୁ ରକ୍ଷାକରିବା ଲାଗି । ପଦନ ପୁନର୍ବାର ଭାବିଲା···

ତୋଦେର୍ ଦୁର୍ଭିକ୍ଷ ଆମାର୍ ପାତେ ଦିଏଛେ ଭିକ୍ଷା ।···କତ ବାବୁର ବାଡ଼ିତେ କାଜ କରି ନାଇଁ ଆମି ! ଆମାର ରାନ୍ନା ଖେଏ ଯାଦେର୍ ମୁଖ୍ ଫୁଲେର୍ ହାସିତେ ଭରେ ଉଠ୍‌ଲ, ତାରା ଚିହ୍ନିଲ ନା ଆମାୟ । କୁଥାୟ ଛିଲି ତୁଇ—ରାନୁ··· । ତୋଦେର୍ ଦେଶେ ଅତ ରାନୁ କେନ ଗା ?

କିନ୍ତୁ ଦୁର୍ଗାଚରଣର ଭାବନା ଭିନ୍ନ । ବଡ଼ ଖଣ୍ଡେ ଚାଣି ଚାଣି ଚାହିଁ ରହିଛି ସେ ରାନୁର ମୁହଁକୁ—ସତରଞ୍ଜି ଉପରେ ପଡ଼ି । ରାନୁ ମୁହଁରେ ଗୀତ, ରାନୁ ହାତରେ ସ୍ୱର । ତାହାର ମରି ଯାଇଥିବା ଯୌବନ ମଞ୍ଜରି ଉଠିଛି ପୁନରାୟ । ସେହିଦିନର ଏହି ରାନୁ—ଫ୍ୟାନ୍ ଫ୍ୟାନ୍ ବାବୁ—ଫ୍ୟାନ୍ ଦ୍ୟାନ୍

ଦଶ ନମ୍ବର ସୁକିଆ ଷ୍ଟ୍ରିଟ୍‌ର ଫ୍ଲେଟ ଖଣ୍ଡିଏ ଘର । ତା'ରି ଦୁଆରେ ପୁଣି ଶତ ଆକୁଳ କ୍ରନ୍ଦନ । ଶତ ବୁଭୁକ୍ଷୁର ଚିତ୍କାର । ଅଶେଷ କ୍ରନ୍ଦନ ଭିତରେ ଆସିଲା ଏହି ରାନୁ । ଯେପରି ଫୁଲର ଦଳଗୁଡ଼ିକ ଝଡ଼ି ଯାଇ ରହିଥିଲା କେବଳ କେଶର—ତାହା ପୁଣି ବେଶି ହେଲେ ଆଉ ମାତ୍ର କେତୋଟି ଦିନ ରହିଥାନ୍ତା । ତାହାଙ୍କୁ ଦିନେ କହିଉଠିଲା ପଦନ ନନା···ଖୁକି, ଆମାଦେର୍ ଏଖାନେ ଥାକ୍‌ବି ?

ଖେତେ ଦେବେନ୍ ବାବୁ, ଖେତେ···

ଓଃ, ଯେପରି ଶାଗ ହାଟର ସଉଦା ! ଯୁବତୀର ଯେଉଁ ଯୌବନ ଲାଗି ପାଗଳ ହୁଏ ଯୁବକ—ମୁଣ୍ଡ କୋଡ଼ି ହୋଇ ମରେ, ଏଠି ଶାଗ ହାଟର ସଉଦା—ମାଛ ହାଟର ପଚା ଚୁଙ୍ଗୁଡ଼ି । ସେହି ଯୌବନ, ଯୁବତୀର ସେହି ରକ୍ତିମ ଯୌବନ ପାଣ୍ଡୁର, ସଙ୍କୁଚିତ ହୋଇ ଆସିଲା ସୁକିଆ ଷ୍ଟ୍ରିଟ୍‌ର ଫ୍ଲେଟ ଖଣ୍ଡିଏ ଘରକୁ । ସେ ପୁଣି ପଲ୍ଲବି ଉଠିଲା ପରେ ।

ନିଝୁମ ବର୍ଷା ସେ ଦିନ । ତଥାପି ଅଶେଷ ଚିତ୍କାର । ଫ୍ୟାନ୍ ଫ୍ୟାନ୍ । ପାଖ ଘରେ ରାନୁ କଣ୍ଠରେ ସଙ୍ଗୀତର ଅସ୍ପଷ୍ଟ ଗୁଞ୍ଜନ । ଦ୍ୱାରପାଖରେ କିଏ ଜଣେ ବର୍ଷାରେ

ଛୁଥିବା ପର ଜଣାଯାଉଥାଏ—କେତେବେଳେ ପାଟିରୁ ତାହାର ଶୁଭିଲା···ଭୂଇ ଆମାକେ ଛେଡ଼େ ଚଲି ଗାନୁ ? ଆମି ଖେତେ ପେୟେଛି ଆଜ···ଗାନୁ ରେ···

ଘଲେ କରେ ଦୋର୍ ଦଏ ଦନ ବାବୁ, ଦୋର ଦଏ ଦ୍ୟାନ୍···

କଏ ଗାନୁ ? କଏ ତଚେ ଡାକୁଚ ?···ତୋର ଘଇ ?

ହି, ହି, ହି, ଘଇ ଆମାର ଆର୍ କ ବେଁଚେ ଆଛେ···ଆଗ୍ଗ ବାବୁ, ଏଇ ଆପ୍‌ନାର ବାଜା ଆଚେ···ବାଜ୍‌ନା ଆସେ ବୁଝି ଆପନାକେ ?

ଗାନୁ ରେ, ଖେୟେଛିସ୍ ଆଜ୍···ଭାଲ···ଆଛିସ୍···

ଦୋର୍ ଖୁଲେନା ବାବୁ, ଦୋର୍ ଖୁଲେନା ଆମି ବଲେ ଦଚ୍ଛି···ବାଜା ଧରୁନ ତ ବାବୁ, ଏଇ ଆମି ଗାଚ୍ଛି—ମେଘେର୍ ପରେ ମେଘ ଜମେଛେ ଆଁଧାର ଘିରେ ଆସେ—

ଆମାକେ ସତ୍ୟି କ ଛେଡ଼େ ଚଲି—

ପୋଡାର୍ ମୁଖ—ହି—ହି—ହି—ହି—ଖେତେ ପାଇ ନା, ଆବାର ପ୍ରେମ୍ ହି ହି ହି ···

କଏ ଗାନୁ ସିଏ ତୋର ?

ବୁଝ୍‌ତେ ପାର୍‌ଲେ ନା, ଆମର୍ ଭୁମି । ନିଜେ ଖାବେ ନା, ଆର୍ ଆମାକେ ଏନେ ଦେବେ···ମରେ ଯାବେ,···ମରେ ଯାବେ ସେ ଗ୍ଗେଁଡ଼ାଟା ଆମି ବଲେ ଦଚ୍ଛି··· ଦୋର୍ ଖୁଲୁନ୍ ନା···

ତାହାପରେ ଗୁରୁ ପତନର ଶବ୍ଦରେ ଚମକ ଉଠି ଦୁର୍ଗାଚରଣ ଦେଖିଥିଲା, ବର୍ଷାରେ ଭିଜ୍ଞ ଭିଜ୍ଞ ଟଳିପଡ଼ୁଛି ଗୋଟାଏ ଟୋକା—ଆଜି ବୋଧହୁଏ ସେ ଉଠିବ ନି···କାନରେ ତା'ର ସେ ପର୍ଯ୍ୟନ୍ତ ଫିକଚନ୍‌ର ଖେଚଡ଼ କଚ୍ଛି ବଂଧା ହେଇଚ ।

ଏହି ସମୟରେ ଦୁର୍ଗାଚରଣର କାନରେ ଜୋର୍ କରି ପଶିଗଲା ଗାନୁ କଣ୍ଠର ଗୀତ । ସେ ଫେରି ଆସିଲା ସେହି ଆଘାତରେ ବରୂପା କୂଳର ତାହାର ପୈତୃକ କୁଟୀରକୁ । ସଙ୍ଗୀତରେ ଆର୍ଦ୍ର ହୋଇ ଉଠିଛି ସେହି କୁଟୀର । ଆର୍ଦ୍ର ବ ଗାୟିକାର ସ୍ୱର । ଗାୟିକା ଗାଉଚ ସେ ପର୍ଯ୍ୟନ୍ତ···

ହତଭାଗିନୀ···

ସେ ଯେ ପାଶେ ଏସେ ବସେଛିଲ ତବୁ ଜାଗି ନି—

ଜୋର୍‌ରେ ଶୋଷି ନେଲା ହାତରେ ଅଧା ବଡ଼ ଖଣ୍ଡକୁ ଦୁର୍ଗାଚରଣ ।

ଅବିବାହିତ ନୁହେଁ ଦୁର୍ଗାଚରଣ । ରୁମ ମୂଳ ତା'ର ଟାଙ୍କୁର ଟାଙ୍କୁର ଶକ୍ତ ହୋଇଯାଇଛି ଯୁବତୀର ସ୍ପର୍ଶରେ ଅନେକ ଦିନୁ । ସାତ ବର୍ଷ ତଳେ ସେ ବିଭା ହୋଇଥିଲା । ବୟସ ଏହିକ୍ଷଣି ତାକୁ କମ୍ ହେବ ନ ତିରିଶ ବତିଶରୁ । ଦେହର ଗାଣ୍ଠନି ନୁହେଁ ହାଲ୍‌କା । ତେବେ ଅନେକ ସମୟ ବଙ୍ଗଳା ଦେଶରେ କଟେଇ, ଶକ୍ତ ମାଟିକି କଲକତିଆ ପୋକ ତାଡ଼ ପକେଇ ଯେମିତି କରିଦଏ ଫାପସା, ସେହିପରି ଟିକେ ଫଣଫଣେଇ ଉଠିଚ ତାହାର ହାଡ଼ ଉପରର ମାଂସ ; ଯେପରି ଦେହ ଉପରେ ବୋଳା ହୋଇଛି ସୌକୁମାର୍ଯ୍ୟର ପ୍ରଲେପ ।

ଏହି ଦୁର୍ଗାଚରଣ, ପିଲାଦିନେ ସେ ଶୈବ୍ୟାର ଅଭିନୟରେ ଆର୍ଦ୍ର କରି ଦେଇଥିଲା କୁସୁମପୁର ଦୁର୍ଗାଥିଏଟରର ପେଣ୍ଡାଲ୍। ତାହା ପରେ, ଯେଉଁ କେତେ ଜଣ ଟୋକାଙ୍କୁ କାଖରେ ବହି ଯାକି କୋଟ୍‌ପଦା ଇସ୍କୁଲକୁ ଦୌଡ଼ିବାର ଦେଖାଯାଉଥିଲା ପନ୍ଦର ବର୍ଷ ତଳେ, ତା ଭିତରେ ଦୁର୍ଗାଚରଣ ଥିଲା ଜଣେ। ତାହା ପରେ, ଇସ୍କୁଲ କମେଇ କରି ଯେଉଁ କେତେ ଜଣ ଗ୍ରାମ କୁଂଜବନ ଚୋଟାର ଗଛ ଉପରେ ବସି ପଢ଼ୁଥିଲେ, ଚଢ଼େଇମାନଙ୍କର ଭାଷା, କଲ୍ୟାଣପୁରଗାଁରୁ ଆଣି ଖାଉଥିଲେ ବାତାପି, ସେମାନଙ୍କ ଭିତରେ ବି ଏହି ଦୁର୍ଗାଚରଣ ଥିଲା ଅନ୍ୟତମ।

ତାହାପରେ ଦିନେ ଏହି ଶ୍ରେଷ୍ଠ କୁଣ୍ଠୀର ତଳେ ଦୁର୍ଗାଚରଣ ଦେଖିଲା ମଧୁଶଯ୍ୟା। ତାହାର ସକଳ ଚେତନା ଦେଇ ଦୁର୍ଗାଚରଣ ଦେଖିଲା···ଓଃ, ସେଇ ଜିନିଷଗୁଡ଼ାକ, ଦିହରେ ନଦି ହୋଇ ଗୋଟା ଟୋକା ଆସି ତା' ପାଖରେ ଗୋଟା ବନ୍ଦ ଘର ଭିତରେ ବସିଛି।

ତାହାପରେ ସେଦିନ ବି ତା'ର ଗଲା। ତାହା ପରେ ମରିଗଲା ତାହାର ମା। ଆଉ ଆଁଉ ·ଅର୍ଦ୍ଧଶିକ୍ଷିତ ସାହିପିଲଙ୍କ ପରି ସେ ଗଲା ନାହିଁ ଗୁମାସ୍ତା ମୋହରିର ହେବାକୁ। ବାପା ସାଙ୍ଗରେ ଗଲା ନାହିଁ ମଧ ସେ ବିଲକୁ। ସେ ଦିନେ ଶୈବ୍ୟାର ପାଟ୍‌ରେ ଉଠିଛି—ସେ ହୋଇଛି ସୀତା—ସାବିତ୍ରୀ—ଦମୟନ୍ତୀ। କାଖ ତଳେ ସେ ଇଂରାଜୀ ବହି ଯାକି ଦୌଡ଼ିବ ମାଇନର ଇସ୍କୁଲକୁ କେତେ। ତାକୁ ମିଳିବ ନାହିଁ ମନମାମୁଜ ଗ୍ରୀକର!

ଭାଗ୍ୟ ତା'ର ଭଲ। ସେ ଦିନେ ଦେଖିଲା, ଯେଉଁ ହାର୍‌ମୋନିୟମ୍ ଖଣ୍ଡିକ ବେଦନାପୁରିଆ ଓସ୍ତାଦ୍ ଖାଲି ଏକଗୃଟିଆ କରି ବସୁଥିଲା, ଏଠି ତାହାର ଭଳି ଶତ ସହସ୍ର ଅନୁଭଶାଳ।

ହଁ, ସେ କାମ କରିବ ଏଇଠି। ପାଟିରୁ ସ୍ୱତଃ ତାହାର ବାହାରି ପଡ଼ିଲା··· ସା-ରେ-ଗାମା—ପା଼ଧା ନି ସା—·

ତା' ଆଜକି ତିନି ବର୍ଷର କଥା—ସେ ଏକା ଜିଦ ଧରିଲା ସ୍ତ୍ରୀକି ତାରି ସାଙ୍ଗରେ କଲିକତା ନେବାକୁ। ଅଜୁଭାଇ ନଉଚନ୍ଦ୍ର ନୂଆବୋଉକୁ ସାଙ୍ଗରେ, ଧରଣୀ ବି ନେଇଗଲା ହେଇ ସେ ଦିନ ଗ୍ରିର ମାସର ଭୂଆଷୁଣୀକି। ସେ ନବ ନାହିଁ କାହିଁକି!

ସମସ୍ତେ ଅମଙ୍ଗ। ବାପା, ସାହି ପଡ଼ଶା ବି। କୋଉଠି ଗୋଟା କଲିକତାରେ· ହାଉମାନିଆ କାରଖାନାରେ କାମ କରୁଚି। ସେଥିରେ ପୁଣି ନବ ମାଇପକୁ। ଶେଷରେ ସ୍ତ୍ରୀ ବି ତାକୁ ମନା କରିଦେଲା ସିଧା ସିଧା। ତାହା ପରେ ଦୁର୍ଗାଚରଣର ଏତେ ଦିନକେ ଦେଖା—ସାଙ୍ଗରେ ସଙ୍ଗୀତମୁଖରା ନାୟିକା।

ଦୁଗ ।ଚରଣ ଭାବେ, ମୋର ଖୁସୀ, କୋଉ ଶଳା ମତେ କ'ଣ କହିବ? କିଏ ମତେ ଖାଇବାକୁ ଦଉଚି ନା କଣ!

ସେ ଦିନ ସିଦା ଦାସ ଘର ବୁଢ଼ୀ କହିଲା, ଜାତି ନେଇଁ, ପତି ନେଇଁ, କୁଆଡ଼ୁ ଗୋଟା ବଙ୍ଗାଳୁଣୀ ଆଣି ଘରେ ପୂରେଇଲୁ, ଆଉ କୁଳର ବୋହୂ ଯାଇଁ ବାପ ଘରେ ସଡ଼ିଲା ଯେ ତା' ନା' ବି ଟିକେ ଧଇଲୁ ନେଇଁ···ଡେମିଣୀ ରଖି କିଏ ମଣିଷ ହେଲାଣି ନା, ତୁ ହବୁ?

ବସ୍ତି କାମୁଡ଼ିଲା ପରି ଉଠି ଆସିଲା ତାଙ୍କ ଘରୁ ଦୁର୍ଗା । ଆଉ କେହି କିଛି କହିଲେ, "ତମର କି ବଶ୍ ପଡ଼ିଚ ମୋ କଥାରେ—ମୁଁ ଏଠି ନ ରହିଲେ । ତମ ଘରେ ବୋହୂ ଦଉଡ଼ି ଦେଇ ମଲେ କହିବ ଯେତେ ଟାଣୁଥେଲ···। କଣ ହେଇଥିଲା ବାଉସ୍ତି ମାହାନ୍ତି ମାଇପ, ଗାଁରୁ ବାହାରି ଗଲା ତ ପଦେ କିଛି କହିଲ ନେଇ ତମେ···ଏତେ ପର ଦୁଃଖ ତମେ ବୁଝ ? ଶଳା ସମସ୍ତେ ମିଶି ମୋ ସାଙ୍ଗରୁ ତାକୁ ଛଡ଼େଇଲେ, ଏବ୍ବେ ତବେଳକୁ କାହାଁକି ମତେ କହୁଚ···ମୋ ଠଉଁ ଆକୁ ବି ଛଡ଼େଇବାକୁ ଭାବଲେଣି··· ଏହିପରି ଭାବରେ ଉତ୍ତର ଦିଏ ଦୁର୍ଗାଚରଣ ।

ପଦନ ପୁରୋହିତ ଦୁର୍ଗାଚରଣକୁ ବଳ ଦେଇ କହିଉଠେ, ଦାଦା, ତୁମି କାଉର୍ କଥା ଶୁନୋ ନା । ଆମି ଆଛି, ଆମାର୍ ହାତେ ଆଛେ କାରିଗରି···ତୁମି କାଉର୍ କଥା କାନେ ତୁଲୋ ନା ।

ବଶବ ଏହି ପଦନ ପୁରୋହିତର କଥା । ଗଞ୍ଜାମରେ ତାହାର ଘର ବୋଲି ସେ କୁହେ । ସେ କୁହେ, ଦଶ ବର୍ଷ ଥିଲା କାମାକ୍ଷାରେ, ସେ ଜାଣେ ଅନେକ କଥା । କେତେ ବନ୍ଧ୍ୟାକୁ ସେ କରିଛି ପୁତ୍ରବତୀ—କେତେ ଅଯୌବନାକୁ ଏକ ଫୁତ୍କାରରେ ସେ କରିଛି ପୁଷ୍ପିତା । ତା'ର ରନ୍ଧା ଖାଇ କେତେ ଝିଅଙ୍କର ରଙ୍ଗ ବଦଳି ଯାଇଚ ।

କେହି ନ ଥିଲେ ଦୁର୍ଗାଚରଣକୁ ସେ କୁହେ, ଗାନୁ ସେତେବେଳେ ଶୋଇ ପଡ଼ିଥାଏ ନିଦରେ । ଅଗଣାର ଲଉ ରଞ୍ଜାରେ ସମ୍ଭୋଗରତ ଥାଏ ବିରୁପା ନଦୀର ବାପ୍ଟୁ । ସଜନାଗଛରୁ ଝଡ଼ିପଡ଼ୁଥାଏ ପାକଲା ପାକଲା ପତର······

ଦୁର୍‌ଗୋ ଭାଯ୍ଯା, ଆମି ଆର୍ କିଛୁଇ ଚାଇ ନା । ଆମି ଗୁପ୍ତାର୍ ମତ ଥାକ୍‌ତେ ଚାଇ ତୋମାଦେରଇ ସଙ୍ଗେ । ଶୁନ୍‌ତେ ଚାଇ ଗାନୁ କଣ୍ଠେର ଗାନ୍ । ଟାକାର ଜନ୍ୟେ ତୁମି କିଛୁ ଭାବ୍‌ନା କର ନା ଭାଯ୍ଯା । ଆମାର୍ କାଛେ କତ ଟାକା ଆଛେ, ତୁମି ଭାବ୍‌ତେ ପାର୍‌ବେ ନା—ଆମି କାମାଖ୍ୟା ଦେଶେର୍ ଲୋକ୍ । ତୁମି ଆର୍ ଆମାକେ ଉଡ଼ିଆ ବଲ୍‌ତେ ବାଧ କର୍‌ବେ ନା ଭାଯ୍ଯା । ବାବୁରା ଇଂଗ୍ରେଜୀ ନା ବଲ୍‌ଲେ କେ ଓଦେର୍ ପେନ୍‌ମାମ କର୍‌ଚ ବଲ୍‌ତ ?···ହା-ହା-ଆମି ପ୍ୟାଁଚ ଜାନି-ନା ଦାଦା—ଆମି କାମାଖ୍ୟା ଦେଶେର୍ ଲୋକ୍ !

ଧୂର୍ତ୍ତ । କୌଣସି ସୁଯୋଗର ପ୍ରତୀକ୍ଷାରେ ଅଛି ଯେପରି ଏହି ପଦନ ପୁରୋହିତ । ଓଠର ପାନ ବୋଳ ଉପରେ ସୁଲଭ ତୀକ୍ଷ୍ଣ ହସ ଖଣ୍ଡିକ ତାହାର ଅସ୍ତ୍ର ।

ସନ୍‌ଉଉ ପ୍ଲାଣ୍ଟ୍ । ନାଲି ଟକ ଟକ ଚେହେରା ଉପରେ ଅଠା । କୀଟ ପତଙ୍ଗର ଯମ ।···

ତାହାପରେ ଏକାନ୍ତ ଦେଖି ସେ ଗଣି ବସେ ତାହାର ମଖମଲ ବଟୁଆ ଫିଟେଇ ହାଡ଼କଟା ଗଳରୁ ଆଣିଥିବା ସୁନା ବର୍ଣ୍ଣର ପିତଳ କାଡ଼ଗୁଡ଼ିକ । ତାହାର ପ୍ରତୀକ ଯେପରି ସେ ନିଜେ । ବିଷକୁମ୍ଭ ପୟୋମୁଖ ।

ଏହା ଭିତରେ ଘରେ ଯାଇଁ ପହଞ୍ଚ ସାରିଛନ୍ତି ଗ୍ରାମୁକରଣେ ।

ସଙ୍ଘା ଉପରୁ ନାଗୁଆଣି ଦୁ'ଖଣ୍ଡ କାଢ଼ୁ କାଢ଼ୁ ବଲୁରିଟାଏ ଆସି ବାନ୍ଧି ଦେଲା ତାଙ୍କର ଅପାକୁ, ସାନ ଭାଉଜ ଡାଳଖଡ଼ ଖଣ୍ଡେ ଆଣି ଶିଳରେ ଘୋରି ସେଥିରେ ଲଗେଇଦେଲା ବେଳକୁ ବୁଢ଼ାଙ୍କର ଦେଢ଼ ବର୍ଷର ଝିଅ ସୌଦାମିନୀ ଖଡ଼ 'ଖଣ୍ଡିକ ନେଇଯାଇ ସେତକ ବେଳକୁ ତଳେ ଗାରେଇ ପାଟିକର ଖେଳୁଛି । ଗ୍ରାମୁକରଣେ ପହଞ୍ଚି ଝିଅ ହାତରୁ ଖଡ଼ ଖଣ୍ଡିକ ଝାମ୍ପି ମାରିଲା ପରି ନେଇ ଦୁଆର ପାଖ କାନ୍ଥରେ ଝିଙ୍କ୍ ଲେଖି ପକେଇ ଝିଅ କାନ୍ଦ ନ ଉଠିବା ଆଗରୁ ତାକୁ ଫେରେଇ ଦେଲେ ।

କାନ୍ଥ ଦେହରେ ଆଗରୁ ଥରେ ସଉଦା ହିସାବ ଲେଖା ଯାଇଥିଲା । ତା' ତଳକୁ ବର୍ତ୍ତମାନ କରଣୀ ଅକ୍ଷରରେ ଲେଖା ଯାଇଥିବାର ଦେଖାଗଲା—ଜଡବ ।

ଆରେ, ମୁଁ ଖାଇକରି ଯାଇଥେଲି ପା' ଆଜ...

କୁଞ୍ଚବହୁଳ ଶାନ୍ତପୃଷ୍ଠ ଗୃହର ଖଣ୍ଡିକ ଅଲୁଗୁଣୀରେ ରଖୁ ରଖୁ ସେ କହିଲେ...

ବାଜା ଟିକିଏ କମିଗଲାଣି । କେଶବରାମ ଦାସ ମହାନ୍ତଙ୍କର ମା ଶୋଇ ରହି ଆର ଘର ଝଟ ଉପରୁ କହିଲେ...

କୁଆଡ଼େ ଗଲ କ ଲେ, ଓ ନୂଆ ବୋଉଏ, ଭକାରି ଆଇଲାଣି ପରା... ନାଆଁ ନଗା ବଲୁରିଟା କୋଉଠି ଥେଲା...ଓ ହୋ, ହୋ ହୋ...

ଠିକ୍ ଜାଗାରେ ପହଞ୍ଚିଲା ସେପରି ଅପାଙ୍କର କଥା । ବ୍ୟଥାତୁର ଭଙ୍ଗୀରେ ତାଙ୍କ ପାଖକୁ ଚାଲିଆସିଲେ ଗ୍ରାମୁକରଣେ ।

ଏଁ...ବଲୁରି ମାଇଲା କେମିତି...କୋଉଠି ଦେଖେ...

ନାଇଁ ରେ; ଭଲ ହେଇଗଲାଣି—କହି କହି ବାହୁ ଉପରୁ ଲୁଗା ଖସେଇ ଦେଲା ଅପା । ଶୀର୍ଣ୍ଣ ଶୀରାଳ ପୁରାତନ ଚର୍ମ ଉପରେ ନୂତନ ଦଂଶନ କ୍ଷତ, ତାହା ସମାଧି ନେଉଛି ଖଡ଼ ପ୍ରଲେପର ତଳେ ।

ଆଚ୍ଛା, ଅଚ୍ଛା. ତୁ ଭଲ କରି ଶୋଇପଡ଼ ଅପା !

ତାହାପରେ ମନେ ମନେ ଗ୍ରାମୁକରଣେ ଭାବିଲେ, ଆଜ ଆମ ଦୁି' ଜଣଙ୍କର ଖରାପ ଦଶା ଥେଲା ତା'ହେଲେ ।

ଦୂରରୁ ପାଣିକଖାରୁ କୋରିବାର ଶବ୍ଦ ଭାସିଆସୁଛି—ତାହା ସଙ୍ଗରେ କର୍ମରତ ହସ୍ତର ଅଳଙ୍କାର ଶବ୍ଦ ।

ଅପା ପୁଣି ଡାକି ଉଠିଲେ, ଆଲୋ ଭାରି ତ ତମର ଉଗୁର, ତମକୁ ଶୁଭୁନେଇ ନା କଣ ?...ଆଲୋ ସେ ମାରସା' ଘର କଣ ଭାରି ଦେଇ ଯାଇଥେଲା ଭକାରିକ ଦଉ ନା କାହିଁକି ଆଣି—କେତେବେଳେ ହାଇଟା ଖାଇଥେଲା ଯାଇକରି...

ବର୍ଷ ପଚିଶ ବୟସର ସ୍ତ୍ରୀ ଲୋକ, ଯେ କି ଗ୍ରାମୁକରଣଙ୍କ ପ୍ରଥମ ପତ୍ନୀ, ସେହି ଆଣି ଗୋଟିଏ ଡାଲା ଥୋଇଦେଲେ ସ୍ୱାମୀଙ୍କ ଆଗରେ । ନିଜର କୋଠରୀକୁ ଲାଗି ଯେଉଁ ବଖରାଟିରେ ଅପା ଶୋଇଥାନ୍ତି, ତାହାରି କୋଠରେ ଠିଆ ହୋଇଥିଲେ ଗ୍ରାମୁକରଣେ । ଖଟେ ଆସନ ପକେଇ ଦେଇ, ଗିଲାସରେ ପାଣି ଆଣି ଥୋଇଦେଲେ ସେହି ବର୍ଷିୟସୀ ପ୍ରଥମା ।

ନେଇ ଯା, ନେଇ ଯା—ଏତେ ଗୁଡ଼ା କଣ ହବ—ସେଇ ବୃଦ୍ଧଆଡ଼ି ଆଉ ଗୋଟା ଜଲପି ଦେଇ ଯା' ମତେ ।

ତମେ ଏବେ ସେଥିକୁ ସେଇଥିରୁ ଖାଉ ନା !

ଖାଉଁ ଖାଉଁ ଗ୍ରାମୁକରଣେ ପଗ୍ଭରିଲେ···

କୋଉଠୁ ଆସିଥିଲା କ ବୀର ସା' ଘର ଭାଉ ?···ଭଲ ଘିଏରେ ତ କରିଚ ।

କାହାର ନାଁ ପଡ଼େ ବୋଲି ବୀର ସା' ଅର୍ଥାତ୍ ବୀର ସାହୁଙ୍କୁ ଅପା ମୀର ସା' ବୋଲି କହନ୍ତି । ଭଉଣୀର ପ୍ରଶ୍ନର ଉତ୍ତର ଦେବାକୁ ଯାଇଁ ସେ କର ନେଉଟାଇ କହିଲେ···

ଯାହାଙ୍କୁ ତମେ ବାରୁଥିଲ, ସେଇ ଏବେ ହେଲେ ଭଲ । ପଇସା ଖର୍ଚ୍ଚ କଲେ ଦରବ ଭଲ ହବ ନେଇଁ—ତା' ନାତୁଣୀବୋହୂ ଘଟୁଆଇଚ । ଭାଉ କଣ ସେ ପୁଣି ଗ୍ରାସୁଆ ହାତରେ ପଠେଇଚକି, ଗାଡ଼ି ଗୋଟାକରେ ନଦ୍ଧ ପଠେଇ ଦେଇଚ । ସେ ବଳଦକୁ ଦେଖିବୁ ପୁଣି କ'ଣ···ମାଛି ଖସି ପଡ଼ୁଚ ସତକା···

ଏତେଗୁଡ଼ାଏ କଥା ଶୁଣିବାକୁ ପ୍ରସ୍ତୁତ ନ ଥିଲେ ଗ୍ରାମୁକରଣେ । ଭଉଣୀର ଏତେ ତାରିଫ୍ ଶୁଣି ସେ ଭାବିଲେ, ଭୁଲ ହୋଇଚି ତାଙ୍କର । ମିଠେଇର ପ୍ରଶଂସା କରିବା ଉଚିତ ନ ଥିଲା ଏଠି । ଟିକେ ଶ୍ରାନ୍ତି ଅପନୋଦନ ପାଇଁ ସେ ସାମାନ୍ୟ ଆହାରର ଆଶ୍ରୟ ଲୋଡ଼ିଥିଲେ, ସେତକ ସାରି ଦେଇ ସେ ଗ୍ଭଲିଗଲେ ନିଜର ଶୋଇବାଘରକୁ ।

ଆରେ ଖଣ୍ଡେ ପାନ ଦେଇ ଯିବ ରେ······

ପାନ ପାଇବା ଭିତରେ ସେ ଆଶା କରୁଥିଲେ ଆଉ ଗୋଟିଏ ମୁହୂର୍ତ୍ତ— ଯେଉଁଥିରେ ନାହିଁ ବୟସର କାଠିନ୍ୟ, ତାରୁଣ୍ୟ-ତାଣ୍ଡବର ଶେଷ ଛନ୍ଦ ଯେଉଁ ମୁହୂର୍ତ୍ତରେ ଲୀଳା କରୁଛି ଏ ପର୍ଯ୍ୟନ୍ତ ଏକ ମାତ୍ରାରେ । ତାହା ବିଡ଼ମ୍ବିତ ହେଲା ବୋଲି ସେ ଜାଣିପାରିଲେ ନେପଥ୍ୟର ଶବ୍ଦରୁ । ସେଥିପାଇଁ ସେ ଆଖି ବୁଜି ଦେଇ ଖଟ ଉପରେ ପଡ଼ି କଣ ଧ୍ୟାନ କରିବାକୁ ଲାଗିଲେ—ନାକ ପାଖରେ ତାଙ୍କର ଭାସି ଉଠିଲା ମୁଗୁକାଲି- ପଟାସର ଗନ୍ଧ; ମୁଦ୍ରିତ ଆଖି ପଲକ ଦୁଇଟି ଶ୍ୟାମ ସେନାପତିର କୋଠାରେ ପରିଣତ ହେବାକୁ ଲାଗିଲା ।

ତାହା ପରେ ମନ ତାଙ୍କର କୁଞ୍ଚମାଞ୍ଚ କ୍ଷେତ୍ରରୁ ଅବସର ନେଲା—ଓଃ, ଏଇ ବଛଣାର ଗୁଣ, ଏଥିରେ କେମିତି ଗୋଟି! ଲୋକ ବସି ଆଉ କଥା ଭାବିବ !

ଦୁଇଟି ମଧୁଶଯ୍ୟା ଏହି ଖଟରେ । ରୂପ-ରସ-ଗନ୍ଧର ଲୀଳାଭୂମି ଏହି ପଲଙ୍କ । ସେହି ଗ୍ଭଳିଶ ବର୍ଷ ତଳର କଥା ଆଜି ବିସ୍ମୃତିର ସମ୍ପଦ—କେବଳ ସୋଦ୍ଧ ବୋଉ, ସୋଦ୍ଧ ବୋଉର ଦେହରୁ ଯାହା ମନେପଡ଼େ ଗୋଟା ଇତିହାସର କଥା । ନ ହେଲେ ତାହାର ଆଉ ସ୍ମୃତି କାହିଁ ! ଯେପରି ପଟୁଆର ଘର କାର୍ତ୍ତିକେଶ୍ୱର-ମେଢ଼, ସେଥିରେ ଆଜ କାର୍ତ୍ତିକ ମୂର୍ତ୍ତିର ଶରତାରୁଣ୍ୟ କାହିଁ ?···ତାହାପରେ ସୋଦ୍ଧ ବୋଉର ଉଡ଼ିଯାଉଥିବା ବୟସକୁ ଘେନି ଆସିଲା ଆଉ ଜଣେ ।

ଆଁ···ଦଶ ବର୍ଷ ହେଲଣି ସେ କଥା—ଦିନ ଗୁଡ଼ା ଖୁବ୍ ଶ୍ରେଷ୍ଠ ତା' ହେଲେ । କଣସ୍ମର ଦିନ ସଙ୍ଗରେ ଏ ଦିନର ତ ଜନ୍ମ ସମ୍ପର୍କ ନାହିଁ । ହୁଁ, ଷୋଳ, ଦଶ – ଛବିଶ । ଛବିଶ ବର୍ଷ ହବ ସାନଙ୍କୁ ଆମର । ତଥାପି ବଦ୍ ନାଁଶ୍ ନୂଆ, ଅର୍ଥ ନୂଆ ଆଜ ବି ତା'ର ଧିଅ । ଆରେ, ବନା ବଣିଆ ସେ ଚନ୍ଦ୍ରହାରଟା ଦେଲଣି କ ନାହିଁ······ଆରେ ହାତ ବାକ୍ସର ଗୃହ ଆଣିଲ···

ପଦ୍ମତୋଳା ଡାକଲ ପର ଉଚ୍ଚସ୍ୱରରେ କହିଉଠିଲେ ଏତକ ଗ୍ରାମୁକରଣେ । ପାନ ମଧ୍ୟ ସେ ପର୍ଯ୍ୟନ୍ତ ତାଙ୍କ ହାତରେ ପହଞ୍ଚି ନ ଥାଏ । ସୋଦ ବୌଦ୍ଧ ପାନ ଭାଙ୍ଗିବାକୁ ଯାଉଁ ଯାଉଁ ଦେଖି ପକାଇଲେ ଯେ, ଝିଅ ସୌଦାମିନୀ ହଗି ହୋଇ ଘାଣ୍ଟି ହେଉଚି ସେଥିରେ । ସେ ତାକୁ ଆଗେ ଉଠେଇ ନେଇ ଗୃଲଗଲେ ଧୋଇ ଦେବା ପାଇଁ ।

ଏହା ପରେ ଅଳଙ୍କାର ନାକ୍ୱଣ ସହିତ ପାଣିକଖାରୁ କୋରବା ବନ୍ଦ ହେଲା ।

କଣ୍ଟ୍ରୋଲ୍ ଅଫିସର୍ ପର ନାତମ୍ୱର ପରଧେୟ ଉପରେ ଗୃପି ବସିଚ ଚନ୍ଦ୍ରହାର । ତଥାପି ମଧ୍ୟ କର୍ତ୍ତବ୍ୟର କଷାଘାତରେ ଗୃଲଛି ବ୍ଲାକ୍ ମାର୍କେଟିଂ—ବାଧ୍ୟ ହୋଇ ପାଦ ପତନର ତାଳରେ ଶ୍ଳଥ ହୋଇ ଉଠୁଚି ବସ୍ତ୍ର । ଗୃହ ନେଥାଣ୍ଟା ଜଘନରେ ପିଷି ହୋଇ କଣ୍ଟ୍ରୋଲ୍ ଆଇନକୁ ଯଥାସାଧ୍ୟ କରୁଛି ଜାର । ସବୁ ଠିକ୍ । ସବୁ ବେଠିକ୍ । ଯୁଦ୍ଧ ବଜାର । କଏ ମାନୁଚ କାହାକୁ ! ଯୁଦ୍ଧ,···ତନୁ-ଅତନୁର—ଯୁଦ୍ଧ···ଜୀବନ-ଯୌବନର ଯୁଦ୍ଧ । ଜୀବ-ଜୀବନର ଯୁଦ୍ଧ । ଜଡ଼ ଚେତନର ଯୁଦ୍ଧ, ବିପୁଳ ସଂଗ୍ରାମ !

ଲୁସ୍ —

ନରି ମହାନ୍ତି ଘର ଅଜୁର ସାନ ଭାଇ ବଜୁ । ନାପଟ ଲଙ୍ଗଳା ଟୋକାଟା । ହାତରେ ଗୋଟା ତା'ର ବାଉଁଶ ପାଡ଼ିଆ । କଥା କଥାକରେ ଲୁସ୍ ।

ନାତମ୍ବିନୀର କାନ୍ଦନାଦ ଭାଙ୍ଗି ଦେଇଥିଲା ଅନେକ ଆଗରୁ ଗ୍ରାମୁକରଣଙ୍କର ଆଖିର ମୁଦ । ବର୍ତ୍ତମାନ ଦୃଷ୍ଟିର ଏକାଗ୍ରତାର ମୁଦ ଭାଙ୍ଗିଦେଲା ବଜୁର ଲୁସ୍ । ବିରକ୍ତ ହୋଇ ସେ କହି ଉଠିଲେ···

ଏଁ —କୁଆଡ଼େ ଆଇଲୁ ତୁ···

ପାଖ ଘରୁ ଡାକ ଉଠିଲେ ଆପା —

କଏ ବଜୁ କ ରେ—ବଜୁ ! ଆରେ ଇଆଡ଼େ ଆ, ଆରେ ମିଠେଇ ଖାଇବୁ—ଆ···

ଲଙ୍ଗଳା ଦେହରେ ପାଡ଼ିଆ ଖଣ୍ଡକୁ ପିଟି ପିଟି ଗୃଲଗଲା ବଜୁ । କୃତଜ୍ଞତାରେ ପୂର୍ଣ୍ଣ ହୋଇ ଉଠିଲା ଭଉଣୀ ପ୍ରତି ଭାଇର ମନ—ଦଶ ବର୍ଷ ହେଲା ମଦନାନନ୍ଦ ମୋଦକ ଖାଇ ଯେଉଁ ମନ ହୋଇଛି ଖୁବ୍ ଦୋରସ୍ତ ।

ହଁ, ହାତ ବାକ୍ସ ଖୋଲଲ, ସେଇ ଟିଣ ଭିତରେ କେତେ ଟଙ୍କା ଅଛି ଦେଖିଲ—ସେଇ ମୁଦୁକ ଟିଣା ଭିତରେ ।

ଳୋଲକଟା ନାଚ ଉଠିଲା ଓଠ ଉପରେ···ସେଦିନ ପରା ଗଣିଥିଲି—ଷାଠିଏ ।

ସେଗୁଡ଼ା ବାଜେ ଆୟ, ବରାବର ଅଲଗା ରଖିବ ତାକୁ—ଅଂଡ଼ ଶହେ ଟଙ୍କା ଆଜ ମୁଁ ଦେବ ।

ରୌପ୍ୟ-ରସାୟନ ଯଥେଷ୍ଟ କାମ କରେ ଯୌବନ ଅପେକ୍ଷା । ଆମ ପବନ ପୁରୋହିତଙ୍କ କଥାରେ କେତେ ଗୀତ କଲକତାର ଫୁଟ ପାଥ୍‌ର ମଡ଼ା ଭିତରେ ରହିଗଲା···କିଏ ଶୁଣିଲା ତାକୁ !···କେତେ ଝିଅ ଘର କଣରେ ସଡ଼ି ଯାଉଛନ୍ତି ବାହା ନ ହୋଇ ପାରି, କିଏ ଦେଖୁଛି ସେ କଥା । ସ୍ତମ୍ଭୁକରଣଙ୍କର ଏବେ ଦୁଇଟି ସ୍ତ୍ରୀ, କ'ଣ ହେଲା ସେଥିରେ । ମଦନାନନ୍ଦ ମୋଦକ କିଣିବାକୁ ତ ଝାଳବୁହା ଧନ ଖର୍ଚ୍ଚିବାକୁ ପଡୁ ନାହିଁ ତାଙ୍କୁ । କେତେ ପାପଗର୍ଭର ନିଶାପ, କେତେ ହାଡ଼ବାଡ଼ର ଫେସଲା, କେତେ ପରାମର୍ଶର ଫିସ୍···ସେଥିରୁ ବାଜେ ଆୟ ଏ ମାସରେ ଶହେ ଷାଠିଏ ଟଙ୍କା । ମନ୍ଦ କଣ ! ରୌପ୍ୟ-ରସାୟନ ଖାଇବାକୁ ନ ପାଇ ଯେଉଁଠି ଯୁବକ ହେଉଛି ଫଗୁଆ—ସେଠି ତାଜା ଚେହେରା, ଲାଲ୍ ରକ୍ତର ମୂଲ୍ୟ ଆଉ କାହିଁ ?

ସ୍ତ୍ରୀନେଷ୍ଟୀସଙ୍ଗର ବଳୀ ରୂପେ ଦ୍ୱିତୀୟାର ଆବିର୍ଭାବ ହୋଇଥିଲା ଏଠି । କିନ୍ତୁ ମାଧ ବଇଦଙ୍କର ମୋଦକ ତାକୁ କରି ଦେଇଛି ଭିନ୍ନ । ସେଥିଲାଗି ସ୍ତମ୍ଭୁକରଣେ ମନେ ମନେ ଭାବନ୍ତି···ପ୍ରେମଟା ଏତେ ଡେରିରେ ଆସେ, ଯୌବନଟା ଏମିତି ଛପି କରି ରହେ ମଜା ଭିତରେ, କେହି ତାହା ବୁଝି ନ ପାରି ମିଛରେ ମତେ କହନ୍ତି ବୁଢ଼ା ! ମୁଣ୍ଡରେ ପୁଣି ହାତ ବୁଲେଇ ବୁଲେଇ ଭାବନ୍ତି···ସ୍ତୁଡ଼; ମୟୂରୁ ପଠାଣ ଏବେ ବାଳ ତାଙ୍କୁ ହୁଏ ନଣ୍ଡା···ମୋର ଏବେ ସ୍ତ୍ରୀଙ୍କୁ ହେଇଚି ସେଇଟା । କଣ ହେଲା ସେଇଠୁ ? ହୁଏ ତ ଇଂରେଜୀ ପଢ଼ିଥିଲେ ସେ କହନ୍ତେ 'ନ୍ୟାଚ୍‌ରାଲ ଶେଭ୍‌ଡ଼' । ହୁଏ ତ ଆଉ କିଛି ଖବର ରଖିଥିଲେ ସେ କହିଥାନ୍ତେ···ଓମର୍ ଖୈୟାମ୍‌ଙ୍କୁ ଚହ୍ନିଚ ?

କିନ୍ତୁ ସ୍ତମ୍ଭୁକରଣଙ୍କ ଏହି ବିବାହର ଲୋକପ୍ରଚଳିତ ପ୍ରବାଦ ଭିନ୍ନ । କୁସୁନପୁରର ପୁରସ୍ତମ ପ୍ରମାଣିକ ଏହା ଭିତରେ ମାମଲତ୍‌କାର ସାଜିଛି । ବିଚାର ଘର ଛପରବନ୍ଦୀ କି ତବେ ନ ଥାଏ । ତାହାର ବୟନ ପଟୁତାରେ ଦେଶର ଜଣେ ଭଦ୍ରଲୋକ ରାୟସାହେବ । ଗାଁର ଯଦୁବାବୁ ବି ଲେଡ଼ି ଇରଉଇନ୍‌ଙ୍କଠୁଁ ସାର୍ଟିଫିକେଟ୍ ପାଇଛନ୍ତି ତା'ଲାଗି । ସ୍ତମ୍ଭୁକରଣଙ୍କ କଥା ପଡ଼ିଲେ ବିଚାରୀ ଅଶୀ ନମ୍ବର ସୂତାର ମାଙ୍କୁ-ଡଲା ବନ୍ଦ କରିଦେଇ କୁହେ···

କାହିଁକି ଜାଣିଚ, ଭିକାରୀ ସ୍ତମ୍ଭୁକରଣ କାହିଁକି ପୁଣି ବା'ହେବେ ଜାଣିଚ···?

କେହି କିଛି ଉତ୍ତର ନ ଦେଲେ ସେ ପୁଣି ତାହାର ପାକୁଆ ଓଠରେ ଜିଭ ଘଷି ନେଇ କୁହେ···ପୁଅ ଝିଅ କଥା ସବୁ ମିଛ । ଆରେ, ପିଲାଦିନେ ବା'ହେଲାବେଳେ ରୋଶନି ହେଇ ନ ଥେଲା ଜମା । ତା ବାଦେ ତ ମିଳିଲା ଦଖଣ୍ଡାରଙ୍କ ଜମିଦାରୀ । ତା'ପରେ ବାକ୍‌ସ ଦେଖି ଦେଖି ମନ ଓରମାନ ବଢ଼ିଲା । ମାହାଙ୍ଗା ମାଲଙ୍କି ପରୁରୁନା, କିମିତି ତାଙ୍କୁ ବକ୍‌ସିସ୍ ବରାଦ କଲେ – ଯେମିତି ସବୁ ଗୃହିଁ ଭଲ ଝାଡ଼, ଭଲ ଫୁଲ ହବ ତାଙ୍କର···ଏ ଅଞ୍ଚଳରେ କେହି ଯେମିତି ସେମିତିକା ରୋଶନୀ କରି ନ ଥେବେ । ଦେଖିଲ ନେଇ, ବାହାଘରର ତ ହେଲା ଡେରିବସ୍‌ରେ ଆଉ ରୋଶନୀ କାହିଁକି ଜଳନ୍ତା ଆଗେ ନାନ୍‌କାରେ !

କିନ୍ତୁ ଯାହାକୁ ଅନୁର୍ବର ବୋଲି ଭାବିଥିଲେ ଗ୍ରାମୁକରଣେ, ଶେଷରେ ସେଇଠି ଫଳିଲା ଫଳ—ତାହାଙ୍କର ବୟସ୍କା ପ୍ରଥମା ସ୍ତ୍ରୀଙ୍କର ମେଘଳ ଶଙ୍ଖାକାଶ ଉପରେ ଝଟକିଲା ସୌଦାମିନୀ । ନୀଳାଞ୍ଚନ ଦେଖି ଝିଅଟିକୁ ଧରି ମା ତା'ର କହନ୍ତି···

ପୁଅଟିଏ ହେଲୁ ନୁ ତୁ ମୋର କାହିଁକି···ଆଁ !

ତଥାପି ମଧ୍ୟ ସାନ୍ତ୍ୱନା ତାଙ୍କର ଅସୀମ । କିଏ ମିଳିବ ସେ ପୋଡ଼ା ରୂପରୁ । ଗଛ ମୋର ପାହିଛି । ଫଳନ୍ତି ଗଛ କିଏ ଫଳିବ ନେଇଁ ପୁଣି । ଏଇ ସୋଦ୍ଧା ମୋର ଟାଣି ଆଣିବ ତା ବାପକୁ ମୋ ପାଖକୁ ।

ସଉଡୁଣୀର ଦେହକୁ ଗୁହିଁ ଗୁହିଁ ନୀଳାଞ୍ଚନ ଦେଖି ସୋଦ୍ଧାକି ସେ ଜୋର୍‌ରେଁ ଧରନ୍ତି କୋଳରେ । ଧରି ଧରି ସେ ମନେ ମନେ ଭାବନ୍ତି···ମୋ ଦେହ କିଏ ଭାଙ୍ଗିଯାଇଚି, ମୋ ଦେହ ସାଙ୍ଗରେ ଆଉଗୋଟା ଦେହ !

ସେ ଆଜିକି ଦେଢ଼ବର୍ଷ ତଳର କଥା ଭୁଲିଯାଇ ଆହୁରି ଭାବନ୍ତି··· ବାପ ଲୋ, ମାଇକିନା ଜନମ ପାଇ ଯଦି କୋଳରେ ପିଲା ନାଇଁ, ପୋଡ଼ ଯାଉ ସେ ରୂପ । ସୋଦ୍ଧ, ସୋଦ୍ଧ, ତୁ ମୋର କୋଉଠି ଥିଲୁ ଲୋ···ଆଗରୁ ଆସିଲୁ ନୁ କାହିଁକି·· ତାହା ପରେ ଝୁଲେଇ ଝୁଲେଇ ଝିଅଟିକୁ ଗାଇ ଉଠନ୍ତି ସେ···

ସୋଦ୍ଧ ବାହା ହବ କନ୍ଦରପାରି
ବାଜା ବାଜୁଥିବ ଧାରିକି ଧାରି···

## —ଆଠ—

ବାସ୍ତବିକ୍ ଏକ ସୁଯୋଗରେ ନିମନ୍ତ୍ରଣ କରିଥିଲା ଶାମ ସେନାପତି ।

ଯେତେବେଳେ ସମସ୍ତେ ଖାଇପିଇ ସାରି ଉଠିବା ଉପରେ, ସେତିକିବେଳେ ଶାମ ସେନାପତି ଘରେ ପହଞ୍ଚିଲେ ଗ୍ରାମୁକରଣେ, ସଙ୍ଗରେ ୟୁନିୟନ୍ ପ୍ରେସିଡେଣ୍ଟ ବାଞ୍ଛୁ ପରିଡ଼ା । ପରିଡ଼ାଙ୍କର ଗୁଣ କମ୍ ନୁହେଁ । ଚନ୍ଦ୍ରପୁର ହାଟକୁ ଥରେ ଯେ ଯାଇଚି, ସେ ଦେଖିଚି ତାଙ୍କର ରୂପ । ହାଟଦାଣ୍ଡିଆ ସେ ନ ହେଲେ ବି ହାଟ ତୋଳା ସେ ଅସୁଲ କରନ୍ତି ସ୍ୱଚ୍ଛନ୍ଦଭାବରେ । କେବଳ ସେ ଏକାକୀ ନୁହନ୍ତି···ସେଦିନ ତାଙ୍କ ବଂଶଟା କିଣିବାକୁ ବୋହାରନ୍ତି ହରିଲୁଟ୍ । କେତୋଟି କନ୍ୟା ମଧ୍ୟ ବାହାରନ୍ତି ସେମାନଙ୍କ ସାଙ୍ଗରେ ଗରିଲା ଆକ୍ରମଣ ପାଇଁ । ବଡ଼ ଅତର୍କିତ ଭାବରେ ସେମାନେ କରନ୍ତି ଆକ୍ରମଣ । ଅନେକ ସ୍ଥଳରେ ଜୟୀ ହୁଅନ୍ତି ବି ସେମାନେ । କିନ୍ତୁ ପରିଡ଼ାମାନଙ୍କ

ସାଙ୍ଗରେ ଦୋକାଣୀମାନଙ୍କର ଶାନ୍ତମତ ଲାଗେ ଯୁଦ୍ଧ । ଉପରକୁ ଗୁହାଁ ପରଡ଼ାମାନେ ହାତ ପୂରେଇଥିବେ ଦୋକାଣୀମାନଙ୍କ ପଣ୍ୟରେ, ହାତ ଛଡ଼ାଉଥିବ ଦୋକାଣୀ । ଘୁଡ଼୍ ଘୁଡ଼୍ କହି ଲୁଣ୍ଠନକାରୀ ମଧ୍ୟ ଛଡ଼ାଉଥିବ ନିଜ ହାତରେ ମୁଠା । ଚମତ୍କାର ଦୃଶ୍ୟ । ବାଞ୍ଛୁ ପରଡ଼ା ତ ସର୍ଦ୍ଦାର···ପ୍ଲୁନପ୍ଲୁନ୍ ପ୍ରେସିଡେଣ୍ଟ···ତାଙ୍କ କଥା ତ ଆହୁରି । ରଜତ ଜୟନ୍ତୀ ହେଲା ସମ୍ରାଟ୍ଙ୍କର । ଜୁବୁଲି ପାଇଁ ଚୁନ୍ଦା ଦେଇ ପାରିଲା ନାହିଁ ବୋଲି ପରଡ଼ାଙ୍କର ନିର୍ମମ ପ୍ରହାରରେ ଅପମାନ ସହି ନ ପାରି ପୁଅ କନ୍ୟାର ମାସ୍କା ଘୁଡ଼ ବଚରା ଫାଶୀଦେଇ ମଲା ସୁପୁସିଇଁ । କମ୍ ଶକ୍ତି ନୁହେଁ ଏହି ପରଡ଼ାଙ୍କର ।

ଏହିପରି ପୁଣ୍ୟଶ୍ଳୋକ ବ୍ୟକ୍ତିକୁ କେବଳ ଯୁକାଲି ପଟାସ୍‌ର ଅର୍କ ଦାହାର କରିବା ପାଇଁ ସାଥୀ କରୁଛନ୍ତି ଘୁମୁକରଣେ । ଭିତରେ ଅହିନକୁଳ ସମ୍ପର୍କ । କିନ୍ତୁ ଯେତେ ହିଂସ୍ର ହେଲେ ମଧ୍ୟ ସ୍ୱାର୍ଥଲାଗି ଏକାଠି ହୁଅନ୍ତି ଏମାନେ ଅନେକ ସମୟରେ । ଆଜି ଶିକାର ଯୁଟିଛି ରକ୍ତ ପିପାସୀଙ୍କର ବନସ୍ତ ଭିତରେ, ବାଜପୁର ଭଳିଆ ଗାଁ, ଫୁଟିକି ମାଇଲେ ଲୋକ ଚମକିବେ, ପରୁଆ କାହାକୁ ସେଠି···ତାକୁ ଘୁଡ଼ ଦେବେ କିପରି ?

ଦେଖ ବାଞ୍ଛୁବାବୁ ଦେଖ, ବାବା ରେ, ଦୁନିଆ ତ ଦାନ ହେଇଯାଇଚି ଏକଦମ୍ ! ତାହାପରେ ଗଣିଗଣି ଘୁମୁକରଣେ କହିଲେ···ଏକ୍‌ବାରି ପାଞ୍ଚୁଟା ପଞ୍ଚଲାଇଟ୍ ।···ଏଁ କସୁନପୁରିଆ ଟୋକା କେତେଟା ତ ଅଛନ୍ତି···ହେଇ ଗାନ୍ଧି ଟୋପି ସେଠି ଦେଖ···ଯାଉନ୍ତୁ ସେମାନେ ଯାଉନ୍ତୁ । ···ଏଇଠି ଟିକେ ଘୁଡ଼ା ହେଇଯିବା ଆମେ···ଏଇ କରଞ୍ଜଗଛ କଡ଼ରେ ।

ମୁହଁରେ ଟିକିଏ ହସ ଉକୁଟେଇ କହିଲେ ବାଞ୍ଛୁପରଡ଼ା···ଏତେ ଲାଇଟି ନ ଜାଳିଥେଲେ ଆମେ ଆସିଥାନ୍ତେ କାହିଁକି ।···ଦେଖ ଭିକାରୀ ଭାଇ ଦେଖ, କୋଠା ଖଣ୍ଡେ ଏକା କରିଚ ।

ଯେମିତି ଆଘ୍ରାଣ କରି ନେଲେ ନାକରେ, ଏ କୋଠାରେ ବି ଯେମିତି ଯୁକାଲିପଟାସର ଗନ୍ଧ । ତାହା ପରେ ଘୁମୁକରଣେ କହିଲେ···

ସେ କୋଠାରୁ ଆମର କଣ ମିଳିବ ! ବାବା, ଆମ ପାକଟି ଭଲ ତ ଆମେ ଭଲ ।···ବାବା ଖିରପୁର କ ପଲଉ ମାଂସରେ ଆମ ପେଟ ନ ପୁରେ···କଣ କହୁଚନ୍ତି ବାଞ୍ଛୁବାବୁ ?

ଆଉ କଣ, ମା'ଦେବଙ୍କୁ ମନ୍ଦରେ ଭଣ୍ଡେଇଲେ ହବ···

ଶେଷରେ ଅଗ୍ନି ଭଙ୍ଗ ଉଠିଲା । ଉଷୁମ ରକ୍ତ ଖାଇଲେ ଯେମିତି ଦୁଇଟା ମଣିଷଖିଆ ବାଘ । ବ୍ଲାକଆଉଟ ନିୟମ ଭଙ୍ଗ କରିଥିବାରୁ କାନ ମୋଡ଼ିକରି ଶାମ ସେନାପତିଠଉଁ ଗଣି ଆଣିବାକୁ ହେଲା ଦୁଇଶହ ଟଙ୍କା ।

ହୁଁ···ଶଳା କାଲିକାର ଲେଣ୍ଡି, ମତେ ପୁଣି ନିମନ୍ତ୍ରଣ ଖାଇବାକୁ ଡାକୁଚି··· ଡାକୁ ଥା···କୁଆଡ଼େ ଗଲୁ ରେ, ଆରେ ହାତବାକ୍ସ ଫିଟେଇଲ, ନଅ ଏଇ ଶଏଟା ଟଙ୍କା ରଖ···

ଅନେକ ଦିନୁ ଅଗ୍ରବର ମସ୍ତକ ଭକ୍ଷଣ କରିଥିଲେ ଘ୍ରମୁକରଣେ । କ୍ରମେ ଅଗ୍ରବର ଗୋରସ୍ଥାନ ଉପରେ ସେ ଗଢ଼ିବାକୁ ଲଗିଲେ ରଜତର କବର । ପନ୍ଦର ଟଙ୍କାର କର୍ମଗୃହୀ ଏହି ଉକାଗ୍ର ମହାତ୍ମାଙ୍କୁ ଲୋକେ ଅନୁକରଣ କରି ନ ପାରନ୍ତି, ତାହାଙ୍କର ଅର୍ଥାର୍ଜ୍ଜନର ପନ୍ଥାକୁ କେହି ଘୃଣା କରି ପାରନ୍ତି, କିନ୍ତୁ ତାଙ୍କର ଅର୍ଜ୍ଜିତ ଧନକୁ ଘୃଣା ବା ଅସମ୍ମାନ କରିବାର ସାହସ ଖୁବ୍ କମ ଲୋକଙ୍କର ଅଛି । ଅଶେଷ ଅପକର୍ମଦ୍ୱାରା ତାହାଙ୍କର ଉପାର୍ଜ୍ଜିତ ଧନ ହୁଏ'ତ ହରିଜନ ପାଣିରେ ଦିନେ ମୋଟା ଅଙ୍କ ବସେଇ ତାଙ୍କର ଯଶୋଗାନ କରିପାରେ ।

ଷ୍ଟ୍ରାଇକ୍ ହୁଏ ବର୍ଲ୍ଲ ମିଲ୍‌ରେ । ଅନେକ ମିଲ୍‌ରେ ହୁଏ ଷ୍ଟ୍ରାଇକ୍ । କିନ୍ତୁ ମୁଷ୍ଟିମେୟ ପୁଞ୍ଜିପତି ସ୍ୱରାଜ-ଯଜ୍ଞ ଜଳେଇବା ପାଇଁ ଢାଳନ୍ତି ଘୃତ । କିନ୍ତୁ ଥରେ ହେଲେ ଆମେ ଯଦି ଭାବିବୁ, ଏହି ବଦାନ୍ୟ ଶ୍ରେଷ୍ଠୀମାନେ ଦାନ କରନ୍ତି କେଉଁ ସ୍ୱରାଜ ପାଇଁ, ତାହାହେଲେ ସେହିମାନଙ୍କର ରକ୍ତାକ୍ତ ଦାନକୁ ପ୍ରତ୍ୟାହାର କରିବାକୁ ପଡ଼ିବ ସର୍ବାଦୌ । ତଥାପି ମଧ୍ୟ ତାହା କାର୍ଯ୍ୟରେ ଲଗେ; ତଥାପି ମଧ୍ୟ ସେହି ଦାନ ଆମକୁ ମୋହଗ୍ରସ୍ତ କରି ରଖେ—ଆମର ସଚେତନତା ଜାଗ୍ରତ ହୁଏ ନାହିଁ ତଥାପି ।···କିନ୍ତୁ ଘ୍ରମୁକରଣଙ୍କ ପାଇଁ ଏପରି ଚିନ୍ତା ଆମର ନିରର୍ଥକ । ସୌଭାଗ୍ୟକୁ, ବଦାନ୍ୟ ବ୍ୟକ୍ତି-ମାନଙ୍କର ତାଲିକାରେ ଏ ପର୍ଯ୍ୟନ୍ତ ତାଙ୍କର ନାମ ସେ ଯୋଗ କରି ନାହାନ୍ତି ।

ଘ୍ରମୁକରଣଙ୍କର ଆହ୍ୱାନ ପାଇ ଚାଲିଆସିଲେ ମାଳ ଦେଈ—ତାଙ୍କର ଦ୍ୱିତୀୟା ପତ୍ନୀ । ହାତରେ ତାଙ୍କର ଲଣ୍ଠନ, ତାଙ୍କର ଚରଣଛନ୍ଦରେ ଯେପରି ଦଳି ହୋଇଯାଉଛି ଆମର ସକଳ ଦାର୍ଶନିକତାର ଦୃଷ୍ଟିଭଙ୍ଗୀ । ଅନ୍ତରର ଆଲୋକ ତାଙ୍କର ଆତୁର ଦୀପ୍ତ—ସେଠି ଠୁଳ ହୋଇଛି ଅନ୍ଧକାରର ଅଶେଷ ପ୍ରଣତି ।

ଆରେ, କି ସୁନ୍ଦର ନୋଟ୍, ଅର୍ଶ ନୂଆ ! ସବୁଯାକ ଟଙ୍କିକିଆ—ସବୁଯାକ ସିଲେଇ ହୋଇଚି ଗୋଟା ତାରରେ···ଗୋଟା ବନ୍ଧି ତ !···

ମାଳ ଦେଈଙ୍କର ଅନ୍ତରରେ ଫୁଟିଉଠିଲା କେବଳ ଭାଷା···

ସୁନ୍ଦର ! ଅତି ସୁନ୍ଦର ତମେ ! କ'ଣ ପାଇଥାନ୍ତି ବା' ହୋଇଥିଲେ ମୁଁ ସେଇ ଓକିଲ ମୋହରିରକୁ ? କିଏ କହେ ତମେ ବୁଢ଼ା···ଓଃ, ଗୀତ ଗାଇ ଜାଣି ଥା'ନ୍ତି କି···ଆଜି ଖାଲି ଗୀତ ଗାଇ ଥା'ନ୍ତି ମୁଁ ବସି ବସି···ଦୁର୍ଗାଧର ବଙ୍ଗାଲୁଣୀ ଟୋକୀ ପିରି···

ବସ !

କବାଟ ଲଗେଇ ଦେଇ କହିଲେ ଘ୍ରମୁକରଣେ । ଥଣ୍ଡା ପବନ କି ପଶି ଆସୁଥାଏ ।

ମନେ ମନେ କହିଉଠିଲେ ମାଳ ଦେଈ··ତମେ ଏତେ ଡେରିରେ ପୁଣି କହୁଚ !

ତଳ ଖଞ୍ଜାରେ ଶୋଇ ପଡ଼ିଲେଣି ଅପା ସାହିର ମନୁଆ ମା'କୁ ଧରି । ତାଙ୍କର ଦେହରେ ହାତ ମାରି ଦେଉ ଦେଉ ଫେରି ଆସିଚନ୍ତି ମାଳ ଦେଈ । ନିଆଁ ଉହ୍ନେଇ କି ଥୋଇ ଦେଇ ଆସିଚନ୍ତି ପାଖରେ । ନ ଗଲେ ମଧ୍ୟ ଚଳେ । ପାଖ ଘରେ

ସୋଫାକ ସ୍ତନ୍ୟ ଦେଉଛନ୍ତ ବଡ଼ – ବମଳ ଦେଈ । ସେଇଠାରୁ ସେ ପାଟି କର କହ ଉଠିଲେ, ତାଙ୍କର ସ୍ୱରରେ ଯେପର ପ୍ରବୃତ୍ତିର ପୁନଃ ଜାଗ୍ରତ ଝଙ୍କାର···

ସେ ଟଙ୍କା ରଖି ଥବୁ ଲେ ମାଲ, ଝିଅର ଆମର ଇଆରିଂ କରିବା !

କର କର ହୋଇ ହସି ଉଠିଲେ ମାଳ ଦେଈ । ସେତେବେଳକୁ ସେ ଅନ୍ୟ ପୁରରେ । ଅନ୍ୟର ଅଶ୍ରୁ-ଝଲକରେ ସେତେବେଳକୁ ଗଢ଼ି ଉଠିଛୁ ତରୁଣୀ-ଘର୍ଣ୍ଣାର ଅନିନ୍ଦ୍ୟ କଳହାସ୍ୟ ।

ଅନ୍ତଥିମାନଙ୍କୁ ସିଗାରେଟ୍ ଦେଇ ମଧ୍ୟ ଚର୍ଚ୍ଚା କରଥିଲ ଶାମ ସେନାପତ । ଆହୁର ଅନେକ ସିଗାରେଟ୍ ସେଥିରୁ ବଳଚ । ଗୋଟିଏ ସିଗାରେଟ୍ ଟାଣି ତାହାର ଧୂଆଁ ଉଡ଼େଇ ଉଡ଼େଇ ସେ ଭାବୁଚ···କ ଦୁର୍ଯୋଗରେ ମୁଁ ଯାଇଥେଲ ଗ୍ରାମୁକରଣକୁ ନିମନ୍ତ୍ରଣ କର··· ବାଞ୍ଛୁ ପରଡ଼ା ପୁଣି ଥେଲ କୋଉଠି, କଣ ଆମର ବନ୍ଧୁବାନ୍ଧବ ପୁଣି ସିଏ ହବ···

## —ନଅ—

ନିଜକୁ କେଉଁ ପର୍ଯ୍ୟାୟଭୁକ୍ତ କର ଗ୍ଲଲଗଲ, ଜାଣି ପାରଲ ନ ଗୋକଳ ।

ଘରେ ପହଞ୍ଚି ତାହାର ପ୍ରଥମେ ଚେତନା ଆସିଲ ନିଜର ଅବସ୍ଥା ସମ୍ବନ୍ଧରେ —ହାତର ଠେଙ୍ଗା ଖଣ୍ଡକ ଛଡ଼ା ତା' ପାଖରେ ଆଉ କିଛୁ ନାହିଁ । ଏହି ଠେଙ୍ଗା ଖଣ୍ଡକୁ ପୁଣି ନିଜର କରିବା ହେବ ଅନୁଚିତ । ପିଆଦାଗିରି ସେ ଛାଡ଼ ଦେଇଛୁ । ସେ ପୁଣି ଧରିବ କାହିଁକି ଠେଙ୍ଗା ?

ହାଣ୍ଡି ଧୂଆ ଧୋଇ ସାର କଂସାରେ କଳା ପାଣିତକ ଘେନ ବାଡ଼ର ଲାଉ ମୂଳକୁ ଯାଉଁ ଯାଉଁ ଗୋକଳର ସ୍ତ୍ରୀ ଦେଖିଲ ସ୍ୱାମୀକ । ପୁରୁଣା କଲେଇ ବାସନର ସୁଷମା ଦେହରେ । କର୍ମ କଷଣରେ ଦେହରୁ ଛାଡ଼ ଗଲଣି ଅନେକଟା ପୁଟ । ଭଲ ଲୁହେଁ ବ ଦେହର କବଟା ଖଣ୍ଡକ । ବୋଧହୁଏ ଘର ସାର କର ଶାଶୁ ସାଇତ ଥିଲ ପୁରୁଣାକାଳଆ ଶାଢ଼ୀ—ଏହି ଯୁଦ୍ଧ ଗିରାନ୍‌ରେ ସେଇଥିରେ ଗୁଜରାଣ ମେଣ୍ଟେଇ ନିଅା ହେଉଛୁ ଯେମିତ ।

ଆଉ କିଏ କୁଣିଆ-ମଇନ ଆସିଲି ବୋଲି ଦେହରୁ ହଲକ ଶୁଖି ଆସୁଥିଲା ଗୃହଲକ୍ଷ୍ମୀର, ହଠାତ୍ ଆଖି ପଡ଼ିଗଲା ଠେଙ୍ଗା ଉପରେ, ଠେଙ୍ଗାକୁ କାନ୍ଧରେ ନ ପକେଇ ହାତରେ ଝୁଲେଇ ଧରିଥିଲା ଗୋକଳ, ଓଠରେ ଚୁପ ପକାଇ ଦେଇ କହିଉଠିଲା ତାହାର ସ୍ତ୍ରୀ...

ଥୁ-ଥୁ-ଥୁ-, ମଲି, ତମେ, ମୁଁ ଭାବିଲି ବକଲା ମାମୁଁ ଘରୁ କିଏ ଆଇଲାଣି ଆଜ...କଣ କରିବାକ ଗଲ ନେଇଁ କି ?

ଉତ୍ତରକୁ ଅପେକ୍ଷା କରିବାକୁ ପଡ଼େ ନା । ସେପରି ଶିଷ୍ଟାଚାର ମଧ୍ୟ ମାନିବାକୁ ହୁଏ ନା ଏଠି । କୌଣସି ଅଭିଯୋଗ ମଧ୍ୟ ନାହିଁ ସେଥିପାଇଁ । ଉତ୍ତର ନ ଦେବାର ସ୍ୱାଧୀନତା ଏଠାରେ ଅବ୍ୟାହତ ।

ଲାଉମନ୍ଦାରେ ହାଣ୍ଡିଧୂଆ ପାଣି ଢାଳୁ ଢାଳୁ ସ୍ତ୍ରୀର ପାଟି ଶୁଣିବାକୁ ପାଇଲା ପୁଣି ଗୋକଳ...ମଲି, ମଲି, ଏ ସବାଖାଈ ଗାଈଟା ତ ଅଦଉଡ଼ି କରି ଏ ନକମାରିଚ ଗଛଟାକୁ ଖାଇଲା..., ଭାର୍ ଭାର୍ ଭାର୍ । ହେଇ, ବାଡ଼ ପୁଳା ବି ଭାଙ୍ଗି ଦେଇ ଚାଲିଗଲା । ଆରେ ବାଇଆ, ତୁ ଗାଈ ରଖିଚୁ ନା ଚୋ ଗଣ୍ଡି ରଖିଚୁ...

ଦୂର ପଡ଼ିଆରେ ବାଇଆର ଚାମସା ଗୀତ ପବନରେ ମିଳେଇ ଯାଉଥାଏ କେବଳ । ସ୍ତ୍ରୀର ଏହି କଥାରେ ଯେପରି ଭସାଣିରେ ଚାଲିଗଲା ଗୋକଳମନର ଗୋଟି ଉଙ୍ଗା ଖଣ୍ଡିକ ଦେଢ଼ କୋଶ ବାଟ ତଳକୁ । ଆଖିରେ ଭାସି ଉଠିଲା ତା'ର ସେହି ବଳଦ ଯୋଡ଼ାକ, କଟଗି ଘରର ଓଲଟି ଛପର ।

କଣ ଖରାପ କରୁଥିଲେ ତା'ହେଲେ ଚୁମୁକରଣ ! ଠିକ୍ କାଞ୍ଜିଆବୁଦାରେ ଦବାର କଥା । ଏଇଖିଣି ସେଇ ଗୋରୁ ଯୋଡ଼ାକ ସେଇଠି ଥେବେ...

ପୁଣି ହସିଉଠିଲା ପରକ୍ଷଣରେ ଗୋକଳ । ବାହାଃ୍ଯୋତ୍, ମତେ କହିବ ନମକହରାମ୍ ।

ପାଟିରୁ ସ୍ପଷ୍ଟ ଭାବରେ ଉଚାରିତ ଏହି କଥା—ଜଙ୍ଗମ ହୋଇ ଉଠିଲା ଅଗଣାର ପବନ ଭିତରେ ତାହାର ସ୍ମୃତି ।

କଣ କା' ସାଙ୍ଗରେ କଜିଆ ନଗେଇ ଆଇଚ କି...ଏମିତି ଥକା ମାରି ବଇଚ କାହିଁକି ?—କଣ କରିଚ ସେ ନକମାରିଚ ଗଛଟାକୁ, ଗଲ ଦେଖିବ !

କହି କହି ବେଷେଇ ଘରକୁ ଚାଲିଗଲା ବକଲ ବୋଉ—ଗୋକଳର ସ୍ତ୍ରୀ । ଦେଇ ପିଣ୍ଡିର ମଲା ଉପରେ ହାଣ୍ଡି କୁଣ୍ଡେଇ ସଜାଡ଼ ସୁଜୁଡ଼ି ରଖି ହାଣ୍ଡିଶାଳର ଜଞ୍ଜିର ଦେଇ ସେ ବାହାରି ପଡ଼ିଲା ଦୁଆରକୁ ।

ନୂଆ କଥା ନୁହେଁ ଏଇଟା । ଚୁକରି ଜଗି ପରସାଙ୍ଗରେ କେତେ ହୁଜତ୍ ଲଗେଇ ଗେରସ୍ତ ତା'ର ଆସି ଏହିଠାରେ ବସିଚ କେତେଥର ।

ବୟସ ତିରିଶ । ତେରରେ ବିଭା ହୋଇଥିଲା ଗୋକଳ ।...କାନରେ ସୁନା ଚୌକି ଦି ପଟ, ନାକରେ ଗୋଟି ଦଣ୍ଡିଟା, ମୁଣ୍ଡର ତେଲ ଚକଣା ମାଙ୍ଗ ସୁନ୍ଦର କରିଛି ମୁହଁକୁ । ହାତରେ ରୂପା ଖାସିଆ ଆଉ କାଚ । ଗୋଡ଼ରେ ଆଳୁ ଉଙ୍କିଆ । ଚାଲିରେ ଶଙ୍ଖ ତୋଳି ବକଲ ବୋଉ ଚାଲିଗଲା ଶୋଇବାଘରକୁ । ମୁଠ ଦାନ ଆଣି ଜେମା-

ଦେଈପୁର ମହାପାତ୍ର ଘରୁ ଗାଁର ଦୀନବନ୍ଧୁ ପଣ୍ଡା ପାଇଥିଲା ଆମ୍ବକାଠର ତକ୍ତପୋଷ । ସେହି ଖଣ୍ଡକ ଖଟ ରୂପରେ ବ୍ୟବହାର କରିବାକୁ ଗୋକଳ କିଣିଥିଲା ତିନି ବର୍ଷ ତଳେ, ଟଙ୍କାକରେ । ଘରର ଗୋଟିଏ ପାଖକୁ ସେହି ଖଟ । କୁଣ୍ଡା ପଥରର ନାଳିଡଗିରି ଜଳଯନ୍ତ୍ର ଖଟର ଚାରି ଖୁରାରେ । ଆଗ ଖୁରାରେ ପାନ ଭାଙ୍ଗିବା ବେଳର ଚୂନ ହାତ ପୋଛାର ଦାଗ ।

ଖଟତଳୁ ପାନ ଡାଲାଟା ଟାଣିଆଣି କବାଟକୁ ଆଉଜି ବସି ପାନ ଭାଙ୍ଗି ବସିଲା ବକଳ ବୋଉ । ଗୁଆ ଭାଙ୍ଗୁ ଭାଙ୍ଗୁ ସେ କହିଲା···ଗୁଆ ଗୁଣ୍ଡି ଦି ପଇସାରେ ଆଣିଲ ନେଇ ବାଟରୁ···

ହୁଁ···

ସମ୍ପୂର୍ଣ୍ଣ ଗମ୍ଭୀର । ଠିକ୍ ଏତିକବେଳେ ଯୁକ୍ତକାଲପରାଟିସ୍‌ର ଗନ୍ଧରେ ମୋହିତ ହେଉଛନ୍ତି ଗ୍ରାମୁକରଣେ ନାନ୍‌କାର ନଈକୂଳେ । ଗୋକଳ ସେତିକବେଳେ ଭାବିଲା, ପାନ ଖାଇବା ସେତିକ ।

ଏହାର ଅବ୍ୟବହିତ ପରେ ଗୋକଳ ଭାବିଲା, ସେ ତ ପାଞ୍ଚ ଟଙ୍କାର ଚାକିରି କରି ନ ଥିଲା···ଗ୍ରାମୁକରଣଙ୍କ ଠାରୁ ସେ ଗୁଣନ ବିଦ୍ୟା ବି ଶିଖିଥିଲା । ସେଥିପାଇଁ ସେ ଆବଶ୍ୟକତା ଅନୁଯାୟୀ ପାଞ୍ଚରେ ତିନି ଗୁଣି ପାରୁଥିଲା ଅବଲୀଳାକ୍ରମେ ।

ହାତରେ ପାନ ଖିଲ ଖଣ୍ଡେ ଗୁଞ୍ଜିଦେଇ ବକଳ ବୋଉ କହିଲା···ଦେଖିଲ, ସରକାରୀ ନୂଆ ଖଣ୍ଡେ ଆଣିଚି ପାଟ ମା, ତମକୁ ଦେଖେଇବା ପାଇଁ ମୁଁ ତା ଠାଉଁ ରଖିଥେଲି । ଏମିତିକା ଖଣ୍ଡେ ଆଉ ପାଳ ହାଟରୁ ଆଣିବ···

ସତେ ତ !

ଗୋକଳର ମନେ ପଡ଼ିଲା, ଆଉ ପାଞ୍ଚ ଦିନ ବାଦ୍ ମାସ ପୂରିଲେ ହାଟରୁ ଷ୍ଟାଣ୍ଡାର୍ଡ଼ ଲୁଗା ଆଣିବାର ଠିକ୍ ହେଇଥିଲା ।

ଆଉ ପାଞ୍ଚ ଦିନ ସେ ସତାରି ପାରିଲା ନେଇ !

କୃତ୍ରିମତାର ଘନ ଆବରଣ ବ୍ରହ୍ମଦୈତ୍ୟ ଭଳି ମାଡ଼ି ବସିଥିଲା ଗୋକଳଙ୍କ ଅନେକ ବେଳ ହେଲା । ତାହା ଉପରେ ପ୍ରଥମ ଆଘାତ ଦେଇ ଗୋକଳ ଭାବିଲା, ବକଳ ବୋଉକୁ ନୁଚେଇ ଏବେ ଲାଭ କଣ ? କୋଉ କଥା ତାକୁ ଏବେ ମୁଁ ନୁଚେଇଚି ! ସାହସ ବାନ୍ଧି ସେ କହିଲା—ମୁଁ ଚାକିରି ଛାଡ଼ିଦେଇଚି ବକଳ ବୋଉ···

କହି ଦେଇ ପାଖରେ ଠେଙ୍ଗାଟାକୁ ଆଣି ତଳେ ଠୁକେଇବାକୁ ଲାଗିଲା ଗୋକଳ । ଯେମିତି ଛେଚି ପକଉଚି ତାହାର ଅସୁସ୍ଥ କୃତ୍ରିମ ମନକୁ ।

ବକଳ ବୋଉ କିଛି ଭାବି ପାରିଲା ନାହିଁ ହଠାତ୍ । ଯେମିତି ସେ କିଛି ଶୁଣି ପାରି ନାହିଁ ଜମା । ଅଥବା କିଏ କୋଉଠି ପ୍ରଳାପ କରୁଚି ।

ମୁଁ କଚେରି କାମ ଛାଡ଼ିଦେଇଚି—

ବକଳ ବୋଉ ସ୍ୱାମୀର ମୁହଁ ଉପରେ ଦୃଷ୍ଟି ରଖି ଭାବିଲା, ତା'ହେଲେ ଆଉ କିଛି କାମ ପାଇଛ ବୋଲି ସେ ପଚାରନ୍ତା । କିନ୍ତୁ ଭରସା ପାଇଲା ନାଇ ସେ ସେଥିପାଇଁ । ବର୍ଷୁକ ମେଘକୁ କେହି କଣ ସୂର୍ଯ୍ୟାଲୋକର ବାର୍ତ୍ତା ମାଗିପାରେ !

ପିଣ୍ଡାର କାନ୍ଥକୁ ଆଉଜି ବସିଥିଲା ଗୋକୁଳ । ପାଖରେ ବକୁଳ ବୋଉ—ଷ୍ଟାଣ୍ଡର୍ଡ୍ ଲୁଗା ହାତରେ । ବକୁଳ ବୋଉର ମୁହଁକୁ ଚାହିଁଲା ଗୋକୁଳ ।···ତମେ କାହିଁକି ଗରିବର ସ୍ତ୍ରୀ ହେଲ ବକୁଳ ବୋଉ ! କିନ୍ତୁ ମୁହଁ ଖୋଲି ସେ କିଛି କହିପାରିଲା ନାହିଁ । କେବଳ ଲୁଗା ଖଣ୍ଡିକ ହାତକୁ ନେଇ ଆସିଲା ଗୋକୁଳ ।

ହଁ, ଏମିତି ବେଢ଼ାଣ ଖଣ୍ଡେ ତମକୁ ମୁଁ ଆଣିଦେବି ।

ଏଁ, ଏହି ଘଣ୍ଟାକ ଭିତରେ ସେ କଣ ଏଡ଼େ କର୍ତ୍ତବ୍ୟହୀନ ହୋଇ ପଡ଼ିଲା ! ତାହାପରେ ସେ ଶୁଣିଲା ତାହାର ସ୍ତ୍ରୀର କଥା···

ତା'ହେଲେ ତମର ଦରମା ପଇସା ସବୁ ହିସାବ କରି ଆଣିଚ ?

ସଂପୂର୍ଣ୍ଣ ଗୋଟାଏ ନୂତନ ଦାଗ । ଏ କଥା ତ ଜମା ମନେ ନାହିଁ ଗୋକୁଳର । ପଚିଶ ଦିନର ଦରମା ତ ତାହାର ହକ୍···ସେ ଆଉ କିଛି ଭାବିପାରିଲା ନାହିଁ । ସେ କେମିତି ପୁଣି ଯିବ ଗ୍ରାମୁକରଣ ପାଖକୁ ! ପୁଣି ଯିଏ ଜମିଦାରୀର କଡ଼ାଗଣ୍ଡା ବୁଲି ଆଦାୟ କରୁଥିଲା, ଶେଷରେ ତାହାରି ଟଙ୍କା ଆଦାୟ କରି ପାରିବ ନାହିଁ ସେ ?

କିଛି ଭାବିପାରିଲା ନାହିଁ ପ୍ରକୃତରେ ଗୋକୁଳ ।

ଅନେକ ବେଳ ପରେ ଗୋକୁଳର ମନେପଡ଼ିଲା ଅନେକ ଦିନ ତଳର କଥା । କେବଳ ତାହାର ମା' ଥିଲା ସେତେବେଳେ । ବାପ ତାହାର କେଉଁ ଅଜ୍ଞାତ କୋଳରେ ଜୀବିତ ଥିଲା ତାହା ତା'ର ମନେ ହୁଏ ନା ଆଦୌ । କେତେ ଦୁଃଖରେ ମା ତା'ର ତାକୁ ମଣିଷ କରିଥିଲା···। ହଁ, ସେତେବେଳକୁ କିଛି ଜମି ମଧ୍ୟ ଥିଲା ତାଙ୍କର··· ପରର ଗୃହଲକ୍ଷ୍ମୀର ଆବାହନ ଲାଗି—ସେହି ସମ୍ପତ୍ତିତକ ଉତ୍ସର୍ଗ ଦେବାକୁ ହୋଇଥିଲା । ହୁଁ, ବିଭା ନ ହୋଇଥାନ୍ତି ପଛେ, ସେହି ଜମିତକ ହେଲେ ଥାଆନ୍ତା, ପରଘରେ ମୁଣ୍ଡ ଢ଼ିକିବାକୁ ଆଜି ଯାଇଥାନ୍ତା କିଏ ? ବିଦା—ବଇଦା ବି ଆଜି ଜମି ଚଷି ହାତ ତେଲିଆ କଲେଣି । କଣ ଉପକାର କଲା ସେଇ ବା'ଘର ! ପୁଅ ମାଇପକୁ ମୁଁ କି ସୁଖରେ ରଖିପାରିଲି ! ବା'ଘର ମୋର ଜେଲ ହେଲା ବୋଲି ମା' ପୁଣି କେତେ ଦୁଃଖ କରୁଥାଏ ···କାନ୍ଦ ବି ପକଉଥାଏ ବେଳେ ବେଳେ···ଏଇ ଦୁଆରେ, ଗାଁ ଦାଦା ଆଣି ବାଉଁଶପତରର ଭତ୍ତିକରି ଗୋଟା ଖଣି ପକେଇ ଦେଲେ । ତାଙ୍କ ଘରୁ ଓଳିଆ ନେଇ ଆସି ବି ଆମ ପିଣ୍ଡାରେ ଥୋଇ ଦେଲେ ଗୁରିଟା···କଂସା ବାସନ, ଲୁଗା ପଟା ବି ଆଣି ଥୋଇ ଦେଲେ ଆମ ଘରେ । ତାହାପରେ ବା'ଘରର ବର୍ଷକ ପରେ ମା' ମଲା··· ତା'ପରେ ଗାଁ ଦାଦା ଆସି ପହଞ୍ଚିଲେ, ପାଟିରେ ତାଙ୍କର ଆଶ୍ୱାସନା—ହାତରେ ସାହାଯ୍ୟ; ଗାଁ ଦାଦା, ତମେ ମରିଗଲ ଫେରେ କାହିଁକି ?···ତାହା ପରେ ଦୁଇଟି ପିଲା ମଲେ,—ଲୋକେ କହିଲେ ପର ଉପରେ ଅତ୍ୟାଚାର କରୁଚ ବୋଲି ପିଲା ମୋର ରହୁନାହାନ୍ତି···ତଥାପି ମଧ୍ୟ ମୁଁ ସେହି କାମକୁ ଛାଡ଼ିଦେଇ ନେଇଁ···ଆଜି ବି ସେଇ କାମ ପ୍ରତି ମୋର ମାୟା···

ହାତର ଠେଙ୍ଗାଟା ଗୁଁ ଠୁକି ହୋଇଗଲା ତଳେ । ଉଠିପଡ଼ି ସେ କାହାରିଗଲା—ବାଡ଼ିକି । ଏଡ଼େ ଶ୍ରେଷ୍ଠ ବାରିଟା ଆମର ! ସେଠି ରଘୁ ସିଂହର ମାଣେ ବାରି ପଡ଼ିଆ ପଡ଼ିଚି···ଶାଗ ପଟାଳି କରିବାକୁ ବି ଆମର ଗୁଣ୍ଡେ ବାରି ନାହିଁ !

ବକଳ ବୋଉ ସେହିପରି ଅନେଇଥାଏ ସ୍ୱାମୀକି । ମନରେ ମଧ୍ୟ ତାହାର ଅଗଣିତ ଦିନର କଥା । ପଶୁଗୋଷ୍ଠୀକର ବଳ ତା'ର ସ୍ୱାମୀର । ଦଖିଣ୍ତରଙ୍କ ଘୋଡ଼ା ଅଟକେଇ ଦେଇଥିଲା ତା'ର ସ୍ୱାମୀ । ସେଇଥିରେ ଖୁସି ହୋଇ ଦଖିଣ୍ତରା ତାକୁ ଦେଲେ ଚାକିରି । ସେହି ସ୍ୱାମୀ ତାହାର ଆଗରେ···ସିଏ ଖାଲି ବାହା କୁମ୍ଭଡ଼ ହୋଇ ମରିବ !

ବାଡ଼ିରେ ବୁଲୁ ବୁଲୁ ଗୋକଳ ଯେମିତି କିଛି ବୁଦ୍ଧି ପାଇଲା, ତାହା ପରେ ପରିସ୍ଥିତିକୁ କୋହଳ କରିଦେବା ପାଇଁ ସେ ଆସି—କହିଲା···ସତେ ତ, ନକମାରିଚ ଗଛଟା ବିଲକୁଲ ଖାଇ ଦେଇଚ । ···ହଁ ବକଳ ବୋଉ, ମୁଁ କାଲି କଟକ ଯିବି, ସବୁ ପଇସା ମୋର ହିସାବ କରି ଆଣିବି ।

ତାହାପରେ ପୁଣି ସେ ବାଡ଼କୁ ଯାଇ ବାଡ଼ଧିଅରୁ କଣ୍ଟା କେଇ ଡାଳ ଆଣି ଲଙ୍କାମରିଚ ଗଛରେ ଘେରେଇ ଦେଲା ।

ବକଳ ବୋଉର ମନ ହେଉଥାଏ, ସେ କୁହନ୍ତା, ଧାନ କଟା ସାରି ସମସ୍ତେ କଲିକତା ଯାଉଚନ୍ତି···ନା ନା···ନଡ଼େଇ ଗୋଲ···ନା ନା···ପୀଡ଼ା ଓଷଦ ପରି କଥା ତକ ପୋଛି ପକେଇଲା ସେ ଜିଭରୁ ।

ଏହା ପରେ ଗୋକଳ ଆସି ଅଗଣାରେ ବୁଲୁ ବୁଲୁ ପୁଣି କହିଲା···ମୁଁ କାଲି ଚାକିରି ଖଣ୍ଡେ ବି ଠିକ୍ କରି ଆସିବି, ନ ହେଲେ ମଜୁରି ଖଟି ମୁଁ ତମକୁ ପୋଷିବି···ପେଟ ପୋଷ୍, ନାହିଁ ଦୋଷ । ତମେ କିଛି ଭାବନା କର ନା ବକଳ ବୋଉ ! ···ବକଳର ଚାହାଳୀ କଣ ଏତେବେଳ ଯାଏ ଛୁଟି ହୋଇ ନେଇ ?···ମୁଁ ଯାଏ ବାବୁଘର ପେଇଁ ମାଛ ଦିଟା ଯୋଗାଡ଼ କରେ ନାବନାକୁ କହି···

ସ୍ୱାମୀ ଚାଲିଯିବା ପରେ ଷ୍ଟାଣ୍ଡାର୍ଡ୍ ଲୁଗା ଖଣ୍ଡକୁ ଅନେଇ ରହିଲା ବକଳ ବୋଉ ।

ନାଁ, ଲୁଗା ମୋର ଦରକାର ନାହିଁ···ମୁଁ କୋଉ ସଭାକୁ ଯାଉଚି ନା କଣ···

ତାହା ପରେ ଦାଣ୍ଡଦୁଆରକୁ ଯାଇ ପୁଅ ଉଦ୍ଦେଶ୍ୟରେ ଅନେଇ ରହିଲା ସେ ବାଟକୁ । ଯେମିତି ସତେ ଗୋଟା ଅଶୁଭ ଦିନ ଆଜି ।

—ଦଶ—

ତହିଁଆରଦିନ ସକାଳ ।

ସେତେବେଳକୁ ଭାସ୍କର ନାୟକ ଦାନ୍ତ ଘଷୁଥାନ୍ତି ବସି ବରଣ୍ଡାରେ । ଏହି

ସମୟରେ ଦାଣ୍ଡରେ ପହଞ୍ଚିଲା ଗୋକଳ—ପାଦରେ ତା'ର ପାଣ୍ଡୋଇ ପିନ୍ଧେଇ ଦେଇଛି କୋଳଥ କିଆରିର ଧୂଳି । ଦୂରରୁ ପାଟିକରି କହିଉଠିଲେ ଭାସ୍କର ବାବୁ...

ଆସ-ଆସ-ଆସ, ତମେ ତ ଆମକୁ ଘିଚ ମାଛ ଖୋଇଲ ହୋ ଗୋକଳ !

ମାଛ ପୁଟୁଳାଟା ବରଣ୍ଡାର ଖୁଣ୍ଟକୁ ଡେରି ଥୋଇ ଦେଇ ଗୋଟିଏ ନମସ୍କାର କଲା ଗୋକଳ । ତାହାପରେ ଘର ଭିତରେ ମାଛ ଦେଇ ପୁଣି ଆସି ସେଠି ପହଞ୍ଚିଲା ।

ଚେହେରାରେ ଆଭିଜାତ୍ୟ । ବୟସ ପଇଁତିରିଶ ହେବ ଭାସ୍କରବାବୁଙ୍କୁ । ଶ୍ୟାମଳ ଦେହରେ ଖଣ୍ଡେ ସୁଶୁଭ୍ର ସାଣ୍ଡୋ ବେନିଆନ୍ । ନୀଳବର୍ଣ୍ଣର ଲୁଙ୍ଗି ଖଣ୍ଡେ ପରିଧେୟ । ପାଦରେ ଜାପାନୀ ଘାସର ଚଟି । ଯୁଦ୍ଧର ବହୁ ଆଗରୁ ତିନି ଯୋଡ଼ା କିଣି ରଖିଛନ୍ତି ସେ ।

ପ୍ରବେଶିକାରେ ମଧ୍ୟମ ଶ୍ରେଣୀରେ ପାଶ୍ କରିଥିଲେ ସେ ପିଲାଦିନେ । ଏବେ ବି ମଧ୍ୟମ ଶ୍ରେଣୀରେ ରହନ୍ତି ବରାବର । କ୍ୱଚିତ୍, ସେହିପରି ଆବଶ୍ୟକ ପଡ଼ିଲେ ଯାଆନ୍ତି ସେ ଆଗକୁ । ତେଣୁ ଅଧିକାଂଶ ସମୟରେ ସେ ମଧ୍ୟାହ୍ନ ଭାସ୍କର । ସେଥିପାଇଁ ସମସ୍ତଙ୍କ ଉପରେ ପଡ଼େ ତେଜ । ତେଜ ପ୍ରଖର ।

ଅନେକ ଉପକଥା, କାହାଣୀ ଏବଂ କିମ୍ବଦନ୍ତୀ ପ୍ରଚଳିତ ଅଛି ଏହି ନାୟକ ବଂଶ ନାମରେ ଏହି ଅଞ୍ଚଳରେ । ଅନେକେ କହନ୍ତି, ଭାସ୍କରଙ୍କ ଜେଜେବାପ ଶ୍ରୀପତି ନାୟକ କାଳେ ଜଣେ ରାଣୀଙ୍କ ସହିତ ଧର୍ମପୁଅ ବସି ନିଜର ଭାଗ୍ୟୋଦୟ କରି ପାରିଥିଲେ । କାଳେ ସେହି ରାଣୀଙ୍କଠାରୁ ହୀରା ନୀଳାର ଗୋଟିଏ ଯଷ୍ଟି ପାଇଥିଲେ ସେ ଉପହାର । ଆଉ ଅନେକେ କହନ୍ତି, ଶ୍ରୀପତି ନାୟକେ ପାଇଥିଲେ ଯଖ,—ଶ୍ରୀପତିଙ୍କର ସ୍ତ୍ରୀ ଧାନ ଉଁଷାଉ ଥିଲେ ବାଡ଼ିରେ, ହାଲୋଡ଼ ହୋଇଗଲା ବାରି, ଝୁମ୍ ଝୁମ୍ କରି ଆସିଲା ଯଖ, ପଣତ ପାରି ଦେଇ ଯୋଡ଼ ହାତ ହୋଇ ଲମ୍ବ କରି ପଡ଼ିଗଲେ ଶ୍ରୀପତିଙ୍କର ସ୍ତ୍ରୀ । ଖାଲି ଖଣ୍ଡ ଅଗ୍ରିମି ଝାଡ଼ ଦେଇଗଲା ଯଖ । ଯୋଗକୁ ଯଖକୁ ମାରି ନାହାନ୍ତି—ନ ହେଲେ କଣ ବଂଶ ରହିଥାନ୍ତା ସ୍ତ୍ରୀଙ୍କର ।

ସ୍ଥୂଳତଃ, ଶ୍ରୀପତି ଥିଲେ ଉଦ୍‌ଯୋଗୀ ଏବଂ ସେ କିଛି ପଇସା କମେଇ ଥିଲେ, ଏ କଥା ସତ୍ୟ । ବର୍ତ୍ତମାନ ଯେଉଁ କୋଠା ଖଣ୍ଡିକ ଭାସ୍କର ନାୟକଙ୍କ କୋଠା ପଛକୁ ଏକ ଧାନ ଅମ୍ବାରରେ ପରିଣତ ହୋଇଛି, ସେଇ ଖଣ୍ଡିକ—ତାହାକୁ ତିଆରି କରିଥିଲେ ନିଜ ହାତରେ ଶ୍ରୀପତି ନାୟକେ । ଇଟା ବି ଗଢ଼ିଥିଲେ ସେ । ତାଙ୍କର ସ୍ତ୍ରୀ କୁଟିଥିଲେ ଚୂନ । କୋଠାଘରେ ରହିବାର କି ପ୍ରବଳ ଆକାଂକ୍ଷା । ତାହା ପରେ ସେ କୌଣସି ଷ୍ଟେଟ୍‌ର ହୋଇଥିଲେ ଦଣ୍ଡୀଦାର । ସୁତରାଂ କଠିନ ଅଧ୍ୟବସାୟ ଯେଉଁ ସେ କାର୍ଯ୍ୟ କରିଥିବେ, ଉତ୍ତର ଜୀବନରେ ସେ ତ ଧନୀ ହୋଇ ପାରିବେ ନିଶ୍ଚୟ, ଆଉ ଶ୍ରମକାତର ଲୋକେ ନିଶ୍ଚୟ ଭୌତିକ କଳ୍ପନା କିଛି ଆରୋପ କରିବେ ସେଇଠି ।

ଭିନ୍ନ କିନ୍ତୁ ଅଭିରାମଙ୍କ ବିଷୟ । ତାହାଙ୍କ ବିଷୟରେ କିମ୍ବଦନ୍ତୀ ସ୍ୱତନ୍ତ୍ର—ଧନ ଯେଉଁ ନୁହେଁ, ବିଦ୍ୟା ଏବଂ ବୁଦ୍ଧି ଯେଉଁ । ଭାସ୍କରଙ୍କ ବାପାଙ୍କ ନାଁ ଅଭିରାମ । ପାଠ ପଢ଼ିଥିଲେ ସେ, ବିଶେଷ ଭାବରେ ପଢ଼ିଥିଲେ ସେ ସଂସ୍କୃତ । ଆଉ ବିଶେଷ କଥା, ପାଠ ପଢ଼ି ସେ ମଧୁବାବୁଙ୍କ ସଙ୍ଗରେ ଲଢ଼ିଥିଲେ । ସାର୍ଥକ ଯେପରି ହୋଇଥିଲା ତାଙ୍କର ପାଠ । ଏହା ହିଁ ଏ ଗ୍ରାମର ପ୍ରଚଳିତ ପ୍ରଧାନ କିମ୍ବଦନ୍ତୀ ।

ଦୋପଟି ଥିଲେ କାଳେ ଅଭିରାମ । ଗ୍ୟ'ଭେଜାଙ୍କ ଥରେ ତାଙ୍କୁ ଡାକଥିଲେ କାଳେ ମଧୁବାବୁ ବାରିଷ୍ଟର୍ । ଆସିଥିଲେ ସେଠିକି ଅନେକ ଲୋକ—ଅନେକ କିସମର ବଡ଼ । ସେଇଠି କାଳେ କଥା କହୁଁ କହୁଁ ମଧୁବାବୁ କହିଲେ—ଏ ଦେଶର ଲୋକେ ଏମିତି ଯେ ଡରି ହେମାଳି ହେଇଯା'ନ୍ତି ସାହେବଙ୍କୁ ଦେଖି । ଏଇଠି ଅଭିରାମ କହିଲେ ···ଆଜ୍ଞା, ସାହେବ ତ ସାହେବ, ତାଙ୍କ ପୋଷାକ ଯିଏ ପିନ୍ଧୁଚି, ତାକୁ ଦେଖି ଲୋକେ ବି ଲୁଗା ମାରି କରି ଦଉଡନ୍ତି··· ।···ବାଧିଲା ଏଇଠି ବଡ଼, କାରଣ ଦାସେ ହିଁ ପ୍ରଭୁ 'ପୋଷାକ ପିନ୍ଧୁଥିଲେ ବେଶି । ରାଗି ଯାଇ କହିଲେ ମିଷ୍ଟର ଦାସ୍···ହଁ, ସେଇଟା ଖଣ୍ଡେଇତଙ୍କ ପଇତା ଭଳି । ତାହା ପରେ କ୍ଷିପ୍ର ଭାବରେ ଉତ୍ତର ଦେଇଥିଲେ କାଳେ ଅଭିରାମ···କିନ୍ତୁ ସେଇଟା ତାଙ୍କର ମୌରସୀ । ତାହା ପରେ ଭୋଜି ସମୟକୁ ଆଉ ଅଭିରାମଙ୍କୁ ପାଇଲେ ନାହିଁ ମଧୁବାବୁ ଏବଂ—ତାହାଦ୍ୱାରା ନିଜକୁ ଯଥେଷ୍ଟ ଅପମାନିତ ମନେକରିଥିଲେ କାଳେ ।

ବିଶେଷ କଥା, ମଧୁବାବୁ ଜାତ୍ୟନ୍ତରି ଏବଂ ପରେ ଧର୍ମାନ୍ତରି ହେବାଦ୍ୱାରା ହିଁ ତାଙ୍କ ପ୍ରତି ବିଦ୍ୱେଷଭାବାପନ୍ନ ଥିଲେ ଅଭିରାମ ଏବଂ କଳାପାହାଡ଼ ପରି ତାଙ୍କର ଏହି ମୂଳୋଚ୍ଛେଦକାରୀ ପ୍ରବୃତ୍ତିର ପ୍ରତିକ୍ରିୟାଶୀଳ ଭାବରେ ସୁଯୋଗ ଗ୍ରହଣ କରିଥିଲେ ଅଭିରାମ ।

କିନ୍ତୁ ମଧୁବାବୁ ବାରିଷ୍ଟର ନ ଥିଲେ କି ଦୋପଟି ନ ଥିଲେ ଅଭିରାମ । ବାପ ଧନରେ ମଉଜ୍ କରି ସେ ଥିଲେ ଜଣେ ବିଲ୍‌ଖୁସ୍ କଟକପ୍ରବାସୀ । କହିବାକୁ ଗଲେ ସେ ଥିଲେ ବଙ୍ଗଳାର ବିଲାତବାସୀ ଲୋକୋନ୍ ପୋଲିଟ୍ । ଚଟ୍ଟୋପାଧ୍ୟାୟଙ୍କୁ ଚାଟାର୍ଜୀ ଲେଖୁଥିଲେ ଯେପରି ଚିଡ଼ୁଥିଲେ ସରୋଜିନୀ ନାଇଡୁଙ୍କ ପିତା, ନାୟକଙ୍କୁ କେହି ନାଏକ ଲେଖିଲେ ସେ ରାଗୁଥିଲେ ତଦ୍ରୂପ ।

ଧୋଇଆ ଅଞ୍ଚଳ ଏହି ଆନ୍‌କା । ସେଥିପାଇଁ ଏହାର କେତେକ ବସ୍ତି ଏପରି ଉଚ୍ଚଭୂମି ଉପରେ ଅବସ୍ଥିତ ଯେ, ପାଖ ଆଖରେ ଏହାକୁ ଆନ୍‌କା ଡିଅ କିମ୍ବା ଆନ୍‌କା ଡି' ବୋଲି କହନ୍ତି ।

•

ଦାଣ୍ଡରେ କ୍ଷୀର୍ଯକ ଗନ୍ଧ ପ୍ରସାର କରୁଛି ମାର୍ଗଶୀର ମାସର ଖରା । ଗୋଧା କଅଁଳା ବାଛୁରୀ ଡେଇଁ ଡେଇଁ ଛୁଟାଛୁଟି କରୁଛି ସେହି ଖରାରେ । ପିଣ୍ଡା ତଳର ଟୋପ ଗଛ ଉପରେ କେତେଟା ପ୍ରଜାପତି ଘୂରି ଘୂରି ଦୂରକୁ ଚାଲିଗଲେ । ଉଚ୍ଚ ପିଣ୍ଡା । ତଥାପି ପିଣ୍ଡା ଉପରକୁ ହାତ ପାଇଛି ଟୋପନଗଛର । ହରିରଙ୍ଗୀ ପତର, ତା ଦେହରେ ଲାଗୁଚି ସକାଳର ଆଲୋକ ।

ଦୂରରେ କାପତରକା ଗଛରେ ମଧୁ-ମାଳତୀର କ୍ରୀଡ଼ା । ସେହି କୁସୁମବତୀ ଲତାର ଶିରି ଶିରିକେ ବ୍ରୀଡ଼ା । ଶିରି ଶିରିକେ ଯୌବନର ଉନ୍ମୁଖତା ।

ସେହିପରି ଅବିକଳ ଗୋକୁଳର ମନ । ଯୁଗପତ୍ ସାହସ ଓ ସଙ୍କୋଚ । ସଙ୍କୋଚ ଓ ସାହସ ସମତାଳରେ କରୁଛି ଛଉନାଚ ।

ବସୁନା ଗୋକଳ, ବସ, ଠିଆହୋଇ ରହିଲ କାହିଁକି ? ହଁ, କେତେ ଦାମ୍ ସେ ମାଛର ?

ଆରେ, ବଡ଼ ଅଡୁଆରେ ପଡ଼ିଲା ତ ମଣିଷ ! ହାତ ମଲ ସାରିଲାଣି ଗୋକଳ । ତା' ଆଡ଼କୁ ବାବୁଙ୍କର ଦୃଷ୍ଟି ନାହିଁ—ବାବୁଙ୍କର ପ୍ରାୟ ପଛରେ ସିଏ । ମୁହଁରେ ତା'ର ଫୁଟି ଉଠୁଛି ରଙ୍ଗିମା ।

ନୀରବ । କଣ କହିବ ସେ ବାବୁଙ୍କୁ ? ହଁ, କହିବ···କିନ୍ତୁ ମାଛର ଦାମ୍ ନୁହେଁ ।

କହୋ କହୁନା···

ଚମକି ଉଠିଲା ଗୋକଳ । ବକଲବୋଉ ପାଟି ! ବକଲବୋଉର ମୁହଁ—ଯାହା ପାଖରେ—ସେ କେତେ ବାହୁସ୍ଫୋଟ ମାରି କଥା କହିଛି ରାତିରେ ।

ହଁ, ମୁଁ କହିବ ଯେ···ନିଶ୍ଚେ ଗୁଳବୀ ଯୋଗାଡ଼ କରିବ ଆଜ । ବେଢାର ଯୋଗେ ଉତ୍ତର ଦେଲା ଯେମିତି ଗୋକଳ ।

ତଥାପି ଗୋକଳ କଥା ସାଉଁଟିଲା । କ'ଣ କହିବ ସେ ଆଗେ । ଏହି ତା'ର ପ୍ରଥମ···କାହାକୁ ଖୋସାମତ କରିଯିବା ଗୋକଳର ଏହି ପ୍ରଥମ । ଗୋକଳ ଶୁଣି ଶୁଣିଲା···

ଖୁବ୍ ସକାଳୁ ତ ଆଜ କଚେରୀକି ଆଇଚ ଗୋକଳ, କ'ଣ ଆଜ ମହନ୍ତ ଆସୁଚନ୍ତି କି ? ଘରୀ ତ ସଫା ସୁତୁରା ହଉଚି କଚେରୀ—ସକାଳୁ ନଈ କୂଳରୁ ଆସିଲା-ବେଳକୁ ଦ' ଘଣ୍ଟା ବାଧିତ ନାଗିଚନ୍ତି କାମରେ···

ମୁଁ କଚେରୀରୁ ବାହାରି ଆଇଚ, ଆଜ୍ଞା···

ହଁ, ନା, ହଁ,···ଠିକ୍ କହୁଚ । ଓଃ, ବସିଲେ ଆଉଟିକେ ସାହସ ହୁଅନ୍ତା କହିବାକୁ । ଏହା ଭାବିବା ଭିତରେ ଗୋକଳ ଦେଖିଲା, ବୁଲପଡ଼ି ଅନେଇଛନ୍ତି ତାକୁ ଭାସ୍କର ବାବୁ । ସେ ପୁଣି ତାକୁ ପଚାରିଲେ···କଣ, ହେଇଚି କଣ···ବସ, ବସ ।

ବସି ପଡ଼ିଲା ଗୋକଳ । ଦେହର ହାତକଣ୍ଟା ଫଟେଇ ଖଣ୍ଡିକ ଲଗିଲା କାନ୍ଥ ଦେହରେ । ସ୍ୱର ଆସି ଲଗିଲା ତାର କଣ୍ଠରେ । ଜିଭ ଉପରେ କଥା ।

ଆଉ କିଛି କଥା ନୁହେଁ—ଗୋରୁ ଦଉଡା ଆସି ହତାରେ ପଶି ଥେଲେ । କେହିଏ ବ ଛଣ ଓଲାର ଥେଲେ ଗୁଳରୁ···ଆପଣ ତ ଦେଖୁଛନ୍ତି ପାଞ୍ଚବର୍ଷ ହେଲା ବାଡ଼ା ବନ୍ଦୀ ହବାକୁ ନାଇଁ···ଏଥିରେ ଗୋରୁଙ୍କ ଦୋଷ କଣ···

ହଁ, କଣ ହେଲା ସେଇଠୁ···

ଏହି ସମୟରେ ଅଙ୍ଗାରରେ ଦାନ୍ତଘଷା ସାରିଲେ ଭାସ୍କର ବାବୁ । ଦାନ୍ତକାଠି ପାଇଁ ଡାକିଲେ ଗୁଳରକୁ । ତାହା ପରେ କାନ ଡେରିଲେ ଗୋକଳର କଥା ଉଦ୍ଦେଶ୍ୟରେ ।

ବୁଢ଼ା ମତେ କହିଲେ ଗୋରୁ ଦଉଡାକୁ ନେଇ ଅରଖପୁର କାଞ୍ଜିଆବୁଦାରେ ପକା ।

ଚାକର ଆସି ଦାନ୍ତକାଠି ଧରି ପହଞ୍ଚିଲା । ଦାନ୍ତକାଠି ଚୋବେଇ ଚୋବେଇ କହିଲେ ଭାସ୍କର ନାୟକ । ଚର୍ବଣ ସଙ୍ଗରେ ବନ୍ଧୁତା ରଖି ବାହାରିଲା ସ୍ୱର ।

ସେଇଠୁ ?

ମୁଁ ଦେଖିଲି ଯେ ସିଏ ଆପଣଙ୍କ ବଳଦ…

ଉଁ ଥୁଃ ! କେତେକ ଅଦରକାଚ୍ଚା ଛେପ ପକାଇ ଦେଲେ ଭାସ୍କରବାବୁ ।

ନେଲି ନେଇଁ, ଆମେ କଣ ଆଉ ପଇସା ପାଇ ନ ଥାନ୍ତୁ ମୁକୁଳେଇବା ପାଇଁ……

ରହି ରହି କହିଲା ଗୋକଳ—ଯେପରି ଶବ୍ଦ ତରଙ୍ଗରେ ବାଜିଚି ଝଡ଼ ।

ଆଜ୍ଞା, ମତେ କହୁଛନ୍ତି…

ଓ, ହଁ ହଁ କଣ ହେଲା ସେଇଠୁ ?

ଯଥାର୍ଥ ଉତ୍ତର ନ ଦେଇ ଗୋକଳ କହିଲା…ଆଜ୍ଞା ସବୁ ସହିବି, ଗାଳି ଫଜିତି ମୁଁ ସହି ପାରେ ନା । କଣ କରିବି ? ସେଇଟା ତ ହେଇ ନେଇଁ ମୋର…ମୁଁ ଆଉ କଣ କହିବି…

ତମେ ଚାଲି ଆସିଲ ସେଇଠୁ…?

କଣ କରିବି, ଆଉ କଣ ଜାଣୁ ଜାଣୁ ମୁଁ ବାବୁଘର ଗୋରୁକୁ ନେଇ କାଞ୍ଜିଆବୁଦାରେ ଦେବି ? ପିଆଦା ରଇଥିଲି କଣ ମୁଁ ଗୋରୁ ଅଡ଼େଇବା ପାଇଁ—ଆଉ ସିଏ ବାଡ଼ାବନ୍ଦୀ ନ କରି ପଇସା ଖାଇବେ…

ଗୋକଳର ଯେପରି ଖୁବ୍ ସାହସ ଆସିଯାଇଛି । ସେତେବେଳକୁ ବାବୁ ଜିଭ ଛେଲୁ ଥାଆନ୍ତି । ତାଙ୍କୁ ସବୁ କଥା ଶୁଣିବାର ସମ୍ଭାବନା ନ ଥିଲେ ବି ଗୋକଳ କହିବାକୁ ଲାଗିଲା……

ସବୁ କଥା ମୁଁ କହି ପାରିବି ନେଇଁ । ଆଜ୍ଞା, ଖାଲି ରକତ ଚାଉଳ ଚୋବେଇ ମୁଁ ଆଜଯାକେ ମୁହଁମାଡ଼ି ରହିଥିଲି ।…ଦରମା ଗଣ୍ଡାକ ହିସାବ କରି ଆଣିବାକୁ ବି ଆଉ ମନ ଲାଗିଲା ନେଇଁ…

ଜିଭ ଛେଲି, ମୁହଁ ଧୋଇ, ଠିଆ ହେଲେ ଭାସ୍କର ନାୟକ । ପାଖର କାଣ୍ଥିସ ଉପରୁ ତଉଲିଆ ଖଣ୍ଡିକ ଆଣି ମୁହଁ ପୋଛି ହେଲେ ।

ହଁ, ମୋର ସବୁ ମନେ ରହିଲା…ତମେ ଆଉ କଣ କହୁଚ ?

କଣ ଆଉ କହିବି ଆଜ୍ଞା ! ପାଞ୍ଚ ଟଙ୍କା ନାଗି ମୁଁ ଆଉ କଣ ସେ କଚେରି ଦୁଆର ମାଡ଼ିବି ? ଆପଣଙ୍କୁ ତ ନାଗିଲା…

ଆରେ, ହୋ ରସାନ୍ଦ…ହଁ ମନେରଖ ଗୋକଳ, ମୋର କଥା ଗୋଟା… ତାକୁ ଯୋଉଦିନ ସିଏ ନ ରଖିଚ, ତାର ଆଉ ମୋ ପାଖରେ ସ୍ଥାନ ନାହିଁ ।

ଏହି ସମୟରେ ପାଖ ଚଉପାଢ଼ୀରୁ ରସାନନ୍ଦ ଆସି ପହଞ୍ଚିଲା । ଗୁମାସ୍ତା ସିଏ ଭାସ୍କର ନାୟକଙ୍କର । ଚଉପାଢ଼ୀକୁ ଲାଗି ଗୋଟିଏ କୋଠରୀରେ ତାହାର ରହିବା ଘର—ଶିରସ୍ତା ତାହାର ଚଉପାଢ଼ୀରେ । ଟିପ ଅଗରେ ତାହାର ନେଳ ସାହିର ଦାଗ । କଣ୍ଟ୍ରୋଲ କନାର କାମିଜ ଖଣ୍ଡେ ଦେହରେ ।

ରସାନ୍ଦ, ଏ ଗୋକଳକ ପାଞ୍ଚଟା ଟଙ୍କା ଦିଅ । ଆଉ ଏ ତମ କଡରେ ଆସି କାଲିଠଉଁ କାମ କରିବ । ହଁ ଗୋକଳ, ଗୁମାସ୍ତାଙ୍କଠଉଁ ତମର ମାଛର ଦାମ୍ ବି ନେଇଯିବ ।

ରସାନନ୍ଦର ଅନେକ କାମ । କଣ ଗ୍ରୋଟାଏ କୋରଖ ଆଣି କାଲିଠଉଁ ଚପରାଶି ଆସି ବସିଛି । ସେ ଝିଅଟ ଗୋକଳର କାମ ସାରିଦେବାକୁ ଚଉପାଡ଼ୀକୁ ଫେରିଗଲା । ବୁଲିଗଲେ ମଧ୍ୟ ଭାସ୍କରବାବୁ ଭିତର ଆଡ଼କୁ । ସେ ପଣି ଯାଉଁ ଯାଉଁ ଦେଖିଲେ, ଦାଣ୍ଡ ବନ୍ଧ ପାଖ ଦୋକଡ଼ୀ କାନ୍ଥର କଣକୁ ଛୁଡ଼ା ହେଇଛି ରଜନୀ । ଚମକ ପଡ଼ଲା ରଜନୀ—ବାବୁଙ୍କୁ ଦେଖି ।

କଲେ, ତୁ ଏଠି କଣ କରୁଚୁ—ବିଦିଆ ମା' ପିଶ କଥା ବିକ ଶିଖିଲୁଣି କ ?

ଚହଲି ଉଠିଲା ରଜନୀର ଗ୍ରୁଡି । ତାହାର ପୂର୍ବ ସ୍ଥାନକୁ ଫେର ପାଇବାପାଇଁ ସେ କହିଲା—ନାଇଁ ମୁଁ ତ ଦେଖିଥେଲି, ଆମ ବଳଦ କାଲି କଚଣ୍ଡି ବାଡ଼ରେ ଚରୁଥେଲେ ।

ଆଉ ଅଡ଼େଇ ଆଇଁଲୁନୁ ତୁ ?

ତୁଚ୍ଛା ବାଡ଼ଟା, ସେଥିରୁ କାହିଁକ ଗୋରୁଙ୍କୁ ମୁଁ ଅଡ଼େଇ ଆଣିଥାନ୍ତି—ମୁଁ କହିଲି, ଖାଉନ୍ତୁ ଦି'କଲ ଘାସ···

ରଜନୀକ ଆଉ କିଛି କହିଲେନି ଭାସ୍କରବାବୁ । ଭଲ ମନେକଲେ ନି ମଧ୍ୟ ।

ଗୋକଳ ଆଉ କିଛି ଭାବିଲା ନି । ଭାବିଲା, ଭାବିବ ଆଉ କଣ ! ଖଟିଲେ ଖାଇବ—ଏଥିରେ ଭାବିବାକୁ କଣ ଅଛି ? ହଁ, ଏଇ ପାଞ୍ଚଟା ଟଙ୍କା କଥା । ଆଜିକାଲି ମୂଲିଆ ମଜୁର ଦିନକୁ ପାଞ୍ଚଣା ଛ ଅଣା, ପାଞ୍ଚଟା ଟଙ୍କାରେ ମୁଁ କଣ କରିବ ? ଏହା ଭାବି ମନଟା ତା'ର ଅସୁସ୍ଥ ହୋଇ ଉଠିଲା କ୍ରମେ । ତାହା ପରେ ସେ ବାଁ ହାତର ବୁଢ଼ା ଆଙ୍ଗୁଠି କ ଗ୍ରହିଁଲି···ପାଞ୍ଚଟା ଟଙ୍କା ପେଇଁ ବି ଗୁମାସ୍ତା ମୋ ଠଉଁ ଟିପଚିହ୍ନ ନେଲା··· । ତାହାପରେ ମନେ ପଡ଼ିଗଲା ବାବୁଙ୍କର କଥା···ମୋର ଏକ କଥା··· । ହଁ, ସେ ଯା ହଉ, ବକଳ ବୋଉ ପାଇଁ ଖଣ୍ଡେ ଲୁଗା ନେବାକୁ ତ ଟଙ୍କା ମିଳିଚି··· । କ୍ରମେ ଉତ୍ତେଜନା ଦେଖାଦେଲା ମନରେ···ଆଉ ସବୁ କଥା ସେ ପଛକୁ ପକେଇ ଦେଇ କେବଳ ଖୁସି ହେବାକୁ ଲାଗିଲା ।

ବକଳ ବୋଉ, ତମ ପେଇଁ ମୁଁ ଲୁଗା କିଣିବାକୁ ଯାଉଚି, ଏ କଥା ତମେ ଏଇଖିଣି ଜାଣିପାରନ୍ତ କ !···

ଆରେ ମହନା ତ !

କଚଣ୍ଡି ଆହୁରି ଆଗକୁ ଅଛି । ରସ୍ତାରେ କିଛି ବାଟ ଯାଇ ଗୋକଳ ଦେଖିଲା, ଗୋଟା ବସ୍ତା ନଦା ଶଗଡ଼ ପଛରେ ବୁଲିଚି ମହନା । ମହନା, ମହନା ବୋଲି ଡାକ ଛୁଡ଼ିଲା ସେ ।

ଦୂରରେ ଛୁଡ଼ାଦେଲା ମଦନା । ପିଆଦାର ଡାକରେ ତାହାର ଆଶଙ୍କା ବି ହେଲା ଯେମିତି । ପାଖରେ ତା'ର ଝିଅଟି ପଦଅଞ୍ଚଲ ସାଇଁ ଗୋକଳ । ଆଉ ତା' ଗୃହିଁ ଝିଅଟି କହି ଉଠିଲା ସେ...

ମଦନା...

ଏତିକ କହି ଗୋକଳ ବନ୍ଦ ହୋଇଗଲା । କ'ଣ ଭାବ ପୁଣି ଗୋକଳ କହିଲା, ତୁ ତ ସାନ, ତତେ ଆଉ ମଦନା ଭାଇ ଡାକିବ କେମିତି...

ମଦନର ମୁହଁରେ କୌଣସି ଉତ୍ତର ନାହିଁ । ସେ କେବଳ ଗୃହିଁଛି ଗୋକଳକୁ । ଗୋକଳର ଉଦ୍ଦେଶ୍ୟ କଣ ?

ଗୋକଳ ବି ଯେମିତି ଭାଇଲ୍ ହୋଇଯାଉଛି, ସେ କେବଳ ବିନମ୍ରର ଭାଷାରେ କହିଲା...ସେଇ ମଦନା ବୋଲି ଡାକୁଛି, ଡାକ ତ ଆଇଛି...

କିନ୍ତୁ ଆକାର ଉଠେଇ ଦେବା କଥା କମ୍ବା ଆକାର ସ୍ଥାନରେ ଇକାର ଯୋଗ କରିବାଦ୍ୱାରା ଗୋକଳ ଯାହା ଗୃହିଁଛି, ସେହି ଶବ୍ଦ ଯେ ହୋଇ ପାରିବ, ଏହା ସେ ଆଦୌ ଭାବପାରୁ ନାହିଁ । ଯେପରି 'ମୂର୍ଖଙ୍କର ଷାଠିଏ ଦୋଷ' ପ୍ରବାଦକୁ ସେ କାର୍ଯ୍ୟକାରୀ କରୁଛି ପୂର୍ଣ୍ଣଭାବରେ । ପୁଣି ନିଜର ଏହି ସମାଧାନ ଶେଷରେ ବି ବର୍ତ୍ତମାନ ଯେପରି ସେ ମୂଳ କଥାକୁ ଭୁଲି ବସିଛି । ଏହି ଭାବ ତାହାର ମୁହଁରେ ।

ହଁ ହଁ ହଁ ହଁ, ମନେ ପଡ଼ିଲା, ତମ ଓପରେ ମୁଁ ଭାରି ଖୁସି ମଦନା...

ଏହାର ମୂଳ, କାରଣ ଓ ଅର୍ଥ ଏବଂ ପ୍ରୟୋଜନ ସମସ୍ତର ଏକତ୍ର ସମାବେଶରେ ମଦନ ମୁହଁରେ ପ୍ରକାଶ ପାଇଲା ଅନାବିଳ ଚକିତ ଦୃଷ୍ଟି ।

କ'ଣ କହିବ ଗୋକଳକୁ କିଛି ଭାବପାରିଲା ନାହିଁ ମଦନ । ସେ ବି ଶୁଣିଲା ଗୋକଳ ତାହାକୁ କହୁଛି 'ତମେ' । ବର୍ଷେ ଦଶଅଣା ପଇସା ବାକି ଥିଲା ବୋଲି ମଦନ ଖୁବ୍ ଅନେଇଥିଲା ଗୋକଳର ଠେଙ୍ଗାକୁ । ନିଶ ମୋଡ଼ ମୋଡ଼ ତାଙ୍କର ପିଣ୍ଡା ଉପରେ ବସି ରହିଥାଏ ଗୋକଳ । ବର୍ତ୍ତମାନ ଯେପରି ସେହି ଚେହେରାଟା ମଦନର ମନେ ପଡ଼ିଗଲା ।

ଆଜି କଣ ଖାଲି ହାତରେ ଯାଉଚ ଗୋକଳଭାଇ ?

ଠାଇ—ଠାଇ—ଠାଇ

ଠିଆ ହୋଇ ତିନି ଚୁପୁଡ଼ା ମାରି ଦେଲା ଗୋକଳ ସିଂ ।

ଅକଲ ପାଇଲ, ଅକଲ ପାଇଲ ।

ଏ ଲୋକ ଏମିତି କଣ ହଉଚ ! କିଛି ବୁଝିପାରିଲା ନାହିଁ ବାସ୍ତବିକ୍ ମଦନ ।

ମଦନ, ମଦନ, ମଦନ ..ତତେ ମୁଁ ଆହୁରି ଭଲ ପାଉଚି ମଦନ । ଆଉ ଦେଖ୍ ମଦନ, ତୁ ଯେମିତି ଆମକୁ ଦଗା ନ ଦଉ...ସାଇଁ ତାଙ୍କର ପାଖରେ ପଡର ନ ପକଉ ଯେମିତି । ଓଃ, ଆମ ଗରିବ ଭିତରେ ତୁ ଗୋଟା ମଣିଷ...ତୁ ମଣିଷ ହୋ । ଓଃ, ତତେ ଆହୁରି କଣ କହିବାକୁ...ଆହୁରି କଣ କରି ପକେଇବାକୁ ଇଚ୍ଛା ହଉଚି... ମନ ହଉଚି ତତେ କାନ୍ଧରେ ବସେଇ ନେଇ ଯା'ନ୍ତି ତୋ ଘର ଯାକେ ।

ସବୁ ଦୁଃସ୍ୱପ୍ନ ହେଲା ମଦନ ପାଖରେ । ବଲ ବଲ କରି ଅନେଇଲା କେବଳ ଗୋକୁଳକୁ ସେ । ଶଗଡ଼ ସେତେବେଳକୁ କୋଡ଼ିଏ ହାତ ଦୂରରେ ଚାଲିଛି । ଭିନ୍ନ ଗାଁ'ର ଗାଡ଼ିଆଳ, ଡାକି ଉଠିଲା ଆଉ କେତେ ଦୂର ଯିବ ବୋଲି ।

"ଆରେ ଚଲ ଆଗକୁ," କହିଲା ଗୋକୁଳ, "ସେ ଶେଷ ମୁଣ୍ଡ ସାହିକି ।"

କଥା କହିବା ଶେଷରେ, ତା'ର ଯେମିତି ମନେହେଲା, ଠେଙ୍ଗାଟା ତଳେ ଠୁକେଇ ଦିଅନ୍ତା ସେ । କିନ୍ତୁ ଖାଲି ହାତଟା ଛୁଆଡ଼ ହୋଇଗଲା ତା'ର ।

ଗୋକୁଳର ସ୍ୱର ଶୁଣି ମଦନ ଭାବିଲା, କାହିଁକି ଏମିତି ଜୋର୍‌ରେ ସେ ପଦେ କଥା କହିପାରେ ନା, ନିଜର କାମ କରୁଥିଲେ କେତେ କାମ କରି ପାରୁଥାନ୍ତା ଏଇ ଗୋକୁଳ ସିଂ···।

ଏତିକିବେଳେ ଗୋକୁଳର କଥା ଶୁଣାଗଲା, ପୂର୍ବର ସ୍ୱର ଆଉ ସେଥିରେ ନାହିଁ । ଶାନ୍ତ ଅଥଚ ପ୍ରସାଦ ।

ଆଉ ଠେଙ୍ଗା କଣ ହବ ମଦନ, ମୁଁ କଚେରି କାମ ଛାଡ଼ି ଦେଇଚି···

ବିସ୍ମିତ ହୋଇ ପଚାରିଲା ମଦନ···କାହିଁକି ? ଛାଡ଼ିଦେଲ କାହିଁ ଗୋକୁଳ ଭାଇ ?

ମଦନ ମୁହଁକୁ ଚାହିଁଲା ଗୋକୁଳ । ଭାବନାକୁ ତା'ର ପରିବର୍ତ୍ତିତ କରି ସେ କହିଲା···

ମଦନକୁ ଯେପରି ଭଲ ଲାଗିଲା ଏ କଥା । ସେ ସହଜ ଭାବରେ କହିଲା···

ଭଲ କଲ । କେତେ ଲୋକଙ୍କର ନିଃଶ୍ୱାସ ପଡ଼ୁଥିଲା ତମ ଉପରେ···

ଏଁ ! ଏତିକି କହି ମଦନର ହାତ ଧରି ପକେଇଲା ଗୋକୁଳ । ପୁଣି କହିଲା···

କଣ କରିବ···ପୁଅ-ମାଇପ, ପୁଣି ତାଙ୍କ ସକାଶେ ମତେ ପାଞ୍ଚଟା ଟଙ୍କାକୁ ମୁଣ୍ଡ ବିକିବାକୁ ପଡ଼ିଚି ମଦନ ।···ତୁ ଆମର ଭାରି ହେମତ୍‌··ତୁ ଆଉରି ମତେ ଭଲ ଲାଗୁଚୁ··ନିଜ ଗୋଡ଼ରେ ଠିଆ ହୋଇ···ଓଃ, ତେବେ ବି ଆଖି ଫିଟୁ ନେଇ - ଆମର —ଖାଲି ଥରକୁ ଥର ମୁକୁଳେଇ ଥରକୁ ଥର ଏ ମୁଣ୍ଡଟାକୁ ବନ୍ଧକ ପକେଇବା ଶିଖୁଚୁ ! ଓଃ······

ଏତେବେଳକେ ଗୋକୁଳର ଏପରି କଥାର ଅର୍ଥ କିଛି ବୁଝିପାରିଲା ମଦନ । କିନ୍ତୁ କଣ କହିବ ଗୋକୁଳକୁ ସେ !

ଆଗରେ ଡାହାଣ ହାତ ପଡ଼ିଲା କଚେରି । ଭାରି ଆନ୍ଦୋଳ ତ ସତେ ! ଗୋକୁଳର ଆଖି ଚାଲିଗଲା ସେଆଡ଼େ । ତା'ର ଇଚ୍ଛା ହେଉଥାଏ, କାହାକୁ ଡାକି ପଚାରନ୍ତା, କଣ ହଉଚି ଆଜି । କିନ୍ତୁ ଡାକ୍ତରଖାନାର ଡିସ୍‌ଚାର୍ଜଡ୍‌ ରୋଗୀ ପରି ହାସ-ପାତାଳଆଡ଼ୁ ସେ ମୁହଁ ବୁଲେଇ ନେଲା ହଠାତ୍ । ପଚାରିଲା ମଦନ···କଣ ହଉଚି ଆଜି ତମ କଚେରିରେ ଗୋକୁଳ ଭାଇ ?

ଚିଡ଼ି ଉଠିଲା ଗୋକୁଳ, କିନ୍ତୁ କଥାରେ ପ୍ରକାଶ କଲା ନାହିଁ କିଛି । ତାହା ପରେ ମନ ବଦଳେଇ କହିଲା, ଆଉ ଆମ କଚେରି ବୋଲି କହୁଚୁ !···ହୁଁ ତୁ କ'ଣ, କେତେ ଦିନ ଯାଏ ମତେ କେତେ ଲୋକ କହିବେ ଏମିତି···

ପୁଣି କୋଉଠି କାମ କଲୁ କି ଗୋକଳ ଭାଇ ?

ଗୋକଳର ମ୍ଲାନ ଲେପ ହୋଇ ନ ଥାଏ । ସେହି ମ୍ଲାନମୟ ସ୍ୱରରେ ସେ କହିଲା – ତୁ କଣ ଆଜି ମତେ ଦ'ଟା ଖାଇବାକୁ ଦବୁ ?

ଏ କଥାରେ ମହନାର ଚେତନା ପଶିଲା ଯେମିତି । ଭୁଲିଗଲା ହନର କଥା ତାହାର ମନେ ପଡ଼ିଲା······ପେଟରେ ତାର ଖର ବୁଲି ଯାଉଥାଏ ଓପାସରେ । ସେ ଷଗଡ଼ ଅଡ଼େଇ ଯାଉଥାଏ ତା' ବାପ ସାଙ୍ଗରେ । ଗାଡ଼ିରେ ଯାଉଥା'ନ୍ତି ଜଣେ ବାବୁଙ୍କର କୁଟୁମ୍ବ—କେତେ ଦରବ ଖାଉଥାନ୍ତି ସେମାନେ ଗାଡ଼ି ଭିତରେ । ପେଟରେ ତା'ର ଖର ବୁଲି ଯାଉଥାଏ ।···

ଏହିକ୍ଷଣି ବି ପେଟ ଉପରେ ହାତ ବୁଲେଇ ନେଲା ସିଏ । ତାହା ପରେ ଏହି ପତଳା ମୋହକୁ କଟେଇ ସେ ଅନେଇଲା ଗୋକଳର ମୁହଁକୁ । ସୁନ୍ଦର ମୁହଁ ତ ! କଳା ଖସି ପଡ଼ୁଚି ନଶରୁ ! ତା'ହେଲେ···। କୁଶ ପୃଷ୍ଟି, ହେଲ ସାହୁ ବି ରାତି ପାହିଲେ ବୁହନ୍ତି ମୁଗ-ହରଡ଼ । ସଚ୍ଚା ମଣିଷ ସେ ଆଉ କଣ !

କଣ ତମର ଦରକାର ଗୋକଳ ଭାଇ ?

ଏଁଃ······

ଚମକି କରି ଗୃହିଁଲା ସେ ମହନାର ମୁହଁକୁ । କାହିଁକି ଏ କଥା ମହନା ପଗୃରିଲା ! ହଁ, ସେ ତ ଟିକିଏ ଆଗରୁ ଭାବୁଥିଲା, ଦର୍କାର ନାହିଁ ତା'ର ବଡ଼ଲୋକ ଘର ଗୃକରି । ମହନା ସାଙ୍ଗରେ ଏଇ ଗାଡ଼ି ପଛେ ପଛେ ଗୃଲିବାକୁ ବି କେତେ ସୁଖ ଲାଗୁଛି ! ମହନା କଣ କଛି ବୁଝିପାରିଚି ତା'ହେଲେ ! ହଠାତ୍ ସେ କହି ପକାଇଲା···

ପାଞ୍ଚଟା ଟଙ୍କା ମତେ ଦେବୁ ?

ଖୋସଣି ଫିଟେଇ ଗଣିସାରି ମହନା ବଢ଼େଇ ଦେଲା ପାଞ୍ଚଟା ଟଙ୍କା ।

କଣ ସବୁବେଳେ ମହନା ଅଣ୍ଟାରେ ଟଙ୍କା ! ମନର ଭାବନା ଭିତରେ ବି ହାତ ବଢ଼େଇ ଦେଲା ଗୋକଳ । କଛି ତ ନେଖି ନେଇ ନେଇଁ ମୋଠୁଁ···କଣ ବି ମୁଁ ତାକୁ କହିବ !

ମହନା, ତୁ ଥା' ମୁଁ ଆସେ—ତୁ ଘରେ ପହଞ୍ଚି ନ ଥବୁ ମୁଁ ଆସୁଚି······

କୌଣସି କଥାକୁ ଅପେକ୍ଷା ନ କରି ଖୁବ୍ ଜୋରରେ ଗୃଲିଗଲା ଗୋକଳ । ମହନା କେବଳ ଅନେଇ ରହିଲା ତାର ପଛକୁ—କଣ କଥା !

ବାଁ ହାତ ବୁଢ଼ା ଆଙ୍ଗୁଠିରେ କାଳି ଚିହ୍ନ ବି ଏ ପର୍ଯ୍ୟନ୍ତ ଅଛି । ତାକୁ ଅନେଇ ଅନେଇ ଗୋକଳ ବାଟ ଗୃଲୁ ଗୃଲୁ ଭାବୁଚି । ନିଅ ତୁମର ଟଙ୍କା ଗୁମାସ୍ତା ବାବୁ । ମୁଁ ଆଜି ପିଆଦା କାମ କରିବ ନେଇଁ—ଠେଙ୍ଗା ଧରିବ ନେଇଁ ଆଉ ମୁଁ । ମୋ ସାଙ୍ଗ ଲୋକଗୁଡ଼ା ବି ମତେ ଡରୁଚନ୍ତି । ମୋର ଗୋଟିଏ ବୋଲି ପିଲା, ତା' ଉପରେ କା' ନିଃଶ୍ୱାସ ଯେମିତି ନ ପଡ଼ୁ । ତମର ଟଙ୍କା ନିଅ···ଗୁମାସ୍ତାବାବୁ······

ଆରେ ମହନା, ବେଶ୍ ବେଶ୍···

ଏଁ ଗୁରୁମୁକରଣେ ! ଦଣ୍ଡବତ ହେଲା ମହନ ।

କରେ ଖିର ପିଠା କୋଉଦନ ଖୋଉଚୁ···

ମୃଦୁ ହାସ୍ୟ ଶୋଭା ପାଇଲା ମହନର ମୁହଁରେ । ତାହା ବେଶି ସମୟ ରହିବା ଆଗରୁ ସେ ପୁଣି ଶୁଣିଲା···କରେ, ବୁଢ଼ୀ କରବୁ କରେ ଭଉଣୀଟାକୁ···?

କାନ୍ଧର ପାଛୁଡ଼ା କାନରେ ମୁହଁ ପୋଛି ନେଲା ମହନ, ଯେମିତି ବାବୁମାନେ ରୁମାଲ ଧଅନ୍ତି ନାକରେ କଟକରେ ମଇଲା ଗାଡ଼ି ଚାଲିଗଲା ବେଳେ । ପଛକୁ ଅନେଇଲା ମହନ, ହେଇ ଚାଲିଯାଉଚନ୍ତି ଗୁରୁମୁକରଣେ ।

"କଣ ମୁଁ ଦୋଷ କରଚୁ ଯୁାଙ୍କର," ମହନ ଭାବିଲା, "ଗାଡ଼ି ତ ଅନେକ ଥର ମାହାଳିଆ ବ ନେଇଚ ମୁଁ ।"

କରେ ମହନା···

ବୁଲିପଡ଼ି ମହନ ଅନାଇଲା ଆଗକୁ । ଉଛବ ମଉସା । ଉଛବ ମଉସା ମହନା ବୋଲି ଡାକିଲା କାହିଁକି !

ହାତରେ ତିନିଟା ବରଡ଼ା ପତର ପୁଟୁଳାରେ ସାଗୁଆଣ୍ଡି । ତାକୁ ଟେକି ଉଛବ ଦେଖେଇଲା ମହନକୁ । ପୁଣି ସବୁ ପୁଟୁଳାକୁ ବାଁ ହାତକୁ ନେଇ, ଡାହାଣ ପାପୁଲିକି ମହନର ନାକ ପାଖରେ ଲଗେଇଲା ଆଣି ଉଛବ । ମସଲାର ବାସ୍ନା— ସେଥିରେ ବ ବଟା ହଳଦୀର ଅବଶିଷ୍ଟ ପ୍ରଭାବ । ବୋଧହୁଏ ନିଜ ହାତରେ ମସଲା ବାଟିଚି ଉଛବ ।

ହୁଁ···ସାଗୁଆଣ୍ଡି ମିଳିବ ନେଇଁ ଆମକୁ ?

କଥାଟା ଧରିଲା ମହନ । ଆଉ ଆମକୁ ମିଳିବ ନେଇଁ ବୋଲି ମଉସା କାହିଁକି କହୁଚ !

ବେଟା କେ ଉଛବ୍ ମେସୋ ?

ଏଁ ନୂଆ କଥା । କଣ କହୁଚ ! ନୂଆ ମଣିଷ ବ ତ ! ଭଲ କରି ଦେଖିନେଲା ମହନ ପଦନ ପୁରୋହିତକୁ ।

ଉଛବ ପୁଣି କହିଲା ଆଗକୁ ଯାଉଁ ଯାଉଁ···ଆଜ ଦ'ଟା ପିଆଦା—ମୁତଇନ୍ ! ଶଳା ବାବୁଭଙ୍କ କଥା ଆଜ ବୁଝାଯିବ—ଶଳା ଡଙ୍ଗା ଉଠେଇ ନେବେ ଆମ ନଇରୁ···

ଏକଦମ୍ ଫ୍ରଣ୍ଟରେ ଆସି ଯେମିତି ପଡ଼ିଲା ମହନ । ଏ ଯେ ଉପୁଙ୍କର ଯୁଦ୍ଧର ଆୟୋଜନ । ଉଛବ ମଉସା ବ ସୈନିକ ! ବାକ୍ସ୍ଫୂର୍ତ୍ତି ହେଲା ନାହିଁ ମହନର । ଗାଡ଼ି ଉପରୁ ତା'ର ନିଘା ବ କମି ଆସିଲା ଯେମିତି ।

କିଛିକ୍ଷଣ ପରେ ଚମକି ଉଠିଲା ମହାନ । ସେ ଚମକି ଉଠି ଶୁଣିଲା···ଗାଡ଼ିବାଲା, ଗାଡ଼ିବାଲା, ଆରେ ସେଣେ କୁଆଡ଼େ ନଉଚୁ···ମହାନ ?

ଧୀରେ ପଛକୁ ବୁଲି ଗ୍ୱହିଁଲା ମହାନ । ଦୌଡ଼ ଦୌଡ଼ ଆସୁଚି ଗୋକୁଳ ସିଂ । ପୁଣି ଆଗକୁ ଗ୍ୱହିଁଲା, ଶଗଡ଼ଟା ତାଙ୍କ ଗୋହାଗ୍ୱ ରାସ୍ତା ପାରି ହୋଇ ଗ୍ୱଲିଚି ଆଗକୁ । ତାହାର ଡାକିବାକୁ ଇଚ୍ଛା ହେଲା ଗାଡ଼ିବାଲାକୁ, କିନ୍ତୁ ଡାକିପାରିଲା ନାହିଁ । ଅଳ୍ପ ସମୟ ପରେ ସେ କେବଳ ଦେଖିଲା, ଗାଡ଼ିକି ଫେରେଇବାରେ ଲାଗିଚି ଗୋକୁଳ ସିଂ ।

ପାଚୁଡ଼ାକୁ ତାନେ ଝାଡ଼ି ଝୁଡ଼ି ଦେଲା ମହାନ । ଆଗରି ମଳିଧୂଳି ସେଥିରୁ ଯେମିତି ଫୋପାଡ଼ି ଦେଲା ସିଏ । କେତେ ଦୁଃଖ ଯାଇଚି, ଆଉ ବେଶୀ କଣ ହବ ! ଟିକେ ଟିକେ ବେଗାବେଗି ଯାଇଁ ସେ ବି ହାତ ପକେଇଲା ଶଗଡ଼ ଦଣ୍ଡାରେ । ଆଗରେ ଦେଖାଯାଉଛି ତାଙ୍କ ଘରି···ବୋଉ ବି ଠିଆ ହେଇଚି ହେଇ, ଆଉ କଣ !

ଦାଣ୍ଡ ଆଗରେ ଗାଡ଼ି ରହିଲା ।

ଆରେ ଗୋକୁଳ ଭାଇ, ତମେ ବସ୍ତା ଉଠଉଚ କାହିଁକି ? ଏ' କଣ···ମୁଁ ଅଛି । ଗାଡ଼ିବାଲା ଅଛି, ତମେ ଉଠଉଚ କାହିଁକି···।

ଘର ଖୁସି ନାଗୁଚି ମତେ ।···ଆରେ ମୁଁ ବାବୁଘର ଟଙ୍କା ଫେରେଇ ଦେଇ ଆସିଲି, ଜାଣିଚୁ !

## —ଏଗାର—

ମହାନର ପାଟି ଖାଲି ଛଳବଳ ହେଉଚି ଅନେକ ବେଳୁ, ବାବୁଘର ଶବ୍ଦ ଶୁଣିଲା ବେଳୁ ଗୋକୁଳର ପାଟିରୁ । ସେ ପଗ୍ୱରନ୍ତା ଗୋକୁଳ ଭାଇକି, ତା' କଥା କଣ କହୁଥିଲେ କି ବାବୁ ! ···କହୁ ନ ଥିବେ—ନିଶ୍ଚେ କହୁଥିବେ । କାଲି ସକାଳେ ସେ ପଗ୍ୱଶ ଟଙ୍କା ତାଙ୍କୁ ଦେଇଚି—ମାଗୁ ମାଗୁ ! କହୁ ନ ଥିବେ ତା' କଥା କିଛି !

ସରଳ ମହାନ । ଜାଣିଥିଲା ହୁଏତ କିଛିଦିନ ତଳେ ସେ ବାବୁଙ୍କୁ । ଜାଣିଥିଲା—ସୂର୍ଯ୍ୟକିରଣ ଖୁବ୍ ପ୍ରଖର । ତାହା ପରେ ସେ ବିଶ୍ରାନ୍ତିର ଗୋଟିଏ ରାତି କଟେଇ ପୁଣି ସକାଳୁ ଦେଖିଚି ସୂର୍ଯ୍ୟକୁ । ମୁଗ୍‌ଧ ହୋଇଚି ଶିଶୁ ଭଳି । କବି ଭଳି ଗାଇ ଉଠିଚି ଅନ୍ତରରେ ସ୍ତୋତ୍ର···ସୂର୍ଯ୍ୟ ଜବାକୁସୁମସଙ୍କାଶ, ସୂର୍ଯ୍ୟ ସୁନ୍ଦର, ତାର ପ୍ରଭା ହିରଣ୍ମୟ । ଫୁଟେ ପଦ୍ମ ତାହାର ସ୍ପର୍ଶରେ । କିନ୍ତୁ ମିଥ୍ୟାର ଜାଲ ଭେଦିକରି ପାରୁ ନାହିଁ ମହାନ । ସେ ଏ ପର୍ଯ୍ୟନ୍ତ ଅଛି ଯେପରି କୁଭା-ଖାରର ଆର୍ଯ୍ୟ କୃଷକ । କେତେ ଓଲଟ

ପାଲଟି, କେତେ ବିପର୍ଯ୍ୟସ୍ତ ଗଲଣି । ତଥାପି ଯେପରି ଲାଗି ରହିଛି ଅନ୍ତରରେ ତାହାର ସେହି କଳ୍ପନାର ଜୀର୍ଣ୍ଣ କବିତା । ସବୁ ଯେ ମିଥ୍ୟା, ସେ ଯେ ଜଳିପୋଡ଼ି ଯାଉଛି ନିଜେ, ସେ ତମକୁ ନ ପୋଡ଼ିବ କେମିତି ! କିନ୍ତୁ ମଣିଷର ପତଙ୍ଗ-ପ୍ରବୃତ୍ତିକି ସେ ଯେ ପୋଡ଼ିପାରୁ ନାହିଁ ଜମା, ଏହା ହିଁ ବିଚିତ୍ର ।

ସକାଳର ସୂର୍ଯ୍ୟକିରଣ ଭଲ ଟିକେ କୋମଳତା ଖର୍ଚ୍ଚ କରି ବାବୁ ଯଦି କହିବେ, ମଦନ ! ଆଉ ଗୋଟିଏ ସକାଳର ସୂର୍ଯ୍ୟ ଉଇଁ ଉଠିବେ ସେଥିରେ—ସବୁ ରକ୍ତ ଯାକ ଜମିଯିବ ଯେମିତି ଆସି ଗୋଟିଏ ମଦନର ମୁହଁରେ ।

ବାବୁଘର କୋଠା । ବାବୁଘର ଦାଣ୍ଡ । ବାବୁଘର ଚଉପାଢ଼ୀ—ବାବୁଘର କୁକୁର । ବଡ଼ ମାଛ ବି ବାବୁଘର ପୋଖରୀରେ ।

ବାବୁଘର ଘଣ୍ଟାରେ ଏହି ଯେ ବାରଟା—ଏହି ଯେ ମଧ୍ୟାହ୍ନ ଓହ୍ଲାଇଛି ବାବୁଘର କୋଠାରେ, ସେ ଯେ ପେଣ୍ଡୁଲମ୍‌ର ଫଳ—ଆଉ ସେ ପେଣ୍ଡୁଲମ୍ ଯେ ଚଳଉଛନ୍ତି ମଦନ ଭଳି ଦଳେ ଲୋକ, ସେ କଥା ମଦନ ବିଚରା କିଛି ଜାଣେ ନା ।

ଗୋକୁଳ ଆଉ କିଛି କହିଲା ନି । ମଦନର ବାରଣ ସତ୍ତ୍ୱେ ସେ ଶଗଡ଼ରୁ ଚାଉଳ ବସ୍ତା ବୋହିବାରେ ଲାଗିଗଲା । ମଦନ ଭିତରେ ବାବୁଘର କଥା ଜାଣିବାରେ ଯେଉଁ ପ୍ରବଳ ଇଚ୍ଛା ଉଠିଥିଲା, ତାହା ଆପେ ଆପେ ମରିଗଲା । ସେ ଏକ ଦୃଷ୍ଟିରେ ଆଶ୍ଚର୍ଯ୍ୟ ହୋଇ ଅନେଇ ରହିଲା ଗୋକୁଳକୁ ।

ଗାଡ଼ିରେ ଚାଉଳ ବସ୍ତା ଅନେକ । ଗୋକୁଳ ସାଙ୍ଗରେ ଗାଡ଼ିବାଲା ଲାଗିଗଲା । ଶେଷରେ ମଦନ ବି ଲାଗିଗଲା ସେମାନଙ୍କ ସାଙ୍ଗରେ । ସମସ୍ତେ ମିଶି ଚାଉଳ ବସ୍ତାଗୁଡ଼ିକୁ ନିଘାକୁ ବୋହିବାକୁ ଲାଗିଲେ ।

ଗୋକୁଳ ମନରେ ଆଜି ଅପୂର୍ବ ଭାବ । ପୂର୍ବର ସବୁକଥା ସେ ବିଲକୁଲ୍ ପାସୋରି ଦେଇଛି । ଯେମିତି ଏକ ତୀର୍ଥରେ ପହଞ୍ଚି ମହାପୁଣ୍ୟ କାମରେ ହାତ ଦେଇଛି ଆଜି । ଦୂରରେ ଶ୍ରୀମତୀ ଆସି ଠିଆହେଲା ଏତିକିବେଳେ । ଦଣ୍ଡିକ ପାଇଁ ନିଜର ମୁହଁଟାକୁ ତଳକୁ କରିଦେଲା ଗୋକୁଳ ।

ଶ୍ରୀମତୀ ଛଟପଟ ହେଉଚି ଅନେକ ବେଳୁ । ଏତେ ଜିନିଷ ଘରକୁ ବୁହା ହଉଚି, ସେ ଟିକେ ଭଲ କରି ଆସି ଦାଣ୍ଡରେ ଠିଆ ହୋଇ ଦେଖି ପାରୁନେଇଁ ତାକୁ ।

ଏଁ ଗୋକୁଳା ପିଆଦା, ସିଏ କାହିଁକି ଆମ ଚାଉଳ ବସ୍ତା ଉଠଉଛି ?

ଭାବି ଭାବି ଚାଲି ଆସିଲା ଦାଣ୍ଡ ଦୁଆରକୁ ଶ୍ରୀମତୀ । ସତେ ତ ! ଭଲ ମଜବୁତ୍ ମରଦଟା !

ଗୋକୁଳର ବାହା ଉପରେ ଆଖି ପଡ଼ିଲା ଶ୍ରୀମତୀର । ହାତ କଟା ଫତେଇ । ପରିଶ୍ରମ ପରେ ଦମ୍ ନେବା ହେତୁ ଫୁଲି ଉଠଚି ବାହୁର ପେଶୀ ।

ମଦନ ଏତିକିବେଳେ ପାଖକୁ ଆସି ଫତେଇ ଉପରୁ ବସ୍ତାର ଧୂଳି ଝାଡ଼ିଦେବା ବାହାନାରେ ଗୋକୁଳର ବାହୁରେ ହାତ ମାରି ଆଣି କହିଲା···ଭାରି ପାରିଲର ତମେ । ହାତରୁ ଠେଙ୍ଗା ଛୁଟ୍ଟି ନା ଏକା ଗୋକୁଳ ଭାଇ !

ମହନର ମୁହଁକୁ ଅନେଇଲା ଗୋକଳ । ସେଠି କୃତଜ୍ଞତାର ତେଜ । ଆଖି ତାର ଗୋକଳଙ୍କ କଳା ଆଡୁର ନଜର । ହସି ଉଠି କହିଲା ଗୋକଳ···ଠେଙ୍ଗାଟାରେ ବସ୍ତା ଉଠେଇବ କେମିତି ? କହି କହି ବସି ପଡ଼ିଲା ପିଣ୍ଡା ଉପରେ । ଆଉ କଣ କହିବାକୁ ଯାଉଥିଲା ମହନ, ଶ୍ରୀମନ୍ତ ଉପରେ ଆଖି ପଡ଼ିବାରୁ ସେ କହିଲା···ଦି ବଡ଼ା ଛଣ ଆଣିଲୁ ବଳଦଙ୍କ ପେଇଁ ଶିଘ୍ର···। ଖିମ, ଗାଡ଼ିଟାକୁ କଟେଇ ରଖ । ବଳଦ ଦିକଳା ସ୍ନେହବଉନ୍ତୁ···ଯିବ ତ···। ହଁ, ଆମ ଘର ତ ଏଥର ଦେଖିଲ···ଆଉ କଣ, ଏକା ଏକା ବ ନେଇ ଆସିବ ଏଥର···

ମୁଣ୍ଡ ହଲେଇ ସ୍ୱୀକୃତି ଜଣେଇଲା ଶଗଡ଼ିଆ । ସେତେବେଳକୁ ମହନର ମ ଘର ଭିତରକୁ ଯାଇ ନଞ୍ଚାରେ ବସ୍ତାର ଠିକକୁ ଅନେଇବାରେ ଲାଗିଛ । ଜନଗଣର ଏହି ଅସୀମ ଖାଦ୍ୟ କଣାକୁ ଦେଖି ସେ କେବଳ ପାଉଥାଏ ଅଶ୍ରୁର ଆବେଦନ।··· ଏତେ ଡେଉରରେ ଏ ସବୁ ଆସିଲା ଆମ ଘରକୁ ! ମହନାର ବାପକୁ ଟିକେ ଡାଲି କରି ପଥି ଦେଇ ପାରି ନେଇ ! ଥାଆନ୍ତା ହେଲେ ଆଜ—କେତେ ଶରଧା ତାର ଡାଲି ଖାଇବା ପେଇଁ···

ଆଖି ପୋଛି ନେଇ ମହନ ବୋଉ ପୁଣି ଚାଲିଆସିଲା ଦାଣ୍ଡକୁ । ଛଣ ଆଣି ଦେଇଯାଇଛି ଶ୍ରୀମନ୍ତ । ଫେରି ଯାଇ ସେ ଚୁଲିକି ଗୁଣ୍ଡା ମୋହିଁ ଦେଇ ଭାଇ ଆଉ ଭଦ୍ରଲୋକଙ୍କ ସକାଶେ ପାନ ଭାଙ୍ଗି ବସିଛ ଘରେ ।

ବନ୍ଧ ମୂଳେ ଠିଆ ହୋଇ ନିରିଖି କରି ବୁଢ଼ୀ ତାକେ ଅନେଇଲା ଗୋକଳକ । ଅନେଇ ଅନେଇ କହିଲା···ନାଇଁ ପୁଅ,ତମେ ଆଉ ଠେଙ୍ଗା ଧର ନା । ଘର ଭସ୍ମାଙ୍କାର ଦୁଶେ । ମୋର ତ ହଲକ ଶୁଖି ଯା' ଆଗେ ଆଉ···। ସେମିତି ସେଇ ପରପଞ୍ଚିଆ କାବଲ ଗୁଡ଼ାକ ଆସୁଥେଲେ ଲୋ ମା···

ଗୋକଳର ଇଚ୍ଛା ହେଉଥାଏ ସେ କହନ୍ତା, ମୁଁ ପରା ମହନ ପାଖରେ କାମ କଲି···ଆଉ କାହିଁକି ଠେଙ୍ଗା ଧରିବ···

ତାହାର ଭାବନାକୁ ଖଣ୍ଡିତ କରି କହିଲା ମହନ···ଏକା ଓସ୍କା ତମକୁ ଦେଖିଲେ ଭାରି ପସନ୍ଦ କରନ୍ତେ ଗୋକଳ ଭାଇ । ଦି ଖଣ୍ଡ ଶକତ ଠେଙ୍ଗା ଆଣି ଡେରି ଦେଇଯାଇଛ ଆମ ଘରେ । ଖଣ୍ଡା ପଟକ ବ କୋଉକାନ୍ତୁ କଲଙ୍କି ଖାଇ ପଡ଼ିଥିଲା, ତାକୁ ଏଥର ନେଇ ଯାଇଛି ଶାଣ କରି ଆଣିବାକୁ ।

ହଁ ରେ ପୁଅ, ସେ ଜାଫର ଟୋକାଟା ବ ସେମିତି । ବରେବରି ତମରି ଗୁଣ ।

ଗୋକଳର ମନେ ପଡ଼ୁଥାଏ, ଏହି ଜାଫର୍ ବିଷୟରେ କେତେ ବିରୁଦ୍ଧ କଥାର ଆଲୋଚନା ହେଇଛ କଚେରୀ ଘରେ । ଆଜ ତାର ପୁଣି କଣ ହେଲା ! କେତେ ଖୁସି ଲାଗୁଛ ଆଜ ଏଠି ବସିବାକୁ । ଏଠି ଯେମିତି ନଜର···ଯେମିତି ସମସ୍ତେ ନିଜ ଘରର ଲୋକେ ତାହାର ବଢ଼ି ଯାଇଛନ୍ତି !···ଆଉ ବକଳ ବୋଉ ବ ଖୁସି ହୁଅନ୍ତା ଏମାନଙ୍କୁ ଦେଖି ।

ତାର ମନେ ହେଲା ବକଳ ବୋଉକୁ ସେ ଆଜ ଯାଇଁ ପଚାରିବ—ବକଳ

ବୋଉ ! ମୁଁ ଆଜ ଯାଇ କେଉଁଠି ବସିଥେଲ କହିଲ ? କଣ କରୁଥେଲ କହିଲ ? ହଁ, ହଁ, କା' ଠଙ୍କାରେ ଲୁଗା ଆଣିଚ କହିଲ ?

ଥାଳିଆରେ ପାନ ଆଣି ଥୋଇ ଦେଲା ଶ୍ରୀମନ୍ତୀ ।

ଏହା ଭିତରେ ଉଠି ଠିଆହୋଇ ପଡ଼ିଲଣି ଗୋକଳ । ବକଳବୋଉର ଲୁଗା କଥା ତାକୁ ଠିଆ କରେଇ ଦେଇଚ, କିନ୍ତୁ ମନରେ ତାହାର ପୂର୍ବ ଚନ୍ତାର ସୂତ୍ର ।···ଯାଃ, ତମେ କିଛୁ କହି ପାରିବ ନେଇଁ ବକଳ ବୋଉ, ସେଠି ବି ମତେ ପାନ ଆଣି ଦିଅନ୍ତି ।···ହଉ-ହଉ, ତମେ ଆଗେ ମୋର ସେ ଠେଙ୍ଗାଟାକୁ ଚୁଲିଲେ ଜାଳ ଦିଅ, ମୋର ଅଧେ ନନ୍ଦା ତା'ରି ନାଗି···ମହନା ପାଇଁ ପଛେ ନୂଆ ଖଣ୍ଡେ ଠେଙ୍ଗା ଧରିବ ।

କଣ କରିବା ଗୋକଳ ଭାଇ କହିଲ, ବାଘୁଣ୍ଡ ଦିହାଙ୍କୁ ସିଏ ଏକା ମାରି ଧରି କରିବେ···

ଚେତା ଫେରିଲା ଗୋକଳର । ଠିଆ ହେଲା ପୂର୍ବର ଗୋକଳ ସିଂ । କିଏ ମାରିବ ?

ଆରେ, ସିଏ କଣ କହିଲା ଗୋକଳ ସିଂ କି ! ଏ କଥାରେ ତା'ର ସଂପର୍କ କଣ !

କେବଳ ଗୋକଳ ନୁହେଁ, ଅନ୍ୟମାନଙ୍କ ସହିତ ଗ୍ରାମ ଗାଡ଼ିବାଲା ମଧ୍ୟ ଉତ୍ସୁକ ହୋଇ ଅନେଇଛି ମହନାର ମୁହଁକୁ । ଦିହା ଠଙ୍କା ବଢ଼େଇ ଦେଇ ମହନା କହିଲା···ନିଅ ତମର ଭଡ଼ା ନିଅ । ଆସ ଭିତରକୁ ଯିବା ଗୋକଳ ଭାଇ···

ଭିତରକୁ ଯାଇ ବାଟ ଘରେ ସେମାନେ ବସିଲେ । ଦୂରରେ ବସ୍ତା ଠିକ ସେମାନଙ୍କୁ ଦେଖାଯାଏ ।···ପୂର୍ବର ଭୁଲ୍ ଅର୍ଥକୁ ଠିକ୍‌କରି ଦେବାପାଇଁ ଯେପରି ମହନା କହିଲା···ହଁ, କ'ଣ ବାବୁଘର ଠଙ୍କା ଫେରେଇ ଦବା କଥା କହୁଥେଲ ?

ତାଙ୍କ ଘରେ କାମ କରିବ ବୋଲି ଠଙ୍କା ପାଞ୍ଚ ଟା ଆଣିଥେଲି···ଫେରେଇ ଦେଇ ଆଇଲି···

ଫେରେଇ ଦେଲ କାହିଁକି ?

ଆଉ ତୋ ଠଉଁ ଠଙ୍କା ନେଲି ଯେ···ମୁଁ କଣ ଆଉ ଦାନ ନେବି ତୋଠୁଁ ?

ମୁହଁରେ ହସ । ଖୁବ୍ ନରମ ସ୍ୱରରେ କହିଲା ମହନା···କଣ ଅଛି ସେଥିରେ ! ମୁଁ ତ ଜଣଙ୍କ ଠଉଁ ଦାନ ଆଣି ଏତେ କାରବାର ଫାନ୍ଦିଛି—ଜଣେ ଭିନ ଗାଁର ଲୋକ ଠଉଁ । ତମେ ବଡ଼ ଲୋକଙ୍କ ପାଖରେ ବଢ଼ିଚ ନା···

ଗୋକଳ ଭାବୁଥାଏ, ତାହାହେଲେ ମୋତେ ସେମିତି ଦେଇଦେଲା ପାଞ୍ଚ ଟା ଠଙ୍କା ମହନା !

ମହନା !

ବାବୁ କଣ ଆଉ କହୁଥେଲେ ଗୋକଳ ଭାଇ ?

ଭାରି ଖୁସି ହେଲେ । ମୁଁ କହିଲି ମୁଁ ମହନା ସାଙ୍ଗରେ କାମ କରିବ ।

ଏଇଠି ଅଟକି ଗଲା ଗୋକଳ । ହଜିଗଲଣି ତା'ର କହିବାର କଥାଗୁଡ଼ାକ ପବନରେ—ତଥାପି ତାହା ତାକୁ କଷ୍ଟ ଦେଉଚ ଯେମିତି । ସେ ମନେ ମନେ କେବଳ ଭାବିଲା, ସତ କଥା···ବଡ଼ ଲୋକଙ୍କ ପାଖରେ ବଢ଼ିଛି ବୋଲି ତାର ଏତେ ଦୋଷ !

ସେମାନଙ୍କର ଆଳାପ ବନ୍ଦ କରି ଏହି ସମୟରେ କଲିକତାର ରେଡ଼ିଓ ଷ୍ଟେସନରୁ ଯେପରି ବାର୍ତ୍ତା ପହଞ୍ଚିଲା...

ଏଇ ବାଡ଼ଟା କେମେସୋ ?

ସହସା ଉଦ୍‌ଗ୍ରୀବ ହୋଇ ଦୁଇଜଣ ଯାକ ଚାହିଁଲେ ବାହାରକୁ । ବାହାରୁ ଆଉ ଜଣେ ମଧ୍ୟ ଉଙ୍କି ମାରି ଚାହିଁଲା ସେମାନଙ୍କୁ । କହି ଉଠିଲା ଗୋକଳ ସିଂ...କ ହୋ, କଲ୍‌କତ୍ତ ନନା କୁଆଡ଼େ ? ଆସ-ଆସ-ଆସ ।

ଘର ଭିତରକୁ ଗୋଡ଼ ବଢ଼େଇ ମହାନ୍ତିଙ୍କ ଦେଖି ଶଙ୍କି ଉଠିଲା ପଦନ । ଗୋକଳ ପୁନର୍ବାର କହି ଉଠିଲା ଫୁର୍ତ୍ତିରେ... ଚହ୍ନିଛ ଆପଣ ମହାନ୍ତି ? ଏ ପଦନ ନନା—ଏକ ନମ୍ବର ଗୁଣ୍ଡା । ଦୁର୍ଗା ଯୋଉ ଟୋକାଟା ଆଣିନେଇ କଲକତାରୁ, ସିଏ ଆଙ୍କର ଫୁଙ୍କରେ ।

ମହାନ୍ତିର ଇଚ୍ଛା ହେଉଥାଏ, ଆପଣ ସେ ଚହ୍ନିଛି ବୋଲି କହନ୍ତା; କିନ୍ତୁ ସେ ପ୍ରମଥଗଣଙ୍କ ଭିତରର ବୋଲି କିଛି କହିବାକୁ ଠିକ୍ ମନେକଲା ନି । ଏହାପରେ ଗୋକଳ କହିଲା...

କୁଥାଇ ଆଓ୍ୟା ହଲ ନନା ?

ମହାନ୍ତି ହସି ଉଠିଲା ଏଥିରେ । ସେ ଥିଲା ଶଗଡ଼ିଆ । ବାଇଶିବର୍ଷ ଯାଏ ସେ ବୋହିଛି ଶଗଡ଼ । ସେଥିରେ ସେ କେତେ ଭାଷାର ଭାଷୀ ଲୋକଙ୍କୁ ଚିହ୍ନିଛି । ଆଉ ମଧ୍ୟ ସେ ଗୁହିଁପାଳ ବଙ୍ଗାଳୀସାହି ବାଟେ କେତେଥର ଯାଇଛି କୁମୁଡ଼ାହାଟକୁ । ତା'ର ବର୍ତ୍ତମାନ ମନେ ପଡ଼ିଗଲା ଗୁହିଁପାଳର କଥା—"ନୁନ୍ ପକେଇ ଦଅ ହଦ;" ସେ ପୁଣି ହସି ଉଠିଲା ।

ବଡ଼ ଫୁର୍ତ୍ତିବାଜ୍ ଲୋକ ପଦନ । କିନ୍ତୁ ଯେମିତି ହାରିଯାଉଥିଲା ସେ । ଠିକ ଏ ଭାବ ଚିନ୍ତି ସେ କହିଲା...ବାଂଲା ଭାଷାଟା କି ଅଶୁଦ୍ଧ ?

ଉତ୍ତର ଦେଲା ଗୋକଳ । କିନ୍ତୁ ତାର୍କିକ ମତରେ ନୁହେଁ, ନିଶଟାକୁ ମୋଡ଼ି ମୋଡ଼ି ତା'ର ଖିଆଲରେ...କିନ୍ତୁ ତୋମାକେ କେ ଶିଖେଇଥେଲ—ବାପ୍ ନା ମା ?

କଚ୍ଛପ ମୁହଁ ଯେତେବେଳେ ବାହାରେ ଏକା । ସେମିତି ଏ ପଦନଙ୍କର ମୁହଁ । ନାହିଁ ମାନ-ଅପମାନ ।

କୌଣସି ଭୟର ଚିହ୍ନ ପ୍ରକାଶ ନ କରି ମଧ୍ୟ ଖୋଳ ଭିତରେ ମୁହଁକୁ ଭର୍ତ୍ତି କରେ କଚ୍ଛପ—କେବଳ ଯାହା କ୍ଷିପ୍ରତା । ସେହିଭଳି ପଦନ ହେଲା ନିସ୍ତ୍ରାନ୍ତ । କହି କହି ସେ ଫେରିଲା...ଏଦେର୍ ବାଡ଼ିତେ ଆବାର୍ ଜାଫ୍ରାନ୍ କେଶର୍...

ତାହା ପରେ ସେ କିଛିଦୂର ଯାଇଁ ଉଚ୍ଛବକୁ ଭେଟିଲା । ତାକୁ ଦେଖି ଦେଖି ଅଭିଯୋଗ କରି କହି ଉଠିଲା...

ଆମି କି ଗୁମ୍‌କରନ୍ ବାବୁ କେ ବଲେଛିଲୁମ୍ ଯେ ଜାଫ୍ରାନ କେଶର୍, ଆଲ୍‌ବନ୍ଧା ଓଯବ୍ ଆମି ସଙ୍ଗେ କରେ ଏନେଛି । ଓ ମିଛ ମିଛି କେନ ଆମାକେ ଗାଲ୍-ଗାଲି ଦବେ...ଆମି ଆର୍ କାସ୍ତୁରତେ ଯାବେନା...

ଏହା କହି ନାନକାର ପଥ ଧଇଲା ପଦନ । ଉଛବ ତାହାକୁ ଅନେଇ ରହିଲା କେବଳ । ଘନ ଆକୁଳତାର ବ୍ୟଞ୍ଜନା ଧରି ଆପେ ପାଟିରୁ ତାହାର ବାହାରି ପଡ଼ିଲା•••ଆଉ କଣ ସାଗୁଆନ୍ତ ରହି ହବ ନେଇଁ•••

ତାହା ପରେ ନିଜର ହାତକୁ ଶୁଙ୍ଘି ସେ ଫେରିଗଲା କଟକକୁ ।

—ବାର—

ଲୋକଟି ଚୂଲିଯିବା ପରେ ମହନ ଆଉ ଗୋକଳ ଖୁବ୍ ତାନେ ହସିଲେ । ଦୂରରେ ବୁଲୁ ବୁଲୁ କହିଲା ମହନ ବୋଉ•••ମଲ୍ କ କଥା କହିଲା ମ—ସିଏ ?

ଭାଇକ ଏତେ ହସିବାର ସେ ଦେଖେନା । ଶ୍ରୀମତୀ ବ ଆସି ଅନେଇଲା ତା'ର ଭାଇକ । ଫେରି ଯାଉଁ ଯାଉଁ କହିଲା•••ଆଲୋ ବୋଉ, ସେ କଏ ?

ମୁଁ କଣ ଜାଣିଛି ଲୋ ଝିଅ•••ସେ କଏ ପିଆଦା ପୁଅ !

ହସି ହସି କହିଲା ଗୋକଳ••• କଲ୍‌କତ୍ତ ନନା । ନାନକାର ଦୁରୁଗା ସାଙ୍ଗରେ ଆଇଚ କଲକତାରୁ ।

ଆଲୋ ସିଏ ବଙ୍ଗଳା କହୁଥେଲା ଲୋ ବୋଉ, ବଙ୍ଗଳା । ମତେ ପର ସେମିତ ସେଦ୍ଦନ ସେ ସାଇ କୁଷ୍ଟିଆଁ କହିଲା, ମୁଁ ଯାଇଥା' ଦଅଣୀ ଦେଈକ ଦେଖିବାକୁ•••ମତେ କହୁଚ "କୁଥା ଆଇଚୁ"•••ହି-ହି-ହି-ଏ କ କଥା ମ !

ଯେପରି ଶ୍ରୀମତୀକୁ ଏଥିରୁ ନିବୃତ୍ତ କରିବାପାଇଁ ମହନ ତାକୁ ବଡ଼ ଆଣିବାକୁ କହିଲା । ଗୋଟା ଗୋକଳକ ବଢ଼େଇ ଦେଇ ବଡ଼ରେ ନିଆଁ ଧରିଲା ମହନ । ତାହା ପରେ ବଡ଼ ଟାଣି ଟାଣି ସେ କହିଲା•••ଉଛବ ମଉସା ସାଙ୍ଗରେ ସେତେବେଳେ ଇଏ ଯାଉଥା ଯେ, ମତେ ଦେଖି କଉଚ—ବେଟା କେ । ସତକା ମୁଁ ଜମା ଆ କଥା ବୁଝିପାରୁ ନେଇଁ ! କଟକ ଭଣ୍ଡାରୀ, ଦେଶକୁ ରଜା—ଖୁବ୍ ବାଲଙ୍ଗି ଏ ଲୋକର ।

ବଡ଼ଟାକୁ ଶୋଷି ନେଇ କହିଲା ଗୋକଳ•••ମଲା,. ମତେ କହିଲୁନୁ••• ଆଜିର ଅକଲ ଦେଇ ଦେଇ ଥାନ୍ତି ଟିକେ•••

ଆଉ କଣ ମିଳିବ, ଘୁମୁକରଣ ସାଙ୍ଗରେ ଆଇଚ, ପୁଣି କଣ ଯାଇ ଦ କଥା ଫୋଡ଼ିଦବ—ସହଜେ ତ ବୁଢ଼ା ମୋ ଓପରେ ତାତ୍ତକରି ରହିଚ•••

ଗୋକଳର ଏହିଖିଣି ଯେମିତି କଣ ମନେ ପଡ଼ିଚ ! ହଁ, କଣ ତ !

ହଁ ହଁ, କଣ ତୁ ବାଘୁଡି କଥା କହୁଥେଲୁ ମହନ ?

ହଁ, କହବ ଏଥର ଗୋକଳ ଭାଇଙ୍କ । ମୋର ବଶବସ୍ତା ବୋହୁଟ, ମତେ ତାର ଅଭାବ କଥା କହୁଚ—ଆଉ କାହିଁକି ଲୁଚେଇବ ମୁଁ ତାକୁ !

ହଁ, କଥାଟା ମୁଁ ତମକୁ କହବ ଗୋକଳ ଭାଇ, ଏକା ଘ୍ରମୁକରଣ ବାଧୁଣ୍ଡିଙ୍କି ବାଢ଼େଇଲେ ଆମେ କଣ କରିବା କହଲ ?

ବତାସ ବାଜିଲା ଯେମିତି ଦରନିଭା ନିଆଁରେ । ସେଥିରୁ ସ୍ଫୁଲିଙ୍ଗ ଉଠିଲା ପ୍ରଥମେ । ତାନେ ଟାଣିନେଇ ବଡ଼ଟାକୁ କହିଲା ଗୋକଳ···

କୋଉଠି ତମ ଘରେ ଠେଙ୍ଗା ଅଛି ଦେଖେଇଲୁ ?

ଆଖିରେ ନ ଦିଶିଲେ ବି ପବନ ଭିତରେ ସ୍ରୋତ । ବାଟ ଘର ଟପି ଅଗଣାକୁ ଚାଲିଗଲା କଥାଟା । କିଛି ନ ବୁଝି କହିଉଠିଲା ଶ୍ରୀମନ୍ତ ରୋଷେଇଘରୁ··· ତମେ ପା' ପାଣି ମଶଂପିବାକୁ କଇଥେଲ ଭାଇ, ମୁଁ ଏଇ ଚୁଲୀ ମୁଣ୍ଡରେ ରଖି ଦେଇଚି···

ଘର ଦ୍ୱାର ବୁଲି, ପୁଅର ସଂପଦ ସବୁ ଦେଖି, ବୁଢ଼ୀ ସେତେବେଳକୁ ପଡ଼ୋଶୀ ଧନିଆ ମା ଘରକୁ ଗଲାଣି ତାର ମନ କଥା, ପୁଅର ବଡ଼ିମା ସବୁ ଗପିବାକୁ ! ବାଟ ଘରେ ମହନ୍ନ ଆଉ ଗୋକଳ । ରୋଷେଇଘରେ ଶ୍ରୀମନ୍ତ । ଚୁରିଆଡ଼କୁ ଅନେଇ ମହନ୍ନ କହିଲା···କଣ କରିବ ତମେ ଠେଙ୍ଗାରେ ?

ଠେଙ୍ଗାକୁ ଠେଙ୍ଗା । ଯେମିତି ଥେଲା କୁସୁମପୁରର ହରି ପଛନା'କ । ତୋ ଘରେ ଖାଇବାକୁ ଅଛି—ମୁଁ ଆଉ ଡରିବ କହୁଚୁ ଏଥର କାହାକୁ ?

ଶଳାଙ୍କୁ ଅଣ୍ଡା କରିବ, ଗରିବ-ଗୁରୁବାଙ୍କୁ ସାବାଡ଼ କରି ସାଇଲଣି ହୋ ! ତୁ କଣ ଜାଣିଚୁ ମହନ୍ନ—ଓଃ, ମୁଁ ବି ସେଥିରେ ଭାଗୀ ହେଇଚି କେତେ । ତା'ର ପ୍ରାଶ୍ଚିତ କରିବ ଏଥର···

ଠିକ୍ ତ ଜାଫର୍ ଭାଇ ମିତ ! ଓସ୍କା, ତମର ସାଙ୍ଗ ଗୋଟା ମିଳଚ, ମତେ ଖାଲି ତମେ ମିଛରେ ଭଲ ପାଇଲ ଆଜଯାକେ । ହେଇ—ଗୋକଳ ସିଂ, ଆମ ଘରେ ବସି ସେ କଣ କହୁଚ ଶୁଣନ୍ତ କି···

ମହନ୍ନର ଭାବନାର ସ୍ରୋତରେ ଆଣିକଟ୍ ବସେଇ କହିଲା ଗୋକଳ···ଟଙ୍କା ଜମା କରି ତୁ କଣ କରିବୁ ମହନ୍ନ ? କୋଠା ?

ମହନ୍ନ ଏଥର କଥା କହିଲା···କୋଠା ! କୋଠା କଣ ହବ ଗୋକଳ ଭାଇ ? ବାପା ଏଇଘରେ ମରିଚନ୍ତି, ଏଇ ରୁଅ-ବାଉଁଶକୁ ଓପାସ ଭୋକରେ ଗଣି ଗଣି ସେ ଯାଇଛନ୍ତି, ସିଏ ସେମିତି ଥବ । ଖାଲି ଏ ଗ୍ରେର ଟସକରଙ୍କୁ ଡର···ମାଟି ନଦ ଆଟୁ ଖଣ୍ଡେ ଖଣ୍ଡେ କରିଦେଲେ···

ଆରେ, ସେ କଥାକୁ ମୁଁ କହୁନେଇଁ, କୋଠା କଲେ ତୁ ଆଉ ଅନେଇବୁ ନେଇଁ ଆମକୁ । କହବୁ ଦିନେ ଶଳା ଗୋକଳା । ମୁଁ ଦଖଣ୍ଡ୍ରା ଘର ଠଉଁ ତମ ବାବୁଘର ଯାକେ ସମସ୍ତଙ୍କ କଥା ଜାଣେ···କଣ କରିବ···ସବୁ ଖାଲି ଜଳକା ପରି ଦେଖେ ।

ଢ଼’ ତିନି ପୁରୁଷ ଆଗେ ସମସ୍ତେ କମ୍‌ ବେଶି ଆମରି ପରି ଗରିବ ଥିଲେ··· ଆଉ ସେଇ ମଣିଷ ଏବେ ବଦଳି ଯାଇଛି କୋଠାଘରେ ପଶି।···ତମ ଗାଁର କଣା-ମା ବୁଡ଼ୀ···ବାବୁଘର ତା’ ଘରଡିହ ଖଣ୍ଡିକ ବି ନେଇ ଯାଇଚନ୍ତି! ସାତଚରି କନାରେ ବୁଢ଼ୀର ଗାଣ୍ଠିମୁଣ୍ଡ ଗଳି ପଡ଼ୁଚି—ବାବୁଘର ତାକୁ କଥା ଦେଇଥିଲେ ତା’ ମରିବା ଯାଏ ପୋଷିବେ। କାହିଁ···କିଏ ପୋଷିଲି ତାକୁ? ଶେଷକୁ ତାଙ୍କ ଅମ୍ବାର ପିଣ୍ଡାରେ ଶୋଉଥିଲି, ସେଠୁ ବି ତାକୁ ବାହାର କରିଦେଲେ···ତୁ ସେଇ କୁମ୍ଭାଟୁଆ ବସାରେ ପଶିବୁ ମଦନ···!

କେହି କାନ୍ଦିଲେ ବି ଯେମିତି ଗୋକଳର କଥା ଗୁହୀଁ କରୁଣ ହେବନି, ବେଶି—ଏହିପରି ତାହାର ସ୍ୱର। ଯେମିତି ଅଞ୍ଜନ ଘୋରୁଚି ଗୋକଳ, ତା’ର ହାଓ୍ୟା ଲାଗୁଚି ମଦନର ଆଖିରେ, ସେଥିରେ ସୃଷ୍ଟି ହେଉଚି ଲୋତକର ଭ୍ରୂଣ।

ମଦନର ମନେ ପଡ଼ୁଚି ଜାଫର୍‌କୁ। ପଗ୍ସ ଚମଡ଼ା ଗାଡ଼। ବାପା ତା’ର ଆଗେ ଯାଇଁ ଧରିଲି ଜାଫର୍‌ର ଶଗଡ଼। ଗୃହୀଁ ଗୃହୀଁ ଜାଫର୍ କହିଲି, ସଚ୍ଚା ମଣିଷ। ତାର ମନେ ହେଲା, ଦୁନିଆଁଟା ଯେମିତି ଗୋଟା ପଗ୍ସ ଚମଡ଼ା ଗାଡ଼। ଜାଫର୍ ତାହାର ନମୁନା ଧରି ଗ୍ଲୁଥିଲି ସେତେବେଳେ—ତାକୁ ଖାଲି ସଚ୍ଚା ମଣିଷ ଠେଲି ପାରେ। ସେଇ ସଚ୍ଚା ମଣିଷ ବାପା ତା’ର ଆଗେ କାନ୍ଧ ଲଗେଇଥିଲି ସେଇ ପଗ୍ସ ଚମଡ଼ା ଗାଡ଼ରେ। ଆଉ ତା’ର ପୁଅ ହେଇ···

ଅପାପ୍ର ଅନ୍ଧକାରରେ ଘୂରିଗଲି କ୍ଷଣକ ପାଇଁ ମଦନର ଆତ୍ମା। ଦିନେ ଜାଫର୍ ଦେଖେଇଥିଲି ତାକୁ ପଥ—ନିଜକୁ ରକ୍ଷା କରିବା ପାଇଁ। ଆଜି ପୁଣି ସେ ଶୁଣୁଚି ଆଉ ଗୋଟା ପଥର କଥା। ସେ ଫେରି ଆସିଲି ଖୁବ୍ ନିକଟକୁ। ପାଖରେ ଗୋକଳ ଭାଇ, ଗୋକଳ ପିଆଦାର ମୁହଁରେ ସବୁ ବେଦନାର ସଂଜ୍ଞା।

କଣ କହିବାକୁ ଯାଉଥିଲି, ସବୁ ଭୁଲିଗଲି ଶେଷରେ। ତାହାର ପାଟିରୁ କଣ ବାହାରିଲି ସେ ଜାଣେ ନା। କେବଳ ଗୋକଳ ଶୁଣିଲି···

ଗୋକଳ ଭାଇ, ତମେ ପୁଣି ସେହିଆଙ୍କୁ ଆଜଯାଏ ପିନ୍ଧୁଥିଲ!

ଅପ୍ରକମ୍ପ ସ୍ୱର। ତାହା ଝରି ଝରି ଜମା ହେଲି ମଦନର କାନମୂଳେ।

କାହିଁ ମଲେ ତ ନେଇଁ···ପିଠି ପିଠି ହାତ ଥୋବରା ହେଇଚି···!

ମଦନ ଜାଗ୍ରତ ହୋଇ ସାରିଥିଲି ଏଥି ଭିତରେ। ସେ ଦେଖିଲି, ଗୋକଳ ସିଂ କଥା କହୁନେଇଁ। କୁଆଡ଼େ ଗଲି ସେଇ ପିଆଦା ଗୋକଳ ସିଂ?

ଠେଙ୍ଗା ନବ ପରି! ଏ ଠେଙ୍ଗାଟା ଖୁବ୍ ଭଲ ପାଚି ଯାଇଚି—ପାଣି ମରି ଯାଇଚି ବି ସବୁ।

ମଦନ ଅନେଇଲା। ଗୋକଳ ବି ଅନେଇଲା। ଦୁହେଁ ଦେଖିଲେ ଆଗରେ ଠେଙ୍ଗା ହାତରେ ଶ୍ରୀମନ୍ତ।

ଗୋକଳ ଉଠି ପଡ଼ିଲା।···ଦେ ଭଉଣୀ, ଦେ!

ତଳେ ଠୁକେଇ ନେଲି ଦି ଥର। ଝୁଲେଇ ପରଖି ନେଲି ହାତରେ। ତାହା ପରେ ଆପଣାକୁ କହିଲି ଗୋକଳ···ଠେଙ୍ଗା ନ ହେଲେ ଗୋକଳ ସିଂ!

ସେ ଆଜ  ଆଗେ ଯାଇ ବକଲ ବୋଉକୁ କହିବ ଆଗ  ଠେଙ୍ଗାଟା  ଜାଳି ଦବାପାଇଁ । ଆଜ ନୂଆ ଠେଙ୍ଗାର ଜନ୍ମ ।

ଥା' ମହନି । ଆଜ ବକଲ ବୋଉ ଯେଉଁ ଖଣ୍ଡେ କବଟା ନବାର  ଥେଲି ; ···ନାଃ,···ତମ ଜାଗାରେ କଣ ଗୁଣ ଅଛି ରେ ମହନି···

ବସ, ତମେ ଖାଲି ତମର କଥା କହି ଦେଇ  ଗୃଲଗଲ  ଗୋକଳି  ଭାଇ । ତାଙ୍କ କଥା କଛି ତ କଲ ନେଇଁ···

ମହନିର ଆଖିରେ ଖେଳୁଥାଏ, ହାଡ଼ଆ ଆଉ  ଗଧୁବା  ବାଘୁଣ୍ଡି  ଯେମିତି ନାରଣ୍ଡପୁ ବେଓ୍ୟାରସ୍ ଶିଶୁ ଭଳି କଟଗ୍ଗି ତଳେ ବସିଛନ୍ତି । ପାହାର ଛପିଚି  ପିଆଦାର ଠେଙ୍ଗାରେ । ପୁଣି କହିଲି ମହନି···

ତା'ହେଲେ ତ କଛି କାମ କରବାକୁ ଲୋକ ପାଇବୁ ନେଇଁ ଆମେ । ଆମ କାଠୁଆ ଖଣ୍ଡକ ଉଠେଇଲେ ବଲି ଯେବେ ବାଘୁଣ୍ଡି ମାଡ଼ ଖାଇବେ,  ତା' ହେଲେ ତ ମୁଁ ତାଙ୍କୁ କାମ କରେଇଚ—ମୁଁ  ମାଡ଼  ଖାଇବ,  ସିଏ  କାହିଁକ  ମାଡ଼  ଖାଇବେ ? ଗୋକଳି ଭାଇ, ତମେ ଥା, ମୁଁ ଫେରଲେ ଆମେ ସାଙ୍ଗ ହୋଇ  ଖାଇବା —ହଁ, ତମେ ଆଜ ଏଠି ଖାଇବ । ମୁଁ ଯାଉଚ ଗ୍ଗୁମୁକରଣଙ୍କ ପାଖକୁ···

ଏହା କହିବା ଭିତରେ ଠିଆ ହୋଇ ପଡ଼ଥିଲି  ଯହନି  ।  ତାହାର  ପିଠି ଥାପୁଡ଼େଇ ହସି ହସି କହିଲି  ଗୋକଳି···ପାଗଲ,  ତୁ  କେଇଥର  ମାଡ  ଖାଇବୁ ? ତୋ ପିଠି କ'ଣ ଘର ଟାଣ ?

ଠେଙ୍ଗାଟାକୁ  ତଳେ । ଠୁକେଇ  କହିଲି  ପୁଣି  ଗୋକଳି···ଏକାବେଳେ ମାଡ଼ ବନ୍ଦ କରଦବ ଏଇ  ମା'ପୁରୁଷ ।···ହୁଁ  ଆଜ  ଦନକ  ମାର  ଦେଇ  ଯିବେ, ତା···ବାଦେ ଦେଖିବୁ ତ ଓଲ୍‌ଟିବ ! ତୋ ଘରେ ଖାଇବାକୁ ଅଛି, ମୁଁ  ଆଉ  ଡର ବ କହୁଚୁ ମହନି ? ମୁଁ  ସବୁ  ଭାବଚ, ହେଲେ କଣ କରବ, ଏଣେ ପାଞ୍ଚଟା  ଟଙ୍କା  ପେଇଁ ମୁଣ୍ଡ ବକ ଦେଇଥା···

ଏହି ସମୟରେ ବାଡ଼  ଆଉ ପାଚି କର କର ମହନି ବୋଉ ପହଞ୍ଚିଲି···

ଆରେ ମହନ, ଆରେ ପିଆଦା ପୁଅ, ତମେ ସବୁ  ବଇଚ  କଣ  ଏଠି— ଟେକର ନାଆଁକ ଉଛନ କର ସାଇଲଣି । କାଳଆ  ଗରୁଡ଼  ସିଏ,  କା'କୁ  ରଖିବ । ଯା'  ମ'  ଯା'  କୋଡ଼ଏଟା  ଟଙ୍କାକୁ କେତେ ଦରବ ବୋହି ନେଇ ଯାଉଚନ୍ତି  !  ମଲା, ତା' ଘଚ ହାଣ୍ଡି ପଗ ଦୁରୁଗା  ଘରେ ଆଣି ରଚନା ମା ଥୋଇଦେଇ  ଗଲି  ।  ଯା'  ମ ଯା । ମଧୁ ନା'କ ତ ସବୁ  ଧରବ  ବଲି  କହୁଚ···ମାସ କେଇଟା ତଳେ ନୂଆ କବାଟ ହଳେ ନଗେଇ ଥେଲି···କ ବେମାଗ୍ଗି ପଇଲି,···ଶେଷକୁ  ସେ  କବାଟ  ହଳକ  ଛାଡ଼ ନେଇ ଗଲେଣି । ଆରେ ଯା' ମ,—ଅନେଇଚୁ  କଣ ।  ଭଲ  କବାଟ  ହଳେ— ତମେ ଘିଛି ଆସିବ ଯା' ମ ! ବଢ଼ିବ, ଜମା ଛୁଡ଼ବ ନେଇଁ—ଅବୁଝୁବାଏ  ସୁନା  ମୋହର ତ ଆମର ଅଛି !

ଲଙ୍କାରେ  ହରନାମ  ଭଳି  ବେଓ୍ୟାରସ୍  ହୋଇ  ପବନରେ  ଉଡ଼ବାକୁ ଲାଗିଲି ବୁଢ଼ୀର ଉପଦେଶ—କେବଳ ମୁଖ ପାଇବାକୁ ଲାଗିଲି ତାହାର ସମ୍ବାଦ ।

ଶଗ୍ କଦଳୀ ପତ୍ରର ପବନରେ ପଟ୍ ପଟ୍ ହେଲ ଭଳ କହ୍ୱ ଉଠିଲା ଗୋକଳ—ଖଣ୍ଡ ଖଣ୍ଡ ଯେମିତି ତାହାର ଅନ୍ତର···ସତେ ତ, ଚପଗସି ଗୋଟା ଚଉପାଡ଼ିରେ ଥୋଇ ସକାଳେ । ମୁଁ ଭାବିଲ କୋଉଠି ଶମନ ଫମନ ଦବାକୁ ଆଇଚ । ମୁଁ ଯାଉଚ ମହାନ – କୋରଖି ବନ୍ଦ କରୁଚ ମୁଁ । ଟଙ୍କା କୋଡ଼ଏଟା ତୁ ଘରକର—ହଁ, ଖରଗ୍ ଫରଗ୍ ପେଇଁ ଆଉ ପାଞ୍ଚ୍ଟା···

ହାତର ଠେଙ୍ଗା ହାତରେ । ପାଦରେ ପାଗଳ ହୋଇ ଉଠିଲା ଗତି । ଜଦନ୍ତ ଜାଗ୍ରତ ରୂପ ଧରି ଗ୍ଲଲଗଲା ଗୋକଳ ।

## —ଜେର—

ଓ, ଜମା କାଲର କଥା !

ନାଗୁଣୀ ବାଡ଼ରେ ତାଡ଼ ଦେଇଥିବା ଖଣ୍ଡିଆ ଭୂଇଁ ଯେମିତି ଗ୍ରହିଁଚ୍ଛ—ମସ୍ତିଷ୍କର ସ୍ମୃତି-କୋଷ ଯେପରି ଆଲୋକରେ ହଜୁଚ ଗ୍ଲୁମୁକରଣଙ୍କର । ଆଜ ଖଣ୍ଡେ ବଙ୍କୁଲ ବେତ ବାଡ଼ ତାଙ୍କ ହାତରେ ।

ହଁ, କାଲର କଥା ତ !

ମନେପଡ଼ଲା ଇଉକାଲପଟାସର ବାସ୍ନା ହାତ ମାରଦେଲେ ପକେଟ୍‌ରେ । ହୁଁଃ, ଶଳା ବାଞ୍ଛୁ ପଇଡ଼ା ଶୂନ୍ ଟାରେ ମାର ନେଲ ଶହେ ଟଙ୍କା !

ସଫା ସୁତୁରା ହୋଇଚ୍ଛ ହତା । କାଲର ସେଇ ଗ୍ଲଲ ଓଲଟ ନଡ଼ାର ବ ସତ୍କାର ହୋଇଚ । ହତାର ଗୋଟା କଣରେ ଜଳୁଚ ସେଇ ଆବର୍ଜ୍ଜନାର ଶବ । କୁହୁଳର ନିଃଶ୍ରେଣୀ ଚଢ଼ ସେମାନଙ୍କର ଆତ୍ମା ଉଠୁଚ ସ୍ୱର୍ଗକୁ ।

ସେଇଠାରେ ବୁଲୁ ବୁଲୁ ଗ୍ଲୁମୁକରଣ ଡାକ ଉଠିଲେ···ଆନ୍ଦା, ଆରେ ଆନ୍ଦା···

ସେ ନୂଆ ମୁତଇନ୍ ପିଆନ୍ଦା । ତା' ସଙ୍ଗରେ ଆଉ ଜଣେ ନାନକଆ ବାଘୁଚ, ଡମା । ଘରେ ବସି ଗ୍ଲଉଳ ମହର୍ଗ କରୁଥିଲା ଆନ୍ଦା । ଧନାକେତେ ଚନ୍ଦ୍ରପୁର ଡାକଘରେ ବଳେ ପଶି ମୋହର ପିଟୁଥିଲା ଚିଠିରେ । ସାହସରେ ଘର । ନାନକାର ମାହାନ୍ତସାହିକୁ ସାହସପୁର କୋଶେ ବାଟ ହେଲେ ବ ନାନ୍‌କାକୁ ଖୁବ୍ କମ୍ । ନାନକା ମଉଜାର ସରହଦ୍ ଛୁଇଁଚ ସାହାସପୁରକୁ—କେବଳ ପଟାମୁଣ୍ଡାଇ କେନାଲଟା ମଝିରେ ମିଳନର ବାଟ ଓଗାଳିଚ୍ଛ । ଉଚ୍ଛବର ଧରମ ଭଣଜା ସେ ।

ବିପତ୍ନୀକ ହେବା ପରେ ଉଦ୍ଧବ କାଳେ ଆନନ୍ଦର ମା'କୁ ଭଉଣୀ ଡାକି ପତ୍ନୀ ରୂପରେ ବ୍ୟବହାର କରିଥିଲା କିଛିଦିନ । କିନ୍ତୁ ବାହ୍ୟତଃ ସେମାନେ ଭଉଣୀ ଓ ଭାଇ । ସେହି ଭଉଣୀର ପୁଅ ଆନନ୍ଦ । ଉଦ୍ଧବ ତାହାର ମାମୁଁ । ଆନନ୍ଦ ଅବିବାହିତ । ବୟସ ହେବ ପଚିଶ ।

ଆନନ୍ଦ ବଦଳରେ ପହଞ୍ଚିଲା ଆସି ଉଦ୍ଧବ । ତାହାର ସେହି ବାସ୍ନା ହାତକୁ ମଳି ମଳି ସେ କହିଲା···ମସଲା ତ ଖୁବ୍ ବାସୁଚି, ଭାରି ଖୁସ୍‌ବୋଇ···ସେଇ କେଶର ମସଲା ନ ହେଲେ କଣ ହବ ନେଇଁ···

କୁଆଡ଼େ ଗଲା ପଦନ ?

ସିଏ କଣ, ଆଉ ଅଛି ! ତାକୁ ତ କିଣ କହିଲ ବୋଲି ସିଏ ଯାଇ ନାନକାରେ···

ହୁ, ଆଗୁ, ଆଗୁ, ତୁ ଗୋଟା ନାଟ ନଗେଇଚୁ ଉଦ୍ଧବା । ପୁଅ ତ ହେଲା ଭାଉଁଆ, ତା' ସାଙ୍ଗରେ ଆଜିର ଗୋଟା ଆଣି ଘରେ ପୁରେଇଚୁ । କରେ, ବୋହୂକୁ ଆଣୁନୁ କାହିଁକି ? ଗୋଟା ସୁଆଙ୍ଗ ନଗେଇଛନ୍ତି ଗାଁ'ରେ । ଆଉ କହିବେ ମହନା ଘରେ ପଠାଣ ପଡ଼ିଚି··· । ଶଳା ବାର ଛଦ୍ମ ବାହାର କରିବେ, ମଣିଷକୁ ବାରବାଟେ ଖରାପ କରିବେ । ହଇ ରେ; ବୋହୂରହାରମାଳିଆ ଗୀତ ଶୁଣୁଚୁ ନା···! ଦେଖୁଚ ଆଜି, ଶଳା ଯେଝା ହାତରେ ଚଉଦପା ହେଇଚନ୍ତି···

ତା' ଉପରେ ଗୋଟା ତାଲ କଟିବ ବୋଲି ଉଦ୍ଧବ ଜାଣି ନ ଥିଲା । ସେ ଶୂନଟାକୁ ନାକ ପୋଛି ପୋଛି ଗୁଣୁ ଗୁଣୁ ହୋଇ ଫେରିଲା—ଏମିତି ତ ବାସେ ସାଗୁଆଡି ସମଲ···କୋଉଠି ସବୁ କେଶର ସମଲ ଖାଇଗଲେ, ଆଉ ଇଏ ପାଇଲେ ନେଇଁ···

ପଛେ ପଛେ ଗୁମୁକରଣେ ଫେରିଲେ ବାଡ଼ି ପାଖର ପିଣ୍ଡାକୁ । କୁଆଡ଼େ ଗଲା, ମୂଷା,···ମୂଷା ?

ତେଲ ଆଉ ଧଣିଆ ବଟା ଦେଇ ମାଂସ ଦଳୁଥାଏ ଆନନ୍ଦ । ସେଠି ଯାଇଁ ଠିଆ ହୋଇ ସାରିଛି ଉଦ୍ଧବ । ମାଂସରେ ଆଖି ରଖି ସେ ଉତ୍ତର ଦେଲା···ତମେ ପା' ବାବୁ-ଘରକୁ ପଠେଇଚ ତାକୁ···

ତୁ ଯା, ତୁ ଯା, ତୁ ଗଲୁ ଉଦ୍ଧବ, ଠିକ୍ ବାରଟାରେ ଭାସ୍କର ଆସି ପହଞ୍ଚିବ – ଯା, ଯା, ବାଲୁ ମିଶ୍ରକୁ ଡାକି ଆଣିବୁ । ଆଉ ଯା ବାସନ କୁସନ ଦରକାର ସବୁ ଏକାଥରେ ଘେନି ଆସିବୁ । ଓମାକୁ ନେଇ ଯା'···ନାଇଁ, ନାଇଁ, ଆରେ ବାଘୁଣି ବାସନ ଛୁଆଁ ତ ?···ନାଇଁ ନାଇଁ ସିଏ ଯାଉ ଭଣ୍ଡାରିକି ଡାକି ଆଣିବ । ଏ ଶଳା ମଣିଷକୁ ଅଭବ୍ୟ କରିବେ ଆଜି··· । ଯା, ସାଗୁଆଡି ତ ଖାଇବୁ ଆଉ ଏମିତି ଅନଉଚୁ କାହିଁକି ତାକୁ··· ? ଠିକ୍ ବେଳେ ଶଳା ଚିତା କାଟି ଦେଇ ଗଲା—ଆନନ୍ଦ, ତୁ ଠିକ୍ ଗୋକଳା ପରି କାମ କରିବୁ, ହଁ, ଗୋଟା ଟଙ୍କା ତୋର ବଢ଼େଇ ଦେବ କହୁଚି···

ଗୋକଳା ବି ଦିନେ ଏହିପରି ଘୋଷଣା ଶୁଣିଥିଲା । ଯୁଦ୍ଧ ବଜାରରେ ବି ତା' ଗଣ୍ଠି ଫିଟିଲା ନା । କିନ୍ତୁ ଆନନ୍ଦ ବିଚାରି ଭାବିଲା, ଗୋକଳା କାମ କରୁଥିଲା କେମିତି !

ନୂଆ ନ ହେଲେ ବି ଅପ୍ରତ୍ୟାଶିତ । କେବେ ଥରେ ଦି ଥର ଖାଇବାକୁ ଦେଇଥିଲେ ଭାସ୍କରବାବୁଙ୍କୁ ଗ୍ରାମୁକରଣେ ଅନେକ ଦିନ ତଳେ । କିନ୍ତୁ ଦକ୍ଷିଣରାୟ ଥିଲା ବେଳେ ସେ ଅନେକ ଥର ନିମନ୍ତ୍ରିତ ହେଉଥିଲେ ଏବଂ ବିନିମୟ ହେଉଥିଲା ମଧ୍ୟ ନିମନ୍ତ୍ରଣର । ଆଜିର ଗ୍ରାମୁକରଣଙ୍କର ଏ ଆମନ୍ତ୍ରଣ ସଂପୂର୍ଣ୍ଣ ନୂତନ । ପର୍ବ-ପର୍ବାଣୀ ନୁହେଁ କି ଉତ୍ସବ ନୁହେଁ, ଗ୍ରାମୁକରଣଙ୍କର ଇଚ୍ଛା କି, ସେ ମୁହଁ ବାନ୍ଧି ଦେବେ ଭାସ୍କରଙ୍କର । କିଛି ଯଦି ଭାସ୍କର ଶୁଣିଥାଏ ଗୋକଳାଠାରୁ ! ଯଦି କାହାକୁ ଗ୍ରାମୁକରଣେ ଡରନ୍ତି ଏ ଗାଁରେ, ସେ ଭାସ୍କର ନାୟକଙ୍କୁ । ଭାସ୍କର ନାୟକ ଶିକ୍ଷିତ ଧନୀ । ସେ ପ୍ରଭୃତ୍ତିଶାଳୀ ଏବଂ ପ୍ରଭାବବାନ୍ । ତାଙ୍କ ସଙ୍ଗେ ବସା ଉଠା କଂଗ୍ରେସ ବାଲାଙ୍କର । ମିଳାମିଶା ବାବୁଭାୟାଙ୍କର ! ଘରେ ତାଙ୍କର ହାକିମ ହୁକୁମାଙ୍କର ରହଣୀ । ପୁଲିସଙ୍କର ଆଡ୍ଡା ଯାଗା ତାଙ୍କ ଚଉପାଢ଼ୀ ।

ଭାସ୍କର ଦେଖିଲେ ଏ ଗୋଷ୍ଠୀ ସୁଯୋଗ—ସୁବର୍ଣ୍ଣସୁଯୋଗ । ଯେତେହେଲେ ଜଣେ ଗ୍ରାମୁକରଣ, ସେ ପୁଣି ମୋ ଗୋରୁକୁ ପଠେଇବ ଅରଖପୁର କାଇନ୍ ହାଉସ୍‌କୁ !···ଏହା ଏକ ସ୍ୱୟମାଗତ ସୁଯୋଗ । ମିଶିଯିବ ମୁଁ ଗ୍ରାମୁକରଣ ସାଙ୍ଗରେ । ମିଶି ମିଶି ତାଂ ବସାରେ ବସେଇ ଦେବ କାଣ୍ଡିଆ ।

କୂଟନୈତିକ-ମିଳନ । ଯେପରି ମଲ୍‌ତୋଭ୍ ଯିବେ ବର୍ଲିନ୍ କିମ୍ବା ରିବେନ୍‌ଟ୍ରପ୍ ଯିବେ ମସ୍କୋ । କିମ୍ବା ଯେପରି ଆଫଜଲ୍ ଖାଁ ଆଉ ଶିବାଜୀଙ୍କର ସାକ୍ଷାତ । ତଥାପି ଏହା ଏକ ନୂଆ । ଗୁରୁତ୍ୱ ଏହାର ଭିନ୍ନ ଏବଂ ସଂକୀର୍ଣ୍ଣ ।

ଦିପହର ବେଳେ ବାବୁଘରେ ଦି ଜଣ ଗୁଲିକର ଦି ଖଣ୍ଡି ଚୌକି ନେଇ ଆସି ପହଞ୍ଚିଲେ କଚେରିରେ । ବାବୁ ଆସିବେ—ତାଙ୍କର ଆସନ, ଆଉ ଖଣ୍ଡେ ଗ୍ରାମୁକରଣଙ୍କ ପାଇଁ । ସାଗୁଆନ୍ କାଠରେ ବେତର ବୁଣାଟ୍—ନୂଆ ପୁରୁଣାର ଉଣେଇଶ-ବିଶ୍ ତଫାତ୍ ।

ହଁ ବାବୁ ଆସିବେ, ମାଂସ କେମିତି ହେଲା ହୋ ବାଲୁ ?

ବାଲୁ ଅନେକ ବେଳୁ ଆସି ଝୋଷେଇ ବସେଇଛନ୍ତି । ବର୍ତ୍ତମାନ ଜାଳ କମେଇ ଦିଆ ହେଇଚି—ରଙ୍ଗ ଧରି ଆସୁଚି ଝୋଳ । ହୋଇ ଗଲଣି ବି କାନିକା । ପିତଳ ଗୁନଚରର ଝୋଳ ଦେଖେଇଲେ ବାଲୁ ମିଶ୍ରେ ।

ଟିକେ ଚୁଖିବାକୁ ଦିଅ ହୋ, ଆମେ ଦେଖିବାରୁ କଣ ପାଇବୁ ।

ଥାଳିଆରେ ଝୋଳ ଢାଳି ଦେଲେ ମିଶ୍ରେ । ମାଂସ ଖଣ୍ଡେ ।

ଆଉ ଖଣ୍ଡେ ଦିଅ ହୋ···

ଟିକେ ଭିନିଗାର୍‌କୁ ତ ଇଏ ଅନେଇଚି ଆଉ···

ଜିହ୍ୱାରେ ନୂତନ ସ୍ୱାଦ ପୁଣି ନୂତନ ଶବ୍ଦ ଶ୍ରୁତିରେ ।

ଭଲଗାର କଣ ହୋ ? ଋଷି ଗୋଟିକେ ବାକ୍ୟ ଗୋଟିଏ । କାଲପଟସ୍ ।
ଜାଫ୍ରାନ୍ କେଶର୍, ଭଲଗାର୍, ଆଉ କଏ ଆସି କହିବ ଶୃଙ୍ଗାର୍ । ସବୁ ବଗଡ଼ିବାର ଯାକ ଏଇଠି । ତମେ ବି କଲକତ୍ତା ନା ?…ଭଲ ତ ଲାଗୁଚ, ଆଉ କଣ ! ଆଉ ଟିକେ ପାଣି ମର ଯାଉ…

ଏତିକବେଳେ ଯୋତା ଶବ୍ଦରେ ଚଞ୍ଚଳ ହୋଇ ଉଠିଲେ ଗ୍ରାମୁକରଣେ । ହାତଧୋଇ ପକେଇ ଆସି ପହଞ୍ଚିଲେ କଚେରି ଘରେ ।

ବେପରୁଆ ଭାବରେ ପାଟି କରି କରି କଚେରିରେ ଆସି ପହଞ୍ଚିଲେ ଭାସ୍କର ନାଏକ । ପାଦରେ ମଚ୍ ମଚ୍ ହେଉଚି ଯୋତା । ଲୁଗାର ପିନ୍ଧା ଲୋଟି ଯାଉଚି ତଳେ । ଯେପରି ଅନେକ ଲୋକଙ୍କର ବସ୍ତ୍ରହରଣ କରି ଏ ଲୁଗାକୁ କରି ହୋଇଛି ଅନେକ ବଡ଼ । ପେଟ ବି ବଢ଼ିଛି । ତା' ଉପରେ ସ୍ପୋର୍ଟିଂ ସାର୍ଟ—ଋଜେନ୍ଦ୍ରୀଉଡ଼୍ ଓ୍ୟାର ସମ୍ଭାଳି ଷ୍ଟିଲ୍ କନାରେ ତିଆରି । ରଙ୍ଗ ଆକାଶୀ ନୀଳ । ଓଡ଼ିଶା ଟେକ୍ସଟାଇଲ୍ସରୁ ଖରିଦି । କଟକ ତିଆରି—ସମ୍ପୂର୍ଣ୍ଣ ଦେଶୀ । ପ୍ରାୟ ଖଦଡ଼ର ତଳକୁ ଏହାର ସ୍ଥାନ । ସେଥିପା ବି କହନ୍ତି ଭାସ୍କରବାବୁ । ଶେଷକୁ ଆହୁରି କହନ୍ତି ସେ…ଚୁଣି ଚପ୍ । ମାନେ ଶସ୍ତା ।

ପୁଅକୁ ବର୍ତ୍ତମାନ ଅଠର ବର୍ଷ । କୌଣସି ହାଇସ୍କୁଲ୍‌ରେ ପଢ଼େ କଟକରେ । ଘରେ ଆଉ ଗୋଟିଏ ଶ୍ରେଷ୍ଠ ପୁଅ—ବର୍ଷ ଆଠ । ମଝିରେ କେତୋଟି ଆସି ବାହୁଡ଼ିଛନ୍ତି—ସବା ଉପର ଝିଅଟି ମଧ୍ୟ ସ୍ୱର୍ଗତ । ବଡ଼ ପୁଅର ବ୍ରତ ବେଳକୁ ଏହି ଭାସ୍କର ନାୟକ ଦାନ କରିଥିଲେ କଂଗ୍ରେସ ପାର୍ଟିକୁ ଏକଶତ ଟଙ୍କା—ଆଠ ବର୍ଷ ତଳେ । କଂଗ୍ରେସ ପାଇଁ ଭୋଟ ଦେବାକୁ ପ୍ରଚାର କରିଥିଲେ ସେ । ଠିକ୍ ଯେତେବେଳେ ଗୃହଳଥିଲ ବାଲେଶ୍ୱରରେ ନିଶାନିବାରଣ ଧୂମ୍ କଂଗ୍ରେସ ମନ୍ତ୍ରୀଙ୍କର, ସେତିକବେଳେ ଅବକାରୀ ଦୋକାନ ସବୁ ଏ ଅଞ୍ଚଳରେ ନିଲାମ୍ ନେଇ ସେ ହେଲେ ନିଶାରେ ମସ୍‌ଗୁଲ । କିନ୍ତୁ ସେ କଂଗ୍ରେସପନ୍ଥୀ । କେବେ ଏ ଅଞ୍ଚଳରେ ସଭା ହେଲେ ସେ ହୁଅନ୍ତି ସଭାପତି ।

ଚଉକିରେ ବସି ପଡ଼ି ଭାସ୍କରବାବୁ କହିଲେ…

ଜାଣିଲେ ଗ୍ରାମୁକରଣେ, ଆଜି ଗୋଟା ନୂଆ କଥା ହେଲା ଏ ଗାଁରେ ।

ମୁହଁରେ ଉଦ୍‌ଗ୍ରୀବତା । ଆଖିରେ ଜିଜ୍ଞାସା ।

…କଣ ?

ଏଇ ଆପଣଙ୍କର ଗୋକଲା, ବାହାରି ଯାଇ ନେଇଁ, ସିଏ ଆଜି କଲା ଗୋଟା ଖୁବ୍ ତାରିଫ କାମ ।

ଭୟ ହେଲା ଗ୍ରାମୁକରଣଙ୍କର । ସେଇ କଥା କି !

…ଆଜି ରତନ୍ ନା'କର ଲୋକ୍ ଆସିଥିଲେ, ତାଟି କବାଟ ସବୁ କାଢ଼ି ଥିଲେ ଆମର ଲୋକେ—କଣ ଆଉ ଅଛି ତାଙ୍କର, ନ ଦେଲେ ତ ନ ହୁଏ; ଶାଳେ ସେଇଥିରେ କେବେ ଆମର ବାଚ୍ଛୁଗଣ୍ଠା ପଶିଗଲେ ତାଙ୍କ ବାଡ଼ରେ, ମା, ଭଉଣୀ ନେଇ ଶୋଧିବେ…

ହଁ, ସେଇଆ ବୁଝେଁ ଆଉ କଣ, ଖାଲି ପାଟି କରେନ୍ଦ୍ର ତ…

ସେଇଟୁ କଣ ହେଲା ଶୁଣନ୍ତୁ…

ଘୁମୁକରଣେ ଡାକ ଉଠିଲେ···

ପାନ ଆଣ୍‌ରେ ମାଳା···

ଥାଳିଆରେ ପାନ ଆଣି ଥୋଇଲା ମାଳା ଭଣ୍ଡାରୀ ।

···ହୁଁ, ଶଳାତ ଏକ୍ ଠେଙ୍ଗା ଧରି ତ ହାଜର ଗୋକଳାନନ୍ଦ । ଚପରାସିକି ଧରି ଯାଇଁ ଚଉପାଢ଼ୀରେ—"ହଉ ରଫା କରି, ମୁଁ ଟଙ୍କା ଆଣି ଦଉଚି ।" ତା' ପରେ ଲମ୍ବ ହୋଇ ଗୋଡ଼ ତଳେ, "ଗରିବଟାକୁ ରକ୍ଷାକରନ୍ତୁ ।"···କଣ୍ ଏଥିରେ ଆମରୁ ଫାଇଦା ଅଛି କହିଲେ ଘୁମୁକରଣେ, ଏଣେ ଅସଲରୁ ଡବଲ ଗଡ଼ିଲେ ଆମେ ମଲୁ, ଏଣେ ନାଲିସ୍ କଲେ ହେଲୁ ଦୁଷ୍‌ମନ୍ । ତେଣେ ଘରେ ଟଙ୍କା ରଖିଲେ ଶଳା ମଡ଼ ପରି ଘେରିଲେ । ଗଲେ ଆମ ଘରକୁ, ବାଢ଼େଇଲେ ଗୋଟା ଅଧଲ୍ ବାହାରିବ ହେଲେ— କଣ୍ ରଖି ଦଉଚନ୍ତି, ଫେର୍ ମୋ ନାଁରେ ଧୂଳି ଉଡ଼େଇ ଧରମକୁ ଡାକିବେ ଇଏ··· । ଲୁହ ନା, ଲୁହ ନା ଏମାନଙ୍କର ଜଞ୍ଜାଳ । କହିଲେ, ରଫା କରିବାକୁ ମୋର କଣ ଅରାଜି ! ହେଲା, ଠଣ୍ ଠାଣ୍ ଆଣି ଟଙ୍କା ଗଣି ଦେଲା—ଗୋକଳା ।

ୟାଁଃ, ଗୋକଳା ଟଙ୍କା ଗଣି ଦେଲା ? କଣ ସେ ଶତ୍ରୁଙ୍କ ସାଙ୍ଗରେ ମିଶିଲାଣି କି ?

ଶୁଣନ୍ତୁ, ମରମ ଅଛି ତା'ର । ମୋ କଡ଼କି ବି ଯାଇଥିଲା ଆଜି ଗୃହକର୍ମ ପେଇଁ, ଗୁମାସ୍ତା ଠଉଁ ଟଙ୍କା ଆଣି, ପୁଣି ତାକୁ ନେଇ ଫେରେଇ ଦେଇ ଆସିଛି···କମି ଯିବ ହେଲାଣି କି ତା'ର୍······

ଟିକେ ଦମ୍ ନେଲେ ଭାସ୍କରବାବୁ । ଏହି ଅବସରରେ ଘୁମୁକରଣେ କହିଲେ···

ତା' ହେଲେ ?···

କଥା ଜାଣିଲେଣି, ଯାଇ ମହନା ମାଙ୍ଗରେ ମିଶିଚି । ଏ ସବୁ ଟଙ୍କା ତା'ରି ।

ଏଁ, କଣ କହୁଛନ୍ତି ? ମହନା ଏମିତି ଖଇରାତ୍ କରି ବସିଲାଣି··· ?

ହସି ହସି କହିଲେ ଭାସ୍କରବାବୁ,—କଲାଣି କି ଆଉରି କରିବ । ଏ ଗୋକଳା ସିଂ ତାକୁ ସତ୍ୟାନାଶ କରି ଛାଡ଼ିବ ।···ମୁଁ ଯେତେବେଳେ ଶୁଣେ ଏ କଥା, ଖୁବ ଖୁସି ଲାଗିଲା । ଠିକ୍ ବଣିଆ ଜୁଟିଚି···ଶଳା ଫୁଙ୍କରେ ଫୁଙ୍କରେ ଉଡ଼େଇ ଦବ । ଯାଉ, ଯାଉ, ଶଳା ଶତ୍ରୁ ହୋଇ ଛୁଡ଼ା ହେବେ ଯେତେ···ଠିକ ହୋଇଚି ।

ଶଳା କଣ କମି ଆସୁ କରୁଛନ୍ତି ଏ ବାଘ ହରଡ଼ ବକ !··· ଏ ଯୁଦ୍ଧ ତ ହେଲା ଖାସ୍ ତାଙ୍କର ପେଇଁ···

କିଛି ସମୟ ପରେ ଘୁମୁକରଣେ ପୁଣି କହିଲେ···

ଦେଖିଦବାକି ଯେନେ ସେ ଟୋକାକୁ ?

କେମିତି ?

ମଲା, ମୁଗ ବାଘ ଭିତରେ ଧାନ ପଠଉଚି ବୋଲି ଅଟକେଇ ଦବା ଯେନେ ।

ନାଇଁ, ନାଇଁ,···ନାଇଁ, ସେଥିରେ ପଶିବେ ନେଇଁ ଆପଣ । ସେ କାଦର ଖାଁ

ପୁଅ ଅଛୁ ତା ସଙ୍ଗରେ । ଆଉ ବ ଯୁଟିଲ୍ଣି ଗୋକଲା । ଶଳା ସବୁ ଚଣ୍ଡ । ହୁଏ ତ କଛୁ ସତ୍କାର୍ଯ୍ୟ ନାଁରେ ତା ଠୁଁ ଆଣିହବ ।···ହଁ, ସତ୍କାର୍ଯ୍ୟରେ ଆଉ ଦବ କଣ ସିଏ । ଗୋଟା ତ ପଣ୍ଡିତ ହେଇ ଗଲ୍ଣି ସିଏ କାଦର ଖାଁ ପୁଅ ସାଙ୍ଗରେ ପଢ଼ି । ହୁଁଃ, ମୁଣ୍ଡରେ ହଲଧାଗୁଣ୍ଡା ପଡ଼ନେଇ, ପୁଣି କଥା କେଡ଼େ ।···କଣ କହୁଚ ଜାଣିଚନ୍ତ···ହୁଙ୍ଗୁଲେଇ ମାଢ଼ନା ପେଇଁ ତାକୁ କୁଆଡ଼େ ଗୁନ୍ଦା ମାଟିଲେ ଯେ, କହଲ, ସେ ହୁଙ୍ଗୁଲେଇ ଫିଙ୍ଗଲେଇ ମୁଁ ଜାଣେ ନା; ଗଖବ ଗୁରୁବାଙ୍କୁ ଖାଇବାକୁ ଦବ ତ ନାଅ । ହୁଁଃ, କଣ କହୁଚ, ପୁଣି ମହନା ଏ କଥା କହୁଚ ··

କାଲ ଘୋଟିଲ୍ଣି ସେଇଟାକୁ···ହ୍ୟାମ ଠାକୁରାଣୀଙ୍କି ଏ କଥା କହୁଚ !

ମୁଣ୍ଡରେ ହାତ ଲଗେଇଲେ ଗ୍ରାମୁକରଣେ ଠାକୁରାଣୀଙ୍କ ଉଦ୍ଦେଶ୍ୟରେ । ଆଖି ବନ୍ଦ କର ଦେଲେ ନମିଷକ ପାଇଁ ।

• ପାଖ ଆଖ କେତେ ଖଣ୍ଡ ଗାଁରେ ବାଲୁ ମିଶ୍ରଙ୍କୁ ଜାଣନ୍ତ ସମସ୍ତେ । ବୈଠକ୍ଖା ଗୋଷେଇରେ ସେ ପ୍ରଥମ । କନ୍ତୁ ଅନେକ ସମୟ ସେ କଲକଲତାରେ ରହୁଥିବାରୁ ତାହାଙ୍କର ବ୍ୟଞ୍ଜନର ସ୍ୱାଦ ଜାଣିବାର ସୌଭାଗ୍ୟ ଘଟେ ନା କାହାର ବେଶି । ପ୍ରାୟ ଫସଲ ସମୟକୁ ସେ ଆସନ୍ତ ଗାଁକୁ । କ୍ଷେତ ବାଡ଼ କଛୁ ଅଛୁ । ନାନ୍କା ଆଉ କୁସୁନ୍ପୁରର ସୀମାନ୍ତରେ ତାଙ୍କ ଘର । ମିଶ୍ରେ କୁସୁନ୍ପୁରରେ ବସି ଭୋଜନ କରୁଥିଲେ ସ୍ତ୍ରୀ ଛଅଣ ବାଢ଼ୁଥାନ୍ତ ନାନ୍କାରେ । ମଝିରେ ଦଶ ହାତ ତଫାତ୍ । ଖଞ୍ଜାଟି ଦୁଇ ଗ୍ରାମର ସମ୍ପତ୍ତି । ସେଥିରେ ପୁଣି ନାନ୍କା ଯାଜପୁର ଏବଂ କୁସୁନ୍ପୁର କଟକ ସବ୍‌ଡଭିଜନର ଅନ୍ତର୍ଗତ । ଥାନା ପୁଣି ଭିନ୍ନ । ଏହାପର ଦୋଷମାଳୀର କୌଣସି ବାସିନ୍ଦାକୁ କୌଣସି କାରଣରୁ ଗିରଫ କରବାକୁ ହେଲେ ଗୋଟିଏ ଥାନାର ପୁଲସ୍ଙ୍କଦ୍ୱାରା ସେ କାମ ହେଇ ପାରେ ନା ।

ଯୋଗକୁ ବାଲୁ ମିଶ୍ରେ ଥିଲେ ଘରେ । ଆସି ରୋଷେଇ ବ କଲେ ତାରଫ୍ । ଦୁର୍ଯୋଗକୁ ସେ ଭଜନଗାର୍ ପାଇଲେ ନାହିଁ କନ୍ତୁ ।

ଖାଇବାରେ ଲଗିଛନ୍ତ ଭାସ୍କରବାବୁ । ଗ୍ରାମୁକରଣେ ବ । ରକ୍ତଚନ୍ଦନର ପୁଣ୍ଡ୍ରକ ଉପରେ ସ୍ୱେଦ ରେଖାର ଆର୍ଦ୍ରତା । କାନ୍ଧରେ ଖଣ୍ଡେ କଲ୍‌କତି ଗାମୁଛା, ବାଲଚନ୍ଦ୍ରପୁଷ୍ପି କରଆର ପଶ୍ଚାତ୍‌ଧପୁରେ ଅଳ୍ପ ଦୂରରେ ବାଲୁ ମିଶ୍ର । ଯେପର କଛୁ ପଚାରବା ପାଇଁ ବ୍ୟଗ୍ର, କନ୍ତୁ ପାରୁ ନାହାନ୍ତ, ଏହାପର ଭାବ ମୁହଁରେ ।

ହାଁଃ, କଣ ହବ ଜାଫାନ୍ କେଶର···

ଗ୍ରାମୁକରଣଙ୍କର ମୁହଁର କଥା । ଯେପର ଅନ୍ୟ କେହ କହଲ ପର ସେ ଚାହିଁଲେ ଅତଥିଙ୍କର ମୁହଁକୁ ।

କଣ କହଲେ ?

ପଚାରଲେ ଭାସ୍କରବାବୁ ।

ଏ··· ଆମ ଗାଁକୁ ଗୋଟା ପୁଷ୍ଟାଖି ଆଇଚ ଯେ, ଆମ ଉଛବା ପୁଅ ସାଙ୍ଗରେ—କଲକତାରୁ; ଜାଫ୍ରାନ୍ କେଶର ନ ହେଲେ ସେ ମାଂସ ନ ରାନ୍ଧେ । ପଳେଇ ଗଲା ପରା ଏଠୁ ଆସି ସକାଳେ··· । ହୁଃ, କଣ ମନ୍ଦ ହେଇଚ ଭାସ୍କରବାବୁ ?

ଖୁବ୍ ତ ଭଲ ହୋଇଚ !

ଫେର୍ ଆଙ୍କର କଣ ଜାଣିଚନ୍ତି ନା···କଣ୍ ହୋ ବାଲୁ ?

ଗୁଣ୍ଡିର ରୁଦ୍ରାକ୍ଷରେ ହାତ ଚଳେଇ ମନ୍ଥର ଗତିରେ କହିଲେ ବାଲୁ···

ନାଇଁ, ଭନ୍‌ଗାର୍ ଠିକେ ହୋଇଥିଲେ ଆହୁରି ଭଲ ହୋଇଥାନ୍ତା ।

ଗୁମୁକରଣେ ଭାବୁଥାନ୍ତି, କଥାଟା ଛୁଡ଼ିକ ଗଲା ସିନା ପାଟିରୁ, ଏକାଁ ବାଟ ପାଇ ଯାଇଚ । ଆଉ ସେଥିରେ ବି ଆଦାୟ ହୋଇଚ ଭାସ୍କରବାବୁଙ୍କ ମତ । କିନ୍ତୁ ଅଡ଼ୁଆରେ ପଡ଼ିଲେ ପୁଣି ଗୁମୁକରଣେ, ପଚରି ଉଠିଲେ ଭାସ୍କର···

ଦୁର୍ଗା ତା'ହେଲେ ଭଲ ରୋଜଗାର କରୁଚ ଏଇଖିଣି ?···

ନିର୍ବିକାର ଭାବରେ କହିଲେ ଗୁମୁକରଣେ, "ତା' କଥା ସିଏ ଜାଣେ ।"

ଗୋଟା ପୁଛାଖି ଘିଡିକରି ଆଇଚ କହୁଚନ୍ତି ପରା !

ଏଠାରେ ଗୁମୁକରଣଙ୍କ ପକ୍ଷବର୍ତ୍ତୀ ଉତ୍ତର ଦେଲେ ବାଲୁ ।

ସେ ଏକ ଲଫଙ୍ଗା ଲୋକ ଆଜ୍ଞା । ଦୁର୍ଗା ଯେମିତି, ସିଏ ବି ସେମିତି । ଗୋଟା ଖାଲିକି ଧରି ଆଇଚନ୍ତି କଲିକତାରୁ—ଦି ଜଣ ଯାକ······

ଖବର କାଗଜ ପଢ଼ନ୍ତି ଭାସ୍କର ବାବୁ । ଖାଲିଖି ସଂଖ୍ୟା ଯେ ଏହା ଭିତରେ କେତେ ବଢ଼ି ଛନ୍ତି କଲିକତାରେ ସେ ଜାଣନ୍ତି । କିନ୍ତୁ କିଛି କହିଲେ ନାହିଁ ଏ ବିଷୟରେ । ତାଙ୍କର ଏହି ନୀରବତାକୁ ଘୃଣା କଲେ ଆହୁରି ଗୁମୁକରଣେ ।

···ପଠାଣ ତ ଅଣି ଲୋକେ ଘରେ ପୂରଉଚନ୍ତି ଆ···

ଦୁର୍ଜ୍ଞେୟ ହେଲା ନାହିଁ ଗୁମୁକରଣଙ୍କର ଏ କଥାର ଉଦ୍ଦେଶ୍ୟ ବୁଝିବାକୁ ଭାସ୍କର ବାବୁଙ୍କୁ । କେବଳ କୌଣସି ଚିନ୍ତାର ଆଶ୍ରୟ–ନେଲେ ସେ । ହିଁ, ଗୋଟା ଜାତିକ ଅପମାନ !

କିଛି ସମୟ ଏକ ଅପ୍ରତ୍ୟାଶିତ ନୀରବତା ଅତିକ୍ରମ କରି ଶେଷରେ ଖାଇବା ଶେଷ କଲେ ଦୁହେଁ । ହାତ ଧୋଇ ପାନ ଚୋବାଉ ଚୋବାଉ ହସି ଉଠି କହିଲେ ଭାସ୍କରବାବୁ—

ଏ ଚଉକ ଦଣ୍ଟା ଏଇଠି ଥାଉ । ବେଳେ ବେଳେ ଆସି ବସାଉଠା କରିବା ଠିକେ ।

ହଉ, ହଉ, ସେଥିରେ କଣ ଅଛି ? କାହିଁ ଆପଣ ଆଉ ଆସୁଚନ୍ତି ଏଠିକି, କେତେ ଆସୁଥିଲେ···

ଭାସ୍କର ନାୟକ ଜାଣିଲେ, ଗୁମୁକରଣ ଦଖିଣ୍ତିରଙ୍କ ବେଳ କଥା କହୁଚନ୍ତି । କେବଳ ହସିଉଠିଲେ ସେ । ହସିଉଠିଲେ ବି ଗୁମୁକରଣେ ।

ମଳ-ମୂତ୍ର-ଅସ୍ଥି-ଅନ୍ତ୍ରର ଶରୀରକୁ ଯେପରି ସୁନ୍ଦର କରିଛି ମସୃଣ ଚର୍ମ, ସେହିପରି କୁତ୍ସିତ, କୁଟିଳ ଏହି ଦୁଇ ବ୍ୟକ୍ତିଙ୍କର ଅସୁସ୍ଥ ଚିନ୍ତାକୁ ଭଦ୍ରତାର ରୂପ ଦେଲା ସେମାନଙ୍କର ଚେଷ୍ଟାକୃତ ହାସ୍ୟ ।

ଭାସ୍କରବାବୁ ଚାଲିଯିବାର କିଛିକ୍ଷଣ ପରେ ଗୁମୁକରଣେ କହିଲେ···

କରେ ଉଛିବା, ସାଗୁଆଡି ଖାଇଲୁ ?

ମାଂସର ସ୍ନିଗ୍ଧବନ୍ଧନକାରୀ ଫଣ୍ଟେ ହାଡ଼କୁ ଗୃଣ୍ଟିଥାଏ ଉଛବ । ଆହୁରି ଜୋର୍‌ରେ ତାକୁ ଗୃଣ୍ଟି ନେଲ ଗ୍ରାମୁକରଣଙ୍କର ପ୍ରଶ୍ନ ପରେ । କଣ କହିବ ସେ ! କୁନ୍ତରୁ ତ ମିଳୁ ନାହିଁ କୁସୁମର ଲଘୁତା । ଝୋଳ ଥରେ ହାପୁଡ଼ ନେଲ ସେ । ହଁ, କୁସୁମର ନିର୍ଯାସ ମାଂସର ବାସ୍ନା ।

କିନ୍ତୁ କିଛି କହିବାକୁ ପଡ଼ଲ ନାହିଁ ଉଛବକୁ । ଯେପରି ଉତ୍ତରର ସମସ୍ତ ଗଢ଼ ଯାଇଛି—ସେଥିପାଇଁ ଅପେକ୍ଷା ନ କରି ଆପେ ଆପେ କହି ଉଠିଲେ ଗ୍ରାମୁକରଣେ···

ହୁଁ, ଶଳା ସାଗୁଆଡ ଖାଇବ ନେଇଁ ମୁଁ !

ମୂଷା ଆଉ ଆହା ଯେପରି ପ୍ରତିଯୋଗିତା କରି ହାପୁଡୁ ଥାନ୍ତି ଝୋଳ । ବାଲୁ ମିଶ୍ରଙ୍କ ଗ୍ରୀବାର ରୁଦ୍ରାକ୍ଷ ମାଳରେ ଗୋଟାଏ ଗଣ୍ଠି । ଯେପରି ଫହଡ କରାଯାଇଛି ରୁଦ୍ରାକ୍ଷର ପ୍ରଲମ୍ବିତାକୁ ଯିଏଥିଛା ସ୍ୱାଧୀନ ଭୋଜନ ଲାଗି । ଗେଷେଇଘରେ ସେ ଏକାକୀ ଯେଉଁ ଘରର ସମସ୍ତ ସରଞ୍ଜାମର ଆୟୋଜନ କରିଥିଲେ ଅନ୍ୟମାନେ, ସେଠି ସେମାନେ ହୋଇଚନ୍ତି ବର୍ତ୍ତମାନ ଇତର । ଦୂରରୁ ବାଲୁ ମିଶ୍ରଙ୍କୁ ଦେଖାଯାଏ—ଆଖିରେ ଲାଗେ ତାହାଙ୍କର ଉଦରର ସ୍ଫୀତି ।

କାଲିକାର ଗୋଟିଏ ନିରୀହ ଜୀବ, ଆଜି ଯେମିତି ସେ ବାଣ୍ଟି ଦେଇଯାଇଛି କେବଳ ଆନନ୍ଦ । ପାଦ ତଳର ଦଳିତ ଘାସରେ ମଣିଷ ଆଜି ପ୍ରସ୍ତୁତ କରିଛି ତାହାର ଶ୍ରେଷ୍ଠ ଖାଦ୍ୟ । ରଚିଛି ଉତ୍ସବ । ହିଂସ୍ରର ପ୍ରତିହଂସ ହୋଇ ମଣିଷ ନିର୍ଦ୍ଦୋଷ, ତୃଣପୁଷ୍ଟକୁ କରିଛି ହତ୍ୟା । ଏହି ମଣିଷର ବୁଦ୍ଧି । ଶିକ୍ଷା । ଯାଦୁଘରର ତୁଚ୍ଛ ଅଳଙ୍କାର, ଅନାଦୃତ, ପରିହାର୍ଯ୍ୟ, ଅନାଦର୍ଶ ଯେପରି ସେମାନେ ଆଜି !

—ଡଭଢ—

ଗୋକଳ ଘାବୁଚି, କହନ୍ତା, ବକଳ ବୋଉ, ତମକୁ ଗ୍ଲେଟ ହୁଅନ୍ତା ଯୋଉ ଲୁଗା ଖଣ୍ଡକ, ଆଉ ଜଣକୁ ଖୁବ୍ ବଡ଼ ହେଇଚି ସେଇଟା । କିନ୍ତୁ ଭରସା ପାଉନାହିଁ ସେ ।

ବକଳ ଶୋଇ ପଡ଼ଲାଣି ପରା !

ପ୍ରଥମ ପ୍ରୟାସ । ତଥାପି କଣ୍ଠରେ ଜଡ଼ତା ।

ଅନେକ ଡେରିରେ ଫେରିଚି ଗୋକଳ । ମହନ୍ତ ସଙ୍ଗରେ କେତେ ବର୍ଗ୍ଗର, କେତେ ପରିକଳ୍ପନା କରି ଫେରିଚି ସେ । ହେଇ ଯାଉ ରାତି । ପୁଣି ଜହ୍ନ ତା'

ଭିତରେ । ଘର ଖଣ୍ଡିକ ତ ଆଉ ହଜି ଯିବ ନାହିଁ ତାହାର ! ତାହା ପରେ ପୁଣି ମଦନ ଘରେ ଘାତ, ସେ ଆଉ ଭୁଲିଯିବ ତାହାର କେତେଦିନର ଅଭିଜ୍ଞତା ! ଅତ୍ୟାଗ୍ରହର ଅନ୍ଧକାର ସେ ଜାଣେ । କେତେ ସନ୍ଧ ଦେଇ ତା' ଭିତରେ ବୁଡ଼ି ରହିବାକୁ ହୋଇଥିଲା ତାକୁ···କେତେ ବର୍ଷ ଧରି । କେତେ ଆଖିର ଲୁହକୁ ସେ ଦଳି ଦେଇଛି ପାଦରେ । କେତେ କରୁଣ କାକୁତି ଉପରେ ନାଚି ଯାଇଛି ତାର ଠେଙ୍ଗା । କିନ୍ତୁ ତାହା ସବୁ ତାକୁ ମୁଠାଏ ଭାତ ଦେବା ଲାଗି । ସେ ତ ଆଉ ବାବୁ ଭଦ୍ର ଭିତରର ଜଣେ ନୁହେଁ, ଅତର ମାଖିବା ଲାଗି, ସିନେମା ଦେଖିବା ଲାଗି, ସାଙ୍ଗ ମେଳରେ ଫୁର୍ତ୍ତି କରି ସିଗାରେଟ୍ ପୋଡ଼ିବା ଲାଗି—ଆଉ ସେଥିଲାଗି, ପ୍ରେୟସୀର ନିତମ୍ବକୁ ଲୋଭନ କରିବାକୁ ଜର୍ଜେଟରେ, ଶୋଭନା କରିବାକୁ ସୁନ୍ଦରୀ ପ୍ରିୟାକୁ ସୁବର୍ଣ୍ଣରେ, ତାହାକୁ ଅପ୍‌ସରାରେ ପରିଣତ କରି ଉଡ଼ିଯିବା ପାଇଁ ମଟରରେ, ସେ ତ ସ୍ୱପ୍ନ ଦେଖି ନ ଥିଲା ଜମା ! ଆଉ କାହିଁକି ସେ ଯିବ ସେହି ଅପବିତ୍ରତା ପାଖକୁ । ସେ କେବଳ ସ୍ୱପ୍ନ ଦେଖିଥିଲା ଅନ୍ନର । ସେ ନିଶା-ଖୋର୍ ନୁହେଁ, ସେ ରିକ୍‌ସା ଟାଣିବ ତେବେ କାହିଁକି ।···ସେହି ପଚ୍ଚ, ସଡ଼ା ମଣିଷର—ଦୃଣିତର ରିକ୍‌ସା !

ଉଁ ହୁଁ, ବାଳ ପୋଡ଼ିଗଲା ନିଆଁରେ ! ଅଗ୍ନିକି ତମେ ମାରି କରୁଛ ବକୁଳ ବୋଉ !

ଅଗ୍ନିରେ ଦୁର୍ଗନ୍ଧ । ତଥାପି ହିଂସ୍ର ପ୍ରୟାସ କହିବାକୁ ହେବ ଏହା ଗୋକୁଳର ।···ଚୁଲ୍ଲୀ ନିଆଁର ରକ୍ତିମ ଆଲୋକ ବକୁଳ ବୋଉର ମୁହଁରେ । ନାକର ଦଣ୍ଡୀ ଚକ୍ ଚକ୍ କରୁଛି ସେ ଆଲୋକରେ । ପାଖରେ କରଞ୍ଜ ତେଲର ଦୀପ ନିଭି ହୋଇଛି । ବକୁଳ ବୋଉ ଲଗେଇ ଦେଲା ସେହି ଦୀପ । ଆଉ ଘରର ଭିଡ଼ି ତଳୁ ଆମ୍ବୁଲ ଦି ଖଣ୍ଡ ଆଣି ପକେଇ ଦେଲା କୋଳଥ ଡାଲିରେ ।

ବକୁଳ ବୋଉର ମୁହଁ । ରକ୍ତାଭ ଅଗ୍ନିରେଖା ଲାଗି ସୁନ୍ଦର । ଆଖିରେ ନେଇ ହୋଇ ଯାଉଛି ସେ ରୂପ ଗୋକୁଳର ।

କାହିଁ ଆନନ୍ଦ ! ଆନନ୍ଦ ତ କିଛି ଆଉ ନାହିଁ ମୋ ଭିତରେ ଏଇକ୍ଷିଣି ! ବୁଢ଼ୀଟା ଲୁଗା ପିନ୍ଧିବାକୁ ପାଉ ନ ଥେଲା, ଏବେ ପାଇଲା; କଣ ହେଲା ସେଇଠୁ ! କଣ୍ଟ୍ରାକ୍ଟର ସାହିରେ କେତେ ଏମିତି ଚରା କନାର ଛବି ।·· କିନ୍ତୁ ମନ ମୋର କାନ୍ଦ ଉଠୁଥିଲା ଯେମିତି ସେତେବେଳେ । କୁଆଡ଼େ ଗଲା ସବୁ । ବକୁଳ ବୋଉ ! ତମେ ମୋ ଉପରେ ରାଗିଛ ! କାହିଁ ଗାଳି ଦଉ ନା ତ ଜମା ! ବାହାରର ମତେ ଜଣେ ଲୋକ ନିମକ୍‌ହାରାମ୍ ବୋଲି କହିଲା; ତମେ ନିଜର ହେଇ କିଛି କହି ପାରୁ ନା ! ମୋର ଧୂଅଁକୁ ଜନ୍ମ କରିଛ ତୁମେ, ମୋ ପେଇଁ ଘର ଖଣ୍ଡିକରେ ବୋଳି ଦେଇଛ ଶାନ୍ତି ! ସବୁବେଳେ ମତେ ଚାହିଁ ବସିଛ ତମେ ! ତମକୁ ଖଣ୍ଡେ ଲୁଗା ଦେଇ ପାରୁ ନେଇ ମୁଁ ! ତମେ ଯଦି ରାନ୍ଧି ନ ଥାନ୍ତ ମୁଁ ଆସିଲାବେଳକୁ ମୁଁ କଣ କହିଥାନ୍ତି ତମକୁ ? ସେଇଥିରୁ ରାଗେ ହେଲେ ତମେ ମତେ କହୁ ନା······

ବକୁଳ ବୋଉ, ମୁଁ ଲୁଗା ଆଣି ନେଇଁ, କିଛି ତ କହୁ ନା ମତେ ଜମା ?

ଥାଳି ଧୋଉଥିଲା ବକୁଳ ବୋଉ । ଆଉ ଟିକିକ ପରେ ସେ ଖାଇବାକୁ ଦେବ ସ୍ୱାମୀକି । କର୍ମମୟ ହାତରେ ତା'ର ସଲିଳର ସ୍ପର୍ଶ । ଅନ୍ତରର ନିବିଷ୍ଟତା ।

ଉପରେ ଅଦୃଶ୍ୟ ପ୍ରଲେପ । ଯେପରି ମାଲୁଣୀର ଫୁଲ ଗୁନ୍ଥିବାର ଏକାଗ୍ର ମନ ଉପରେ ଚହଟିଗଲ କୁସୁମର ସୌରଭ ।

ତମେ କଣ ଗୃହିଣୀ ପାଇଚ ଆଜି ? ଟଙ୍କା କଣ ପାଇଚ ? ପାଇଥିଲେ କଣ ଆଣି ନ ଥାନ୍ତି—ମୁଁ ଆଉ ପଚାରିବି କାହିଁକି ?

ଏହି ସରଳ ବିଶ୍ୱାସ ଏବଂ ଆତ୍ମୀୟତାର କଥାକୁ ଆକଣ୍ଠ ଭରି ନେଲି ଗୋକଳି ।

ମତେ ଜଣେ ଷୋଳଣା ବିଶ୍ୱାସ କରି ସେ ପାଇଲି ନେଇଁ କିଛି । ଆଉ ଜଣେ କୌଣସି ଆଶା କରି ନ ଥିଲି ମୋ ଠାରୁ—ହୁଏ ତ ଜାଣୁ ନ ଥେଲି ବି ମତେ, ସେ ପାଇଲି । କଣ ଏହାର କଥା !

ରହି ରହିଂକହିଲି ଗୋକଳି...

ମୁଁ ସବୁ ପାଇଚି ବକଳ ବୋଉ, କାଇଁକି କିଛି ନ ପାଇଲି ପରି ଲାଗୁଚି ! ଲୁଗା ଖଣ୍ଡେ ଆଣିଥେଲି ତମ ପାଇଁ...ତାକୁ ଆଉ ଜଣେ ନେଇଗଲି...

କଣ ଛଡ଼େଇ କରି ନେଇଗଲି ? ତମେ ଦେଇ ଥିବ ନା...

ଗୋକଳି ଭାବିଲି, ମୁଁ ଆଉ ଦେଲି କେମିତି ! ମୋର ସ୍ତ୍ରୀଠାରୁ କଣ ଆଉ କେହି ପ୍ରିୟ କି ଆପଣାର ଅଛି ?

ହଁ, ଯେମିତି ଛଡ଼େଇ ନେଇଗଲି ବକଳ ବୋଉ !

ବକଳ ବୋଉ ଅବାକ୍ ହୋଇ ଚାହିଁଲି ଗୋକଳିକି । ଗୋକଳି ବି ଚାହିଁଚି ତାର ସ୍ତ୍ରୀକି । ଯେମିତି ତା'ର ଅର୍ଥ—ଅସମ୍ଭବ...ଏ ସମୟରେ ଲୁଗା ଖଣ୍ଡେ ଆମଠୁଁ ଛଡ଼େଇ ନେଇଯିବ କିଏ ?

ଗୋକଳି ଅଣ୍ଟାରେ ହାତ ମାଇଲି । ହାତରେ ଦେଖେଇ କହିଲି......

ହେଇ, ଆଉ ଦେଢ଼ଟଙ୍କା ବଳିଚି ବକଳ ବୋଉ, ତିନି ଟଙ୍କା ଆଠଣାରେ ମୁଁ ସତରେ ଖଣ୍ଡେ ବେଉଣ କିଣିଥେଲି ଆଜି......

ସହରୀ ସ୍ତ୍ରୀ ହୋଇଥିଲେ ବକଳ ବୋଉ ଆଉ କିଛି ଭାବିଥାନ୍ତା ନିଶ୍ଚୟ । କିନ୍ତୁ ସେ କଥାର କଳ୍ପନା ତା'ପାଖରେ ଆକାଶକୁସୁମ । କେବଳ ସରଳ ବିରକ୍ତିରେ ସେ କହିଲି..

ଆଉ ସେତକ ଦେଇ ଦେଲ ନେଇଁ ତାକୁ !

ତମେ ଯେ ନଚ୍ଛେଇ କରୁଚ ଏଣେ । ଆଉ ବକଳ ବି ଠିଆ ହେଇଚି ତମ ସାଙ୍ଗରେ ; ଏତକ ଆଉ ନେଇ ପାରିଲି ନେଇ କିଏ । ଏକା ଅନେକ ଅନେଇଚନ୍ତି ଆଳୁ......

ହଁ, ହଁ, ଖାଇବ ଆସ । ଗୃହିଣୀ ଫାଙ୍କରି ତ କିଛି ପାଇ ନା, କୋଉଠୁ ଦେଢ଼ଟା ଟଙ୍କା ଉଧାର ଆଣି ଆଉ୍ସାଉ୍ଗପୁଚ । ଗୃହିଣୀ ନ ହେଲେ କଣ ଏମିତି ସବୁ ପାଗଳ ହୋଇଯାନ୍ତି ମଣିଷ......

ହସି ଉଠିଲି ଠୋ ଠୋ ହୋଇ ଗୋକଳି । ଯେମିତି ସେଥିରୁ ଶୁଭୁଚି, କେହି ଆମେ କାହାକୁ ଚହ୍ନୁନା, ଖାଲି ସମତେ ସାଙ୍ଗ ହେଇ ଚାଲୁଚେ । କିଏ କୋଉଠି ପହଞ୍ଚିବ, ତା'ର ବି ଠିକ୍ ନାହିଁ ।

ଅନ୍ଧାରକୁ ଭଲ କରି ଚହ୍ନିବା ପାଇଁ ଯେମିତି ଦୁଆରେ ବାଉଁ ହୋଇ ପଡ଼ିଛି ଜହ୍ନ । ସେତିକିବେଳେ ତାହାର ନିଜର ଗୁଛିକି ଅନେଇ ଅନେଇ ଅଗଣାଯାକ ବୁଲୁଛି ମଦନ ।…ଏ ଗୁଛିଟା ମଣିଷର ସାଙ୍ଗେ ସାଙ୍ଗେ ଏକା ଅଛି, ଖାଲି ଆଲୁଅ ପାଇଲେ ଯାଇ ବାହାରୁଛି ।…ଏ ଗୁଛିଟା ମଣିଷର କଣ ?…

ଏକ ଦୁରୂହ ଚିନ୍ତାରେ ମନ ଦେଲା ମଦନ । କିନ୍ତୁ ଯାଇପାରିଲା ନାହିଁ ବେଶି । ମସଲା ନ ଦିଆ ଗ୍ୟାସ୍‌ବତିରେ ସେ ଦିଆସିଲି ଜାଳିଥିଲା ଯେପରି । ତେବେ ଏତିକି ସେ ଭାବି ପାରିଲା, ଅସଲ ମଣିଷର ଏ ଗୁଛି ସଙ୍ଗରେ କିଛି ସମ୍ପର୍କ ନାହିଁ। ମଣିଷ ଉପରେ ଆଲୁଅ ପଡ଼ିଲେ ତାହାର ମଇଳା ରୂପରେ ଇଏ ବାହାରି ପଡ଼େ ପଦାକୁ—ପୁଣି ଆଲୁଅ ଚାଲିଗଲେ ଏ ମଣିଷ ଭିତରେ ପଶେ ।

ଥରକୁ ଥର ଏ ମୋ ଦେହରେ ଲୁଚୁଛି । ଜାଫର୍‌। ଥରେ ବାହାର କଲା ତାକୁ ପଦାକୁ—ପୁଣି ଆଜି ଗୋକୁଳ ସିଂ । ଆଉ ମୋ ଭିତରେ ନୁଚିବୁ ? ନୁଚିବୁ ? ଅକାରଣେ ସେ ମନେ ମନେ ନିରୀପ୍ରାଣ ଗୁଛିଟାକୁ ପଚାରି, ବସିପଡ଼ିଲା ପାଖରେ ପଡ଼ିଥିବା କେତେଟା ଶସ୍ୟର ବସ୍ତା ଉପରେ । ଖାଉଁକି ଭାବରେ ଯେଉଁ ଗୁଛି ପଡୁଥିଲା ଠିଆହେଲେ, ବସିଗଲା ପରେ ସେ ସଙ୍କୁଚିତ ହୋଇ ଅନେକ ଭାବରେ ଲୁଚିଗଲା ଯେପରି ମଦନ ଭିତରେ । ମଦନର ଦେହ ତଳେ ଫସଲର ବସ୍ତା । କେତେ ଅକ୍ଳାନ୍ତ ପରିଶ୍ରମରେ ସେ ତାହାକୁ କରିଛି ସଂଗ୍ରହ—ତା' ଭିତରେ ଲୁଚିଛି ତାହାର ଭବିଷ୍ୟତ, ପୁଣି ବହୁ ମଣିଷର ଆତ୍ମା ।…ଆତ୍ମା ପୃଥକ୍ ହୋଇପାରେ ଜୀବନଠାରୁ; କିନ୍ତୁ ଜୀବନ ନ ଥିଲେ ଆତ୍ମା କାହିଁ ? ପୁଣି ଦେହ ନ ଥିଲେ କାହିଁ ଜୀବନ ? ସେହି ଦେହ, ଜୀବନ ଓ ଆତ୍ମାକୁ ଧରି ରଖିଛି ଯେଉଁ ଖାଦ୍ୟ ତାହାରି ଉପରେ ବସିଛି ମଦନ । ମାଟିର ବିଭିନ୍ନ ବିକାଶ ଏକାଧାରରେ ହୋଇଛି ଠୁଳ—ତାହାରି ଉପରେ ହସୁଛି ଜ୍ୟୋତ୍ସ୍ନା, ଆଲୋକ । ତଥାପି କେହି କାହାକୁ ଚହ୍ନିପାରୁ ନାହାନ୍ତି । ତଥାପି ଏହି ଆଲୋକ ତଳେ ବି ବହୁ ପରିମାଣରେ ମଦନ ଭିତରେ ଭେଦି ଗଲାଣି ଗୁଛି, ଅନ୍ଧାର । ଏହି ଭୁଛା ମାଟି ଗୋଡ଼ ତଳେ ଦଳି ଦଳି ମଣିଷ ଯାହା ଉପରେ ଚାଲିଯାଉଛି ସବୁଦା, ତାହାରି ବିକାର ଟାଣି ନେଲା ମଦନକୁ ଅତି ପାଖକୁ ।

ସେଇଠି ବସି ବସି ମଦନ କେବଳ ଭାବିଲା, ମୋର ନାହିଁ ଗୁଣ୍ଠେ ହେଲେ କ୍ଷେତ, କିନ୍ତୁ ମୋ ଘରେ ଜମା ହୋଇଛି ଫସଲ । ସେମିତି ଗୋକୁଳ ସିଂର ନାହିଁ ବିଦ୍ୟାକି ଶିକ୍ଷା, ପୁଣି ତା' ଭିତରେ ଜମା ହୋଇଛି ଆଲୁଅ । ସେହି ଆଲୁଅ ପୁଣି ଟାଣିଛି ମୋର ଅନ୍ଧାରକୁ, ଯେଉଁ ଅନ୍ଧାରରେ ମୋର କେବଳ ମାୟା ।

ଅନେକ ବେଳୁ ହାଡ଼ିଆ ବାଘୁଟି ଶୋଇଥିଲା ମଦନର ମା' ସଙ୍ଗରେ, ପିଣ୍ଡାରେ । ଏହିକ୍ଷଣି ସେ ପଚାରିଲା ମଦନକୁ ।

…ମଦନ ଭାଇ, ଭାବିଛି ଗୋଟା ମାଛ କାଲି କୋଉଠୁ ଧରି ନେଇ ଛାମୁକରଣକୁ ଦେବି ।

ଆରେ ସତେ ତ, ତା' ନ ହେଲେ ହାଡ଼ିଆ ମାଡ଼ ଖାଇବ । ହଁ, ମାଡ଼ ମୁହଁରୁ ରକ୍ଷା କରିବାକୁ ହବ ହାଡ଼ିଆକୁ । ଦୁଃଖ ଦାଉରୁ ଉଦ୍ଧାର କରିବାକୁ ହବ କଣ।

ମା'କୁ । ଆହୁରି କିଏ କୋଉଠି ଥେବେ, ସମସ୍ତଙ୍କୁ ଆଣି ଠିଆ କରେଇବାକୁ ହବ ସଳଖ କରି—ରାସ୍ତାରେ । ତାହା ପରେ ଗୋକଳ ଭାଇ ଦବ ହୁକୁମ ।

କଣ୍ କହୁଚ—?

ହୋସ୍ ପଶିଲା ମଦନ ଭିତରେ । କଣ କହିବ ସିଏ ! ସେ ଯଦି ଗାଡ଼ି ଚଳେଇ ପାରିଥାନ୍ତା, ବାପ ମରିଗଲା ପରେ ଶଗଡ଼ ଭାଙ୍ଗିଦେଲା କାହିଁକି ? କିନ୍ତୁ ନସେତେବେଳେ ତା' ପାଖରେ ନ ଥିଲା ଓଳିକର ଆହାର—ଆଜ ଯେ ବର୍ଷେ ବର୍ଷକର । ତଥାପି ସେ ହାଡ଼ିଆକୁ ଦେଇ ପାରୁ ନାହିଁ ଉତ୍ତର ! ହଁ ହଁ, ଉତ୍ତର ତାର ମନେ ପଡ଼ିଚ, ସକାଳେ କହିଥିଲା ତାକୁ ଗୋକଳ ଭାଇ—

ହଁ, ତୁ କେତେ ଥର ମାଛ ଦେଇ ପାରିବୁ ଗ୍ରାମୁକରଣକୁ···?

ମଲା, ମୁଁ କଣ ନେଖି ଦେଇଚକି ଆଉ—

ତୁ କଣ ଆଉ ନେଖି ଦେଇଥେଲୁ କାଲି ଦବାକୁ ?

କଣ କରିବ କହୁଚ ?

ଠିଆ ହୋଇ ପଡ଼ିଲା ମଦନ । ଯେପରି ସବୁ ଶରୀରରେ ତାହାର ପଡ଼ିଚ ଆଲୋକ ।

ଥରି ଥରି କରି ମରିବାକୁ ଭାବି ପାରୁଚ । ଆଉ ଦିନେ ହେଲେ ଖାଇବାକୁ ଭାବି ପାରୁ ନା ?—କଣ କହିଚ ତମକୁ ଗୋକଳ ଭାଇ ?

ଆଙ୍ଗୁ ପାଙ୍ଗୁ ହେଇ କହିଲା ହାଡ଼ିଆ···

କହିଲେ ସମତେ ଏକଜୁଟ ହୁଅ । ହେଲେ, ଏ ଶଳା କଣ ହେବେ ? ଶଳା ତ ପଛପଶା ଗୁଡ଼ାକ—ଏମିତି ପଛେ ମାଡ଼ ଖାଇ ଖାଇ ମରିବେ, ଶଳା ସଳଖ ବାଟକୁ ଟିପ ମାଡ଼ିବେ ନେଇଁ—

ନାଇଁ ରେ ହାଡ଼ିଆ, ଆଜକାଲି ଯା ଦାମ୍ ହେଇଚ, ମାଛ ଗୋଟା ବିକଲେ ତ ତୁମେ ଦିନେ ଚଳିବ—ଦବ କାହିଁକି କା'କୁ—

ମା'ର କଥା ଶୁଣି ମନେ ମନେ ହସିଉଠିଲା ମଦନ । ଆଉ ମନେ ମନେ ଭାବିଲା—ବୋଉ, ପଚିଶ ଟଙ୍କା ମୁଁ ଦେଇ ସାରିଲିଣି ବାବୁଙ୍କୁ । ଆହୁରି କେତେ ଟାଣିବେ କେଜାଣି ! କିନ୍ତୁ ପଚିଶଟଙ୍କା ରେ କେତେ ଦିନ ଚଳିବ ହାଡ଼ିଆ କହିଲୁ ? କିନ୍ତୁ ହାଡ଼ିଆକୁ ମୁଁ ଦେଇ ପାରି ନେଇ ଟଙ୍କାଟା···ଗୋକଳ ଭାଇ, ତମେ ଏଥରକ ମୋ ପାଖରେ ଛିଡ଼ା ହେଇଚ, ଏଣିକି ମୁଁ ଆଉ ଭୁଲ କରିବ ନେଇ ଜମା । ଓଃ, ତମେ ଆଜ ରତନ ନା'କର କୋରଖି ବନ୍ଦ କରି ପାରିଚ ! ମୁଁ ଜମା ଯାଇପାରି ନ ଥାନ୍ତି ଏଥିଲାଗି ! ଲୋକେ କହିବେ, ମଦନାର ତେଲ ହେଲାଣି ବେଶି—ବାବୁଘର ସାଙ୍ଗରେ ଟକ୍କର ଦଉଚ । ମତେ କେତେ ନାଜ ମାଡ଼େ ତମେ ଜମା ଜାଣି ନା ଗୋକଳ ଭାଇ । ତମେ ତ କେବେ ଶଗଡ଼ ବୋହି ନା ଏ ଗାଁରେ !

ଏହା ପରେ ଭାବାନ୍ତର ଆଣି କହିଲା ମଦନ···

ତଡେ, ଯଦି ସମସ୍ତେ ମାରିବାକୁ ବସିବେ, ତୁ କଣ ନିଜକୁ ମାରିଦବୁ ହାଡ଼ିଆ ?

ଏ କଣ ? ଏ କି କଥା ? ମତେ ମାରିବେ ବୋଲି ମୁଁ ନିଜକୁ ମାରିବି ? ମୁଁ ମରିବି କାହିଁକି, ନ ହେଲେ ଶେଷକୁ ଏ ଗାଁରୁ ପଳେଇବି । କୋଉ ମୂଲକରୁ ପଳେଇ ଆସି ମୋ ବାପ ମା ପୁଣି ତ ବଞ୍ଚିଲେ—ମୁଁ ମରିବି କାହିଁକି ? ମତେ ମାରିବ କିଏ ?

ହସି ଉଠିଲା ମହନ୍ତି ।

ଆରେ ମାରିବାକୁ ଅନେକ ଜନ୍ତୁ ଅଛନ୍ତି ।—ମୁଁ ଭାବିଥିଲି, ତୁ ଖାଲି ଏଇ ଆନ୍‌କା ମାଟିକି ଜାଣିଚୁ । ଠିକ୍ କହିଚୁ । ମରିବା—କାହିଁକି ଆମେ !

ହଁ ବକୁଳ ବୋଉ, ଆମେ ଆଉ ମରିବା ନାହିଁ । ମୁଁ ଭାଗ ବସେଇ ଦେଇ ଆସିଚି ମହନ୍ତିର ଭିତରେ । ତେବେ ଆମ ପେଇଁ କଣ ମୁଁ ତାକୁ କହିବି ମତେ ଆସୁନାହିଁ । ରତନ 'ନା'କର କୋରଣି ବନ୍ଦ କରିବାକୁ ତା'ଠଉଁ ପଚିଶ ଟଙ୍କା ଆଣିଲା । ମୋ ପେଇଁ ଆଗରୁ ଦେଇଥିଲା ସେ ପାଞ୍ଚ ଟଙ୍କା । ଏମିତି ତିରିଶ ଟଙ୍କା । ତମ ପେଇଁ ବେଢ଼ଣ ଖଣ୍ଡେ ଆଣିବାକୁ···ନାଁ, ବକୁଳ ବୋଉ, ମୁଁ ତାକୁ କହି ପାରିବି ନାହିଁ କିଛି । ସେ ଆମର ଭିତରୁ ଜଣେ, ମୁଁ ତାକୁ ସମସ୍ତିଙ୍କ ପେଇଁ ଜଣେ କରିବାକୁ ଯାଉଚି । ମୁଁ ତାକୁ ମୋ କଥା କିଛି କହିପାରିବି ନାହିଁ ବକୁଳ ବୋଉ···

ନିଦ ବାଉଳା ପୁଅ ମୁହଁରେ ଭାତ ଗୁଞ୍ଜି ଦେଉଁ ଦେଉଁ ବକୁଳ ବୋଉ କହିଲା—କିଏ ତମକୁ କଣ କହିବାକୁ କହୁଚି ? ତମେ ନିଜେ ନିଜେ ଏତେ କଥା କହୁଚ କାହିଁକି, କାନ୍ଦୁଚ କାହିଁକି ? ଜାଣିକରି ଆମେ ଦରିଆରେ ଭାସୁଚୁ···ଖାଲି ଛୁଆଟା ସକାଶେ···

ହାପୁଡ଼ିବାକୁ ହାତରେ କୋଳଥିଡାଲି ଧରିଥିଲା ଗୋକୁଳ, ସେ ଆଉ ହାତ ଉଠେଇ ପାରିଲା ନାହିଁ ପାଟିକୁ । ଆଖିରେ ତା'ର ବକୁଳ, ତା'ର ମା । ବକୁଳ ବୋଉ ମୁହଁ ପୋଛୁ ନେଉଚି କାନିରେ ।

···ଖା, ଅନେଇ ରହିଲ କାହିଁକି ! ତମେ ଯା' କରିବ ମୋର ସେଇଆ···

ସତେ, ମୋର କଣ ସବୁ ଭୁଲି ହେଇଯାଉଚି ବକୁଳ ବୋଉ ? ମୋର କାମ କରିବାକୁ ଇଚ୍ଛା ହଉନାହିଁ କି ନ କରିବାକୁ ମନ ହଉ ନାହିଁ । ତମକୁ କୌଣସି ଅସୁବିଧାରେ ରଖିବାକୁ ମୁଁ ଚାହେଁ ନା, ଫେର୍ ମୁଁ କେମିତି ତମ କଥା ଭୁଲିଯାଏ ତମ କଡ଼ରୁ ଗଲେ ମୁଁ ଭାବି ପାରୁ ନାହିଁ । ସେ ବୁଢ଼ୀଟା ଯେମିତି ମୋ ହାତରୁ ଲୁଗା ଖଣ୍ଡିକ ଛଡ଼େଇ ନେଇଗଲା !

ମଲା, ସେଇ କଥାକୁ ଏତେ ଘୋଷ୍‌ଟେଇ ହଉଚ କାହିଁକି ?

କଣ ମୋର ଗଫଲତ୍ ସତେ ଦେଖୁଚ କହିଲ···

ବକୁଳ ବୋଉ ପୁଣି ପୋଛିଲା ଲୁହ । ନିଦ ଆଖିରେ କାନ୍ଦି ଉଠି ନ ଖାଇବି ବୋଲି ଛିଡ଼ା ହୋଇ ପଡ଼ିଲା ବକୁଳ । ତାର ମୁହଁ ଧୋଇ ଦେଇ, ତାକୁ ନେଇ ଶେଯରେ ଶୋଇ ଦେଇ ଆସିଲା ବକୁଳ ବୋଉ ।

ଗୋକଳ ସେଥିପର ବସିଚ ।

ହଁ ବକଲ ବୋଉ, ତମେ ମତେ କହୁଚ ଆଉ କହୁନା, ମୁଁ ତମ କଥା ଜାଣିଚ, ଫେର୍ ଜାଣୁ ନେଇଁ । କିଛୁ ଗୋଟା ଫୈସଲା କରିବାକୁ ହବ ।

—ପନ୍ଦର—

କଣା ମା'ର ପାଟିରେ ମଦନର ନିଦ ଭାଙ୍ଗିଗଲା ।

ଅନେକ ରାତିରେ ଶୋଇଥିଲା ମଦନ । ଅନେକ କଥା ଭାବିଲା ପରେ ତାକୁ ହେଇଥିଲା ନିଦ ।

ସ୍ୱରରେ ତା'ର ମୃତ୍ୟୁର ବନ୍ଦନା, ତଥାପି ସେଥିରେ ଉତ୍ତେଜନାର ଜୋର୍ ଦେଇ କହି କହି ମଦନ ଘରେ ପହଞ୍ଚିଲା କଣା ମା···

ମଦନ କାହିଁ; ମଦନ, ତୋର କୋଟି ପରମାଇ ହଉ ରେ ମଦନ—

ବାଡ଼ରୁ ବାସନ ମାଜି ଫେରୁଥିଲା ଶ୍ରୀମତୀ । କଣା ମା'କୁ ଦେଖି ସେ ତାଟଙ୍ଗା । ବସ୍ତା ତଳର ବଗ ଦନ୍ତା ଓଳେଇ ଆଣୁଥିଲା ମଦନବୋଉ, ଗୁଞ୍ଜୁଣୀ ହାତରେ, ଆଖିରେ ତାହାର ପ୍ରଶ୍ନ । ଚମ ଧୁଡ଼୍ ଧୁଡ଼ୁ ଦହରେ—ନୂଆ ଷ୍ଟାଣ୍ଡାର୍ଡ଼ ଲୁଗା ଖଣ୍ଡିକରେ କଣା ମା—କଣ୍ଠରେ ତାହାର ଆନନ୍ଦର ଝଙ୍କାର ।

ମଦନ ବୋଉର ଉପରେ ଦୃଷ୍ଟି ପଡ଼ିଲା କଣାମା'ର ।

···ଆଲୋ ବୋଉ, ଦେଖ୍, ପୁଅ ତୋର ମତେ ଲୁଗା ଖଣ୍ଡେ ଦେଇଚ, ଦେଖ୍ । ଏତେ ବଡ଼ ନୂଗା । କୋଟି ପରମାଇ ହଉ ତୋ ପୁଅର—ରୋଗ ବଇରାଗ ମତେ ଝାଡ଼ ଝୁଡ଼ ଦଉ···

ତା'ପରେ ପିଣ୍ଡା ଉପରେ ବସିପଡ଼ ବାଡ଼ ଖଣ୍ଡିକ ପାଖରେ ଥୋଇ, ଆଖିର ଲୁହ ପୋଛିଲା କଣାମା । ମଦନ ବୋଉ ପାଖକୁ ଆସି ବୁଢ଼ୀର ଲୁଗା ଦେଖି ଦେଖି କହିଲା···

ତମେ କାନ୍ଦୁଚ କାହିଁକି ? କଇଲାଣ କର, ପୁଅର ମୋର ଆଉର ଉଜୁଡ଼ି ହଉ !

ମୁଁ କାନ୍ଦୁଚି କଣ ସତେ,—ସତେ ମୁଁ ମଦନାର ମନରେ ଥେଲି ! କେମିତି ସେ ମୋ କଥା ମନରେ କଲା !—ଏଇ ମୁଣ୍ଡରୁ ମୁଁ ଜାଡ଼ରେ ଥୁ ରୁଥୁ ରୁ ହଉଥେଲି —କାଲି ରାତିଟାପାକ ମୁଁ ଶୋଇଚି । ମଣ୍ଡ ଗୁଡ଼ିଗଲେ ଆଉର ଉଷୁମ ହବ—ମୁଲମ୍ ହବ···

ଉଠି ଆସିଲା ମଦନ ଏକଥା ଶୁଣି । କୋଉ ନୁଗା ? କିଏ ଦେଲା ? ଆଖି ମଳି ମଳି ସେ ଆସି ଦେଖିଲା—ସତେ ତ, ବୁଢ଼ୀ ଦେହରେ ତ ସେଇ ନୁଗା ଖଣ୍ଡକ—

କିଣ୍ ବୁଢ଼ୀ ? ତତେ ନୁଗା ଦେଲା କିଏ ?

ଦେଖ୍‌ଲେ, ତୋ ପୁଅର ଖିଅସି ଦେଖ୍ ବୋଉ । ପିଆଦା ହାତରେ କାଲି ନୁଗା ପଠେଇ ଆଜି କଣ କଉଚି ଦେଖ୍ । ଆଲେ ମଦନବୋଉ, ତତେ ନୁଚେଇକରି ଦେଇଥେଲା ନା କଣ ! ଭୁ ପୁଅକୁ ଗାଳି ଦବୁ କାହିଁକି ମତେ ଗାଳି ଦେ—ଏଇ ପିଲାଙ୍କ ଆଗରେ ମରେ ।···ଆଲେ, କମିତି ଏ ଜୀବନ ରଇଚି ମୁଁ ଜାଣି ପାରୁ ନେଇଁ, କଣା ମଲା, ବୋହୂ ମଲା, ମୁଁ ହାତଗୋଡ଼ଖାଇ ସମସ୍ତଙ୍କୁ ଖାଇ ବସି··· ରଇଚି···

ପାଖରେ ପଦ୍ମଞ୍ଜଳୀ ଆସି ଶ୍ରୀମନ୍ତ । ଭାଇର ମୁହଁ ଧୋଇବା ଲାଗି ପାଣି ତାଳକ ରଖି ଦେଇ ସେ ଚାହିଁଲା ବୁଢ଼ୀକି । ଯେମିତି ଏ ବୁଢ଼ୀ ଦେହର ଜୀବନଟା ତାକୁ ଅସ୍ୱାଭାବିକ ଲାଗୁଚି ।

ବୁଢ଼ୀ ପୁଣି କହିଲା—ଦେଖ୍ ଶିଖା, ତୋ ଭାଇ ମତେ ନୁଗା ଦେଇଁଚି ଦେଖ୍ । ମୁଁ କଣ କଇଲିଣି, ଏ ରାଜ୍ୟଯାକ କଇବ, ଯାକୁ ଦେଖିବ ତାକୁ କହିବ··· ହଉ ଆଲେ ଶିଖା, ସକାଳୁ ଏ ବୁଢ଼ୀଟାର ମୁହଁ ଚାହିଁଲେ କଣ ହବ । ମଦନକୁ ଦେଖିବା ପେଇଁ ମୁଁ ରାତିଯାକ ଭାବୁଥେଲି···ବସ୍ତ୍ର ଦାନ ଦେଇଚି ମଦନ !···ଆରେ ମଦନ, ସତେ ମୁଁ ତୋର ଆଗରେ ମରେ···

ଠିଆ ହେଇ ବୁଢ଼ୀ ଅନେଇଲା ମଦନକୁ । ମଦନ ଆଖିରେ କିନ୍ତୁ ବୁଢ଼ୀର ଛବି ନାହିଁ, ତା' କାନରେ ନାହିଁ ବୁଢ଼ୀର କଥା ।

ଗୋକୁଳ ଭାଇ, ତମେ ତା'ହେଲେ ଖାଲି ହାତରେ ଘରକୁ ଫେରି ଯାଇଚ ! ମୋ ହାତରେ ଟଙ୍କା ଥାଇଁ ମୁଁ ଆଉ କଣ କଲି ! ତମେ ପାଞ୍ଚୁଟା ଟଙ୍କାରେ ବଇରଖି ଟେକି ଦେଇ ଚାଲିଗଲ ! ହେଇ, କଣା ମା ବୁଢ଼ୀ ଆଇଚି ଦେଖିବାକୁ ମତେ, କିନ୍ତୁ କା'କୁ ତା'ର ଦେଖିବାର କଥା···

ତରତର କରି ମୁହଁ ଧୋଇ ପକେଇଲା ମଦନ । ପାଉଁଶ ଖଣ୍ଡେ ମାଗି ଦାନ୍ତ ବି ଘଷି ପକେଇଲା । ତା'ପରେ ତା'ର ଶୋଇଲା ଘର ଭିତରକୁ ପଶି ଖଣ୍ଡେ ଭଡ଼ ଟାଣି ଟାଣି ସେ ବାହାରିଗଲା ବାହାରକୁ ।

ଗଛ ପତ୍ର ଉପରେ ସକାଳର ଖରା । ଘାସର କାକର ବୁନ୍ଦା ବୁନ୍ଦାକରେ ହସି ଉଠୁଚି ସୃଷ୍ଟିର ଛବି—ସେଠି ବି ଖରା, ସେଠି ବି ଗ୍ଲାଇ ।

ସେତେବେଳକୁ ଉଠି ସାରିଛି ଗୋକୁଳ । ଉଠିଥିଲା ସେ ଅନେକବେଳୁ । ଭୋରୁ ଉଠି କୋଡ଼ଖଣ୍ଡେ ଧରି ଗ୍ରେଟ ବାରି ଅରାକୁ କୋଡ଼ିବାରେ ଲାଗିଛି ସେ ।

ନିକଟରେ, କୂଅମୂଳେ ବସି ବାସନ ମାଜୁଚି ବକଲ ବୋଉ । ଗୃହାଲକ ଯିବ ବୋଲି ଦାନ୍ତ ଘଷୁଚି ବକଲ ।

କୌଣସି ନୂଆ ଫସଲର ଗୃଷ କରିବାକୁ ଗୋକଳର ଯେପରି ଏ ମାଟି ହଣା । କଣ ସେ ଏଥିରେ·ବୁଣିବ ସେ ଭାବ ନାହିଁ । ପଡ଼ିଆ ପଡ଼ିଥିଲା, ସେଥିରେ ସେ ଗୃଷ କରିବ କେବଳ ।

ଅନେଇ ଅନେଇ ସ୍ୱାମୀକି ଭାବୁଥାଏ ବକଲ ବୋଉ······

ବାପଘରକୁ ଗୃଲିଗଲେ ଠିକ୍ ହବ, କୋଉ ଦିନୁ ଯାଇନେଇଁ । ଆମେ ଗୃଲିଗଲେ ଆଙ୍କର ମନ ଠିକ ହେଇଯିବ । ଆମ ନାଗି ସିନା ଏ ଏମିତି ହଉଚନ୍ତି—କୋଉ ଦିନ ଏ କୋଡ଼ି ଧରି ମାଟି ହାଣୁଥିଲେ ଆଉ···

ଶୀତଦିନେ ବି ଝାଳ ବୋହିଲା ମୁଣ୍ଡରେ, ଗାମୁଛରେ ଝାଳ ପୋଛୁ ପୋଛୁ କହିଲା ଗୋକଳ···

ତମେ ଭାବୁଥିବ, ମୁଁ ଭାରି ସୁଖି କାମ କରୁଥିଲି କଚେରୀରେ । ତମେ ଥରେ ମୋ କାମ ଜାଗାକୁ ଯାଇଥାନ୍ତ କି ଦେଖିଥାନ୍ତ । ପରି ପେଇଁ, ପାଞ୍ଚଟା ଟଙ୍କାକୁ ଜଗି କେତେ କଣ କରିବାକୁ ପଡ଼େ ତମେ ଭାବି ପାରିବ ନେଇଁ ବକଲ ବୋଉ ! ମୂଳରୁ ମୋର ସେଥିରେ ନ ପଶିଥିଲେ ଭଲ ହୋଇଥାନ୍ତା । ଖାଲି ପର ଛିଦ୍ର, ଖାଲି ପରର ଖରାପ୍ କରି ଏ ହାତ, ମୁହଁ ମୋର ବଦ୍ ହେଇଯାଇଚି । ଆଉ ଯିଏ ଶ' ଶ' ଲୋକଙ୍କର ଅନିଷ୍ଟ କରେ, ତାର ଗୋଡ଼ରେ ମୁଁ ତେଲ ମାରିଚି କେତେ !···ସେ ଦିନ କୁଷୁନ୍ଦାସପୁର ମଦନ ବେହେରାର ବଉଁଶଯାକୁ ଜରି, ତାଙ୍କ ଘରେ ମୁଁ ଯାଇ ଜୁଲମ କଲି ଆଜି ସବୁ ବାକି ଖଜଣାଯାକ ଦିଅ—ଜରିରେ ବି ଟାଣି ଟାଣି କରି ମଦନାକୁ ନବାକୁ ବସିଲି କଚେରୀକି···ବିଚରାର ସାଗୁ ପାଣି କି ପାଞ୍ଚଣ ଖାଇବାକୁ ଅଧଲାଟା ନାଇଁ, ପସୁଣୀ ଖଣ୍ଡିକ ବନ୍ଧା ପକେଇ, ମତେ ଆଣି ଗୃରି'ଣା ପଇସା ଦେଇ ବିଦା କଲା ।

···ହଁ ବକଲବୋଉ, ଏମିତି କେତେ ପଇସା ଆଣି ମୁଁ ତମକୁ ଦେଇଚି··· ତମ ପାଖରେ ନିଶ ଫୁଲେଇ, ତମର ରୋଜଗାରୀ ମରଦ ବୋଲି ନିଜକୁ ଖୁବ୍ ପାରିଲାର ଭାବିଚି···

ବକଲ ଦାନ୍ତଘଷା ବନ୍ଦ କରି ପଗ୍ଟରିଲା···

ସେ ପୁସୁଣୀ ସେ ମୁକୁଳେଇଲା ନା ବାପା ?

ପୁଅର ମୁହଁକୁ ଗୃହିଁଲା ଗୋକଳ । ତାର ପୁଅ ତାକୁ ପଗ୍ଟରୁଚି ଏ କଥା ।

···ସତ କଥା କହିଲୁ ରେ ପୁଅ ! ମୁଁ କଣ ଆଉ ବୁଝିବାକୁ ଯାଇଚି ଏ ସବୁ କଥା ! ମୁଁ ଥିଲି ଆନକାର ପିଆଦା, ହା-ହା-ହା······

ପୁଣି ହାଣି ବସିଲା ସେ ମାଟି । ଖୁବ୍ ଜୋର୍‌ରେ । ମନରେ ତାର ଭାବନା···

ପିଲାଟା ମତେ ଏକଥା ପଗ୍ଟରିଲା, ଆଉ ମୁଁ ଦିନେ ଏ କଥା ଭାବିଲି ନେଇଁ !···ଏ କଣ ଗୋଟାଇ କଥା, ଏମିତି ଶ' ଶ' ହଜାର, ହଜାର ଘଟିଥିବ ଏ

କେତେ ବର୍ଷର ଗୃହକର୍ମ ଭିତରେ ।···କି କାଳ ମତେ ଘୋଟି ଥିଲା ସେତେବେଳେ ?··· ମାଇପ ଖାସିଆ ପିନ୍ଧିବ, ତାହାର ଗଡ଼ା ମଜୁରି ବଣିଆକୁ ଦବା ନାଗି ଅର୍ଜ୍ଜୁନା କୋଉଠୁ ମୁଁ କରିବ ଦୋଷୀ ! ବିଚରାର ଜୀବିକା ଜାଲ ଖଣ୍ଡିକ ଉପରେ, ମୁଁ ପାଣିକୁ ଡାକ ଖପରା ନେଇ ମଡ଼େଇ ଦେଲି !···କେତେ ଇଲଶି ତ ସେ ମତେ ଦେଇଛି—ଆଉ ଆଠଣା ପଇସା ଦେଲା ନେଇଁ ବୋଲି ତା ମୁହଁକୁ ଅନେଇଲି ନେଇଁ ଟିକେ···

ଉଃ······

ବକୁଳି ବୋଉ ଚମକି ପଡ଼ିଲା ଏ ଶବ୍ଦରେ । ସେ ଆଖି ଟେକି ଦେଖିଲା, ସ୍ୱାମୀ ତା'ର ବସି ପଡ଼ିଛି କୋଡ଼ି ହଣାର ମାଟି ଉପରେ—କୋଡ଼ିଟା ଛୁଟିକି ଯାଉଛି ହାତରୁ ।

ବକୁଳି ପାଟି କରି ଉଠିଲା···

ଗୋଡ଼ ହାଣି ହୋଇଗଲା—ବାପା ଗୋଡ଼ ହାଣି ପକେଇଲେଣି ବୋଉ···

ଏଁ, ତମେ କଣ କଲ···ମତେ ମରଣ ହବାକୁ, ମୋର ନାଗି ତମର ଏ ଦଶା ।···ତମେ ଜାଣି କରି ଏତେ କଥା କଲ···!

ନାଇଁ ମ, ଟିକେ ନାଗୁ ବାଜିଚି ବକୁଳି ବୋଉ !

ହଁ···ରକତ ଝୁବାଳି ଛୁଟିଚି···ସେଥିରେ ଆଉରି ଲୁଚେଇବାକୁ ବସୁଚ···

ଗୁଲି···ଗୁଲି···ଉଠିଲି···

ତୁ ବାପାଙ୍କୁ ଘରକୁ ଆଣେ ବୋଉ, ଗେଣ୍ଡୁ ପତର ଦେଇ ବାନ୍ଧି ଦବା···

ସ୍ୱାମୀକି ଉଠେଇ ଆଣି, କ୍ଷତସ୍ଥାନ ଧୋଇ ଦେବାକୁ ଲାଗିଲା ବକୁଳି ବୋଉ । ବାଁ ପାଦର ବୁଢ଼ା ଆଙ୍ଗୁଠି ତଳକୁ ବସିଚି ଚୋଟ—ଆଉ ଟିକିକରେ ଆଙ୍ଗୁଠିଟା ଯେମିତି ଛିଣ୍ଡି ଯାଇଥାନ୍ତା । ଆଖିରୁ ଖସିପଡ଼ିବ ଯେମିତି ବକୁଳି ବୋଉର ଡ଼ୋଳା । ପାଣିରେ ଭାସି ଯାଉଚି ଖଣ୍ଡିରକ୍ତ ।

ହଁ, ତମେ ମୋର ପେଇଁ ଆଜ ଏ କଥା କଲ ଏକା !

ଶିଳରେ ଗେଣ୍ଡୁ ପତ୍ର ଛେଚିଲା ବକୁଳି । ତାହାପରେ ସଫା କନା ଖଣ୍ଡେ ଖୋଜିଲା ବକୁଳି ବୋଉ ।

···ସଞ୍ଜବତୀ ଦବାକୁ ତ ଚିରାକନା ଏବେ ସାତ ସପନ ହେଲା······

ହଠାତ୍ ମୁହଁ ବନ୍ଦ କଲା ଗୃହିଣୀ । କେତେଦିନର ଅଭ୍ୟାସ, ପରିସ୍ଥିତିର ଗୁରୁତ୍ୱ ମାନୁଚି କେତେବେଳେ !

ବୋଉର ନିରୁପାୟତା ଦେଖି, ନିଜର ବସ୍ତାନି କନାରୁ ଖଣ୍ଡେ ଚିରି ଆଣିଲା ବକୁଳି । ଗେଣ୍ଡୁପତ୍ରର ଛେଚା ଦେଇ ଭଲ କରି ବାନ୍ଧିଦେଲା ତାର ବାପାର କ୍ଷତକୁ ।

ଶାସନର ସ୍ୱରରେ କହିଗଲା ବକୁଳି ବୋଉ···

ତମେ କୁଆଡ଼େ ଯାଅ ନା, ଏଇଠି ତୁନି ହେଇ ବସ···ନଇଲେ ଘରେ ନିଆଁ ନଗେଇ ଦେବି କଉଚି ।···ତମର ସବୁଦିନେ···ମୋର ଏକ ଦିନେ ।

ପାଟି କରି କହିଲା ଗୋକୁଳି···

ମତେ ଛିଣ୍ଡା ଦେଇ ଯା, ସେ ଝୋଟ କେଶକ ବାନ୍ଧ ଦେଇ ଯା' ଗୁଳରେ ।
ମୁଁ ଏଇଠି ବସି ବାଣୀ କେବଏ କାଟେ···ଖାଲି ଆଉ କ'ଣ ବସି ହବ···ଆରେ ବିକଳ, ନାଇଁ···ନାଇଁ, ତୁ ଗୃହାଳିକ ଯା, ପଛକୁ ମୁଁ ସେଥିରେ ମଞ୍ଜି ବୁଣିବ ।

ଅନିଚ୍ଛା ସହ ଆଜି ଗୃହାଳୀକ ଗଲା ବିକଳ । ଅଣ୍ଟିର ମୁଡ଼ିଗଣ୍ଡାକ ଉପରୁ ତା'ର ବି ଆଜି ଲୋଭ କମି ଯାଇଥାଏ ଯେମିତି ।

ବିକଳ ବୋଉର ମନ ହେଉଥାଏ, କିଛି ଜମା ସେ କାମ କରନ୍ତା ନାହିଁ ଆଜି । ହେଁସ ଖଣ୍ଡେ ପକେଇ, ଶୋଇ, କବାଟ ଆଉଜେଇ ସେ ଆଜି ଖାଲି କାନ୍ଦନ୍ତା । ···ତାର ସ୍ୱାମୀ, ଦଶଟା ଭେଣ୍ଡିଆଙ୍କୁ ଯେ ଗୋଇଠା ମାରି ଗଡ଼େଇ ଦିଅନ୍ତା, ସେ ଆଜି ଅକର୍ତ୍ତବ୍ୟ, ସେଇଥିପାଇଁ ସେ ଆଜି ହାଣି ବସିଚି ଗୋଡ଼, ଏଥିରେ ସେ କାନ୍ଦିବ ନାହିଁ ତ ଆଉ କଣ କରିବ ?

କିନ୍ତୁ ଇଚ୍ଛାର ବିପରୀତ କରି ବସିଲା ସିଏ । ସ୍ୱାମୀ ଯେପରି ଶୀଘ୍ର ଖାଇକରି ଆଜି କଚେରୀକି ଯିବ, ସେହିପରି ଚଞ୍ଚଳ ହୋଇ ଉଠିଲା ପୁଣି । ବାସନକୁସନ ରଖି ଦେଇ ସେ ଗାଧେଇ ପଡ଼ିଲା ଝଟ । ଚୁଲି ଉପରେ ପାଣି ହାଣ୍ଡି ବସେଇ ଦେଇ, ଲୁଣ୍ଡା ନେଇ ନିଆଁ ଆଣିବାକୁ ଗଲା ସାହିକି । ନିଆଁ ସହିତ କାନରେ ଶିମ ଦିଟା ଧରି ସେ ଫେରିଲା । ଚୁଲିରେ କୁହୁଳା ପକେଇ ଦେଇ ସେ ଯାଇଁ ନିର୍ମାଲ୍ୟ ପାଇ ବସିଲା କୋଥଳି ଫିଟେଇ ।

ମୁଣ୍ଡରେ କିନ୍ତୁ ପାନିଆ ଦେଲା ନାହିଁ ଆଜି । ଖାଲି ଟିକେ ସିନ୍ଦୂର ନାଇଲା କପାଳରେ । ଲୁହ ତା'ର ଖସି ପଡ଼ିଲା ଆର୍ସି ଉପରେ ଆଖିରୁ ।

ସେଇ ଅନେକ ଦିନ ତଳର କଥା, ଭୁଆସୁଣୀ ବେଳର—ମୁଣ୍ଡ ଦିନେ ଭଲ କରି କୁଣ୍ଡେଇ ନ ଥିଲା ବୋଲି ଏଇ ବିକଳ ବାପ ରାଗି କରି କେତେ କଥା ତାକୁ କହିଥିଲା । ପିଙ୍ଗୁପାଡ଼ୀ ଶାଢ଼ୀ ନ ପିନ୍ଧିଥିଲେ ଲୁଗାକୁ ନିଆଁରେ ଜାଳି ଦବ ବୋଲି କହିଥିଲା । ଆଜି କୁଆଡ଼େ ଗଲା ସେ କଥା ; ଓଲଟି ଲୁଗା ଖଣ୍ଡେ ନ ଦେଇ, ନିଜ ଉପରେ ଅକସ ନେଇ ସେ ଆଜି ଗୋଡ଼ ହାଣି ପକେଇ ବସିଚି ।

ଆର୍ସି ଦେହରେ ତଳୁ ଉପରୁ ଗଡ଼ିଲା ପୁଣି ଲୁହ । ଆର୍ସିର ଭିତର—ବାହାରେ ବିକଳ ବୋଉର । ବିକଳ ବୋଉ ଗୁପ୍ତ ବି କାନ୍ଦୁଚି ଆଜି !

ହଁ, କୋଉଦିନୁ ସେ କହୁଥିଲେ, କୋଳଥ ଜାଇରେ ବିଲାତିବାଇଗଣ ଦେଇ ରାନ୍ଧିବାକୁ—କୋଉଠୁ କା'ଘରେ ଦେଖି ଆସିଥିଲେ କୁଆଡ଼େ । ଜାଇ ଦିଓଁ ଜଳା ବାହାରି କଲା ବଡ଼ା ଭିତରୁ, ଶିକାରୁ । କୂଅମୂଳରେ ସେ ଦିଟା ଗଛରେ ଅନେକ ଦିନୁ ବିଲାତି ବାଇଗଣ ଫଳିଚି, ପାଚିଗଲାଣି ବି ଡିନିଟା ।

ତୋଳି ଆଣିବାକୁ ଗଲା ବିକଳ ବୋଉ ।

ମଲା, ଇଏ କଣ ହେଲା ମ ! କିଏ ଡାକୁଟାର ବି ଅଦଉଡି···

ଲଙ୍କାମରଚ ଗଛରେ କଣ୍ଟା ବି ଡାଳ ଆଉଜେଇ ଦେଇଥିଲା ସେ, ଗୋରୁ ଛେଳଙ୍କ ମୁହଁରୁ ରକ୍ଷା କରିବାକୁ । ସେ କଣ୍ଟା ଏବେ ଓଲଟି ଲଗିଲା ବକଲବୋଉର ହୃଦୟରେ । ସେ ମନେ କରିଥିଲା, କଣ୍ଟା ତାକୁଟା କେବଳ ଲଗିଯାଇଥିଲା ମାତ୍ର । ଆଉ, ମନ ଭିତରରେ ତାକୁ ସେ ଖାତିର କରି ନ ଥିଲା । କିନ୍ତୁ ସେ ବେଷେଇଘରକୁ ପଶି ଯାଉଁ ଯାଉଁ ଡାକି ଉଠିଲା ଗୋକଳ···

କବାଟା ଖଣ୍ଡିକ ଓଲଟେଇ ପିନ୍ଧି ବକଲବୋଉ···

ପଛ ଆଡ଼କୁ ମୁହଁ ଝୁଙ୍କେଇ, ମିଡମ୍ବର ଲୁଗା ଟାଣି ନେଇ ବକଲ ବୋଉ ଦେଖିଲା, ତାର ଶେଷ ସମ୍ବଳରେ ବି ପ୍ରହାର ।

ଗୋକଳର ମନରେ ବସ୍ତ୍ରର ସେହି ତ୍ରିକୋଣୀକ କ୍ଷତଟି ହୋଇ ଉଠିଲା ପ୍ରଗାଢ଼ । ସେହି ଛିନ୍ନାଂଶ ଭେଦ କରି ଚର୍ମର ଯେଉଁ ପ୍ରଭା ବିକାଶ ପାଉଥିଲା, ସେଥିରେ ନୁହେଁ—ସେହି ଦରିଦ୍ର ସୌନ୍ଦର୍ଯ୍ୟାନୁଭୂତିର ଊର୍ଦ୍ଧ୍ବକୁ ଗ୍ଳଲଯାଇଥିଲା ସେ । ତାହାର ଅନୁଭୂତିରେ ସ୍ଥାନ ପାଉଥାଏ କେବଳ, ଏଇ ଯୁକ୍ତି କେବଳ ଦଗ୍ଧ କରିବାକୁ ଆସିଚି ଦରିଦ୍ରକୁ, ଦୁର୍ଗତକୁ । ଦରିଦ୍ରର ଘରେ ଘରେ ଏହିପରି କେତେ ଚିତ୍ର ଫୁଟି ଉଠିଚି ଆଜି—ବକଲବୋଉ କେବଳ ମୋ ପାଖର ।

ପୁଣି ବାଣୀ କାଟିବାରେ ମନଯୋଗ କଲା ଗୋକଳ । ପ୍ରଣୟିନୀ ସହିତ ଆଳାପ କରିବାର ସମସ୍ତ ଦ୍ୱାର ଯେପରି ଆଜି ରୁଦ୍ଧ ହୋଇ ଆସିଛି ତା'ର । କିଛି ସମୟ ପରେ ଏହିପରି ଅଜ୍ଞାତରେ ଏକ ପ୍ରଭାତକୁ ଭାସିଗଲା ତା'ର ମନ । ସେ ପ୍ରଭାତ ଆଜି ଆଉ ଏ ପ୍ରଭାତରେ ନାହିଁ—ତାହାର ପର୍ଯ୍ୟୁ ଶବର ଆବର୍ଜନା ଖାଲି ଏଥିରେ । ଖାଲି ଦୁର୍ଗନ୍ଧ । କାହିଁ ସେହି ପ୍ରଭାତ ? ସେତେବେଳେ କେତେ ଖୁସୀ ହେଉଥିଲା ସେ, ଯେତେବେଳେ ବଧୂବେଶରେ ସ୍ତ୍ରୀ ତା'ର ସକାଳେ ଗାଧୋଇ ଆସି ଗୋଡ଼ ଦେଉଥିଲା ଏଇ ଅଗଣାରେ । ସଦ୍ୟ ଯୌବନ, ତାହାକୁ ଧରି ଆସେ ସଦ୍ୟ-ସ୍ନାତା ବଧୂ । ଆକାଶର ଆଲୋକ ଅପେକ୍ଷା ଶତ ଗୁଣ ଆଲୋକ ତାର ଅନ୍ତରରେ ନାଚି ଯାଉଥିଲା, ସେ ଆଦ୍ୟ ସୁଷମାର ଅଭ୍ୟୁଦୟରେ । ଆଜି ସେହି ସୁଷମାର ଶବ ଉପରେ ଶଗଡ଼, ପୁଣି ଦ୍ରୁତଗତିରେ ଗ୍ଳଲପାଉଛି—କେବଳ ଚିତ୍କାର ଫୁଟିଉଠୁଚି ସେଥିରୁ ।

···ଗୋକଳ ହାତରୁ ଖସିପଡ଼ିଲା ଡ଼ିଗ, ବାଣୀ ବି ଛୁଡ଼ିଗଲା ସେଥିରେ । ଦ୍ୱାରମୁହଁରେ ସେ ଶୁଣିଲା ମହାଜନର ସ୍ୱର ।

ଗୋକଳ ଭାଇ, ଗୋକଳ ଭାଇ ଘରେ ଅଛ ? ଏଇ ଗୋକଳ ପିଆଦାଙ୍କ ଘର ନା ?

ପିଣ୍ଡାରୁ ଡେଇଁପଡ଼ି ଠିଆହେଲା ଗୋକଳ । ଯେପରି ତା'ର କୌଣସି ଅସୁସ୍ଥତା ନାହିଁ ; କମ୍ବା ଯୁଦ୍ଧର ବିକ୍ଷତ ସୈନିକ ଭଳି ମଦ ବୋତଲଟା ଖାଲି କରି ଦେଇ କ୍ରୁଦ୍ଧ ଉଠିଲା ସେ ।

ବକଲ ବୋଉ, ମହାଜନ···

ତୁଣ୍ଡର କଥା ତୁଣ୍ଡରେ । ଗୋକଳ ଯାଇଁ କବାଟ ପାଖରେ ପହଞ୍ଚିଲା । କବାଟ କେବଳ ଆଉଜା ହୋଇଥିଲା, ତାକୁ ଭିତରକୁ ଓଟାରି ଆଣି, ମହାଜନକ ଟାଣି ଆଣିଲା ଗୋକଳ ।

···ଆରେ ! ତୁ କେମିତି ଆଇଲୁ ଏଠିକି ?

ମହନ କଥା କହୁ ନ ଥାଏ କଣ୍ଟୁ, କେବଳ ଆଖି ତାର ଖୋଜୁଥାଏ ଆଉ କାହାକୁ । ଗ୍ରେଟ ଦୁଆର ଖଣ୍ଡକର ଉତ୍ତର ପାଖକୁ ରୋଷେଇଘର—ଚୁଲରୁ ତା'ର ଧୂଆଁ ଉଠୁଚି ଉପରେ । ସେହି ଘରକୁ ପଶିଗଲା ହଠାତ୍ ମହନ । ପଛେ ପଛେ ଗୋକଳ ମଧ ପହଞ୍ଚିଲା ସେଠି । ସମସ୍ତେ ଅଗାଧୁଆ ବୋଲି ଘରର ବେଶି ଦୂରକୁ କେହି ଯାଇ ପାରିଲେ ନାହିଁ । ଆଉ ଏହି ଆକସ୍ମିକ ଏବଂ ଅପ୍ରତ୍ୟାଶିତ ଆକ୍ରମଣରେ ପୃଷ୍ଠଭଙ୍ଗ ମଧ ଦେଇ ପାରିଲା ନାହିଁ ବକଳ ବୋଉ ।

ଏଇ ମହନ, ବକଳ ବୋଉ···

ତମର ହଅିର ।

ତାହା ପରେ ମହନ ପୁଣି କହିଲା···

ବାଃ, ତମେ ସବୁ ଏଠି ମଉଜ୍ କରି ଖାଇବ, ମୁଁ ଖାଲି ସେଠି ବରିପା ବାଳକ ଅନେଇ ଥେବ । ଆଉ ଭଣ୍ଡାରି ପରି ତମ ନୁଗାପଟା ବୋହିକରି ଆଣିବ ଆନକାରୁ ।···ଦେଖନ ନୂଆବୋଉ, ଏ ଅବର୍ଯ୍ୟା ନୁଗାଗୁଡ଼ାକ ଗୋକଳ ଭାଇ କଣି ଥେଲେ, ମୁଁ ଆଉ ଶ୍ରୀମନ୍ତ ବାରିଲୁବିଲ କେତେବେଳେ ପକେଇ ଦେଇ, ଛୁ—; ହଅ, ତମ ନୁଗା ବୋହି ଆଣିବାର ମଜୁରି ଦେଲ ଆଗେ ମତେ !

କହୁସାରି ଗୋକଳର ମୁହଁକୁ ଚାହିଁଲା ମହନ । ଗୋକଳ ଦେଖିଲା, ଗାମୁଛା ଘେରା କାଖତଳୁ ମହନ ବାହାର କରିଛି ଲୁଗାର ଗୋଟିଏ ବଣ୍ଡିଲ୍ ।

ହଉ, ହଉ, ଆ; ପିଣ୍ଡାରେ ବସିବା ଆ, ସିଏ ବାହାରିଲେ ସିନା ମଜୁରି ଦବ···

କହି କହି ମହନକ ଧରି ଦୁଆରକୁ ଆସିଲା ଗୋକଳ । ତାହା ପରେ ମହନ ହାତର ଲୁଗା ବଣ୍ଡିଲ ନେଇ ସେ ଖୋଲିବାକୁ ଲଗିଲା ।

ଏଣେ ତେଣେ ଅନଉ ଅନଉ ମହନର ଆଖି ପଡ଼ିଲା ଗୋକଳର ଗୋଡ଼ ଉପରେ । କହି ଉଠିଲା ମହନ···

ତମର ଗୋଡ଼ କଣ ହେଲା ଗୋକଳ ଭାଇ ?

ଏଁ, ଓହୋ, ସତେ ତ !

ସେହି କ୍ଷତ ଉପରକୁ ଫେରି ଆସିଲା ଗୋକଳର ମନ । ବସିପଡ଼ିଲା ସେ ପିଣ୍ଡା ଉପରେ ।

ଆରେ ଖଣ୍ଡେ ବଛଣା ହଅ, ହୋ ବକଳ ବୋଉ !

ବଛଣା ପାଇଁ ଅପେକ୍ଷା ନ କରି ବସି ପଡ଼ିଲା ଭୂଇଁ ଉପରେ ସେହି ପିଣ୍ଡାରେ ମହନ । ଏ ପର୍ଯ୍ୟନ୍ତ ମଧ ଲୁଗାର ସେହି ଚିରା ଫାଳଟା ବଦଳେଇ ନ ଥାଏ ବକଳ ବୋଉ । ଆଉ ବଦଳେଇବ ସେ କେମିତି, ଭାବିପାରୁ ନ ଥାଏ ବି । ସାମନା ସାମନି ଦେଖାଯାଉଚି ରୋଷେଇଘର, କବାଟ କଣଟା ବି ବିପଦସଙ୍କୁଳ ହୋଇ ଉଠିଲାଣି ଏମାନଙ୍କ ଅତ୍ୟାଗ୍ରହରେ । କବାଟ ଆଉଯାଉଚି ବା ସେ କେମିତି !···ପୁଣି ସେ କଣ ଏଇ ଅଜଣା ଲୋକ ଆଗରେ ହବ !···ମହନ ! ··ହଅର । ତା' ପାଟିରେ କେତେଥର

ଆବୃତ୍ତି କରି ନେଲା ସେ ନିଃଶବ୍ଦରେ ।···ବଞ୍ଚଣା ଦବ ପୁଣି କିଏ ! ଗୋଡ଼ ତ ତାଙ୍କର ଏମିତି ! ଆଉ କିଛି ନ ଭାବି ପଛ ପାଖର ଶିରୀ ଉପରେ ଫେରିର ଲୁଗାକୁ ଖସେଇ ଦେଇ, ଚାଲକୁ ମୁହଁ କରି ସେ ବାହାରି ଆସିଲା ପଦାକୁ ।

ଗୋକଳ ସେତେବେଳକୁ କହୁଚି···

ଇଏ ତ ସରକାରୀ ନୁଗା ନୁହେଁ, ବୁଣା ନୁଗା ଖାଲି—କୁସୁନୁପୁରୀ କସ୍ତା । ତୁ ସକାଳୁ ଯାଇଁ କୁସୁନ୍‌ପୁର ହେଇ ଏଠିକି ଆସିଲୁଣି ମହନ ?···ଆଉ ତମେ ନାଜ କରୁଥା, ତମ ନାଗି ଜଣେ ସାତଜାଗା ହେଇ ଆସି ପହଞ୍ଚିଲାଣି ତମ ଘରେ ।···ଆରେ ତୁ ଏତେ ଗୁଡ଼ା ଟଙ୍କା କାହିଁକି ଖର୍ଚ୍ଚ କଲୁ କହିଲୁ ?

ମହନର ମନରେ ସେହି ଗୋଟିଏ କଥା ଖେଳିଲା ଏ ପ୍ରଶ୍ନରେ ।···ଯାହାର ହାତ ମୁଠା ଆହୁରି ମଜଭୁତ ହବ ଆମକୁ ବାଡ଼େଇବାକୁ, "ସେଇ ଭାସ୍କର ନା'କକୁ ମୁଁ ସେମିତି ଦେଇ ଦେଲି ପଚିଶ ଟଙ୍କା ଆଉ ମୁଁ ତମକୁ ସବୁ ଭୁଲିଯିବି !···ଆଉ ତମେ ପାଞ୍ଚଟା ଟଙ୍କାରେ ଗୋଟା କାର୍ତ୍ତିକ ମାସର ଆକାଶବତୀ ଜାଳି ଦେଇ ଆସିଲ କାଲି । ମୁଁ କଣ ଆଉ ପଶୁ !

ଅଧେ ସରମ ଅଧେ ଅସରମ ଭିତରେ ଗ୍ଲେଟ ସପ ଖଣ୍ଡେ ସେମାନଙ୍କ ପଛରେ ବଢ଼େଇ ଦେଲା ବକଳ ବୋଉ । ହଠାତ୍ ହାତକୁ ତା'ର ଧରି ପକେଇଲା···ଗୋକଳ । ହାତରେ କାଚ ତା'ର ଝମ୍ ଝମ୍ ହୋଇ ଉଠିଲା ସେଥିରେ । ସରମରେ ରଙ୍ଗା ପଡ଼ି ଆସିଲା ବକଳ ବୋଉର ମୁହଁ । ହସି ହସି କହିଲା ଗୋକଳ···

ମୁଁ ଆଉ କିଛି କରୁ ନେଇଁ ମ । ଏ ପାଖକୁ ଆସ, ଦେଖ ତମର ଦିଅର କେତେ ଶାଢ଼ୀ ଆଣିଚି ତମ ପେଇଁ । ତିନିଟଙ୍କା ଆଠଣାର ବଦଳରେ ଆମେ କେତେ ପାଇଲେଣି ଦେଖ !

ଏତିକି କହି ନିଜ ସଙ୍ଗରେ କଥା କହିବାକୁ ବାଧ ହେଲା ଗୋକଳ ।··· ତେବେ ସବୁଯାକ, ଏଇ ମୋର ଜୀବନଟା ଦେଇ ଦେଲେ ମୁଁ କଣ ନ ପାଇବି !

ଏହି ଭାବନା ଭିତରେ ହାତ ତାର ଶିଥିଳ ହୋଇ ଆସିଲା ବକଳ ବୋଉର ହାତରୁ । ବକଳ ବୋଉ ବୁଝିହିଁ ପାରୁ ନ ଥାଏ କି, ରହିପାରୁ ନ ଥାଏ—ନିଜକୁ ମୁକ୍ତ କରି ସେ ଚାଲିଗଲା ଘରକୁ । ଘରୁ କ୍ଷଣକ ପରେ ଶୁଭିଲା ଗୁଆକାତିର ଖଟ୍ ଖଟ୍ ଶବ୍ଦ ।

ତାହାର କିଛି ସମୟ ପରେ ସେହି ଘରର କବାଟଟା ବାଡ଼େଇ ହେଇ ଉଠିଲା । ଅନେଇଲା ଗୋକଳ, ତାହାକୁ ଆଖି ଠାରି ଡାକୁଚି ବକଳ ବୋଉ ।

ପିଣ୍ଡାରୁ ଉଠି ଗୋକଳ ଗୋଡ଼ ଲଗେଇଲା ତଳେ । ଗୋଇଠିରେ ଭରା ଲଗେଇ, ଦବେଇ ଦବେଇ ଚାଲିବାକୁ ଚେଷ୍ଟାକଲା ।

ତମର ଗୋଡ଼ କଣ ହେଲା ଗୋକଳ ଭାଇ, କହିଲ ତ ନେଇଁ !

ଗୋକଳ ସେତେବେଳେ ଉତ୍ତର ଦେବାକୁ ଜାଣିକରି ତ୍ରୁଟି କରିଥିଲା । ବର୍ତ୍ତମାନ ସେ କେବଳ ହସି ଦେଲା—କ୍ଷୀଣ ହସ । ମହନ ତଥାପି ଜିଜ୍ଞାସୁ । ଏହି ସମୟରେ ଚୁପା କଣ୍ଠରେ କହିଲା ବକଳ ବୋଉ, ଘର ଭିତରୁ ।

···ଜାଣୁ ଜାଣୁ ପର ଗୋଡ଼ୂଟାକୁ ହାଣି ପକେଇଚନ୍ତ ଆଜ···କୋଉ କାଳେ ଇଏ ଶାଗ କଆର ହାଣୁଥିଲେ···

ହସି ହସି କହିଲ ଗୋକଳ···

ଯା ହଉ, ଏତକ ତ ଉପ୍ରୁଗାର ହେଲା, ମହନଙ୍କ ତମେ ଏତେ ଚଞ୍ଚଳ କଥା କହିଲ ତ ସେଥିପେଇଁ !

ମହନ ବ ହସିଉଠିଲ । ସେହିପର ହସି ହସି ସେ କହିଲ···

ତା'ହେଲେ ଗୋଡ଼ଟାକୁ ମୁଁ କାଟି ଦଉଚ ନୂଆବୋଉ, ଗୋକଳ ଭାଇଙ୍କର । କଣ ସେଥିରେ ଉପ୍ରୁଗାର ହବ ପଗ୍ଭରଲ ନୂଆବୋଉ ଗୋକଳ ଭାଇଙ୍କି ?

କଥାର ଉତ୍ତର ପରିବର୍ତ୍ତେ ବକଳ ବୋଉ କେବଳ ହସୁଥାଏ—କବାଟ କଣକୁ ଆଉଜ ଯାଇଁ ; ଦୁଇଟି ପୁରୁଷ-ହୃଦୟ ମୁଗ୍‌ଧ ହେଉଥାଏ ସେଥିରେ ।

ହସି ହସି ପୁଣି କହିଲ ମହନ···

ତା'ହେଲେ ତମେ ଆଉ କବାଟ କଣରେ ବସିବ ନେଇଁ - ଆଖିଠାର ଡାକବ ନେଇଁ ଗୋକଳ ଭାଇଙ୍କି । କୌଣସି କଥା ଆଉ ନୁଚେଇ ପାରବ ନେଇଁ ମତେ !··· ଆଚ୍ଛା, ହଉ, ହଉ, କଣ ରାନ୍ଧିବ ବଲ ପଗ୍ଭରବ ତ ଗୋକଳ ଭାଇଙ୍କି ?···ଦେଲ, ପାନ ଖଣ୍ଡେ ଆଗେ···

ଉଠି ପଡ଼ିଲ ମହନ । ଗୋକଳର ସେ ପର୍ଯ୍ୟନ୍ତ ବକଳ ବୋଉ ପାଖରେ ପହଞ୍ଚିବାକୁ ଡେର ଅଚ୍ଛ । ସେ ଯାଇଁ ପହଞ୍ଚି, ପାନ ପାଇଁ ହାତ ବଢ଼େଇଲ ବକଳ ବୋଉ ପାଖରେ । ମୁହଁ ଉପରକୁ ଲୁଗା ଟାଣି ଦେଲ ବକଳ ବୋଉ । ଆଉ ତା'ର ସାରା ଦେହ ଯେପର କାନ୍ଥ ସଙ୍ଗରେ ଏକ ହୋଇ ଯିବାକୁ ଚେଷ୍ଟାକଲ । ସେ ପାନ ଦେଇ ପାରିଲ ନାହିଁ ମହନକ । ପାନ ସେ ଭଙ୍ଗି ନାହିଁ । ଖାଲ କୋଉ କାଳର ଖଡର ଗୁଆ ଚେନା ଏ ଭଙ୍ଗି ସେ ସ୍ୱାମୀର ଚେତନା ଆକର୍ଷଣ କରୁଥିଲ ସେଥିପାଇଁ । ତାହା ପୁଣି ନିର୍ମମ ପରସ୍ତ ପାଇବାକୁ ବସିଲ ବର୍ତ୍ତମାନ ।

ହଠାତ୍ ମହନ ବୁଝିପାରିଲ ଅବସ୍ଥାଟା । ସେ ଫେରପଡ଼ି କହିଲ······

ହଉ, ହଉ, ମୁଁ ଦାଣ୍ଡ ଆଡ଼ୁ ଆସେ । ଆଉ ଗୋକଳଭାଇଙ୍କର ଗୋଡ଼ ତ ହାଣି ହେଇ ଯାଇଚ—ତମକୁ ପାନଗୁଆ ଆଣି ଦେଇଥାନ୍ତା କଏ ! ତମେ ଭାତ ରାନ୍ଧୁଥା ନୂଆବୋଉ, ମୁଁ ଆସେ ।···ସେ ସାହି ଭିତରେ ପା' ଗୋଟେଇ ସାଉ ଦୋକାନ ଗୋକଳ ଭାଇ ?

କେବଳ ପଗ୍ଭରିଲ ମାତ୍ର । ଉତ୍ତରର ଆବଶ୍ୟକ ନ ଥିଲ ଏଥିଲଗି । ଏ ଅଞ୍ଚଳର ସେ ବେପାରି । ଖାଲ ଗୋକୁଳ ସିଂ ଘର ଥିଲ, ତା ପକ୍ଷରେ ନୂଆ । ପୂର୍ବର ଦୁର୍ଦ୍ଧାନ୍ତ ଗୋକଳ ସିଂ ପିଆଦା ସାଙ୍ଗରେ ବଂଧୁତା ତା'ର ମାତ୍ର ଦିନକର ।

## —ଷୋହଳ—

ଧୋୟା ଅଞ୍ଚଳର ଗାଁ ଗୁଡ଼ାକ ଭିନ୍ନ ପ୍ରକାର । ଯେପରି ଗଡ଼ଜାତ ଭିତରେ ଯେଉଁଠି ପୁଲାଏ ପଦା ହୋଇଥାଏ ଜଙ୍ଗଲ, ସେହିଠାରେ ମଣିଷର ଘର; ତାହାର ବିପରୀତ ଠିକ୍ ମୋଗଲବନ୍ଦୀ ଅଞ୍ଚଳ । ପୁଣି ମୋଗଲବନ୍ଦୀ ଭିତରେ ଏ ଧୋୟା ଅଞ୍ଚଳ ଭିନ୍ନ । ସମତଳ ଭୂମି ଉପରେ ଉଚ୍ଚ ମୂଳଦୁଆ, ତାହାରି ଉପରେ ମଣିଷର ଆବାସ । ଏହି ସୁଉଚ୍ଚ ମୂଳଦୁଆର ମଝିରେ ସାହି ଭିଆରି କରି ଯେଉଁ ଅପ୍ରଶସ୍ତ ରାସ୍ତା ଖଣ୍ଡେ ଚାଲିଯାଇଛି, ତାହା ପୁଣି ଅସମ୍ଭବ ରକମର ଖାଲ । ବର୍ଷାଦିନେ ଏବଂ ବନ୍ୟା ସମୟରେ ଦୁଇ ପୁରୁଷ ପାଣି ହୁଏ ରାସ୍ତାରେ । ଏହି ଜନବସତିର କୁଦଗୁଡ଼ିକ ଛଡ଼ା ଜଳମଗ୍ନ ହୋଇଯାଏ ଚତୁର୍ଦ୍ଦିଗ । ବସତିର ଚକଡ଼ାଗୁଡ଼ିକ ହୋଇଉଠେ ଦ୍ୱୀପମୟ । ସେଥିପାଇଁ ଏ ଅଞ୍ଚଳକୁ ଚତୁର୍ମାସ୍ୟାରେ ଯମ ଆସେ ନା ବୋଲି କହନ୍ତି । କିନ୍ତୁ ବୋଧ-ହୁଏ ଏହା ସତ୍ୟ ଯେ, ସାହାଯ୍ୟ ବିନା ସ୍ୱତନ୍ତ୍ର ଭାବରେ ଯମ ଆସେନା ଏଣିକି । କିମ୍ବା ହଇଜା ଓ ବସନ୍ତର ଅକାଳମୃତ୍ୟୁକୁ ଯମ ରାଜାଙ୍କର ମରଣାଦେଶ ବୋଲି ଧରା ଯାଇ ନାହିଁ । କେନାଲ୍ କୂଳର ଗ୍ରାମଗୁଡ଼ିକଠାରୁ ଏହି ବନ୍ୟାବିଧୌତ ଅଞ୍ଚଳ ଅନେକ ଭାବରେ ପରିଷ୍କୃତ ହେଲେ ବି, ତାହାର ମୃତ୍ୟୁ ତାଲିକା ନୁହେଁ ଆଦୌ ପରିଷ୍କୃତ । ଯମରାଜା ଯେ ଅନେକ ଥର ବର୍ଷକ ଭିତରେ ତାହାର ମହିଷକୁ ପିଟି ପିଟି ଅଥା କରୁଥାଏ ଏଣିକି ଆସିବାପାଇଁ, ଏଥିରେ ସନ୍ଦେହ ନାହିଁ ।

ସାହି ଭିତରେ ଡାହାଣ ବାଁରେ କେତେ ଜାଗାରେ ଘୂରି ଶେଷରେ ଗୋଟିଏ କଦମ୍ବଗଛ ଆଗର ଦୋକାନ ଘର ପାଖରେ ପହଞ୍ଚିଲି ମଦନ ।

ଶାଳୁଆ କାଠର ତେଲ-ପାଚିଲି ଚିକ୍କଣ ପୁରୁଣା ଚଉକି ଖଣ୍ଡିକ ଉପରେ ଦୋକାନରେ ବସିଥିଲା ଗୋଟେଇ ସାହୁ । କାନରେ କାଚରି ସୁନାର ଜାଉଁଳି ନୋଳି । ପାନ ବି ଖଣ୍ଡେ ଗାଲରେ । କିନ୍ତୁ ଉଚ୍ଚ ହୋଇ ନାହିଁ ଗାଲ – ଯେମିତି ଅର୍ଥମାତ୍ରର ହାତ ବାଜିଚି ସେଥିରେ । କିନ୍ତୁ ତେଲ ଜୁକୁ ଜୁକୁ ବାଳ । ଉପୁଡ଼ି ଯାଇ, ଯାହା କିଛି ବଞ୍ଚି ରହିଛି ବୟସର ହାତରୁ, ସେଥିରେ ଯେମିତି ଗଞ୍ଜର ସହାନୁଭୂତି ଲଗେଇ, ତାକୁ ଗଣ୍ଠି ପକେଇ ସାଇତି ରଖିଚି ବୁଢ଼ା । ରୁମ ଉକୁଟା ସାନ ମଠା ଲୁଗା ଖଣ୍ଡେ ଦେହରେ । ଦେହରେ ତାହାର ଗାଧୁଆ ଲୋକର ଛବି । କପାଳରେ ଗୋରଚନାର ଚିତା । କ୍ଷୌର ପାଳି ପୂରିବାକୁ ଆହୁରି ବୋଧହୁଏ ଦୁଇଦିନ ବାକି—ସେଥିଯୋଗୁ ତେଲ ଚିକଣା ଗାଲରେ କଦମ୍ବକେଶରର ଶୋଭା । ବୟସ ବଢ଼ିଉଚି ଷାଠିଏ ପାଖକୁ ହାତ ।

ଦୂରରୁ ମଦ୍ଦନଙ୍କ ଦେଖି କହି ଉଠିଲା ଗୋଖେଇ…
ସକ୍‌ଖାନ୍ତୁ ତମେ ଆସି ଏ ରାଜ୍ୟରେ ହେଲଣି—ଆଉ ହବ ନେଇଁ…ହବ ନେଇଁ ! ହଁ, କାନ୍ଧରେ ଲକ୍ଷ୍ମୀ ବଇଚ, ବସେଇ ଦଉଚ କେତେକେ…
…ବଟୁଆଟା ଆଗେ ଦବଉ !
କହି ଆଗର ଦରଭଙ୍ଗା ଘୋଡ଼ଆ ଖଣ୍ଡ ଉପରେ ବସିପଡ଼ଲା ମଦ୍ଦନ । ତାହା ପରେ ଗୋଖେଇ ସାହୁ ହାତରୁ ବଟୁଆ ଆଣି ପାନ ଭାଙ୍ଗିବାରେ ଲଗିଲା ।

•

ବର୍ଷ ପାଞ୍ଚ ଭିତରେ ଗୋଖେଇ ସାହୁ ଏ ଅଞ୍ଚଳକୁ ଆସିଚ—କୁସୁନ୍‌ପୁରେ ଘର । ଶଶୁର ଘର ତା'ର ଏଇ ଗାଁରେ । ବୁରୁନ୍ଦୁ ଆଉ ଗୋଖେଇ ଦ ଭାଇ । ଗଞ୍ଜେଇ ଫୁଙ୍କରେ ଦ ଭାଇଯାକ ଗାଁ ଦୋକାନକୁ ଉଡ଼େଇ ଦେଲା ପରେ ଚେତା ପଶିଲା ଗୋଖେଇର । କନ୍ତୁ ମାଇପର ପାଣ୍ଠିରେ ତାର ଦୋକାନ । ଖଡ଼କ୍‌ପୁର, ଚନ୍ଦ୍ରପୁର ଆଉ ବରଅଠା ହାଟକୁ ଗୋଖେଇ ହାଟ ପାଳଦନ କୁସୁନ୍‌ପୁରରୁ ଯାଉଥିଲା ଦୋକାନ ନେଇ । ରାତ ଦଶଟାରେ ହାଟରୁ ଫେରି ଅଗୁଟ ହେଇ ବଛଣାରେ ପଡ଼ଯାଉଥିଲା ।—କାନ୍ଥ ଠଣାରେ ରେଜକ ମୁଣିଟା ରଖି ଦେଇ, ନୋଟ୍ ବଡ଼ାକ ଗୁଞ୍ଜିଦଏ ସେ ଗୁଲରେ । ସେଇଥିରୁ ହାତପାଣ୍ଠି କରି ମାଇପ ତା'ର ବୁଦ୍ଧି ଦେଇଚ ତାକୁ । କନ୍ତୁ ଗୋଟିଏ ହେଲେ ପିଲାପିଚକା ନାଇଁ ବୁଢ଼ାର । ସେଥିପାଇଁ ଗୋଖେଇର ନାହିଁ ତବେ । ପଇସା ତାର ସବୁ । ନ ହେଲେ ଅଛନ୍ତ ତ ବଡ଼ଭାଇର ପିଲା । ପୁଅ ଝିଅ ମିଶି ବୁରୁନ୍ଦୁ ସାହୁର ଛ' । ନିଶା ତାକୁ ଏ ପର୍ଯ୍ୟନ୍ତ ଗୁଡ଼ ନ ।
ଟଙ୍କା ପଚିଶଟିରେ ଦୋକାନ ଖୋଲଥିଲା ଗୋଖେଇ । ବର୍ତ୍ତମାନ ସେ ପଚିଶର ଦଶ ଗୁଣ ଗଣି ଦେଇ ପାରବ । ଟ୍ୟୁବ୍ କୂଅର ପମ୍ପ୍‌ରେ ପାଣି ଉଠେଇବାକୁ ଯେମିତ ଚଳାଏ ପାଣି ଦରକାର ହୁଏ, ଏ ଯୁଦ୍ଧ ବଜାରରେ ପଇସା ଉଠାଇବା ଲଗି ଟିକେ ପଇସାର ଗନ୍ଧ ଦରକାର ସେହିପର । ତାହା ପରେ ବେଶ୍, ଯେତେ ପମ୍ପ୍ କରପାରବ ସେତେ ପାଇବ, ପାଣି ।
ଆଉ ବ, ଅନେକ ଦନ ତଳେ ଯେଉଁ ଜନଷକୁ ମାଟି ଗୋଡ଼ ସଙ୍ଗରେ ଫୋପାଡ଼ ଦେଉଥିଲେ ଦୋକାନୀ, ତାର ଏହିକ୍ଷଣି ଦର । ତାର ଦର ପୁଣି ଏତେ ବେଶି ଯେ, ସେଥିରେ ବ ମାଟି ଗୋଡ଼ର ମିଶ୍ରଣ ଆବଶ୍ୟକ—ନ ହେଲେ ସେ ମହାର୍ଘ ହୋଇ ଉଠିବ ବେଶି । ଯେପରି ସେହି ଅପାର୍ଥିବ ଭୋଗ୍ୟବସ୍ତୁ ମାଟି ଗୋଡ଼ର ଆଶ୍ରୟ ନ ନେଲେ ମାଟି ମଣିଷର ହାତକୁ ଆସି ପାରୁ ନ ।
ଇଏ କଣ ଜାଗା ଗୋଖେଇ ସା' ?
ଗ୍ରାମବାସୀ ବନମାଳ ସିଂ ସଉଦା ନେଉ ନେଉ କହଲେ ଦୋକାନୀଙ୍କ ଆଖିକ ଉପରକୁ ଖୋସି ଦେଇ ଗୋଖେଇ ଯେପରି ଭାଷ୍ୟ କରବାକୁ ଲଗିଲା ଦୁର୍ଜ୍ଞେୟ ବେଦାନ୍ତର…

ମୁଁ ତମକୁ ହେଲେ ଦେଇଚ, ସେ ଜୀବ କଣ ତମେ ଆଖିରେ ଦେଖିବ ହେଲେ, ମୁଣ୍ଡ ବୁଲେଇ ଦେଇ ସାତ କୋଶ ପଳେଇ ଯିବ । କଣ କରିବ, ମାଟି ଗୋଡ଼ ତ ହେଲା କଇଡ଼ । ଘରେ ଆମର କାଲ ସେମିତି କଣ କହୁଥିଲେ—ଆମେ ବି ତ ସେସ୍ବାକୁ ଖାଉଚୁ ।

ହାତରେ କଦମ୍ବ ପତର ଭିତରେ ଜୀବ । ତାକୁ ଫୁଙ୍କି ଫୁଙ୍କି ଧୂଳି ଉଡ଼େଇ ଗ୍ଭଲିଗଲେ ବନମାଳୀ ।

ତମେ କଣ କଉଚ ନା'କ ପୁଅ—ଏ ନୋକଙ୍କୁ ଏଇଆ । ଅଲପ ହେଲେ ବୁଝିବ ନେଇଁ—ଆଉ କଣ କରିବ ଏଥିରେ କହିଲ ? ସବୁ ଜନମରେ ତ ନିଆଁ ନାଗିଚ, ସେ କଥା କଣ ବୁଝିବେ ? କହିବେ, କମ୍ଭ ହେଲା ଗୋଖେଇ ସା ! ଗୋଖେଇ ସା, କାହିଁକ ଉଣା ହବ । ତା' ହାତ କଣ ପୋଡ଼ ଯାଉଚ ?···

ମହନ୍ତ ଏ କଥାରେ ହସି ଉଠିଲାଣି । ତାକୁ ଲକ୍ଷ୍ୟ କରି ଗୋଖେଇ କଥା ବାଗେଇଲା ଯେପରି···

ତମେ କଣ କଉଚ କ ନା'କ ପୁଅ ଏ ଧୂଳି ବାଲି ଆମେ ମିଶେଇଚୁ ବଲି ? ···ଗ୍ଭମ୍ ବୋଲ···ହୁଁଃ' ଗ୍ଭମ ରଖିଚନ୍ତି ଯେ ନକ୍ଷଣ କେଞ୍ଚିବେ । ହଁ, ତୋର କଣ୍ ଲୋ ମା ?

ନାଇଁ···ଫେରେଇ ନେ ତୋ ମାଲ୍‌ପା, ବୋଉ ମତେ ଗାଳିଦେଲା । ଏତିକ ଗ୍ଭରିପଇସାର ମାଲ୍‌ପା !

ମାଳରଙ୍ଗର ତେଲ ଶିଶି ହାତରେ ଗୋରା ବର୍ଣ୍ଣର ଦଶ ବର୍ଷର ଝିଅଟିଏ । କଥା ଶୁଣି ତା'ର ହସି ହସି କହିଲା ଗୋଖେଇ ସାହୁ······

ଭଲ କଲା ଲୋ ତୋ ବୋଉ, ଭଲ୍ କଲା । ଆଣ୍ ଆଣ୍, ଶିଶି ଆଣ, ଖାସା କଥା ।···ଜାଣିଲ ନା'କ ପୁଅ, ଇଏ ଆମ ପୁରୋହିତ ଘର । ନାରଣ ପାଢ଼ିଷ୍ଣିଙ୍କ ଝିଅ । ଆଙ୍କୁ ଫେରେ ଆମେ ଠକୁଥିଲୁ । ହୁଁଃ ! ଦେ ଝିଅ ଆଣ୍ ।

ତେଲ ତାକୁ ତାକୁ ଠେକକ ଅନେଇ ଅନେଇ ପୁଣି କହିବାକୁ ଲାଗିଲା···

ସଉଦା ବିକିବାକୁ କଣ ଆଉ ମନ ଅଛି, ପକେଇ ରଖିବା କଥା, ସେମିତି ପଡ଼ି ରଇଥିଲେ ଆଉର ଟଙ୍କା । କ'ଣ କରିବା ନା'କ ପୁଅ, ତମମାନଙ୍କ କାମ ଚଳେଇବା ନାଗି ସକାଳୁ ଉଠି ବସିବା କଥା । ନ ହେଲେ ମୋର ଏଇ ପଡ଼ିଥିଲେ ଗ୍ଭରି ଅଧରେ ଟଙ୍କା ଆସି ମତେ ଡାକିବ ।

ଝିଅଟି ଗ୍ଭଲିଯାଇଛି । ତାକୁ ଏକଦୃଷ୍ଟିରେ ଅନେଇ ରହିଲା ପଛରୁ ମହନ୍ତ । ହଠାତ୍ କଣ ଭାବି ଉଠିଯାଇ ତାକୁ ସଙ୍ଗରେ ଧରି ଆଣି ଗୋଖେଇ ସାହୁ ଆଗରେ ପହଞ୍ଚି କହିଲା, "ଦିଅ, ଦିଅଣାର ଦିଅ ।"

ମହନ୍ତର ମୁହଁକୁ ଅନେଇ ଟିକେ ହସିଦେଲା ଗୋଖେଇ । ତାହା ପରେ ଶିଶି ମୁହଁରେ କାହାଳୀ ଲଗେଇ ଠେକରୁ ପଳା ଉଠେଇ ଗଣିଲା, ଗ୍ଭମ୍ ଦୋ, ତିନ୍··· ।

ପିଲାଟା ଗ୍ଭଲିଯିବା ପରେ ମହନ୍ତ ପୁଣି କହିଲା···

କଉସିମା ମତେ ଦବନ୍ତି କଚ୍ଛା । ଚେନା—ଫେନା ଅଛି ନା ?

…ରାମ ବୋଲ, ରାମବୋଲ, ଆଉ କୁହନା—କୁହନା ! କଣ୍ କଥା ଜାଣିଲ ନା'କ ପୁଅ, କାନରେ ହାତ ଦବ ଶୁଣିଲେ । ଆଉ କଣ, ପ୍ରେସିଡଣ୍ଟ ଘର ମାଇପେ ତ ଏବେ ସଉଦା ବକଲେ—ଏଥିରେ ଆମ ହାତକୁ ମାଲ୍ ଆସିବ କେମିତି । କରାସିନି ଠଉଁ, ଚେନି ଠଉଁ—ସୋଠା ଗୁଣ୍ଡ ବ ବକଲେଣି ସିଏ ! ଯାହା ଟିଣେ କାନ୍ତର ମାସକୁ ମତେ ଦଉଥଲେ, ଏବେ ତାଙ୍କର ଗୋଟା ରାଣ୍ଡୀ ଭଉଣୀ ଆସି ପହଞ୍ଚିଛୁ ଯେ, ଏତେ ଫିକର ନଗେଇଚ ଟସେଇ—ଘଡାଘଡ଼ ଉଠେଇ ଦଉଁଚ ତା ଶାଶୁଘର ଗାଁକୁ ଜନିଷ, ସେଠି କୁଆଡ଼େ ଆହୁର ଦାମ୍ ।…ନୋକଙ୍କର କା'ର ପଳା ଅଧପଳା ଭାଗ ପଡ଼ୁଚ, କଏ ଏଥିରେ କୋଶ କୋଶ ବାଟ ଯାଉଚ, ତାଙ୍କର କପାଳ ଆଉ…।

ଯେତେବେଳେ ଗ୍'ରଣାଙ୍କୁ ଦଶ'ଣାରେ କଣି ବୋତଲ ଟଙ୍କା ଲେଖେଁ ବକୁଥିଲା ଏଇ ଗୋଖେଇ ସାହୁ, ସେତେବେଳେ ନିଜର କପାଳକୁ କେବଳ ମନେ ମନେ ପ୍ରଶଂସା କରୁଥିଲା—ନିନ୍ଦା କରୁ ନ ଥିଲା ପ୍ରେସିଡେଣ୍ଟ୍‌କୁ । କେହି ପ୍ରେସିଡେଣ୍ଟର ଦୋଷ ବଖାନ କର କଛି କହୁଥିଲେ, ଭଡ଼ାଟିଆ ଦଲାଲ ଭଳି, ଏହି ଗୋଖେଇ ତାଲ ଧରୁଥିଲା ପ୍ରେସିଡ଼େଣ୍ଟ ପାଇଁ । କନ୍ତୁ କରାସିନ ଯେ ଗୋଖେଇ ପାଖରୁ ସରିଛି, ତାହା ବଶ୍ୱାସ କରିବା କେବଳ ସରଳତା । କାରଣ, ତାହାର ସଙ୍ଗାର ତଦାରକ୍ କମ୍ବା ତାହାର ଖତଗଦା ତାଡ଼ ଭାରତ ରକ୍ଷା ପାଇଁ ଚେଷ୍ଟା କରିବାକୁ ଏ ଅଞ୍ଚଳରେ ଲୋକର ଅଭାବ । ଗାଁ ଡିଅରେ ବଳୁଆ ମହାବଳ ପରି ଏହି ଅନୁନ୍ନତ ଜାନପଦମାନଙ୍କ ଭିତରେ ଅର୍ଦ୍ଧଶିକ୍ଷିତ ପ୍ରେସିଡେଣ୍ଟ ଆଉ ଦଫାଦାର ପୁଣି ହାକମ୍, ସେଠି ଅନ୍ଧାରରେ ପଛେ ବ୍ଲାକାଉଟ୍ ନିୟମ ପାଳିବା ଭଲ, କନ୍ତୁ ଦନ ଅଧକର ଆଲୋକ ଲାଗି ବହୁଦନର ଅନ୍ଧାର ଖୋଜିବାପାଇଁ ସାହସ କରିବ କଏ ? "ଭାତ ମୁଠା କେମିତି ମିଳବ କୁହ; ଆଉ ଏଇ କରାସିନ ଟୋପାକରେ କଣ ପେଟ ଭର୍ତ୍ତି ହବ !" ଏତକ ମାତ୍ର ନିରୁପାୟ ପାଇଁ ଆଶ୍ୱାସନା ହୋଇଛି ଯାହା । ସେତକ ପାଇଁ ପୁଣି ଦଣ୍ଡ ଦେବାକୁ ପଡ଼ୁଥିଲେ ତାହା ବି କହୁ ନ ଥାନ୍ତେ ଲୋକେ ।

ଏହି ମୁନାଫାଖୋରଙ୍କ ଡଙ୍ଗାରେ ବ ବସିଛି ମହନ । କନ୍ତୁ ନିଆରା ତା'ର ବାଟ । ବୁଣାବୁଣି ସମୟରୁ ଟଙ୍କା ଦାଦନ ଦେଇ ଗୋଟା ରେଟ୍ ଠିକ୍ କରି ଦେଇଥାଏ । ସେହି ରେଟ୍‌ରେ ଫସଲ ଧରି ଚଳନ୍ତି ଭାଉରେ ବକେ ସେ ବଖତ ବେଳେ । ମିଛର ବାଟ ସେଠି ନାହିଁ । ମାତ୍ର ଲାଭର ବାଟ ଅଛି । ତା' ନ ହୋଇଥିଲେ ତାହାର ସେହି କର୍ଦ୍ଦମର ଶକଟକୁ ଆଜ ଶୁଖିଲା ବାଟରେ ଚଳେଇଥାନ୍ତା ସେ କେମିତି ! ଅଧଃପତିତଙ୍କ ପାଇଁ ସମାଜ କମ୍ବା ରାଷ୍ଟ୍ରର ତ ନାହିଁ କୌଣସି ବ୍ୟବସ୍ଥା ! ଅଧଃପତିତ, ଅଧଃପତିତ ରହେ କମ୍ବା ହୁଏ ନିପତିତ । ସେହି ମଣିଷ ତିଆରି ଭାଗ୍ୟକୁ ମଣିଷର ହାତ ଧରି ସେହି ମଣିଷର ରୂପରେ ମହନ ତାକୁ କରିଛି ପଦାଘାତ । ଏହି ଚଳନ୍ତି ଦୁନିଆଁରେ ପ୍ରତ୍ୟେକ ନିର୍ମୋକ ତ୍ୟାଗର ତଳେ ଦେଖିବାକୁ ମିଳେ ସେହି ପଦାଘାତ ।…

…ପଦ ପଦକର କଥା । ଖର୍ଦ୍ଦି ଜନିଷକୁ ଆଷାଢ଼ ମାସକୁ ପକେଇ ରଖିଲେ ସେ ଆଉ ଦୁପଇସା ଫାଇଦା କରେ । କନ୍ତୁ ମନରେ ଦିଲ୍‌ଗିଲ୍, ହାତରେ ଟଙ୍କା, ଏହିପରି ଗୋଟା ଜୀବାତ୍ମା ଧରି ମହନ ବଞ୍ଚେ । ଏହା ବୋଧହୁଏ ତାହାର

ଅଶିକ୍ଷାର ଗୁଣ । ଟଙ୍କା ଲୋଭରେ ଯେ, ନିଜର ସମ୍ବଳକୁ ବିକ ଦେଇ, ପୁଣି ବର୍ଷା ଋତୁରେ ଦୁର୍ଦ୍ଦିନକୁ କାଟିବାର ବ୍ୟର୍ଥ ପ୍ରୟାସ କରି, ଏଇ ଲୋକମାନେ ଝରାବଦନଯାକ ଅଖା ଟେକିନେଇ ଧରି ଧାନ ଗଣ୍ଡାକ ପାଇଁ ନାଲକୂଳିଆ ଗାଁ ଗାଁ ରେ ଯାଇ ବୁଲନ୍ତି, ଏହା ସେ ଭଲକରି ଜାଣେ । କିନ୍ତୁ ଏ ଲୋକେ କଣ ଘରେ ରଖିବେ ହେଲେ ଜିନିଷ, ମହାଜନ ନ କିଣିଲେ ଆଉ କିଏ କିଣିବ । ଗାଁ ଗାଁକେ ବେପାରୀ, ହାଟ ହାଟକେ ମହାଜନ ।

ଗୋଖେଇଙ୍କ ଏଥିପାଇଁ ଦୋଷୀ କରି ପାରୁ ନ ଥାଏ ମହାନ । ତାଙ୍କର ଗାଁରେ କଚେରୀ, ତାଙ୍କର ଗାଁରେ ବାବୁଘର । ସରକାରୀ ଗୃହ ପଡ଼ିକରି ବି ତାଙ୍କ ଖମାରରୁ କେତେ ଧାନ ଯାଏ ଉଭେଇ, ସେ କଣ ଆଉ ଜାଣେନା ! ଏହି ଗୋଖେଇ ସାହୁଙ୍କୁ ସେ ଭାବିବ କଣ ? ତାହାର ଅନେକ ଥରର ସିଦ୍ଧାନ୍ତ ଧରି ସେ ଖାଲି ଶେଷକୁ ଏହି ସର୍ବଗ୍ରାସୀ ଦୋଷରେ ହେଉଛି ଦୋଷୀ । ଏ ଦେଶର ଅଦ୍ଭୁତ ଅର୍ଥନୀତି ସେ ଜାଣେନା, ସରକାରୀ ଶାସନନୀତିର ଗଫ୍‌ଲତି ମଧ୍ୟ ତା' ପାଖରେ ନିରନ୍ଧ୍ର···ଅଜ୍ଞାତ । ସେଥିପାଇଁ ସେ ବେଳେ ବେଳେ ମଧ୍ୟ ଭାବେ, କୋଳଥ ଆଉ ଧୂଆଁପତ୍ର ବି ଲଢ଼େଇରେ ଲାଗେ ?

ସେତେବେଳେ ଗୋଖେଇ ସାହୁ କହୁଥାଏ ଚମ୍ପେଇ ପାଲୁଣୀକି···

ପଇସା ଗୋଟା ପଛେ ମାଗିବୁ ଦେବି, ଆଉ ରୁଆଏ ଧୂଆଁ ତର ମାଗେ ନା କହି ଦଉଚି ।

ପରିହାସ କରି କହି ଉଠିଲା ମହାନ···

ଦେଲ ଗୋଟା ପଇସା ଗୋଖେଇ ଭାଇ ?

ଏକ ଅଦ୍ଭୁତ ଭଙ୍ଗୀରେ କହିଲା ଗୋଖେଇ···

ଆଚ୍ଛା କଥା ତମେ କହୁଚ; କହେ ପଇସା ଗୋଟା କେଉଁଠୁ ଆସିବ ? ନିଅ—ଦୋପଇସି ଗୋଟା ନିଅ···ଏତକ କମିଛି ଏତେଦିନେ ମିଳାଲା କୁହ, ନଇଲେ ତ କାଗଜ ଦେଖି ଦେଖି ଦିନ ଯାଉଥେଲା···

ହସି ହସି କହିଲା ମହାନ···

ମୁଁ ସେଇଥିନାଗି କହୁଥେଲି ନା,···ଦେଲ ଗୋଖେଇ ଭାଇ, ମତେ ପାନ ଗୁଆ ଗୁଣ୍ଡି ଟଙ୍କାକର ଦେଲ ! ମୋ ପଛରେ ଏଠି ତିନିଜଣ ଆସି ଗଲେଣି, ମୁଁ ବସିଚି !

ଏଥିରେ ଯେପରି ଖୁସୀ ହେଲା ଗୋଖେଇ । ଗୁଆ ପାଚିଆ କାନ୍ଥର ଥାକ ପଟାରୁ କାଢ଼ୁ କାଢ଼ୁ କହିଲା···

ଏ ସନ କେତେ କାରବାର ଫାନ୍ଦିଚ ନା'କ ପୁଅ !

···ଏଇ ଟଙ୍କା ତିନି ହଜାର ଭିତରେ—ଏକାଟିଆ ନୋକ, କେତେ ଏବେ ଘୂରିବ । ହଁ, ଗୁଆ ସେର ଏବେ କେତେ ହେଇଚି ?

କଳା କଟକଟ ପାନଖିଆ ଦାନ୍ତ ଉପରେ ଆଗେ ହସ ମାଖିଦେଲା ଗୋଖେଇ, ତାହା ପରେ କହିଲା···

ତମକୁ କଣ ସେ ରେଟ୍‌ରେ ଦିଆଯାଉଚି—ହେଇ, ଟଙ୍କା ଛ'ଣାର କଣ୍ଟ୍ରୋଲ ଗୁଆ; ତମେ କଣ ତାକୁ ନବ !···ମିଛ କାହିଁକି କହିବି, ଖା'ସ ଅଢ଼େଇ ଟଙ୍କା ।

ଗୁଆ ପାଏ ଓଜନ କରି ତାହା ପରେ ଗୁଣ୍ଡି ଛଟାଙ୍କିଏ ବାନ୍ଧି, ପାନ ଗଣିଲା ଗୋଖେଇ । ପାନ ଗଣୁ ଗଣୁ କହିଲା···

କଣ ନା'କ ପୁଅ କଣସବୁ ନବ ? କହିବ ତ ତିନିଶ କାନ୍ତର ଯୋଗାଡ଼ କରଦେବ । ଏକା ଗୁର ଗୁପୁଡ଼ା ଗୁର ! ଦାମୁରଟିଏ ହଲଚଲ୍ ନାହିଁ···

ମାନେ ପାଞ୍ଚଟଙ୍କାର ଟିଣକୁ ଗୋଖେଇ ଚବଶ ଟଙ୍କା ହାଙ୍କିଲା । ପରେ କହିବ ବୋଲି କହି ପାନ-ଗୁଆ-ଗୁଣ୍ଡି ଧରି ଗୁଲିପିବାକୁ ବସି ମଦନ, ଦେଖିଲା ଯେ, ଦୋକାନ ଘରର ଖୁଣ୍ଟରେ କଦଳୀ କାନ୍ଧିଏ ଟଙ୍ଗା ହୋଇଛି । ମଦନ ପଗୁରି ଉଠିଲା, "କଣ ଏ କଦଳୀ ବିକିବ ?"

ହଁ, ନା'କ ପୁଅ । କଦଳୀ ମତେ ସୁଖ ନାଗେନା । ପୁଣି ଏ ମାଙ୍କଡ଼ଙ୍କ କଥା ତ ଦେଖୁଚ, ପୋଇଡଙ୍କ ବି ପିଡ଼ାରେ ରଖି ଦଉ ନା'ନ୍ତି । ତାକୁ କାଟି ଆଣି ଏଠି ଥୋଇ ଦେଇଚ । ପୋଖତ ହୋଇଯାଇଚ ଏକା···କଣ ଫେଣା ଖଣ୍ଡେ ଦେବ ?

ନାଇଁ, ନାଇଁ, କାନ୍ଧଟା କେତେ ନବ କହିଲ ?

ମଲା, ଏ ତମର ଏଇ କଥା ଗଲା ନେଇଁ···ଯା, ନେଇଯା, ଯା, ଖାଇ ସାଇଲେ ପଇସା ଦବ—ଏ ନ ଦେଲେ ଏବେ, କଣ ଗୋଖା କାଙ୍ଗାଳ ହୋଇଯିବ !··· ହଁ, ପଣେ ଦଅଣ୍ଡା ଅଛି···ଏଁ ତମେ କଣ ଆଉ ହାତରେ ନେଇ ପାରିବ କହୁଚ··· ଗାଡ଼ ଫାଡ଼ ତମର କୋଉଠି ଅଛି, ମୁଁ ପଠେଇ ଦଉଚ ବାଲା ହାତରେ···

ମୁଁ ନେଇ ଯିବି, କଦଳୀ କାନ୍ଧଟା ନେଇ ପାରିବ ନେଇଁ ! ତା' ହେଲେ ଏ ପଇସା ତମର ରହିଲା ଗୋଖେଇ ଭାଇ ।

ଏହା ଭିତରେ କଦଳୀ କାନ୍ଧଟା ଗୋଖେଇ ବାହାର କରି ଆଣି ଥିଲା ପଦାକୁ । ତା' ହାତରୁ କଦଳୀ କାନ୍ଧ ଧରି ଗୁଲିଗଲା ମଦନ । ସେ ଗୁଲିଗଲା ପରେ ଗୋଖେଇ ସାଧୁ ଦର୍ଶକହୀନ ପେଣ୍ଡାଲରେ ଯେପରି ଅଭିନୟ କଲା ।

···ଓହୋ, ଟଙ୍କାକର ପାନଗୁଆ କିଣିଲା, ଦିଟଙ୍କାର କଦଳୀ କାନ୍ଧଟା ବି ନେଲା !···ନଡ଼େଇରେ ନଡ଼େଇ, ତୁ କେତେ ନ ଦଉଚୁ ବଡ଼େଇ ! କାଳିବିକାଳି ଦେଲେ ଏ ନୋକକୁ ଫାଇଦା ଅଛି ।

ଏହି ସମୟରେ ରହିବା ଘର ଖଞ୍ଜାରୁ ଭୁଣ ଛୁଙ୍କର ବାସ୍ନା ଭସି ଆସିଲା । ଗୋଖେଇ ବିଚଳିତ ହୋଇ ଡାକଉଠିଲା—ନିଜର ସବା ସାନ ଶଳା—ବାଲାକୁ ।

···କରେ ବାଲା, କରେ ମତେ ବୁଡ଼େଇ ମାରିବ କ ରେ ? କ ରେ ବଘରରେ ଘିଅ ବାସନା ଆସୁଚ କଣ ?···ବାଂଜ ମାଇକନାର ଆଉ କଣ ଅଛି, ଚଦିଟ ଚକଣ, ଅମୃତ ମଣୋହି···ଶଳା ବଣିଆ ଫୁଙ୍କ ବସେଇଲେଣି ଏଠି ।

ଶେଷାଂଶଟକ ସମ୍ପୂର୍ଣ୍ଣ ଖେଦୋକ୍ତି ଏବଂ ସ୍ୱଗତ ।

× × × ×

ତାହା ପରେ ମାଛ ଅଧିବଣା ବି ଜାଣିରୁ ଆଣିଲା ମଦନ ।

ତାହାର ଏହିସବୁ ଅପବ୍ୟୟ ଦେଖି ଗୋକଳ ଅସନ୍ତୁଷ୍ଟ ହୋଇ କହିଲା···

ତୁ ଏକେ ଭାରି ଚଗଲା ! ଏତେ ଜିନିଷ ଆଣିବାରେ କଣ ଦରକାର୍ ଥିଲା କହିଲୁ ?

ହସି ହସି କହିଲା ମହନ...

ତମ ପେଇଁ କଣ ମୁଁ ଆଣିଚ ଗୋକଳ ଭାଇ !...ସବୁ ନୂଆବୋଉଙ୍କ ପେଇଁ ।

ବାସ୍ତବକ ମହନର ଜୀବନରେ ଏ ନୂଆ । କାହାର ସେ ଦରଅର ହୋଇ ନାହିଁ କମ୍ବା ଭାଉଜ ସେ ପାଇ ନାହିଁ ଏପର୍ଯ୍ୟନ୍ତ । ସାହି ପଡ଼ଶାଙ୍କ ସାଙ୍ଗରେ ସେ ଏବେ ବି ମିଶିପାରି ନାହିଁ ଭଲ ଭାବରେ । ଯେମିତି ଅନେକ ଦନ ଧରି ଝିଅ ପଶିଲେ ବି କର୍ପିମ୍ବା ଝିଣର ଦୁର୍ନାମ ଯାଏନା, ସେହିପରି ଗୋଟାଏ ଅସ୍ପୃଶ୍ୟ ସଙ୍କୋଚ ବସା ବାନ୍ଧିରହିଚ ମହନ ଭିତରେ । ସେଥିପାଇଁ ଯେଉଁ ଗାଁରେ ସେ ଶଗଡ଼ିଆ ପୁଅ, ସେ ଗାଁରେ ସେ ଆଉ କିଛି ପରିଚୟର ବିଜ୍ଞାପନ ଧରି କେଉଁଠାକୁ ଯାଏନା । ତାହାର ଯେପରି ବରାବର ଧାରଣା, ଜୀବନରେ ତା'ର ଅଯୋଗ୍ୟତା ଆଉ ଅସାରତା ଭରି ରହିଚ ଖୁବ୍ । ମିଛରେ କେଉଁଠି ଉପହାସର କାରଣ ହେବାକୁ ସେ ଯିବ କାହିଁକି ?

ସବୁଠୁଁ ଖୁସୀ ହେଉଥାଏ ବକଳ ବୋଉ । ଗୋଡ଼ ଯେପରି ତା'ର ତଳେ ଲଗିବାକୁ ଚାହେଁନା !...ତାର ପୁଣି ଦରଅର ! ମହନ ! ଓଃ, କେତେ ଭଲ ମଣିଷ ! କେତେ ଜନଷ ଆଣି ଘଣ୍ଟାକ ଭିତରେ ଏଠି ଥୋଇଲଣି ସେ ! କେତେ ସେ ଖର୍ଚ୍ଚ ଖାଲୁ ନ ଥିଲା ବକଳ ବାପାକୁ ଲୁଗା ଖଣ୍ଡକ ଲାଗି !...ତା' ସାଙ୍ଗରେ କେତେ ଦରବ ! ତାହାର କ୍ରମେ ମନେ ହେଲା, ତାଙ୍କର ଆଉ କଏ କଏ ଅଛନ୍ତି ବୋଲି କେମିତି ବକଳ ବାପାଙ୍କୁ ସେ ପଚାରନ୍ତା । ଘରଯାଚି ତାଙ୍କର କେମିତି ! କେତେ ଦରବ ସେ ଆଣି ଦଉ ନ ଥେବେ ତାକୁ ! ଏହା ଭାବି ଭାବି କଣ ନେବା ବାହାନାରେ ସେ ଥରେ ରୋଷେଇ ଘରୁ ଚାଲିଆସିଲା ବାହାରକୁ । ପିଣ୍ଡାରେ ତାର ଗୋକଳ ଭାଇ ପାଖରେ ବସିଚ ମହନ ।

ଆଲେ, ମହିଁ ଦୁଆରଟାକୁ ଆସିଲି ମୁଁ କାହିଁକି ! ହଁ ହଁ, ମହନକ ପାନ ଦେଇନ ! ମଲ, ତାଙ୍କର ଲୁଗା ପିନ୍ଧି ମୁଁ ତାଙ୍କର ଆଗରେ ହଉଚ !

ଏତିକ ଭାବନା ଭିତରେ ଶ୍ରେଷ୍ଠ ଅଗଣାଖଣ୍ଡିକୁ ଅତିକ୍ରମ କଲା ବକଳ ବୋଉ । ତା ପଛେ ପଛେ ଗୁଆ ଭଙ୍ଗାର ଶବ୍ଦ ।

...ହଁ, ଆଉ ଯେମିତି ନ'ଠକ ନୂଆବୋଉ !

ଘର ଭିତରେ ଖେଁ କରି ହସିଉଠିଲା ବକଳ ବୋଉ । ପଛେ ପଛେ ପାଟିରେ ସେ ଲୁଗା ମେଞ୍ଚାଏ ମାଡ଼ି ଦେଲା । ମହନ ଭିତରେ ଯେମିତି ଅଦ୍ଭୁତ ପ୍ରେରଣା, ନୂତନ ଉତ୍ସାହ । ପିଣ୍ଡାରୁ ଉଠିଆସି ବସିଗଲା ସେ ବକଳ ବୋଉ ପାଖରେ ।

ମଲ, ମଲ, କଣ କଲେମ ଇଏ ! ମୁଁ କାମ କରିବ ପେରେ କେମିତି !

ପିଣ୍ଡାରୁ କହି ଉଠିଲା ଉତ୍ତେଜନା ସହ ଗୋକଳ...

ଆରେ ମହନ, ନୂଆବୋଉ ଠଉଁ ତୋର ଆଜ ନାଜ ଛଡ଼େଇ ଦେ । ଡନାଟାର ମା । କପାଳକୁ ଆମର ରହିଲା ସିନା ଗୋଟିଏ, ସେଥିରେ ପୁଣି ଆଜପାଟକ ନାଜ ।

ଘର ଭିତରେ ଖିଆସି କରି କହିଲା ମହାନି···

କେମିତି ଛାଡ଼େଇବ ନାଜ କହିଲ ନୂଆବୋଉ ?

ବକୁଳ ବୋଉର ଇଚ୍ଛା ହେଉଥାଏ ସେ କହନ୍ତା, 'ଯେମିତି ତମର ଇଚ୍ଛା ।' କିନ୍ତୁ ତାହାର ଇଚ୍ଛାକୁ ରୂପାନ୍ତରିତ କରି ସେ କହିଲା···

ନାଜ କରିବାକୁ ତ ନୁଗା ଆଣି ଦେଲ—ଆଉ ନାଜ ଛାଡ଼ିବ କେମିତି !

କଅଁଳ କଥା । ଆନତ ମୁଖ । ଯେଉଁ ବୟସରେ ଏହା ହୁଏ ଖୁବ୍ ସୁନ୍ଦର, ସେ ବୟସ ଗଡ଼ିଯାଇଚି ବକୁଳ ବୋଉର । ତଥାପି ଏହା ମହାନି ପାଖରେ ସମ୍ପୂର୍ଣ୍ଣ ଅପୂର୍ବ । ଭଲ ଲାଗିଲା ତାକୁ ଖୁବ୍ ।

ମହାନିର ଇଚ୍ଛା ହେଉଥାଏ, ବକୁଳ ବୋଉର ମୁଣ୍ଡରୁ ଖସେଇ ଦିଅନ୍ତା ସେ ଟିକେ ଶାଢ଼ୀ । ଏତେ ଉଡ଼ୁଣା କାହିଁକି । କିନ୍ତୁ ହାତ ବଳିଲା ନି । କୌଣସି ଅଦୃଶ୍ୟ ଆଘାତରେ ସେ ଆହତ ହେଲା ଯେମିତି । ସେଠି ଆଉ ନ ବସି ସେ ଗୋକୁଳ ଭାଇ ପାଖକୁ ଫେରିଆସିଲା । ଅଳ୍ପ ସମୟ ବସିଲା ପରେ ସେ କହିଲା—

ଆମ ଶିକ୍ଷକ ଦେଖିଚ ନା ଗୋକୁଳ ଭାଇ ?

ମହାନିର ମୁହଁକୁ ଅନେଇଲା ଗୋକୁଳ । ତା'ର ଉତ୍ତର ସ୍ୱରୂପ ପ୍ରଶ୍ନ କଲା ସେ—କଣ ହେଲା ?

ଶ୍ରୀମତୀ ବା' ହେଇ ନେଇଁ—ତମେ ଏକା ସେ କଥା ବୁଝିବ । ମତେ ଆଉ ପୁରୁଷତ କାଇଁ, ମତେ ବି ସେ କାମ ଆସିବ ନେଇଁ ।

ସାମାନ୍ୟ ଭାବିବା ପରେ କହିଲା ଗୋକୁଳ—

ଆଗେ ଏକା ତୋ ବା'ଘର ହିବା ଦରକାର—ରାନ୍ଧି ବାଢ଼ି ମୁଠା କରିବ କିଏ ?

ଏ କଥାରେ ବାଧା ପାଇଲା ଯେମିତି ବକୁଳ ବୋଉ । ପାନ ଆଣୁ ଆଣୁ ସେ ମୁହୂର୍ତ୍ତିକ ପାଇଁ ପିଣ୍ଡାରେ ଠିଆ ହେଇ ପଡ଼ିଲା । ତା'ପରେ ସପ ଉପରେ ପାନ ଥୋଇ ଦେଇ ସେ ଅନେଇ ଅନେଇ ଚାଲିଗଲା ମହାନିକି । ବା' ହେଇ ନା'ନ୍ତି ଇଏ !!

ମହାନିର ମନେ ପଡ଼ିଲା ଲମ୍ବ୍ୟାଲ—ଜାଫରର ଭଉଣୀ । ମନେ ପଡ଼ିଲା ତାର ଗୁମୁକରଣଙ୍କ କଥା ।

ନାଇଁ ଗୋକୁଳ ଭାଇ, ଶ୍ରୀମତୀ କଥା ଆଗ···

## —ସତର—

କାଲି ଘରେ ପହଁଚୁ ପହଁଚୁ ଜାଫ୍ରାନ କେଶରର ଗନ୍ଧ ପାଇଲେ ଗ୍ରାମୁଙ୍କରଣେ ।

ସଂଧ୍ୟା ଆସିବାକୁ ଅଳ୍ପ ସମୟ ବାକି । ପଲ୍ଲୀ ଗୃହର ଗୃହଗୁଡ଼ିକ ଉପରେ ଯେପରି ଅବାହନ କରୁଚି ସଂଧ୍ୟାର । ମୀଡ଼ ଉଦ୍ଦେଶ୍ୟରେ ଦଳ ଦଳ ହୋଇ ଉଡ଼ିଯାଉ-ଚନ୍ତି ଆକାଶରେ କାଉ । ପବନରେ ଶୈତ୍ୟର ପ୍ରଲେପ । ଚକ୍ରବାଳରେ ଧୂମ୍ରାଭ କୁହେଳି—ଯେପରି ଜୀବନର ଦିବସବ୍ୟାପୀ ଆକ୍ରମଣ ପରେ ମନୁଷ୍ୟ ଓ ଧରଣୀଙ୍କ ଶୁଶ୍ରୂଷା କରିବା ପାଇଁ ସେ ପ୍ରସ୍ତୁତ କରୁଚି ରଜନୀର ରେଡ଼କ୍ରସ ଶିବିର । ଉଡ଼ି ଗୃହଗଲି ଏହି ସମୟରେ ଗୋଟିଏ ଏରୋପ୍ଲେନ୍—ପଶ୍ଚିମରୁ ପୂର୍ବକୁ । ସମରବାର୍ତ୍ତା—ମନୁଷ୍ୟର ଜୀବନ ଉପରେ ଝଂଜା । ସେଇ ଝଂଜାକୁ ପ୍ରତିରୋଧ କରିବାକୁ ହେଲେ ଗୃହକ କରିବାକୁ ହବ ଦିନ । ଡାକି ଡାକି ଗୃହଗଲି ସେ—ମିଥ୍ୟା ଏଇ ଗ୍ରାମ । ପ୍ରଭାତରେ ଭୁମୂଲ ସଂଗ୍ରାମ । ସେଥିପାଇଁ ରଚିକ କର ଜାଗରଣର ପୃଷ୍ଠଭୂମି ।

ଅନେକ ଦିନର ଆହ୍ୱାନ । ଅନାହୂତ, ଅନାଦୃତ । ହୁଏତ ଯେ ପ୍ରଥମେ ଡାକି ଯାଇଥିଲି ଏଇ ଅଞ୍ଚଳରେ, ସେ ଏରୋପ୍ଲେନ ଏ ନୁହେଁ । ଯେମିତି ସେଇ ମଣିଷ ଆଜି ନାଇଁ, ଯେ ପ୍ରଥମେ ଶୁଣିଥିଲି ଯୁଦ୍ଧର ଡାକ । ତଥାପି ଉଦ୍‌ଗ୍ରୀବତା, ଦୁର୍ବାର ଉନ୍-ମୁଖତା ମନୁଷ୍ୟର ।

ଏରୋପ୍ଲେନ୍ । ଏରୋପ୍ଲେନ୍ । ଉଡ଼ାଜାହାଜର ଶବ୍ଦ ମଣିଷର କଣ୍ଠରେ । ଗୋଟିଏ ହେଲେ ସୈନିକ ନାଇଁ ଯେଉଁ ମଣିଷର ତଳରେ, ତାହାର ଶତ୍ରୁ । ତଥାପି ସେ ଯୁଦ୍ଧର ଭାଗୀ । ତାହାର ରକ୍ତାଭ ତାମୁଲ ରାଗ ଉପରେ ଯୁଦ୍ଧର ମୋହର, ତାହାର ଅନ୍ନ ଉପରେ ଯୁଦ୍ଧର ପ୍ରହାର । ତଥାପି ସେ ଯୁଦ୍ଧର ବଳୀ—ଯୁଦ୍ଧର ଅଂଶୀଦାର ! ...ବିକ୍ଷତ ତା'ର ଦେହ, ଅନ୍ତସ୍ଥଳ ତାହାର ଜର୍ଜରିତ ଯୁଦ୍ଧର ଗୃବୁକରେ, ପାକସ୍ଥଳ ତାହାର ଭେଦ କରି ଫୁଟି ଯାଇଛି ଯୁଦ୍ଧର ବର୍ଚ୍ଛା । ବହୁତ ଦୂରରେ ବୋମା, ତଥାପି କୁଟୀର ତା'ର ଧ୍ୱସ୍ତ । ଅଧର ତା'ର ମୂକ । ବଧିର ହୋଇ ଯାଇଚି ତା'ର କାନ—ପ୍ରଶ୍ନ କେବଳ ଆଖିରେ । ପୋଡ଼ିଯାଇଚି ତା'ର ବସ୍ତ୍ର—ତଥାପି ସେ ବୁଝେନା ଏ ଯୁଦ୍ଧରେ ତା'ର ଭାଗ । ଡାକି ଡାକି ଗୃହଯାଏ ତାକୁ ଏରୋପ୍ଲେନ । ଆଖିରେ ତା'ର ଛବି, କାନରେ ତା'ର ଶବ୍ଦ । ତା'ର ବିଚିତ୍ର ଆଲୁଅ—ତାହାର ଉଦ୍ଦାମ ଗତିରେ ସେ ହୁଏ ଖାଲି ବିସ୍ମିତ । ଅତିଷ୍ଠ ହୋଇ ପଡ଼େ ତା'ର ପ୍ରକୋପରେ । ତଥାପି ସେ ବୁଝେନା ତା'ର ଅର୍ଥ ।

ପୁରାତନ ଦର୍ଶନ । ପୁରାତନ ଜାତି । ପୁରାତନ ରକ୍ତ । ଜୀବନକୁ ସେ କହିବ ମିଥ୍ୟା । ତଥାପି ସେଇ ମିଥ୍ୟା ଜୀବନ ପ୍ରତି ତା'ର ଭୟ, ପ୍ରବଳ ମମତା । ଏ ଯୁଦ୍ଧକୁ ସେ ମିଥ୍ୟା ନ କହି କଣ କହିବ ଆଉ ! ଅଦ୍ଭୁତ !

କେତେ ଧନକୁ ମନ ବାନ୍ଧିଚୁ ଆଣ୍ଟ
କ ଯେଣ ଯିବୁ ତୋର ଛୁଟିଲେ ଘଣ୍ଟ ରେ...

ଜାଫ୍ରାନ୍ କେଶରର ଗନ୍ଧ ପରେ, ଏ ଯେମିତି ଲଙ୍କାମରଚର ଧୂଆଁ । ଜଳି ଉଠିଲା ଘୁମୁକରଣଙ୍କର ମୁହଁ-କାନ । ସନ୍ଧ୍ୟା ଶେଷ କରି ଅପାଙ୍କର ଭଜନ ବୋଲା ଚାଲିଥାଏ । ପୁଣି ପଶିଲା ଘୁମୁକରଣଙ୍କ କାନରେ...

ଖଣ୍ଡି ଯେ ଖଣ୍ଡି ତୋର ପଞ୍ଜରା କାଠି
ଖାଉଣ ଥିବେ ଶ୍ୱାନ ଶୃଗାଳ ବାଣ୍ଟି ରେ...

ଡାକ ଉଠିଲେ ଘୁମୁକରଣେ ଖୁବ୍ ବଡ଼ ପାଟିରେ—

ରେ ଆନ୍ଧା, ଆନ୍ଧା, ଡାକ ଆଣିଲୁ ଦୁରୁଗାକୁ, ଆଉ ନନାକୁ ବି ଡାକ ଆଣିବୁ ତା ସାଙ୍ଗରେ ।

ଦାଣ୍ଡ ଦୁଆରର ପିଣ୍ଡାକୁ ଲାଗି ଓଳି ତଳେ ବୃନ୍ଦାବତୀ । ଜ୍ୱଳନ୍ତ ସଞ୍ଜବତୀ ଧରି ଏଇ ସମୟରେ ଆଗ ବାଟେ ଚାଲିଗଲେ ମାଳ ଦେଈ । ଯେପରି ଆଶ୍ୱାସନା ପାଇଲେ ଘୁମୁକରଣେ ।

ଜଘନରେ ତାଙ୍କର ପ୍ରାଚୀନ କବିଙ୍କର ସମ୍ପଦ । ସେଥିରେ ବି ଶଙ୍ଖ । ପାଦରେ ବି । ଖାଲି ପଦାବ୍ଜ ଲାଞ୍ଛନ ଚୁମିବାକୁ ଭୃଙ୍ଗ ନାହିଁ । କିନ୍ତୁ ଆଖିରେ ଭ୍ରମର ବୁଲିଲା ଘୁମୁକରଣଙ୍କର—ଯେମିତି ଆହୁରି ଅଧିକ ଶଙ୍ଖ ଆହୁରି ଅଧିକ ମଧୁ ଅନ୍ୱେଷଣ କରୁଚି ସେ । ହଁ, ହାତର ବାଜୁରେ ଝୁମୁକ ଝରା ଲଗେଇ ଦେଲେ କେମିତି ହୁଅନ୍ତା !

ବାପା, ବାପା, କହି ସୋଘା ଆସି ପହଞ୍ଚିଲା ପାଖରେ । ପାଦ ତାର ଟଳ ମଟଳ ହଉଚି, ସେଥିରେ ପୁଣି ଗୁଲ । ରୁଷି ଗଲା ବେଳେ ବି ଥର ଥର ହୋଇ ସେ ଦୌଡ଼ିଯାଏ ସେଥିରେ । ସ୍ୱାମୀଙ୍କର ପ୍ରିୟ ଦୃଷ୍ଟି ଆକର୍ଷଣ କରିବା ଲାଗି ମା ତା'ର "ବାପା ପାଖକୁ ଯା" ବୋଲି କହି ଦୁଆର ମଝିରେ ଛାଡ଼ ଦେଇ ଚାଲିଗଲେ ତଳ ଖଞ୍ଜାକୁ— ସେଠି ରନ୍ଧା ବଢାର କାମ ।

ପିଣ୍ଡା ଉପରକୁ ଉଠୁ ଉଠୁ ସେ ପଡ଼ିଯାଇଥାନ୍ତା, ବାପ ଯାଇ ଝୁଅକୁ ଟେକି ଆଣିଲେ କାଖକୁ ! ଶିଶୁ ହିସାବରେ କୌଣସି ଅସ୍ନେହ ନାହିଁ ସୋଘା ପ୍ରତି ଘୁମୁକରଣଙ୍କର, କିନ୍ତୁ କନ୍ୟା ଭାବରେ ବହୁତ । ତାଙ୍କର ପୁତ୍ର ଲାଭ ମୂଳରେ ଏଇ ସୋଘା କରିଛି ଲୁଠାରାଘାତ । କିନ୍ତୁ ସେ ଅନାଦର ହେତୁ ଯେ ସୋଘାକୁ ଧରନ୍ତି ନେଇ, ଏ କଥା ନୁହେଁ ; ତାହାର କାରଣ ଭିନ୍ନ । ଏଇ ଶିଶୁ କନ୍ୟାହିଁ ତାଙ୍କୁ ଅପୁତ୍ରିକତା ଲାଗି ଚେତନ କରାଏ ବେଶି । ଯା' ହେଉ ସୋଘାର ଆଜି ସୌଭାଗ୍ୟ ।

କିଛିକ୍ଷଣ ପରେ ମାଳ ଦେଈ ତୁଳସୀ ତଳୁ ଫେରି ଆସିଲେ । ଆଲୋକହୀନା ; ତଥାପି ସନ୍ଧ୍ୟାର ଫୁଲ ବଗିଚା ପରି ତାଙ୍କର ଉପସ୍ଥିତି ଘୋଷଣା କରି ଦେଲା ତାଙ୍କର ଗୌରବ । ଦଶବର୍ଷର ପରିଚିତ ସୌରଭରେ ଯେ ମୁଗ୍ଧ, ଯେତେ ଅନ୍ଧାର ହେଲେ ମଧ୍ୟ ସେ ଭ୍ରମ କରିବ ନାହିଁ ଯେ, ସେ ଗୋଟିଏ ଫୁଲ ବଗିଚା ଭିତରେ ପଶିଚି । ଖୁବ୍ ନିକଟକୁ ଚାଲି ଆସିଲେ ମାଳ ଦେଈ । ଅଳପ ଦୂରରେ ପ୍ରାର୍ଥନାରତା ଭଉଣୀ । ଆଲୋକର ଅଭାବ ହେତୁ ନିକଟ ଦୂର ହୋଇ ଉଠିଚି—ଯେମିତି ତରସ୍କରଣୀ ଟାଣି

ଦେଇଚ ସନ୍ଧ୍ୟା, ତାହା ମଣିଷର କାର୍ଯ୍ୟରେ ଲଗିବାର କଥା । କିନ୍ତୁ ମାଳ ଦେଈଙ୍କର ସାନ୍ନିଧ୍ୟରେ ଉଦ୍ଦେଶ୍ୟ ହେଲା ଭିନ୍ନ—

କାହିଁକି ରଗିଚ କି ତମେ ସେ ନନା ଓପରେ, ଭାରି ଭଲ ମଣିଷ ମ···

ଯେମିତି ସେଇ ଅନ୍ଧାରରେ ଭାସି ବୁଲିଗଲା ବିଷାକ୍ତ ବାଷ୍ପ । ଘୁମୁକରଣଙ୍କୁ ତାହା ଅତିଷ୍ଠ କରିଦେଲା, ସେ ଚିତ୍କାର କରିଉଠିଲେ—

ହୁଉଁ···କେମିତି ଅସିଲା ସେ ଲୋକ ଏଠିକି । ବାଘର ଘରେ ମିରିଗର ନାଚ । ବେହେଡ଼ା ଲୋକ···ଭଲ ମଣିଷ କଣ ? ତମେ କେମିତି ଜାଣିଲ ?

ଏ କଣ, ମାଳ ଦେଈ ଯେ ଆହୁରି କହି ନାହାନ୍ତି ଅନେକ କଥା ! ପଦନ ପୁରୋହିତ ଯେ ତାଙ୍କୁ ପରୀକ୍ଷା କରି ପୁଅ ହବ ବୋଲି କହିଚି । କିନ୍ତୁ ଆଲୋକ ବର୍ତ୍ତି-ମାନ ଦରକାର । ସେଥିଯୋଗୁଁ ଅନ୍ଧାର ଭିତରେ କୁସୁମଟିକି ପଦଦଳିତ କରି ତାହାର ଶୋଚନୀୟତା ଦେଖିବାଲାଗି ଘୁମୁକରଣଙ୍କର କୌଣସି ସୁବିଧା ରହିଲା ନାହିଁ··· ସ୍ଥୂଳତଃ ଏଠାରେ ବୟସ ଆଉ ଘୁମୁକରଣଙ୍କର ଶାସକ-ପ୍ରବୃତ୍ତି କାମ କରି ଯାଇଚି ସ୍ୱୟଂକ୍ରିୟ ହୋଇ । ସେ ତାଙ୍କୁ ମର୍ମାଘାତି ଅପମାନ ଦେଇ, ତାଙ୍କର କଥା ନ ରଖି କାର୍ଯ୍ୟ ହାନି କରି କଚେରିରୁ ପଳେଇ ଆସିଚି । ନିଜର ସ୍ତ୍ରୀ ମୁଖରେ ପୁଣି ତା'ରି ପ୍ରଶଂସା । ଆଉ ଯାହା ପେଇଁ ଆହୁରି ଅପମାନ କିଣିଚନ୍ତି ବାଲୁମିଶ୍ରଙ୍କୁ ଡାକି—ହୁଁଃ, ଭାସ୍କର ନା'କ ଆଗରେ କହୁଚି ଗୋଟା ଖାନକୀ ଆଣିଚି ଦୁର୍ଗା ।

ଅନ୍ଧାର ଭିତରେ ପଥ ତିଆରି କରି ଗ୍ଲିଗଲେ ମାଳ ଦେଈ । ଜୀବନରେ ପ୍ରଥମ, ଯେପରି ଏକ ଦଶନ୍ଧୀର ଶେଷ । ମଲ ବାଜି ଉଠୁଚି ଗ୍ଲିରେ । ଦେହର ବନ୍ଧୁ ହୋଇ ଅନ୍ତର ସଙ୍ଗରେ କୌଣସି ସମ୍ପର୍କ ନାହିଁ ତାହାର । ଗମ୍ଭୀର ଦୁଃଖ ଭିତରେ ମଧ୍ୟ ଜିଜ୍ଞାସା ଆସିଲା ମନରେ—କାହିଁକର କାରଣ ଖୋଜିଲେ ମାଳ ଦେଈ । ଯେମିତି ପାଦର ଅଲଙ୍କାର ଭିତରେ ତାହାର ଉତ୍ତର—ଶେଷ ହୋଇଚି ଯୁବତୀର ଗର୍ବ । ନାରୀର ଗର୍ବ ଆବଶ୍ୟକ ଏଣିକି । ସେଥିପାଇଁ ତାହାର ପ୍ରତିଶୋଧ ନେଲେ ସେ ବିମଳା ଦେଈଙ୍କ ଉପରେ । ଯୌବନ ହଜେଇ ଦେଇ ନାରୀତ୍ୱର ପ୍ରତିଷ୍ଠା ଦେଖେଇଚନ୍ତି ସେ ଏଠି ।

ଭାରି ତ ଅକଲ, ପିଲା ସମାଳି ପାରିବ ନେଇଁ ତ ଜନମ କରିବାକୁ କିଏ କଉଥିଲା; ଦିନସାରା ଖଟି ଖଟି ଘରେ ଆସି ଗୋଡ଼ ନ ଦଉଣୁ ନେଇ ଛୁଆଟିକୁ ମେଣ୍ଟେଇ ଦେଇ ଆସିଲା କୋଉ ପସନ୍ଦରେ—ସେଥିରେ ତାନ ଛିଣ୍ଡୁଚି ପୁଣି ମୋ ଓପରେ । ଛୁଆଲୋ, ଏତେ ଅଖାଡରରେ ଫେର୍ ଚେତା ପଶୁନାଇଁ, ଛି—

ଜୋରରେ ମଲ କରୁଢ଼ କରୁଢ଼ ମାଳ ଦେଈ ପାଚଶ କରି ଗଳି ବାଟ ଦେଇ ଗ୍ଲିଗଲେ ନଳୀ ଘର ଖଂଜାକୁ ।

ଯେମିତି ଶକ୍ତିଶେଳ ବାଜିଲା ବିମଳା ଦେଈଙ୍କ ଛାତିରେ । ବାସ୍ତବିକ୍ ବୟସ ନାହିଁ ତାଙ୍କର ଯୁବତୀ ସଉତୁଣୀ ସାଙ୍ଗରେ ପଟି ଦବାକୁ । କିନ୍ତୁ ଯେତେହେଲେ ନାରୀ ହୃଦୟ । ମରିଲ ମିନା ବକାର ଯାଏ । ସେ ନାଚି ଉଠିଲେ ଏ କଥାରେ ; ଯେମିତି ବାଘୁଣୀ କାମୁଡ଼ି ହୋଇ ଖାଲି ମନେ ମନେ ସେ କହିଲେ—ଏତେ ଗରବ, ମଣିଷ ଧିଅ ବୋହି

ତୋର ଏତେ ଗରବ । ହବ ନେଇଁ । ଦଶ ବରଷ ହେଲା ମୋଠୁ ଛଡ଼େଇ ନେଇଚ, ହବ ନେଇଁ !

ତା ପରେ ଅନ୍ଧାର ମଚ୍ଚି ମଚ୍ଚି ଯାଇଁ ସେ ସ୍ୱାମୀଙ୍କଠାରୁ ଝିଅକୁ ଛଡ଼େଇ ଆଣିଲେ । ଏ ଖଞ୍ଜାର କଥା ସେ ଖଞ୍ଜାକୁ ଶୁଭୁନା । ସେଥିପାଇଁ ଦୁର୍ଜ୍ଞେୟ ରହିଲା ଦୁଇ ପକ୍ଷରେ ଦୁଇ ଦଗର ଘଟନା । କେବଳ ଅନ୍ଧାର ଭିତରେ ଗ୍ରାମୁକରଣେ ଅନୁଭବ କଲେ, ଯେପରି ବ୍ୟାଘ୍ରୀ ଉଦ୍ଧାର କରୁଚ ବ୍ୟାଧହାତରୁ ତାର ଶିଶୁକୁ ।

ଅଧ ଦୁଆରୁ ଫେରଆସିଲେ ପୁଣି ସୋପା ବୋଉ । ଅପାଙ୍କ ପାଖରେ ଝିଅକୁ ବସେଇ ଦେଇ କହିଲେ —

ରଖିଥା ଟିକେ ଝିଅକୁ । ସାନ୍ତାଣୀ ତମର ଗଲେଣି ସାଇ ବୁଲ —ଘାତ ଚେତେଣ ଯାଉ ହେଇଯିବ···ଆଲୋ ଇଏ କଣ ! ଅପା, ଅପା, ତମେ ଏ ଶୀଗୁଟାରେ ଭିଇଁ ଉପରେ ଶୋଇଲ କାହିଁକ ଏଠି । ଏଁ, ଅପା, ଏଇଥି ଭିତରେ ତମକୁ ନିଦ ହେଇ ଗଲା ନା କଣ ! ଆଡ଼େ ଆଇଲ, ସେଠି ଠିଆ ହେଇଚ କଣ ମ···ଦେଖିଲ, ଅପା କାଇଁକ ଉଠୁ ନା'ନ୍ତି···

ଉପୂରେ ଯେମିତ ସୋପା ବୋଉଙ୍କ କଣ୍ଠ ଶୁଖି ଯାଉଚ । ଅନ୍ଧାର ଭିତରେ ପାଖରେ ଆସି ପହଞ୍ଚିଲେ ଗ୍ରାମୁକରଣେ । ସୋପାବୋଉ ଝିଅକୁ କାଖରେ ନେଇ ତଳ ଖଞ୍ଜାକୁ ଯାଇ ଲଣ୍ଠନ ଧର ଆସି ପହଞ୍ଚିଲେ ।

ଅପାଙ୍କୁ ହଲେଇ, ହଲେଇ, ନିରୀକ୍ଷଣ କର ଗ୍ରାମୁକରଣେ ପାଟିକର ଉଠିଲେ —ଅପା ଶେଷ ସୋପା ବୋଉ···ମୋ ଅପା ଆଉ ନାଇଁ···

ଏ ଏଇକ୍ଷଣି ଭଜନ ବୋଲୁ ଥେଲେ···ଅପା···ଅପା ?

ଉଚ୍ଚପାଟିରେ ଗ୍ରାମୁକରଣେ କାନ୍ଦଉଠିଲେ । ସେତେବେଳକୁ ପଦନ ପୁରୋହିତ ସାଙ୍ଗରେ ଫେରଆସିଚ ଆନ୍ଦା । ଆନ୍ଦା ହାତରେ ଗୋଟାଏ ପାପ । ଗାମୁଛାରେ ବନ୍ଧା ହେଇ ପଦନଙ୍କ କାନ୍ଧରେ ହା'ର୍ମୋନିୟମ । ପଦନର ଉଦ୍ଦେଶ୍ୟ ସଫଳ ହବାକୁ ଆଉ ଅବସର ନାହିଁ, ମଣିଷର ମୃତ୍ୟୁରେ ମଣିଷର କ୍ରନ୍ଦନ ରୋଳ ସେତେବେଳକୁ ବାୟୁମଣ୍ଡଳକୁ ଶୋକାକୁଳ କରଯାଉଛି । ଗୃହୁଁ ଗୃହୁଁ ଅନେକ ଲୋକଙ୍କର କଳରବରେ ପୂର୍ଣ୍ଣ ହେଇଉଠିଲା ପରିସ୍ଥିତି ।

ଅପା । ସେଇ ଅପା ମରଗଲେ, ଯେ ସମସ୍ତଙ୍କର—ଏ ସାହିର, ଏ ଅଞ୍ଚଳର । ଯୋଡ଼ଏ ଅକ୍ଷରରେ ପୂର୍ଣ୍ଣ ପରିଚୟ । ସେ ଅପ୍ରିୟ ନ ଥିଲେ କାହାର । ଯେପରି ଗୋଟିଏ ରଙ୍ଗଣୀ ଗଛରେ ଦୁଇ ବର୍ଣ୍ଣର ଫୁଲ — ଏକ ବର୍ଣ୍ଣୀ, ଶହିତ । ଅପା ଆଉ ଗ୍ରାମୁକରଣ । ପୁଷ୍ପିତ ଯୌବନରୁ ସେ ଯାତ୍ରା କରଚନ୍ତି ଏକ ବର୍ଣ୍ଣରେ । କେତେ ରଙ୍ଗ ବଦଳେଇ ସାରଲେଣି ଗ୍ରାମୁକରଣେ—କିନ୍ତୁ ବର୍ଣ୍ଣାଢ଼୍ୟତା ନାହିଁ ଅପାଙ୍କର । କେଉଁ କାଳରୁ ସେ ହେଲେଣି ବୁଢ଼ୀ, କେଉଁ କାଳରେ ସେ ଥିଲେ ବାର୍ଦ୍ଧକ୍ୟର ଅକବଳତା କେହି ତାହା କହିପାରନ୍ତି ନାହିଁ । କିନ୍ତୁ ଦିନେ ଯେ ସିଏ ଏଇ ଆଲୋକ ପବନରେ ବାଞ୍ଛିଦେଇଥିବେ ସୌନ୍ଦର୍ଯ୍ୟର ରେଣୁ, ତାହା ଆଜର ଏଇ ତାଙ୍କର ଲୁଣ୍ଠିତ ଶବଟିରୁ ମଧ୍ୟ ପ୍ରମାଣିତ ହୁଏ ।···ଯେତେ କାରସାପା ସହ ଧର୍ମ ଦେଖା ଦେଇଥାଉ ପଛେ ମଣିଷ

ପାଖରେ, ତାହାକୁ ଯେତେ ଉପାୟରେ ବ୍ୟବହାର କରୁ ପଛକେ ମଣିଷ, ଆଉ ତା' ପ୍ରତି ଯାହା ଧାରଣା ଥାଉ ପଛେ ଅପାଙ୍କର, କିନ୍ତୁ ସେ ତାକୁ ଧରିଥିଲେ ଖୁବ୍ ଶକ୍ତ ଭାବରେ । ସେଥିପାଇଁ ସେ ଆଖି ବୁଜିଲେ ହାତରେ ଭଜନମାଳ ଧରି । କଣ୍ଠରେ ଭଜନ ଗାଇ । ସେ ଜୀବନର ନଶ୍ୱରତା-ପ୍ରତିପାଦକ ଭଜନ ଗାଆନ୍ତି ବେଶି—ଯେପରି ଶୁଣୁ ଥିଲେ ଭକ୍ତା । କିନ୍ତୁ ସେ ଦିନେ ହେଲେ ଉପଦେଶ ଦିଅନ୍ତି ନାହିଁ କାହାକୁ—ନିଜର ପ୍ରିୟ ସାନ ଭାଇଟିକି ମଧ୍ୟ ନୁହେଁ । ସତୁରି ବର୍ଷ ହେଲା ସେ ଦେଖି ସାରିଚନ୍ତି ଲୋକଙ୍କୁ, ସେଥିରେ ପୁଣି ସେ ଭ୍ରମ କରିବାକୁ ଯିବେ କାହିଁକି ! ଗୋଟିଏ ଗାଁ ଭିତରେ ଅନେକ ରାସ୍ତା, ଗୋଟିଏ ରାସ୍ତାରେ ପୁଣି ଅନେକ ଗୃହ, ସେହି ଗୃହ ଭିତରେ ପୁଣି ଅଶେଷ ଛନ୍ଦ ; ଏହା କଣ ସେ ଦେଖି ନାହାନ୍ତି ଜମା ? ମଲାଯାଏ ଠିକ୍ ଥିଲା ତାଙ୍କର ଆଖି । କେବଳ ସେ ଦେଖି ପାରିଲେ ନାହିଁ ନିଜର ପୁଅକୁ—ମହନ୍ତ କେଶବରାମ ଦାସଙ୍କୁ । କିନ୍ତୁ ସେଥିରୁ ଯେମିତି ତାଙ୍କର ପ୍ରବୃତ୍ତି କମି ଯାଇଥିଲା । ହଁ, ଭାବିଥିଲେ ସେ ଅନେକ—ଉତ୍ସାହିତ ହୋଇଥିଲେ ବି, ବା' ନ ହଉ ପଛକେ କେଶବା, ମହନ୍ତ ହବ ତ । ଜଣେ ସନ୍ନ୍ୟାସୀ ହେଲେ ଗୋଟିଏ ବଂଶର ସପ୍ତପୁରୁଷ ଉଦ୍ଧାର ପାଆନ୍ତି--ଏ ଧାରଣାରେ ମଧ୍ୟ ତାଙ୍କର ବିଶ୍ୱାସ ଥିଲା । ମାତ୍ର ସେ ଅଳ୍ପଦିନ ଭିତରେ ନିରାଶ ହେଲେ ।···ସନ୍ନ୍ୟାସବ୍ରତ ନାଇଁ ମଠରେ । କେଶବାର ଅସଂଖ୍ୟ ପ୍ରଣୟିନୀ । ସେଦିନ ଆସିଥିଲା ସେଇ କେଶବା, କାହିଁ ତାର ସେଇ ରୂପ । କେଡ଼େ ସୁନ୍ଦର ଦିଶୁଥିଲା ସେ ମହନ୍ତ ହବା ଆଗରୁ । କୌପୀନ ପିନ୍ଧି ଖଣ୍ଡେ ଗୁଦର ପକେଇ ସେ ବୁଲୁଥାଏ—କପାଳରେ ରାମାନନ୍ଦୀ, ସୁନ୍ଦର ପୁଣି ଚେହେରା । ପାଖରେ ବସେଇ କହିଲେ ଅପା, ତୁ ନିଶ୍ଚେ ଗାଦି ପାଇବୁ କେଶ ଏକା ଏ ଶତାର ମାନ ରଖିଲେ ହେଲା । ତାହା ପରେ ମହନ୍ତ ହେଇ ଗାଁକୁ ବୁଲି ଆସିଲା କେଶବ । ସବାଙ୍କ ଡାକରେ ଗାଁ ଦାଣ୍ଡ କମ୍ପି ଉଠିଲା । ପୁଅକୁ ମହନ୍ତବେଶରେ ଦେଖିବେ ବୋଲି ଆପା ଆସି ଦାଣ୍ଡରେ ଠିଆହେଲେ । ଝାଳର ଲଗା ସବାରି ଭିତରୁ ସିଗାରେଟ୍ ଟାଣି ବାହାରିଆସିଲା କେଶବ । ରାମାନନ୍ଦୀ ନାହିଁ, କୌପୀନ ବୋଧହୁଏ ନ ଥିବ । ଝିଲମିଲ ହଉଚି ଦେହରେ ଫ୍ରେଞ୍ଚ ସିଲ୍କର ପଞ୍ଜାବୀ । ପବନରେ ଅତର ଗୋଳେଇ ଗୁଡି ପକେଟରୁ ବାହ୍ମା ରୁମାଲ ଝୁଲିପଡ଼ୁଚି । ଅପା ଖାଲି ଦେଖୁଥାନ୍ତି, ସମସ୍ତେ ମହନ୍ତ ମହନ୍ତ ହଉଚନ୍ତି—କେହି ଦଣ୍ଡବତ ହଉ ନା'ନ୍ତି କାହିଁକି, କିନ୍ତୁ ନିମିଷକରେ ସେ ତାହାର କାରଣ ବୁଝି ପାରିଲେ—ତାଙ୍କର କେଶବ ଆସିଚି, ମହନ୍ତ ନାହିଁ । ମହନ୍ତ ସୀତାରାମ ଦାସ ମୋ ପୁଅକୁ ଠକ ମହନ୍ତ ହେଇଥିଲେ ବି ଏ ଗାଁକୁ ଆସି ପଶୁଆସି ଘର ମେଲରେ କେତେଥର ରହି ଯାଇଚନ୍ତି । ବୁଢ଼ାଠଉଁ ପିଲାଯାଏ ଲମ୍ବ ଲମ୍ବ ପଡ଼ୁଥାନ୍ତି ଗୋଡ଼ତଳେ । ମୁଣ୍ଡରେ ନାମାବଳୀ ଚଦରର ପାଗ । ମୁଣ୍ଡରେ କପାଳ ଯାକ ଚିତା, ପଇତା ସାଙ୍ଗରେ ପୁଣି ଗୋଟିଏ ତୁଳସୀକଣ୍ଠୀ ବେକରେ । ପାଦର ହାଣ୍ଡି ଦାନ୍ତ ଚଳା ବସା ଶିଶୁକାଠର କଠଉ ଉପରେ ଲେଟି ପଡ଼ୁଥାଏ ପିତାମ୍ବରର କୁଞ୍ଚ । ପୁଅକୁ ଗୁହଁ ଗୁହଁ କେବଳ ସୀତାରାମ ଦାସକୁ ଦେଖିଲେ ଅପା । ତା'ପରେ ମାରବରେ ଫେରିଗଲେ ସେ ଘରକୁ । ଏହିପରି କେତେଥର ଆସିଚି କେଶବ । କଣ୍ଟୁରି ମିଶ୍ର ହାତର କ୍ରୀଡ଼ନକ ହେଇ ଦେଖା ଦେଇଚି ଅନେକ ଥର । ସେ ଚେହେରା ନାହିଁ; ସେ ପୋଷାକ ନାହିଁ ।

ଟିଧିଲ୍ କନାର ମଇଳା କାମିଜ ଉପରେ ଖଣ୍ଡେ ମଠା ଗୁଦର । କେବଳ ସବାଶ୍ରୀ ଆଉ ତାହାର ବାହକମାନେ ବଦଳାଲେ ନାହିଁ ଯେମିତି । ମା, ମାଉଁ, ସାହିଟା ତାର ଗୁରୁ-ଜନଙ୍କ ଜଙ୍ଗଲ । ଭଣଜା ସିଏ । ସେଥିରେ ପୁଣି ଠୋକା ଖୋଜାହେଲା ଏଠି । ପୁଣି ସାନ ମାଉଁ ସାଙ୍ଗରେ ଛଳନା—ମାଉଁ ତମେସବୁ ମଠକୁ ବୁଲି ପାଉନା ହେନେ !

"ହଁ ରେ ଦୁରୁଗା" ଅପା ଅଳ୍ପଦିନ ତଳେ ଥରେ ଦୁର୍ଗାଚରଣକୁ କହିଲେ, "ମହନ୍ତ ଆସିଲେ ତମେ ହାର୍ମୋନିଆ ବଜେଇବ ନେଇ, ସବୁବେଳେ ଯାଇଁ ସେଠି ବସିବ ।" ମା ସିଏ, ବେଶି କିଛି ଆଉ କହିପାରିଲେ ନାହିଁ ନିଜ ମୁହଁରେ ପୁଅର ଗୁଣ ।

ଏହିଭଳି ପୁଅକୁ ଦେଖିବାକୁ ଆକାଂକ୍ଷାର ଆଉ ତାଡ଼ନା ନ ଥିଲା ଅପାଙ୍କର । କଣ୍ଠରେ ଭଜନ, ହାତରେ ମାଳି, ସେହି ତାଙ୍କର ଶ୍ରେଷ୍ଠ ଆଶ୍ରୟ । କେତେ କାଳରୁ ସେ ବିଧବା ହେଲେଣି ତାହା ସମସ୍ତେ ଭୁଲି ଗଲେଣି । ଯେପରି ଏହିପରି ଅପା, ଏହି ତାଙ୍କର ଐଶ୍ୱର୍ଯ୍ୟ—ଏହି ଭଜନ-ପୂଜନ-ଧ୍ୟାନ, ଏହି ସରଳ ନିରାଡ଼ମ୍ବରତା । ବୈଧବ୍ୟର ନିରାଭରଣତା ଦେଖି ମଧ୍ୟ କେହି ତାଙ୍କୁ ଭାବନ୍ତି ନାହିଁ ବିଧବା । ସେ ଯେମିତି ସେହିପରି । ଆଜକୁ କୋଡ଼ିଏ କି ପଚିଶ ବର୍ଷ ତଳର କଥା । ସ୍ୱାମୀ କୁଳର ସମସ୍ତେ ହଇଜାରେ ମରିଗଲେ ପକ୍ଷକ ଭିତରେ । ସେହିଦିନରୁ ଅପା ଆସି ଏଠି । ତାହା ପରେ ପ୍ରାୟ ଦଶବର୍ଷ ତଳେ ପୁଅ ତାଙ୍କର ହେଲା ମରକନ୍ଦ ମଠରେ ଅନାଦିରାମ ଦାସଙ୍କର ଚେଲା । ଅନାଦିରାମ ଦାସଙ୍କ ପରେ ଚନ୍ଦ୍ରକାନ୍ତ କରି ସୀତାରାମ ହେଲେ ମହନ୍ତ । ତାହାପରେ ସେହି କୁଜ୍‌ଝଟିକା ଛିନ୍ନ କରି କେଶବରାମ ଦାସଙ୍କର ଅଭ୍ୟୁଦୟ ।

ସବୁଠାରୁ ଅଧିକ ଚିତ୍କାର କରି କାନ୍ଦୁଥାଏ ସୋଧି । ଅଜ୍ଞାନ ଶିଶୁ, କିନ୍ତୁ ସଂବେଦନମୟ । ଏତେ ଲୋକଙ୍କର କରୁଣ ବିଳାପରେ ସେ ଯେପରି ଗୁନିଆ ହୋଇ ଯାଇଚି । କାନ୍ଦିବ ବା' ତାର ବନ୍ଦ ହେବାକୁ ନାହିଁ । ଛୁଆଁ ନ ବାରି ଅଜୁବୋଉ ସୋଧିକୁ ଛଡ଼େଇ ନେଇଗଲା ବିମଳା ଦେଈଙ୍କ କୋଳରୁ ।

ଏମିତି ମରଣ କିଏ ମରିବ ! ଖାଲି ପିଲାଯାକ ମୁଠା ମୁଠା ଖାଇ ଦେଇ ଥା'ନ୍ତେ କି ।···ଆରେ ବିଜୁ ସୋଧି ସାଙ୍ଗରେ ଖେଳିବୁ ଆ' ଆମ ଘରେ···ତୋରି କଥା ତ ମତେ ଆଜି ବଣା କରିବ ଦେଖୁଚି···

ଲୁସ୍, ଲୁସ୍ କହି ଗୁଡିରେ ଗୁପୁଡା ବଜେଇ ବଜେଇ ବୋଉ ପଛରେ ଗୁଲିଗଲା ବିଜୁ ।

## — ଅଠର —

ଠିକେ ଡେଇରରେ ପହଞ୍ଚିଲେ ଶ୍ରୀରାମ ମହାନ୍ତି । କେହି ରାମ ଡାକିଲେ କେହି ଡାକନ୍ତି ଶ୍ରୀରାମ । ମୂଳ ନାଁ ତାଙ୍କର ଶ୍ରୀରାମଚନ୍ଦ୍ର ମହାନ୍ତି । ମାଇ ସାହୁଘର କଚେରୀରେ ସେ ତହସିଲଦାର । ଦେଖିବାକୁ ସୁସ୍ଥ, ବଳିଷ୍ଠ ଆଉ ସୁନ୍ଦର । ରାମ ମହାନ୍ତି ବା ଶ୍ରୀରାମ ପଣ୍ଡାଆରୀ ବୋଲି ସେ ଲୋକରେ ପରିଚିତ । ସାହିର ବିଶିଷ୍ଟ ଉପୋହିତ ବ୍ୟକ୍ତି ସୁବଳ ପଟ୍ଟଆରୀଙ୍କର ସେ ଏକମାତ୍ର ପୁତ୍ର । ବୟସ ପଚାଶ ଲଗାଲଗି । କାନ ତଳେ ତଳେ କାନ୍ଧ ଉପରେ ତେଲ ଜୁଲୁ ଜୁଲୁ କୁଞ୍ଚିତ ବାଳର ଗୁଚ୍ଛ ଝୁଲିପି । ମସ୍ତକର ଉପରିଭାଗରେ ମରୁଭୂମି । ତଥାପି ଓଏସିସ୍‌ର ତୃଣ ଦଳ ପରି କୁଞ୍ଚିତ ଝିଲ୍‌ପି ଚେହେରାକୁ କମନୀୟ କରିଛି । ଚର୍ମର ରଙ୍ଗ ଫର୍ଶା । ଗଣ୍ଡ ଓ ଅଧର ଦେଶ କ୍ଷୌରଦ୍ୱାରା ଅନେକ ସମୟରେ ଶ୍ମଶ୍ରୁର ପ୍ରାଦୁର୍ଭାବରୁ ମୁକ୍ତ ରହେ । ସେଥିଲାଗି ବୟସର ପ୍ରଭାବରୁ ଯାହା କେତେକ ପକ୍ୱକେଶ ଦେଖିବାକୁ ମିଳିଥାନ୍ତା, ପ୍ରକୃତ ଓ ମଣିଷର ହାତ ବାଜି ତାହା ସ୍ୱପ୍ନ ହୋଇଛି । ଦେହରେ ସୂକ୍ଷ୍ମ ପରିଧେୟ ପରିଷ୍କୃତ । କଣ୍ଠୀରେ ରୂପାର ସରୁ ଅଣ୍ଟାସୂତା, ସେଥିରେ ରୂପାର କଡ଼ି ଲଗି ଗୋଟିଏ ଦୋଟି ଡେଉଁରିଆ, ତାହା ଅନେକ ଦିନର । ଶରୀର ଉପର ଅଂଶ ନିରାବରଣ । କେବେ ହେଲେ ସେ କୌଣସି ଜାମାପଟା ପିନ୍ଧନ୍ତି ନାହିଁ । ବେଶି ହେଲେ ଶୀତ ଦିନରେ ଉଡ଼େଇ ହୁଅନ୍ତି ଗୁଦର ଖଣ୍ଡେ । ବକ୍ଷ ଓ ଉଦରର ଉର୍ବରତା ଯେପରି ରୋମାଳିରେ ଘୋଷିତ ହେଉଛି । ଅସ୍ଥିଶୂନ୍ୟ ନିଟୋଳ ବକ୍ଷାଂଶରେ ତାଙ୍କର ଅନେକ ସମୟରେ ଶୋଭା ପାଏ ଖଣ୍ଡେ ପାଟଲି ଗାମୁଛା । ଯୁଦ୍ଧର ଏହି ମହାର୍ଘତା ଏବଂ ବସ୍ତ୍ର ଦୁର୍ଲଭତା ଭିତରେ ମଧ୍ୟ ସରୁ ଲୁଗା ଆଉ ପାଟଲି ଗାମୁଛା ତାଙ୍କର ବନ୍ଦ ହୋଇ ନାହିଁ । ଓଦା ଗାମୁଛାର ପ୍ରାଦୁର୍ଭାବ ହେତୁ ଅନେକ ଦିନ ତଳେ ଦେହରେ ତାଙ୍କର ଦଦ୍ରୁର ଉର୍ବରତା ଦେଖା ଦେଇଥିଲା । ହାତର କେତୋଟି ନଖରେ ଏପର୍ଯ୍ୟନ୍ତ ତାହାର ସ୍ମୃତି ରହିଯାଇଛି ।

ଭାରତୀୟ ଶୈଳୀର ସଙ୍କେତାତ୍ମକ ଶିଳ୍ପରୀତି ଅନୁସରଣ କରି ପାଣି ଉପରେ ନୌକା ଆଙ୍କି ତାହା ତଳେ ଆଦ୍ୟ ଅବତାର ଅଙ୍କନ କଲାପରି ଆମେ ହୁଏତ ପଟ୍ଟଆରୀଙ୍କ ଦେହ ଉପରେ ବର୍ତ୍ତମାନ ଦଦ୍ରୁର ରୁକ୍ଷତା ଅଙ୍କନ କରିପାରିବା ଅକ୍ଲେଶରେ ; କିନ୍ତୁ ଏହି ନିଶାଂଧକାର ତଳେ ଏହିପରି ଶାରୀର ଚିତ୍ର କେବଳ ପ୍ରମାଦପୂର୍ଣ୍ଣ ହୋଇ ଉଠିବ ।·· ରୁଖା ଉପରେ ଜଡ଼ା ତେଲର ଦୀପ, ଦୀପର ଆଲୋକ ଉଜ୍ଜ୍ୱଳ, ଅଥଚ କ୍ଷୀଣ । ହୁଏତ ଏହିପରି ଦୀପାଲୋକରେ ଦିନେ ଉଜ୍ଜୟିନୀର ଗୋଟିଏ କକ୍ଷ ଭିତରେ ବସି କାଳିଦାସ ଆଙ୍କିଥିବେ ଯକ୍ଷ ଦମ୍ପତିର ମିଳନାନ୍ତକ ଦୃଶ୍ୟ ଏବଂ ଆଉ କିଛି ଦୂର ଅଗ୍ରସର ହୋଇ ସେ ଏହିପରି ଏକ ଦୀପାଲୋକକୁ କରିଥିବେ ନିର୍ବାପିତ , କିନ୍ତୁ ଆଜି ଆଉ ସେ ପ୍ରଦୀପ ନାହିଁ, ସେ ଶକ୍ତି ନାହିଁ — ଆଜିର ଏହି ତୈଳର ଆଲୋକରେ ନାହିଁ ସେ ଉଜ୍ଜ୍ୱଳତା । ଏହି ସାମରିକ ନିଷ୍ପ୍ରଦୀପତା ମଧ୍ୟରେ ଏହି ଦୀପାଲୋକରେ ଚିହ୍ନି ହୁଏ କେବଳ ପଟ୍ଟଆରୀଙ୍କି, ଦେଖି ହୁଏ ଖୁବ୍ କମ୍ । ପଛପଟୁ ତାଙ୍କୁ ଯେମିତି ଓଟାରି ନେଇ ଯିବାକୁ ବସିଛି ଅନ୍ଧକାର ତାର କୋଳକୁ, ଆଗରେ କ୍ଷୀଣ ହେଲେ ମଧ୍ୟ ଆଲୋକ, ପାଖରେ ତାଙ୍କର ସ୍ତ୍ରୀ, ତାହା ଯେପରି ଅନ୍ଧକାରର ବନ୍ଦୀ । ଅନ୍ଧାରକୁ

ଆଜିର ଏଇ ଆଲୁଅ ଠିକେ ମସୃଣ କରିଛି, ଠିକେ ଭବ୍ୟ ଓ ଭୋଗ୍ୟ । ତାହାର ଆଦିମ ମ୍ଳେଚ୍ଛତ୍ୱକୁ ବିନାଶ କରିବା ପାଇଁ ଆଜି ନୁହେଁ ଏହି ଆଲୋକର ପ୍ରଚେଷ୍ଟା । ଏଇ ମଣିଷର ରକ୍ତବାହିନୀ ଯେମିତି ମଣିଷର ଶତ୍ରୁକୁ କରୁଚି ପଦାଘାତ ; ଆଉ ସେଇ ମଣିଷର ଗୋଟିଏ କ୍ଲାନ୍ତ କୃଷକ ଯେମିତି ମଣିଷର ଶତ୍ରୁର ପଦ ଲେହନ କରୁଚି କେବଳ, ସେଇପରି ଆଜିର ଏଇ ଆଲୋକ, ଯେଉଁ ଆଲୋକ ତାହାର ଆଗ୍ନେୟ ଶକ୍ତିରେ କେବଳ ଆଜି ଧ୍ୱଂସ ହିଁ କରୁଚି ପୃଥିବୀକୁ, ସେଇ ଆଲୋକର ଅଂଶ ବର୍ତ୍ତମାନ ପଟ୍ଟନାୟକଙ୍କ ଘରେ କାଙ୍ଗାଳ, ମଳିନ, ମୁମୂର୍ଷୁ । ଅନ୍ଧାରର ଦସ୍ୟୁ ଭିତରେ ସେ ଯେପରି ବଞ୍ଚି ରହିଛି ଖାଲି । ଏଇ ଅନ୍ଧାରର ଅତି କ୍ଷୁଦ୍ର ଗୋଟିଏ ଫୁତ୍କାର ତାହାର ପ୍ରାଣର ଜିଘାଂସା ଯେମିତି ।

ରଘୁପୁଷ୍ଟି ଦୋକାନ ପାଖରୁ ପଟ୍ଟନାୟକେ ଅପାର ମୃତ୍ୟୁ ଖବର ଶୁଣି ଆସିଥିଲେ । ସେତିକି ବେଳୁ ମନରେ ତାଙ୍କର ଚିନ୍ତା—ଓପାସ ରହିବାକୁ ପଡ଼ିବ ଆଜି ରାତିଟା !

ବଡ଼ ଖାଦ୍ୟପ୍ରିୟ । ମୁଖରୋଚକ ଖାଦ୍ୟ ପଟ୍ଟନାୟକଙ୍କର ଅତି ପ୍ରିୟ । ବାପା ସୁବଳ ପଟ୍ଟନାୟକ ଥିଲେ ଆହୁରି ଭୋଜନପଟୁ । ତାହାଙ୍କର ଭୋଜନବିଳାସ ଏପର୍ଯ୍ୟନ୍ତ ଅଶରୀରୀ ହୋଇ ରହିଚି ଏ ଅଞ୍ଚଳରେ । ସକାଳୁ ଆରିସାପିଠା ଛଣା ଯାଉଥିଲା ତାଙ୍କ ପାଇଁ । ପୃଥୁଳ ଶରୀରରେ କଟକୀ ଓଜନ ପାଏ ସୋରିଷତେଲର ମର୍ଦ୍ଦନ ପରେ ତାଙ୍କର ମାଜଣା ହେଉଥିଲା । ମାଜଣା ପରେ ମିଷ୍ଟାନ୍ନ ସେବନ—ଆଉ ଅହିଫେନ ସୁଁ କଏ । ହରିହର ଅବଧାନର ଜ୍ୟୋତିଷୀ ଗଣନା ଯୋଗୁ ସେ ଭୁଲରେ ପଡ଼ିଲେ ଶେଷ ଜୀବନକୁ । ମରିବାକୁ ସେତେବେଳକୁ ଦଶ ବର୍ଷ ବାକି, ନରି ଅବଧାନେ ପିଣ୍ଡାରେ ଖଡ଼ି ଗୋଟାଳି ଘଷି ଘଷି କହିଲେ ବାଉନ୍ ବର୍ଷରେ ଶୁକ୍ରରେ କେତୁ । ସପ୍ତମାଧିପତି ଶୁକ୍ର ଦ୍ୱାଦଶରେ, ଆଉ ସପ୍ତମରେ କେତୁ । ନିଶ୍ଚୟ ମାରକ । ସେତେବେଳେ ପଟ୍ଟନାୟକଙ୍କ ପଚିଶ । ଆଉ ଦିବର୍ଷ ଜମା ପରମାୟୁ । ଚତୁର୍ଦ୍ଦିଗ ଅନ୍ଧାର ଦିଶିଲା ତାଙ୍କୁ । ଏ ପ୍ରିୟ ଜୀବନ, ଏ ମଧୁରଖାଦ୍ୟ, ଆଉ ସେ ପାଇବେ ନାହିଁ । ସେଥିଲାଗି ସେଇ ଦି ବର୍ଷ ଭିତରେ ସେ ପ୍ରାୟ ଦୁଇଶ ଛେଳିର ପ୍ରାଣନାଶ କଲେ । ଦୁଇବର୍ଷ ପରେ ପଟ୍ଟନାୟକ ଯେତେବେଳେ ଅମର ହୋଇ ଛେଳି ସନ୍ଧାନରେ ପୁଣି ପ୍ରମତ୍ତ ରହିଲେ, ନରି ଅବଧାନେ ଆଉ ଦାଣ୍ଡ ମାଡ଼ିଲେ ନାହିଁ । କିନ୍ତୁ ପଟ୍ଟନାୟକ ନିର୍ଭୀକ, ସେ ମନେ ମନେ ଭାବିଲେ, ମନ୍ଦ କଣ ହେଲା, ଖାଲି ମରିଯିବାର ଉପଦ୍ରବ ନ ଥିଲେ ଆହୁରି ସୁଖ ଲାଗିଥା'ନ୍ତା ସେଇ ଦିନ-ଗୁଡ଼ିକ......

ଏଇପରି ପିତାଙ୍କର ପୁତ୍ର ରାମପଟ୍ଟନାୟକ । ଘିଅ ଛଟାଙ୍କିଏ କିଏ ଦେଲେ ସେ ପାଉତି ଖଣ୍ଡେ କାଟି ଦିଅନ୍ତି ଦ୍ୱିଧା ନ କରି । ଧଡ଼ଆ ବାଘୁଡ଼ି ମାଣ୍ଡୁଆ କଙ୍କଡ଼ା ଦେଇଥିଲେ କସି ନାଉ ଲାଗି ସେ ହୁଏତ କାହାକୁ ପିଆଦା ପାଉଣାରୁ ଛଡ଼ାଇ ଦିଅନ୍ତି

ସମସ୍ତ ବଖତରେ । କିନ୍ତୁ ଆଉ ଦଶ ବର୍ଷ ଭୁଲରେ ରହିବା ଭିତରେ ସୁବଳ ପଟ୍ଟନାୟକ ପୁଅଲାଗି ଅଧିକ କିଛି ରଖିଯାଇ ପାରି ନ ଥିଲେ । ହୁଏତ ନଗ୍ନ ଅବଧାନର କଥା ସତ ହୋଇଥିଲେ ରାମଙ୍କ ହାତରେ ଏବେ ଅଧିକାଂଶ ସମୟରେ ଭାତ ଲାଗି ପାରୁ ନ ଥାନ୍ତା । ଯେଉଁ ଦଶ-ବାରମାଣ ସମ୍ପତ୍ତି ବଳିପାରିଥିଲା ବାପାଙ୍କର ମୃତ୍ୟୁ ହେବାରୁ, ସେଥିରୁ ଅଧେ ପ୍ରାୟ ଝିଅଟିକୁ ଗୋଟିଏ ଭଲ ଘରେ ବିବାହ ଦେବାରେ ଏବଂ ପୁଅଟିକୁ ଅଳ୍ପାଧିକ ଯୋଗ୍ୟ କରିବାରେ ନିଃଶେଷ ହେଲା । ବିଥର ମାଟ୍ରିକୁଲେସନ୍ ଫେଲ ହୋଇ ଶେଷରେ ବର୍ଷେ ହେଲା ପୁଅଟି ଜିନିମିଶା ମାରୁଆଡ଼ ଷ୍ଟୋର୍‌ରେ ଚାକିରି କରିଛି ପୁଅ । ମନ୍ଦ ଆସ୍ତୁ କରେ ନା । ନାଁଟା ତାର ବୁଦ୍ଧିର ପରିଚାୟକ । କାଶୀନାଥ ପଟ୍ଟନାୟକ ସେ ଲେଖେ କେନ୍ ( କେ· ଏନ୍· ) ପଟ୍ଟି । ଜିନି ମାରୁଆଡ଼ ଭାଇଙ୍କର ମିଶ୍ରିତ କାରବାରର ସିରସ୍ତାକୁ ସେହି ନାଁ ଦେଇଛି ଜିନିମିଶା ମାରୁଆଡ଼ ଷ୍ଟୋର୍ । ମୁହଁରେ ସିଗାରେଟ ତା’ର ଅନେକ ସମୟରେ । ହାତରେ ଖଣ୍ଡେ ମରକୋର ହ୍ୟାଣ୍ଡ ବ୍ୟାଗ୍ ଆଉ ରେଶମ କନାର ଲେଡ଼ିଜ୍ ଅମ୍ବ୍ରେଲା ଖଣ୍ଡେ । ଏହିପରି ପରିଚ୍ଛଦଧୃତ ଜଣେ ଭଦ୍ର ଯୁବକ ସଙ୍ଗରେ କାହାର ଯଦି ଅକସ୍ମାତ୍ ଦେଖା ହୁଏ ବଡ ଦାଣ୍ଡରେ, ଆଉ କିଏ ଯଦି ତାକୁ କୌଣସି କାରଣରୁ ମାଗି ବସିବ ଟଙ୍କା କି ଆଠଣା’ର ରେଜା ପଇସା, ସେ ନିଶ୍ଚୟ ତମକୁ ଦେଖାଇବ ତାର ଅଣ୍ଟାରୁ କାଢ଼ି ଗୁଡ଼ାଏ ଟଙ୍କା । ଯେମିତି ଆଜିର ଏଇ ଯୁଦ୍ଧ ବଜାରରେ ଲୁଚି ଯାଇଥିବା ମୁଦ୍ରାକୁ ସେ କରଗତ କରିଛି କେବଳ ।···

···ବଗ ଡାଲିରେ ଖାଲି ରସୁଣ ଛୁଙ୍କ ହେଲେ ଯଥେଷ୍ଟ ନୁହେଁ, ସେଥିରେ ହେଙ୍ଗୁ ପଡ଼ିବା ଦରକାର, ନ ହେଲେ ରାଗି ଉଠନ୍ତି ରାମ ପଟ୍ଟନାୟକ । ସେଥିପାଇଁ ପଟ୍ଟନାୟକାଣୀ ତୀବ୍ର ଦୃଷ୍ଟି ରଖିଥା’ନ୍ତି ବୋହୂର ରୋଷେଇ ଉପରେ । ଆଜି ଦୁଧ ଦେଇ ନାଉ ଦଅଣା କରେଇଥିଲେ ପଟ୍ଟନାୟକାଣୀ । ନିଜ ହାତରେ ବେଶନ ଗୋଳେଇ ଭାଜିଥିଲେ ସାଲଗମ୍···

ବିଦେଶୀ କମଳା ଦେଇଙ୍କର ବାହୁନାର ସ୍ୱର ଏ ପର୍ଯ୍ୟନ୍ତ ପବନରେ । ଗାମୁଛା କାନିରେ ଆଖିରୁ ଲୁହ ପୋଛିଲେ ପଟ୍ଟନାୟକ । ଏହି ସମୟରେ ପଟ୍ଟନାୟକାଣୀ କହିଲେ—ସନ୍ଧ୍ୟା ଓ ଶୀତର ପରିଚର୍ଯ୍ୟାରେ ଆର୍ଦ୍ର ହୋଇ ଯେମିତି ପରିସ୍ଥିତିର କାତରତାରେ ଅମେରୁଦଣ୍ଡୀ ପ୍ରାଣୀର ଗତି ତାଙ୍କର ଭାଷାରେ ।

ଭଲ ମଣିଷଟା—ଜର ନା ବାଧକ, ଆଜି ଯେ କହିବ ସୁଖର ମରଣ । ବସି ବସି କୁଆଡ଼େ ଭଜନ ଗାଉଥିଲେ—ହଁ, ହାତରେ ପା’ ପୁଣି ମାଳ ଧରା ହୋଇଛି ଦେଖି ଆଇଲି, କଣ ଏ ବୋହୂଟା ନାଗି ଆଉ ଟିକେ ଠିଆ ହୋଇ ପାରିଲି ସେଠି···

କହି କହି ସେ ଦାଣ୍ଡ କବାଟ ଦେବାକୁ ଚାଲିଗଲେ । ପିଣ୍ଡା ଉପରେ ବସି ଦେହରେ ଗାମୁଛା ଖଣ୍ଡିକ ଉଢ଼େଇ ହୋଇପଡ଼ି କହିଲେ ପଟ୍ଟନାୟକ—

ଯା’କୁ ଯୋଉ ଯୋଗ । ଟିକେ ଖାଲି ପୁଅକୁ ଦେଖିକରି ଯାଇ ଥାନ୍ତା କି···, ହଁ, କବାଟ ଆଉ ଦଉଛ କାହିଁକି ତମେ, ଦିଅ, ଦିଅ,···ନା, ନା, ପାନ ବି ତ···

କବାଟ ଦେଇସାରି ପାଖରେ ପହଞ୍ଚିଲେ ଆସି ପଟ୍ଟନାୟକାଣୀ—ମଲା, ପର ଗୋଡ଼ିଟା ଝିଅ ସିଏ, ପାନ କାହିଁକି ତମେ ଖାଇବ ନେଇଁ···

ଆଦୁର ପାଖକୁ ଲାଗି ଆସିଲେ ପଟ୍ଟଆରଣୀ ।

ଆମର ଘେରେଇ ସବୁତ ମ···ପରଗୋଡ଼ଶ୍ରୀ ଝୁଅଟା, ସେଥିରେ ଏବେ କଣ ଅଛି । ଜାଗା କରୁଚ—ଏଁ, କଣ କଉଚ ! ଶୀଘ୍ର ଦିନ ଗଡ଼···

ପଟ୍ଟଆଣୀ କିଛି କହିଲେନି । ଉଠି ପଡ଼ି କେବଳ ଆଖିରେ ଅନ୍ୱେଷଣ କଲେ କୌଣସି ଜନଷର । ସ୍ତ୍ରୀ ଚାଲି ଆସି ପାଣି ଡାଲେ ଥୋଇ ଦେଇ ଗଲେ ତାଙ୍କ ଆଗରେ । ନଳାମୁହଁର ପଥର ଉପରେ ଗୋଡ଼ ଧୋଉଁ ଧୋଉଁ ସେ କହିଲେ, ଖୁବ୍ କମ୍ ବାଢ଼ିବ, ଜାଣିଲ···ହଁ, ଅପା ତ ପରଗୋଡ଼ଶ୍ରୀ···

ଉଭୟଙ୍କ ମନକଥା ଉଭୟେ ଜାଣନ୍ତି । କପୋତ ଦମ୍ପତି ପରି ଜୀବନକୁ ଲଘୁ ଓ ଉପଭୋଗ୍ୟ ଭାବରେ ଦେଖି ଆସିଚନ୍ତି ଏହି ସ୍ୱାମୀ-ସ୍ତ୍ରୀ ଆଜଯାଏ । ଜଣେ ଦୁଧ ଭିତରେ ଛେନାର ସ୍ୱପ୍ନ ଦେଖିଲେ ଆଉ ଜଣକ ଛେନା ଭିତରେ ପାଏ ରସଗୋଲାର ଗନ୍ଧ । ଜୀବନ କେବଳ ମଧୁ ଆହରଣର ସାମଗ୍ରୀ ସେମାନଙ୍କ ପାଖରେ । ସେଥିରେ ସେମାନେ ଅନ୍ୟର ମୃତ୍ୟୁରେ ନିଜକୁ କଷ୍ଟର ଭାଗୀ କରିବେ କାହିଁକି ! ହୁଏତ ଏହି କଥାକୁ ତାଙ୍କର ଲୁଚାଇବାର ଖୁବ୍ ପ୍ରଚେଷ୍ଟା, ନ ହେଲେ ପଟ୍ଟଆରଣୀ କବାଟ ଦେଇ ଆସିଥାନ୍ତେ କାହିଁକି ?

ସ୍ୱାମୀଙ୍କ ପାଇଁ ଠା' କରି ଥାପ ତେଜାଇ ଦେଲେ ପଟ୍ଟଆରଣୀ । ତାଙ୍କର ମନ ହେଉଥାଏ, ଆଜ ଟିକେ କିରସିନ୍ ଖର୍ଚ୍ଚ କରି ଲଣ୍ଠନ ଜାଳି ଦିଅନ୍ତେ । ମାତ୍ର ସେ ମନେ ମନେ ସେଥିରୁ ନିବୃତ୍ତ ହେଲେ । ଗୋପନର ପୁଣି ସମାରୋହ !

କିନ୍ତୁ ବେଶି ଖାଇ ପାରିଲେନି ପଟ୍ଟଆଣୀ । ପବନରେ ଯେମିତି ମହା ମରଣର ଗନ୍ଧ । ଖାଦ୍ୟର କଣାରେ କଣାରେ ଯେମିତି ମୃତ୍ୟୁ-ମୂର୍ଚ୍ଛନା । ସେ ପର୍ଯ୍ୟନ୍ତ ପବନରେ ଶୋକାକୁଳ କ୍ରନ୍ଦନ । ମନରେ ଅନେକ ଚିନ୍ତା ଛୁଇଁଲା—ହୁଏତ ଆଉ କେତେ ଦିନେ ଜୀବନ ତାଙ୍କର ମିଶିଯିବ ଏହି ପବନରେ ଉଦ୍‌ଭ୍ରାନ୍ତ ହୋଇ, ଖଁ ଖଁ ହୋଇ ସେ କାଶିଉଠିଲେ କେତେଥର । ଦରଜା ପାଖରେ ଉଚ୍ଚବର ପାଟି—

ରାମ ଭାଇ ଆସିଲଣି···

କବାଟ ପାଖକୁ ପଟ୍ଟଆରଣୀ ଯାଇ କହିଲେ, ଆସି ନଈ ଆଡ଼େ ଯାଇଚନ୍ତି··· ଆସୁଥିବେ ଯେ···

ପାଣି ଗିଲାସକ ପିଇ ଦେଇ ହାତ ଧୋଇବାକୁ ଉଠି ପଡ଼ିଲେ ପଟ୍ଟଆଣୀ । ଲଣ୍ଠନଟା ଲଗେଇବାକୁ କହିଲେ ସ୍ତ୍ରୀଙ୍କି । ଘରେ ଚାକର ବାକର ବର୍ତ୍ତମାନ ନାହାନ୍ତି । ଯୁଦ୍ଧ ଯୋଗୁ ମହର୍ଗ ହୋଇଚ ବି ଚାକର । କେବଳ ଗାଁ ଗୋଟିଆ ଗାଈ ଯୋଡ଼ିକୁ ତାଙ୍କର ଚରାଏ । ଯାହା ଜମି ଅଛି ତାକୁ ସେ ଭାଗ ଦେଇଥାନ୍ତି ବରାବର । ଜଞ୍ଜାଳର ଅନ୍ଧାରେ ପାହାର ବଜେଇବାକୁ ସେ ଖୁବ୍ ଭଲ ପାଆନ୍ତି ଯେମିତି ।

ପଟ୍ଟଆଣୀଙ୍କି ଦେଖି ସମସ୍ତେ ଜୋରରେ କାନ୍ଦିଉଠିଲେ । ନିଜେ କାନ୍ଦିବାକୁ ଲାଗିଲେ ପଟ୍ଟଆଣୀ । ଆଗରେ ପିଣ୍ଡା ଉପରେ ଶୋଇ ରହିଚନ୍ତି ଅପା, ଦେହ ତଳେ ତାଙ୍କର ବିଛଣା ଦିଆହୋଇଚ ଏହା ଭିତରେ । ଘୋଡ଼େଇ ଦିଆହୋଇଚ ମଧ୍ୟ ଦେହକୁ ।

ପ୍ରାୟ ଷାଠିଏ କି ସତୁରୀ ହେବ ମାହାନ୍ତି ସାହିର ଜନ ସଂଖ୍ୟା । କିନ୍ତୁ ଆବଶ୍ୟକ ବେଳେ ଦଶ ବାର ଜଣଙ୍କର ବି ଦେଖା ମିଳିବା କଷ୍ଟ । କିଏ ଆଳିରେ ତ କିଏ କାଆମାରେ । କେତୋଟି ବୃଦ୍ଧ ଏବଂ ବୃଦ୍ଧା, ଶିଶୁ-ବାଳକ-ବାଳିକା ଏବଂ ବିଂଶୟୁସୀ ଓ ବଧୂ ଥାଆନ୍ତି କେବଳ ଗ୍ରାମରେ । ତଥାପି କେତେକ ଲୋକ ଜମା ହୋଇଥାନ୍ତି ଗ୍ରାମୁକରଣଙ୍କ ଦୁଆରେ । ସ୍ଵଜାଷ୍ଟସ୍ଥ ଖୁବ୍ କମ୍ । ଏହି ସମୟରେ ପାଟି କରି ଉଠିଲେ ଛକଡ଼ି ମହାନ୍ତି—

ହୁଁ କଣ ଇଏ, କଣ୍ ତମେ ପାଗଳ ହେଲ ଭାଉଜ ବୋଉ, ପାଗଳ ହେଲ ଭିକାରି ଭାଇ ! ସବୁ ଅଡ଼େଇଦିନିଆ କଥା । କାଲି ସକାଳେ ଆମର କଣ ହଉଚି ତାର ଠିକଣା ନାହିଁ । ଅପାର ସଂସାରରେ କୋଉ କାମ ଆଉ ବାକି ଥିଲି—

ସହସା କଣ୍ଠରେ ଜଡ଼ତା ପ୍ରକାଶ ପାଇଲା ତାଙ୍କର । ବୋଧହୁଏ ନିଜର କୌଣସି ଲୁପ୍ତ ସ୍ମୃତି ମନେ ପଡ଼ିଗଲା । ଯୁଦ୍ଧରେ ତାଙ୍କର ପୁଅ ମରିଯାଇଚି । ଡାକ୍ତରୀ ପାଶ୍ କରି ସେ ଯୋଗ ଦେଇଥିଲା ଯୁଦ୍ଧରେ । ବିଚରା ଆଗରୁ ଗ୍ରାମ ଧର୍ମଘଟରେ ଯୋଗ ଦେଇଥିଲା ବୋଲି ସରକାରୀ ଚାକିରୀ ପାଇଁ ଯୋଗ୍ୟତା ତାର କମାଇ ଦିଆ ଯାଇଥିଲା, ମାତ୍ର ଧୂଆମୂଳା ଅଧୁଆମୂଳା ସବୁ ସମାନ ଲଢ଼େଇ ପାଇଁ । ଅତଏବ ବାଉଁଶ ଆଉ କାବୁଲି ଠେଙ୍ଗାରେ ବି ମାରିହୁଏ ମଣିଷ । କିନ୍ତୁ ସୁଧାକର ଯାଇଥିଲା ମଣିଷଙ୍କୁ ବଞ୍ଚେଇବା ପାଇଁ—ତଥାପି ସିଏ ମଲା ।

ମାତ୍ର ସୁଧାକର ନିଜର କାମ ପୂର୍ଣ୍ଣକରି ଯାଇଚି । ଯେଉଁ ବିବାହଯୋଗ୍ୟା ଭଉଣୀ ଦୁଇଟିଙ୍କର ଦୁଃଖରେ ବିଚଳିତ ହୋଇ ସେ ଝାମ୍ପ ଦେଇଥିଲା ଯୁଦ୍ଧରେ, ତାହାର ସ୍ଵଳ୍ପ ସମୟର ରୋଜଗାର ଭିତରେ ସେମାନେ ବିବାହିତା ହୋଇ ପାରିଛନ୍ତି । ଭାଇର ମୃତ୍ୟୁରେ ଭଉଣୀର ପରିଣୟ ଘଟିଯାଇଚି ।

ସାହସ ଖୁବ୍ ଛକଡ଼ି ମହାନ୍ତିଙ୍କର, ସେ ଚାଲିଚନ୍ତି ଦମ୍ଭର ସହିତ ଜୀବନ ସଂଗ୍ରାମରେ । ସାନ ପୁଅଟିକି ସେ ଛାଡ଼ି ଦେଇଛନ୍ତି ବଡ଼ ଜୋଇଁ ପାଖରେ । ସେ ସରକାରୀ ଚାକିରୀ କରେ ।

ଦେହର ଜାଉଁଆଳି ଖଣ୍ଡିକୁ ସଜାଡ଼ି ନେଲେ ଛକଡ଼ି । ଉଠି ଠିଆ ହେଲେ ଗ୍ରାମୁକରଣେ । କହିଲେ ପୁଣି ଛକଡ଼ି—

ଆଉ କଣ, ଆଉ ଭାବିଲେ କଣ ହବ ଭାଇ । ଉଠିବ, ଦୋକାନ ପଡ଼ିଯିବ—ଲୁଗା, ଘିଅ, ଚନ୍ଦନ କାଠ ଯା' ଘେନିଆସିବୁ ଝଟ...

ବାହାରି ପଡ଼ିଲା ପଦନ ପୁରୋହିତ । ହାର୍ମୋନିୟମ୍‌ଟି ସେ ଏହା ଭିତରେ ରଖିଦେଇ ଆସିଚି । ଆଗକୁ ଆସି କହିଲା—

ଆଜ୍ଞେ ଆମି ଯାଉଚି ଦୋକାନକୁ—ମୋସା କୋକେଇ ତିଆର୍ କରନ୍ତୁ...

"ହଁ, ହଁ," କହି ଉଠିଲେ ପଟ୍ଟନାୟକ । "ଆନ୍ଦା ଯାଉ ଧୋବାକୁ ଡାକିବ...କୋଉ ଗଛଟା କଟା ହବ ଭାଇ ?"

"ନଈ କୂଳର ସେଇ ଗୁରୁଡ଼ି ଗଛଟା" କହି ଗ୍ରାମୁକରଣେ ମାଳି ଦେଈଙ୍କି ସଉଦା ସକାଶେ ଟଙ୍କା ଦେବାକୁ ଡାକିଲେ ।

ମୁଖାଗ୍ନି ଦବ କଏ ?

ବିମଳ ଦେଇ କାନ୍ଦଣା ବନ୍ଦ କରି ଦେଇଥାନ୍ତି । ଛକଡ଼ିଙ୍କର ପ୍ରଶ୍ନ ଶୁଣି ସେ ଆଖି ପୋଛୁ ପୋଛୁ କହିଲେ, ମଲା ତାଙ୍କର ପୁଅ ଥାଉଁ ଥାଉଁ···

ହଠାତ୍ ଗ୍ରାମୁକରଣଙ୍କ ଗୋଟା ଭୁରୁଡ଼ିରେ ସେ ଚମକି ପଡ଼ିଲେ ।

ହୁଁଃ, ଘରି ଅକଲ ।

ବାକ୍ୟର ଉତ୍ତରାଂଶ ପୂରଣ କଲେ ପଟ୍ଟୁଆଣି—ପୁଅ ତା'ର ମହନ୍ତ, ସେଇ ତାର ଢେର । ଆମ ଜନ୍ମ ମରଣରୁ ସେ ବାହାର—ସେ ମହନ୍ତ ।

ଭିକାରି କହିଲା—କାହିଁକି, ଦୁରୁଗା ଦବ ମୁଖୁଜାପିା, ପୁଅ କଏ ପୁତୁରି କଏ ?

ଦୁର୍ଗା କିନ୍ତୁ ସେଠାରେ ନ ଥାଏ । ମୃତ୍ୟୁର ବିଭୀଷିକାରୁ ସେ ଆହରଣ କରିଚି ଜୀବନର ସମ୍ପଦ । କେତେ ମୃତ୍ୟୁ—କେତେ ଯୁବକ ଯୁବତୀର ମୃତ୍ୟୁ ସେ ଦେଖିଚି ଆଖିରେ । ସେଥିପାଇଁ ସେ ଏହି ସପ୍ତତିତମ ବର୍ଷୀୟା ବୃଦ୍ଧାର ମୃତ୍ୟୁରେ ବିଚଳିତ ନୁହେଁ । ଲୋକ ଦେଖାଣିଆ ସହାନୁଭୂତି ପାଇଁ ମଧ୍ୟ ତା'ର ଇଚ୍ଛା ନାହିଁ । ପାଖରେ ତା'ର ରାମୁ—ପରିସ୍ଥିତି ଅତି ନିର୍ଜନ ।—ପାଖକୁ ଆହୁରି ଲାଗିଆସିଚି ରାମୁ ।

## —ଉଣେଇଶ—

କିନ୍ତୁ କାମ ସମାଧା ହେଲାନି ସେତିକି ଲୋକରେ । କର୍ତ୍ତା ସାଙ୍ଗକୁ ଉପକର୍ତ୍ତା ପୁଣି ଦର୍କାର । କାଳକି ରୋଇ ଶୀତଳେଇବା ପାଇଁ, ପୁଣି ଶବ ସତ୍କାର ସୁଷ୍ଠୁ ରୂପେ କରିବା ପାଇଁ ଯେଉଁ ବଂଶଟି ଅଙ୍ଗାରକଡ଼ା ନାମ ବହି ଏହି ସଭ୍ୟ ଲୋକଙ୍କୁ ପୁରୁଷାନୁକ୍ରମେ ଦାହ କରି ଆସୁଥିଲେ, ସେମାନଙ୍କ ସଙ୍ଗରେ ସଦ୍‌ଭାବ ରଖି ନାହାନ୍ତି ଗ୍ରାମୁକରଣେ । କିନ୍ତୁ ମରକନ୍ଦ ମଠର ସମସ୍ତେ ପ୍ରଜା । ସେଇ ମଠ 'ମହନ୍ତଙ୍କ ମା' ମରି ଯାଇଚି ଆଜ । ନିଜେ ପଟ୍ଟୁଆଣି ଯାଇଁ ପହଁଚିଲେ କୁରୁପ ମାହାନ୍ତି ଘରେ ।

କଣ, ଅପା ଅକଡ଼ା ରହିବେ କୁରୁପ, ମହନ୍ତଙ୍କର ମା'ଙ୍କର ସତ୍କାର ହବ ନାଇଁ ଆଜ ?

ବଡ଼ ଦକ୍ଷ ଲୋକ, କେତେ ଶବ ସଂସ୍କାର ସେ କରିଚି ଏଇ ମହାନ୍ତି ବଂଶରେ । ତଥାପି ତା ଦେହର ଆପୁଷ କମି ନାହିଁ । ଦେହରେ ତଥାପି ଶକ୍ତି । ପିକା ଟଣ୍ଡିକ

ଜୋରରେ ଟାଣି ନେଇ କହିଲା କୁରୁପ—ହଁ, ସବୁ ହବ, ଏକା ଗୁମୁକରଣଙ୍କ ମୁହଁକୁ ନୁହେଁ । ତମେ ଆସିଚ, ତମେ ପଟ୍ଟୁଆରି—ଆଉ ମର ଯାଇଚନ୍ତି ମହନ୍ତଙ୍କର ମା—ଅପା ।···ଆଉ ତମେ କାମ ଶେଷରେ ପୁଣି କହିବ ଅଙ୍ଗାର କଡ଼ା—ଆଉ ନ ଗଲେ ତମର କାମ ଅଚଳ । ଜମି ଦୁ'ମାଣ ମଠର ଆମେ ଭାଗ ଚଷି ଖାଉଥିଲୁ ଯେ, ତାକୁ ଗୁମୁକରଣେ ଛଡ଼େଇଲେ···

ପୁଣି କେତେ ସମୟ ପରେ କହିଲା କୁରୁପ—ଆଉ କାମ ଶେଷରେ, ଶୁଧ ଧନ ଆମକୁ ଦବ ପାଞ୍ଚହାତ କରିଆ ଖଣ୍ଡେ···

ପୁଣି କଣ କହୁଚ ?

ପଟ୍ଟୁଆରିଙ୍କ ର 'ତମେ' ବ୍ୟବହାରରେ ଉଲ୍ଲସିତ ହେବାର ଲୋକ ନୁହେଁ କୁରୁପ । ମଡ଼ା ଗୁଡ଼ାକ ଭଲ ଭାବରେ ସେ ପୋଡ଼େ —ଯେଉଁ ମଣିଷ ଦେହରେ କେତେ ପ୍ରକୃତି, କେତେ ଅଭିସନ୍ଧ ବସା ବାନ୍ଧ ରହିଥାଏ, ସେହି ମଣିଷର ଦେହକୁ ଅନେକ ଥର ଜାଳ ଭସ୍ମ କରି ଦେଇଚ ସେ । ମଣିଷ ପୋଡ଼ାର ନିଆଁରେ ଦୃଷ୍ଟି ତା'ର ଯେମିତି ଖୁବ୍ ସ୍ୱଚ୍ଛ ହେଇଯାଇଚ । ସେ ଦୃଢ଼ ଭାଷାରେ କହିଲା—ଖାଲି ମୁଁ ଥବା ଯାଏ । ମୋ ପୁଅକୁ ତମେ ଆଉ ଅଙ୍ଗାରକଡ଼ା କହିପାରିବ ନେଇଁ । କଲିକତାରେ ସେ ସର୍ଦ୍ଦାର କଲାଣି···

ସ୍ୱତଃପ୍ରବୃତ୍ତ ହେଇ କହିଲେ ପଟ୍ଟୁଆରି—ଆଚ୍ଛା, ମୁଁ ତମକୁ ସାହୁଘର ନିଜଗୃହରୁ ପାଞ୍ଚମାଣ ଜମି ଭାଗ ଚଷିବାକୁ କରିଦେବ···

କ୍ଷୀଣ ହାସ୍ୟ—ତାଚ୍ଛଲ୍ୟ ମିଶା । ତାହାପରେ ଅନାସ୍ଥାସହ କହିଲା କୁରୁପ—ମୋର ଆଉ ଦର୍କାର ନାଇଁ । ପୁଅ ରୋଜଗାର କରୁଚ, ବଇଦା ତ ଶଗଡ଼ ବୋହି ଦିନକୁ ଦୁ' ତିନ୍ ଟଙ୍କା କମଉଚ—ମୋର ଆଉ ଭାଗ ଚଷି ପର ବୁଜୁଲା ବୋହିବ କିଏ ପଟ୍ଟୁଆରିଏ । ଗୁଲ, ଗୁଲ, ଉଚ୍ଛବାକୁ କହିବ ବରିଆ ଦିଟା ବଳଥିବ । ମୁଁ ଗଣ୍ଡା ଖାଇଦେଇ ଯାଉଚ ।

ବର୍ଣ୍ଣରେ କି ଗନ୍ଧରେ କମ୍ବା ଉଚତାରେ ଶ୍ରେଷ୍ଠ ବୋଲି କୁରୁପ ପ୍ରଭୃତିଙ୍କୁ ନିଜର ଜ୍ଞାତି ବୋଲି ଗଣନ୍ତି ନାହିଁ ମାହାନ୍ତି ସାହିର ଭଦ୍ରଲୋକମାନେ । ତଥାପି ଏହି ଅଜ୍ଞାତିମାନଙ୍କଠାରୁ ସେମାନେ ଯେଉଁ ଉପକାର ପାଆନ୍ତି, ଯୁଗ ଯୁଗ ଧରି ତାହା କେବଳ, ଭଦ୍ରେତରମାନଙ୍କଠାରୁ ଆଶା କରାଯାଇ ପାରିଚ ।

ଶେଷକୁ କୁରୁପର ସାନ ପୁଅ ବଇଦାର ସାହଚର୍ଯ୍ୟ ମଧ ଆବଶ୍ୟକ ହେଲା । ମଶାଣୀକି ଚିରା କାଠ ବୋହିବାକୁ ସେ ତା'ର ଶଗଡ଼ ଖଣ୍ଡିକୁ ଦେବାପାଇଁ ପ୍ରସ୍ତୁତ ଥିଲେ ବି ଲୋକର ଅଭାବ । ବାପର ଅନୁରୋଧରେ ସେ ନିଜ ହାତରେ ଶଗଡ଼ ଟାଣି ଟାଣି ନେଇ ତିନି ଭାର କାଠ ଜମା କରିଦେଇ ଆସିଲା ।

ଆନ୍ଦ ହେଲା ଦୁର୍ଗାଚରଣ ସାଙ୍ଗକୁ ଉପକର୍ତ୍ତା ।

ସେତେବେଳକୁ ଯୋଇ ନଦାହେଲାଣି ଶ୍ମଶାନରେ । ଶଆଁ କାଠ ଆବଶ୍ୟକ ମୁତାବକ ହୋଇ ନ ଥିବାରୁ ସେଥିଲାଗି କୁରୁପ ପ୍ରଥମେ ଧୋବାଙ୍କ ଉପରେ ଚଡ଼ି ଥିଲେ ବି ନିଜର ଦକ୍ଷତାରେ ସେ ସବୁ ଠିକ୍ କରି ନେଇଚି । ଅନେକ ବେଳୁ ମୁଖାଗ୍ନି ଦିଆ ସରିଲାଣି । ଦୁର୍ଗା ଓ ଆନନ୍ଦ ନଈରେ ଗାଧୋଇ ଫେରି ଗଲେଣି ଘରକୁ । ପୁରୁଣା ଶାଳୁଆ କାଠ କଚ୍ଛ ଦିଆ ଯାଇଥିବାରୁ ଯୋଇରେ ନିଆଁ ଠିକ୍ ଭାବରେ ଧରିଚି । ଆକାଶରେ ଉଠି ସାରିଚି ଜହ୍ନ । ସମସ୍ତ ଭଦ୍ର ମଡ଼ାପୋଡ଼ାଳିମାନେ ପାଖର ବରଗଛ ତଳେ ବସି ମୁହଁରେ ଖଦ୍ୟୋତ ଉଡ଼େଇ ବଡ଼ ଟାଣି ଟାଣି ଶୀତ ଓ ଅବସାଦକୁ ପରାସ୍ତ କରିବାକୁ ଚେଷ୍ଟା କରୁଚନ୍ତି । ଯୋଇ ପାଖରେ କେହି ଜଣେ ଠିଆ ନ ରହିଲେ ତାହା ଭଲ ଭାବରେ ଜଳେନା, ଏହି ଧାରଣାର ଅନୁସୃତ ଧରି ଯୋଇ ପାଖରେ ଠିଆ ହେଇଚି ଉଛବ । ହାତରେ ତାଁର ଖଣ୍ଡେ ଲମ୍ବ ବାଉଁଶ, ସେଥିରେ ସେ ନିଆଁକୁ ଖେଞ୍ଚି ଖେଞ୍ଚି ଜଳନ୍ତାକାଠରୁ କାଳି ଛଡ଼େଇ ତାକୁ ଉତ୍କୃଷ୍ଟ ଇନ୍ଧନରେ ପରିଣତ କରୁଚି । ଅଳ୍ପ ଦୂରରେ ନିଆଁ ବରିଆକୁ ଫୁଙ୍କି ଫୁଙ୍କି କଡ଼ା ଧୂଆଁପତ୍ର ପିକାରେ ନିଆଁ ଧରଉ ଧରଉ ପାଟି କରି ଉଠିଲା କୁରୁପ—"ହାଁ, ହାଁ, କଣ କରୁଚୁ ଉଛବା" କହି କହି ଉଠିଆସିଲା କୁରୁପ । "ଯାଃ, ତତେ କିଏ କହିଲା ଏଥିରେ ହାତ ଦବାକୁ ।"

ତାହାପରେ କେତେ ଖଣ୍ଡ ଗରଣ୍ଡା କାଠ ପୂରେଇ କୁରୁପ ସଜାଡ଼ ଦେଲା ପତନୋନ୍ମୁଖ ଯୋଇକୁ । ଅଗ୍ନିରେ ପ୍ରଖରତା । ନିଆଁ ସାଙ୍ଗରେ ସେତେବେଳକୁ ମଣିଷର ଚର୍ବି ମିଶି ସାରିଚି ।

କୁରୁପ ଦେହରେ ଗୁଡ଼ି ହୋଇ ଯାଉଚି ଯୋଇ ନିଆଁର ଆଲୁଅ । କୁରୁପକୁ ସେଥିରେ ଚହ୍ନି ହେଉଚି ଭଲ ଭାବରେ । କେତେ ପ୍ରଭେଦ, ସେହି ବିଶ୍ୱବିଜୟୀ ବର୍ବର ନାଗା ଶବଦାହକମାନଙ୍କ ସଙ୍ଗରେ । ଏଇ କୁରୁପକୁ ମଧ୍ୟ ଦେଖିପାରୁଚନ୍ତି ଗ୍ରାମୁକରଣେ, କିନ୍ତୁ ଆଖିରେ ତାଙ୍କର ସେହି ପୁରାତନ ଚଷମା—ସେଥିରେ ସେ କେବଳ ଦେଖୁଚନ୍ତି କୁରୁପ ମାହାନ୍ତି ମଡ଼ାପୋଡ଼ାଳୀ, ଆଉ ସେ ଗ୍ରାମୁକରଣ, ଏକ ମଞ୍ଚରେ ବିଭିନ୍ନ ଅଭିନେତା ।

ଚମକି ପଡ଼ଲେ ଗ୍ରାମୁକରଣେ । ଛକଡ଼ି ଆଉ ରାମପଟ୍ଟନାୟକ ମଧ୍ୟ । ବରଗଛର ଗ୍ରାଇ ତଳେ ସେମାନଙ୍କ ଆଗରେ ସାକ୍ଷାତ ଏକ କଳାଭୂତ । ଲଣ୍ଠନ୍ଟା ତେଜେଇ ଦେଲା ଅନାଦିଆ—ସେମାନଙ୍କର ଅନ୍ୟ ଏକ ସହଯାଶୀ, ସାହିର ଏକ ବେକାର ଏବଂ ତଥାକଥିତ ସ୍ୱାଧୀନ ଯୁବକ । ଅନାଦିଆ କହିଲା—କିରେ ନିଧି ମଳିକ କୁଆଡ଼େ ?

ନିଧି ମଳିକ ଦେହରେ ଚୌକିଆର ନେଳୀ ପୋଷାକ । ଗଳାରେ ଦିଶୁଚି ନିଘଞ୍ଚ କଳା । ଶତା ଉଞ୍ଚର ଠେଙ୍ଗା ହାତରେ । ସେ ଦଣ୍ଡବତ ହେଲା ବାବୁମାନଙ୍କୁ ।

ଗ୍ରାମୁକରଣେ ବଡ଼ ପାଟିରେ କହିଲେ—କୁଆଡ଼େ କିରେ ନିଧିଆ, ଚଉକି ଦଉଁ ଦଉଁ ଆଡ଼େ ଗ୍ଲଲି ଆଇଲୁ ?

ହଁ, ଗ୍ରାମୁକରଣଙ୍କ ଉଉଣୀ ମରିଚି । ଏଥିରେ ଗୋଟା ସାମାନ୍ୟ ଚୌକିଦାର ଆସି ସହାନୁଭୂତି ଦେଖେଇବ କଣ ! ଯେମିତି ଖୁବ୍ ଅପମାନ ହେଲା ଏଥିରେ

ଘୁମୁକରଣଙ୍କୁ । ଯୋଗକୁ ଏଇ ସତରେ ଘଟିଲା ଅପାଙ୍କର ମରଣ, ନ ହେଲେ ହେନେ ହେନବେଳେ ତାଙ୍କୁ ଏଠି ବିଷଣ୍ଣ ଭାବରେ ବସିବାକୁ ପଡ଼ୁଥାନ୍ତା—ଏଇ ଇତର ଲୋକଙ୍କ ଆଗରେ ।

ହଠାତ୍ କିଛି ମଲିକ କିଛି କହି ପାରିଲେନି । "ମୁହଁମୋଡ଼, ଏବେ କର୍ତ୍ତବ୍ୟ । ପିମ୍ପୁଡ଼ି ଯମଦୂତ ଆଖ୍ୟା ପାଇଲାପରି ହୁଏତ ରାଜଦୂତ ଆଖ୍ୟା ପାଇପାରେ ନିଧି । ଶାସନର ପ୍ରଥମ ରଶ୍ମି ଧରି ବୁଲୁଚି ସିଏ, ଗାଁର ଚୌକିଦାର, ବହୁତ ଆଗରୁ ସେ ବୋଧହୁଏ ଗନ୍ଧ ପାଇଚି ଶାସନ ବିଶୃଙ୍ଖଳାର ।

କିଛିକ୍ଷଣ ପରେ ନିଜକୁ ସମ୍ଭାଳି ନେଇ ଗୋଟିଏ ଅପରାଧୀ ପରି କହିଲା ନିଧି ମଲିକ - ଆଜ୍ଞା, ପ୍ରେସିଡେଣ୍ଟ ଆଇଚନ୍ତି···

ଘୁମୁକରଣଙ୍କ ମୁହଁକୁ ଅନେଇଲେ ଛକଡ଼ି ଏବଂ ରାମ । ଭିତରକୁ ଅନେଇଲେ ଘୁମୁକରଣେ । ଆଗରେ ଅପାଙ୍କର ଚିତା ପ୍ରଜ୍ୱଳିତ, ଅଗ୍ନିର ସ୍ଫୁଲିଙ୍ଗ ଉଡ଼ି ଉଡ଼ି ମିଶି ଯାଇଚି ଆକାଶରେ । ଗର୍ଜି ଉଠିଲେ ଘୁମୁକରଣେ—ହାଇରେ ଶଳା, ବାଞ୍ଛା ପରିଡ଼ା କେମିତି ଜାଣିଲା ମୋ ଭଉଣୀ ମରିଚି ବୋଲି ?

ଏକଥାରେ ଆଉ ମୁହଁମୋଡ଼ର ଗନ୍ଧ ରହିଲା ନାହିଁ ନିଧି ମଲିକ ଭିତରେ । ତାହାର ଭାଇମାନେ ଯେ ବାବୁମାନଙ୍କଠାରୁ ନିତି କେତେ ମଧୁର ଉପାଧି ପାଆନ୍ତି, ଏହା ସେ ଭଲ କରି ଜାଣେ, କେବଳ ଦେହର ନେଳୀ କୁର୍ତ୍ତା ଖଣ୍ଡକୁ ଆଶ୍ରା କରି ସେ ଟିକେ ବଞ୍ଚିତ ଥିଲା ସେଥିରୁ । ସେହି ନେଳୀ କୁର୍ତ୍ତାକୁ ଆଶ୍ରୟ କରି ସେ ବର୍ତ୍ତମାନ ଟିକେ ନିର୍ଭୀକ ହୋଇପଡ଼ିଲା, କହିଲା—

ଆଉ କଣ ସେ ସକାଶେ ମୁଁ ମୋ ଘୁଷୁରି ଖାଇବି କହୁଚ ?

ହଁ, ଘୁଷୁରି ଖାଇବୁ ନେଇ ଯେ, ଶଳା ଠଙ୍ଗା ଖାଇବାର ଫନ୍ଦା—କୋଉଠି ଅଛି ସେ ପରିଡ଼ା ଟୋକା ?

ପ୍ରାୟ ପଚିଶ ହାତ ଦୂରରେ ଯେଉଁଠି ରାସ ପୂର୍ଣ୍ଣିମାକୁ ବାଲିଯାତ୍ରା ହୁଏ ସେଇଠି, ସେହି ବାଲି ଯାତ୍ରାର ପଥର ଚଉରା ଉପରେ ବସିଥିଲେ ପ୍ରେସିଡେଣ୍ଟ । ଚଉରାର ଗୁରି ପାଖରେ ବାଉଁଶର ଜାଫ୍ରି ଆଉ ଫାଟକର ଭଗ୍ନାଂଶ ମଧ୍ୟ ଦେଖାଯାଏ ।

ବାଞ୍ଛା ପରିଡ଼ା ଘୁମୁକରଣଙ୍କ ଗର୍ଜନ ଶୁଣିଲେ । ବିଶେଷତଃ ସେ କାନ ଡେରିଥିଲେ ଯତ୍ନରେ । ବାଘ ପାଖକୁ ବାଘ ପଠେଇଚି ସଂଗ୍ରାମର ଆମନ୍ତ୍ରଣ—ଏଥିପାଇଁ ସେ ଯଥେଷ୍ଟ ସଜାଗ ହୋଇ ବସିଥିଲେ । ଶେଷରେ ପଦ୍ମତୋଳା ମଧ୍ୟ ଶୁଣିଲେ ସିଏ, ଦୂରରେ ଆଉ ରହି ପାରିଲେନି । ପଛରେ ମଧ୍ୟ ଦଫାଦାର ।

ବାଞ୍ଛା ପରିଡ଼ା କହିଲେ—ପରିଡ଼ା ଟୋକା ତମ ପାଖରେ ଘୁମୁକରଣ ।

ବାଞ୍ଛାବାବୁ ପରିବର୍ତ୍ତେ ପରିଡ଼ା ଟୋକା, ଭିକାରି ବାବୁ ଜାଗାରେ ଘୁମୁକରଣ, ଖାଲି ଯେମିତି ବୋମାର ଗନ୍ଧ । ବର୍ତ୍ତମାନ ନିଜେ ଏକ ବିଷାକ୍ତ ବୋମା ପରି ଫାଟିପଡ଼ିଲେ ଘୁମୁକରଣେ ।

ଶୁଣ ହୋ ପଚୁଆରି, ଶୁଣ ଛକଡ଼ି ବାବୁ, ହୋ କୁରୁପ ଭାଇ ଶୁଣ, ଆମେ ଆଜ ମଡ଼ା ପୋଡ଼ିବୁ ନେଇ ଏ ରାଜ୍ୟରେ । ଏ ବାଞ୍ଛାନିଧି ପରିଡ଼ା ଆମକୁ ଆଉ

ରଖେଇ ଦେବେ ନେଇଁ—ଶୁଧ ଶୌଚ ବି କରେଇ ଦେବେ ନେଇଁ ଆମକୁ । କୋଉ ସରକାର ଆସି ଆମ ଗାଁରେ ବୁଲୁଚ—ଶଳା ଆମେ ଆମ ଧିଏରେ ମାରୁଛୁ ମେଖ । ଏ ନିଧିଆ ପାଣ ବି ଆମର ଶତ୍ରୁ । ଓହୋ, ଅଲୌକିକ କଥା, ଆମେ ଶବସତ୍କାର କରୁଚୁ, ତମେ ଏ ଶମଶାନରେ ଆସି ଆମକୁ ଘେରୁଚ······

ରାଗି ଯାଇଁ କହିଉଠିଲେ ବାଞ୍ଛୁ ପରିଡ଼ା···ହଁ, ଆଉ ଖାଲି ଶାମ ସେନାପତି ପେଇଁ ତ ସରକାରି ନିୟମ । ଦେଖ୍ ନିଧି ମଳିକ, ଏ ସମସ୍ତଙ୍କର ନାଁ ମନେ ରଖ । ଚାଲି ଦଫାଦାରେ, ମୁନସ୍ ଆସିଲେ ଏ କଥାର ଯାଇଁ ମିମାଂସା ହବ । କାଲି ସକାଳୁ ତମେ ଥାନାକୁ ଯିବ । କିଏ କିଏ ଧୋବା ବି କାଠ ଚିରିଚନ୍ତି ତାଙ୍କ ନାଁ ବି ମତେ କାଲି କହିବୁ ଚୌକିଦାର···

ଆଗକୁ ଚାଲିବାକୁ ଲଗିଲେ ପ୍ରେସିଡେଣ୍ଟ । ପଟୁଆରିଙ୍କ କାନରେ ଫୁସ୍ ଫୁସ୍ କରି କହିଲେ ଘୁମୁକରଣେ—ଡାକ୍ ରାମ ଡାକ୍ । ଶଳା ରକତଖିଆ ବାଘ—ବଡ଼ ଫିସାଦବାଜ୍···

ଗୋଡ଼ ଫେରଉ ଫେରଉ ବାଞ୍ଛୁ ପରିଡାଙ୍କର ମନେ ପଡ଼ୁଥାଏ ସେଇ ଶାମ ସେନାପତିର ଟଙ୍କା କଥା, ସେଥିରୁ ଅଧେ ମାରି ନେଇଚ ଏଇ ଭିକାରି ମାହାନ୍ତି । ଓଃ, କିଏ ଜାଣିଥିଲି ଭିକାରି ମାହାନ୍ତି ବାକସରେ ପୁଣି ଅଛି ବାଞ୍ଛୁ ପରିଡ଼ାର ଟଙ୍କା । ସବୁ ଭଗବାନଙ୍କ ବିବାଦ, ନ ହେଲେ ଏତେ ଚାଣ୍ଡେ ମରିଥାନ୍ତା କଣ ଘୁମୁକରଣର ଭଉଣୀ । ଏଁ···ରାତିରେ ଏଣିକି ସମସ୍ତେ ମରନ୍ତେ କି, ଶଳା ଛ’ ମାସରେ ପିଟି ହଅନ୍ତେ କୋଠା । ···ଶଳା ମୋର କଣ ପୟସ୍ ଥିଲି ଏଥିରେ, ଯୋଗକୁ ଶାମ ସେନାପତି କୋଠା ପ୍ରତିଷ୍ଠା ନ ହୁଏ, ଆଉ ମତେ ମନ୍ତ୍ର ନ ଦିଏ ଘୁମୁକରଣ । ଶିଖୁ, ମନ୍ତ୍ରର ଗୁଣ ଟିକେ ଶିଖୁ । ହୁଁଃ, ସରକାର ବ୍ଲାକ ଆଉଟୁ ଆଇନ କରିଚନ୍ତି···ଏ କଣ ଖେଳ ଘର କଥା ।

ଏହା ଭିତରେ ଘୁମୁକରଣେ ବି ଅନେକ କଥା ଭାବି ପାରିଲେ, ପ୍ରଥମେ ତାଙ୍କର ମନେ ପଡ଼ିଲା, ଆଗରେ ଶୁଦ୍ଧି ଆଉ ଏକଦଶାହ । ଲୁଗାପଟା, ଚିନି-କିରାସିନି ପାଇଁ ବି ଏ ବାଞ୍ଛୁ ପରିଡ଼ାକୁ ଧରିବାକୁ ହେବ···ଚଢେଇବା ଆଉ ଦରକାର ନାହିଁ । କୋଉ ଏବେ ହାତରୁ ବାଜୁଚି ? ମନେ ପଡ଼ିଲା ତାଙ୍କର ମଠ ତହବିଲ । କଣ୍ଠ ସରସ କରି କହିଲେ ଘୁମୁକରଣେ··

ଅପା ଆମର ଚାଲିଗଲା ବାଞ୍ଛୁବାବୁ, କିଛି ଧରିବନି, କିଛି ଧରିବନି··· ମୁଣ୍ଡ ମୋର ଏକଦମ୍ ଖରାପ ହେଇଯାଇଚି ଭାଇ ।

ପରିଡ଼ାଏ ବି ସହାନୁଭୂତି ଜଣେଇଲେ—ଏଁ, ଅପା ମରିଗଲେ, ମଲି ମଲି ଅପାଙ୍କର ସତ୍କାର ହଉଚି ଇଏ ! କଣ କରିବା ଭାଇ, କଥାରେ କହିଚି ଘୁଡ଼ ପିତୃକାର୍ଯ୍ୟ···କର ରାଜକାର୍ଯ୍ୟ । ତମେ ମତେ ସୋଧ, କିନ୍ତୁ ମୁଁ ସରକାରି କାମ ବୁଲେଇବାକୁ ଆଇଚି···ନହେଲେ ଚନ୍ଦ୍ରପୁର ପଇଡା ଆସି ନାନ୍କା ଶମଶାନରେ ଫଜିତ୍ ଶୁଣନ୍ତା ଭିକାରି ମାହାନ୍ତି ଠଉଁ···

ଏକ କାଠ ଚାପୁଡ଼ା । ଆକଷ୍ଟିକ୍ ମାଇନ୍ ଛୁଡ଼ିଥିଲି ହିଟଲର୍, ମାଗ୍ନେଟିକ୍ ମାଇନ୍ ତା’ପରେ ତାକୁ ବ୍ୟର୍ଥ କରିଦେଲି ମିତ୍ରପକ୍ଷ ।

ଗୁମୁକରଣେ ମନେକଲେ ଯେମିତି ଖଣ୍ଡେ ଶୋଷା ବ୍ଲଟିଂ କାଗଜ ଆଗରେ ଠିଆ ହୋଇଚ ମଣିଷର ଚେହେରାରେ । ଯିଏ ପୋଡ଼ା ଶବ ଦେହରୁ ଖାଦ୍ୟ ସଂଗ୍ରହ କରିବାକୁ ଆସିଚ । ତାକୁ ଆଉ ଅର୍ଥହୀନ କଥା କହିବାକୁ ଉଚିତ ମନେ କଲେ ନାହିଁ ସେ । ରାମ ମହାନ୍ତିଙ୍କି ପଠେଇଲେ ଘରକୁ, ମାଳ ଦେଈଙ୍କ ପାଖକୁ ।

ପାଖର ବର ସିହ ଉପରେ ବସି ପଡ଼ଲେ ବାଞ୍ଛା ପରିଡ଼ା । ଗୋଟିଏ ଗଛର ମୂଳକୁ ଆଶ୍ରୟ କଲେ ଉଭୟେ । ଯେମିତି ଏଇ ବରଗଛ ସେଇ ସ୍ୱାର୍ଥର ପ୍ରତୀକ । ଜହ୍ନ ଆଲୁଅ ଖଣ୍ଡ ଖଣ୍ଡ ହୋଇ ପଡ଼ିଚ ବରଗଛର ତଳେ, ସେଥିରେ ଅଛି ସ୍ୱପ୍ନ—ରଜତର ସ୍ୱପ୍ନ । କିନ୍ତୁ ସେଥିରେ ବାସ୍ତବତା ଥିଲେ ବର୍ତ୍ତମାନ ସମସ୍ତେ ପାଆନ୍ତେ ନିଷ୍କୃତି ।

ଜୀବନ ପଥରେ ଖୁବ୍ ତାନେ ପିଟିଚନ୍ତି ମଣିଷଙ୍କାକୁ ସ୍ୱାର୍ଥର ଏଇ ପଥିକ-ମାନେ । ଏମାନେ କଙ୍କରିଳ ବାସ୍ତବତାର ପଥିକୃତ୍—ଗୀହାର ବନ୍ଧୁରତାରେ କେବଳ ବେଳେ ବେଳେ ଝୁଣ୍ଟୁଚନ୍ତି ମାତ୍ର ।

## —କୋଡ଼ିଏ—

ପ୍ରାୟ ଦିନ ଶେଷ ବେଳକୁ ଫେରିଲା ମଦନା । ମନରେ ତାର ଅନେକ ସ୍ୱପ୍ନ । ଏକ ଭିତରେ ଅନେକର ଝଙ୍କାର ।

ଆଜିର ଜୀବନ ତାକୁ ଖୁବ୍ ଭଲ ଲାଗିଲା ଯେମିତି । ପିଲା ଦିନରୁ ତା' ବାଟରେ ଖାଲି କୋଇଲିଖିଆର କଣ୍ଟା । ଏହି ତିନି ବର୍ଷ ହେବ ସେ ଟିକେ ନିଶ୍ୱାସ ମାରୁଚି, କିନ୍ତୁ ଜୀବନକୁ ଉପଭୋଗ କରିନି ଜମା, କେବଳ ମଝି ଦାଣ୍ଡିଆ ଠଉଁ ଉତ୍ତର ସେ ଶେଷ ପାହାର ଗୁଡ଼ରେ ପଶିଚ ଖାଲି । ଦୁଏତ ଦାଣ୍ଡିଆ ମାରିବାକୁ ସେ ଡରିପିଦନି ଆଗଭଳି—ତା' ପଛରେ ଆଜି କେବଳ ନାହିଁ ଶ୍ରୀମତୀ ଆଉ ତାର ବୋଉ, ପଛରେ ତା'ର ଆଜି ଗୋକଳ ଭାଇ, ବକଳ ବୋଉ, ପୁଣି ବକଳ । ଓସ୍ତା ତ ଅଛି । କିନ୍ତୁ ଜୀବନକୁ ଧରି 'ସେରନେଡ଼୍' ଗାଇବା ପାଇଁ ତାର ସୁଯୋଗ ଖୁବ୍ କମ୍ ।

"ଆରେ..."

ଶୀତେଇ ପଡ଼ିଲା ମଦନା । ସ୍ୱରଟା ରୋମାଞ୍ଚକର—ଯେଉଁ ରୋମାଞ୍ଚ ହୁଏ ଆନନ୍ଦରେ । ଯେଉଁ ଆନନ୍ଦ ସାର୍ବଜନୀନ । ସୃଷ୍ଟିର ସକଳ ବସ୍ତୁରେ ଯେଉଁ ଆନନ୍ଦର ମାଧ୍ୟାକର୍ଷଣ । ସେହି ଆନନ୍ଦର ସ୍ୱରରେ ଉଦ୍‌ଗ୍ରୀବ ହୋଇଉଠିଲା ମଦନାର ଶ୍ରୁତି । ଅନୁଭବ ।

ନିବିଡ଼ ଅରଣ୍ୟର ବିପରୀତ ପରିସ୍ଥିତି ହୋଇପାରେ ଯାହା, ତାହାରି ଭିତରେ ଗତି କରୁଥିଲି ମହନ୍ତ । କୋଶକ ଦୂରରେ, ପାଟର ଗମ୍ଭୀର ବିଲରେ ପାଣି ଧାନ କାଟୁଚନ୍ତି କେତେକ ଲୋକ । ଲୋକ ବାକର ଆଉ ଦେଖା ମିଳେନା । ମହନ୍ତ ଗ୍ଲୁଥିଲା ଉଞ୍ଚ ହୁଡ଼ର ଗୋଟିଏ ସରୁ ରାସ୍ତା ଉପରେ । ସେଥିରେ କ୍ଷୀର କୋଳି ଗଛ, ଖଜୁରି ଗଛର ଧାଡ଼ି । ଅନେକ ଆଗରୁ ଓରି ଭର୍ତ୍ତି କରି ଚମାର ମଦ ନେଇ ଗଲଣି ଏଇ ଖଜୁରି ବଣରୁ । ନିକଟରେ ଗୋଟିଏ ଲୋଟଣି ବରି । ଡାଳ ଗୁଡ଼ାକ ତାହାର ନଇଁ ନଇଁ ଦୋହଲି ଯାଉଚି ଭୂଇଁରେ । ଦ'ଗୁରିଟା କାଣ୍ଡି ବଗ ସେଇ ବରଗଛର ଅଗରେ । ଗୋଟିଏ ଲଘୁ ହାସ୍ୟର ତରଙ୍ଗ ଏହି ସମୟରେ ମହନ୍ତର କାନକୁ ଆସି ପୁଣି ଭେଦ କଲି ।

ଦିନ ଅସ୍ତ ହୋଇନି । କିନ୍ତୁ ମାର୍ଗଶୀର ମାସର ଶେଷ ସପ୍ତାହର ଏକ ଅପରାହ୍ଣର ଶେଷ ପ୍ରହର । ଅଳସ ଓ ମନ୍ଥର । ଚଞ୍ଚଳ ଗତିରେ ବଂଶୀର ଗୋଟିଏ ସ୍ୱର ଲହରୀ ଖେଳିଗଲି ସେଇ ବରଗଛର ତଳେ ।

ବାଃ,...

ମହନ୍ତ ପାଟିରୁ ଅବଲୀଳା କ୍ରମେ ବାହାରିପଡ଼ିଲି ଏଇ ଗୋଟିକ ଶବ୍ଦ । ତା'ପରେ ସେ ଦେଖିଲି ପନ୍ଦର ଷୋଳ ବର୍ଷର ଗୋଟିଏ ଟୋକା, ପାଖରେ ଗୋଟିଏ ବାର ତେର ବର୍ଷର ଟୋକୀ । ଦୂରରେ ଗୋବର ପାଚିଆ । ଘାସ ଉପରେ ଅଧ ଶୁଆ ହୋଇ ମୁହଁରେ ବଂଶୀ ଦେଇଚି ଟୋକା । ମୁଣ୍ଡରେ ଅଲରା ବଲରା ବାଳ । ଦେହରେ ଖଣ୍ଡେ ପୁରୁଣା ନାଲି କସ୍ତାର ଗାମୁଛା । କାଳିଆ କାଳିଆ ଗୋଡ଼ ଦୋଟି ତାହାର ଛନ୍ଦହୀନ ହୋଇ ଟେକା ହୋଇଚି ଉପରକୁ । ଆଗରେ, ଘାସ ଉପରେ ପେଟ ମାଡ଼ି ହୋଇ ଦ' ହାତରେ ମୁହଁକୁ ଧରି ଗ୍ଲୁହିଁଚି ତାହାକୁ ବାଳିକା । ଯେମିତି ବଂଶୀ ସ୍ୱରକୁ ସେ ଖାଲି ଶୁଣୁଚି ଆଖିରେ । ଚିରି ଯାଇଚି ତାର ଲୁଗା ଖଣ୍ଡିକ ଅନେକ ଜାଗାରେ । ଠିଆହେଲେ ସେଇ ପରିଧେୟ ତାର ଲଜ୍ଜା ନିବାରଣ କରୁଚି ବୋଲି କହି ହବନି । ମୁଣ୍ଡର ଲୁଖୁରା ବାଳ କେରା କେରା ହୋଇ ଝୁଲିପଡ଼ିଚି ଗାଲ ଉପରକୁ । ଯେମିତି କୁହୁଡ଼ ଭିତରେ ସବୁବେଳେ ପହଁରି ଦେହ ତାର ହୋଇ ଯାଇଚି ଖୁବ୍ ଖଡଖି । ଯେମିତି ଖଣ୍ଡେ ଖରଖିଆ କେନ୍ଦୁ କାଠର ମଞ୍ଜରେ ଦେହ ତା'ର ତିଆରି । ସେଥିରେ ପୁଣି ଯୌବନର ଆଶ୍ଳେଷ । ଆଦ୍ୟ ଯୌବନ । ଲହରୀ ଆସିନି । କେବଳ ସ୍ଫୀତି ।

ଅନେକ ପାଖକୁ ମହନ୍ତ ଆସି ଯାଇଥିଲି । ହଠାତ୍ ଘୁଞ୍ଚି ଗଲି ସିଏ ଦୂରକୁ, ଗୋଟିଏ ଭୁଇଁବର କୋଳି ଆଉ ବେଣା ବୁଦାର ପଛକୁ । ସେହିପରି ଦେଢ଼ଟି ବାଳକର ବୟସ ତା'ର ରକ୍ତରେ, ମାତ୍ର ସେହିପରି ଅଧଟି ବାଳକର ଅଭିଜ୍ଞତା ନାହିଁ ସେଥିରେ । ସେଥିପାଇଁ ଗୋପନରେ ଗ୍ଲୁହିଁ ରହିଲି ସେ ନିରନ୍ନର କ୍ଷୁଧା ଧରି । କିଛି ସମୟ ପରେ କେବଳ ବଂଶୀସ୍ୱନ ପବନରେ ଉଡ଼ିବାକୁ ଲାଗିଲି, ସେମାନେ ଗ୍ଲଲିବାକୁ ଲାଗିଲେ ଦୂର ଗାଁଆଡ଼କୁ ।

ତାହାପରେ ମହନ୍ତ ଖୁବ୍ ଜୋର୍‌ରେ ଗ୍ଲଲିବାକୁ ଲାଗିଲି । କିନ୍ତୁ ତାର ସମୁଦାୟ ଜୋର ତାକୁ ମୋଟେ ନେଇ ପାରିଲା ପରିଶ ହାତ ଦୂରକୁ । ସେଠି ସେ

ଯେମିତ ଦମ୍ ନେବାକୁ ଲଗିଲ, ଆଉ ଗୃହଁ ରହିଲ ପୁଣି ସେହି ବାଳକ ବାଳକା ଦୁଇଟିଙ୍କୁ । ସେମାନେ ଦୂର ଗ୍ରାମର ପାଂଶୁଳଦ୍ଧକ୍ପାଦପ ଶ୍ରେଣୀରେ ମିଶିଯିବାକୁ ଲଗୁ-ଚନ୍ତି ସେତେବେଳକୁ । ମହନ ଫେରି ଆସିଲ ପୁଣି ପଛକୁ—ଯେଉଁଠି ସେ ପ୍ରଥମେ ଦେଖିଥିଲ ସେଇ ବାଳକ ବାଳକା ଦୁଇଟିଙ୍କୁ । ସେଠାରେ ଛୁଡ଼ା ହୋଇ ସେ ଅନେଇଲ ସେଇ ବରଗଛକୁ—ଯେମିତ ବର୍ତ୍ତମାନର କୌଣସି ପରିବ୍ରାଜକ ଗୃହେଁ ଯମୁନା କୂଳର ବୃନ୍ଦାବନକୁ । ସେହି ଘାସ ଉପରେ ଯାଇଁ ସେ ବସିପଡ଼ିଲ ବହୁଲ ପରି । ଖୁବ୍ ସହଜ ସରଳ ଭାବରେ ତା'ର ସେଠି ଶୋଇ ପଡ଼ିବାକୁ ଇଚ୍ଛା ହେଲ । କିଛିକ୍ଷଣ ପରେ ଆକାଶ ଉପରେ ଆଖି ପଡ଼ିଲ । ପୃଥିବୀ ସେତେବେଳକୁ ଘୂରି ଗଲଣି ଅନେକ । ମହନ ଦେଖିଲ ସୂର୍ଯ୍ୟ ପୃଥିବୀକ ଛାଡ଼ ଯିବା ଉପରେ । ଉଠିପଡ଼ିଲ ସେ । ହସ ମାଡ଼ିଲ ତାକୁ ତାର ଏହି ଭାବପ୍ରବଣତା ଲଗି । ଠିକ୍ ସନ୍ଧ୍ୟା ଲଗିଲ୍‌ବେଳେ ଆସି ପହଁଚିଲ ଘରେ । ମା' ତା'ର ଉଚ୍ଛନ୍ନ ହୋଇ କହିଲ—

କରେ, ଦିନଯାକ ତୁ କୁଆଡ଼େ ରହିଲୁ ଆଜ ? ଗୃହିଁ ଗୃହିଁ ଆଖିରୁ ମୋର ପାଣି ମଲଣି ଆସି···

ଏହି ସମୟରେ ଶ୍ରୀମନ୍ତ ତରତର ହୋଇ କହିଉଠିଲ—

ଜାଫର ଭାଇ ବ ଆଇଥିଲେ ଭାଇ, ତାଙ୍କର ସିଁବାର ଦିନ ଦଶ ଖଣ୍ଡ ଖାଲ ଗାଡ଼ ମାଲ ଆଣିବାକୁ ଯାଉଚ ଛଡିଆ—ସବୁ ଗାଡ଼ ସେ ଏଇଠିକ ପଠେଇ ଦେବେ, ଆମର ମାଲ୍ କ'ଣ ସା'ବ ଗୋଦାମକୁ ଯିବ ସେଥିରେ ସେ ନଦ୍ଧ ଦବାକୁ କହିଚନ୍ତ ।

କୌଣସି କଥାରେ କାନ ନ ଦେଇ ଗୋଟା ବଡ଼ ମାରିଲ ଶ୍ରୀମନ୍ତକ ମହନ । ସେ ଜୋର୍‌ରେ ଦି'ତନଥର ବାଡ ଟାଣିବାକୁ ଲଗିଲ ।

ହଁ, ମୁଁ ଜାଫର୍‌କୁ କହି ଦେଇଚ ମହନ···

ଚମକ ଉଠିଲ ମହନ ମା'ର ଏ କଥାରେ । ଆଶ୍ଚର୍ଯ୍ୟତାର ସହିତ ତା' ପାଟିରୁ କେବଳ ବାହାରି ପଡ଼ିଲ - ''କଣ ?''

ମଲ କହିବ ନେଇଁ, ଦିନମାନ ତିନିଥର ଆଜ ଡକେଇ ପଠେଇଲଣି ସେ କର ନା'କ । କୁଆଡେ ପଞ୍ଚୁ ଆତ କରିବେ—ଆମକୁ ବାଛନ୍ଦ କରିବେ କୁଆଡେ । କଣ ଆଉ ପାଟିରୁ ଆଉଥିଲ ସେ ମୋର । ପୁଅ ଝିଅ ତ ତମେ । ଆମେ ତା'ର କୋଉ ବାରରେ ଗାଡଆ ଖୋଳରୁ କେଜାଣି···ସକଳଖିଆ, ସର୍ବ୍ୟାନାଶିଆଙ୍କର ମୋର ପୁଅ ଉପରେ ହିଁସା ।

କହି କହି ଦୁଆରେ ଅରଏ ବୁଲଆସିଲ ମହନବୋଉ । ମଝି ଦୁଆରେ ଛୁଡ଼ା ହେଇପଡ଼ ଅଣ୍ଟାରେ ହାତ ଦେଇ କହିଲ—

ସେ ସକଳଖିଆର କଥା ଜାଣିଚୁ ନା – ତା' ଭଉଣୀ ମରିଚ ।

ମହନ ସେକଥା ସକାଳୁ ଜାଣିଚ । କିନ୍ତୁ ତାହା କେଉଁଠାରେ କହିବାକୁ ସେ ଆବଶ୍ୟକ ମନେ କରିନ । ଅନେକ ଦିନ ତଳେ ସେ ଅପାଙ୍କୁ ମଧ ଥରେ ଗାଡ଼ରେ

ନେଇଥିଲା ସମ୍ମାନ ବନ୍ଧ । ଅପାଙ୍କର ପ୍ରତ୍ୟକ୍ଷ ସମ୍ପର୍କରେ ସେ ଆସିଥିଲା—ତାହାର ସେଥିପାଇଁ ବରଞ୍ଚ ଦୁଃଖ ହେଇଥିଲା ଅପାଙ୍କର ମୃତ୍ୟୁ ସମ୍ବାଦ ଶୁଣି ।

ଏପର୍ଯ୍ୟନ୍ତ ମଦନ ବିଶେଷ କିଛି କହିନି । ମା'ର କଥା ଭିନ୍ନ ଦିଗରେ ଯିବାର ଦେଖି ସେ କହିଲା—କଣ କହୁଚୁ ତୁ ଓସ୍‌କାକୁ, କହିଲୁ ତ ନେଇ ?

ମଦନ ବୋଉର ସ୍ୱରରେ ଅକୁଣ୍ଠତା ।···

ଆରେ ଆଉ କହିବି କଣ ? ମୁଁ କହିଲି ଜାଫର୍ ପୁଅକୁ ତୁ ମୋର ମଣିଷ କରଚୁ—ତାକୁ ତୁ ଅପୁ ଥା' କର ଏଣିକି । ତୁ ଆମକୁ ଏଠୁ ନେ—ଏ ଯମଙ୍କ ଦାଉରୁ ପୁଅକୁ ତୁ ମୋର ଉଦ୍ଧାର କର । ମୁଁ ଆଉ କେଇ ଦିନ ବଞ୍ଚିବି ? ମୋ ପୁଅକୁ ଏମାନେ ରଖିଦେବେ ନେଇଁ ଏଠି । ହାତକୁ ଦି'ହାତ ବି କରେଇ ଦେବେନି । ଝିଅକୁ ମୋର ଅବିହାଡ଼ୀ କରି ରଖିବେ ଏ ନୁ'ଚୁଣା ଯାକ । ଆଙ୍କ ଆଖିରେ ତ ପ୍ରିୟା ପୀରିତି ନାହିଁ କି ଭାଇ ବିରାଦର ନାହାନ୍ତି । ଯୋଗମାଗିଆଣ୍ଟା ଫେର୍ ମୋର ପୁତୁରା ହବ—ଭାଇ ହବ ମୋ ପୁଅର···

ସଜଳ ହେଇଆସିଲା ମଦନ ବୋଉର ଆଖି, କଣ୍ଠରେ ବାଷ୍ପ ଜମି ଆସିଲା । ଗଦ୍‌ଗଦ ସ୍ୱରରେ ସେ ପୁଣି କହିବାକୁ ଲାଗିଲା—ମରି ସରଗ ପୁରରେ ରହିଲା, ପୁଅର ଉନ୍ନତି ଟିକେ ହେଲେ ଦେଖି ଥାନ୍ତା ଆଖିରେ···ଆଜି କଣ ଏତେ ସାହାସ ହେଇଥାନ୍ତା ଆଙ୍କର···

ଆଖିରେ ଲୁଗା କାନି ଦେଇ ସେ ଆସି ପିଣ୍ଡା ଉପରେ ତା'ର ପୁଅ ପାଖରେ ବସିପଡ଼ିଲା । ମଦନ କିଛି ଭାବିପାରୁ ନ ଥାଏ । କିଛି କହି ପାରୁ ନ ଥାଏ । ଖଞ୍ଜା ଭିତରେ ଅନ୍ୟ କୌଣସି ଲୋକ ନ ଥିଲେ ବି ସାଇଁ ସାଇଁ ଶବ୍ଦରେ ମଦନର ଖୁବ୍ ନିକଟରେ ଫୁସୁର ଫୁସୁର କରି କହିଲା ମଦନବୋଉ—ଆରେ ସେ ପିଆଦା ପୁଅ କୁଆଡ଼େ ଗଲା ମ, ଆଜି କାହିଁକି ତା'ର ଦେଖା ନାଇଁ ?

ତା'ପରେ ବଡ଼ ପାଟିରେ କହିଲା—ପଞ୍ଚୁ ହତା ମଣିଷଟା । ଦେଖିଲେ ଆଖି ପୂରି ଯାଏ । ଶତ୍ରୁ ଶଙ୍କି ଯିବେ ଠିଆ ହେଇଥିଲେ ।

ବା'ଘର କଥା ଶୁଣି ସରମରେ ରଙ୍ଗା ପଡ଼ିଯିବା କମ୍ବା ଦ୍ରବି ହେମାଳ ହେଇଯିବାର ପିଲା ନୁହେଁ ଶ୍ରୀମନ୍ତ । ମା'ର କଥା ଶୁଣି ସେ ଉତ୍ତେଜିତ ହେଇ କହିଲା—ହଁ, ଭାଇ, ତାଙ୍କୁ ଆମରି ଘରେ ରହିବାକୁ ଡାକି ଆଣ—ତାଙ୍କର ଆଉ କିଏ ଅଛି ଭାଇ ?

ଓଃ, କେତେ କଥା ଆଜି ଘଟିଚି । କେତେ କଥା ଆଜି କହିବାକୁ ଥିଲା ଘରେ । କିନ୍ତୁ ଘଟୁଚି ତା'ର ଓଲଟା ।

କଣ ଭାଇ, ତମେ ଏମିତି ଗୁମ୍ ମାରି ଯାଉଚ କାହିଁକି ?

ଏଁ—ଚମକି ପଡ଼ିଲା ମଦନ, ଲଣ୍ଠନର ଆଲୁଅ ପଡ଼ିଚି ଶ୍ରୀମନ୍ତର ମୁହଁରେ । ଅନେଇଲା ମଦନ । ଉଠି ଠିଆ ହେଇପଡ଼ିଲା ସେ ଦୁଆରେ ।

ମୁଁ ଉତ୍ତରିବି ଶିବା—ମୁଁ ଉତ୍ତରିବି କାହାକୁ ? ଖାଲି ଭାବୁଥିଲି ମୁଁ ଭାସ୍କର ନା'କ କଥା—ଆଉ ଟଙ୍କା ଶହେଟା ଖଣ୍ଡେ ସିଏ ମୋଠୁ ଖାଇବ···

ପୁଅର ଏକଥା ଶୁଣି କହି ଉଠିଲା ମହନ୍ତବୋଉ—କରେ ତୋ ଠଉଁ ସିଏ କଣ ଖାଇଲାଣି କ ?

ଏ କଥାର ଉତ୍ତର ନାହିଁ । ମହନ୍ତ ଅନ୍ୟ କଥା କହିଲା ।

ଆମେ ତା' କୋରଖ ବନ୍ଦ କଲୁନା···ଆଉ ଗୋକଳ ଭାଇ ସେଠି ପିଆଦା ରହୁଥେଲେ, ସେଠୁ ଗୁଡ଼ ଦେଇ ସେ ଆସି ମିଶିଲେ ମୋ ସାଙ୍ଗରେ—ଯ୍ରାର ଅକସ୍ ନବାକୁ ବସିଚ ଭସ୍କର ନା'କ···ଦାଡ଼େ, ଏ ପାଖର ସୂର୍ଯ୍ୟ ସେ ପାଖରେ ଉଇଁଲେ ବ ମୁଁ ଆଉ ଶୁଣେନା ।

ହଁ, ଭାଇ, ଆମେ ଏଠୁ ଗୁଲିଯିବା ପଛକେ—

ଉତ୍ତେଜନାରେ ଫାଟିପଡ଼ିଲା ଯେମିତି ମହନ୍ତ ।

କ'ଣ, ଏ ଗାଁ କଣ ଭସ୍କର ନା'କର । ଆମେ କଣ କୋଉଠୁ ଭାସି ଆସିଚୁ···

ତା'ପରେ ଉତ୍ତେଜିତ ଭାବରେ ଦୁଆରେ ବୁଲି ବୁଲି ଏହି ଅସ୍ୱାଚ୍ଛନ୍ଦ୍ୟକର ଅବସ୍ଥାକୁ ଯେମିତି ଦଳିବାକୁ ଲାଗିଲା ମହନ୍ତ । କିଛି ସମୟ ପରେ ତା' ଉପରେ ଶକ୍ତ ପଦାଘାତ କରି ସେ କହି ଉଠିଲା—

ଭାତ ବାଢ଼େ ଶୀର ।

ଭାତ ଖାଉଁ ଖାଉଁ କହିଲା ମହନ୍ତ—ତମେ ସବୁ ଆଜି ଖୁବ୍ ଡେରିରେ ଡେରିରେ ଖାଇଥିବ, ନୁହେଁ ?···ମୁଁ ଆଜି ରହିଗଲି ଗୋକଳଭାଇଙ୍କ ଘରେ । ଭାତ ଖାଇବାକୁ ଦେଲା ତାଙ୍କ ଭାରିଯା । ଜାଣିଲୁ ଶୀର, ମୁଁ ତାଙ୍କୁ ନୂଆବୋଉ ବୋଲି ଡାକିଲି···

ଆପେ ଆପେ ତାହାପରେ ହସିଉଠିଲା ମହନ୍ତ । ପାଖରେ ଠିଆ ହେଇ ଥିଲେ ବି କିଛି କହିଲା ନାହିଁ ଶ୍ରୀମତୀ । ଯେମିତି ବହୁତ ଅସ୍ୱାଭାବିକତାର ଛନ୍ଦ ତାର ଭାଇର ଏ କଥାରେ ! ପୁଣି କହିଲା ମହନ୍ତ ।

ତାଙ୍କର ଗୋଟିଏ ବୋଲି ପୁଅ । ବିକଳ । ଭଲ ପିଲାଟି । ଖାଲି ମୋର ମନେ ହେଉଥା' ଯେମିତି ଆମେ ଗୋଟାଇ କୁଟୁମ୍ବ, ଭିନେ ହେଇ ରହିଚେ ଦୁ'ଟା ଗାଁରେ ।

କାହାଠାରୁ କୌଣସି ସମର୍ଥନ ନାହିଁ । ଉତ୍ତର ନାହିଁ । ପୁଣି କହିଲା ମହନ୍ତ ।

ଆମ ଘର ତାଙ୍କର ଗାଁରେ ହେଇ ଥାନ୍ତା କ ! ହଁ, ଓସ୍କା ଆଉ କଣ କହୁଥେଲେ ଶୀର ?

ଶ୍ରୀମତୀର ଅବସାଦ ଏବଂ ନୀରବତା ଭାଙ୍ଗିଗଲା ।

କହୁଥେଲେ, ଆମକୁ ଦିନେ ତାଙ୍କ ଘଡ଼ିକି ନେବେ ବୁଲେଇବାକୁ ।··· ଭାଇ, ଲଇଲା ମାନେ କଣ ?

ଭାତ ଥାଳିରୁ ମୁହଁ ଟେକି ଶ୍ରୀମତୀକି ଅନେଇଲା ମହନ୍ତ । ସେତେବେଳକୁ ଯାଇଁ ଚୁଲି ମୁଣ୍ଡରେ ବସିଲାଣି ମହନ୍ତବୋଉ ହାତ ସେକିହବାକୁ । ଭାତ ଗୁଣ୍ଡା ବଳୁ ବଳୁ ମହନ୍ତ କହିଲା···

ମାମୁଁଙ୍କର ଝିଅ ନା କଣ ତ !

ଅଇଲା ।

ଏହା କହି ହସିଉଠିଲା ଶ୍ରୀମତୀ ।

ତମେ ଭୁଲେଇ ଦଉଚ ଭାଇ । ତା ନାଁ କଣ 'ଅଇଲା'—ତାକୁ ସେମିତି ଡାକନ୍ତି ନା । ଇସ୍କୁଲରେ ତ ତା ନାଁ ଲେଖା ହେଇଚ ଅହଲ୍ୟା ।

କିନ୍ତୁ ପ୍ରକୃତରେ ଏହା ଭିତରକୁ ମଦନର ପ୍ରବେଶ ନ ଥିଲା । ଶୁଦ୍ଧ ଆଉ ଅପଭ୍ରଂଶ କଣ ସେ ଜାଣେନା । ଅଭିଜ୍ଞତାର ସାହାଯ୍ୟରେ ତା'ର ସାଧାରଣ ଜ୍ଞାନ ସେ ପ୍ରୟୋଗ କରିଥିଲା ମାତ୍ର । ସେ ଅନୁଆରେ ପଡ଼ିଲା ବର୍ତ୍ତମାନ । ଲଇଲାର ଅର୍ଥ କିଛି ତାକୁ ପଇଠିଲାନି । ସେ ଜାଣେ ନା ମଧ୍ୟ । ତଥାପି ସାଧାରଣଜ୍ଞାନ ତା'ର ଆଶ୍ରେୟ । ହଠାତ୍ ପ୍ରଶ୍ନକଲା ସେ ଶ୍ରୀମତୀକ ।

ଜାଫର ମାନେ କଣ ଶୀରି ?

ହସି ହସି କହିଲା ଶ୍ରୀମତୀ—ଜଣଙ୍କର ନାଁ ।

ସେମିତି ଜାଫର୍‌ର ଭଉଣୀ ନାଁ ଲଇଲା, ଆଉ କଣ ! ତୁ କେମିତି ଜାଣିଲୁ, ଲଇଲା କଥା ?

ମଲା, ଜାଫର ଭାଇ ତ କହୁଥଲେ, ସିଏ ଖବର ଦେଇଚ ମୋ ପାଖକୁ । ମୋ ପେଇଁ କାଚ ପଠେଇଚ ଜାଫର୍ ଭାଇଙ୍କ ହାତରେ, ଦେଖିବ ?

ଘର ଭିତରକୁ ଯାଇ ସୁନ୍ଦର କାଚ ଆଠପଟ ଆଣି ମଦନକ ଦେଖେଇଲା ଶ୍ରୀମତୀ ।

ତାହା ପରେ କଥାର ସୂତ୍ର ଛିଡ଼ିଗଲା । ମଦନ ସେତେବେଳକୁ ଖାଇ ସାରିଥିଲା । ହାତ ଧୋଇ ସାରି ଗୋଟା ବଡ଼ ନେଇ ସେ ଗଲା ଚୂଲି ପାଖକୁ ଲଗେଇବା ପାଇଁ । ମା-ଝିଅ ବସି ଖାଇଲେ । ମଦନ ବଡ଼ ଟାଣି ଟାଣି ସେଇଠି ବୁଲିଲା । ଘରର ପ୍ରତ୍ୟେକ ସନ୍ଧିରୁ କେତେ ଗୁଡ଼ା ଲୋକ ବାହାରି ତା' ସାଙ୍ଗରେ ସେମିତି ବୁଲିଲେ । ତା' ଭିତରେ ସେ କେତେବେଳେ ଦେଖିଲା ଲଇଲାକୁ, କେତେବେଳେ ତା'ର ନୂଆବୋଉକୁ, କେତେବେଳେ ପାଟ ଭିତରର ସେହି ବରଗଛ ତଳର ବାଳକ-ବାଳିକା ଦୁହିଁଙ୍କୁ ।...

## — ଏକୋଇଶ —

ସକାଳୁ ଉଠି ମୁହଁଟା ଧୋଇପକେଇ ଏକମୁହାଁ ହୋଇ ଯାଇଁ ମଦନ ପହଞ୍ଚିଲା ଭାସ୍କର ନାୟକଙ୍କ ଘରେ । ଦାଣ୍ଡରେ ସେ ଭେଟିଲା ନାହିଁ କାହାକୁ । ଦାଣ୍ଡ ପାହାଚରେ ଉଠି, ଦୋକଡ଼ ଟପି ସେ ଯାଇଁ ପହଞ୍ଚିଲା ଭିତର ପାଖ ବରଣ୍ଡାରେ । ରଜନୀ ବାରଣ୍ଡା ଓଳଉଚି । ରଜନୀକି ବାବୁଙ୍କର କଥା ପଚାରୁ ପଚାରୁ ସେଠି ଆସି ପହଞ୍ଚିଲେ ଭାସ୍କର ବାବୁଙ୍କ ସ୍ତ୍ରୀ । ମୁଣ୍ଡରେ ସିନ୍ଦୂର ନେଶି ହୋଇ ଯାଇଚି ତାଙ୍କର । ବାସି ଗାଲରେ ସେ ପର୍ଯ୍ୟନ୍ତ ପାନ । ଦେହ ହାତରେ ସୁନାର ଆନ୍ଦୋଳନ । ଖଣ୍ଡେ କସ୍ତା ଶାଢ଼ୀ ଦେହରେ । ସଫା ଲୁଗା ବଦଳି ସେ ବାହାରକୁ ବାହାରିଥିଲେ ।

ମଦନ ଅନେକ ଦିନ ପରେ ଏଠିକି ଆସିଚି । ସେତେବେଳେ ସେ ଏଠିକି ଆସୁଥିଲା ନିର୍ଭୟରେ । ତାଙ୍କର ଶଗଡ଼ରେ ବାବୁ ଇଷ୍ଟେସନ ଯିବେ, ବାବୁଙ୍କର ଜିନିଷପତ୍ର ଶଗଡ଼କୁ ନେବା ସକାଶେ । ସେତେବେଳେ ଥିଲା ସେ ଦରିଦ୍ର ଶ୍ରମିକ । ତା' ପଛରେ ଥିଲା ତାର ବାପ । ତା'ର ଭୟ କଣ ! ଖଟିବା—ଖାଇବା ଭିତରେ ଆଉ ଭୟ କାହିଁ ? ରୋଜଗାର ନ କରି ପାରିଲେ ଉପାସ ରହିବାକୁ ହେବ, ସେଥିରେ ବି ସେ ଥିଲା ଅଭ୍ୟସ୍ତ । ଭୟର ସମସ୍ତ ଦ୍ୱାର ତା' ପାଖରେ ସେତେବେଳେ ରୁଦ୍ଧ ଥିଲା ଯେମିତି । ପୁଣି ସେ ଯାଇଁ ଆସିଥିଲା ତାହାର ବାପ ମରିଯିବା ପରେ, ଅଧମର୍ଣ୍ଣ ଭାବରେ । ସେତେବେଳେ ମଧ୍ୟ ତା ଭିତରେ ଭୟ ନ ଥିଲା ଏତେ । ଆଜି କିନ୍ତୁ ତା' ଭିତରେ ଅନେକ ଭୟ — ଯଦିଓ ସାହସ ଅନେକ । ଏହି ଦୁଇଟି ଜିନିଷର ଅଭ୍ୟୁଦୟର ତାରତମ୍ୟ ଯୋଗ ତାହାକୁ ଅନେକ ଆଘାତ ସହ୍ୟ କରିବାକୁ ହୁଏ । କିନ୍ତୁ ବିଶେଷ ଭୟ ପାଇଲା ସେ ବର୍ତ୍ତମାନ । ଆଗରେ ତାର ବାବୁଙ୍କର ସ୍ତ୍ରୀ । ଯେଉଁ ଜାତିର ମଧ୍ୟମ ବିକାଶକୁ ଭେଟିବାର ପୁଂଜି ମଧ୍ୟ ନାହିଁ ତାହାର ବାକ୍ସରେ, ସେ ଆସି ପଡ଼ିଲା ତାହାର ଚରମ ବିକାଶ ପାଖରେ । ହୁଏତ ଏହି ଅଭିଜାତ ନାରୀ, ସମ୍ବନ୍ଧରେ ତା'ର ଭାଉଜ, କିନ୍ତୁ ତାଙ୍କର ଦିଅରଭାବରେ ଗର୍ବ କରିବାର ସାହସ ନାହିଁ ମଦନ ଭିତରେ । ବିଜାତୀୟ ଈର୍ଷାପ୍ରଣୋଦିତ ମନ । ଧନିକତାର ଦାମ୍ଭିକତା । ସେଥିପାଇଁ ଅଶେଷ ଜାତିର ଆଡ଼୍‌ଡ଼ାଖାନା ଏହି ପୃଥିବୀ, ଦୁଇଟି ପ୍ରଧାନ ଜାତିରେ ବିଭକ୍ତ । ଦରିଦ୍ର ଆଉ ଧନୀ । ସେହି ଦରିଦ୍ରତାର ଆବରଣ ଭିତରେ ଯେ କେହି ଘନିଷ୍ଠ ସଂପର୍କର ଲୋକ ଆସିଲେ ମଧ୍ୟ ସେଠି ବିବେଚିତ ହୁଏ ମୁମୂର୍ଷୁ କିମ୍ବା କ୍ରୀଡ଼ନକ ।

ମହନର ହୃଦସ୍ପନ୍ଦନ ମୁମୂର୍ଷତାକୁ ବଳସାଉଥାଏ । ଯେମିତି ସେ ଆସିଥିଲା ଗୋଟା ସାହସରେ ଆଉ ତାହା ହଜିଗଲା ଏହି ଡଳେ । କେବଳ ଡଳକୁ ଚାହିଁ ରହିଲା ମହନ । ଲକ୍ଷ୍ମୀ ପୂଜାର ଝୁଣ୍ଟି ଏ ପର୍ଯ୍ୟନ୍ତ ଡଳର ସିମେଣ୍ଟ ଚଟାଣରେ କେତେକାଂଶରେ ଲାଗିଛି । ମହନ ଚାହିଁ ରହିଥାଏ ସେଇ ଝୁଣ୍ଟିକୁ । ହଠାତ୍ ତାର କାନରେ ଲାଗିଲା କେତେକ ଶବ୍ଦ ।

ତୁ ମହନା ନା ? ଆରେ ଏ ନଡ଼େଇ ହାଓ୍ୱାରେ କଣ ତୋ ଚେହେରା ବାଗେଇଗଲା କି ରେ ?

ମହନ ନୀରବ । ପୁଣି ଶୁଣିଲା ମହନ ··

ଘରଚ ଦାନ କରୁଚୁ ତୁ । ଆଲୋ ରଜନୀ, ତୁ ମହନାକୁ କହୁନୁ ଡତେ ଖଣ୍ଡେ ଲୁଗା ଦବ ତୁ ପିନ୍ଧିବୁ ।···ଆଉ ଗାଁ ଯାକ ଗାଇ ବୁଲିବୁ ତା' ନାଁ···

ଲୁହରେ ଆଖି ଫାଟିବାକୁ ଲାଗିଲା । ତାହା ପରେ ମହନ ଆହୁରି ଶୁଣିଲା—କହି କହି ଚାଲିଯାଉଚନ୍ତି ତା' ରାଜ ସଂସ୍କରଣର ନୂଆବୋଉ ।

କଥାରେ କହନ୍ତି ନେଇ, ପାଣ ଘରେ ଧାନ ମାଠିଆ ହେଲେ ଗେଲ ମାଠିଆ···

ଦୂରରୁ ଶୁଣାଗଲା ଭାସ୍କର ବାବୁଙ୍କର ସ୍ୱର । ହାତରେ ତାଙ୍କର ବୁଲିସିବାର ବାଡ଼ି ଦେହରେ ଗୋଲାପୀ ରଙ୍ଗର ଖଣ୍ଡେ ସାଲ୍ ! ସେ ଗଳା ସଫା କରି କରି ସେଠାରେ ଆସି ପହଞ୍ଚିଲେ । ସେତେବେଳକୁ ଫେରି ଯିବାକୁ ମନସ୍ଥ କରିଛି ମହନ । ଦୂରରୁ ଦେଖି ପାଟି କରି ଉଠିଲେ ଭାସ୍କର ବାବୁ—ଆରେ ମହନ କେତେବେଳେ ? କୁଆଡ଼େ ଯାଇଥେଲୁ କାଲି । ମୁଁ ତିନିଥର କାଲି ଡକେଇଚି ।

କୌଣସି ଉତ୍ତର ଦେଇ ପାରିଲାନି ମହନ । ଉତ୍ତରର ଅପେକ୍ଷା ନ ରଖି ଭାସ୍କରବାବୁ ପୁଣି କହିବାକୁ ଲାଗିଲେ ।

ଆରେ ତୋର ସେ ଟଙ୍କା କେଇଟା ମୋ ଉପରେ ରହିଗଲା··ହଁ, ହଁ ମୁଁ କଣ ଠିକ୍ କରିଛି କି···ତୁ ତ ପୁଣି ପଇସାପଇ କମେଇଲୁଣି···ଗାଁରେ ରହିଲା ପିଣି ରହିଲେ ହବ ନା···ଖାଲି ବାଡ଼ି ଗୁବରେ ଗୁବେ ଘରବାଡ଼ି···ସେଥିରେ କଣ କିଏ ମଣିଷ ବୋଲି ଗଣିବ ତୋତେ ? ··ହଁ, ସେଇଥିପେଇଁ ଆମେ କିଛି ଜମିବାଡ଼ି ବନ୍ଦୋବସ୍ତ କରିଦବା । ଆଉ ତୋର ସେ ଜମି କେଇ ଗୁଣ୍ଠ ତୁ ନେଇ ନେ । ଆଉ ଶହେଟା ଟଙ୍କା ମତେ ଦେଇ ଥିବ୍ ତ······

ସେହି ମାନ୍ଧାତା ଅମଳର ଯମ ଆଉ ନାହିଁ । ଏକ ଦେହରେ ତାର ବର୍ତ୍ତମାନ ଅଶେଷ ରୂପ । ମୃତ୍ୟୁ ଆସେ ସେଥିପାଇଁ ବିଭିନ୍ନ ରୂପରେ । ପୁରାଣର ସେହି ଇଚ୍ଛାମୃତ୍ୟୁ ଏବେ ଆଉ ନାହିଁ । ମଣିଷ ମରେ ଅନିଚ୍ଛା ସତ୍ତ୍ୱେ । ସେ ବାଧ୍ୟ ହୁଏ । ଜୀବନ ଅପେକ୍ଷା ମରଣ ହେଇ ଉଠେ ତା'ପାଖରେ ଶ୍ରେୟ ।

ଏ ଯେଉଁ ମାୟା ଏବଂ ବିଭୀଷିକା ତା'ର ସମ୍ମୁଖରେ ଦେଖିଲା ମହନ, ସେଥିରେ ସେ କେବଳ ଅନ୍ତରେ ଅନ୍ତରେ ସ୍ତମ୍ଭିତ ହେବାକୁ ଲାଗିଲା । ଅନେକ ଆଗରୁ ସେ ହୁଏତ କିଛି କହିପାରିଥାନ୍ତା, କିନ୍ତୁ ଏହା ଭିତରେ ପୁଞ୍ଜିଭୂତ ତା'ର ପକେଟମାର

ହୋଇ ଯାଇଚ । ସେ ବୋଧହୁଏ ତା'ର ମେଣ୍ଟାଲ ହ୍ୟାଣ୍ଡ୍‌ବ୍ୟାଗ୍ କମ୍ବା ମାନସ-କୋଷକୁ ଅଣ୍ଡାଳିଲା । ଭିତରେ ଭିତରେ ଜଡ଼ତା ନିଭେଇ କହିଲା ମହନ—

ଜମି ଆଉ କଣ ହବ ଆମର...ମୋର ତ ଜାତକରେ ଅଚ୍ଛି ମୁଁ ବାବାଜୀ ହୋଇଯିବ...ମୋର ମନ ବି ତ ଜମା ଘରେ ଲାଗୁ ନେଇ...ଆଉ ଯା' ଘରବାଡ଼ି ଅଚ୍ଛି ବି ତାକୁ ଆପଣ ନଉନ୍ତୁ......

ଆଉ ତୋର ଭଉଣୀଟା ?

କଥାଟା ଖୁବ୍ ଭିଟାଲ୍ । ଘାଣ୍ଟି ହୋଇଗଲା ସେଥିରେ ମହନର ଧୈର୍ଯ୍ୟ । ଅନୁଭବ ତାହାର ଶେଷ ନ ହେଉଣୁ ସେ ପୁଣି ପାଇଲା ପ୍ରହାର...

କଣ ବରଦା ମଠରେ ଗୁଡ଼ିବୁ...

ମହନର ପାଟିରୁ ଯେମିତି ଆପେ ଆପେ ବାହାରି ପଡ଼ିଲା—

ଖୁବ୍ ଖୁସି ହୁଅନ୍ତ ତମେ ଏକା ।

ଯେମିତି ବାରୁଦ ଗଦାରେ ନିଆଁ ଲଗେଇଦେଲା ମହନ । ଗର୍ଜି ଉଠିଲେ ଭାସ୍କର ବାବୁ । କଣ୍ଠଟା ବି ସ୍ୱାଭାବିକ ତାଙ୍କର ଗମ୍ଭୀର ।

ହୁଃ, ଶଳା ଘରେ ଆଣି ପଠାଣ ପୂରେଇବେ । କଥା ପଚାରିଲେ ଦେବେ ବାଁ କାଲିଆ । ଶଳା ମୁଣ୍ଡ ଟେକିହଉନେଇ ପଦାରେ । ହଇରେ କୋଉ ବୋପା ସାହସରେ ତୁ କହୁଚୁ । ପଚାରିଲେ ବୋପା ନାଁ ଆସିବ ନେଇଁ...ଶଳା ଗାଡ଼ି ବୋଝ ବୋଝ ଗଣ୍ଡି ଛୁଣ୍ଡି ଯାଇଥିଲା...ଆଜି ଜବାବ ଦଉଚୁ ମତେ । ଶଳା ମୋର କୋରଖି ବନ୍ଦ କରିଚ । ସେ ଶଳା ସିଂଗ ଟୋକା । ଶଳା ଖାଇବାକୁ ପାଉ ନ ଥିଲା । ଏଠୁ ଟଙ୍କା ନେଇ ଗଲା । ଆସି ପୁଣି ଟଙ୍କା ଫେରେଇ ଦେଇ ଯାଇଚ ମତେ । ତମର ସବୁଦିନେ । ମୋର ଏକାଦିନେ । ବଜ୍‌ଜାତି ଛଡ଼େଇ ଦେବି । ଶଳା ରକ୍ତ ଚଢ଼ି ଯାଇଚ ମୁଣ୍ଡରେ ...ଆରେ...ଆରେ...ଆରେ...

ସେତେବେଳକୁ ମହନର ମୁହଁଟା ଯାକ ହୋଇଗଲାଣି ଲାଲ୍ । ଦେହର ଜାଉଁଆଳଟା ଟେକି ଅଣ୍ଟାରୁ କେତେ ଗୁଡ଼ା ନୋଟ୍ ବାହାର କଲା ମହନ । ସେ ମନେ କଲା, ସେ ଫୋପାଡ଼ି ଦେଇ ଯିବ ଏଇ କୁକ୍‌କୁରକୁ ଏଇ ହାଡ଼ । ତାହାପରେ କଣ ଭାବି ନିରସ୍ତ ହେଲା ସେଥିରୁ । ହାତରେ ନୋଟ୍ ବଡ଼ାକୁ ଧରି ଧରି ସେ ନିର୍ଭୀକ ଭାବରେ କହିଲା...

ପଚ୍ଚିଶଟା ଟଙ୍କା ତମେ ଦିଅ ନା ହେଣ୍ଡ୍‌ନୋଟ୍ ନ ଦେଲେ । କୋଡ଼ିଏ ଟଙ୍କାର ହେଣ୍ଡ୍‌ନୋଟ୍ ନେଲେ ତମେ ଦଶଟା ଟଙ୍କା ଦିଅ । ପଚାଶ ଟଙ୍କା ମୁଁ ତମକୁ ସେମିତି ଦେଇ ଦେଇଚି । ଆଉରି ଶହେ ଟଙ୍କା ଆଣି ଥିଲି ମୁଁ ତମକୁ ଦବାକୁ...ସେ କଥା ମୁଁ ଏଠି ଗୋଡ଼ ଦଉଁ ଦଉଁ ଭୁଲିଚି । ଏଇ ଟଙ୍କାକୁ ମୁଁ ଏଇଖିଣି ରାସ୍ତାରେ ଫୋପାଡ଼ି ଦେଇ ଗଲେ ବି ସୁଖ ନାଗିବ । ଏକା ତମକୁ କଡ଼ା କ୍ରାନ୍ତି ଆଉ ଦେବି ନେଇଁ । ତିନି ଟଙ୍କାର ଗାଡ଼ି ଭଡ଼ାକୁ ତମଠଉଁ ଆମେ ଦେଢ଼ ଟଙ୍କା ବି ନେଇଚୁ । ସେ କଥା ବି ମୋର ମନେ ଅଚ୍ଛି...

ଗୋଡରେ ରଣପା ଲାଗିଲା ଯେମିତି । ସ୍ଥାନକୁ ବିଭାଗ କରି ମହନା ବି' କ୍ଷେପାରେ ହେଲା ସେଠୁ ନିଷ୍କ୍ରାନ୍ତ । ଜାଲକା ପରି ଅନେଇ ରହିଲେ ଭାସ୍କର ନାୟକ । ଅନେକ ପଛରେ ତାଙ୍କ ଭିତରେ ହୋସ୍ ପଶିଲା । ହାତର ବାଡ଼ି ଖଣ୍ଡକର ଅସ୍ତିତ୍ୱ ଅନୁଭବ କଲେ । ଆରେ, ବାଡ଼ି ଖଣ୍ଡକୁ ଫୋପାଡ଼ି ଦେଇଥିଲେ ଠିକ ହୋଇଥାନ୍ତା ମହନାର ଗୋଡ଼କୁ । ସେ ଶିକ୍ଷିତ ଆଉ ବିକୃତ । ଉଭୟର ସୀମା ଭିତରେ ସେ ବିଚରଣ କରିବାକୁ ଲାଗିଲେ । କିଛି ସମୟ ପରେ ତାଙ୍କର ସ୍ତ୍ରୀ ପହଁଚିଲାରୁ ସେ ଗର୍ଜି ଉଠିଲେ —

ଦେଖିଲ ଏ ଗଣ୍ଡିପୁଅ ଅନ୍ଧାକୁ । ମତେ ତ ମାରେ କି ନ ମାରେ । ଶଳା-ଙ୍କର ପିତ ଚଢ଼ିଗଲାଣି । କଣ କହୁଚ ତମେ, ଯିଏ୍ଙ୍କୁ ଜବତ ନ କଲେ ହବ ! ଛୁଆ ଖଣ୍ଡକୁ ତ ଆଉ ଗାଁରେ ରଖେଇ ଦେବେ ନେଇଁ ଏ ଯେମିତି ହେଲେଣି । ସେମିତି ସେ ଶଳା ଗୋଲାମ ଟୋକା, ମୋଟ ମୁଣ୍ଡେଇ ମୁଣ୍ଡେଇ ବାପ ମୁଣ୍ଡରେ ଡାମ୍ପଣ ଗଲୁ ନ ଥେଲ—କଣ ଖଣ୍ଡେ ଚଟକଲରେ ଚାକିରି ପାଇ ଆସି ଥରକୁ ଥର କମ୍ପେଇ ଦେଇ ଯାଉଚ—ଆମେ ଗାଁରେ ବଡ ଅଂଶ—ଭାସ୍କର ନା'କ କଏ । ଶଳା, ଗୋଲାମ, ଟେଟା···

ଝାଟେଇବାର ଫୁଲଝାଡ଼ୁ ଖସି ପଡ଼ିଲା ରଜମାର ହାତରୁ । ସେ ଭଲ କରି ବୁଝିଲା, ଏ ତାଙ୍କର ଗୋଷ୍ଠୀକି ଗାଳି । ଏତିକିବେଳେ ବାବୁଙ୍କୁ ଆଖି ଠାରିଦେଲେ ତାଙ୍କର ସ୍ତ୍ରୀ । ବାବୁ କହି କହି ଦାଣ୍ଡକୁ ବାହାରିଗଲେ—ଦିମାକ ବଢ଼ି ଯାଇଚ—ମହନାର, ଆଚ୍ଛା···

ଦାଣ୍ଡ ପିଣ୍ଡାରେ ପହଁଚି ସେ ଡାକ ଦେଲେ ବଡ ପାଟିରେ--ବୃନ୍ଦାବନ, ବୃନ୍ଦାବନ—ହୋ ବୁରୁନ୍ଦୁ ଗୋସେଇଁ ?

ବୃନ୍ଦାବନ ସେତେବେଳକୁ ଉଠି ସାରିଥାଏ । ଘର ଭିତରେ ବାବୁଙ୍କର ଗର୍ଜନ ଶୁଣି ସେ କେବଳ କାକୁସ୍ଥ ହୋଇ ବସିଥାଏ । ବିଚରା ଏକ ଦୁର୍ଭାଗା ; ଆନନ୍ଦ ମଠର ଗୋସେଇଁ ସାହିରେ ଘର । ଜାତିରେ ବୈଷ୍ଣବ । ଯେଉଁ ବୈଷ୍ଣବ ବଂଶ ଭାସ୍କର ନାୟକ ଏବଂ ଏହି ନାୟକ ଗୋଷ୍ଠୀର ଗୁରୁ, ସେ ଜଣେ ତାହାରି ସନ୍ତାନ । ବର୍ତ୍ତମାନ ସେ ଭାସ୍କର ନାୟକଙ୍କର ଶରଣାପନ୍ନ । ଭାଇ ଭାଇ ଭିତରେ ବାରି ବିଗୁଣ୍ଠ ସକାଶେ ବାଡ଼ଆପିଟା ହୋଇ ଶେଷରେ ମକଦ୍ଦମା କଲେ । ବୃନ୍ଦାବନ ଲୋଡ଼ିଲା ଭାସ୍କର ବାବୁଙ୍କର ସାହାଯ୍ୟ - ଅପର ହରେକୃଷ୍ଣ ନିଜେ ମାମଲତକାର । ଅନେକ କାଳୁ ମକଦ୍ଦମା ସରିଲାଣି । ବୃନ୍ଦାବନ ଡିଗ୍ରି ପାଇଥିଲେ ବି ଦିନୁ ଦିନୁ ତାର ଅଧୋଗତି ହେଉଚ ସେଇ ମକଦ୍ଦମାଠଉଁ । ମକଦ୍ଦମା ଲାଗି ଯାହା ଖର୍ଚ୍ଚ ହୋଇଚ, ବେଶି ବା କମି, ସେଥିପାଇଁ ସେ ଗୋଟିଏ ନିର୍ଦ୍ଦିଷ୍ଟ ଅଙ୍କର ହ୍ୟାଣ୍ଡନୋଟ ଲେଖି ଦେଇଚ ଭାସ୍କର ବାବୁଙ୍କୁ । କିନ୍ତୁ ସେହି ଦିନୁ ସେ ଆଉ ଏକ ଅଡୁଆରେ ପଡ଼ିଚ । ଭାସ୍କର ନାୟକଙ୍କର ପୁଅ ପଡେ କଟକରେ । ଛାତ୍ରାବାସରେ ଏହି ଯୁଦ୍ଧ କାଳରେ ଖାଦ୍ୟ ପେପ୍ସ ଭଲ ନ ହେଉଥିବାରୁ ସେ ଏ ପର୍ଯ୍ୟନ୍ତ ତାହାରି ପୂଜାରୀ ହୋଇ ରହିଚ । ବିଚରା ଡନଲପ୍ କମ୍ପାନୀରେ କାମ କରି ବେଶ ଚଳୁଥିଲା, ବିବାହ ହେବା ପାଇଁ ବି ଦି' ପଇସା ସଞ୍ଚୟ

କରୁଥିଲ ସେ । ସବୁ ବର୍ତ୍ତମାନ ଉଭାନ୍ । ବୟସ ଏଣେ ବଢ଼ିବାରେ ଲାଗିଚି—ଯେମିତି ତା' ହାଣ୍ଡିନୋଟର ସୁଧ ।...ବାବୁଙ୍କ ପୁଅର ହୋଟେଲ ଖାଇବାରସୁବିଧା କରିଦେଇ କାଲି ଦିନ ଗାଡ଼ିରେ ସେ ଆସି ପହଁଚିଛୁ, ଡାଲି, ଗୁଡ଼ଲ, ଘିଅ ଆଉ କିଛି ଟଙ୍କା ନେବା ସକାଶେ। ସେଥିଲାଗି ହୁଏତ ବାହାରୁ ଅର୍ଥ ସଂଗ୍ରହ କରିବାକୁ ମନେ କରିଥିଲେ ଭାସ୍କରବାବୁ ।

ବାବୁଙ୍କର ଡାକ ଶୁଣି ଯୂପ କାଠର ବଳି ପରି ପାଖରେ ପହଞ୍ଚିଲା ଆସି ବୃନ୍ଦାବନ ।

ଗଲ, ଜନାର୍ଦ୍ଦନ ନାଏକଙ୍କୁ ଡାକି ଆଣିବ ।

## —ବାଇଶ—

ଭାସ୍କରବାବୁଙ୍କ ଦାଣ୍ଡରାସ୍ତା ଟପି ଗାଁର ସଦର ରାସ୍ତା ଉପରକୁ ଆସି ଯାଇ-ଥିଲା ମହନା । ପାଦର ଗତି ମନ୍ଥୀଭୂତ ହୋଇ ଆସୁଥିଲା କ୍ରମେ । ଯେମିତି ସେ ଆଜି ହେଇ ଯିବାକୁ ଗୃହେଁ ସମସ୍ତଙ୍କର, ଏହି ଭାସ୍କରବାବୁଙ୍କ ଛଡ଼ା । ସେଥିପାଇଁ ସେ ମନ୍ଥର ଗତିରେ ଚାଲି ଭେଟିବାକୁ ଭାବୁଥିଲା ଅନେକଙ୍କୁ । ଏତିକିବେଳେ ପଛରୁ ପରିଚିତ ସ୍ୱର ଶୁଣି ସେ ବୁଲିପଡ଼ି ଛିଡ଼ା ହେଲା ରାସ୍ତା ଉପରେ । ଦୂରରେ ଜନାର୍ଦ୍ଦନ ନାୟକ ।

ଦିନେ ବହୁବର୍ଣ୍ଣର ବେଶ ଥିଲା ଏହି ଜନାର୍ଦ୍ଦନ ନାୟକଙ୍କର । ଭାସ୍କର ନାୟକଙ୍କ କୋଠାର ପଛପାଖରେ ତାଙ୍କର ଘର । କିନ୍ତୁ ରାସ୍ତାର ଅସୁବିଧା ହେତୁ ସେ ଆସି ସଦର ରାସ୍ତା ଧରିଲେ ପୁଣି ବାବୁ ଘର ରାସ୍ତା ଧରନ୍ତି । ସେଥିଲାଗି ସେ ବାବୁଘର ନିକଟରେ ଥାଇ ମଧ୍ୟ ଥାନ୍ତି ଦୂରରେ ।

କୌଣସି କାଳେ କୌଣସି ଷ୍ଟେଟ୍‌ରେ ସେ କରୁଥିଲେ ପୁଲିସ ଚାକିରି । ପ୍ରବାଦ ଅଛି, ଥରେ ସେହି ଷ୍ଟେଟରେ—ତାଙ୍କର ଜଣେ ଜ୍ଞାତି ସ୍ୱପ୍ନେଶ୍ୱର ନାୟକ ଅନ୍ୟ କୌଣସି ବିଭାଗରେ ଚାକିରି କରୁଥିଲେ, ନିଜର ପ୍ରତାପ ଜାହିର କରିବାକୁ ସେହି ସ୍ୱପ୍ନେଶ୍ୱର ନାୟକଙ୍କୁ ଗିରଫ କରି ଦିନ ତମାମ ଥାନାରେ ବସେଇ ରଖିଥିଲେ ଜନାର୍ଦ୍ଦନ । ଅନେକ ଦିନ ତଳର କଥା । ଅନେକ ମଧ୍ୟ ସେ କଥାକୁ ଭୁଲିଗଲେଣି ପ୍ରାୟ । ତାହା ପରେ ନିଜର ଅନ୍ୟ କୌଣସି ଅପରାଧ ଯୋଗୁଁ ଜନାର୍ଦ୍ଦନ ଆଉ ସେହି ଷ୍ଟେଟରେ ବେଶି ଦିନ ଜଣେ ଅଧସ୍ତନ ଶାସକ ହେଇ ରହି ପାରିଲେନି । ଫେରି ଆସିଲେ ସ୍ୱଗ୍ରାମକୁ । ଗ୍ରାମରେ ରହିବାର ଅନେକ ଦିନ ପରେ ସେ ଜଘନ୍ୟ ବସନ୍ତ ରୋଗରେ ଆକ୍ରାନ୍ତ ହେଲେ । ଗୋଡର ଭଣ୍ଡାରେ ବର୍ତ୍ତମାନ ମଧ୍ୟ ତାହାର କେତେକ ଚିହ୍ନ ଦେଖି-ବାକୁ ମିଳେ । ତାହାକୁ ବାତ ଫୁଟର ପ୍ରଭାବ ବୋଲି କହନ୍ତି ଜନାର୍ଦ୍ଦନ ।

ବୟସ ବର୍ତ୍ତମାନ ହେବ ଷାଠିଏରୁ ଅଧିକ । ପ୍ରୌଢ଼ାବସ୍ଥାରେ ସେ ଯଥେଷ୍ଟ ଶକ୍ତିଶାଳୀ ଥିଲେ । ଥିଲେ ଦୁର୍ଦ୍ଦାନ୍ତ ସାହା । ଅଶ୍ୱାରୋହଣ ତାଙ୍କର ପ୍ରବଳ ବିଳାସ ଥିଲା । ଅନେକ ଦିନ ପର୍ଯ୍ୟନ୍ତ ତାଙ୍କର ଥିଲା ମଧ୍ୟ ଗୋଟିଏ ଘୋଡ଼ା । ଏକ ପୌଷ ପ୍ରଭାତରେ ପଡି ଅନ୍ୱେଷଣ କରି ନିରୁଦ୍ଦିଷ୍ଟ ହେଲା ଘୋଟକଟି । ଘୋଡ଼ାର ଜିନ୍ ଏ ପର୍ଯ୍ୟନ୍ତ ଅଛି ତାଙ୍କ ଘରେ । ଘୋଡ଼ାବିନା ବର୍ତ୍ତମାନ ତା'ର ଜିନ୍ ସାଇତିବାରେ ସେ ପାଆନ୍ତି ଅସୀମ ଆନନ୍ଦ । ସେ ଘୋଡ଼ା ଚଢୁଥିଲେ ଦିନେ ।

ଅଶ୍ୱାରୋହଣପଟୁତା ଯୋଗୁଁ ମଧ୍ୟ ସେ ପ୍ରିୟ ଥିଲେ ରସୁଲପୁରର ଦଣ୍ଡଧରୀଙ୍କର । ଶେଷକୁ ତାଙ୍କର ଏହି ପଟୁତାକୁ ମଧ୍ୟ ସେ ପ୍ରାପ୍ୟ ବ୍ୟବସାୟରେ ପକେଇ ଥିଲେ । ବିଶିଷ୍ଟ ବନ୍ଧୁ ବାନ୍ଧବ ଘରି ବୁଲି, ଯେଉଁମାନେ ନୂଆ ଘୋଡ଼ା କ୍ରୟ କରିଥାନ୍ତି, ତାହାକୁ ଶୃଙ୍ଖଳିତ ସଓ୍ୟାର କରନ୍ତି ଜନାର୍ଦ୍ଦନ । ଏଥିପାଇଁ ସେ ଆମନ୍ତ୍ରଣ ମଧ୍ୟ ପାଆନ୍ତି । କିନ୍ତୁ କପର୍ଦ୍ଦକ ଗ୍ରହଣ କରନ୍ତି ନାହିଁ ପାରିଶ୍ରମିକ ଭାବରେ । କେବଳ ସେହି ଅବସ୍ଥାନ ଭିତରେ ଉତ୍କୃଷ୍ଟ ଭୋଜନ ତାଙ୍କର ଆବଶ୍ୟକ । ବନ୍ଧୁ ଗ୍ରାମରେ ଘୋଡ଼ା ଧଉଡ଼ାଇ ଧଉଡ଼ାଇ ସେ ସେଠାକାର ବାଳକ ବାଳିକାମାନଙ୍କ ପାଖରେ ଜନାର୍ଦ୍ଦନ ଘୋଡ଼ା ବୋଲି ପରିଚିତ । କିନ୍ତୁ ତାହା ଆଜିକି ଅନେକ ଦିନର କଥା । ସେହି ବାଳକ ବାଳିକା-ମାନେ ଏବେ ଆଉ ବାଳକ ବାଳିକା ନାହାନ୍ତି କି ତାଙ୍କର ନାଁ ସେହିପରି ସବୁଜ ନାହିଁ ବର୍ତ୍ତମାନ । ହୁଏତ ସେ ଦିନର ସେହି ବାଳିକା ଆଜି କେଉଁଠାରେ ଜନନୀ ରୂପରେ ବର୍ଗୀ ନାମର ପରିବର୍ତ୍ତେ ଜନାର୍ଦ୍ଦନ ଘୋଡ଼ାଙ୍କୁ ବ୍ୟବହାର କରନ୍ତି ସନ୍ତାନର ଭୀତି ଉତ୍ପାଦନ କରିବାକୁ । ତାହା ମଧ୍ୟ କ୍ୱଚିତ୍ ।

ଅନେକ ସମ୍ପତ୍ତି ଥିଲା ତାଙ୍କର । ଝିଅ ଦୁଇଟିକି ବିବାହ ଦେଇ ଅନେକ ଶେଷ ହୋଇଯାଇଛି ସେଥିରୁ ।

କିଏ କରେ, ସକାଳୁଟାରୁ ମହୁଫେଣାକୁ ଟେକା ମାଇଲା କିଏ ?···ପାଖରେ ପହଁଚି କହିଲେ ଜନାର୍ଦ୍ଦନ ।

ଆଖିର ସଜଳତା ସେ ପର୍ଯ୍ୟନ୍ତ ଲିଭି ନାହିଁ, ସେହି ଆଖିରେ ମଦନ ଗୁହାଁଇଲା ଜନାର୍ଦ୍ଦନଙ୍କୁ । ହିସାବରେ ତାହାର ଦାଦା ହେବେ ଜନାର୍ଦ୍ଦନ । କିଛି ସମୟ ତାହାଙ୍କୁ ଗୁହାଁ କହିଲା ମଦନ—ଏ ଗାଁରେ ଆଉ ରହି ହେବ ନାହିଁ ଦାଦା । ଖାଲି ମକରୀ ଭଣ୍ଡାରୀ, ସଉରୀ ପୁଷ୍ଟୀ ଆଉ ରଘୁଆ ଗଉଡ଼ ଏ ଗାଁରୁ ଘର ଛାଡ଼ ଯାଇ ନାହାନ୍ତି । ମତେ ବି ଦିନେ ଏଠୁ ପଳେଇ ଯିବାକୁ ପଡ଼ିବ ।

ହସି ହସି କହିଲେ ଜନାର୍ଦ୍ଦନ, "ମଲା, ବଇଁଶୀ ନା'କ କଥା ଛାଡ଼ ଦେଲୁ ଯେ ।" ତାହା ପରେ ସହାନୁଭୂତିଶୀଳ ଭାବରେ ସହଜ ସ୍ୱରରେ କହିଲେ—

କାହିଁକି ତୋ ସାଙ୍ଗରେ ପାଟି ହଉଥିଲା ଭାସ୍କର ?

କଣ ଆଉ କହିବ ଦାଦା, ଏ ଯୁଗ ତ ଏଇଆ ହୋଇଚ । ଖାଇବାକୁ ନ ପାଇ ମରି ଯାଇଥିଲେ ଏ ଖୁସି ହୋଇଥାନ୍ତେ । ମୁଁ ବଞ୍ଚିଲି ବୋଲି ଏଇଖିଣି ହୋଇଚି ଦୋଷୀ । ଆଙ୍କୁ ଦଣ୍ଡ ଦେବ ସେଥିପାଇଁ···

ପୁଣି ଥରେ ହସିଉଠିଲେ ଜନାର୍ଦ୍ଦନ ।

ଆରେ ପାଠ ଶାଠ ତ ପଢ଼ିଲୁ ନେଇଁ । ଜାଣିବୁ ଆଉ କେମିତି । ଇନ୍‌କମ୍ ଟିକସ ଆଉ କେତେବେଳେ ବସେ ? କଣ ଭିକ ମାଗୁଥିଲା ବେଳେ ?

ମଦନ ଏ କଥା ଭିତରକୁ ପଶିପାରିଲା ନାହିଁ ଯେମିତି । ଆଉ ଯେମିତି ମନେକଲା, ଏ ଦୋନାବଢ଼ିଆ କଥାରେ ତାର ଫାଇଦା ନାହିଁ କିଛି । ସେ ଗୁଲିବାର ଭାବ ପ୍ରକାଶ କଲା । ହସି ଉଠିଲେ ପୁଣି ଜନାର୍ଦ୍ଦନ ।

ହୁଁ-ହୁଁ-ହୁଁ, କଥାଟା ବୁଝି ପାରିଲୁ ନେଇ ନା ! ଜାଣିଲୁ, ତମେ ଛତର ହୋଇ କି ନିକମା ହୋଇ ବୁଲୁଥିଲେ କେହି ପଗ୍ଭରିବେନି ତମକୁ, ଥଟା ତ କରିବାର କଥା କରିବେ ସମସ୍ତେ, ଯେମିତି ଦି ପଇସା କମେଇ ତମେ ଟିକେ ତେଲ ମାରିବ ମୁଣ୍ଡରେ, ସେଇଠୁ ପଡ଼ିବ ତମ ଉପରେ ସମସ୍ତଙ୍କର ଆଖି । ଆଉର ହାବୁଡ଼ରେ ପଡ଼ିବୁ । ହିସାବଖାତା ମଗାହବ । ଖାତା ଥାଉ ତ ନ ଥାଉ ।

ଜିଜ୍ଞାସୁ ଦୃଷ୍ଟିରେ ଗ୍ଭହିଁଲା ମଦନ । ପୁଣି ଥରେ ହସି ଉଠିଲେ ଜନାର୍ଦ୍ଦନ ।

ଆରେ, ତୁ ଡରୁଚୁନା କଣ ? ତୋର ବୟସରେ ମୁଁ ଖାଲି ଘୋଡ଼ାରେ ଚଢ଼ି ଦୌଡ଼ୁଥିଲି । ପାଠ କଣମ, ମାରି ନାତ ସେ ପାଠରେ । କି ପାଠ ମୁଁ ପଢ଼ିଥିଲି ଆରେ ? ରାଇଟର୍‌ରୁ ହେଲି ଦାରୁଗା—ଇନସ୍‌ପେକ୍ଟର । ଅସଲ ବୁଦ୍ଧି । ଆଉ ତୁ ତ ପାଶ କରି ସାଇଲୁଣି ସବୁଥିରୁ । ପାଠ ଆଉ ବୁଦ୍ଧି ଯୋଉଥିପେଇଁ ଦରକାର ତାକୁ ତୁ ପାଇଚୁ । ଆଉ ଡରୁଚୁ ତୁ କାହିଁକି ?

ନୂଆ ନିଃଶ୍ୱାସ ନେଲା ମଦନ । ଯେମିତି ଜଣେ ହରିଜନ ଗ୍ଭକରର ହାତରେ ଅସ୍ପୃଶ୍ୟ ଜାତିର ଇତିହାସ, ସେମିତି ଏ ମଦନର ମନ ଭିତରେ ଲୁଚି ରହିଚି କିଛି କିନିଷ । ସେଥିଯୋଗୁ ସେ ଯେମିତି କେତେବେଳେ ନିଜକୁ ଶ୍ରେଷ୍ଠ ଭାବିଚି ଖୁବ୍, ଆଉ ବଡ଼ ନ ଭାବିଲେ ବି, ଶ୍ରେଷ୍ଠ ଭାବି ନାଇଁ ସେମିତି । ସେଥିପାଇଁ ଯେମିତି ଏହି ମଦନ-ମାନଙ୍କ ପକାଶେ ସେମାନଙ୍କର ସମସ୍ତ ଇତିହାସ ପୋଡ଼ା ହେବା ଦରକାର । ନଚେତ୍ ସେମାନଙ୍କୁ ସେମାନଙ୍କର ଧୂସର ଇତିହାସର ମର୍ମାନୁସନ୍ଧାନ କରାଇ ତାହାର ପ୍ରତିକ୍ରିୟା ଶିକ୍ଷା ଦେବା ଦରକାର । ନ ହେଲେ ଏହି ମଦନମାନେ ଉଠିବେ ପୁଣି କେମିତି,—କଣ ଚରଦନ ଏହି କୁକୁରମାନଙ୍କୁ ସେମାନଙ୍କର ଅସ୍ଥିର ଆସ୍ୱାଦନ ଯୋଗେଇ ।

ପୁଣି କହିଲେ ଜନାର୍ଦ୍ଦନ—କିରେ ଡରୁଚୁ ?

ଅସ୍ୱାଭାବିକ ଭାବରେ ହସିଉଠିଲା ମଦନ ।

ମୁଁ ଡରୁଚି ? ମୁଁ ଖାଲି ଭାବୁଚି, ମୁଁ ରାଗିଲେ କଣ କ୍ଷେତ୍ର ନ କରି ପାରିବ ଭାସ୍କର ନା'କରି···ରାଗ ବ୍ରହ୍ମ ଚଣ୍ଡାଳ···

ହା ହା-ହା ହା—

କେବଳ ହସି ଉଠିଲେ ଜନାର୍ଦ୍ଦନ । ତାହା ପରେ କହିବାକୁ ଲାଗିଲେ ସେ ନିଃଶଙ୍କ ଭାବରେ ।

ଆଜ ଏଇଟା ନୂଆ କଥା ମଦନ, ଖୁବ୍ ନୂଆ କଥା । ହେଇ ଭାସ୍କରର କୋଠା ଦିଶୁଚି—ଆଉ ଆମେ ଏଠି ବଡ଼ ରାସ୍ତାରେ ଠିଆ ହେଇ ତା ବିରୁଦ୍ଧରେ କଥାବାର୍ତ୍ତା ହଉଚେ । ଆଉ ତୁ ଏଇ ସଡ଼କ ଉପରେ କହୁଚୁ, ତୁ କରିପାରିବୁ ତାର ଖୁବ୍ କ୍ଷେତି । ନୂଆ କଥା ଏଇଟା ମଦନ । ଚାଲ୍ ଚାଲ୍, ଘରକୁ ଯିବୁନା ତୁ—ହଁ ତୋ ଘରକୁ ଥରେ ଯିବି ବୋଲି ଅନେକ ଥର ଭାବିଲିଣି । କେତେ କଥା ଶୁଣିଲିଣି କେତେ ଲୋକଙ୍କ ଠଉଁ······

କିଛି ଦୂର ଚାଲି ହଠାତ୍ ଠିଆ ହେଇପଡ଼ିଲେ ଜନାର୍ଦ୍ଦନ । ନିରିଖି କରି ଚାହିଁଲେ ମଦନକୁ । କହିଲେ—

ତୁ ମତେ କେବେହେଲେ ଭଲ ଭାବୁ ନ ଥିବୁ ମଦନ । ମୋ ନାଁରେ ତ ନାନା କଥା ଏ ଗାଁରେ କହନ୍ତି । ମୁଁ କିନ୍ତୁ କା'କୁ କିଛି କହେନା । ଅନେକ ମତେ କହନ୍ତି କୋଷ୍ଟି ରୋଗୀ । ଅନେକ ମତେ କୁହନ୍ତି ପାପୀ । ଆଉ ଅନେକ ଦିନ ହେଲା ଚାକିରି ଛାଡ଼ି ବସିଲି ବୋଲି କେତେ କଥା ବି ମତେ କୁହନ୍ତି ।

କେବଳ ବଲ ବଲ କରି ମଦନ ଚାହିଁଲା ଜନାର୍ଦ୍ଦନଙ୍କୁ । କାହିଁକି ଏ କଥା କହୁଚନ୍ତି ଦନେଇ ଦାଦା । ଏତେ କଥାର ଦରକାର କଣ । ମୁଁ ତାଙ୍କୁ ଭଲ ନ ଭାବିଲେ ବି ତାଙ୍କର କଣ କ୍ଷେତି !

ଚାଲୁ ଚାଲୁ ପୁଣି କହିଲେ ଜନାର୍ଦ୍ଦନ—ସତ କଥା ତତେ ଆଜ ମୁଁ କହୁଚି ମଦନ, ପର ଉପରେ ଅତ୍ୟାଚାର ମୁଁ କେବେ କରି ନେଇଁ । କେବଳ ରଜାଙ୍କ ଦାଉରୁ ପରସ୍ତୀକ ରକ୍ଷା କଲି ବୋଲି ମୋର ଚାକିରି ଗଲା ଶେଷକୁ···

ଜନାର୍ଦ୍ଦନଙ୍କ ସ୍ୱରରେ ଭଟା । ପୁଣି ଉଜାଣି ଆସିଲା ସେଥିରେ—କିନ୍ତୁ ମୋର ମନ କେହି ଦବେଇ ଦେଇ ପାରିନି । ମୋର ମନ ଖାଲି ଛୁଟୁଥିଲା ସବୁବେଳେ ଘୋଡ଼ାରେ, ଓଃ, ଘୋଡ଼ା ମୋର ଥାନ୍ତା କି···। ଆରେ ଶୁଣିଲୁ ମଦନ । ପନ୍ଦର ଦିନ ତଳେ ଭାସ୍କରର ଶଳା ଲୋକ ପଠେଇଥିଲା ଘୋଡ଼ାର ଜୀନ୍‌ଟା କିଣି ନବ ବୋଲି ମୋ ଠଉଁ । ହୁଃ, ଘୋଡ଼ା ଚାଲିଗଲା ବୋଲି ତା' ଜୀନ୍ ବିକିଦେବି ମୁଁ ? ମୁଁ ସେଇ ଜୀନ୍ ଉପରେ ବସୁଥିଲି କେତେ, ତାକୁ ବିକି ଦେବି ? ମୋର ମନକୁ ବିକି ଦେବି ମୁଁ ? ତାଙ୍କ ବଡ଼ଲୋକି ତାଙ୍କ ଘରେ—କିଣି ଆଣୁ ନାହାନ୍ତି ବଜାରରୁ······

ଯେମିତି ଆଉ କାହା ସାଙ୍ଗରେ କଳି କରୁଚନ୍ତି ଜନାର୍ଦ୍ଦନ । ଜନାର୍ଦ୍ଦନଙ୍କର ଏହି ଉତ୍ତେଜିତ ପ୍ରଗଲ୍‌ଭତାର ଅର୍ଥ କିଛି ବୁଝି ପାରୁ ନ ଥାଏ ମଦନ । ଏହି ସମୟରେ ପଛରୁ ବୁରୁନ୍ଦୁ ଗୋସେଇଁ "ଜନୁ ବାବୁ, ଜନୁ ବାବୁ" ଡାକ ପ୍ରାୟ ଦୌଡ଼ ଦୌଡ଼ି ସେଠି ପହଞ୍ଚିଲା ।

କଣ କହୋ ଗୋସେଇଁ ? ତମେ କେତେବେଳେ ?

କାଲି ଆଇଚି । ବାବୁ ଡାକୁଚନ୍ତି ଆପଣଙ୍କୁ ।

ଖୁବ୍ ଅପରାଧୀପରି କହୁଥାଏ ବୃନ୍ଦାବନ । ପୁଣି ଗ୍ଳାନି ଭିତରେ ପ୍ରଶ୍ୱାସ ପବନର ଅତ୍ୟାଗ୍ରହ । ସେ ଲଜ୍ଜିତ ହେଉଥାଏ ଏଇଥିପାଇଁ ଯେ, ଦିନେ ସେ ଗୁରୁବଂଶର ଗୌରବ ବହନ କରି ଏହି ଲୋକମାନଙ୍କଠାରୁ ସମ୍ମାନ ପାଉଥିଲା । ଆଜି କେବଳ ତାର ବିପରୀତ ।

କଞ୍ଚିତ୍ ଆନତ ହୋଇ ବୃନ୍ଦାବନକୁ ପ୍ରଣାମ କଲା ମଦନ । ଡାହାଣ ହାତ ଟେକି ତାକୁ କଲ୍ୟାଣ କଲା ବୃନ୍ଦାବନ । ଯେପରି 'ଶତାବ୍ଦୀବ୍ୟାପୀ ବଦଳିତ ହିନ୍ଦୁ ଜାତିର ପ୍ରତିନିଧି ଏଇ ବୃନ୍ଦାବନ । ଅଭିଶପ୍ତ ଦୁର୍ଭାଗା, ପୁଣି କଲ୍ୟାଣ କରୁଚି ଅନ୍ୟକୁ ।

ଏହି ସମୟରେ ପାଲକୁ ଯିବା ବାଟରେ ସେମାନଙ୍କୁ ଭେଟିଲା ମଧୁ ନାୟକ । ଲୋକଟା କର୍ମଠ । ଆଦର୍ଶ କୃଷକ ସେ ଏ ଗାଁର । ସୁନ୍ଦର ନୁହେଁ କି ଅସୁନ୍ଦର ନୁହେଁ । ଯାଉଁ ଯାଉଁ ପଦେ ପଚାରିଦେଇ ଚାଲିଗଲା ସିଏ ବୃନ୍ଦାବନକୁ, "କଣ କଲିକତାରୁ ଆଇଲ ଗୋସେଇଁ ?"

ଯେମିତି ପଛରୁ ଚିହ୍ନି ପାରି ନ ଥିଲା ସେ ମଦନକୁ । ଗାଁ ଦାଣ୍ଡରେ କୌଣସି ମୁଖିଆ ଲୋକ ସାଙ୍ଗରେ ଚାଲିବା ମଦନକୁ ସେ ଦେଖି ନ ଥିଲା ଏଥିପୂର୍ବରୁ । ସେଥିପାଇଁ ସେ ଯେମିତି ମଦନକୁ ଅତିକ୍ରମ କଲା ପରେ ତାକୁ ଚିହ୍ନି ପାରିଲା । ତା'ର ଗୋଡ଼ର ଗତି ତାକୁ ଦି'ପାଦ ଆଗକୁ ନେଇ ଯାଇଥିଲେ ବି ସେ ଠିଆ ହୋଇପଡ଼ିଲା ଆଗରେ ।

ଆରେ, ମୁଁ କହୁଲି ଆଉ କିଏ…

ମଧୁ ନାୟକ ମଦନ ପାଖକୁ ଲାଗିଆସି କହିଲା—

ଟୋରଷ ନବୁ ତୁ ମଦନ ?

ମଦନ ଏଇ ସହଜ ପ୍ରଶ୍ନକୁ ଯେମିତି ବୁଝି ପାରିଲାନି । ଯଦି ଆଗରୁ କେବେ ହେଲେ ମଧୁନା'କଠାରୁ କୌଣସି ଫସଲ କିଣିନି ମଦନ । ମଧୁନା'କ ମଧ ତାକୁ ଚିକେନି । ନିଜେ ମଧ ଲଜ୍ଜିତ ହେଲା ମଧୁ ନାୟକ ମଦନର ବିସ୍ମୟତାରେ ।

କାଲେ ମୋ ଠଉଁ ନେଲେ ତୋର ନଫା ହବ କି ନାଇଁ, ସେଥିନାଗି ମୁଁ ଧୂରୁବୁ ସାଉକୁ ମଟେଇ ଦିଏ । ଆଉ ତଟେ ନ ଦେଇ…

ହସିଉଠିଲେ ଜନାର୍ଦ୍ଦନ ।

ନ ହେଲେ ଏବେ ତୋର ଦି ପଇସା ଲୁଟି ହେଇଥାନ୍ତା, ଏଥିପେଇଁ ତିନି ଗାଁର ଲୋକକୁ ଯାଇଁ ପୋଷିବ ?

ଅଣ୍ଟାରୁ କେତେ ଖଣ୍ଡ ନୋଟ୍ କାଢ଼ି ମଦନ ବଢ଼େଇ ଦେଲା ମଧୁ ନାୟକର ହାତକୁ । ମଧୁ ନାଏକ ଗଣି ଗଣି ଦେଖିଲା ପଚାଶ ଟଙ୍କା । ତାହା ପରେ ସତେଜ ସ୍ୱରରେ ପଚାରିଲା—ଭାଉ ?

ଦୁଃଖ କି ଆନନ୍ଦର ସ୍ପର୍ଶ ନାହିଁ ମଦନର କଥାରେ । ସେ ସହଜ ଭାବରେ କହିଲା—ଆମ ଗାଁରେ ମୋର ପହିଲୁ ଦାଦନ ଇଏ । ଆଜି ଯାକେ କେହି ସେରେ ହେଲେ ଚରି କି କୋଳଥ ଆମ ଗାଁରେ ମତେ ବିକ ନାହାନ୍ତି । ଯେମିତି ମୁଁ ଟଙ୍କା ଦେଇ କଣେ ବୋଲି କାହାର ବିଶ୍ୱାସ ହୁଏନା ।

ଖୁବ୍ ତାନେ ହସିଉଠିଲେ ଜନାର୍ଦ୍ଦନ । ମଧୁ ନାଏକର ମନ ଯେମିତି କୁତୁହଳ ଉଠିଲା ଏଥିରେ । ମନେ ମନେ ସେ ଭାବିଲା, କୋଉ ଶଳା ଆଉ ବାହାର ଲୋକଙ୍କୁ ପାଏ ହେଲେ ଫସଲ ବିକେ···ଦରକଥା ଆଉ ପଗ୍ଗରିବ ମହାଜନଙ୍କୁ, ସବୁ ଗୁହାଁ ଉଆରି ଦେବ ତାଙ୍କୁ ।

ସମସ୍ତେ ଆସି ମହାଜନର ଘର ନିକଟରେ ପହଁଚଲେ । ବାଟରୁ ମଧୁ ନାଏକ ଘରକୁ ନେଉଟିଗଲା ଟଙ୍କା ରଖି ଆସିବାକୁ । ଏତେ ଅନାୟାସରେ ଏତେ ଗୁଡ଼ା ଟଙ୍କା ଏତେ ନିକଟରୁ ପାଇଯିବ ବୋଲି ଭାବି ନ ଥିଲା । ସୋରିଷ କିଆରିରେ ବର୍ତ୍ତମାନ କେବଳ ଫୁଲ, ତଥାପି ତାର ଫଳ ପାଇଁ ସେ ଅନେକ ଆଗରୁ ପାଇଲା ଆଜି ଟଙ୍କା । ବାଟରେ ଫେରୁ ଫେରୁ କିଛି ସମୟ ପାଇଁ ସେ ଟଙ୍କା ଆଉ ମହାଜନିକି ଭୁଲିଯାଇ ପାଖରେ ଯାଇଲା ଲଢ଼େଇକି । ଯେମିତି ଏଇ ଲଢ଼େଇ ଆଜି ମଧୁ ନାଏକର ସୋରିଷ କିଆରିରେ, ବିରି କିଆରିରେ ଆଉ କୋଳଥ ବିଲରେ ବାଣ୍ଟି ଦେଇ ଯାଇଚି ଟଙ୍କା ।

ଘରେ ପହଞ୍ଚି ସେ କୃଷକସୁଲଭ ଚିନ୍ତାରେ ପଗ୍ଗରିବସିଲା ତା'ର ସ୍ତ୍ରୀକି—କହିଲ ଶରଧା ବୋଉ, ଆମ ଘରେ ଏଇ ଗୃରି ଛ' ପ୍ରାଣୀ କୁଟୁମ୍ବରେ ନିତି ମୁଠାଏ ସୋରିଷ ଖର୍ଚ୍ଚ ହଉଚି, ଆଉ ଶ' ଶ' ଲୋକଙ୍କ ପେଇଁ ଯୁଦ୍ଧରେ କେତେ ସୋରିଷ ଖର୍ଚ୍ଚ ହଉ ନ ଥିବ !

ମଲା, ଖାଲି କଣ ବେଶର ବଟା ହୁଏ ସୋରିଷରେ, ତେଲ ଖାଲି ଯେମିତି ନଈ ପାଣିରେ ଭାସୁଚି !

ହଁ ହୋ,···ନିଅ-ନିଅ-ନିଅ । ମୋ ମୁଣ୍ଡରେ ଏତେ କଥା ପଶେ ନା । ଏ ଟଙ୍କା ରଖ···।

ଜ୍ୟେଷ୍ଠ ମାସରୁ ବଡ଼ ଝିଅ ଶରଧାର ବାହାଘର ହେଇଚି । ତା' ପଛେ ପଛେ ଏଇ ଧୋୟା ଅଞ୍ଚଳରେ ଘୁଞ୍ଚି ଯାଇଥିଲା ବରଷାର ପାଣି । ତା ପଛେ ପଛେ ରୁଆ, ବଗ୍ଗି, ପୁଣି ବିରି ଛଟା । ତା'ପରେ ପୁଣି ପାଳ ଫସଲ । ଏବେ କେତେଦିନ ହେଲା ଟିକେ ତର ମିଳଚି ମଧୁ ନାଏକକୁ । ସେଥିପାଇଁ ଝିଅକୁ ଶଙ୍ଗୁଳା ଯିବାକୁ ଶରଧା ବୋଉର ଗଞ୍ଜ ପାହିଲେ ତାଗଦା । କେବଳ ହୁଁ ହାଁ ମାରି ମଧୁ ନାଏକ ସମୟ ଗଡ଼େଇ ନେଉଥିଲା ଆଜଯାକେ । କାଲିଠୁଁ ସ୍ୱାମୀଙ୍କ ଅକଳରେ ପକେଇ, ଖଇଧାନ ବାହାର କରି ତାଙ୍କୁ ପାଗେଇ ରଖିଚି ଶରଧା ବୋଉ । ସକାଳୁ ଖଇ ଭଜିବା ପାଇଁ ଅଗଣାରେ ଚୂଲି ଲିପୁଥିଲା ସିଏ । ଛୁଞ୍ଚ କନାକୁ ମାଟି ଗୋବର ହାଣ୍ଡିରେ ରଖି ଦେଇ, ହାତ ଧୋଇ ଆସି ଟଙ୍କାପାଇଁ ହାତ ପତେଇଲା ଶରଧା ବୋଉ ।

ସାତ କୋଡ଼ି ଟଙ୍କାର ବିରି ବିକିଲ ତ ଟଙ୍କାର ରୂପ ଟିକେ ମତେ ଦେଖେଇଲ ନେଇଁ । ଆଉ ଆଜି କମିତି ମନ ହେଲା ମ ! କୋଉଠୁ କାଢ଼ିଆ କରି ଆଣିଲ କି ?

ପାଳରେ ଅନେକ କାମ ଥିଲା । ସେ କଥାକୁ ପଛରେ ପକେଇ ମଧୁ ନାଏକ ଟିକେ ବସି ପଡିଲା ପିଣ୍ଡା ଉପରେ । ଓଠରେ ତା'ର ଯେମିତି ଅନେକ କଥା । କିନ୍ତୁ

ହଠାତ୍ ଆଖିରେ ତା'ର କାମ ଦେଖା ଦେଲା ଆଗେ । ପଶ୍ଚିମ ପାଖରେ ପିଣ୍ଡା ତଳେ ଗଦା ହୋଇଥାଏ ଜଡ଼ା, ତାକୁ ଅନେଇ ଅନେଇ କହିଲା ମଧୁ ନାଏକ—କାଲଠଉଁ ଏଠି ଆସି ଜଡ଼ା ଜମା ହେଲଣି, ସେଥିରେ ମୁନ୍ଦା ଗୋବର ପାଣି ଛାଞ୍ଚି ଦବାକୁ କାହାକୁ ଦେଖାଯାଉ ନେଇଁ···

ବାକସ ବନ୍ଦ କରବାର ଶବ୍ଦ ପଛେ ପଛେ ପିଣ୍ଡାକୁ ଆସିଲା ଶରଧା ବୋଉ । ଘର ଭିତରୁ ସେ କହି କହି ଆସିଲା ବାହାରକୁ—

ଖାଲି ଏ ମାଇପଙ୍କ ଦୋଷକୁ ତମେ ଅନେଇ ବଇଚ—ଫେରେ ଏଠି ବସିଲ କାହିଁକି ତମେ···

ଯେଉଁ ସୁବିଧା ନିଜେ ଖୋଜୁଥିଲା ମଧୁ ନାଏକ, ତାହା ଯେମିତି ନିଜଯୋଗୁ ନଷ୍ଟ ହେଲା ବର୍ତ୍ତମାନ । ତାହା ପରେ ଟିକେ ସମସ୍ତ ଗଡ଼େଇ ଦେଲା ସେ । ସେ ପର୍ଯ୍ୟନ୍ତ ପାଖରେ ଛିଡ଼ା ହେଇଚି ଶରଧା ବୋଉ, ଯେମିତି ତାକୁ ଏତେ ଗୁଡ଼ା ଟଙ୍କା ଆଣି ଦେଇ ଥିବାରୁ ସେ ତାଙ୍କ ପାଖରେ କୃତଜ୍ଞତା ପ୍ରକାଶ କରୁଛି ସ୍ୱାମୀ ପ୍ରତି ।

ଏ ସକାଳୁଟାରୁ ତମକୁ ଟଙ୍କା ଦେଲା କିଏ ମ ?

ସ୍ତ୍ରୀର ମୁହଁକୁ ଅନେଇଲା ମଧୁ ନାଏକ । କିନ୍ତୁ ଜବାବ୍ ଦେଲା ଭିନ୍ନ ଭାବରେ—ଏ ମହଜା ଘଡିକ ତମେ ବନେ ବୁଲି ଯାଉନା ଶରଧା ବୋଉ !

ମରବାକୁ ତ ଡର ହଉ ନେଇଁ, ଆଉ ମୁଁ ଯାଉଚି ପୁଣି କୁଆଡ଼େ । ହେ, ସିଏ କୁଆଡ଼େ ରତନ ନା'କ ଘରକୁ ସେମିତି ଦେଇ ଦେଲା ଏତେଗୁଡ଼ା ଟଙ୍କା । ଦେଖ, ତମେ କହିଥେଲ ତାଙ୍କ କବାଟ ହଳକୁ ଆଣିବ ବୋଲି । ରତନ ନା'କ ଏତେ ସର ହେଇଚ, କାହାର ଚଉରେ ଟିକେ ଦସ୍ତା ବସିଲା ନା···

କିଛି ଉତ୍ତର ଦେଇ ପାରିଲା ନି ମଧୁ । ସେ ଉଠି ପଡ଼ିଲା ପୁଣି ପାଳକୁ ଯିବାକୁ ।

ହଁ, ସାରଆକୁ ବଟେଇ ଦବ, ଯାଇଁ କଖାରୁ ଫୁଲ ଘିତ ଆସିବ ପାଳରୁ ।

—ତେ ୧ ଶ—

ଆରେ ତମେ ଆମ ସାଙ୍ଗରେ ଆଇଚ ବୃନ୍ଦାବନ ।

ଜନାର୍ଦ୍ଦନ ଯେ ଜାଣି ନ ଥିଲେ ଏହା ନୁହେଁ, ମାତ୍ର ସେ ଯେପରି ଏହା ଜାଣି ନ ଥିଲେ ବୋଲି ଜଣାଇ ଦେବାକୁ ଚାହାଁନ୍ତି । ବରଞ୍ଚ ସେ କାମନା କରୁଥିଲେ, ବୃନ୍ଦାବନ ଯେମିତି ତାଙ୍କ ସାଙ୍ଗରେ ଆସୁ । ଆସୁ ସେ ମହଜା ଘରଯାଏ ।

ଦାଣ୍ଡ ପିଣ୍ଡାରେ ଖଣ୍ଡେ ମଶିଣା ପକେଇଦେଲା ମଦନ । ଜନାର୍ଦ୍ଦନ ବସି ପଡ଼ିଲେ । ବୃନ୍ଦାବନ ଯାଇଁ ମଝି ପାହାଚର ଆରପାଖ ଧାରରେ ବସିଲା । ସେଥିରେ ଜନାର୍ଦ୍ଦନ ଆପତ୍ତି କଲେ—କହୋ, ତମେ ଆମ ଗୋସେଇଁ, ତମେ ସେଠି ତଳେ ବସୁଚ କଣ, ଆସ ଆସ । ବିଛଣାକୁ ଆସ ।

ବୃନ୍ଦାବନ ନିଶ୍ଚଳ । ଅକାଞ୍ଚନତାର ନିଗାଢ ହସ ଖଣ୍ଡେ ଖେଳେଇ ଦେଲା ମୁହଁରେ । ପାଣି ଢାଳେ ଆଉ ଦାନ୍ତକାଠି ଖଣ୍ଡେ ଆଣି ମଦନ ତଳେ ଦାନ୍ତ ଘଷି ବସିଲା ।

"ହଁ, ଆରେ ବାବା ମଦନ," ଏତିକ କହି ଯେପରି ଗଳା ସଫା କରିବାକୁ ଚେଷ୍ଟା କଲେ ଜନାର୍ଦ୍ଦନ, "ଇଏ ଆମର ଗୋସେଇଁ ବଂଶ···, ତମ କଥା ମୁଁ ଅନେକ ସମୟରେ ଭାବେ ବୃନ୍ଦାବନ, ଭାରି ଦୁଃଖ ବି ହୁଏ···"

ଏତିକ କହି ବୃନ୍ଦାବନକୁ ଚାହିଁଲେ ଜନାର୍ଦ୍ଦନ ନାୟକ । ନିପଟ ଅପରାଧୀର ଭାବ ଖେଳିଗଲା ବୃନ୍ଦାବନ ମୁହଁରେ । ଯେମିତି ସେ ଏକ ଦୟନୀୟ ପ୍ରାଣୀ । ତଥାପି ବୃନ୍ଦାବନ କହିଲା—ଜାଣନ୍ତି ତ ଆପଣ ମୋ କଥା ସବୁ···

ଏହି ସମୟରେ ଶୁଖିଲା ଭୂଇଁ ଉପରେ ଠେଙ୍ଗାର ଠୁକୁ ଠୁକୁ ଶବ୍ଦ ଶୁଭିଲା ଦୂରରୁ । ତାହାକୁ ଅନୁସରଣ କରି ଯେଉଁମାନେ ଆଗକୁ ଚାହିଁଲେ ସେମାନେ ଦେଖିଲେ ଠେଙ୍ଗା ସହିତ ଈଷତ୍ ଟ୍ରେଟେଇ ଟ୍ରେଟେଇ ଆସୁଚି ଗୋକୁଳ ସିଂ ।

"କହୋ", ଏହା ଜନାର୍ଦ୍ଦନ ନାୟକଙ୍କର ଶବ୍ଦ । ଯେମିତି ସବୁ କଥାରେ ତାଙ୍କ କଥା ଆଗ । ଆତୁରି ଆଗଚଲା ଭାବ ତାଙ୍କର ଯେମିତି କମି ଯାଇଚି ଶକ୍ତିର ହ୍ରାସ ଯୋଗୁ ।

ନମ୍ର ନମସ୍କାର ଗୋଟିଏ ଢାଳିଦେଲା ଗୋକୁଳ ସିଂ ଜନାର୍ଦ୍ଦନ ନାୟକଙ୍କୁ । ତାହା ପରେ ସେ ଠିଆ ହେଇ ରହିଲା ସେହି ଦାଣ୍ଡରେ । ତତ୍ପରେ ସେ ଗୋଟାଏ ଚୁପୁଡ଼ାରେ ଗୋଟା ଡାଁଶ ମାରିଦେଲା ପାଖରେ ବନ୍ଧା ହେଇଥିବା ହଳେ ବଳଦ ଭିତରୁ ଗୋଟିକର ପିଠିରୁ ।

ବାଃ, ଏମାନଙ୍କୁ ଯେ କୁହନ୍ତି ଚୌଆଖିଆ ଲୋକ । ତମେ ପୁଣି ଜୁଟିଚ ମଦନ ସାଙ୍ଗରେ, ବେଶ··ବେଶ୍··

ଆଖିରେ ସତେଜତା ଧରି ନିର୍ଥକ ଭାବରେ ପ୍ରଶ୍ନ କଲା ଗୋକୁଳ—ଆପଣ କେମିତି ଜାଣିଲେ ?

ଜନାର୍ଦ୍ଦନଙ୍କ କଣ୍ଠରେ ହସ ।

ଦେଖ, ମୁଁ ଫେର୍ ଜାଣିବି ନେଇଁ । ଆଜଯାକେ ତମେ ଏ ଗାଁରେ ପିଆଦା ହେଇ ରହିଲ, ଆଉ ମତେ ଜାଣିଲ ନେଇଁ । ମୁଁ କୋଉ କଥା ଜାଣି ନେଇଁ, ବାବୁଘର ଗୋରୁ କାଞ୍ଜିଆବୁଦାରେ ଦବାକୁ ବାନ୍ଧି ଥେଲେ ଘୁମୁକରଣ, ସେଥିଲାଗି ତମେ ଗୁଡ଼ିଲ ଚାକରି, ପୁଣି ବାବୁଘରେ ଯାଇ ଜୁଟିଲ, ପୁଣି ତାକୁ ଗୁଡ଼ି ଧରିଲ ମଦନକୁ—ପୁଣି ତମେ ଯାଇଁ କୋରଖ ବନ୍ଦ କଲ ବାବୁଘର···ଆଉ ଯାହା ଜାଣେ ସେତକ ଆଉ କହିବି ନେଇ ଏ ବୁଢ଼ା···ହା-ହା-ହା-ହା···

ଏହି ତୃତୀୟ ପୁରୁଷ ବୃଦ୍ଧଙ୍କଠାରୁ ଏତେଗୁଡ଼ାଏ ସତ୍ୟକଥା ଶୁଣି ପ୍ରାୟ ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ଅଧିକ ଆଶ୍ଚର୍ଯ୍ୟ ହୋଇ ପଚାରିଲା ଗୋକଳ···ବାବୁ କଣ ତା'ହେଲେ ଘୋଷା ହେଉଚନ୍ତି ମୋ ଉପରେ । ବାବୁଙ୍କର ତ ମୁଁ କିଛି ମାରି କରି ନେଇ କୋରଖି ବନ୍ଦ କରି !

ହା-ହା-ହା-ହା, ଆଉ ବାବୁଙ୍କର ଟଙ୍କା ପାଣିରେ ବୁଡ଼ିଯାଉଥିଲା ତମେ ଉଦ୍ଧାର କରି ଦେଲ । ···ହଇହୋ, ବୁଦ୍ଧିମନ୍ତ ପିଆଦା, ଯୋଉ ପାଞ୍ଚଟଙ୍କା ଆଣିଥିଲ ବାବୂ ଘରୁ ତାକୁ ଫେରେଇ ଦେଇ ଅସୁଲ ପକେଇ ଦେଇ ଆସିଚ ? ବାହାରେ ତ ଫଁ ଫଁ ହଉଚ, ପୁଣି ଗରୁଡ ବସାରେ ନାଞ୍ଚ ପୁରଉଚ କାହିଁକି ? ହ୍ୟାଣ୍ଡ୍ ଗୁଡ୍‌ବକ୍···ସେମିତି ଏଇ ବଇଷିମ···ଭାଇ ତ ହଣ୍ଟା ମାରିଥିଲା, ମାରିଥିଲା, ମୁଣ୍ଡ ଏବେ ଫାଟି ଯାଇଥିଲା, କଣ ହୋଇଗଲା ସେଥିରେ···ଆଉ ଭାସ୍କର ନା'କକୁ ବୋପା କହିବାର ମଜା ପାଇଲ ?

କିଛି ସମୟ ପାଇଁ କେହି ଚାହିଁପାରିଲେ ନାହିଁ ଜନାର୍ଦ୍ଦନଙ୍କ ମୁହଁକୁ । ନିଜେ ଜନାର୍ଦ୍ଦନ ମଧ୍ୟ ଚାହିଁ ପାରନ୍ତେ ନି ନିଜକୁ ଆଗରେ ଦେଖିଲେ । କିଛି ସମୟ ପରେ ସେ ଉଠି ଠିଆହୋଇ ପଡ଼ିଲେ ଏବଂ କହିଲେ—ଯା, ତମ ଦି'ଜଣଙ୍କର ସମ୍ପତ୍ତି ବେନାମି କରିଦିଅ ଏଇ ମଦନ ନାଁରେ । ହୋ ଗୋସେଇଁ, ତମେ ଆଉ ମୁକୁଳି ପାରିବ ନେଇଁ ଏମିତି ନ କଲେ । ଆଉ ମଦନକୁ ଅବିଶ୍ୱାସ କରିବ ତ ତମେ ମରିବ ।

ଏହା କହି ସେ ଚାଲିଯିବାକୁ ବସିଲେ । ମାତ୍ର ସାଙ୍ଗେ ସାଙ୍ଗେ ଗତି ସମ୍ବରଣ କରି ସେ ଅର୍ଦ୍ଧସ୍ୱଗତ ଭାବରେ କହିଲେ, "ଆରେ ମୁଁ ତ ମଦନ ଘରକୁ ଆଇଚ, ଚାଲି ଯାଉଚ କୁଆଡ଼େ ।" ତାହାପରେ ଉଚ୍ଚ ପାଟିରେ କହିଲେ, "ଘରୁ ପାନ ଆଣ ଗୋକଳ ।"

ଗୋକଳ ପାନ ଆଣିଲା । ତା'ର ନିର୍ଭୀକତା ଏବଂ ତେଜସ୍ୱିତା ଯେମିତି ଅନେକ କମିଯାଇଚି ଏହା ଭିତରେ । ପାନ ଖଣ୍ଡେ ଚୋବେଇ ଚୋବେଇ ତାକୁ ଦେଖି ହସିଉଠିଲେ ଜନାର୍ଦ୍ଦନ—ଏଇ ଭଲଆ ଗୋଟା ଲୋଖାଁ ଅର୍ଦ୍ଧାସୁରଙ୍କର ଖାଲି ବୁଦ୍ଧିର ଅଭାବ ହୁଏ କାହିଁକି ବୁଝିହୁଏ ନା । ଏକା ଭଲ କାମଟା କରିଚ ଗୋକଳ, ବିଚରା ରତନକୁ ତମେ ରକ୍ଷା କରି ଦେଇଚ ।

ଏତିକିବେଳେ ମଧୂ ନାଏକର ସାନ ଝିଅ ସାରିଆ ଗୋଟିଏ କଖାରୁ ଡଙ୍କ, କେରାଏ ପାଳଙ୍ଗ ଶାଗ ଆଉ ହଗଣ୍ଡା ଖଣ୍ଡେ ମୂଳା ଧରି ମଦନ ଘରକୁ ଆସିଲା । ତାକୁ ଦେଖି ହସିଉଠି କହିଲେ ଜନାର୍ଦ୍ଦନ—ହୁଁ ଘର ଦିଅଁ ପୂଜ ଘର ଦିଅଁ ପୂଜ । ତା' ନ କରି ଖାଲି ଦୁନିଆଯାକ ପାକିସ୍ତାନ । ଆନକା ପାଲର ମଧୂନା'କର ଫସଲ, ସିଏ ଅନେଇବ କୁସୁନପୁର ଧୂରୁବ ସାଉ ହାତକୁ । ହା-ହା-ହା···

ଆସ ହୋ ବୃନ୍ଦାବନ, ଯିବା ଏଥର ତମ ବାବୂ ଘରକୁ । ଚ' ଖିଆ ଆଉ ଖବର କାଗଜ ବି ପଢ଼ା ହବ ସେଇଠି । ବୁଢ଼ା ହନେ ଗୋଟା ଆସ୍ଥି ମହିମା ଧର୍ମରେ ପଶିଲା, ସକାଳୁ ଗାଧେଇ ଗାଧେଇ ମୋର ପାର୍ଥିକ ଗଲା । ନାଃ, ଏତେ ଅର୍ଗଳରେ ପଶି ମଣିପ ଆଉ ଚଳିପାରିବ ନେଇଁ । ଆସ, ବୃନ୍ଦାବନ ଆସ । ଆଜି ତ ସେଠି ମଦନ କଥା ପଢ଼ିବ ଜଣାଯାଉଚ ଆଉ···ଆ'ରେ ମଦନ, ଆ'···

ମହନ୍ତ ପାଖକୁ ଆସି କହିଲା,
ତମେ ଆଉ ମତେ ପର ଭାବିବ ନେଇଁ ଦାଦା...
ଖୁବ୍ ଜୋରେ ହସି ଉଠିଲେ ଜନାର୍ଦ୍ଦନ ।

ଆରେ, ତୁ ତ ଆଗୁ କଥା କହିଲୁ । ଆରେ ମତେ ତ ରୋଗୀ ବୋଲି କହି ସମସ୍ତେ ପର କରି ଦେଉଛନ୍ତି, ମୁଁ ଆଉ କଣ କରିବି ? କିନ୍ତୁ ମୋ ଧିଏରେ ରୋଗ ଥାଉ ତ ନ ଥାଉ, ମୋ କଥାରେ ରୋଗ ନାହିଁ ବୋଲି କେହି ହେଲେ କଣ ଭାବୁଚି...

ଦେହର ଗର୍ଭସୂତ୍ର ଗୃହର ଖଣ୍ଡିକୁ ସଜାଡ଼ି ଦେଇ ବଙ୍କୁଲି ବେତ ବାଡ଼ି ଖଣ୍ଡିକୁ ହାତରେ ଧରିଲେ ଜନାର୍ଦ୍ଦନ । ମୁହଁର ନିଶ ହଳକ ଶୁଦ୍ଧୁ ଧଳା । ସେଥିରେ ଖରା ପଡ଼ିବାକୁ ଲାଗିଲା ଗୃହଲାବେଳେ ।

ସେତେବେଳ ପର୍ଯ୍ୟନ୍ତ ଦାନ୍ତ ଘଷୁଥାନ୍ତି ଭାସ୍କର ନାୟକ । କୋଠା ପିଣ୍ଡାର ତଳୁ ଜଣାଯାଉଥାଏ ଯେମିତି ଅନେକ ପାଣି ସେ ଖର୍ଚ୍ଚ କରି ସାରିଲେଣି ଆଜିର ଦାନ୍ତଘଷାରେ ।

ପିଣ୍ଡା ଉପରେ ଟିକେ ଛଡ଼ାରେ ବସିଚି କୁଞ୍ଜି ରାଉତ । ଗଡ଼ଗାଳ୍ପି ମଉଜାର ଭାସ୍କର ନାୟକଙ୍କ ଜମିର ସେ ଜଣେ ବଡ଼ ଭାଗଚାଷୀ । ଆନକାକୁ ବାଟ ଦି କୋଶ । କୁଞ୍ଜି ରାଉତର ବୟସ ହେବ ପଞ୍ଚାବନ । କିନ୍ତୁ ଖୁବ୍ ପାକଳ ଚେହେରା । ଚେହେରା ଗୁହଁ କଥା ଆହୁରି ପାକଳ । ଦେହରେ ଦୋସିଆଁ ଖଣ୍ଡେ ମାଠ ।

ଅନେକ ବେଳୁ ଅନେକ କଥା କହି ବର୍ତ୍ତମାନ ତାର ନିଜର କଥା ଆରମ୍ଭ କରିଛି କୁଞ୍ଜି ରାଉତ । ନିଜକୁ କଥା କଥାକରେ ଉଲ୍ଲେଖ କଲାବେଳେ ସେ ରାଉତ ସ୍ଥାନରେ କହୁଚି ରାଉତରା । ବିଚରା କେବଳ ଯଦି 'ରାଉତ' ଶବ୍ଦର ଗୌରବ ଜାଣି-ଥାନ୍ତା ତ କୁଆରେ ଆଉ ଗୋଟିଏ ଶବ୍ଦର ଆୟୁ ଶେଷ କରୁ ନ ଥାନ୍ତା । ଓଡ଼ିଶାରେ ସୂର୍ଯ୍ୟବଂଶର ପ୍ରତିଷ୍ଠାତା ସମ୍ରାଟ୍ କପିଳେନ୍ଦ୍ର ଦେବ ଯେ ଦିନେ କପିଳ ରାଉତ ଥିଲେ, ତାହା ଏହି ମୂର୍ଖ କୁଞ୍ଜି ରାଉତ ଜାଣେନି । ସେଥିପାଇଁ ସେ କେବଳ 'ରାଉତ' ପଦର ଉଜ୍ଜ୍ୱଳ ଐତିହାସିକ ଗର୍ବକୁ ନଷ୍ଟ କରୁଚି ମାତ୍ର ।

କୁଞ୍ଜି ରାଉତ କହୁଥାଏ—

ଦିନା ଗୃହଡଲେ ଆପଣାକୁ ମୁଁ ଯାଉଥିଲି ସମଦ୍ ଖାଁଙ୍କ କୋଠକୁ । ପାଖରେ ଖଣ୍ଡେ ଗାଲିଚା ପକେଇ ଦେଇ ଆପଣାକୁ ସମଦ୍ ଖାଁ କହିଲେ, ଆସ ରାଉତରା ବସ । କେମିତି ତମର ମନେ ପଡ଼ିଲା ଆମକୁ ରାଉତରା ! —ଆପଣାକୁ ଏଇ ସମୟରେ ସେଠି କାଦର୍ ଖାଁ ପହଞ୍ଚିଲେ । ତାଙ୍କୁ ସମଦ୍ ଖାଁ କହିଲେ, ରାଉତରାଙ୍କୁ ଚିହ୍ନିଚ କାଦର ? ଆପଣାକୁ କାଦ୍‌ର ଖାଁ ତ ଆମର ଭଲ ରକମ ପରିଚୟ । ହସି ହସି ସିଏ କହିଲେ, ମଲା ରାଉତରାଙ୍କୁ ମୁଁ ଚିହ୍ନିନେଇଁ । ତା ବାଦେ ଆପଣାକୁ ସମଦ୍ ଖାଁ ରାଉତରାଙ୍କୁ ପାନ ଦିଅ ରାଉତରାଙ୍କୁ ପାନ ଦିଅ ବୋଲି ହୁରି ପକେଇଲେ...

ଦାଣ୍ଡ ଅଧରେ ହେଲେଣି ସେତେବେଳକୁ ଜନାର୍ଦ୍ଦନ ନାୟକ । ପ୍ରଗଳ୍ଭ କୁଞ୍ଜି ରାଉତରାର ସେ ଆଡ଼କୁ ନିଘା ନାହିଁ । ସେହିଠୁ ହସିଉଠିଲେ ଜନାର୍ଦ୍ଦନ ଖୁବ୍ ବଡ଼ ପାଟିରେ—

ହଇ ହୋ, କୁର୍ଡ଼ି ରାଉତ, ଖାଲି ରାଉତରା ପଦକରେ ପଠାଣ ଘରୁ ପାନ ଖାଇଲ ତମେ ?

"ଅବଧାନ, ଅବଧାନ," ପିଣ୍ଡା ଉପରେ ଛୁଡ଼ା ହୋଇ ପଡ଼ି ନମସ୍କାର କଲା କୁର୍ଡ଼ି ରାଉତ, "ଆଉ ଜନୁ ବାବୁଙ୍କୁ ପାରି ହବ ନେଇଁ; ଆପଣାକୁ ମୁଁ ଖାଇବା କଥାଯାକେ ଆଗେ ଗଲିଣି । ଦେଖ ତ, ଆପଣାକୁ ଆମର କଣ ଧର୍ମ ଅଧର୍ମ ବିଗୁର ନାହିଁ ଜମା ।"

ପାହାଚରେ ପିଣ୍ଡା ଉପରକୁ ଉଠୁ ଉଠୁ କହିଲେ ଜନାର୍ଦ୍ଦନ—ଆଚ୍ଛା, ଆଚ୍ଛା, ତମକୁ ଆମେ ଏଣିକି ରାଉତରା ଡାକିବା । ଗୋଟା ଅକ୍ଷରରେ ଆମର ତୁଣ୍ଡ କଣ ଘୋଳେଇ ହୋଇ ଯାଉଚି—ତମେ ବଚରା ଜାତି ବୁଡ଼େଇବାରୁ ରକ୍ଷା ପାଇବ ହେଲେ ।

ଏ କଥାରେ ଭାସ୍କର ନାୟକ ମଧ୍ୟ ହସିଉଠିଲେ । ସେତେବେଳକୁ ସେ ଜଉ ଛେଲି ସାରି ଦାନ୍ତ ଖୁଣ୍ଟୁଥାନ୍ତି । ତାହାପରେ ସେ ତଉଲିଆରେ ମୁହଁ ପୋଛି ସାରି କହିଲେ—

ହଁ, ହଁ, ଦାଦାଙ୍କ କଥା ରହିଲା ଆଜ ଠଉଁ । ଜାଣିଲ ରାଉତରା, ଆଜ ତମେ ଯା—ହଁ ଆମ ପେଇଁ ପରବାପବ ପଠେଇବ ଆଉତରେ···

ଗୋଟିଏ ଲେଖାଁ ଅବଧାନ କରି କୁର୍ଡ଼ି ରାଉତ ଯିବାକୁ ବସିଲା । ହସି ହସି କହି ଉଠିଲେ ଜନାର୍ଦ୍ଦନ—

କହୋ ଆମ କଥା ମନେ ରଖିବ ନା, ଆମ ଯୋଗୁ ତମେ ଆଜ ଆନକା ଚଉପାଢ଼ୀରୁ 'ରାଉତରାଏ' ପଦ ପାଇଲ—ଅଧେ ପରବା ଆମର···

"ଆପଣାକୁ ଦେଖନ୍ତୁ ଆଗେ," କହି କହି ହସି ହସି ଗ୍ଭଲିଗଲା କୁର୍ଡ଼ି ରାଉତ । ଯେପରି ଯଶସ୍ୱୀ ପୁରୁଷ ଆଜ ତାର ଅନ୍ତଃପୁରିକାଠାରୁ ପାଇଚି ସମ୍ବର୍ଦ୍ଧନା । ଦୀର୍ଘ କାଳର ଲାଳସା ପରେ ଆଜ ହଠାତ୍ ଯେମିତି ଜଣେ ଖେତାବ୍‌ଧାରୀ ହୋଇପାରିଛି ସେ, ଏହିପରି ତା'ର ଆନନ୍ଦ ।

ଗ୍ଭଲିଯାଉଚି କୁର୍ଡ଼ି ରାଉତ । ତାହାକୁ ଦେଖାଯାଏ କିଛି ଦୂରରେ । ପିଣ୍ଡା ଉପରେ ବସି ତାହାକୁ ପଛରୁ ଅନେଇ ଅନେଇ କହିଲେ ଜନାର୍ଦ୍ଦନ—ତମେ କଣ ଭାବୁଚ ଏ କୁର୍ଡ଼ି ରାଉତ ପାନ ଖାଇନେଇଁ ସମଦ୍ ଖାଁ ଘରେ ? ନିଶ୍ଚେ ଖାଇଚି ।

ଖାଇଥିବ । ବଡ଼ ଲୋକ ଘର । କୁର୍ଡ଼ି ରାଉତ ଭଲିଆ ଲୋକକୁ ପାନ ଦେଲେ ସେଠି ସେ ଖାଇବ ନେଇଁ ! କିନ୍ତୁ ଆକୁ ପାନ ଦଉଥିଲା ସେଠି କିଏ ? ଖାଲି ଚପ ।···

ହସିଉଠିଲେ ଜନାର୍ଦ୍ଦନ । ଗୁରୁଗମ୍ଭୀର ହସ ।

ଏଇ ତ ତମର କଥା, ତମେ ଖଣ୍ଡେ ତାକୁ ପାନ ଦବ ନେଇଁ···ଆଉ··· ଆଚ୍ଛା କହିଲ, ରସୁଲ ବକ୍‌ସକୁ କଣ ବାଉଜଙ୍ଗ ମିର୍ଜା ଘର ପାନ ଖଣ୍ଡେ ଦଉଥିବେ ସିଏ ଗଲେ ? ପୁଣି ଏଠି ତ ତମେ ତାକୁ ଦଅ ? ହା-ହା-ହା ଆଉ କଣ ତମେ ଲୋକଙ୍କ କଥା ଠଉରଉଚ ଭାସ୍କର !···ଓଃ, ସକାଳୁ ମଣିଷ ଟିକେ ଗ୍ଭ' ଖାଇ ନେଇଁ, ପାଟିରେ

ଆଉ ଜୋର ନାହିଁ କଥା କହିବା ପେଇଁ···କୋଉଠୁ ଢ଼'ଗଛ ମୂଳ। ଫୁଲ। ଆଣିବାକୁ ଯାଇକୁ ବାହାରିଥିଲ ଯେ, ବାଟରେ ଯାଇ ପହଞ୍ଚିଲ ବୃନ୍ଦାବନ···

ଭାସ୍କର ବାବୁ ଡାକିଲେ—ନରିଆ, ଆରେ ଗ୍ଃ' ଏଇଠିକି ଆଣ୍ ।

ଗୋଟା କପ୍ ଗ୍ଃ' ଘେନି ଆସିଲ ନରିଆ । ତାକୁ ଆଉ ଗୋଟା କପ୍ ଆଣିବାକୁ କହିଲେ । ଅନ୍ୟ କପ୍‌କ ଦେଇଗଲା ପରେ ତାକୁ ପୁଣି କହିଲେ ଭାସ୍କର—ଆରେ, ଆଜ ପାଳରୁ କଣ ପରିବା ନେଇ ଦାଦାଙ୍କ ଘରେ ଦେଇ ଆସିବୁ ତ···ପାନ ଆଣ ଯା' ।

ଗ୍ଃ' ଖାଇ ସାରି ଘର ଭିତରକୁ ଯାଇ ଖଣ୍ଡେ ସିଗାରେଟ୍ ଟାଣି ଟାଣି ଫେରିଆସିଲେ ଭାସ୍କର ନାୟକ । ସାମୟିକ ଉତ୍ତେଜନାର ପ୍ରକୋପରେ ସେ ଖଣ୍ଡେ ଖଣ୍ଡେ ସିଗାରେଟ୍ ଟାଣିବାକୁ ଆବଶ୍ୟକ କରିଥାନ୍ତି । ନିଜର ଦରପାକୁଆ ପାଟିରେ ଖଣ୍ଡେ ପାନ ଗୋଟେବାଉଥା'ନ୍ତି ସେତେବେଳକୁ ଜନାର୍ଦ୍ଦନ ।

ସିଗାରେଟର ଧୂଆଁ ଉଡ଼େଇ ଉଡ଼େଇ କିଛି ସମୟ ପରେ କହିଲେ ଭାସ୍କର ନାୟକ—ଜାଣିଲ ଦାଦା, ପଅର ଦିନ ମତେ ଖାଇବାକୁ ଡାକଥିଲେ ଗୁମୁକରଣ, ତାଙ୍କ କଚଗିକ । ମାଉଁସ ଫାଉଁସ କରିଥିଲେ । କଥା ପଡ଼ୁ ପଡ଼ୁ ସେ କହିଲେ, ଏ ଗାଁରେ ଏବେ ପଠାଣ ପୁରେଇ ଘରେ ଶୋଉଚନ୍ତି ଲୋକେ···ଏ ଶଳାଙ୍କ ନାଗି ନ କହିଲା ଲୋକଠଉଁ କଥା ଶୁଣିଲ ମଣିଷ । ଖାଲି ରକ୍ତ ଗୁଡ଼ଲ ଗୋଟେଇ କରି ମୁଁ ରହିଚ । ଆଉ ଶୁଣିବ, ମୁଁ ସେଥିଲାଗି ସେ ସପନା ପୁଅକୁ ଡକେଇଥିଲି ଯେ, କାଲି ଦିନଯାକ କୋଉଠି ନୁଚିଲା ଆସିଲ ନେଇଁ । ଆଉ କା' ଶିକ୍ଷାରେ ପଡ଼ି ଆଜ ସକାଳ-ଟାରୁ ଆସି ମତେ ଓଲଟି ଶୋଧି ଦେଇ ଯାଉଚି—ମାରେ କ ନ ମାରେ ।

ଯଥେଷ୍ଟ ଆଶ୍ଚର୍ଯ୍ୟ ହୋଇ ଜନାର୍ଦ୍ଦନ ନାୟକ କହିଲେ—ଏଁ ଆଉ ହବ ନେଇଁ, ହବ ନେଇଁ, ସପନି ନା'କ ପୁଅ ତମକୁ ଶୋଧିଲା···କଣ କଉଚ ଭାସ୍କର···ତାଜୁବ୍ କଥା ! ଟୋକାଟାକୁ ତ ମୁଁ ଭଲ ବଲି ମନେ କରିଥିଲି···

ଶଳା ଅସଲ ଖେଇଡ଼ । ଶଳା ଅସଲ ଖେଇଡ଼ । ଶଳାକୁ ମୁଁ ଥଣ୍ଡା କରିଦେବ କହୁଚି । ଶଳା କଟକ ଷ୍ଟେସନରେ ଓହ୍ଲେଇଲେ ବାପାର ନାଁ ପଚାରିଲେ ଆସିବ ନେଇଁ, ଶଳା ମୋ ଆଗରେ ତେଜ ଦେଖଉଚ ।

ଯେମିତି ପାଚକର ନିଆଁ ବାଣ ହେଇଗଲେ ଭାସ୍କର ନାୟକ । ତାଙ୍କୁ ଏତେ ଅଭଦ୍ର, ଏତେ ବୀଭତ୍ସ ରୂପରେ କେବେ ଜନାର୍ଦ୍ଦନ ନାୟକ ଦେଖି ନ ଥିଲେ । କେବଳ ଆଶ୍ଚର୍ଯ୍ୟ ହେଇଯିବାକୁ ଲଗିଲେ ସେ । ଭାସ୍କର ନାୟକଙ୍କର କଟକ ଷ୍ଟେସନ କଥାରୁ ସେ ବୁଝିଲେ, ବୋଧହୁଏ ମହନାକୁ କୌଣସି ମକଦ୍ଦମାରେ ପକେଇବାକୁ ଭାସ୍କର ପାଞ୍ଚି ସାରିଲାଣି । ସେ କହିଉଠିଲେ ଦୁଃଖିତ ଭାବରେ—ଓହୋ, କଣ କହୁଚ ତମେ ଭାସ୍କର, ମାଛି ମାରିବାକୁ ବନ୍ଧୁକ ଦରକାର ପୁଣି । ଏଇଖିଣି ତାକୁ ଜବତ୍ କରିଦବା ରୁହ—ହୋ ବୃନ୍ଦାବନ, ଗଲହ ତମେ ମହନାକୁ ଡାକ ଆଣିବ ଗଲ । ମୋ ନାଁ କହି ଡାକ ଆଣିବ·····ବସ, ବସ, ଭାସ୍କର ତମେ ବସ । ଏଇଖିଣି ସବୁ ଠିକ୍ ହେଇଯିବ ।

କିଛି ସମୟ ପରେ ବୃନ୍ଦାବନ ସଙ୍ଗରେ ମହନ୍ତ ନ ଆସି, ଆସିଲା ଗୋକଳ । ପାଦରେ ଖଞ୍ଜତା, ହାତରେ ଠେଙ୍ଗା । ଦୁଇଟି ଉଦ୍ଦେଶ୍ୟ ଧରି ଗୋକଳ ଆସିଥିଲା-- ମହନ୍ତର ପ୍ରତିନିଧିତ୍ୱ, ତା' ପରେ ନିଜର ଦୁଃଖ ଜଣେଇ ସେଇ ପାଞ୍ଚଟଙ୍କାର ଅସୁଲି ପକେଇ ନେବ । ଅବଶ୍ୟ ସେ ଏବଂ ମହନ୍ତ ବୃନ୍ଦାବନଠାରୁ ବାବୁଙ୍କର କ୍ରୋଧର ଆଭାସ ପାଉଥିଲେ । ମାତ୍ର ଗୋକଳର ବିଶ୍ୱାସ ଥିଲା ତା' ପ୍ରତି ବାବୁ ସଦୟ ହୁଅନ୍ତି । ତାରି ପ୍ରାର୍ଥନାରେ ବାବୁ ସେ ଦିନର କ୍ରୋକ୍ ବନ୍ଦ କରିବାକୁ ଅନୁମତି ଦେଇଥିଲେ । ଆଉ ମଧ୍ୟ ସେଠି ଅଛନ୍ତି ଜନୁବାବୁ । ଆଉ ମଧ୍ୟ ମହନ୍ତ ସମ୍ପୂର୍ଣ୍ଣ ଅସମ୍ମତ ହେଇଥିଲା ଆସିବାକୁ । ଗୋକଳର କିନ୍ତୁ ସାହସ ଅସୀମ, କଣ କରିବେ ବାବୁ, କିଛି କହି ଦି'ପଦ ଗାଳି ଗୁଲଜ୍ କରିବେ । ମୋର ତା' ସହିବାକୁ ସାହସ ଅଛି ଢେର୍ । ଚାଲ ଗୋସେଇଁ । ତାହା ପରେ ସେ ବାହାରି ପଡ଼ିଲା ବୃନ୍ଦାବନ ସାଙ୍ଗରେ ।

ଗୋକଳକୁ ଦେଖି ଦେଖି କମ୍ପି ଉଠିଲେ ଭାସ୍କର ନାୟକ । ତଥାପି ସାହସ ଧରି ବାବୁଙ୍କୁ ଗୋଟିଏ ଦଣ୍ଡବତ କଲା ଗୋକଳ । କିନ୍ତୁ ତାହାକୁ ଭ୍ରୂକ୍ଷେପ କଲେ ନାହିଁ ଭାସ୍କର ନାୟକ । ଗୋକଳ ହାତର ଠେଙ୍ଗାଟା ଯେମିତି ତାଙ୍କୁ ପ୍ରହାରିତ କରୁଚି, ଆଉ ସେ ସେଥିରେ ଉତ୍ପୀଡ଼ିତ ହେଇ ଚିତ୍କାର କରିବାକୁ ଲାଗିଲେ –

ଶଳା, ତୁ ଫେର୍ ଆସିଚୁ ଏଠିକି । ଶଳା ଠେଙ୍ଗା ଧରି ଆସିଚୁ ମୋ ପାଖକୁ—ଶଳା ଏ ଗାଁରେ ପଣି ଗୋଟା ଗୁଣ୍ଡାଦଳ ଗଢ଼ୁଚୁ ଶଳା ।

ତାହାପରେ ଜାପାନୀ ଘାସର ଚଟି ଯୋଡ଼ାଟା ଫଟ୍ ଫଟ୍ ହୋଇ କମ୍ପି ଉଠିଲା ପାହାଚରେ । ଅନଉଁ ଅନଉଁ ଗୋକଳ ପାଖରେ ପହଞ୍ଚି ଗୋଡ଼ର ଚଟି ପଟେ ଧରି ତାହାର ଗାଲକୁ ଲାଲ୍ କରି ଦେଲେ ଭାସ୍କର ନାୟକ । ମୁହଁରେ ତାଙ୍କର ନାନା ଅକଥ୍ୟ ଭାଷା । ଗୋକଳ ହାତରେ ସେ ପର୍ଯ୍ୟନ୍ତ ଠେଙ୍ଗା । ତାହା ନିଶ୍ଚଳ । ଦେହରେ ତା'ର ପଶୁ ଗୋଟାକର ବଳ । ତାହା ନିଷ୍କ୍ରିୟ । କେବଳ ଆଖି ତାର ଫାଟି ପଡ଼ୁଥାଏ ପାଣିରେ ।

ହାଁ, ହାଁ, କରି ଜନାର୍ଦ୍ଦନ ନାୟକ ଦୌଡ଼ି ଆସିଲେ ପିଣ୍ଡା ଉପରୁ । ସେତେବେଳକୁ ଭାସ୍କର ନାୟକଙ୍କର ହାତ ଅବଶ ହୋଇସାରିଛି, କାହାରି ନିବର୍ତ୍ତନାରେ ନୁହେଁ । ସ୍ୱତଃ ।

ଗୋକଳକୁ କୁଣ୍ଢେଇ ପକେଇ କହିବାକୁ ଲାଗିଲେ ଜନାର୍ଦ୍ଦନ—ତୁ ମତେ ଯୋତା ପିଟିଲୁ । ମୁଁ ତାକୁ ଡାକିଥିଲି ଏଠିକି···ମୁଁ ଶଳା ବେକୁବ୍···ମୁଁ ଶଳା ବେକୁବ୍···ମୁଁ ତତେ ଏ ଦଣ୍ଡ ଦେଲି ଗୋକଳ···

ତାହାପରେ ସେ କାନ୍ଦଉଠିଲେ ଭେ ଭେ ହୋଇ ।

ଏ ଗରିବ ଗୁଡ଼ାଙ୍କୁ ଗୋରୁ ଗାଈ ପରି ତମେ ସବୁଦିନେ ବାଡ଼େଇଲ । ଖରା ତରାରେ ଖଟି ଖଟି ନିଜ ଫିକିରରେ ସେ ଦି' ପଇସା କମେଇଲେ, ତମେ ତାଙ୍କ ପଇସାକୁ ଖାଇବାକୁ ଚେଷ୍ଟା କଲ, ସେ ନ ଦେଲା ଠଉଁ ତମେ ତାଙ୍କୁ ଚୈଲିଟି ବାଡ଼େଇବ···

ଭାସ୍କର ନାୟକ ସେତେବେଳ ଯାଏ ନିକଟରେ ଛିଡ଼ା ହୋଇଥାନ୍ତି । ଏଣ୍ଟ ଦୃଶ୍ୟରେ ମଧ୍ୟ ତାଙ୍କର କୌଣସି ପରିବର୍ତ୍ତନ ଆସୁ ନ ଥାଏ ଯେମିତି । ଯେପରି ପ୍ରତିଦ୍ଵଂସା ଏପର୍ଯ୍ୟନ୍ତ ତାଙ୍କ ଭିତରେ ସକ୍ରିୟ । ବର୍ତ୍ତମାନ ଜନାର୍ଦ୍ଦନ ନାୟକଙ୍କ ଶେଷ କଥାରେ ସେ ଚମକିଉଠି କହିଲେ—

ତା’ ହେଲେ ତମେ ଅଛ ଆ’ ଭିତରେ—ତମେ ଏତେ କଥା କରିଚ ?

ହିଁ, ମୁଁ କରିଚ, ମୁଁ କରିଚ, ମୁଁ ଅଛି ଆ’ ଭିତରେ । ମୁଁ ଗୋକଳ ସିଂକି ମାଡ଼ ଦବାକୁ ଏଠିକି ଡକେଇ ଥେଲି । ହା-ହା-ହା—

ଅଣ୍ଡୁଲ ହସ । ତାହାପରେ ଉତ୍ତେଜିତ ହୋଇ ସବୁ ଦୁଃଖ ଭୁଲି ଯାଇ ଯେମିତି ସେ କହିଲେ—ମୁଁ ଅଛି ଆ’ଭିତରେ ଭାସ୍କର, ତୁ ଏ କଥା ଭଲ କରି ଜାଣି ରଖ । ତୁ ଏଇଖିଣି •ମତେ ସେ କଥା ବତେଇ ଦେଲୁ । ଗ୍ଲିଲ ଗୋକଳ । ଆସ ବୃନ୍ଦାବନ···

ଯନ୍ତ୍ରଗ୍ରିଳତ ପରି ସେମାନଙ୍କର ଅନୁଧାବନ କଲା ବୃନ୍ଦାବନ ।

## —ଚବିଶ—

ଏକ ବିପର୍ଯ୍ୟୟ ।

ଫୁଲ୍‌କା ଉପରକୁ ନିଜେ ଏମିତି ଆସିଯିବେ ବୋଲି ଜନାର୍ଦ୍ଦନ ନାୟକ ଭାବି ପାରି ନ ଥିଲେ ଜମା । ତାଙ୍କର ଆଖି ଆଗରେ, ବିଶେଷତଃ ତାଙ୍କରି ଯୋଗୁ ଗୋଟିଏ କରୁଣ ଘଟନା ଘଟିବ ବୋଲି କଳ୍ପନା ମଧ୍ୟ କରି ନ ଥିଲେ । ବହୁକାଳର ବହୁ ଅଭିନୟର ଅଭିଜ୍ଞତା ତାଙ୍କ ରକ୍ତରେ । ସେ କେବଳ ନେପଥ୍ୟରେ ବିଚରଣ କରୁଥିଲେ ଆଜଯାଏ, ଆଉ ସେଥିପାଇଁ ସେ ଅଭିନୟର ଦୋଷ-ତ୍ରୁଟି ଧରି ପାରିଚନ୍ତି ଅନେକ ସମୟରେ ଭଲ ଭାବରେ । କିନ୍ତୁ ତାହାର ତ୍ରୁଟି-ଶୋଧନ ଲାଗି ସେ କେବେ ଅଭିନେତା ରୂପରେ ଛିଡ଼ା ହୋଇପଡ଼ିବେ, ଏହା ତାଙ୍କ ପକ୍ଷରେ ସ୍ଵପ୍ନାତୀତ ଥିଲା । ବର୍ତ୍ତମାନ ସେ ଭାବିବାକୁ ଲାଗିଲେ, ଦିନେ ମତେ ସମସ୍ତେ ଘୃଣା କରୁଥିଲେ; ବୃଥାରେ କୁଷ୍ଠରୋଗର କଳଙ୍କ ଲେପି ଦେଇଥିଲେ ଦେହରେ । ଆଜି ମତେ କିନ୍ତୁ ଦେଖେଇବାକୁ ହେବ, ପ୍ରକୃତ କୁଷ୍ଠ ରୋଗୀ କିଏ, କାହାକୁ ଘୃଣା କରିବା ଉଚିତ ।

ଏହା ପରେ ପ୍ରକାଶ୍ୟରେ ହସିଉଠିଲେ ସେ । ଅନେଇଲା ଗୋକଳ ଫି । ସେ ମଧ୍ୟ ଅନେଇଲେ ତାକୁ । ତାହା ପରେ ସେହି ରାସ୍ତା ଉପରେ ହୋ ହୋ ହୋଇ କାନ୍ଦି ଉଠିଲେ ଜନାର୍ଦ୍ଦନ ।

ଶୀତ ସକାଳର ଗ୍ରାମ ରାସ୍ତା । ଅନେକ ସ୍ଥଳରେ ଦାଣ୍ଡ ମଧ୍ୟ ସେଇ । ବିଶେଷତଃ ଜନାର୍ଦ୍ଦନ ନାୟକଙ୍କ ଘରକୁ ଆସିବାର ରାସ୍ତାକୁ ଦାଣ୍ଡ କହିଲେ ଚଳେ । ଖବର ପହୁଁଚିଥିଲେ ସେହି ରାସ୍ତାରେ କେତେକ ଛୁଆ ପିଲା, କେତେକ ସ୍ତ୍ରୀ । ସେମାନେ ଚାହିଁଲେ କ୍ରନ୍ଦନଶୀଳ ଜନାର୍ଦ୍ଦନଙ୍କୁ । ବୃନ୍ଦାବନ ଚାଲୁଥାଏ ପଛରେ । ତାକୁ ପଛରୁ ଡାକ ପକାଇଲା ବଢ଼ଆ ମା, "କାହିଁକି, ବୁଢ଼ା କାହିଁକି କାନ୍ଦୁଛନ୍ତି ?"

ଅନେକ ଗୁପ୍ତ ସମ୍ବାଦ ଆଣି ଦିଏ ଏହି ବଢ଼ଆ ମା ଜନାର୍ଦ୍ଦନଙ୍କୁ । ବୟସରେ ସେ ଜନାର୍ଦ୍ଦନଙ୍କଠାରୁ ଅନେକ ସାନ ହେଲେ ମଧ୍ୟ ମାନ୍ୟରେ ବଡ଼ । ହିସାବରେ ସେ ଜନାର୍ଦ୍ଦନଙ୍କର ଖୁଡ଼ୀ । ବିଧବାର ଆଉ କେହି ନାହାନ୍ତି । କୁଟି କାଣ୍ଡି କରି ଖାଏ । ମାତ୍ର ସାଧାରଣ ଧାନକୁଟୁଣୀ ସେ ନୁହେଁ । ଧାନ କୁଟା ତାର ବ୍ୟବସାୟ । ଅନ୍ୟ-ମାନଙ୍କର ଧାନକୁ କୁଟା ନେଇ ସେମାନଙ୍କୁ ସେ ଚାଉଳ ଯୋଗାଏ ।

ଘଟଣା କଣ ଜାଣିବା ପାଇଁ ତା' ଆଗରେ ଗପିବାକୁ ଆରମ୍ଭ କରୁଥିଲା ବୃନ୍ଦାବନ । ମାତ୍ର ଦୂରରୁ ତାକୁ ତାଗଦା କଲେ ଜନାର୍ଦ୍ଦନ । ଯେମିତି ବଢ଼ଆ ମା'ଠାରୁ ଅନେକ ସମ୍ବାଦ ପାଇଲେ ମଧ୍ୟ ସେ ତାକୁ କୌଣସି ସମ୍ବାଦ ଦେବାକୁ ଚାହାଁନ୍ତି ନାହିଁ ।

ମଦନ ଘରକୁ ନ ଯାଇ ଜନାର୍ଦ୍ଦନ ଗୋକଳ ଓ ବୃନ୍ଦାବନକୁ ଘେନି ନିଜ ଘରକୁ ଫେରିଲେ । ଘର ତାଙ୍କର ଦୁଇଟି ପ୍ରଶସ୍ତ ଖଞ୍ଜାରେ ବିଭକ୍ତ । ଅନେକ ଦିନର ପୁରୁଣା ନଦଉ ଘର । ତୋଳିଥିଲେ ଯଶୋବନ୍ତ ନାୟକ, ଜନାର୍ଦ୍ଦନଙ୍କ ବାପା । ବାହାର ଖଞ୍ଜାରେ କାଠ କାମ ବେଶି । ଅନେକ କାରୁକାମ ସେଥିରେ । ଘରର ଉତ୍ତର ପାଖକୁ ଏକ ପ୍ରଶସ୍ତ ପଡ଼ିଆ । ପଡ଼ିଆର ପଶ୍ଚିମ ଭାଗରେ ଗୋଟିଏ ଛୋଟ ପୋଖରୀ । ନିକଟରେ କେତୋଟି ଆମ୍ବ ଓ ଜାମୁ ଗଛ । ପଡ଼ିଆ ଭିତରେ ମଧ୍ୟ କେତୋଟି । ପଡ଼ିଆର ପ୍ରାୟ ମଝିରେ ଗୋଟିଏ ଛୋଟ ମଜ୍ଜଭୁତ ମାଟି କାନ୍ଥ ଦିଆ ଛପର ଘର । ଦୁଇ ବଖରା । କବାଟ ନାହିଁ । କବାଟ ସ୍ଥାନରେ ତାଟି । ମହିମା ଧର୍ମର ସନ୍ନ୍ୟାସୀଙ୍କର ସାମୟିକ ରହିବା ସକାଶେ ସେଇଟି ତୋଳେଇଛନ୍ତି ଜନାର୍ଦ୍ଦନ । ଜାଗାଟା ମଧ୍ୟ ତାଙ୍କର ।

ସାହିର ବଢ଼ଆ ମା'ର ସବୁ ଆର୍ଦ୍ଦୋଳ ତାଙ୍କରି ଘରେ । ତାଙ୍କରି ଘରେ ସେ କୁଟା କଣ୍ଡା କରେ । ଚାଉଳ ଧାନ ରଖେ । ସବୁ କାମ ଦାମ ମଧ୍ୟ କରେ ଜନାର୍ଦ୍ଦନଙ୍କର ।

ଗୋକଳ ଅନେକ ଥର ଆସିଥିଲା ତାଙ୍କ ଘରକୁ ଆଗେ । ଇଲାକାର ପିଆଦା ଥିଲା ସିଏ । ତଥାପି ଆଜି ତାକୁ ନୂଆ ଲାଗିଲା ଜନାର୍ଦ୍ଦନଙ୍କ ଘର । ହାତରେ ଠେଙ୍ଗା ଧରିଲା ଦିନୁ କାହାଠାରୁ ସେ ମାଡ଼ ଖାଇ ନ ଥିଲା ଆଜିଯାଏ । ପୁନଶ୍ଚ ମାଡ଼ ଖାଇ ଏ ଗାଁରେ କାହା ଘରକୁ ଅତିଥି ହୋଇ ଯାଇନାହିଁ ସେ କେବେ । ଭାବୁଥାଏ ସେ ଅନେକ କଥା, କେତେକଥା ଗୋଟିକ ପରେ ଗୋଟିଏ ମନରେ ତା'ର ଖେଳଯାଉଥାଏ, ସେ ତାର ଇୟତ୍ତା ରଖି ପାରୁ ନ ଥାଏ । କିନ୍ତୁ ସେ ସର୍ବପ୍ରଥମେ ଭାବିଥିଲା, କିପରି ଯାଇଁ ଭେଟିବ ସେ ମଦନକୁ ! ଗାଲରେ ତାହାର ଭାସ୍କର ବାବୁଙ୍କ ଚଟିର ତାଣ୍ଡବ ଲୀଳାର

ସୁସ୍ଥ । ତାକୁ ଦେଖି କଣ ସମାଳି ହବ ମଦନ ? ମନେ ପଡ଼ିଲା ତା' ପରେ ବକଳ ବୋଉ । ବକଳ ବୋଉ କଣ ଭାବ ପାରବ କେବେ ହେଲେ ତା' ସ୍ୱାମୀର କଣ ହୋଇଚ ଅବସ୍ଥା ? ସେ କାନ୍ଦବାକୁ ଲଗିଲା ନୀରବରେ । ଏକା ରକ୍ତ । ଏକା ବୟସ । ତଥାପି ଜଣେ ଅତ୍ୟାଗ୍ରହୀ, ଜଣେ ଅତ୍ୟାଗ୍ରହତ । ବେଳେ ବେଳେ ମଧ ବସ୍ମିତ ହେଉଥାଏ ଗୋକଳ, କୁଆଡ଼େ ଗଲା ତାର ମୂର୍ଖାମି ସେତେବେଳେ । ଫେର୍ ଆଶ୍ୱସ୍ତ ହେଉଥାଏ, ଖୁବ୍ ଭଲ ହେଇଚ । ଡମନ୍ତା ଭାସ୍କର ନା'କକୁ ପିଠି ଛତ୍ରୁ କର ଦେଇଥାନ୍ତା । ତାର ଦାନ୍ତ କାମୁଡ଼ ହେଇଯାଉଥାଏ ଗୁଏଁ ଗୁଏଁ । ଓଃ, ଖୁବ୍ ସମାଳିଚ ମୁଁ । ବକଳ ବୋଉ, ମଦନ, କେବଳ ତମପେଇଁ ମୁଁ ଖୁବ୍ ସମାଳିଚ । ନ ହେଲେ ଆଜ ଶେଷ କର ଦେଇଥାନ୍ତୁ ସେଇଠି ।

ହଁ, ବସ ଗୋକଳ । ଯା'ତ ହବାର ହେଲା । ବୃନ୍ଦାବନ, ଆଉ କଣ ? ଏ ଗାଁରେ ତମେ ସବୁ ବଞ୍ଚବ ପୁଣି କେମିତ ?

ପିଣ୍ଡାରେ ଠିଆହେଇ କହୁଉଠିଲେ ଜନାର୍ଦ୍ଦନ । ଆଖିରେ ତାଙ୍କର ପୁଣି ଭାସି ଉଠିଲା ଲୁହ । ଗୋକଳ ଫୋପାଡ଼ ଦେଲା ଠେଙ୍ଗାଟାକୁ ତଳେ । କାନ୍ଥକୁ ଆଉଜ ପଡ଼ ବସିପଡ଼ିଲା । ତାକୁ ଅନେଇ ରହିଲେ ବୃନ୍ଦାବନ ।

ପୁଣି କହିଲେ ଜନାର୍ଦ୍ଦନ—ମଦନ ପାଖକୁ ମୁଁ ତମକୁ ନେଇ ପାରଲ ନେଇ, ଗୋକଳ । ଘଣ୍ଟାକ ଆଗରୁ ମୁଁ ତମର ଭୁଲ ଦେଖେଇ ଦଉଥିଲି···ପୁଣି ମୁଁ କଲି ଭୁଲ୍···ମୁଁ ଶଳା କାହିଁକ ଡକେଇଲ··

ଏହାପରେ ଚନ୍ତାରେ ପଡ଼ିଲେ ଜନାର୍ଦ୍ଦନ । କଣ କରବେ ସେ ଏଇଖିଣି ? ବୃନ୍ଦାବନକୁ ବ ସେ ଡାକ ଆଣିଲେ କାହିଁକ ? କଛି ସମୟ ବମୂଢ଼ ପର ଠିଆ ହୋଇ ସେ କହ ଉଠିଲେ, "ହଃ, ସବୁ ହବ, ସବୁ ଠିକ୍ ହୋଇଯିବ, ମୁଁ ତମକୁ ମାଡ଼ ଖୋଇଚ, ନ ହେଲେ ଶେଷକୁ ମରବ ।" ଏହା ପରେ ସେ ଗ୍ଲଲଗଲେ ଭତର ଖଞ୍ଜାକୁ । ସ୍ତ୍ରୀଙ୍କୁ ସେ ତଳ ଖଞ୍ଜାର ଦକ୍ଷିଣ ପାଖର ପାଚେରି କରରେ ସ୍ତମ୍ଭିତ ପର ଛିଡ଼ା ହେଇଥିବାର ଦେଖିଲେ । ଦକ୍ଷିଣ ପାଖରେ ଭାସ୍କର ନାୟକଙ୍କ ଘର । ତାଙ୍କ କୋଠାର ଛାଇ ପଡ଼ୁଚ ବାଙ୍କ ହେଇ ଜନାର୍ଦ୍ଦନଙ୍କ ଭତର ଖଞ୍ଜାର ଦୁଆରେ । ଜନାର୍ଦ୍ଦନଙ୍କ ଶବ୍ଦରେ ସ୍ତ୍ରୀ ତାଙ୍କର ପଛକୁ ବୁଲ ଦେଖିଲେ, କାଇଲ୍ ହୋଇ ଛିଡ଼ା ହେଇଚନ୍ତ ତାଙ୍କର ସ୍ୱାମୀ । ସେ କହ ଉଠିଲେ ବ୍ୟଗ୍ର ହୋଇ—

କାହିଁକ ଆଜ ନାଁ ଘାରୁଚ କ ତମର ? କଣ ଭାସ୍କରର ତମେ ସତ୍ୟାନାଶ କରୁଚ କ ? ତା' ମାଇପ ପାଟିରେ ତ ଅଗସଗ ରହୁ ନେଇଁ ?

ସ୍ତ୍ରୀଙ୍କର ଉପର୍ଯ୍ୟୁପର ଅନେକ ପ୍ରଶ୍ନକୁ କେବଳ ନରବ ନୀରବତାରେ ଜଣିବାକୁ ଲଗିଲେ ଜନାର୍ଦ୍ଦନ । ତାହା ପରେ ସେ ସ୍ତ୍ରୀଙ୍କି ଡାକଲେ ଉପର ଖଞ୍ଜାକୁ । ଦୂରରେ ଗୋକଳ ଓ ବୃନ୍ଦାବନ । ମଝି ଦୁଆରେ ସ୍ତ୍ରୀକ ଧର ପକେଇ ସେ କହିଲେ—ମତେ ଯଦ ଆଜ କଏ ଗାଁରେ ଯୋତାରେ ପିଟି ପକେଇବ, ତମେ କଣ କରବ କହିଲ ?

କଏ କାହାଁକି ପିଟିବ ନା ! ଏତେ ଘୁଷ୍ଟ କା'ର ? ଆମେ କା'ର ଖାଉ ନା ଧାରୁ ?

ହସିଉଠିଲେ ଜନାର୍ଦ୍ଦନ । ଡାଛଲ୍ୟର ହସ ।

ହେଇ ଦେଖ, ମୁଁ ତ ବୁଢ଼ାଟା, ମଲକଙ୍କଡ଼ା ନେଉଟେଇବାର ମୋର ତାକତ୍ ନାହିଁ—ହେଇ ଦେଖ, ଏଇ ଯୁଆନ୍ ମରଦଟାକୁ ଗାଁରେ ଆଜ ଯୋତାରେ ପିଟି ପକେଇଚନ୍ତି ଲୋକ । ଆଉ ପାହୁଲଟା ବି ଇଏ କାହାର ଧାରେନା । କଣ, କଣ କହୁଚ ଗୁରୁ ବୋଉ ?

ନିର୍ଦ୍ଦିଷ୍ଟ ଭାବରେ ଗୋକଳ ପ୍ରତି ସଙ୍କେତ କରି କହି ନ ଥିଲେ ମଧ୍ୟ, ଚେହେରାରୁ ଗୁରୁବୋଉ ଜାଣିଲେ ଗୋକଳହିଁ ନିର୍ଜିତ । ପାଖକୁ ଆସିଲା କ୍ଷଣି ଗୋକଳର ଗାଲ ଉପରେ ଦୃଷ୍ଟି ତାଙ୍କର ସ୍ୱତଃ ନିବଦ୍ଧ ହେଲା । ଅନେଇ ଅନେଇ ଶିହରି ଉଠି ସେ କହିଲେ—ମଲ, ମଲ, କଏ ଏତେ ସରି କରିଚି ତମକୁ ପୁଅ ?

"ହଁ, ଗୁରୁବୋଉ, ଠିକ କହୁଚ", ଏତିକ କହି ଯେମିତି ନାଚି ଉଠିଲେ ଜନାର୍ଦ୍ଦନ । "ଆମରି ପୁଅ ଏଇ ଗୋକଳ—ଆମରି ଗୁଳଣ ବର୍ଷର ପୁଅ । ମୋ ପୁଅକୁ ଯୋତାରେ ବାଡ଼େଇଚି ଭାସ୍କର ।" ଅଶ୍ରୁ ଭରିଉଠିଲା ତାଙ୍କର ସ୍ୱରରେ ।

"ମଲା ସେଥିରେ ପୁଣି ଏମିତି ଗାଳି ଦଉଚନ୍ତି—"ଆର୍ଦ୍ର କଣ୍ଠରେ କହିଲେ ଗୁରୁ-ବୋଉ । ତାହାପରେ ଜନାର୍ଦ୍ଦନ ଚଞ୍ଚଳ ହେଇ କହିଲେ—ମୁଁ ଆସେ । ମୁଁ ମହନ ପାଖରୁ ଆସେ, ଗୋକଳ ! ସେଣେ ଅପେକ୍ଷା କରିଥିବ ସିଏ ।—ବୃନ୍ଦାବନ, ତମେ ବି ଏଇଠି ଥା' ।...ହଁ, ତମେ ଆମ ସାଙ୍ଗରେ ଗୁଲ ପାରିବ ନେଇଁ, ବୃନ୍ଦାବନ ? ସବୁଦିନେ ପଚି ପଚି ମରୁଥେଲ, ଦି'ଦିନ ଖଟାରେ ଦୌଡ଼ି ତମେ ଭଲ ଅବସ୍ଥାକୁ ଫେରିଯିବ, ପାରିବ ନେଇଁ ?

ବୃନ୍ଦାବନ ସେ ପର୍ଯ୍ୟନ୍ତ ଠିଆ ହେଇଥାଏ । ଏକଥା ପରେ ସେ ଯେମିତି ଠିଆହେଇ ପଡ଼ିଲା ଆଉ ଥରେ । ସେ ଉତ୍ତେଜିତ ହେଇ କହିଲା—ଆଉ କଣ ମୋର ଏତେବେଳଯାଏ ଭୟ ଅଛି ବୋଲି ଭାବୁଚନ୍ତି । ମରିବ ତ, ମରିବ । ଆଉ ଫେରିବ ନେଇଁ ସେଠିକି । ନେଇ ନେଇ ମୋର ଘର ତହ ଛ'ଗୁଣ୍ଠ ନେବେ । ଆଉ କଣ କରିବେ ।

ଗୁଲଗଲେ ସେଠୁ ଜନାର୍ଦ୍ଦନ ।

ଉଦଗ୍ର ଆବେଗରେ ଗୋକଳକୁ ଅପେକ୍ଷା କରି ବସିଥିଲା ମହନ । ପାଞ୍ଚ ମିନିଟ୍ ହେବ ତା' ପାଖରେ ଆସି ପହଞ୍ଚିଥିଲା ଜାଫର୍ । ଜାଫର୍ କାଲି ଶୁଣି ଯାଇଥିଲା ଅନେକ କଥା । ସେ କାଲି ଏଠି ଥିଲାବେଳେ ଥରେ ପହଞ୍ଚିଥିଲା ବାବୁଘର ଗୁକର ନରିଆ, ଆଉ ସେ ଜାଫର୍‌ର ଜେବି ଭିତରେ କହୁ କହୁ କହି ପକେଇ ଥିଲା, ମହନାକୁ ବାଛନ୍ଦ କରିବେ ବାବୁ । ତାହାପରେ ଜାଫର୍‌କୁ ମହନ ବୋଉ କହିଲା ଆଶ୍ରୟର

କଥା । ଜାଫର୍ ସେଥିପାଇଁ ସକାଳୁ ଉଠି ତାହାର ହୁଲ ଖଣ୍ଡକ ଧରି ବାହାରି ପଡ଼ିଲା ଆନ୍‌କା । ଆଜ ମଧ୍ଯ ଶୁକ୍ରବାର । ଶୁକ୍ରବାର ଦିନ ଜାଫର୍ ଦୋକାନ ବନ୍ଦ ରଖେ ବରାବର । ନମାଜ୍ ଦିନ ।

ଆଗରି ସେହି ମଶିଣା ଉପରେ ଦାଣ୍ଡପିଣ୍ଡାରେ ବସିଥାନ୍ତି ଜାଫର୍ ଆଉ ମହନ୍ତା । ଖଣ୍ଡେ ଫୁଲ୍ଲାଦାର ସାଧା କପଡ଼ାର ଲମ୍ବା ପଞ୍ଜାବି ଉପରେ ଜାଫର୍ ପିନ୍ଧିଥାଏ ହାତକଟା ଖଣ୍ଡେ ହରରଙ୍ଗୀ ସ୍ୱେଟର୍ । ମହନ୍ତା କହିଯାଉଥାଏ ସମସ୍ତ ଘଟଣା । ମଝିରେ ମଝିରେ ପଞ୍ଜାବିର ଆସ୍ତିନ ଗୁରେଇ ଗୁରେଇ ଜାଫର୍ ଶୁଣୁଥାଏ ମହନ୍ତାର କଥା । ଶୁଣି ଶୁଣି ଜାଫର୍ କହିଉଠିଲା ହଠାତ୍—

ତମେ ଥାପଡ୍ ଲଗେଇଲ ନେଇଁ ତାକୁ ? କୋଡ଼ିଏ ଟଙ୍କାକୁ ତମର ଦଶଗୁଣ ଜମିନ୍ ନେଇଚ । ଫେର ତମେ ଦେଇଚ ପଚିଶ ଟଙ୍କା । ଫିର୍ ଗୁହାରା ହେ ? ଗୁଲ, ଗୁଲ, ତମେ ଏଠୁ ଗୁଲ, ମୁଁ ତମ ପେଇଁ ଦୋସରା ଦୋକାନ ବନେଇ ଦେବି । ଏସା ହାରାମି ଲୋକ୍‌କା ସାଥ୍ ରହନା ବିଲକୁଲ୍ ଠିକ୍ ନେହି...

ତାହାପରେ କିଛି ସମୟ ଗୁପ୍ ପୁଣି କହିଲା ଜାଫର୍—କେସା ହେ ତୁମ୍‌ହାରା ଗୋକ୍‌ଲ ଭାଇ ? କସରତ୍ ହୈ ? ଲଠି ଚଲନା ଜାନତା ହୈ ?

ମହନ୍ତା ଉତ୍ତର ଦେଲା ଖୋଲଟିରେ—ହାଁ, ଜାନ୍‌ତା ।

ମଗର୍ ଓ ଗୋଷ୍ ଖାତା ନେହି ମାଲୁମ୍ ହୋତା । ତୁମ୍‌ଭି ଓ ପାଖାଲ୍ ଉଖାଲ୍ ଛୋଡ଼୍ ଦୋ ଓସ୍‌କା । ରୂପାୟା କମାକେ କ୍ୟା ଫାଇଦା ହୋଗା, ଯବ୍ ତୁମ୍ ଡର୍‌ପୋକ ବନେଗା,—ତବ୍ ଓଇ ସବ୍ ହାରାମି ଲୋକ୍ ତୁମ୍‌ହାରା ଖୁନ୍ ଚୁଷ୍ ଲେଗା । କ୍ୟା ଫାଇଦା ରୂପିଆ କମାନେକା...

ଦୂରରେ ପହଁଚଲେ ଜନାର୍ଦ୍ଦନ । ମୁହଁରେ ତାଙ୍କର ନାହିଁ କୌଣସି ଦୁଃଖର ଚିହ୍ନ । ସେ ପାଖରେ ଆସି ପହଞ୍ଚିଲେ ଶେଷକୁ । ଠିଆ ହୋଇ ପଡ଼ିଲା ମହନ୍ତା । ଜନାର୍ଦ୍ଦନ ପହଞ୍ଚିଲେ ଠିକ୍ ଜାଫର ପାଖକୁ । ବାହାରୁ ଆସ୍ତିନ ଗୋଟେଇ ଦେଇଚି ଜାଫର, ଉଞ୍ଚ ଗୁଡ଼ଟା ତାହାର ଆହୁରି ଉଞ୍ଚ ଦିଶୁଚି ସ୍ୱେଟର ଯୋଗୁ । ହୃଦୟର ବିଚାର ତେଜସ୍ୱିତା ରୂପାୟିତ ହେଇଚି ତାର ହର୍‌ରଙ୍ଗୀ ସ୍ୱେଟରରେ । କାଳିଆ ଚିକା ମୁହଁରେ ତାର ଦାଢ଼ି । ସେଥିରେ ପକ୍ଷ ଲଗେଇ ଦେଇଚି ଘଞ୍ଚ କଳାଯୂମର ନିଶ ।

"ହୁଁ...ତମେ ଜାଫର୍ ?" କହିଲେ ଜାଫରକୁ ଅନେଇ ଅନେଇ ଜନାର୍ଦ୍ଦନ । ତାହାଙ୍କର ସମ୍ଭ୍ରାନ୍ତ ଗୁହାଁଣିରେ ସାମ୍ଭ୍ରାନ୍ତ୍ୟ ଫୁଟିଉଠିଲା ଜାଫର ଭିତରେ । କହି ଉଠିଲା, "ସଲାମ ।"

ମୁହଁରେ 'ସଲାମ' କହି ହାତରେ ଧରି ପକେଇଲେ—ଜନାର୍ଦ୍ଦନ ଜାଫର୍‌ର ବାହୁକୁ । ମୁହଁରେ ଉତ୍ତେଜନା ।

ତମକୁ ଯୋତାରେ କେହି ପିଟିଲେ କଣ କରିବ ତମେ, ଜାଫର୍ ?

ଯୋତିକା ବଦଲା ଲେଗା ଖୁନ୍‌ସେ !

କୁଣ୍ଢେଇ ପକେଇଲେ ଜନାର୍ଦ୍ଦନ ଜାଫରକୁ । ତାହାପରେ ପଚାରିଲେ ମହନ୍ତାକୁ ।

କଣ କରିବୁ ତୁ ମହନ୍ ?

ମହନ ସ୍ତବ୍ଧ । ଆଖିରେ ସ୍ତମ୍ଭିତର ଗୁହାରି । ବ୍ୟର୍ଥତା ।

ଥୋପା ଫୁଲ ଫୁଟିଉଠିଲା ଜନାର୍ଦ୍ଦନଙ୍କ ଆଖିରେ ।

ଗୁଡବକ୍ ! ମୁଁ ଡକେଇଲି ତତେ, ତୁ ପଠେଇଲୁ ଗୋକଳକୁ ! ତୋ ନାଗି ଗୋକଳ ଖାଇବ ମାଡ଼ ?

ଚମକି ଉଠିଲା ମହନ । ଛୁଡ଼ା ହେଇ ପଡ଼ିଲା ଜାଫର୍ ।

କ୍ୟା ବ୍ୟାତ୍ ? କୋନ୍ ମାରା ?

କମ୍ପି ଉଠିଲା ଜାଫର୍ । ଥର ଥର କହି ଉଠିଲେ ଜନାର୍ଦ୍ଦନ ।

ଗୋକଳକୁ ଯୋଡ଼ମାରା ଭାସ୍କର ନାଏକ । ଗାଲ ଫଟାହେଇଆ···

କାହିଁ ହେ ଓ ହାରାମିକା ଘର···

କହୁ କହୁ ଜାଫର ଛଡ଼େଇ ନେଲା ଜନାର୍ଦ୍ଦନଙ୍କ ବାଡ଼ି । ଜାଫରକୁ ଚେକି ଧରିଲା ମହନ । ବୁଲପଡ଼ି ଜାଫର୍ ଠିଆ ହେଇ ପଡ଼ିଲା କେବଳ । ଗୁହାଁ ରହିଲା ମହନକୁ । ଗୁହାଁ ଗୁହାଁ ସେ କହିଲା—ଚାକଚ ତ ଖୁବ୍ ?

ଓସ୍କା !

ତାହାପରେ ରହି ରହି କହିଲା ମହନ ।

ମୋ ନାଗି ଜଣେ ଯାଇଁ ମାଡ଼ ଖାଇଚ । ସେଠିକି ତମେ କାହିଁକି ପୁଣି ଯିବ, ଓସ୍କା । ସେଠିକି ମୁଁ ଯିବ ।

ଅନେକ ଆଗରୁ ଦ୍ୱାର ମୁହଁରେ ଆସି ଛିଡ଼ା ହୋଇ ସାରିଥିଲେ ଶ୍ରୀମଣି ଏବଂ ତା'ର ମା' । ମା' ତାର ପାଟିକରି କହିଲା – ତୁ ଫେର କଣ ମାଡ଼ ଖାଇବାକୁ ଯିବୁ ସେଠିକି ? ନାଇଁ, ନାଇଁ, ଆମର ଧନ ଦୌଲତରେ ଦରକାର ନାଇଁ । ସିଏ ତ ସମସ୍ତଙ୍କୁ ଖାଇ ସାଇଲାଣି । ଜାଫର, ତୁ ନେଇଯା ଏ ଟୋକାକୁ ଏଠୁ । ସେ ହଣାହଣି ହେଇ ଏଠି ମରିବେ । ଜୀବନ ଥେଲେ ସବୁ । ତୁ ଆମକୁ ନେଇଯା ଏଠୁ ଜାଫର···

କହିଲା ଶ୍ରୀମଣି—ବାବୁଘର କାଇଁକି ମାଇଲେ ଗୋକଳ ଭାଇକୁ, ଦାଦା ? ଏଡ଼େ ବଡ଼ ମିଣିପିଟାକୁ ତାଙ୍କର ହାତ ଚଳିଲା ମାରିବାକୁ ?

ବୁଲପଡ଼ି ଶ୍ରୀମଣିକି ଅନେଇଲେ ଜନାର୍ଦ୍ଦନ । ତାହାର ପ୍ରଶ୍ନର ଜବାବ୍ ଦେଲେ ଗୋଟା ଉଚ୍ଚକିତ ହସରେ ।

ବ' ମହନ ବ' । ବସ ଗ୍ଲେଟମିଆଁ । ଯା' ତ ହବାର୍ ହେଲାଣି, ଏଇଖିଣି ଆଉ କେମିତି କେହି ମାଡ଼ ନ ଖାଇବେ ତାରି କଥା କରିବାକୁ ହବ ।···ଭାସ୍କର ମୋର ପୁତୁରା, ତୁ ବି ମୋର ପୁତୁରା, ଆଉ ଗୋକଳ ପୁଅ । ମୋ ପୁଅକୁ ମୁଁ ମାଡ଼ ଖୋଇଚ ଆଜ···ଓହୋ, ଅନଉ ଅନଉ ତାକୁ ପିଟିପକେଇଲା···

ଆଉ କିଛି କହି ପାରିଲେନି । ସବୁ ଭୁଲିଗଲେ ବର୍ତ୍ତମାନ ଜନାର୍ଦ୍ଦନ । ଏତିକି ବେଳେ ପଚାରିଲା ମହନ—

ଗୋକଳ ଭାଇ କୁଆଡ଼େ ଗଲେ ?

ମୋ ପୁଅ ମୋ ଘରେ ଅଛୁ । ସିଏ ମାଡ଼ ନ ଖାଇଥେଲେ ମୁଁ ଆଜ ପୁଅ ପାଇଥା'ନ୍ତ କେମିତ !

ଏ କଥାରେ କେହି କିଛି ଜବାବ୍ ଦେଲେନି । ମହନ ଧୀରେ ଧୀରେ ସେଠୁ ଚାଲିଗଲା । ସମସ୍ତେ ଭାବିଲେ, ଗୋକଳକ ଦେଖିବାକୁ ଯାଉଚ ମହନ । କେହି ବାଧା ଦେଲେନି ସେଥିପାଇଁ ।

ପ୍ରକୃତରେ ମଧ୍ୟ ମହନ ଯାଇଁ ପହଁଚଲା ଗୋକଳ ପାଖରେ । ଆଶ୍ଚର୍ଯ୍ୟ ହୋଇଗଲା ମହନ । ସେ ଦେଖିଲା, ମୁହଁରେ ଖଣ୍ଡେ ଗାମୁଛା ଗୁଡ଼େଇ ହାତରେ କେତେ ଖଣ୍ଡ ନୋଟ୍ ଧର ତାକୁ ନିରୀକ୍ଷଣ କରୁଚ ଗୋକଳ । ମହନ ଉପରେ ଆଖି ପଡ଼ିବାରୁ ଚମକ ଉଠିଲା ସେ । କେତେବେଳକେ ଟିକେ ହସିବାର ଚେଷ୍ଟାକର ସେ କହିଲା—

ବାବୁ ନିଜେ ଆଇଥେଲେ ଏଠିକ । ତାଙ୍କ ଘରଯା ବ ଆଇଥେଲେ । ବାବୁଙ୍କର ପୁଅ ସେଣେ କଟକରେ ଓପାସରେ ଅନେଇ ବସିଥେବେ, ଗୋସେଇଁଙ୍କି ବୁଝେଇ ସୁଝେଇ ସେଥିନାଗି ନେଇଗଲେ ସିଏ । ତାଙ୍କ କରଜ ସବୁ ଶୁଝିଡ ଦେବେ ବୋଲ କହିଚନ୍ତ...

ତାହାପରେ କିଛି ସମୟ ନୀରବ ରହିଲା ଗୋକଳ । ହାତର ନୋଟ୍‌କୁ ଅନେଇ ଅନେଇ ପୁଣି କହିଲା—

ରାଗ ବାଗ ବେଳେ ବଡ଼ଲୋକଙ୍କ ପାଖକୁ ଯିବା ଠିକ୍ ନୁହେଁ, ମହନ ! ଆଉ କଣ୍, ବାବୁ କସୁର ମାଗି ନେଲେ । ଏଡ଼େ ବଡ଼ ଲୋକ, ଆସି ହାତ ଧରଲେ ! ମୁଁ ଆଉ କଣ କରବ, ମହନ ! ଜନୁବାବୁ ମତେ ଏଠି ଏକୁଟିଆ ରଖିଦେଇ ଗଲେ । ମୁଁ ଆଉ କଣ କରବ ମହନ...

ଏହା କହି ନୋଟ୍‌ତକ ତଳେ ଥୋଇଦେଲା ଗୋକଳ । ମହନ ଦେଖିଲା, ଚାରି ଖଣ୍ଡ ପାଞ୍ଚଟଙ୍କିଆ ନୋଟ୍ । ତାହାପରେ ସେ ଥରେ ଚାହିଁଲା ଗୋକଳର ମୁହଁକୁ । ତାହାପରେ ଆସ୍ତେ ଚାଲିଗଲା ସେଠୁ ।

ଜନାର୍ଦ୍ଦନ ନାୟକଙ୍କର ଭିତର ଖଞ୍ଜାର ଦକ୍ଷିଣ ପାଖରେ କେବଳ ଗୋଟିଏ ପାଚେରି । ତାହାର ପୂର୍ବ ପାଖର ଶେଷ ମୁଣ୍ଡରେ ଗୋଟିଏ ଜଳ ବାଟ । ଗ୍ରେଟ କବାଟ ଖଣ୍ଡେ ଲଗିଚ ସେଥିରେ । ପାଚେରିଟି କନ୍ତୁ ଭାସ୍କର ନାୟକଙ୍କ ଜାଗାରେ । ତାଙ୍କର ଦ୍ୱାର ମଧ୍ୟ ତଆର । ପୂର୍ବ ପାଖରେ ଉତ୍ତର ଦିଗକୁ ମାଡ଼ ଖଣ୍ଡେ ଗ୍ରେଟ ବଗିଚ୍ଚ ଅଛ ଭାସ୍କର ନାୟକଙ୍କର । ସେହି ବଗିକୁ ଲଗି ପାଚେରି ଦେହରେ ଜଳ କବାଟ । ସେହି ଜଳକୁ ଗୋଟିଏ ସରୁ ଦୋକଡ଼ ଜନାର୍ଦ୍ଦନଙ୍କର ଭିତର ଖଞ୍ଜାରେ ମିଶିଚ । ଦୋକଡ଼କ ଲଗି ଜନାର୍ଦ୍ଦନଙ୍କ ରୋଷେଇ ଘର । ସେହିବାଟେ ପ୍ରଥମେ ଆସି ଭାସ୍କର ନାୟକଙ୍କ ନିର୍ଦ୍ଦେଶ-ମତେ ରଜନୀ ବୁଲିଗଲା ଜନାର୍ଦ୍ଦନଙ୍କ ଖଞ୍ଜାରେ । ତାହାପରେ ରସାନନ୍ଦଠାରୁ ଭାସ୍କର ନାୟକ ଶୁଣିଲେ, ତାକୁ ଜନାର୍ଦ୍ଦନ କହିଲେ ବାଟରେ—

ଦେଖ ରସାନ୍ଦ, ତମ ବାବୁଙ୍କର ବଗୁର ଦେଖ, ଝୁମୁକରଣ ତାଙ୍କୁ କଣ ଲଗେଇ କରି କହିଲା ବୋଲି ଏଥିପେଇଁ ଦୋଷୀ ହବ ମହନା । ଫେର୍ ଇଏ ଭାଇ ଲେଖା ହେବେ—ଇଏ ପୁଣି କହୁଚନ୍ତି, ମହନା ଘରେ ପଠାଣ ପୁରେଇ ଶୋଉଚି । ଆଚ୍ଛା, ଭଲ କଥା, ଭାଇ ବୋଲି ତମେ ଆଉ ତାକୁ ପାଞ୍ଚ ପଚଶ ଦେଇ ତ ସାହାଯ୍ୟ ହେଲନେଇଁ । ମୂର୍ଖ ଲୋକ । ତା' ଫିକରରେ ସିଏ ଦି' ପଇସା ରୋଜଗାର କଲା, ଏଥିପେଇଁ ସିଏ 'କେମିତି ନଷ୍ଟ ହବ ଖାଲି ତମର ବରାଦ ।···ଯା ତ ହେଇଥେଲା, ନହେଇଥେଲା, ମହନା କୁଆଡେ ଆସି କଣ ସେ ବାବୁଙ୍କୁ କହିଲା ବୋଲି ବାବୁ କହିଲେ'। ସେଥିପେଇଁ ମୁଁ କଥାଟାକୁ ବୁଝା ସୁଝା କରିଦେବ ବୋଲି ଡକେଇଲି, କଣ କାମ ଥିବା ଯୋଗୁ ମହନା ନ ଆସି ଏବେ ଗୋକଳ ଫିଙ୍କ ପଠେଇଲା । ଯୋଉ ଗୋକଳ ଫିଙ୍କ ବାବୁଘର ଗୋରୁ କାଞ୍ଜିଆ ବୁଦାରେ ଦବାକୁ କହିବାରୁ, ସିଏ କଟଣି କାମ ଛାଡ଼ି ଦେଇ ଆସିଲା, ତମେ କଣ କଲନା, ସେ ଆସି ପହଁଚୁ ପହଁଚୁ ଚଟିରେ ତାକୁ ସେକ ପକେଇ ଗଲ । ଫେର୍ ମୁଁ ଡକେଇଚି—କହିଲ ରସାନ୍ଦ, ଏ କାହାକୁ ମାଡ଼ ଦେଲା ? ତମେ ତ ଗରିବ ଗୁରୁବାଙ୍କୁ ଯାହା କରୁଚ ସମସ୍ତେ ଦେଖୁଚନ୍ତି, ସେଥିରେ ପୁଣି ଗୋଟା ନିଶାପ ଉପରେ ଯୋତା ମାଡ଼ । ମୁଁ ଆଉ ସମାଳି ପାରିଲି ନେଇ ରସାନ୍ଦ ! ଆକୁ କଣ ମଣିଷ ସମାଳେ ? ମୁଁ ବୃନ୍ଦାବନକୁ ବି ଡାକଆଣିଚି ତମ ମେଲରୁ । ଯା'ହବ ହବ । ଗୋଟା ଲୋକ ମାଲି ମକଦ୍ଦମା କରି କରଜ ଦାମରେ ପଡ଼ି ବୁଡ଼ିଲା । ତମ କଥାରେ ପାଞ୍ଚ ଜାଗାରେ ପଚଶରେ ବି ସେ ହୋଇ କଲା । ପୁଣି ତାକୁ ତମର ପୁଝାରି ଚାକର କରି ରଖିବ ! ବଚରା କୋଉଠି ଆଜ କାଲି ସମୟରେ ଚାକରି ବାକରି କରି ଦି' ପଇସା ରୋଜଗାର କରୁଥାନ୍ତା, ତମେ ସେତକ ତାକୁ କରେଇ ଦେଲ ନେଇଁ !! ହବ ନେଇଁ । ହବ ନେଇଁ । ଧରମ ଛାଡ଼ିଯିବା କଥା ଏ···

ଏକଥା ପରେ ଭାସ୍କରଙ୍କର ସ୍ତ୍ରୀ ମଧ ପାଟି କରି ଉଠିଲେ—

ତମର ଧର୍ମ ଅଧର୍ମକୁ ଜମା ବଗୁର ନାଇଁ । ଖାଲି ଅସର୍ପା ଉପରକୁ କାଣି ବଳେଇ ଟାଣ୍ । ଝୁମୁକରଣର ତମେ କଣ କରି ପକେଇଲ ? ପିଲାଟା ସେଣେ କଟକରେ ଅନେଇଥିବ, ଏଣେ ବୁରୁନ୍ଦା ଗୋସେଇଁ ଯାଇ ଉଠିଲେଣି କୁଆଡ଼େ—କାଇଁକି, ତମେ ତାକୁ ଦରମା ଦଉନା, ତମକୁ ତ ସେ ତମୁସୁକ ନେଖିଦେଲା···

ତାହା ପରେ ଭାସ୍କର ନାୟକଙ୍କ ମନରେ ଅନେକ କଥା ଖେଳିଲା । ନିଷ୍ଟୟ ଦନେଇ ଦାଦା ବୃନ୍ଦାବନକୁ ମତେଇ ସମ୍ପତ୍ତିକ ହାତଛଡ଼ା କରିଦେବେ । ଏକେ ତ ଟଙ୍କା ଯାକ ଯିବ—ତା' ଉପରେ ପୁଣି ଏମିତି ଅସମୟରେ ଭୃତ୍ୟ ଗୋଟିଏ ଯିବ ପାଖରୁ । ତାହାପରେ ଅନୁତାପ ଜାଗିଲା ଗୋକଳ ଲାଗି । ବଚରା ନିର୍ଦ୍ଦୋଷୀଟାକୁ ମୁଁ ମାରିଲି ମିଛରେ । କଣ ମୁଁ ଆଜଯାଏ କରିପାରିଚି ଝୁମୁକରଣର ? ହଁ, ଭୁଲି ଯାଇ ନେଇ ମୁଁ ସେ କଥା । ଭଉଣୀ ମରିଗଲେ କଣ ହେଲା; ଏତିକବେଳେ ତାକୁ ଠିକରି ଦବାକୁ ହବ ।···ଏହି ସମୟରେ ଭାସ୍କର ନାୟକଙ୍କ ଆଖିରେ ଭାସି ଉଠିଲା ଗୋଟିଏ ଚୌକିର ଛବି । ଅବିକୃତ ଅବସ୍ଥାରେ ସେଇଠି ବସି ରହିଚି ଝୁମୁକରଣର କଟଣି ଘରେ, ଅନର୍ଥର ପ୍ରତୀକ୍ଷାରେ । ଗଲା ଅଗଷ୍ଟ ବିପ୍ଳବରେ ଖଡ଼କପୁର କୋଠି ଭାଙ୍ଗି ମେଉଁ

ସବୁ ଆସବାବ୍ ପତ୍ର ଏପର୍ଯ୍ୟନ୍ତ ଗଡ଼ପ ହୋଇ ରହିଛି, ଆନକାର୍ କଚେରି ଘରେ ପଡ଼ିଛି ତା'ର ଭିତରୁ ଗୋଟିଏ । ଫୁଲସ୍କ ବ ହାତକରି ନେବାକୁ ହେବ । ତା'ପରେ ଖୁବ୍ ପ୍ରଶଂସିତ ମନେକଲେ ବର୍ତ୍ତମାନ ସେ ନିଜକୁ ।

ତା'ପରେ ସସ୍ତ୍ରୀକ ଭାସ୍କର ନାୟକ ଆସି ପହଞ୍ଚିଲେ ଗୋକୁଳ ଆଉ ବୃନ୍ଦାବନ ପାଖରେ । ଘର ଆରପାଖରେ ସେମାନେ ବସିଥିଲେ । କେବଳ କାର୍ଯ୍ୟୋଦ୍ଧାର ପାଇଁ ଟିକେ ମୁହଁ ବଦଳ କରିବାକୁ ପଡ଼ିଲା ଭାସ୍କରବାବୁଙ୍କୁ ।

"କଣ ତମେ ପାଗଳ ହେଲ ଗୋସେଇଁ," ବୃନ୍ଦାବନକୁ ଫେରେଇ ନେଲା ପରେ ତାକୁ ବୁଝେଇବାକୁ ଲଗିଲେ ଭାସ୍କର । "ଏ ଅରକ୍ଷିତଙ୍କ କଥାରେ ତମେ ପାଣିକି ଡେଇଁବାକୁ ବସିଛ । କଞ୍ଚା ଅଲଣା ଗୁଡ଼ାକ । ସେମିତି ସେ ଭାଗୁ ବେହେରା କଥା ତ ତମେ ଦେଖିଛ, ଗାଁ ଯାକ ଠଉଁ ଧାରଲା, ଶେଷକୁ ପରିଶିଷାରେ ପଡ଼ି ମହାଜନଙ୍କୁ ଫାଙ୍କିବ ବୋଲି ସଂପତ୍ତିକି ବେନାମୀ କଲା । ଦେଖୁଚ ତ ଭାଗୁ ବେହେରା ସମ୍ପତ୍ତି ଖାଉଚି କିଏ—ଶୂନକୁ ଏ ଶଳା ମାରି ନେଲେ ଦି'ମାଣ ଜମି । କି ହୋ, ମୁଁ ତ ଅକରପଡ଼ା ମହନ୍ତକୁ କହିଚି ଗୋଟିଏ ଭଲ ପାତ୍ର ତମପାଇଁ ବୁଝିଦବାକୁ, ଆଉ ତମର ତ ଏକା ଛୁଅ ବା' ନହେଲେ ଘର ତିଅ ମାଡ଼ିବ ନେଇଁ । ସେଥିପାଇଁ ତ ମୁଁ ତମକୁ ନେଇ କଟକରେ ବସେଇଚି । ଦେଖ, ଏଇ ମାଘ ଫଗୁଣରେ ତମର ବା'ଘର ମୁଁ କରିଦଉଚି । ହଁ, ଖାଲି ଗୋଟା ଭୟ ରହିବ ବୋଲି ତମଠୁଁ କାଗଜ ଖଣ୍ଡେ କରି ନେଇଚି । ସେଇ ଟଙ୍କା କେତୁଟାରେ କଣ ମୋ ବାକସ ଭର୍ତ୍ତି ହବ ? ଓଲଟି ତମ ନାଗି ମୁଁ କେତେ ଖର୍ଚ୍ଚ କରୁଚି ଦେଖ । ଆଉ ହନେ ତମେ ସେ ଅଲଣାଙ୍କ କଥାରେ ପଶିବ ନେଇ । ଶୁଖିଲାରେ ତମକୁ ବୁଡ଼େଇ ମାରିବେ କହି ଦଉଚି···"

କିଛି କହିପାରିଲା ନାହିଁ ବୃନ୍ଦାବନ । ତା'ର ସନ୍ଦେହ ମଧ୍ୟ ହେଲା, ପ୍ରକୃତରେ କଣ କରି ପାରିଥାନ୍ତେ ଜନୁବାବୁ···ଖାଲି ତ ସଂପତ୍ତି ବେନାମୀ କରି ଦେବାକୁ ଆଶ୍ୱାସ ଦେଇଥିଲେ । ବେନାମୀର ଇତିହାସ ତ ଗାଇଗଲେ ଭାସ୍କର ବାବୁ । ପୁଣି ଭାସ୍କର ବାବୁଙ୍କୁ ସେ ଅବିଶ୍ୱାସ କରିବ କେମିତି ? ଗାଁଟାଯାକର ଲୋକ ଆଉଁ ଆଉଁ ତ ପଦେ ହିମତ୍ କେହି ଦେଇ ପାରିଲେନି, ଓଲଟି ତା' ବିରୁଦ୍ଧରେ ମଧ୍ୟ ସାକ୍ଷୀ ଦେଲେ କେତେ, ଭାସ୍କର ବାବୁ ନ ଥିଲେ ସେ ଆଜି ଥାଆନ୍ତା କୋଉଠି ? ତା'ର ବାଘଘର କରି ଦେବେ ବୋଲି ପୁଣି କହୁଚନ୍ତି । ସେହି ଭାସ୍କର ବାବୁଙ୍କୁ ସେ ଅବିଶ୍ୱାସ କରିବ କେମିତି ?

ବିଭିନ୍ନ ଚିନ୍ତାସ୍ରୋତ ଭିତରେ ସେ ଆବର୍ତ୍ତିତ ହେବାକୁ ଲଗିଲା । ଏହି ସମୟରେ ବାବୁଆଣୀ ଆସି କହିଲେ, "ତମେ ଠିଆ ହୋଇଚ କଣ ଗୋସେଇଁ, ତମେ ତ ସକାଳୁ ଗୁଡ଼ାଖୁ ମାଗିନା ମତେ, ଆଉ ଦାନ୍ତ ଘଷିଲ ତମେ କେତେବେଳେ ?"

ଆର୍ଦ୍ର ହୋଇଉଠିଲା ବୃନ୍ଦାବନର ମନ । ତାହାପରେ ପୁଣି ଶୁଣାଗଲା ବାବୁଆଣୀଙ୍କ ଭାଷା, "ଗୋସେଇଁଙ୍କି ଖଣ୍ଡେ ଦାନ୍ତକାଠି ଆଣି ଦବୁନି ଲୋ ରଜନୀ···"

ହଁ, ଆଉ ପର ଶିକ୍ଷାରେ ପଡ଼ିବନି । କେତେ ଦୁର୍ଗୁଣ ଏଇ ଜନାର୍ଦ୍ଦନ ନାୟକଙ୍କର । ଆଜି କେମିତି ଭଲ ଲୋକ ହୋଇ ଯାଉଥିଲେ ମୋ ଲାଗି । ନିଶ୍ଚେ ଆଉ କିଛି ମତଲପ୍ ଅଛି । ନାଃ, ଆଉ ଏ ପରଙ୍କ କଥାରେ ପଡ଼ିବ ନେଇ···

ତାହାପରେ ବୃନ୍ଦାବନର ମନେପଡ଼ିଲା କଟକ ସହରର ଉପଭୋଗ । ବାବୁଙ୍କ ପୁଅ ସାଙ୍ଗରେ ସମୟେ ସମୟେ ସିନେମା ଥିଏଟର ଦେଖାର ସୌଭାଗ୍ୟ । ଆଗରୁ କଟକ ମାଟି ନ ମାଡ଼ି ସେ କଲିକତା ଯାଇଥିଲା ଭୁଲରେ । ଦେଶକୁ ସିନା କଲିକତା, ସିଏ କଲିକତାରେ ରହେ ପୁଣି କୋଉଠି ? ଦୂର ମଫସଲର କଲବାଡ଼ି ଇଲାକାରେ ଯାଇ ତେଲୁଣୀ ପାଡ଼ା ଜାଗା । ମାଣିକତଳାର ବଲିଆ ବଇଷ୍ଣିମ ସାଙ୍ଗରେ ମୁଡ଼ି ବାତସାର ଦୋକାନ । ଖାଲି ଟିକେ ବାଢ଼ବାଲୀ ସଦୁ ନାଉଣୀ ଯାହା ଆଖି ଆଉ ମନକୁ ବେଳେ ବେଳେ କରେ ସତେଜ । ସେ ପୁଣି ଖୁବ୍ ଦୂରରେ । ଇନ୍ଦ୍ର ଧନୁ । ପାଖକୁ ଆସି ସିଏ କେବଳ ପାଲଟିଯାଏ ବଜୁଳି—ଦଶ ଟଙ୍କା ଦେଇ ପାରିବେ ବୃନ୍ଦାବନ ଚନ୍ଦ୍ର ?

ରଜନୀ ଦାନ୍ତକାଠି ଖଣ୍ଡେ ବଢ଼େଇ ଦେଇ ପଚାରିଲା ବୃନ୍ଦାବନକୁ, "କୋଉଥିରେ ବୋଷେଇ କରିବ ଗୋସେଇଁ, କଡ଼େଇ ନା ଡେକ୍‌ଚିରେ ? ତମେ ଗୁଆ ପିଇବ କୁଆଡ଼େ ?"

ଦୂରରେ ଭାସ୍କର ବାବୁ ଚାଲିଯାଉଥିଲେ ଦାଣ୍ଡକୁ, ସେ ପାଟି କରି ଉଠିଲେ – ପଚାରୁଚୁ କଣ ?

ରଜନୀ ଅନେଇଲା ପଛକୁ । ବାବୁ ଆଉ ନାହାନ୍ତି । 'ଫେଁ' କରି ହସି ଉଠିଲା ସେ । ଦୃଷ୍ଟିରେ ଚଞ୍ଚଳତା । ଛାତିର ଲୁଗା ଅସମ୍ବୃତ । ଯେମିତି ସ୍ନାନାଗାରେ ଗୋଟା ପୀନ୍ ମାରି ହୋଇଚି ଲୁଗାରେ । ବଲ ବଲ କରି ଅନେଇ ରହିଲା ବୃନ୍ଦାବନ । ସଦୁ ନାଉଣୀ ନ ହେଲେ ମଧ୍ୟ ଏଇ ରଜନୀ ପାଖରେ ଅଛି ସେଇ ଦୂର ତେଲୁଣୀପଡ଼ାର ଜିନିଷ ।

ବୟସ ସତେଇଶ, ଅଠେଇଶ । ଗୋରା ଦେହରେ ଉପରେ କଟକି ବାସୀ-ଗେଞ୍ଜି । ବେକ ମୂଳରେ ଦେଖା ଯାଉଚି ତୁଳସୀ କଣ୍ଠୀର ମାଳ । ତାହାରି ସ୍ପର୍ଶ ପାଇଲା ବୃନ୍ଦାବନ । କିନ୍ତୁ ସେ ସଜାଡ଼ିବାକୁ ଯାଉଥିଲା ତାର ଗେଞ୍ଜିଟା, ଅହେତୁକ । ଯେମିତି କଣ କହିବାକୁ ବସିବା ଆଗରୁ ସେ ସଫା କରିବାକୁ ଚେଷ୍ଟା କରୁଥିଲା ତାହାର ଗଳା ।

## — ପଚିଶ —

ଖୁବ୍ ଜୋର୍‌ରେ ଘରେ ପହଞ୍ଚିଲେ ଜନାର୍ଦ୍ଦନ । କେତେ ଲୋକଙ୍କୁ ବାଟରେ ଭେଟିଥିଲେ ବି କାହାକୁ ଦେଖି ନାହାନ୍ତି ସେ । କାହାକୁ କହି ନାହାନ୍ତି ସେ କିଛି ।

ମହନଠାରୁ ସବୁ ଶୁଣି ଆସିଥିଲେ ସେ । ଘରେ ପାଦ ଦେଉଁ ଦେଉଁ ସେ କହି ବସିଲେ ଗୋକୁଳଙ୍କ —

ବାଟରେ ମତେ ଚିହ୍ନା ପକେଇଲ ମିଛଟରେ ?

ଗୋକୁଳ ସେତେବେଳଯାଏ ସେଇଠାରେ ବସିଛି । ସେହି ନୋଟ୍ ଗୁଚ୍ଛ ଖଣ୍ଡିକୁ କେତେବେଳେ ଧରୁଛି, କେତେବେଳେ ଥୋଇ ଦଉଛି ଆଗରେ । ଆକାଶ ପାତାଳ ଭାବୁଛି । ମହନ ଯିବାପରେ ସେ ଖାଲି ହସିଉଠିଥିଲା, କିନ୍ତୁ ତା'ର ସେ ହସ ମିଳେଇ ଯାଇଥିଲା ଖୁବ୍ କମ୍ ସମୟରେ । ତାର ଧାରଣା ହେଲା, ଅନେକ ନୀରସ କାମର ତଣ୍ଟି ଚିପି ଦେଇଛି ସେ । ହଁ, କଣ ସେ ଭୁଲ୍ କରିଛି ? ସିଏ ତ ଆଉ ଏଇ ନୋଟ୍ ଗୁଚ୍ଛ ଖଣ୍ଡିକୁ ମାଗି ରଖିନେଇ ନିଜେ ? ସେ ଦେଇ ଯାଇଛନ୍ତି । ଆଉ ଯାହା ଘଟିଥାନ୍ତା ମହନ ଏଠି ପହଞ୍ଚିଥିଲେ, ଘଟିଛି ଠିକ୍ ତାହାର ଓଲଟା । ନୀରବରେ ଫେରିଯାଇଛି ଏଠୁ ମହନ । ହୁଏତ ଘୃଣା କରିଛି ସିଏ ଗୋକୁଳକୁ । ଅନେକ ହେଙ୍ଗାମାକୁ କାଠେ ଚଟେଇ ଦେଇଛି ଗୁଚ୍ଛ ଖଣ୍ଡି ନୋଟ୍ । ପିଠି ହେଇ ନ ଥାନ୍ତା ତ ଆଉ ବାବୁଙ୍କୁ ! ପିଠି ଦେବାରୁ ଏକା ରକ୍ଷାକରି ଦେଇଛି ସିଏ, ଅନେକ ନିରୁପାୟ ଲୋକଙ୍କୁ ଠେଲି ଦେଇଛି ତାଙ୍କର ସ୍ୱଚ୍ଛନ୍ଦ ରାସ୍ତାକୁ ।

ପ୍ରତ୍ୟାଶିତ ପ୍ରଶ୍ନ । ଗୋକୁଳ ଉତ୍ତର ଦେଇ ବସିଲା ଦ୍ୱିଧାହୀନ ଭାବରେ —

ବରଦ ଭଲ । ଆମେ ସମସ୍ତେ ରକ୍ଷାପାଇ ଯାଇଛେ ଶୁନେ ଶୁନେ । ନ ହେଲେ ଆପଣ ଘାଣ୍ଟି ହୋଇଥାନ୍ତେ ଖାଲି । ଆଉ ମହନର ବି ବ୍ୟବସା ମାରି ହୋଇଥାନ୍ତା । ଏକା ସେତେ ସୁବିଧା କଥା ନୁହେଁ, ଖାଲି କଣ୍ଟା ବାଡ଼ରେ···

"ଭାରି ବୁଦ୍ଧି ତମର ଗୋକୁଳ," ଜନାର୍ଦ୍ଦନ ଘୋଷା ହେଇ କହିଉଠିଲେ ଯେମିତି । "ମୁଁ ତମର ବୁଦ୍ଧିରେ ବାଟ ଚାଲିଥାନ୍ତି ଭାବିଥିଲି, ଖାଲି ମତେ ଚିହ୍ନା ପକେଇଲ । ସେ ବଇଷିମ ଟୋକାକୁ ବି ସେଇ ଯୋଗ । ମାଡ଼ ଖାଇ ଖାଇ ମାଟିରେ ମିଶିଗଲେ ତମର ଯାଇଁ ଚେତା ଆସିବ । ଏଇ କୋଡ଼ିଏଟା ଟଙ୍କାରେ ତମେ ସବୁ ଭୁଲିଗଲ ଗୋକୁଳ ?"

ଅବିଚଳିତ ଭାବରେ କହିଲା ଗୋକୁଳ—

ନାଇଁ ଆଜ୍ଞା, କୋଉଁଏ ଶହରେ ବି ଏ ପରାଣ ମେଣ୍ଟିବନି...ସେ କଥା କାହିଁକି କହୁଚନ୍ତି ? ହେଲେ ବାବୁଙ୍କୁ ତ ଆଉ ମାରି ପାରି ନ ଥାନ୍ତେ ଆମେ ?

ଜନାର୍ଦ୍ଦନଙ୍କ ମୁହଁରେ ବିଦ୍ରୂପର ହସ ।

ଠିକ୍ ଠିକ୍ । ରକ୍ତ ଖରାପ । ଆରେ ତମେ ସବୁ ପଠାଣ ହେଇ ଯା'ରେ ଗୋକଳା ।

କଥା ଭିତରେ ସେ ଯେମିତି ଜାଫର୍‌କୁ ଦେଖିବାକୁ ପାଇଲେ । ପୁଣି କହିଲେ ।

ଓଃ, ଟୋକାଟା ତ ।...ଆରେ ତମେ ସବୁ ମାଉଁ ଖାଇବାକୁ ଡିଆଁରି ନ ହେଲେ ଗୋଟା ଲୋକ ଯେ ମାଡ଼ ମାରି ଶିଖିଚ ସିଏ ଆଉ କରିବ କଣ ? ମୁଁ ପରା ନିଜ ଆଖିରେ ଦେଖିଚି ଦାରୁଗା ଥେଲାବେଳେ, ଏ ଲୋକ ଗୁଡ଼ାକ ଖାଲି ମାଉଁଆ । ମାଡ଼ କଣିବାକୁ ଖାଲି ଅନେଇ ବସିଚନ୍ତି...

ଉଠି ପଡ଼ିଲା ଗୋକଳା । ଠେଙ୍ଗାଟାକୁ ଥରେ ତଳେ ଠୁକେଇ ଦେଇ କହିଲା—

କା'କୁ ମାରିବି କହନ୍ତୁ !

ମତେ ଫେର୍ ବତେଇ ଦବାକୁ ହବ !...

ହୋ ହୋ ହେଇ ହସି ଉଠିଲେ ଜନାର୍ଦ୍ଦନ ।

ଏହି ସମୟରେ ଗୋଟା ପାଚିଆରେ ପାଚିଆଏ ପରିବା ଧରି ପହଞ୍ଚିଲା ନରିଆ । ଗୋକଳ ଆଉ ଜନାର୍ଦ୍ଦନ ଉଭୟେ ଅନେଇ ରହିଲେ ନରିଆକୁ । ତଳ ଖଞ୍ଜାକୁ ଗୁଲିଗଲା ନରିଆ । ସେ ପରିବା ଦେଇ ଗୁଲିଗଲା ପରେ ଠୋ କରି ହସିଉଠିଲା ଗୋକଳ । ପର ମୁହୂର୍ତ୍ତରେ ସେ କହିଲା—

କାହାକୁ ବାଡ଼େଇବି କହନ୍ତୁ...

ଓଃ, ଏତେ ଦୁର୍ବଳତା ପୁଣି ମୋ ଭିତରେ ? ଗୋକଳକୁ ନିରୀକ୍ଷଣ କରି କରି ମନେ ମନେ ଭାବିବାକୁ ଲାଗିଲେ ଜନାର୍ଦ୍ଦନ । ତାଙ୍କର ମନେ ହେଲା, ଯେମିତି ସେ ପଡ଼ିଯାନ୍ତେ ଗୋକଳ ସିଂର ଠେଙ୍ଗା ତଳେ । ମନର କଥା ମନରେ, ଏହି ସମୟରେ ସେ ଦେଖିବାକୁ ଲାଗିଲେ ନୋଟ୍ ଗୁରିଖଣ୍ଡିକୁ ଠେଙ୍ଗାରେ ଛେଚିବାରେ ଲାଗିଚି ଗୋକଳ । ତାହାପରେ ନିରଳସଭାବରେ କହିଲା ଗୋକଳ, "ଆଜ୍ଞା, ମୁଁ ତ ଆପଣଙ୍କର ପୁଅ, ମୋ କଥା ଆଉ ଧରିବେ ନେଇଁ କିଛି ।"

ତାହାପରେ ସେଇ ଧରିଛେଚୁ ନୋଟ୍‌କୁ ଗୋଟେଇ ନେଇ ସେଠୁ ଗୁଲିଗଲା ଗୋକଳ । ଗୁରୁବୋଉ ଆସି କହିଲେ—

ଦେଖ ମ, କେଡ଼େ ସୁନ୍ଦର ମୂଳା ହେଇଚି ଭାସ୍କର ଘର ପାଳରେ ।

ଚାଲିଗଲା ଗୋକଳ ସଳଖେ ସଳଖେ ରତନ ନାଏକର ଘରକୁ । ମୁହଁରେ ତାର ଘେରହୋଇଚି ଗାମୁଛା । ଦେହରେ ହାତକଟି ଜାମା । ସେଇ ଆବରଣ ତଳେ ଘୋଷରର ନାୟକଙ୍କର ଐଶ୍ୱର୍ଯ୍ୟ ଓ ଅତ୍ୟାଚାର ।

ପଦନ ଭାଇ, ପଦନ ଭାଇ, ଡାକ ଡାକ ଘର ଭିତରକୁ ପଶିଗଲା ଗୋକଳ । ଘର ଦୁ' ବଖରାରେ ଖଞ୍ଜା । ତିନି ପାଖରେ ମାଟି ପାଚେରୀ । ତା' ଉପରେ ଛଣ ଛପର । ଗତବର୍ଷ ଛପରବନ୍ଧ ହୋଇନି । ଆଗତବର୍ଷର ଛପର ବି ଖୁବ୍ ପାତଳ । ସେଥିରେ ମାଙ୍କଡ଼ଙ୍କ ଅତ୍ୟାଚାର । ଅନେକ ଜାଗାରେ କଙ୍କାଳ ଦେଖାଯାଉଚି ଚାଳର । ବାଡ଼ି ପାଖର ପାଚେରୀ ଚାଳ ଟିକେ ଓସାର, ସେଥିରେ ଝାଟି ମାଟି କାନ୍ଥରେ ଗୋଟେ ଖଣ୍ଡେ ରୋଷେଇ ଘର । ଦାଣ୍ଡ ଦରଜାର ଚାଳ ମଧ୍ୟ ପ୍ରଶସ୍ତ । ଦରଜାରେ ଯାଉଁଳି କବାଟ, ବର୍ଷକ ତଳର ତିଆରି । ଚୌକାଠ ଆଉ କବାଟରେ ନେଲୀ ପେଣ୍ଟ ବୋଳା ହୋଇଚି ନିଜ ହାତରେ ରତନ, ସେତକ ଆଣିଥିଲା ସିଏ କଲିକତାରୁ ।

ଗୋଟେ ଅଗଣାଟିରେ ନାଉ ରଞ୍ଜା । ତଳକୁ ଝୁଲୁଚି ଗୋଟେ ବଡ଼ ଦଶ ବାରଟା ନାଉ । ଡେଙ୍ଗା ମଣିଷର ମୁଣ୍ଡ ବାଜିବ ରଞ୍ଜାରେ । ଦାଣ୍ଡ ଦୁଆରର ପିଣ୍ଡା ଉପରେ ଗୋକଳ । ପିଣ୍ଡାର ଗୋଟିଏ ପାଖକୁ ଗାଈ ବନ୍ଧାର ଖୁଣ୍ଟ । ହୁଏତ ଆଗେ ଗାଈ ବନ୍ଧା ହେଉଥିଲା ସେଠି । ବର୍ତ୍ତମାନ ଗୋବର ଲଣ୍ଡାଏ ଦେଖିବାକୁ ସେଠି ସପନ । ଘାସ ବା କୁଟାର ଗନ୍ଧ ମଧ୍ୟ ନାହିଁ । ଅନେକ ଦିନର ଲିପାପୋଛା ଜାଗା ।

ଗୋଟେ ରୋଷେଇ ଘରୁ କାଚ ଝୁମୁ ଝୁମୁ ଶୁଭିଲା କେବଳ । ଗୋକଳ ପୁଣି ଦେଲା ଡାକ ।

ବୋଉ, ବୋଉ, ଲୋ ବୋଉ...

ଗୋକଳ ଶୁଣିଲା ଇଏ ରତନର ପାଟି । ତେବେ ପାଟି ଭାସି ଆସିଲା ବାଡ଼ି ପଟୁ । ଚାଳରୁ ଧୂଆଁ ଉଠୁଚି, ରୋଷେଇ ଘରେ ବୋଧହୁଏ ରତନର ସ୍ତ୍ରୀ । ଯାନ୍ତୁ ଭିତରକୁ କୋଉଠିକି ଯାଇଚି ବୋଧହୁଏ ରତନର ମା । ଦୋ ଦୋ ପାଞ୍ଚ ହୋଇ ଗୋକଳ ପୁଣି ଡାକିବାକୁ ଲାଗିଲା । ଆଣ୍ଠୁରେ ହାତ ଭରା ଦେଇ, ନଇଁ ନଇଁ ବାଡ଼ିରୁ ଆସିଲା ରତନ ।

ମଲା, ଦେଖ ମୁଁ ତ ସେଯା ଅନୁମାନ କରୁଥିଲି । ମୁଁ କହୁଥିଲି ଆଉ ମତେ ଆସି ଡାକୁଚି କିଏ ? ଯମ ତ ଥୋବରା ହେଲାଣି ଆସି । କେମିତି ଏ ପ୍ରାଣ ରହିଚି କେଜାଣି ? ମଲା, ଠିଆ ହେଲ ଗୋକଳ ଭାଇ,...ଆଲୋ ବୋଉ କୁଆଡ଼େ ଗଲୁ କି । ଦେଇଯା, ଦେଇଯା, ଆଗଲୋ ତୁ ଦେଇଯା', ଖଣ୍ଡେ ପିଢ଼ା ଦେଇଯା ଏଠି...

କହି କହି ପାଖରେ ଯାଇଁ ପହଞ୍ଚିଲା ରତନ । ନାହିଁ, ନାହିଁ କହି ଗୋକଳ ବସିପଡ଼ିଲା ଭୂଇଁରେ । ଗୋକଳ ଅନେଇଲା ରତନକୁ । ରତନର ହାଡ଼ ଗଣି ହୋଇ ଯାଉଚି, ଅସ୍ୱାଭାବିକ ଚକ୍‌କଣ ଦିଶୁଚି ଚମ । ରତନ ବସି ପଡ଼ିଲା ।

ତମ ଶଣ ମୁଁ ଶୁଝି ପାରୁବନ ଗୋକଳ ଭାଇ । ବର୍ଷେ ହେଲା ଘରେ ରଇଲ, ସବୁ ବକ ଭାଙ୍ଗି ଖାଇ ସାଇଲଣି । ତାକୁ ସିନା ଡାକଲ, ସିଏ କଣ ଆଉ ବାହାରବ ପଦାକୁ କହୁଚ । ଦଶସିଆଁ କବାଟ ଖଣ୍ଡେ ଧିଏରେ । ମୁଁ ଏଥିରୁ ଉଧୁରେ ଆଗେ···ଯମ ଅହନ୍ତାକୁ ମଣିଷର ଅହନ୍ତା । ତମେ କେମିତି ଠିଆହେଲ ଗୋକଳ ଭାଇ ! ଓହୋ, ପାଣି ଓପରେ ତ ସର ପକେଇଦେଲ ତମେ । ନଇଲେ ଆଜ ଏ କବାଟ, ଚଉକାଠ କ ହେଁସ କତରା ବ ନଥାନ୍ତା ଘରେ । ତମେ ସତ ମଣିବ ନେଇ ଗୋକଳ ଭାଇ, ମୁଁ ଜମା କରଜ ଆଣିଥେଲି ତିନି ବରଷ ତଳେ ଦଶଟଙ୍କା । ଆଉ ଏ ତିନି ବର୍ଷ ଭିତରେ ମୁଁ ତିରଶ ଟଙ୍କା ଦେଇଥେବ । କାଇଁ, କୁଆଡ଼େ ଗଲା ସେ ଟଙ୍କା । ସେଥିରେ ପୁଣି ଘର କୋରଖି···

ଏହି ସମୟରେ ରତନର ମା ଆସି ପହଁଚଲା ସାହିରୁ · । ଷାଠିଏ ବର୍ଷର ବୁଢ଼ୀ । ଅଶୀବର୍ଷର ପ୍ରାଚୀନତା ତାହାର ଦେହରେ । ସମୁଦ୍ରର ସବୁ ତରଙ୍ଗ ଯାକ ଶୁଖି ଶୁଖି ସେନ୍ତରା ହେଇ ଯେମିତି ପାଲଟି ଯାଇଚ ତା'ର ଚମ । ଦେହରେ କବାଟ ଖଣ୍ଡକରେ ଖାଲି ଗଣ୍ଠି, ଅନେକ ଜାଗା ଫୁଟି ବିଶୁଚ ଦେହ ।

ଖାଲି ଗୋକଳକୁ ଅନେଇ ରହିଲା ବୁଢ଼ୀ । ତା'ପରେ ଭୂଇଁରେ ମୁଣ୍ଡ ବାଡ଼େଇ ବାଡ଼େଇ ସେ କହିଲା, "ହେ ମା ହେଙ୍ଗୁଳେଇ, ହେ ଗଛମୂଳ ମା, ତୁ ବୁଝିବୁ ତୁ ବୁଝିବୁ ।" ତାହାପରେ କାନ୍ଦ ପକେଇଲା ବୁଢ଼ୀ । ତାହାପରେ ଲୁହ ପୋଛି ପକେଇଲା । ତାହାପରେ ଚମକି ଉଠିଲା—"ପୁଅ, ତମକୁ କୁଆଡ଼େ ସିଏ ମାରଚ ?"

ଚମକି ଉଠିଲା ମଧ ଗୋକଳ । ତାପରେ ହସିଉଠିଲା ତାନେ । ହସିବା ଭିତରେ କୌଶଳରେ ସଜାଡ଼ି ନେଲା ମୁହଁର ଗାମୁଛାଟାକୁ ।

ମିଛ କଥା ମାଉସି ।

କନ୍ତୁ ମିଥ୍ୟାବାଦୀର ଭାଷା । ତେଜୋହୀନ ଗୋକଳର ସ୍ୱର । ବୁଢ଼ୀ ପୁଣି କହିବାକୁ ଲଗିଲା--

ଗୋଟାକୁ ବଟା ହଉଚ ମହନା ବୋଉ, ଆଉ ତୁ ମତେ ବାଁରଉଚୁ ପୁଅ । ସବୁ ଧରମ ଦେଖୁଚ, ତୁ ଆମର ଯା' କରଚୁ ପୁଅ ଏ ଦେଶ ଦୁନିଆରେ କେହି କରବ ନେଇ । ତତେ ପୁଣି ଭସିଆ ମାରୁଚ । ହଉ, ତୁ ବାଟରେ ଆମ ନାଗି ମାଡ଼ ଖାଇଲୁ !

ଆଖିରୁ ଲୁହ ପୋଛିଲା ବୁଢ଼ୀ । ଏହି ସମୟରେ ସ୍ୱର ବଦଳେଇ ପଚ୍ଚରିଲା ଗୋକଳ—

କଣ ପଥି ଦଉଚ ପୁଅକୁ ?

ଆଉର ପଚ୍ଚରୁଚୁ ପୁଅ । ପଥି ପାଉଥେଲେ ସିଏ ଆଉ ବଛଣାରେ ପଡ଼ିଥାନ୍ତା ଆଜଯାକେ । ମତେ ମରଣ ହଉ ନେଇ ଯେ, ମୁଁ ଏଇ ଅନୁଭୋଗ ବସି ଦେଖୁଚ । ଏତେ ହଇରଣ ଦେଖି ନାତିଟାକୁ ତ ଆସି ତା' ମାମୁଁ ଘର ନେଇ ଯାଇଚନ୍ତ । ଆଉ କଣ, ସବୁ ସରିଲଣି ପୁଅ, ସବୁ ସରିଲଣି । ପୁଷ୍ଟ ମାସରେ କୁହନ୍ତ କୁକୁର ହାଣ୍ଡିରେ ପେଜ···ଆମେ ମଣିଷ ତିନିଟା ଖାଲି କଲବଲ ହୋଇ ମରୁଚୁ । ଆରେ ପୁଅ, ଏ କବାଟ

ହଲକ ମଧ୍ୟ ନା'କ ନିଲାମରେ ନବ ବଲ ବଇଥେଲ, କଣକ୍ରା ନେଇ । ପୁଅ ମୋର ପଥି ଗଣ୍ଡା ହେଲେ ପା'ନ୍ତା···ଏ ମହନାକୁ ହେଲେ କୁହନ୍ତ ନେଇ !

ଗୋକଳକ ବୁଦ୍ଧି ଦେଖାଗଲ ।

ନିଲାମ ଦନ ମହନ୍ନ ଝଙ୍କା ଦେଇଥିଲ ମାଉସି । ମୁଁ ପାଇବ କୋଉଠୁ ? ଆଉ କବାଝ ଫବାଝ କା'କୁ ବକନା, ଏ ଝଙ୍କା ନିଅ ରଖ, ମହନ୍ନ ମା' ଯେମିତ୍ତ କିଛୁ ନ ଜାଣେ, କାହାକୁ କହିବ ନେଇଁ ମାଉସି···। ତମେ ଭଲ ହୋଇଯିବ ରତନ ଭାଇ ।

ଗୋକଳ ଠିଆ ହେଲ । ରତନ ସ୍ତବ୍ଧ ହେଇ ଗୃହିଁ ରହିଲ ଗୋକଳକ । ବୂଢ଼ୀର ରେଖାମୟ ମୁହଁ କେବଳ ଅଶ୍ରୁମୟ ହେବାକୁ ଲଗିଲ । ଗୋକଳ ପୁଣି କହିଲ—

କିଛୁ ଚନ୍ତା କରନା ମାଉସି, ମୁଁ ଅଛି···ମହନ୍ନ ଅଛି ଏ ଗାଁରେ···

କାହାର ମୁହଁରେ କଥା ନାହିଁ । ଗୋକଳ ଗ୍ଳଲଗଲ ମଧ ନିବାକ୍ ହେଇ । ଅତ୍ତ ଦରଦ୍ର, ତଥାପି ସେ ମଧ ଦାନ କର ପାରଚ ଆଜ । ଅନେକ ବେଳୁ ସେ ନିଜର ଦୁଃଖକୁ ଭୁଲ ଯାଉଥିଲ, ବର୍ତ୍ତମାନ ଭୁଲଗଲ ସିଏ ସମସ୍ତ ଅଶାନ୍ତିକ । ସେ କେବଳ ମନେ ମନେ ଭାବଲ, ତାର ଏଇ ମାଡ଼ ଖାଇବା ଭିତରେ କଣ ଏଇ ତିନ ପ୍ରାଣୀଙ୍କର ଦାନା ଜୁଟିବାର ବରାଦ ଥିଲ, ବରାଦ ଥିଲ ରତନର ପଥି !

ଅନେକ ବେଳ ପରେ ରତନ ବୋଉ କହିଲ ରତନକୁ, "ଆଉ ଅନଉଚୁ କଣ ପୁଅ, ଜୀବ ରଖିବାର କଥା । ଗୃଉଳ ସେରେ ଏ ଗାଁରେ କେହି ଉଧାର ଦେଲେ ନେଇଁ···କେମିତ୍ତ ସତ ବଳୁଚ ଏ ପୁଅର ? ଆରେ କେତେ ଝଙ୍କା ଇଏ ରତନ ?"

ଏପର୍ଯ୍ୟନ୍ତ ମଧ ରତନର ସ୍ତବ୍ଧତା ଭାଙ୍ଗିନ । କେବଳ ଆଖିରେ ସେ ଦେଖିଲ ମା' ହାତରେ ତା'ର କୋଡ଼ିଏ ଝଙ୍କା । ଜୀବନରେ ଅନେକ ଝଙ୍କା ସେ ଗଣିଚ । ଅବଖୁରାରେ ଅବଖୁରା ଝଙ୍କା ଧର ସେ କଲକତାରୁ ଫେରେ । ସେଇ ଅବଖୁରା ଖଣ୍ଡିକ ମଧ ଘରେ ତା'ର ଆଜ ନାହିଁ । ଖାଲ ମନେ ମନେ ସେ ଭାବଲ, କିଏ ଏଇ ଗୋକଳ ଭାଇ ? କୋଉଠି ଥିଲ ଆଜ ଯାକେ ? କାଇଁକି ସେ ରକ୍ଷା କରୁଚ ଆମକୁ ?

ହଠାତ୍ ଛିଡ଼ା ହେଇପଡ଼ିଲ ରତନ । ଯେମିତ୍ତ ସମସ୍ତ ରୋଗ ଆଉ ଦୁର୍ବଳତାରୁ ସେ ବର୍ତ୍ତମାନ ମୁକ୍ତ । ଅଗଣାରେ ବୁଲ ଗଲ ମଧ ଫେରାଏ । ତାହା ପରେ ଗୋଟାଏ ଜାଗାରେ ଛିଡ଼ା ହେଇ ଲଉ ଗୁଡ଼ିକ ଗଣିବାକୁ ଲଗିଲ । ଏକ ଦୁଇ କର ।

ସେ ପର୍ଯ୍ୟନ୍ତ ଜାଫର୍ ବସିଥାଏ ମହନ୍ନ ଘରେ । ବେଳ ହେବ ସେତେବେଳକୁ ଏଗାରଟା । ସେମାନଙ୍କ ଭିତରେ ପଡ଼ଥାଏ ବ୍ୟବସାୟ କଥା । କିନ୍ତୁ ମହନ୍ନ ବିଶେଷ ମନଯୋଗ ଦେଉ ନ ଥାଏ ସେଥିରେ । ଜାଫର୍ ସେ କଥା ମଧ ଧରପାରୁଚ । ସେଥିପାଇଁ ସେ ବେଶି ଗପିବାକୁ କରୁଚ ଚେଷ୍ଟା ।

ହଁ, ଓସ୍କା, ଆମର ଏଥର ଇଚ୍ଛା ପଡ଼ୁଚି । ଠିକ୍ ପାହାଡ଼ର ନାସି ତଳେ ଆମର ବନେଇବୁ କୋଠା । ଆଉରି ବି ଜାଗା ଅଛି ସେଠି ।

ମହନ୍ତି ଭାବିଲା, ଜାଗା କଣ ଖାଲି ପାହାଡ଼ ତଳେ, ନଈକୂଳେ ବି ତ ଅଛି, ହେଲେ ଏ ନଈ ଭଲ ଏ ଲୋକଗୁଡ଼ା ଭାରି ଅବିଶ୍ୱାସୀ । କଣ ଭାବି କହି ଉଠିଲା ମହନ୍ତି, "ବେଶି ଜାଗା ଅଛି ନା ସେଠି ?"

ଜାଫର୍ କଥାରେ ହସି, "ବହୁତ୍, କେତେ ଜାଗା ଚାହୁଁଚ ?"

ହସିଉଠିଲା ଏଥର ମହନ୍ତି । ନିଷ୍ପ୍ରଭ ହସ । ତାହା ପରେ ସେ କହିଲା, "ଆଜି ବୁଲି ଯିବା ଚାଲ କୁଆଡ଼େ ଓସ୍କା । ଚାଲିବାକୁ ବି ଭଲ ଲାଗିବ ନେଇଁ । ହଁ, ତମର ହୁଲରେ........"

ହଁ, ତମେ ଅନେକ ଦିନହେଲା ଆମ ଘରକୁ ଯାଉଁନା, ଲୟଲା ବି କେତେଥର ମତେ ପଚାରିଲାଣି ।

ସେମାନଙ୍କର ଆଳାପ ବନ୍ଦ ହୋଇଗଲା । ଦୂରରେ ଗୋକଳ । ପୂର୍ବର ଗୋକଳ ନୁହେଁ, ତାହାର ପ୍ରେତ ଯେମିତି ସେମାନଙ୍କ ଆଗରେ ପହଁଚିଲା । ଗୋକଳକୁ ଜାଫର୍ ଚିହ୍ନି ନ ଥିଲା । କିନ୍ତୁ ଗୋକଳ ଚିହ୍ନିଥିଲା ତାକୁ । ମାତ୍ର ପରିଚୟ ସେମାନଙ୍କର ନାହିଁ । ଦେଖିବା କ୍ଷଣି ଜାଫର୍ ଜାଣି ପାରିଲା ସେଇ ଗୋକଳ ସିଂ । ମୁହଁରୁ ଗାମୁଛା କାଢ଼ି ଦେଲା ଗୋକଳ । ଆଖିରେ ଜଳୀୟବାଷ୍ପର ଆର୍ଦ୍ରତା । ଗଣ୍ଡର ବିବର୍ଣ୍ଣତା ଅନେକ ଭାବରେ ଲିଭି ଯାଇଚି । କିନ୍ତୁ ଚେହେରାର ଅସ୍ୱାଭାବିକତା ଦୃଷ୍ଟିକି ପ୍ରତାରିତ କରି ପାରେନା ।

ସିଧା ସିଧା ଚାଲିଗଲା ଗୋକଳ ଘର ଭିତରକୁ । ଦାଣ୍ଡ ବଖରାର ଭୂଇଁ ଉପରେ ଗାମୁଛା ଖଣ୍ଡିକ ପାରି ସେ ଶୋଇପଡ଼ିଲା । ଯେଉଁ ଗାଳିରେ ତାହାର ଯନ୍ତ୍ରଣା, ତାହାକୁ ଭୂମିସଂଯୁକ୍ତ କରି ମୁଣ୍ଡତଳେ ସେ ଭରା ଦେଲା ବାହୁକୁ । ଆଖି ବୁଜୁ ବୁଜୁ ସେଠି ଚକା ପକେଇ ବସିଲା ବିକଳ ବୋଉ । ଚାଳିଶ ବର୍ଷର ମର୍ଦ୍ଦ ସେ, ବୟସ ସାଙ୍ଗରେ ଶଠତା କରି ସେ ଗ୍ରେରୁଦ୍ୟମାନ ହେବାକୁ ଉଚିତ ମନେ କଲାନି ।

କିଛି ସମୟ ପରେ ସେହି ଘରେ ପହଁଚି ଆସ୍ତେ ଆସ୍ତେ କବାଟ ଦେଇ ଦେଲା ଶ୍ରୀମଣି । ବୋଉ ତା'ର ଗାଧେଇ ଯାଇଚି ନଈକି । ବସିପଡ଼ିଲା ସେ ଗୋକଳ ଭାଇ ପାଖରେ ।

ତମେ ଭିଁଠାରେ ଶୋଇଲ ଗୋକଳଭାଇ !

ଧୀରେ ଆଖି ଖୋଲିଲା ଗୋକଳ । ଆଶ୍ଚର୍ଯ୍ୟ ହେଲା ଶ୍ରୀମଣିକି ଏତେ କତିରେ ଦେଖି । କିନ୍ତୁ ଗୋକଳ ଆଖି ଖୋଲିଲା ପରେ ଶ୍ରୀମଣି ଆଉ ବସି ପାରିଲାନି ପାଖରେ । ସେ ଠିଆ ହେଲା । ଦେହରେ ତାର ଷୋଳ ବର୍ଷର ବୋଝ । ଉଠେଇ ବଟେଇ ଦିଏନା । ନାରୀ-ପୁରୁଷର ଏଇ ବିବିକ୍ତତା ଭିତରେ ଈଷତ୍ ଚଞ୍ଚଳ ହୋଇ

ଉଠିଲି ଗୋକଳ । ଯାହାର ଉଚ୍ଛିଷ୍ଟ ସେ ଏପର୍ଯ୍ୟନ୍ତ ମଧ୍ୟ ଖାଏ, ଖୁବ୍ ସାନ ହେଲେ ମଧ୍ୟ, ତାହାର ସଦ୍ୟ ପ୍ରସାଦ ଧରେ ଶ୍ରୀମନ୍ତ । କିନ୍ତୁ ଉକ୍ତରେ ବୟସ ମିଶିଚ, ବ୍ୟଥା ଓ ଅତ୍ୟାଗ୍ରହର ଯୋଗଫଳ ପୁଣି ସେଥିରେ, ସେଥିପାଇଁ ବିବ୍ରତ ହେଲେ ମଧ୍ୟ ବିଭ୍ରାନ୍ତ ହେଲି ନାହିଁ ଗୋକଳ । ପରନ୍ତୁ, ଯନ୍ତ୍ରଣା ଆଉ ଅପମାନକୁ ପୂର୍ଣ୍ଣ ଭାବରେ ଫେରି ପାଇଲି ସେ ଯେମିତି । ଖୁବ୍ ଲଜ୍ଜିତ ଏବଂ ସଙ୍କୁଚିତ ହୋଇ ଉଠିଲି ସେ ।

ଆଉ କଣ କହିବାକୁ ଥିଲି ଗୋକଳ ଭାଇକ ସବୁ ଭୁଲିଗଲି ବର୍ତ୍ତମାନ ଶ୍ରୀମନ୍ତ । ପଅର ଦିନର ଗୋକଳ ଭାଇକ ସିଏ ଖୋଜିବାକୁ ଲାଗୁଥାଏ ଖାଲି—ଯେଉଁ ଗୋକଳ ଭାଇ ହାତକୁ ସେ ବଢ଼େଇ ଦେଇଥିଲି ଠେଙ୍ଗା ।

କଣ କହିବେ ନୂଆ ବୋଉ ?

ଶ୍ରୀମନ୍ତର ମୁହଁ ଉପରେ ଆଖି ରଖିଲି ଗୋକଳ । ସେଥିରେ ଯେମିତି ଗୋଟିଏ ପ୍ରଶ୍ନ । କୋଉ କଥା । ଶ୍ରୀମନ୍ତ ମଧ୍ୟ ଚାହିଁଲି ଗୋକଳକ । ତାହା ପରେ ସେ କହିଲି, ସ୍ୱରରେ କେବଳ ନମ୍ରତା ଆଉ କାରୁଣ୍ୟ ଆଉ ସହାନୁଭୂତି ।

ତମେ କାହିଁକ ମାଡ଼ ଖାଇବ ଆମ ନାଗି ? ଘରୁ କଣ ତମେ ଆଜ ମାଡ଼ ଖାଇବାକୁ ବାହାରିଥେଲ !

ତାହାପରେ ସେ ଯାଇଁ ସଶବ୍ଦରେ କବାଟ ଖୋଲିଦେଲି । ପଦାକୁ ଟିକେ ଚାହିଁ ଦେଇ ଦୁଲ୍ ଦୁଲ୍ ଫେରିଗଲି ଖଞ୍ଜା ଭିତରକୁ । ଖଞ୍ଜା ଭିତରୁ ସେ ଭାଇକ ଡାକ ଦେଲି ଗାଧେଇ ଯିବାଲାଗି ।

ବସ୍ଥିତି ଉପରେ ସ୍ଥିତି ତାଳ ଦେଇ ଚାଲିଯାଇଥିଲି ଶ୍ରୀମନ୍ତ । ସେଥିରେ ସତେଜ ହେଇ ଉଠିଥିଲି ଗୋକଳର କ୍ଷତ । ଉଠିଥିଲି ନୂତନ ବାଷ୍ପ ଆଖିରେ । ମହନି ଘର ଭିତରକୁ ପଶି ଭେଟିଲି ନୂତନ ଗୋକଳକ । ପଛେ ପଛେ ଜାଫର୍ ମଧ୍ୟ ଆସିଥିଲି । ଠେଙ୍ଗାକୁ ଉଠେଇ ନେଇ ତାକୁ ଠୁକେଇ ଠୁକେଇ କହିଲି ଜାଫର୍—

ଏଇ ଲାଠି ତମେ ହାତରେ ନେଇଥିଲ ଗୋକଳ ଭାଇ ?

କଥା ଶୁଣି ଶ୍ରୀମନ୍ତ ଦୁଆର ମୁହଁକୁ ଚାଲିଆସି କହିଲି, 'ଖାଲି କଥା କହି ଆସେ, ନା ଆଉ କିଛି । କେତେ ଟଙ୍କା ତମେ ଖର୍ଚ୍ଚ କରିଥାନ୍ତ ଆଜ, ଗୋକଳ ଭାଇ ମାଡ଼ ମାରି ଆସିଥିଲେ କହିଲ ?'

ପ୍ରତ୍ୟେକ ପ୍ରତ୍ୟେକକୁ ଚାହିଁଲେ କ୍ଷଣକ ପାଇଁ । ପରେ ସମସ୍ତେ ଚାହିଁଲେ ଶ୍ରୀମନ୍ତକ । ହସିବାପାଇଁ ବ୍ୟର୍ଥ ପ୍ରୟାସ କରି ପୁଣି ସ୍ୱାଭାବିକ ସ୍ୱରରେ କହିଲି ଶ୍ରୀମନ୍ତ—

କେତେ ଟଙ୍କା ଖର୍ଚ୍ଚ କରିଥାନ୍ତ ଜାଫର୍ ଭାଇ ?

ତହବିଲ୍ ଦେଖି ତହିଁରୁ ଖର୍ଚ୍ଚର ବଜେଟ୍ କରିବାକୁ ଯେମିତି ସମୟ ଲାଗିଲି ଜାଫର୍‌କୁ । ଏଥିପାଇଁ ଅଧିକ ସମୟ ଅପେକ୍ଷା କରି ନ ପାରି ହସିଉଠିଲି ଶ୍ରୀମନ୍ତ । କିନ୍ତୁ ଅସହିଷ୍ଣୁ ହୋଇଉଠିଲି ଗୋକଳ ।

ଠିଆହୋଇ ପଡ଼ିଲି ସେ । ଜାଫର୍ ହାତରୁ ଠେଙ୍ଗାଟା ଛଡ଼େଇ ନେଇ ତଳେ ଦିଥର ଠୁକେଇ ଦେଲି । ଗମ୍ଭୀର କଣ୍ଠରେ ସେ ଉଚ୍ଛନ୍ନ ହେଇ କହିଉଠିଲି—

'ଶିଶୁ... ' । ତାହା ପରେ ପୁଣି ଗୋକଳ କହିଲା, 'ଟଙ୍କା ପଇସାର ଉତ୍ସ ନାଇଁ ଏଠି ଭଉଣୀ । ତୁ ଦେଇଚୁ ଏ ଠେଙ୍ଗା ଖଣ୍ଡକ ମତେ । ତା' ଖାଲି ମହମ୍ମଦଙ୍କ ରକ୍ଷା କରିବା ଲାଗି । ସେଇ ଠେଙ୍ଗାରେ ମହମ୍ମଦଙ୍କ ମୁଁ ନଷ୍ଟକରି ଦେଇ ଆସିଥାନ୍ତି କେମିତି ?'

ଗୋକଳ ଶାସ୍ତ୍ର !

ଜାଫରର ସମ୍ବୋଧନ । ନାରୀଙ୍କ ଗୃହାଣୀ ଗୋକଳର ଆଖିରେ । ମହମ୍ମଦ ଅସମ୍ଭାଳ ହୋଇ କୁଣ୍ଢେଇ ପକେଇଲା ଗୋକଳଙ୍କ । ଉଭୟଙ୍କ ଆଖିରେ ଅଶ୍ରୁ ।

'ତମେ ମୋ ଲାଗି ମାଡ଼ ଖାଇ ପାରିଲ ଗୋକଳ ଭାଇ !!,

ଗୋକଳର କଣ୍ଠ ଯେମିତି ବେଶି ବେଶି ଦରଜ ହେଇଯାଉଚି । ଚେଷ୍ଟାକରି ଅତି କଷ୍ଟରେ ସେ କହିଲା, "କଣ କହିଥାନ୍ତା ମତେ ବକଲ ବୋଉ, ତୁ ଆଜ ମାଡ଼ ଖାଇଥେଲେ.........

ଏଥିରେ ଆହୁରି ଭାଙ୍ଗି ପଡ଼ିଲା ମହମ୍ମଦ । ନୂଆବୋଉ କଣ ଭାବବେ ମତେ । ଗୋକଳ ଭାଇଙ୍କି ମାଡ଼ ଖୋଇଚି ମୁଁ ଏଠିକି ଆଣି । ସେ ଆହୁରି ଜୋର୍‌ରେ କୁଣ୍ଢେଇ ଧରିଲା ଗୋକଳଙ୍କ ।

ଶ୍ରୀମନ୍ତ ଆଉ ଜାଫର୍ ଚାହିଁଲେ ପରସ୍ପରକୁ । ଆଖିରେ ତାଙ୍କର ନୂତନ ଜଗତର ସ୍ୱର୍ଣ୍ଣ ।

———

ରଚନା କାଳ
୧୯୪୫ ଜୁଲାଇ

ଶୂର-ସୁଧୀ-ସାଧୁ ସହ୍ବଦ୍-ସୈନିକ-ପୁଣ୍ୟବ୍ରଜେ
ବନ-ସ୍ଥଳ-ତଟ-ପ୍ରାନ୍ତର ଯା'ର ପବିତ୍ରିତ,
କାବ୍ୟ କାହାଣୀ ମାଡ଼ି ରଚିଲ ଯା କୋମଳ ରଙ୍ଗେ
ହୃଦେ ଧରି ଶତ କୀର୍ତ୍ତିତ ସ୍ମୃତି ସୁଚିହ୍ନିତ,
ନିଶ୍ୱାସ ମୋର ଖେଳିଲା ପ୍ରଥମେ ଯାହାର ବାତେ
ବିଶ୍ୱାସ ମୋର ଯେଉଁ ମାଟି ପରେ ରହିଛି ଘୋର,
ସେହି କୁସୁପୁର ତୀର୍ଥଭୂମିର ତରୁଣ ହାତେ
ଅର୍ପିଲି ଏହି ତନୁ-ତାରୁଣ୍ୟ-ସ୍ୱପ୍ନ ମୋର ।

ଆଚ୍ଛା, ଆଗର ପୋଷାକରେ ନା ଏଥିରେ, କେଉଁଥିରେ ମତେ ବେଶି ଭଲ ଦେଖାଏ ?

ମହେଶ ସେତେବେଳକୁ ଅନ୍ୟମନସ୍କ ହୋଇଥିଲା । ଝରକାବାଟେ ବାହାରକୁ ଅନାଇ ସେ ଦେଖୁଥିଲା—ଏଇ ସାଦା ଆକାଶ ଦେହରେ କେଉଁଠି ଥିଲା ଏତେ ପାଣି; ଅଧଘଣ୍ଟା ହେଲା ବର୍ଷୁଚି, ତଥାପି ମଧ୍ୟ ବିରାମ ନାହିଁ ।

ତରୁଣୀର ପ୍ରଶ୍ନରେ ସେ ବୁଲିପଡ଼ି ଅନେଇଲା, ପୂର୍ବର ସେହି ତରୁଣୀ ଆଉ ନାହିଁ । ସେ ଯେମିତି ଥିଲା ଗଛ ଦେହରେ ଗୋଲାପ । ଏ ଯେମିତି ଗୋଟିଏ ଅନାବୃତ ପୁଷ୍ପ । ଗଛରୁ ମାଳି ତୋଳି ଆଣି ଟେବୁଲ ଉପରେ ଥୋଇଛି । ତାର ପୂର୍ବରୁ ସେହି ସ୍ଲିଭଲେସ୍ ବ୍ଲାଉସ୍ ଯେଉଁଟିକି ତାହାର ସୁଗୋଲ ବାହୁ ଦୁଇଟିକୁ ଖୁବ୍ ସ୍ୱଚ୍ଛ ଭାବରେ ଆଖି ଆଗରେ ଦେଖାଇ ଦେଉଥିଲା, ତାହା ମଧ୍ୟ ନାହିଁ । ଚନ୍ଦନା ରଙ୍ଗର ସେହି ଗାଙ୍ଗ୍ ସିଲ୍‌କ୍ ଶାଢ଼ୀଟା ମଧ୍ୟ ଉଭେଇ ଯାଇଚି । ଏ ଯେମିତି ଦିଶୁଚି, ସୂର୍ଯ୍ୟ ଆଗରେ ଅତି ପାତଳା ମେଘର ସୌନ୍ଦର୍ଯ୍ୟ । ସୂର୍ଯ୍ୟ ଓ ମେଘ ଉଭୟେ ଉଭୟର ଅସ୍ତିତ୍ୱ ଖୁବ୍ ଭଲଭାବରେ ପ୍ରକାଶ କରି ପାରୁଛନ୍ତି ଯେମିତି । ତରୁଣୀଟି ପିନ୍ଧିଚି ଖଣ୍ଡେ ପାତଳା ଫିକା ସ୍କାର୍ଲେଟ୍ ରଙ୍ଗର ଶାଢ଼ୀ । ପରିପୂର୍ଣ୍ଣ ଯୌବନର ପ୍ରତି ଅଙ୍ଗରେଖାଟି ସେହି କ୍ଷୀଣ ଆବରଣ ଭେଦକରି ଆଖି ଆଗରେ ପରିସ୍ଫୁଟ ହୋଇଉଠୁଚି । ତାର ସେହି ରିମ୍‌ଲେସ୍ ଚଷମାଟି ମଧ୍ୟ ଦୂର ହୋଇଚି । ମୁଣ୍ଡର ହାଲ୍‌କା ଖୋସାଟି ରୂପାନ୍ତରିତ ହୋଇଚି ମୁକ୍ତକୁନ୍ତଳରେ । ମୁଖରେ ଏକ ଅପୂର୍ବ ହସ । କକ୍ଷ ସାରା ବିଚ୍ଛୁରିତ ଇଲେକ୍‌ଟ୍ରିକ୍ ଲାଇଟ୍ ।

ତାର ସେହି ପ୍ରଜାପତିର ଡେଣାଭଳି କଳାରଙ୍ଗର ଆଖିପତାର ତଳେ ଲାଲରଙ୍ଗ ଓଠର ମଧ୍ୟବର୍ତ୍ତୀ ଶ୍ୱେତ ଶ୍ୱେତ ଦାନ୍ତଗୁଡ଼ିକର ଅନିର୍ବଚନୀୟ ଲଘୁ ହସର ଶୋଭାପାଇଁ ଯେକୌଣସି ଲୋକ ମଧ୍ୟ ମରଣକୁ ଭୟ କରିବ ନାହିଁ ।

ତରୁଣୀଟିକୁ ଚାହିଁ ମହେଶ ଯେପରି ନିର୍ବାକ ନିସ୍ପନ୍ଦ ହୋଇଯାଇଥିଲା । ପ୍ରଶ୍ନର ଉତ୍ତର ଦେବାରେ ତାର ଡେରି ହୋଇଯାଇଥିବା ମନେକରି ସେ ହଠାତ୍ କହିପକାଇଲା, 'ଏଇଥିରେ' ।

ଏତେବେଳଯାଏ ସାଜସୁଜ ହେଇ ବସି ବଡ କଷ୍ଟ ହଉଥିଲା, ଏଇଥର ଆରାମ ମିଳିଲା·········'ଆଚ୍ଛା, ଟିକେ ଚାହା ଖାଇଲେ ହୁଅନ୍ତା ନାହିଁ ? ଏତେ ବର୍ଷା, ଏଡ଼େ ଥଣ୍ଡା, ତା'ପରେ ପୁଣି ଆପଣ ବର୍ଷା ଖାଇଛନ୍ତି । କପେ ଗରମ୍ ଚା' ଖୁବ୍ ତାଜା କରିଦେବ ଆପଣଙ୍କୁ···ଏ ମୋହନଲାଲ୍ !···'

କହିଲା ଏତକ ତରୁଣୀ ।

ମହେଶ ଭୟଙ୍କର ଚା' ଖୋର । କିନ୍ତୁ କାହିଁକି କେଜାଣି ସେ ହଠାତ୍ ଚିତ୍କାର କରି କହିଉଠିଲା, 'ନା, ନା, ମୁଁ ଚା ଖାଇବି ନାହିଁ ! ରାତି ଦଶଟାରେ ଚା ଖାଇବା ମୋର ଅଭ୍ୟାସ ନାହିଁ, କ୍ଷମା କରନ୍ତୁ ମତେ, ମ୍ୟାଡାମ୍ ।'

ଖିଲ୍ ଖିଲ୍ ହୋଇ ହସିଉଠି ତରୁଣୀଟି ଭୁବନ କମ୍ପାଇଦେବାକୁ ଲାଗିଲା । ଏତେ ହସର କାରଣ ମହେଶ କିଛି ବୁଝି ପାରିଲା ନାହିଁ । ସେ ଭାବିଲା, ତାର କହିଥିବା କଥାକୁ ; ଭୁଲ୍ ସେଥିରେ କେଉଁଠାରେ ଆଉ ହେଲା !

ତରୁଣୀ ହସରି ଗତି କମାଇ କମାଉ କହିଲା, 'ମ୍ୟାଡ଼ାମ୍, ମ୍ୟାଡ଼ାମ୍, ସାର୍, ଚାର୍‌ମିଂ ! କିନ୍ତୁ ମୁଁ ଜଣେ ମ୍ୟାଡାମ୍ ନୁହେଁ ସାର୍ ! ଖାଲି ମିସ୍ ସିପ୍ରା ।' ହଠାତ୍ ସ୍ୱର ପରିବର୍ତ୍ତନ କରି ପୁଣି ସେ କହିଲା, 'ସିଗ୍ରେଟ୍‌ରେ କିଛି ଆପତ୍ତି ଅଛି କି ?'

'କିଛି ଭାବନ୍ତୁ ନାହିଁ । ମୋ ପାଖରେ ଅନେକ ଅଛି, ମୁଁ ଖାଉଚି'— କହି ମହେଶ ପକେଟରୁ ସିଗାରେଟ୍ କେଶ୍ ବାହାର କରି ସିଗାରେଟ୍‌ରେ ନିଆଁ ଲଗାଇଲା ।

'ତା'ହେଲେ ଆପଣ ଏଇ ସ୍ଥାନରେ ବସି, ଏହି ଜାଗାଟାକୁ ପୂରାପୂରି ଅସ୍ୱୀକାର କରିବାକୁ ଚାହାନ୍ତି, ଯେପରି କାଲି ଆଜିର ଏତେବଡ ଏହି ବର୍ଷାକୁ ।'

ସିପ୍ରାର ଏହି କଥାରେ ମହେଶ ଖୁବ୍ ଲଜ୍ଜିତ ହୋଇଗଲା ଏକାବେଳକେ । ତା' ମୁହଁର ସିଗାରେଟର ଧୂଆଁ ସେହି କୋଠରିର ବାୟୁମଣ୍ଡଳରେ କୁଣ୍ଡଳୀ ଖାଇ ଉଠୁଛି, ଆଉ ତାର ଅନ୍ତରରେ ସିପ୍ରାର ସେହି କଥାଗୁଡ଼ିକର କୁଣ୍ଡଳୀ ।

ପରିସ୍ଥିତିକୁ ଖୁବ ଲଘୁ କରିଦେଇ ସିପ୍ରାର ସ୍ୱର ପୁଣି ଶୁଣାଗଲା – 'ଆପଣ ଆଜି ମୋର ଅତିଥି, ମୋର ଗୀତଟିଏ ନିଶ୍ଚୟ ଆପଣଙ୍କୁ ଶୁଣିବାକୁ ହବ ।'

ମହେଶର ଉତ୍ତରକୁ ଅପେକ୍ଷା ନ କରି ସିପ୍ରା ଯାଇଁ ତାର ବାକ୍ସ ହାରମୋନିୟମ୍‌ଟି ନେଇଆସି ତଳର ପାର୍ସିୟାନ୍ କାର୍ପେଟ ଉପରେ ବସି ଗାଇବାକୁ ଲାଗିଲା । ତାର ତନୁର ବସନ ସେତେବେଳକୁ ଅନେକାଂଶରେ ଅସମ୍ବୃତା । କ୍ଷୀନ-ବସନର ଅନ୍ତରାଳରୁ ଯେଉଁ ତନୁର ସୁଷମା ମହେଶର ଆଖିରେ ସ୍ୱପ୍ନର ବୀଜ ବୁଣି ଯାଉଥିଲା, ଦେହର କେତେକାଂଶରୁ ତାହା ଅନ୍ତର୍ହିତ ହୋଇ କେବଳ ତାହାର ଆଖିର ନୁହେଁ, ସାରା ଦେହରେ ତାର ଯେପରି ଅନଳ ଲଗାଇଦେଲା । ମହେଶ ନିସ୍ପନ୍ଦ ।

କେତେବେଳକେ ତାର ବୋଧଶକ୍ତି ଫେରିଆସିଲା । ସେ ଶୁଣିଲା ସିପ୍ରା ଗୀତ ଗାଉଛି । ସେତେବେଳକୁ ମହେଶ ବସିଥିବା କାଉଚ୍‌ରୁ ଓହ୍ଲାଇ ଆସି କାର୍ପେଟ ଉପରେ ସିପ୍ରାର ଖୁବ୍ ନିକଟରେ ବସିସାରିଛି । ସେ ଶୁଣିଲା, ବାହାରେ ଝମ ଝମ ବର୍ଷା, ଘରେ ସିପ୍ରା ଗୀତ ଗାଉଚି—

ଶ୍ରାବଣର ଘନ ବରଷାରେ
ଅତିଥି ଆଗତ ମୋର ଦ୍ୱାରେ,
ମୋର ମର୍ମଲୀନ ଗୋପନ ଅନୁରାଗ,
ଆଜ ଜାଗ—
ଜାଗ କଦମ୍ବ କେଶର ସମ
ମନୋରମ ।
ଏହି ଯୂଥିକାର ଗନ୍ଧ ପରି
ଜାଗ ସାରା ଅନ୍ତର ଶିହରି ।
ସମ ବନ ବୀଥିକା
ବହି ମେଘ-ଜୈନ-ଟୀକା,
ଲାଜ ସଙ୍କୋଚ କରି ପରିତ୍ୟାଗ
ଏହି ପୂର୍ବ ପବନ ସମ ଜାଗ—
ମର୍ମଲୀନ ଗୋପନ ଅନୁରାଗ ।

ମେହେଶର ମନେ ହେଲା ଏ ଯେପରି ମାୟା, ଇନ୍ଦ୍ରଜାଲ । ଯେପରି କେଉଁ କଳ୍ପଲୋକର ସ୍ୱପ୍ନରାଜ୍ୟରେ ସେ ଭାସି ବୁଲୁଚି । ହଠାତ୍ ହାରମୋନିୟମର ରିଡଗୁଡ଼ାକ ଅସ୍ୱାଭାବିକ ଶବ୍ଦ କଲା । ସିପ୍ରାର ଗାନ ହଠାତ୍ ବନ୍ଦ ହୋଇଗଲା ।

ମହେଶ ବୁଝିପାରିଲା ସେ କଣ ଧରିବାକୁ ଆସି ହାତ ପକାଇଚି ହାରମୋନିୟମର ରିଡ ଉପରେ । ସିପ୍ରା ତାର ହାତକୁ ସେଠାରୁ ଧୀରେ ଉଠାଇ ନେଲା । ମେହେଶ ବହ୍ୱଳ । ତାର ଅବିବାହିତ ଜୀବନରେ ଏହି ତାର ଯୁବତୀ ଅଙ୍ଗର ପ୍ରଥମ ସ୍ପର୍ଶ । ସିପ୍ରା ହାତରୁ ସେ ତାର ହାତ ଆଉ ଛଡ଼ାଇ ନେଇପାରିଲା ନାହିଁ ।

ସିପ୍ରା ପଚାରିଲା, "କିଦ ଲାଗୁଚି ସାର ?"

ଲଜ୍ଜାରକ୍ତ ମୁଖରେ ହସ ଫୁଟାଇ ମହେଶ କହିଲା, "ମତେ ସାର୍ ଡାକବେ ନାଇଁ, ମୋ ନାଁ ମହେଶ ।"

"ଅଚ୍ଛା ମହେଶ ବାବୁ, ମୋ ନାଁ କଣ କହିଲେ ?"—

"ଆପଣଙ୍କ ନାଁ…ସିପ୍ରା, ନା, ନା, ଶ୍ରୀମତୀ ସିପ୍ରା ଦେବୀ ।"

"ଭୁଲ, ଆପଣ ଭୁଲ ଯାଇଚନ୍ତି ସାର୍ । ମୋ ନା ମିସ୍ ସିପ୍ରା, ଦୋ'ଟି ପଦ, ଚାରୋଟି ଅକ୍ଷର । ଆହୁରି ମଧ୍ୟ କମାଇ ଦିଆଯାଇ ପାରେ ।"

ଘରଠର ପୂର୍ବାଞ୍ଚଳ ଭ୍ରମଣ କରି ସେ ତିନି ଚାରି ଦିନ ହେବ ବମ୍ବେରେ ପହଞ୍ଚିଛି । ମହେଶ ଜଣେ ଅଲ୍ ଇଣ୍ଡିଆ ଟୁରିଷ୍ଟ୍ ବର୍ତ୍ତମାନ । ଘର ତାର ଓଡ଼ିଶାର କଟକ ଜିଲ୍ଲାରେ । ବମ୍ବେରେ ପହଞ୍ଚି ସେ ସ୍ଲିଟର ରୋଡ୍‌ରେ ତାର ଜଣେ ବନ୍ଧୁଙ୍କ ଘରେ ନେଇଛି ଆଶ୍ରୟ । ସେ ଦିନ ସେ ବାଟରେ ଫେରୁ ଫେରୁ ପ୍ରବଳ ବୃଷ୍ଟି ଯୋଗୁ ଅଗତ୍ୟା ସିପ୍ରାର ଘର ଦ୍ୱାରରେ କ୍ଷଣକ ପାଇଁ ଆଶ୍ରୟ ନେଇଥିଲା । ତା'ପରେ ସେ ପଡ଼ିଲା ସିପ୍ରାର ଦୃଷ୍ଟିରେ । ସିପ୍ରା ସହିତ ହେଲା ତାର ସାକ୍ଷାତ୍, ତାହାକୁ ପରିଚୟ କୁହାଯାଇ ନ ପାରେ । ତଥାପି ବନ୍ଧୁତା କୁହାଯାଇପାରିବ । ମହେଶ ତହିଁଆର ଦିନ ସକାଳୁ ଫେରିଲା ବସାକୁ । ତାର ବନ୍ଧୁ ବିପିନ୍ ରାତିସାରା ତା ପାଇଁ ଭାବିତ ଥିଲା, ମାତ୍ର ତାର ବେପରୁଆ ଟୁରିଷ୍ଟ୍ ଜୀବନ ଉପରେ ନିର୍ଭର କରି ଆଉ କିଛି ଅନିଷ୍ଟ ଆଶଙ୍କା ନ କରି ସେହିପରି ରାତିଟି କାଟିଦେଲା । ସକାଳେ ସେ ମହେଶକୁ ଦେଖି ପଚାରିଲା, 'କିରେ, କାଲି ରାତିରେ ତୁ କେଉଁଠି ଥିଲୁ କି ? ଟିକେ ମତେ ଖବର ଦେଲୁ ନାଇଁ ?'

ମହେଶ କିଛି ଉତ୍ତର ଦେଇପାରିଲା ନାହିଁ ହଠାତ୍ । ଟିକେ ଭାବି ଚିନ୍ତି ସେ କହିଲା – 'ଥିଲି ଗୋଟା ଜାଗାରେ, ଜଣେ ଭଦ୍ରଲୋକଙ୍କ ଘରେ ।'

'ବାଃ ଇମିତି ଭଦ୍ରଲୋକ ତୁ କେଉଁଠୁ ଏଠୁ ପାଇଲୁ ମ ?' କହିଲା ବିପିନ୍ ।

'ଟୁରିଷ୍ଟ୍‌ମାନେ ଯେଉଁଠିକି ଯାଆନ୍ତି, ସେଠି ସେମାନେ ନିଜର ଆଶ୍ରୟ ତିଆରି କରିନିଅନ୍ତି । ଆଡ୍‌ଭୋକେଟ୍ ଗୈପ୍ରା କଣ ଜଣେ ଭଦ୍ରଲୋକ ନୁହନ୍ତି ?'

'ଓ, ଆଇ ସି, ଦେନ୍ ୟୁ ହ୍ୟାଡ୍ ଟୁ ଡାଇନ୍ ଉଇଥ୍ ଦି ଆଡ୍‌ଭୋକେଟ୍ ଜେନେରାଲ ଅଫ୍ ବମ୍ବେ ! ବ୍ରାଭୋ ! ଭେରି ଲକ୍‌କି ୟୁ ଆର୍ !' କହି ବିପିନ୍ ଆସି ମହେଶର ହ୍ୟାଣ୍ଡ ସେକ୍ କଲା ଜୋରରେ ।

ମହେଶର ଭାବାନ୍ତର ହେଲା । ତାର ମନେ ହେଲା, କାଲି ରାତିରେ ତାର ଏହି ହାତକୁ ଧରିଥିଲା ଗୋଟିଏ ଆଞ୍ଜେଲ୍ । ଦେହସାରା ତାର ରୋମାଞ୍ଚ ହୋଇଗଲା ପୁଣି । ସେ ଭାବିଲା, ବାସ୍ତବିକ ସେ ଲକ୍‌କି—ସେ ଭାଗ୍ୟବାନ ।

ଏହାପରେ ମହେଶ ତାର କୋଠରୀକୁ ଯାଇ ଡାଏରୀ ଲେଖିବସିଲା । ପାଞ୍ଚ ମିନିଟ୍ ପରେ ଚାକର ଆସି ଚା ଦେଇଗଲା । ଚା'ରେ ଗୋଟାଏ ଚୁମା ଦେଇ ମହେଶ ଯେପରି ଆଶ୍ଚର୍ଯ୍ୟ ହୋଇଗଲା । ଏପରି ଭଲ ଚା' ସେ ଏଥିପୂର୍ବ କେବେଁ ଖାଇନାହିଁ ବୋଲି ତାର ମନେ ହେଲା । ସେ ଚାକରକୁ ଡାକିଲା, ମନିବ୍ୟାଗ୍‌ରୁ ଗୋଟା

ଟଙ୍କା ବାହାର କରି କହିଲା, 'ଲେ ଯାଓ ବକ୍‌ସିସ୍ । ଗ୍ଧ ଖୁବ୍ ଆଚ୍ଛା ହୁଆ ।' ହିନ୍ଦୁସ୍ଥାନୀ ଚାକର ସଲାମ୍ ଉପରେ ସଲାମ୍ ବଜେଇ ପଛେଇ ପଛେଇ କାଇଦା ଦସ୍ତୁର ମୁତାବକ ଘରୁ ବାହାରିଗଲା । ଦୂରରୁ ଥିକେ ମହେଶକୁ କୃତଜ୍ଞତାପୂର୍ଣ୍ଣ ଆଖିରେ ଅନେଇଲା, ମହେଶ ସେତେବେଳକୁ ଡାଏରୀରେ ମନ ଦେଇଛି । ସେ ଲେଖି ଯାଉଛି—ସେ କାଲି ଭେଟିଥିଲା ଗୋଟେ ଆଞ୍ଜେଲ୍ ଆଉ ସେ ହୋଇଥିଲା ତାର ଗେଷ୍ଟ୍—

ଲେଖୁ ଲେଖୁ ସେଠାରେ ସେହି ଚୌକିରେ ଟେବୁଲ୍ ଉପରେ ମୁଣ୍ଡ ରଖି କେତେବେଳେ ଶୋଇ ପଡ଼ିଛି ତାକୁ ଜଣା ନାହିଁ । କିଛି ସମୟ ପରେ ଚାକର ଆସି ଦ୍ୱାର ପାଖରେ ଡାକଦେଲା—

'ନା'ନ୍‌କା ଟାଇମ୍ ଆଖର୍ ହୋ ଯା'ତା ହୁଜୁର୍—'

ମହେଶର ତନ୍ଦ୍ରା ଭାଙ୍ଗିଗଲା, ସେ ପଚାରିଲା 'ବାବୁ କାହାଁ ହେ, ଭୋଲାନାଥ୍ ?'

'ସାହାବ ଆଫିସ୍ ଚଲା ଗିଆ ହଜୁର୍'—

ମହେଶ ଘଡ଼ିକୁ ଅନେଇଲା, ବାରଟା ବାଜିବା ଉପରେ । ସେ ଉଠି ତା'ର ଜାମା ଖୋଲୁ ଖୋଲୁ କହିଲା, 'ଅଭି ଆ' ଯାତା ହୁଁ—'

'ଜି ହୁଜର୍' କହି ଚାକର ସେଠାରୁ ଚାଲିଗଲା ।

ଠିକ୍ ଚାରିଟାବେଳେ କ୍ଷୌର ହୋଇ, ସୁଟ୍ ଲଗେଇ ମହେଶ ସହର ବୁଲି ବାହାରିଲା । ଯାଉଁ ଯାଉଁ ସେ ଭାବୁଥାଏ ସେ ଆଜି ସିପ୍ରା ଘରକୁ ଯିବ କି ନାହିଁ । ମନେ ମନେ ଠିକ୍ କଲା ସେ ଆଜି ଯିବ ନାହିଁ । ସିପ୍ରା ତା'ର କିଏ ? ସେଠାକୁ ସେ କାହିଁକି ଯିବ ? ତାର ଏହି ଟୁର୍ ପ୍ରୋଗ୍ରାମ୍ ଭିତରେ ସିପ୍ରା ଘରର ସ୍ଥାନ କେଉଁଠି ?···କିନ୍ତୁ ସିପ୍ରା କିଏ ? ଏହିଠାରେ ତାର ମନରେ ସମସ୍ୟା ଜାତ ହେଲା । ସେ ଭାବିଲା, ସିପ୍ରା ଏକାକୀ ଥାଏ । ଆଉ ତାର ଦରଓ୍ୱାନ୍, ହୁଏତ ଚାକରାଣୀ ଖାନସାମା କେହି ଅଛି । ମାତ୍ର ଏଡ଼େବଡ଼ ବମ୍ବେ ସହରରେ ଗୋଟିଏ ବାଳିକା ଏପରି ଏକାକୀ ରହିଛି କାହିଁକି ? ସିପ୍ରା କଣ କରେ ? ସେ ଚଳେ କିପରି ? ତାର ଅଭିଭାବକ ମୋର ପରି କଣ ତା ପାଇଁ ଅଜସ୍ର ଧନ ରଖିଦେଇ ଯାଇଛନ୍ତି ? ନା ଜଣେ ସ୍କୁଲ୍ ମିଷ୍ଟ୍ରେସ୍ ସେ ! ସିପ୍ରା ତ ଶିକ୍ଷିତା । ଜଣେ ଶିକ୍ଷିତା କ'ଣ ଏତେ ସାହସିକା ହୋଇପାରେ ? ସିପ୍ରା ବାସ୍ତବରେ କଣ ? ଗୋଟିଏ କଥା ଭାବିବା ପାଇଁ ମନ ତା'ର ଅତି ବିଦ୍ରୋହୀ ହୋଇ ଉଠିଲା, ତଥାପି ତା' ଭିତରେ କିଏ ପ୍ରତିଦ୍ୱନ୍ଦୀ ହୋଇ ଖୁବ୍ ଅସ୍ପଷ୍ଟଭାବରେ କହିଉଠିଲା, ସିପ୍ରା କଣ ବେଶ୍ୟା ?—ନା, ନା, ଏପରି ଶିକ୍ଷିତା, ଏଡ଼େ ଏଜୁକେଟେଡ୍ ଗାର୍ଲ କେଭେଁ ମିଛ ହୋଇପାରେ ନା ? ସିପ୍ରା—ସିପ୍ରା ଆଞ୍ଜେଲ୍, ସିପ୍ରା ସ୍ୱର୍ଗର ଦେବୀ ।

ମହେଶଙ୍କର ଏ କଥା ଶୁଣି ସିପ୍ରା ହସି ହସି କହିଲା—ପବନର ରୂପ ଠିକ୍ କରିବ, ଆଉ ପବନର ରୂପ ଅନୁଭବ କରିବ, ପବନର ରୂପ ଆଘ୍ରାଣ କରିବ, ଆଉ ପବନର ରୂପ ଭକ୍ଷଣ ବି କରିବ ?

ସାବାସ୍, ଏଇଆକୁ କହନ୍ତି ଯେ ସହଧର୍ମିଣୀ । ବୁଦ୍ଧି ହୁସିଆର ସିପ୍ରା, ଜୀବନରେ ଥରେ ହେଲେ ଲୁଣ, ତେଲ କଥା ନ ଉଠେ ଯେପରି ।—ମହେଶ ହସି ହସି ଆବ୍‌ଦାରର ସୁରରେ ଏହା କହିଲା ।

ସାଇକେଲ୍ ପାଇଁ କେହି କେବେ ପେଟ୍ରୋଲ୍ ଖରିଦ କରେ ମହେଶବାବୁ ?

ସିପ୍ରାର ଏ କଥା ଶୁଣି ମହେଶ ଖୁବ୍ ଖୁସି ହେଲା,—ସେ ଉତ୍ସାହିତ ହୋଇ କହିଲା—

କିନ୍ତୁ ସିପ୍ରା, ମଟର୍‌କାର୍‌କୁ ହାଓ୍ୟାଗାଡ଼ି କହି ଅନେକେ ଭାରି ଭୁଲ୍ କରିବସନ୍ତି ।

ସିପ୍ରା ଟିକେ ପ୍ରବୀଣତାର ଢଙ୍ଗ ଫୁଟାଇ କହିଲା—ସେଇଟା ଅଜଗରକୁ ପବନଭୁକ୍ କହିଲାପରି । କିନ୍ତୁ ଆପଣଙ୍କର ସେହି ଅନେକଙ୍କ ଭିତରେ ମୋ ନାଁ ନ ଲେଖନ୍ତି ଯେପରି । ତାଲିକାକୁ ମୁଁ ଖରିଦେବି ତା'ହେଲେ ।

ମହେଶ ହସି ହସି କହିଲା—ମତେ କ'ଣ ପାଗଳ ଭାବିଚ ସିପ୍ରା, ତମକୁ ଦେଖିବା ପାଇଁ ମୁଁ ଚଷମା କିଣିବାକୁ ଯିବି !

ସିପ୍ରା ଏଥରକବେଳେ ରହସ୍ୟ କରି କହି ଉଠିଲା—

କିନ୍ତୁ ଆଜି ଯେ ସବୁ ଫାଙ୍କ୍‌ତାଲରେ ଗଲିଚ୍ଛି ମହେଶବାବୁ !

ଓ, ତା' ହେଲେ ଗୋଟା ହତ୍ୟାକାଣ୍ଡ କରିବାକୁ ହେବ ।

ମହେଶ ଏ କଥାକୁ ଝିମେଇ ଝିମେଇ କହିଲା । ସିପ୍ରାର ଏହା ଅନୁସରଣ କରିବାପାଇଁ ସହଜ ହେଲା ନାହିଁ ଯେପରି । ସେ ବିସ୍ମୟ ଫୁଟାଇ କହିଲା ତାର ଭାଷାରେ···

ଆରେ, ତମକୁ ହତ୍ୟା ମଧ୍ୟ ଆସେ । କଣ ହାତରେ ନା କିଛି ହତିଆର ଅଛି ?

ମହେଶ ଟିକେ ଦମ୍ ନେଇ କହିଲା, ତାର ହତ୍ୟା ହାତରେ ବି ତ ହୁଏ, ହତିଆର ବି ଅଛି ।

ଏହା କହି ତାର ଦୃଷ୍ଟି ବୁଲେଇ ଆଣିଲା ଘରର ଗୁଡ଼ି ପାଖରେ । ତା ପରେ ଉତ୍ସୁକ ହୋଇ ପଚାରିଲା ସିପ୍ରାକୁ—ମୋର ଲଗେଜ୍ ହେରିକା କୋଉଠି ରହିଲା ସିପ୍ରା ? ରିଭଲ୍‌ଭର୍‌ଟା ଯେ ତା ଭିତରେ ଥିଲା !

—ଏଇଟା ଯେ ଶକୁନ୍ତଳାର ଆଶ୍ରମ ମହେଶବାବୁ, ଏଠି ଦୁଷ୍ମନ୍ତଙ୍କୁ ଧନୁର୍ବାଣ ତ୍ୟାଗ କରିବାକୁ ହେବ ।

ଓଠରେ ହସ, ଆଖିରେ ରହସ୍ୟ ପ୍ରକାଶ ପାଇଲା ସିପ୍ରାର । ଆଉ ମହେଶ ମଧ୍ୟ ତାର ଭଙ୍ଗୀର ନିର୍ବିକାର ଭାବ ଖେଳେଇ କହିଲା—

ତା ହେଲେ ଦୁଷ୍ମନ୍ତ ଆଗମ କରିବେ ଏଥରକ । ଆଉ ସେହି ଫାଙ୍କ୍‌ତାଳଟା ଶକୁନ୍ତଳାଙ୍କର ପଣତ ପଛରେ ଆତ୍ମଗୋପନ କରୁ ।

ବାବାରେ, ଏଡ଼େ ବଡ଼ ବୀର ତମେ ମହେଶବାବୁ, ମାଛି ମାରିବାକୁ ବନ୍ଧୁକ ଖୋଜୁଥିଲ ଏଇଥିଲାଗି ?

ମୁହଁକୁ ନିଜର କୋଳ ଆଡ଼କୁ ବଙ୍କେଇ, ଦୃଷ୍ଟିର ତୀର୍ଯ୍ୟକ ଗତି କରି ସିପ୍ରା ମହେଶକୁ ଚାହିଁ ଚାହିଁ ଏହା କହିଲା ।

ମହେଶ ବି ହାତକୁ କାଖତଳେ ଜାକି ଅବଶୋଷ ପ୍ରକାଶ କରି କହିଲା— ହଁ, ଗଳଭର୍ ପକ୍ଷରେ ଯାହା ମାଛି, ବାମନ ପକ୍ଷରେ ସେଇଟା ତ ପୁଣି ହାତୀ ।

ହେଲା, ହେଲା, ଆଉ ଏତେ ଫାଙ୍କ୍‌ତାଳ କାଟ ନା, କୁହ ସେଇ ପବନର କଥା ।—ଗେଲେଇ ହୋଇ କହିଲା ସିପ୍ରା ।

କିନ୍ତୁ ମୋର ପ୍ରଶ୍ନ ଆଗେ, ସେଇ ହର୍‌ସ୍‌କାର୍ କଣ୍ଡକ୍ଟର୍ କଥା ।—କଥା କାଟି କହିଲା ମହେଶ ।

ଆଚ୍ଛା, ତମେ ଆଗ କୁହକ, ମୁଁ କହିବି ତା' ବାଦ । ମୀମାଂସାର ସ୍ୱରରେ ସିପ୍ରା କହିଲା ।

ମହେଶ ସଜାଡ଼ ହୋଇ ବସି ଖୁବ୍ ହାଲୁକାଭାବରେ କହିଲା, ଏ ତ ଅତି ସହଜ କଥା, ସିପ୍ରାର ସ୍ପର୍ଶରେ ମୁଁ ପାଏ ସିପ୍ରାର ରୂପ, ସିପ୍ରାର କଥାରୁ ମୁଁ ଦେଖିପାରେ ସିପ୍ରାର ଛବି, ସିପ୍ରାର ଶ୍ୱାସରେ ମୁଁ ପାଏ ସିପ୍ରାର ଗନ୍ଧ । ପବନର ରୂପ ବି ସେମିତି । ସକାଳ ପବନ, ସନ୍ଧ୍ୟା ପବନ, ହାତ ପଙ୍ଖା ପବନ, କଳ ପଙ୍ଖା ପବନ—ଏ କଣ ପବନର ରୂପ ବହନ କରେନା ସିପ୍ରା ?

ସିପ୍ରା ଖୁସିହୋଇ ତାହାକୁ ଆଚ୍ଛାଦନ କଲା ତାର ଅତୃପ୍ତିପୂର୍ଣ୍ଣ ବାକ୍ୟରେ—

ହଉ, ହଉ, ମୁଁ ମଧ୍ୟ ଏମିତି ଚୁମ୍ବକରେ ଉତ୍ତର ଦେବି ଯେ ।

ମହେଶ ହସି ହସି କହିଲା, ହଁ ମୁଁ ତ ସେୟା ଭାବେ ଯେ, ଆମେ ଭିଟାମିନ୍ ଖାଲି ନ ଖାଇ ଏତେ ସମସ୍ତ ନଷ୍ଟ କରୁଚେ କାହିଁକି ।···ତା ହେଲେ ତମର ଉତ୍ତର ?

ଅତି ସଂକ୍ଷିପ୍ତ—ସୁନ୍ଦର ଭବିଷ୍ୟତର ଏକ ଉଜ୍ଜ୍ୱଳ ଦିବସରେ ବସି ମଧ୍ୟ ତମର ବି ମନେ ପଡ଼ିପାରେ—ଅଭିଜାତର ଗୃହଲକ୍ଷ୍ମୀ ମୋର ସିପ୍ରା ଦିନେ ଥିଲା ଜଣେ ବେଶ୍ୟା ।

ସିପ୍ରା କହିଲା ଅଭିନୟର ଭଙ୍ଗୀରେ—ରହସ୍ୟ ମିଶାଇ ।

ବେଶ ତ, ମୁଁ ତ ସେୟା ଚାହେଁ । ମୁଁ ଏ ବିଷୟରେ ସଚେତନ ଯେ ମୁଁ ବମ୍ବେ ଉପକୂଳର ପବନରୁ ଗୋଟିଏ ରଙ୍ଗିନ୍ ବେଲୁନ୍ ପାଇଥିଲି, ଯାହାକୁ କି ଆଗରୁ କିଏ ଧରି ଉଡ଼େଇ ଦେଇଥିଲା । ପୁଣି ତମେ ମଧ୍ୟ କନ୍‌ସସ୍ ହେବା ଉଚିତ ଯେ, ଯେଉଁ ଦେଶରେ ତମର ଭାଷା ଅନୁଯାୟୀ ପୁରୁଷମାନେ ସୀତାଙ୍କୁ ନିଆଁରେ ଜୀଅନ୍ତା ପୋଡି-ଦେଇଥିଲେ, ତମେ ପୁନର୍ବାର ସେହି ଦେଶର ପୁରୁଷ ହାତରେ ତମର ଜୀବନ ଅର୍ପଣ କରିଛ ।

ମହେଶର ଏ କଥା ପରେ ସିପ୍ରା ଅସହିଷ୍ଣୁ ହୋଇ କହି ଉଠିଲା—ପାଃ, ତମେ ଭାରି ଦୁଷ୍ଟ ମହେଶବାବୁ, You cannot be a Markat !

ମହେଶ ଏ କଥାରେ ଚପଳ ଭଳି ହସି ଉଠିଲା । ସେ ହସି ହସି କହିଲା—ଉଚ୍ଚାରଣଟା ଭୁଲ୍ କଲ ସିପ୍ରା ! ୟୁ ମୁଁ ନଟ୍ ଗୋଇଙ୍ଗ୍ ଟୁ କ୍ରିଟିସାଇଜ୍ ଦ୍ୟାଟ୍ ଫେଲୋ ବଟ୍ ଦ ଲାଙ୍ଗୁଏଜ୍ । ଦେଖ ତ, ଏହି ଇଂରେଜୀ ଭାଷାକୁ, କେଡ଼େ ସୁନ୍ଦର ଶବ୍ଦ ଅଥଚ ସେଥିରେ ସେ ହେଲା ମର୍କଟ । ଏହି ମର୍କତ ଶବ୍ଦଟା ଆମ ଓଡ଼ିଶାର ଗୋଟା ବଡ଼ ସମ୍ପଦ ସିପ୍ରା । ଆମ କାଠଯୋଡ଼ୀର ପଥର ବନ୍ଧ ତୋଳାଥିଲେ ମର୍କତକେଶରୀ । ତମେ ମନେ କର ସିପ୍ରା, ଇଂରେଜୀରେ ଏହା ଲେଖା ହୋଇ ରହିବ, ଆଉ ତାହା ପଡ଼ିବ ପ୍ରେଗ୍‌ର ସଂସ୍କୃତଜ୍ଞ ପଣ୍ଡିତଙ୍କ ହାତରେ ଗବେଷଣା ପାଇଁ । କି ଅର୍ଥ ସେଥିରୁ ବାହାରିବ ! ହୁଏତ ସେମାନେ ପ୍ରମାଣ କରିବେ ମାଙ୍କଡ଼ ଓ ସଂହି ଆମର ସେହି ବିଖ୍ୟାତ ପଥର ବନ୍ଧକୁ ତିଆରି କରିଛନ୍ତି—ଯେମିତି ସମୁଦ୍ରରେ ବନ୍ଧ ବାନ୍ଧିଥିଲେ ମାଙ୍କଡ଼ମାନେ ରାମାୟଣ ଯୁଗରେ ।

ସିପ୍ରା ମଧ୍ୟ ଉଚ୍ଚହାସ୍ୟ କରି ଉଠିଲା ମହେଶର ଏହି କଥାରେ । ସେ ବିରକ୍ତ ହୋଇ ଯେପରି କହିଲା—

ନା, ଆମେ ଏ ଇଂରାଜୀ ଶବ୍ଦଗୁଡ଼ା ବ୍ୟବହାର କରିବାନି ! କାହିଁକି, ସଂସ୍କୃତ ବ୍ୟବହାର କଲେ କଥାରେ— !

ସଙ୍ଗେ ସଙ୍ଗେ କହି ଉଠିଲା ମହେଶ—ଆରେ, ଗଡ଼ସ୍ ଉଇଥ୍ ଡାର୍ଟି ଫେସେସ୍ ଯେ ପାଖରେ, ସେହି ସୁନ୍ଦର ଭଗବାନଙ୍କୁ ଖୋଜିବାକୁ ସମୟ କାହିଁ ସିପ୍ରା ?

ସିପ୍ରା କ'ଣ ଭାବି ଏତିକିବେଳେ ଆତ୍ମଗ୍ଲାନି ଅନୁଭବ କରି କହିଲା— ଖୁବ୍ ବେଶି ବକିଲିଣି ମୁଁ ମହେଶବାବୁ । ମୁଁ ଯାଉଚି ବାକ୍‌ସଂଯମ କରିବି !

ମହେଶ ଅଧୀର ହୋଇ କହିଉଠିଲା—ତମର ସଂସ୍କୃତ ବି ଭୁଲ୍ ହଉଚି ସିପ୍ରା, ବାକ୍‌ସଂଯମ ନୁହେଁ, ବାଚଂସଂଯମ ହେବ ସଂସ୍କୃତରେ । ହଁ ଏ ତ ଗଲା ଭାଷାର, ଭାବର ଭୁଲ୍ ବି ଶୁଣିବ ! ଇଟ୍ ଟିଚେସ୍ ଗ୍ୟାରୁ୍ୟଲିଟି ଟୁ ଦ ଟଙ୍ଗ୍, ଦୋ ଇଟ୍ ଇଜ୍ ସଟେନ୍‌ଲି ନଟ୍ ଦ ଗଡେସ୍ ଅଫ୍ ସ୍ପିଚ୍ ।

ସିପ୍ରା ହସିଉଠିଲା ମହେଶର ଅଭିନୟପୂର୍ଣ୍ଣ ଇଂରାଜୀ ଆବୃତ୍ତିରେ, ଆଉ କହିଲା ମଧ୍ୟ—

ହୁ ଇଜ୍ ଦିସ୍ ଇଟ୍ ମହେଶବାବୁ ?

ମହେଶ ପୁଣି ଅଭିନୟ କରି କହିବାକୁ ଲାଗିଲା—ଦିସ୍ ଇଟ୍ ଇଜ୍ ଏ ହି, ଏଣ୍ଡ୍ ଦେଟ୍ ହି ଇଜ୍ ଏ ବ୍ଲାଇଣ୍ଡ୍ ଫେଲୋ, ଏଣ୍ଡ୍ ଦେଟ୍ ଫେଲୋ ଇଜ୍ ଅତନୁ, ଦ କ୍ୟୁପିଡ୍ !

ସିପ୍ରା ପରମ ଅସହିଷ୍ଣୁତାର ସହିତ ସ୍ଫୂର୍ତ୍ତିରେ କହିଲା—ନୋ, ଦେଟ୍ ଇଟ୍ ଇଜ୍ ରିଏଲ୍ ଆନ୍ ଇଟ୍, ଏଣ୍ଡ୍ ଦେଟ୍ ଇଟ୍ ଇଜ୍ ଲଭ୍ । ମହେଶ ଖୁବ୍ ଚଞ୍ଚଳ ଉଠିପଡ଼ିଲା ଚୌକିରୁ, ତୀବ୍ର ଆନନ୍ଦର ସହ ସିପ୍ରାକୁ କୋଳାଗତ କରି କହିଲା—

ତମେ ଠିକ୍ କହିଛ ସିପ୍ରା ! ଆଉ ଏ ହଉଚି ତାର ରୂପ ।



ବିପିନ୍ ବାବୁ, ବିପିନ୍ ବାବୁ !

ଅନୁଚ୍ଚକଣ୍ଠରେ ସିପ୍ରା ଡାକିଲି ବିପିନ୍‌କୁ । ବିପିନ୍ ଜାଣିପାରିଲି ମହେଶ ଓ ସିପ୍ରା ବେଳାରେ ବୁଲୁଛନ୍ତି । ସେ ଆହୁରି ଦୂରକୁ ଚାଲିଗଲି—ଯେପରି ଅନ୍ୟାନ୍ୟ ଭ୍ରମଣକାରୀମାନଙ୍କ ମଧ୍ୟରେ ସେ ହଜିଯିବ । ତାକୁ କେହି ଦେଖିପାରିବେ ନାହିଁ କି ସେ କାହାରି ଡାକ ଶୁଣିପାରିବ ନାହିଁ; ମାତ୍ର ବିପିନ୍‌ର ଏହି ଅଭିସନ୍ଧି ମହେଶ ଭଲ-ଭାବରେ ଜାଣି ପାରିଲା । ସେ ସିପ୍ରାକୁ ଗୁଡ଼ ଦୌଡ଼ ଦୌଡ଼ ଯାଇ ବିପିନ୍ ଲୋକାରଣ୍ୟ ଭିତରେ ନିଜକୁ ହଜାଇଦେବା ପୂର୍ବରୁ ତାକୁ ପଗ୍‌ଡ଼ ଆଣିଲା । ବିପିନ୍‌କୁ ସାଙ୍ଗରେ ଧରି ଆସୁ ଆସୁ ମହେଶ ତାକୁ ପଚାରିଲା—ତୁ ବୋଧହୁଏ ଆମକୁ ଆଭଏଡ଼୍ କରି ଯିବାକୁ ଭାବିଥିଲୁ ବିପିନ୍ ? ତତେ ସିପ୍ରା ଏତେ ଡାକୁଛି, ଏତେ ଲୋକ ତା ଡାକ ଶୁଣି ତାଟକା ହୋଇ ଅନେଉଛନ୍ତି, ଆଉ ତତେ ଜମା ଶୁଭିଲାନି ।

ବିପିନ୍ ବଡ଼ ଅପ୍ରସ୍ତୁତ ହୋଇସାରିଥିଲା । ସେ ଭାବୁଥାଏ, ନିଜକୁ ବଞ୍ଚାଇବାକୁ ତ କିଛି କହିବ; ମାତ୍ର କଥାରେ ଦୋଷ ଯଦି ମହେଶ ଧରିବସେ ତ ବଡ଼ ମୁସ୍କିଲରେ ପୁଣି ପଡ଼ିବାକୁ ହବ । ଯାହାହେଉ—ତାକୁ ତ ପୁଣି କହିବାକୁ ହେବ କିଛି । ସେ ଭାବି ଭାବି କହିଲା—

ତମେ ଏମିତି ଆସି ସମୁଦ୍ରକୂଳରେ ବୁଲୁଥିବ ବୋଲି ମୁଁ ତ ଜାଣିନି, ଭାବିଲି ଆଉ କେଉଁ ବିପିନ୍‌କୁ କିଏ ଡାକୁଛି—

ଭାରି ସରସ୍ ବୁଦ୍ଧିଟା ତୋର ବିପିନ୍ ! ବିପିନ୍‌ର ଜଙ୍ଗଲ୍ ଖାଲି ବମ୍ବେରେ ତିଆରି ହୋଇଚି, ତମ ଅଫିସ୍‌ରେ କେଇଟା ବିପିନ୍ ଅଛନ୍ତି କହିଲୁ ?······ସେହି ପିଲାଦିନର ଢଙ୍ଗଟା ତୋର ଆଉ ନ ଗଲା ବିପିନ୍ ! ଏଡ଼େ ଚୋରକାଟିଆ, ଚୁପ-ଚାଇତାନ୍‌ଟା କାହିଁକି ହେଲୁ ରେ !

ମହେଶର ଉପର୍ଯ୍ୟୁପରି ଏତେ କଥା ଏବଂ ଶେଷକୁ ଭର୍ତ୍ସନା ବିପିନ୍‌କୁ ଖୁବ୍ ଖାରୁ ତିଆରି କରିଦେଲା । ସେ ସାହସ ବାନ୍ଧି କହିଲା ଅଇଲି ତ, ଆଉ ଗାଳିଦଉଚୁ କାହିଁକି କହିଲୁ ?

କଣ୍ଠରେ ପରିହାସ ମିଶାଇ କହିଲା—ତୁ ଆଇଚୁ, ଆଉ ମୁଁ ବି ବଡ଼ କୃତାର୍ଥ ହୋଇଚି ବିପିନ୍ । ଆଚ୍ଛା, ତୁ କଣ ଭାବୁ, ତୁ ମତେ ବରାବର ଆଭଏଡ୍ କଲେ ତୁ ଖୁବ୍ ଭଲ କାମ କରୁ ?

ଏମିତିଭାବରେ ଅଭିଯୋଗ ଆଣିଲେ ମୁଁ ନାଚାର—ମହେଶ ।

ବିପିନ୍ ଆଉ କଣ କହିବାକୁ ଯାଇଥାନ୍ତା, ତାର ଦୃଷ୍ଟି ପଡ଼ିଲା ଆଗରେ ଠିଆ ହୋଇଚି ସିପ୍ରା—ମୁହଁରେ ପ୍ରସନ୍ନତା ଧରି । ସିପ୍ରା ପାଖରେ ପହଞ୍ଚି ମହେଶ କହିଲା—ସିପ୍ରା, ଏଇ ଚୋରକୁ ଧରିଆଣିଚି । ଆମର ଆହ୍ୱାନକୁ ଚୋରିକରି ନେଇ ସେ ବାଲି ଭିତରେ ଛପିଯିବାକୁ ବସିଥିଲା ମୋ ଆଖିଆଗରେ ।

ସିପ୍ରା ହସି ହସି କହିଲା—ନମସ୍କାର ବିପିନ୍‌ବାବୁ, ଏମିତି ତରତର ହୋଇ ହାଓ୍ୱା ଖାଉଥିଲେ କାହିଁକି ?

ବିପିନ୍ ଦେଖିଲା ସେ ସାପ ମୁହଁରୁ ଆସି ବାଘ ମୁହଁରେ ପଡ଼ିଲା । ରକ୍ଷାର ଉପାୟ ସ୍ୱରୂପ ଯାହା ଗୋଟା ତାର ପାଟିକି ଆସିଲା ଗୋଟା ନମସ୍କାର ପକାଇ ସେ ତାହା ଝଟ୍ କହିପକାଇଲା ।

ମୁଁ ଶୁଣିଥିଲି ଯେ ଜାପାନରେ ସମସ୍ତେ ପ୍ରାୟ ଦୌଡ଼ନ୍ତି । ଆମ ଭଳିଆ ମନ୍ଥର ଗତି ସେମାନଙ୍କ ପାଦରେ ଆଦୌ ନାହିଁ । ମୁଁ ଟିକେ ସେଇଟା ଆଜି ଅଭ୍ୟାସ କରିବାକୁ ଇଚ୍ଛା କରିଥିଲି ।

ମହେଶ କହିଲା ପରିହାସ କରି—କରେ, ତୋର ଏତେ ଚଞ୍ଚଳ ଜାପାନୀ ପାଲଟିବାକୁ ଇଚ୍ଛା ହେଲା କାହିଁକି ? ଟୁର୍‌ରେ ଗଲେ ତ ବସିକରି କମ୍ପାନୀରୁ ଟି. ଏ. ଭିଡ଼ିକରି ନେଉଥିବୁ, ଆଉ ସମୁଦ୍ର ବାଲିରେ ଦୌଡ଼ି ମିଛରେ ନିଜର ଭାତ ଝଡ଼ଉଚୁ କାହିଁକି ?

ଏହି ସମୟରେ ଦୂରରେ 'ହାପି ବୟ'ର ହକର ଡାକ ଡାକ ଚାଲି ଯାଉଥିଲା । ମହେଶ କହିଲା, ସିପ୍ରା, ତମେ ଏଠି ବାଲିରେ ବସି ଗପ କରୁଥାଅ, ମୁଁ 'ହାପି ବୟ' ଆଣେ—କହି କହି ସେ ଚାଲିଗଲା ଦୂରକୁ ।

ବିପିନ୍ ବସିପଡ଼ିଲା ବାଲିରେ, ସିପ୍ରା ଛିଡ଼ା ହୋଇ ରହିଥାଏ । ସେ ଅନଉଥାଏ ମହେଶ କେତେଦୂର ଗଲା । ଏହି ସମୟରେ ବିପିନ୍ ତାର ହାତକୁ ଟାଣିଦେଇ କହିଲା, ବସନ୍ତୁ ସିପ୍ରାଦେବୀ !

ଗୋଧୂଳିର ମ୍ଳାନିମା ମଧ୍ୟରେ ସମୁଦ୍ର ଓ ସ୍ଥଳଭାଗ ଖୁବ୍ ଭଲ ଦିଶୁଥାଏ । ବିପିନ୍ ଦେଖିଲା ସେହି ଶୋଭନତାକୁ ସୁଶୋଭନ କରି ତାର ନିକଟରେ ବସିଲା ସିପ୍ରା । ସିପ୍ରା ଭାବୁଥାଏ ବିପିନ୍‌ର ଧୃଷ୍ଟତା । ହଠାତ୍ ସେ ତାର ହାତ ଧରି ଟାଣିଦେଲା କି ସାହସରେ ! ସିପ୍ରାର ଏହି ଭାବନାକୁ ଆଘାତ କରି ବିପିନ୍ କହିଉଠିଲା—

ଦେଖିଲେ ସିପ୍ରାଦେବୀ, କି ସୁନ୍ଦର ଦିଶୁଚି ଏହି ସମୁଦ୍ର ! ହେଇ ଦୂରରେ ସେଠି ଷ୍ଟିମର୍ ଚାଲିଯାଉଚି—ଜାହାଜ ମଧ୍ୟ ଏହି ଫେରୁଚି ଏ ପାଖରେ । ହେଇ ହେଇ ଏ ଚଢ଼େଇକି ଦେଖିଲେ, ଠିକ୍ ଲହରୀ ଉପରେ ଉପରେ ଯେମିତି ତରଙ୍ଗର ପାଣିରେ

ତାର ପକ୍ଷୀ ଓଦାକର ସେ ଉଡ଼ୁଛି ।········ଆଚ୍ଛା ସିପ୍ରାଦେବୀ, ସମୁଦ୍ରର ଏଇ ତରଙ୍ଗକୁ ଦେଖି ମଣିଷ ବୋଧହୁଏ ନାଚିବାକୁ ଚେଷ୍ଟା କରିଚି ।

ସିପ୍ରା ଏତେ କଥା ପରେ ମଧ୍ୟ କିଛି କହୁ ନ ଥାଏ । ସେ କେବଳ ଭାବୁଥାଏ, ବୁଢ଼ିଆଣୀକୁ ଆଗରୁ ବୋଧହୁଏ ଚିହ୍ନି ହୋଇ ନ ଥିଲା ସେ ଊର୍ଣ୍ଣନାଭ ବୋଲି, ସେ ସୂତା ନ କାଟିବା ପର୍ଯ୍ୟନ୍ତ ।

ଏହି ସମୟରେ ବିପିନ୍‌ର ସ୍ୱର ପୁଣି ଶୁଣାଗଲା—

ମୁଁ ନ ଆସିଥିଲେ ଆପଣ ବୋଧହୁଏ ଭାରି ଦୁଃଖିତ ହୋଇଥାନ୍ତେ ।

ସିପ୍ରା ଦେଖିଲା ଏହି ଲୋକକୁ କିଛି କହିବା ଉଚିତ । ସେ ନମ୍ରେ କହିବାକୁ ଆରମ୍ଭ କଲା— ବିପିନ୍ ବାବୁ, ମହେଶବାବୁ ଥିଲେ ବୋଧହୁଏ ଆପଣ ଏତେ କଥା କହିବାକୁ ଭଲ ପାଇ ନ ଥାନ୍ତେ !

ବିପିନ୍ ଟିକେ ଛେପ ଢୋକନେଲା ଯେପରି । କିଛିକ୍ଷଣ ବାଦ୍ କହିଲା— ଆପଣ ଜାଣି ନାହାନ୍ତି ସିପ୍ରାଦେବୀ, ପୁରୁଷ ପୁରୁଷର ବନ୍ଧୁତା ଅପେକ୍ଷା ନାରୀ ପୁରୁଷର ବନ୍ଧୁତା ଆନନ୍ଦଦାୟକ ହୁଏ ।

ସିପ୍ରା ଏ କଥାରେ ନ ହସି ରହି ପାରିଲା ନାହିଁ । ଗୋଧୂଳିର ଗର୍ଭରେ ତାର ହସକୁ ମିଶେଇଦେଇ ସେ କହିଲା—

ତା'ହେଲେ ମୁଁ ଆଜି ଜଣେ ମୋର ବନ୍ଧୁ ପାଇଛି ବୋଲି ମନେ କରିବାକୁ ହେବ—କିନ୍ତୁ ଜ୍ୟାମିତି ସଜ୍ଞାର ବନ୍ଧୁତା ନା ଏହା ପୂର୍ଣ୍ଣ ସ୍ୱତନ୍ତ୍ର ?

ସ୍ୱତନ୍ତ୍ର !—ହଠାତ୍ କହିଉଠିଲା ବିପିନ୍ ।

ଆଚ୍ଛା, ବିପିନ୍‌ବାବୁ, ଆପଣ ମତେ ଭଲ ପାଆନ୍ତି ? ପଚାରିଲା ସିପ୍ରା ।

ଏଟା ଯେ ଅତି ସ୍ୱାଭାବିକ କଥା ସିପ୍ରାଦେବୀ । ଆପଣଙ୍କର ସଙ୍ଗୀତ ଯେ ଶୁଣିବ —

ବିପିନ୍‌ର ଏ କଥା ଶୁଣି ସିପ୍ରା ହସି ହସି କହିଲା—ତା' ହେଲେ ଆପଣ ମୋ ଗାନକୁ ଭଲ ପାଆନ୍ତି ?

ନା, ସମୁଦାୟ ଆପଣଙ୍କୁ ମୁଁ ଭଲ ପାଏ ସିପ୍ରାଦେବୀ—ଅତି ବିହ୍ୱଳ ହୋଇ କହିପକାଇଲା ବିପିନ୍ ।

ସ୍ୱରର ପରଦା କମେଇ କହିଲା ସିପ୍ରା—ବଡ଼ ଡେରି କରିଦେଲେ ବିପିନ୍ ବାବୁ ! ଆପଣ ହୁଏତ ଜଣେ ଟ୍ରାଭ୍‌ଲର୍ ନୁହନ୍ତି, ଏହି ସହରରେ ରହନ୍ତି···

ମୁଁ ଟ୍ରାଭ୍‌ଲ୍ କରିପାରେ ସିପ୍ରାଦେବୀ । ମୁଁ ପିଲାଦିନେ ଖୁବ୍ ବୁଲିଛି । ବର୍ତ୍ତମାନ ବି ବୁଲିପାରେ···

ବିପିନର ଏ କଥା ଶୁଣି ଯେ କେହି ହସିବ । ସିପ୍ରା ପରି ବୁଦ୍ଧିମତୀ ତ ହସିବା ସ୍ୱାଭାବିକ । ସେ ହାସ୍ୟ ସମ୍ବରଣ କରି କହିଲା—ଆଜିର ଆପଣଙ୍କ ଗପରୁ ସେକଥା ମୁଁ ଅନୁମାନ କରିପାରିଛି ବିପିନ୍ ବାବୁ । କିନ୍ତୁ ମୁଁ ତ ଆପଣଙ୍କୁ ଟ୍ରାଭ୍‌ଲ୍ କରିବାକୁ କହୁନି । ମୁଁ କହିବାକୁ ଯାଉଥିଲି ଯେ ଜଣେ ଟ୍ରାଭ୍‌ଲର୍‌କୁ ଲଭ୍ କରିବା ଅପେକ୍ଷା ଜଣେ ସେଟ୍‌ଲ୍‌ଡ୍ ଲୋକକୁ ଲଭ୍ କରିବା ବରଂ ଭଲ ।

ବିପିନ୍ ଖୁବ୍ ଜୋରରେ ସମର୍ଥନ କରି କହିଲା—ନିଶ୍ଚୟ, ନିଶ୍ଚୟ, ମୋର ସର୍ଭିସ୍ ପର୍ମାନେଣ୍ଟ ଆଉ ମୁଁ କନ୍‌ଫର୍ମ୍‌ଡ୍ ମଧ୍ୟ ।

ସିପ୍ରା ଏହି ସମୟରେ ଭାବ ପରିବର୍ତ୍ତନ କରି କହିଲା—ବିପିନ୍ ବାବୁ ଦେଖିଲେ, ଦେଖିଲେ, ସେହି ଷ୍ଟିମର୍‌ଟା ଯେ ଯାଉଥିଲା, କେତେଦୂର ଗଲାଣି ?

ବିପିନ୍ ଠିଆହୋଇ ଦେଖିଲା, ତା ପରେ କହିଲା, କୁଆଡେ ଚାଲିଗଲାଣି ସିପ୍ରାଦେବୀ, ମୋତେ ଆଉ ଦେଖାଯାଉ ନାହିଁ ।

ସିପ୍ରା ହସି ହସି କହିଲା—ମୁଁ ପା' କହୁଚି ଆପଣ ଖୁବ୍ ଡେରି କରିଦେଲେ ବିପିନ୍‌ବାବୁ ।

ଆଁ, କଣ ସେ ଷ୍ଟିମର୍ ସଙ୍ଗରେ କିଛି କାମ ଥିଲା ନା କଣ, ତାକୁ କ'ଣ ଡାକକରି ଫେରାଇ ହୋଇଥାନ୍ତା ଆପଣ ଭାବୁଛନ୍ତି ?

ବିପିନ୍‌ର ଏ କଥା ଶୁଣି ସିପ୍ରାର ଆହୁରି ଟିକେ ରସିକତା କରିବାକୁ ଇଚ୍ଛା ହେଲା ତା ସାଙ୍ଗରେ । ସେ ପାଟିରେ ଆଙ୍ଗୁଠି କାମୁଡ଼ି ହତାଶଭାବରେ କହିଲା—

କିନ୍ତୁ ମହେଶବାବୁ ଥିଲେ···

ବିପିନ୍ କହିଉଠିଲା ଚଞ୍ଚଳ ହୋଇ—ମହେଶ କଣ ବେଶି ଚାଲି ପାରିଥାନ୍ତା ମୋଠାରୁ ଆପଣ ମନେ କରୁଛନ୍ତି ?

ଏହି ସମୟରେ 'ହାପି ବୟ' ଧରି ମହେଶ ସେମାନଙ୍କର ପଛରୁ ଡାକିଲା —ସିପ୍ରା, ସେ ଇଡିଅଟ୍‌ଟା ଅଛି ନା ? ବିପିନ୍ 'ହାପି ବୟ' ନେ ।

'ହାପି ବୟ' ମହେଶ ହାତରୁ ନେଇ ଖାଉଁ ଖାଉଁ ସିପ୍ରା କହିଲା, ଭାରି ଅଭଦ୍ର ତମେ ମହେଶବାବୁ ; ହଠାତ୍ ଗୋଟା କହିଦେଲ ବିପିନ୍ ବାବୁଙ୍କୁ 'ଇଡ଼ିଅଟ୍' । ଗୋଟା 'ଇଡ଼ିଅଟ୍' କେଉଁ ତମରି ସିପ୍ରାକୁ ଗାର୍ଡ଼ କରି ରହିପାରିଥାନ୍ତା ? ଏହି ସନ୍ଧ୍ୟାରେ, ଏହି ସୁନ୍ଦର ବେଳାଭୂମିରେ ସେ ନିଶ୍ଚୟ କିଛି ଗୋଟା ରୋମାନ୍‌ସ କରି-ବସିଥାନ୍ତା ଆଜ ।

ବିପିନ୍ ମଧ୍ୟ 'ହାପି ବୟ' ଖାଉଥିଲା । ସିପ୍ରାର ଏହି କଥା ଶୁଣି ସେ ଆଶ୍ୱସ୍ତ ହୋଇ କେବଳ ଖାଇବାରେ ମନୋନିବେଶ କଲା । ମଧ୍ୟେ ମଧ୍ୟେ ସେ ମନେ ମନେ ଭାବୁଥାଏ,ମହେଶ ବାସ୍ତବିକ୍ ଅଭଦ୍ର,ପିଲାଦିନର ସାଙ୍ଗ ଆଉ ବଡ଼ଲୋକର ପିଲା ବୋଲି ତାର କଥାକୁ ଜମା ମୁଁ ଧରେନା, ଗୋଟା ପ୍ରଷ୍ଟିଚ୍ୟୁଟ୍ ଘରେ ଯାଇ ରହିଛି । ଆଉ ତାର ଫ୍ରେଣ୍ଡ୍‌କୁ କହୁଛି ଇଡ଼ିଅଟ୍ ।

ଏହି ସମୟରେ ସିପ୍ରା କହିଲା—ବିପିନ୍‌ବାବୁ, ଉଠନ୍ତୁ ଘରକୁ ଫେରିବା ଏଥର ।

ବିପିନ ଉଠିବା ଉଠିବା ହେଉଚି, ତାର ଉଠିବାରେ ବାଧାଦେଇ ପୁଣି କହିଲା ସିପ୍ରା—ନାଇଁ, ନାଇଁ, ବସନ୍ତୁ, ଆପଣ ମୋତେ ବସାଇ ଦେଇଥିଲେ ନା, ମୁଁ ଆପଣଙ୍କୁ ଉଠେଇଦିଏ ।

କହୁଁ କହୁଁ ସିପ୍ରା ବିପିନର ହାତ ଧରି ତାକୁ ତଳୁ ଉଠାଇବାର ଚେଷ୍ଟା କଲା । ବିପିନ୍ ସେ ସ୍ପର୍ଶରେ ଯେପରି ଆତ୍ମହରା ହୋଇପଡ଼ିଲା ।

ମହେଶ କହିଉଠିଲା—ଆରେ, ବିପିନ୍‌ର ତା' ହେଲେ ଶିଷ୍ଟାଚାରର ଜ୍ଞାନ ଅଛି । ବିପିନ୍, ସିପ୍ରାର ହାତ କଅଁଳ ନା କର୍କଶ, କହିଲୁ ?

ବିପିନ୍ ବଡ଼ ଲଜ୍ଜିତ ହେଲା ଏ କଥାରେ । ସେ ଉଠି ଛିଡ଼ା ହୋଇ, ପଛ ପାଖ ଲୁଗାରୁ ବାଲି ଝାଡ଼ୁଥାଏ । ସେ ଭାବିଲା, ମହେଶ ତାକୁ ଏପରି ବାର ବାର ଅପମାନ ଦେଉଛି କାହିଁକି ?

ଏତିକିବେଳେ ସିପ୍ରା ପୁଣି କହିଲା—ତମେ ବିପିନ୍‌ବାବୁଙ୍କୁ ଯେତେ ଅରସିକ ବୋଲି ଭାବ ମହେଶବାବୁ, ସେ ପ୍ରକୃତରେ ତା'ନୁହନ୍ତି । ତମେ ଗଳ୍ପରେ ସେ ଏହି ଦୃଶ୍ୟର ଯେଉଁ ବର୍ଣ୍ଣନା କରୁଥିଲେ ତାହା ବାସ୍ତବିକ୍ କଳାବିତ୍ତର କଥା କହିବାକୁ ହେବ । ଆଉ ସେ କଣ କହିଲେ ଜାଣ, ସମୁଦ୍ର ତରଙ୍ଗର ନୃତ୍ୟ ଦେଖି ମଣିଷ ନାଚିବାକୁ ଆରମ୍ଭ କରିଛି । ଏହା ଗୋଟା ସୁନ୍ଦର ଭାବ ନୁହେଁ ମହେଶବାବୁ ?

ବାସ୍ତବିକ୍ ବିପିନ୍ ଏ ସବୁ ଭାବିପାରେ ବୋଲି-ତ ମୋର ଜମା ଧାରଣା ନ ଥିଲା । ଆଉ କଣ କହିଲା ସବୁ ସିପ୍ରା ?

ଅନ୍ଧାରରେ ସେମାନଙ୍କର ଦେହ କ୍ରମେ ମିଶିଯାଉଛି ଯେପରି । କେବଳ ସେହି ଗୁପ୍ତାନ୍ଧକାର ମଧ୍ୟକୁ ନିରୀକ୍ଷଣ କଲେ ମୁହଁ ବ୍ୟତୀତ ଅନ୍ୟାନ୍ୟ ଅଙ୍ଗର ଗଢ଼ କିଛି ମଧ୍ୟ ଦେଖିହୁଏ । ବିପିନ୍‌ର ହାତ ସେତେବେଳେ ତାର କେଶରାଶି ମଧ୍ୟରେ ନଖର ଚାଳନ କରୁଥାଏ ।

ସିପ୍ରା ପୁଣି କହିଲା, ହଁ ସେ ଯେଉଁ ସାଗର ବିହଙ୍ଗର ଉଡ଼ିବାର ବର୍ଣ୍ଣନା କଲେ ତାହା ମଧ୍ୟ ଚମତ୍କାର । ସେ କହିଲେ, ଯେପରି ତରଙ୍ଗର ଉପରେ ଉପରେ ଡେଣା ତାର ଲହରୀ ପାଣିରେ ଓଦା କରି ସେ ଉଡ଼ୁଛି ।

ବାଃ ! ଏ ତ ଖାଣ୍ଟି କବିର କଥା ଏକଦମ୍ । ଆଚ୍ଛା ବିପିନ୍, ତୁ ମୋ ସାଙ୍ଗରେ ତ ଏ ଭଳି କଥାଭାଷା ଜମା କରୁନା ? —କହିଲା ମହେଶ ।

ସିପ୍ରା କହିଲା ପୁଣି—ଆଚ୍ଛା ବିପିନ୍ ବାବୁ, ଡେଣାକୁ ଓଦା କରିଦେଲେ କଣ ଉଡ଼ିହୁଏ ?

ବିପିନ୍ ପୁଣି ଏକ ଅଡୁଆରେ ପଡ଼ିଲା । ସେ ଯେ ଏତେବେଳଯାଏ ତାର ପ୍ରଶଂସା ଶୁଣୁଥିଲା, ସେ ଏଥର ଆଶଙ୍କା କଲା ସେ ଏବେ ଫେଲ୍ କରିବ—ଆଉ ତାର କାନ ଖୁବ୍ ଶୀଘ୍ର ଶୁଣିବାକୁ ପାଇବ ତାର ନିନ୍ଦା । ବିପିନ ଆଉ କିଛି କହି ପାରିଲା ନାହିଁ । ମୌନ ରହିବାହିଁ ଶ୍ରେୟ ବୋଲି ଏଠି ସେ ମନେକଲା । ଏତିକିବେଳେ ତାର ପିଠି ଥାପଡ଼େଇ ଦେଇ ମହେଶ କହିଲା—କିଛି ଭାବନା ବିପିନ୍ । ମୁଁ ଟ୍ରାଭେଲ ବନ୍ଦ କରି ଦେଇ ତାଙ୍କ ପାଖରେ ବସିଛି ନା, ସେଥିପାଇଁ ମନେକରୁଛନ୍ତି ଓଦା ପକ୍ଷୀରେ ଆଉ ଉଡ଼ି ହୁଏନା । ଖୁବ୍ ହୁଏ । ବର୍ଷାରେ ପୁଣି ଏରୋପ୍ଳେନ ତ ଉଡ଼େ ।

ବିପିନ ନିଜକୁ ଖୁବ୍ ଅପାରଗ ବୋଲି ମନେକଲା । ଏତେ ସହଜ ଉତ୍ତରଟା ସେ ଯା ଭାବିପାରିଲା ନାହିଁ । ତାହା ପରେ ସିପ୍ରା ଆସି ତାର ହାତ ଟାଣିଦେଇ କହିଲା—ଯିବା ଏଥର ବିପିନ୍ ବାବୁ । ଆମେ ବହେଁ ଫ୍ରେଣ୍ଡ ହେଇଚେ; ମୋ ଉପରେ ରାଗିପାରିବେ ନାହିଁ ଏକା । କିନ୍ତୁ ଏଇ ମୋର ଚଷମାପରି ଗୋଟା ଚଷମା ବ୍ୟବହାର କରନ୍ତୁ

ଏଥର—ଷ୍ଟିମର୍‌ଟା ଆଖି ଆଗରେ ଅଛି, ଆଉ ଆପଣ କହୁଚନ୍ତି ନା କଣ କୁଆଡ଼େ ଚାଲିଗଲାଣି । ଆସନ୍ତୁ, ଷ୍ଟିମରଟା ପରା ଆପଣଙ୍କୁ ନେବାକୁ ପହଞ୍ଚି ଏଥର ।

ଚାଲୁ ଚାଲୁ ସିପ୍ରା ପଚାରିଲା – ବିପିନ୍‌ବାବୁଙ୍କର ସର୍ଭିସ୍ କଣଟି ଏଠି ?

ମହେଶ ଉତ୍ତର ଦେଲା—ଆସିଷ୍ଟାଣ୍ଟ ମେନେଜର । ଆଉ ତାର ଯୋଗ୍ୟତା କଣ ଜାଣିଛ ସିପ୍ରା ?—ଏମ୍. ଏସ୍ସି, ବି. ଏଲ୍. ।

ଓ ! ଏଇ 'ସାଏନ୍‌ସ୍' ସାଙ୍ଗରେ 'ଲ' ନେଇ ସେ ବୋଧହୁଏ ବଡ଼ ଅଡୁଆରେ ପଡ଼ିଛନ୍ତି । ଆଉ ମାଷ୍ଟର ହେବାପରେ ପୁଣି ବ୍ୟାଚେଲର୍ ହୋଇ ବଡ଼ ଛନ୍ଦପତନ ଘଟେଇଛି ।

ମହେଶ କହିଉଠିଲା ଏତକବେଳେ—ହଁ,ସେ ଫାଜିଲର ସେଇଆ ହୋଇଚି ଯେ, ପକ୍ଷୀର ଡେଣା ଓଦା ହେଲେ ସେ ଉଡ଼ିପାରିବ,—ସାଏନ୍‌ସ୍ ପଢ଼ି କେହି କହିପାରେ ଏପରି ଭୁଲ୍ କଥା, ଅଥଚ କବିର ଦୃଷ୍ଟି । ତେଣେ ବାହା ହୋଇଛି, ଆଉ ଏଣେ ବମ୍ବେରେ ବସି କୁମାର ବ୍ରତ ଅବଲମ୍ବନ ।

ସିପ୍ରା ଖୁବ୍ ସଭ୍ୟର କହିଉଠିଲା—ଆପଣ ବିଭା କରିଛନ୍ତି ବିପିନ୍‌ବାବୁ ?

ବିପିନ୍‌ର କୌଣସି ଉତ୍ତର ନ ପାଇ ସିପ୍ରା କହିଲା,—ଆପଣ ଜଣେ ଏତେବଡ଼ ଅଫିସର୍, ଅଥଚ ଆମ ପାଖରେ ଦବି ଯାଉଛନ୍ତି ଏପରି । ଅଫିସ୍‌ରେ ଆମେ ପହଞ୍ଚିଲେ ହୁଏତ ଆମକୁ ଚେୟାର୍ ଅଫର୍ କରିବାକୁ ସଙ୍ଗତ ମନେ କରିବେ କି ନାହିଁ ସନ୍ଦେହ ।

ଅସମ୍ଭବ କଥା ସିପ୍ରାଦେବୀ, ମୁଁ ଚେୟାର୍ ଦେବିନି ଆପଣଙ୍କୁ, ଆପଣ ଗଲେ ! କାଲି ଗଲେ ଆପଣ—ଓ, କାଲି ତ ରବିବାର, ଆଚ୍ଛା ଦିନେ ଏ କଥା ପରୀକ୍ଷା କରନ୍ତୁ ଯାଇ ।

ସିପ୍ରା ଓ ମହେଶ ଉଚ୍ଛ୍ୱସିତ ଭାବରେ ହସି ଉଠିଲେ ବିପିନ୍‌ର ଏ କଥା ଶୁଣି ।

ଯାହା କହନ୍ତୁ, ବିପିନ୍‌ବାବୁଙ୍କର ଡିଗ୍ରେଡ଼େସନ୍ ହୋଇଚି ଏକା ଏହିପରି ଗୋଟାଏ ସର୍ଭିସ୍ ପାଇ । ସେ ଯେ କେତେ ବଡ଼ ଟ୍ରାଭେଲର୍, କେତେ ବଡ଼ କଳାବିତ୍ ତାଙ୍କର ଗୋଟା ପବ୍ଲିକ୍ ଫିଲ୍‌ଡ୍‌ରେ କାମ କରିବା ଉଚିତ୍ ଥିଲା—ହସି ଶେଷରେ କହିଲା ସିପ୍ରା ।

ତମେ ଜାଣିନା ସିପ୍ରା, ପିଲାଦିନେ ସେ ଦୌଡ଼ରେ ସମସ୍ତଙ୍କୁ ହରେଇ ଦେଉଥିଲା । କେତେ ଦୌଡ଼ ଦୌଡ଼ ଆମେ ଖରାବେଳେ ଗୁଡ଼ ଉଡ଼ଉଁ ! ଚୋଟା ଚୋଟା ବୁଲି କେତେ ଜାମୁକୋଳି ଖାଉଁ, କେତେ ପାଣିରେ ବୁଡ଼ୁଁ । କିନ୍ତୁ ସବୁଥିରେ ବିପିନ୍ ପହିଲା ନମ୍ବର । ବିପିନ୍, ସେଇ କନକ କଥା ମନେ ଅଛି ନା ? ଦୁହେଁଯାକ ତାକୁ ବାହା ହବୁ ବୋଲି ପିଲାଦିନେ କଳି କରୁଥିଲୁ । ଆଉ ତୁ ବି ପାଜିଟା ତାକୁ ବାହା ହେଲୁ ଯେ ଭୋଗ କରି ପାରିଲୁନି ।

ମହେଶର କଥା ନ ସରୁଣୁ ମଝିରେ ବ୍ୟାଘାତ ଦେଇ ପଚାରିଲା ସିପ୍ରା—ବିପିନ୍‌ବାବୁ କଣ ବିପତ୍ନୀକ ?

ଏ ପ୍ରଶ୍ନ ଶୁଣି ମହେଶ ହସିଉଠି କହିଲା, ପୁଣି ପରା ବାହା ହେଇଚ । ସେ ଯେ ଜନକ ବର୍ତ୍ତମାନ ।

ଏଥିମଧ୍ୟରେ ମେନରୋଡରେ ପହଞ୍ଚି ସାରଥିଲେ ସେମାନେ । ଚମକିଲା ପରି ହଠାତ୍ ବିପିନ୍ କହି ଉଠିଲା—ମୁଁ ଯାଏ ମହେଶ, ହେଇ ଆମ ଆଡ଼ର ଟ୍ରାମ୍ ଆସୁଛି ।

ମହେଶ ମଧ୍ୟ ଦେଖିଲା, ବିପିନ୍‌କୁ ବର୍ତ୍ତମାନ ସ୍ୱାଧୀନତା ଦେବା ଉଚିତ । ମହେଶ ହସି ହସି କହିଲା, ହଜ୍ ଆର ଅଲ୍ ଫ୍ରେଣ୍ଡ୍‌ସ, ବିପିନ୍, ଡୋଣ୍ଟ୍ ଥିଙ୍କ୍ ଅଦର୍‌ୱାଇଜ୍ । ଆଚ୍ଛା, କାଲି ରବିବାର ଅଛି—କାଲି ତୁ ଆମ ଆଡ଼େ ବୁଲିଗଲେ ହୁଅନ୍ତା ନି ? ଭଲି ଦେଖିବୁ ତୁ—ଯଦି ପାରୁ—

ବାପ୍ସ୍ ବାପ୍ସ୍ ବିପିନ୍ ବାବୁ, ମୋଠାରୁ ବିଦାୟ ନ ନେଇ ଚାଲିଗଲେ ଯେ ! ଷ୍ଟିମରଟା ବାସ୍ତବିକ ଚାଲିଯାଇଚି ବିପିନ୍‌ବାବୁ !

ବିପିନ୍ ସେତେବେଳେ ଯାଇ 'ଷ୍ଟପେଜ୍'ରେ ଛିଡ଼ାହୋଇ ସାରିଛି । ସେ ଏମିପରି ଭାବ ଧରିଛି ଯେପରି ଟ୍ରାମ୍ ଶବ୍ଦରେ ତାହାକୁ କୌଣସି କଥା ଶୁଭୁନାହିଁ ।

ଗୋଟାଏ ଟାକ୍‌ସି ଧରି ସେମାନେ ଆସି ଘରେ ପହଞ୍ଚିଲେ—ମହେଶ ଓ ସିପ୍ରା ।

ଘରେ ପହଞ୍ଚି ଗୋଟା ସୋଫାରେ ନାଥୁକିନା ପଡ଼ିଯାଇ କହିଲା ସିପ୍ରା—ବାସ୍ତବିକ ଏତେ ଇଡ଼ିଅଟ୍ ସେ, ମହେଶବାବୁ ?

ମହେଶ ଜାମା ଖୋଲୁ ଖୋଲୁ କହିଲା—କ'ଣ କଲା କି ?

ଯାଃ, ହାତଟାକୁ ମୋର ଏତେ ଜୋର୍‌ରେ ଟାଣିଦେଲା ଯେ, ଏତେବେଳ ଯାଏ ବି ପୋଡ଼ୁଚି ।

ତମେ ସେଥିସକାଶେ ତା ହାତ ଟାଣୁଥିଲ ନା—? ତା ହାତ ଆଜି କଣ ହେଉଥିବ, କହିଲ ସିପ୍ରା ?

ମୁଁ କହିପାରିବିନି !

ଆରେ ତା ହାତ ଲାଗୁଥିବ, ହେଲେ ଉପମା କିଛି ଆସୁନି, କହିଲ କ'ଣ ଲାଗୁଥିବ ସିପ୍ରା ?

ଲାଗୁଥିବ ବୋଧହୁଏ, ତମ ହାତ ମତେ ଯେପରି ଲାଗେ !

ଏଇଟା ଉପମା ହୋଇପାରେ ସିପ୍ରା ? ଗୋଟା କବିପତ୍ନୀ ଏଇ କୁଆଡ଼େ !

ମହେଶର ଏ କଥାରେ ସିପ୍ରା ଆଖି ନଚେଇ କହିଲା—

ଭାରି—କ-ବି-ତ—

ତମେ ମତେ ଥଟ୍ଟା କରୁଚ ସିପ୍ରା ! ଦେଖିବ, ମୁଁ ଧକାଲେ ଗୋଟା କେତେ ସୁନ୍ଦର କବିତା ଲେଖିଚି !

ଏହା କହି ମହେଶ ଟେବୁଲ୍ ଉପରେ ପଡ଼ିଥିବା ଖାତାଟାକୁ ଖେଳେଇ ଖେଳେଇ ଗୋଟା ଜାଗା ବାହାର କଲା—

ହେଇ ଦେଖ ସିପ୍ରା, ଆଚ୍ଛା, ଆଚ୍ଛା, ମୁଁ ପଢ଼ି ତମକୁ ଶୁଣେଇ ଦଏ—

ଅସ୍ତ ନ ଯାଏ ଚନ୍ଦ୍ର ଯହିଁ
କୁସୁମ ନ ଯାଏ ମଉଳ,
ମଳୟ୍ୟ ନିରତ ଅଥୟ୍ୟ ଯହିଁ
କଳ୍ପନା ଉଠେ ବଉଳ,
ସେହି ସରଗର ଅଛଥି ମୁହିଁ
ପ୍ରେୟ୍ୟସୀ-କଣ୍ଠ-ପୀୟୂଷ
ସଦା ଦଏ ମତେ ଜୀବନ ନବ
ନିତ୍ୟ ବଢ଼ାଏ ଆୟୁଷ !
ବକ୍ଷ-କନକ-କମଳେ ପ୍ରିୟ୍ୟା
ଶଯ୍ୟାରେ ରଚେ 'ମାନସ'
ଲଭି ତହିଁ ନିତି ନିମଜ୍ଜନ
ଉଜ୍ଜ୍ୱଳେ ତନୁ-ତୈଜସ ।

ଭଲ୍‌ଗାର୍—କହିଲା ଚୁମ୍ବକରେ ହସି ହସି ସିପ୍ରା ।

ଏତେ ବଡ଼ ଆଇଡ଼ିଆକୁ ତମେ କହିଦେଲ ଭଲଗାର୍ ? ଶ' କଣ କହିଛନ୍ତି ଜାଣ ସିପ୍ରା ? ନୋ! ଆର୍ଟ ଇଜ୍ ଭଲ୍‌ଗାର୍ ।

ମହେଶ ଏହା ଈଷତ୍ ଅସନ୍ତୁଷ୍ଟ ହୋଇ କହିଲା ।

ମହେଶର ଏ ଢଙ୍ଗ ଦେଖି ସିପ୍ରା ହସି ଉଠି କହିଲା—ନାହିଁ ମ, ଥଟ୍ଟାରେ କହିଲି ନା ! ଆଚ୍ଛା ମୁଁ ତମକୁ ପ୍ରଶଂସା କଲେ ତମର ସେଥିରେ କ'ଣ ବଡ଼ ଗୌରବ ହେବ ମହେଶବାବୁ ?

ନିଶ୍ଚୟ୍ୟ, ତମେ ଯଦି କୁହ ମତେ ଭଲ
ସେହି ମୋ ଗୌରବ

କହି ଉଠିଲା ମହେଶ ଏକ ବଢେର ଆର୍ଯ୍ୟଋଷି ପରି । ମହେଶର ଏହି କବିତା ସ୍ଫୁରଣରେ ଆନନ୍ଦିତ ହୋଇ ସିପ୍ରା ଆଦେଶ କଲା ଭଙ୍ଗୀରେ କହିଲା—

ଏହାର ପାଦ ପୂରଣ କରିବାକୁ ହବ କିନ୍ତୁ, ମହେଶବାବୁ !

ମହେଶ ହସି ହସି କହିଲା – ହେଃ, ତମ କୃପାରୁ ଏଥି ପାଇଁରୁ ବାହାରି ପଡ଼ିଲା ନା, ମୁଁ କଣ କହୁ ଭାବଥିଲି—!

ସିପ୍ରା ପୁଣି କହିଲା – ହଉ, ମୁଁ ପୁନର୍ବାର କୃପା କରୁଛି ।

ମହେଶ ଟିକେ ଭାବ ଭାବ କହିଉଠିଲା—ବାସ୍ତବିକ ତମର କୃପା ସିପ୍ରା, ହେଇଯାଇଚ, ପାଦ ପୂରଣ ହେଇଯାଇଚି – ଆଉ ଯେମିତି କହୁ ଫର୍ମାସ୍ ନ କର ।

ମୋହ ଲାଗି ଦେଲେ ଆଖି ଜଳ
ସେହି ମୋ ସୌରଭ ।

ସିପ୍ରା ଆନନ୍ଦରେ ବିଭୋର ହୋଇଯାଇଥିଲା, ମହେଶର ଏହି ଉକ୍ତି ଶୁଣି । ସେ ମହେଶକୁ ଧରିବାକୁ ଆସୁ ଆସୁ ମହେଶ ତାକୁ ଧରି ପକାଇ କହିଲା—

ସ୍ତ୍ରୀ ପାଖରେ ପୁରୁଷ କେଡ଼େ ଶ୍ରେଷ୍ଠ, ତମେ ଜାଣ ସିପ୍ରା ? ସାର୍ବଭୌମ କବି ରବୀନ୍ଦ୍ରନାଥ ବାହାରୁ ରିସେପ୍‌ସନ୍‌ ପାଇ ଆସନ୍ତେ, ଆଉ ଘରେ ପହଞ୍ଚି ଦେଖନ୍ତେ ସ୍ତ୍ରୀ ମାନିନୀ । ପାଇଥିବା ସେହି ଅଶେଷ ସ୍ତୁତିକୁ ଶତ ଗୁଣିତ କରି ସେଇ ସ୍ତ୍ରୀର-ମାନ ଭଙ୍ଗ କରୁ କରୁ ବୋଧହୁଏ ରାତି ପାଇଯାନ୍ତା ।

ମହେଶର କଥାକୁ ଅଧା କରିଦେଇ ସିପ୍ରା ଏଇଠି ଚପଳତା ସହି କହି ଉଠିଲା—

ହଁ, ସେ ତ ଏଇଠି ପୁଣି କବିତା ସୃଷ୍ଟି କରନ୍ତେ, ସେହି ମଯୂର ନା କଣ ତାଙ୍କ ନା—ସଂସ୍କୃତ କବି, ଏମିତି ମାନ ଭଙ୍ଗୁ ଭଙ୍ଗୁ କହିଲେ ନାହିଁ—ଚେଲ, ପ୍ରଦୀପ ଶିଖାକୁ ଚୁମ୍ବନ କରି କରି ତାହା ଆସି ଶେଷ ହେଲା, ଅନ୍ଧକାର ପୃଥିବୀକୁ ଆଲିଙ୍ଗନ କରି ତାହା ଆସି ହିଲ୍ଲାନ ହେବାକୁ ବସିଲା, ଅୟି ଚଣ୍ଡୀ, କଠିନ ବକ୍ଷ ସଂସ୍ପର୍ଶରେ ଆସି ତୋର ହୃଦୟ କଣ ପାଷାଣ ହୋଇଗଲା ?

ମହେଶ ପ୍ରୀତ ହୋଇ ହସି ହସି କହିଲା—

ସତ୍ୟର ଅପଳାପ କଲ ସିପ୍ରା ! ସଂସ୍କୃତ କବି କେବେହେଁ କଠିନ ବକ୍ଷ ସେଠି ଲେଖି ନ ଥିବେ । ସେ ଖାଣ୍ଟି କଳାବନ୍ତ ଥିଲେ ଯେ ! ଆଚ୍ଛା ସେ କଥା ଥାଉ, ମୁଁ କହୁଥିଲି, କିନ୍ତୁ ରବୀନ୍ଦ୍ରନାଥ ଏ ଦିଗରେ ବଡ଼ ଫର୍ଚୁନେଟ୍‌ ଥିଲେ । ବିପତ୍ନୀକ ଥିଲେ ନା; ଏ ଅଭିନୟ ତାଙ୍କ ଭାଗ୍ୟରେ ଘଟି ନ ଥିବ; ହୁଏତ ଆସି ଶୟନ କକ୍ଷରେ ପହଞ୍ଚି ମନେ ମନେ କହି ଉଠୁଥିବେ—

ଆଜ ଯଦି ଥାକତ ସେ ପ୍ରିୟା—

ସିପ୍ରା ସହାସ୍ୟକଣ୍ଠରେ କହିଲା, କିନ୍ତୁ ସଧବାର ଏକାଦଶୀ ଚିନ୍ତା କାହିଁକି ? ଆମ୍ଭ କବି ଏବେ କହନ୍ତୁ,—ଶୁଣ ମୋର ପ୍ରିୟା !

ବିଶ୍ୱର ଗୌରବ ବହି ଆସିଅଛି ମୁହିଁ !

ମହେଶ ପ୍ରବଳ ଭାବରେ ସିପ୍ରାକୁ ଚୁପି ଧରି କହିଲା—

ଆରେ, ତମକୁ ବି କବିତା ଆସେ ? ଏଥରକ ଦିହେଁ ସାଙ୍ଗ ହୋଇ ଲେଖିବା । ବେଦ ତ କେବଳ ପୁରୁଷ ଲେଖିନାହାଁନ୍ତି ସିପ୍ରା ! ଘୋଷା, ଗୋଧା, ଅଦିତି, ଇନ୍ଦ୍ରାଣୀ ଏମାନେ ବି ଲେଖିଛନ୍ତି । ଆଉ ସେମାନେ କୌଣସି ପ୍ରାର୍ଥନା କିମ୍ବା ସ୍ତବ ରଚନା କରିନା'ନ୍ତି ସିପ୍ରା, ଯାହାକୁ କେତେକାଂଶରେ ତମେ ହୁଏ ତ ଭଲଗାର୍ ବୋଲି ବି କହିପାରି, ସେହିଭଳି ଚିନ୍ତାର ଶ୍ଳୋକ ରଚନା କରିଛନ୍ତି । ପ୍ରେମ, ବିରହ, ଉପେକ୍ଷା ପ୍ରତୀକ୍ଷା ଏ ସବୁ କବିତା ବି ବେଦରେ ଅଛି । ଏଥର ତମେ କବିତା ଲେଖ ସିପ୍ରା,—ଆଁ !

ସିପ୍ରା କହିଲା—ଚିନି ଖାଇବା ଗୁଡ଼, ଚିନି ହେବାକୁ କିଏ ଭଲ ପାଏ ମହେଶବାବୁ ? ତମେ ଏତେ ଚିନି ତିଆରି କରିବ ସେଗୁଡ଼ା ଆଉ କଣ ହବ କି ?

ଏକ୍‌ସ୍‌ପୋର୍ଟ୍‌ କରିବା ।

କହି ମହେଶ ଓ ସିପ୍ରା ଜୋରରେ ହସିଉଠିଲେ ।

ଏହାପରେ ସିପ୍ରା ଯାଇ ତାର ନୋଟ୍‌ ଖାତାଟା ଆଣି ଲେଖିବସିଲା—

ତମେ ମତେ କ୍ରୁଦ୍ଧ ଯଦ୍ଧ ଭଲ
ସେହ୍ବ ମୋ ଗୌରବ,
ମୋର ଲଗି ଦେଲେ ଆଖିଜଳ
ସେହ୍ବ ମୋ ସୌରଭ ।

ମହେଶ ସେଠି ଟହଲୁ ଟହଲୁ କହ୍ବଲ—

ଆଚ୍ଛା ସିପ୍ରା, ଆମର ଗୋଟାଏ କାର୍ କଣିଲେ ହୁଅନ୍ତା ନାଇଁ ?

କାର୍ ତ ଆମର ଅଛୁ—,କହ୍ବ ନିଜର ଜଭ ନିଜେ କାମୁଡ଼ ପକାଇଲା ସିପ୍ରା । ମାତ୍ର ତାହା ମହେଶର ଦୃଷ୍ଟିରୁ ଲୁଚିପାରିଲା ନାହିଁ । ସେ ପଚ୍ଚରି ବସିଲା ସିପ୍ରାକୁ—

କାର୍ ଅଛୁ, ଆଉ ତମେ ଏ କଥା କହ୍ବବାକୁ ଖରାପ ଭାବୁଛ କାହିଁକ ?

ସିପ୍ରାର ଏହ୍ବ କପଟାଚରଣ ମହେଶକୁ ବାଧିଲା । ସେ ଆଉ ବେଶି କଛୁ କହ୍ବପାରିଲା ନ । ସିପ୍ରା ଉଠିଆସି ମହେଶର ହାତ ଧରିପକାଇ କହ୍ବଲା—

ରାଗିଲ କ ? ଲୁଚେଇବାକୁ ନୁହେଁ ଯେ, ସେଇଟା ସେମିତ ଗୋଟା ଭଲ କାର୍ ନୁହେଁ, ନିହାତ୍ ଅଡ଼ନେଷ୍ଟ । ସେଥିଲଗି ସଙ୍କୋଚ ଲଗିଲା ଏ କଥା କହ୍ବବାକୁ । ···ଆସ, ଗ୍ୟାରେଜରେ କାରଟାକୁ ଦେଖିଆସିବା, ଆସ ।

ମୁଁ ଏତେଦ୍ଧନ ଏଠି ରହ୍ବଲଣି, ତମେ ଢନେ ତ କାର୍ କଥା ମତେ କହ୍ବନା, ଅଥଚ ଆମେ ଟାକ୍ସି କରି ବୁଲୁଚେ—

କହ୍ବ କହ୍ବ ମହେଶ ସିପ୍ରା ସଙ୍ଗରେ ତଳକୁ ଗ୍ଧଲଗଲା । ପ୍ରାୟ ପନ୍ଦର ମିନଟ୍ ପରେ ସେମାନେ ଫେରିଆସି ଉପରେ ପହଞ୍ଚିଲେ । ମହେଶ ପଚ୍ଚରିଲା, ଯେପରି କୌତୁହଳୀ ହୋଇ ।

କାରଟା ତ ଏକେଦମ୍ ନୂଆ । କେହ୍ବ କେବେ ଚଢ଼ନ୍ତ ନାଇଁ ସେଥିରେ ବୋଧହୁଏ ?

ସିପ୍ରା ନୀରବ ରହ୍ବଲା । ସେ କଛୁ କହ୍ବପାରୁ ନାହିଁ ଯେପରି । ଆଖି ତାର ଛଳ ଛଳ ହୋଇ ଉଠୁଥାଏ ।

କଥା କଣ ସିପ୍ରା ? ତମର ଏପରି ଭାବାନ୍ତର ହେଲା କାହିଁକ ଏ କଥା ପଚ୍ଚରିଲେ ?

ମହେଶ ଆଶ୍ଚର୍ଯ୍ୟ ହୋଇ ପଚ୍ଚରିଲା ସିପ୍ରାକୁ । ସିପ୍ରା ନିଜକୁ ସଂଯତ କରି କଛୁ କହ୍ବବାକୁ ଚେଷ୍ଟାକଲା । ତାର କଣ୍ଠରେ ଜଡ଼ତାର ସ୍ପର୍ଶ । ସେ କହ୍ବଲା—

ଏଥିରେ କେବଳ ତମେ ଚଢ଼ିପାର ମହେଶ ବାବୁ, ମତେ କନ୍ତୁ ଅନୁରୋଧ କରିବ ନାଇଁ ।

ମହେଶ ଯେପରି ଆହୁରି ଆଶ୍ଚର୍ଯ୍ୟ ହେଲା । ସେ ବିସ୍ମୟପୂର୍ଣ୍ଣ ସ୍ବରରେ ପଚ୍ଚରିଲା—

ବୋଧହୁଏ ଏଥିରେ ଚଢ଼ି କୌଣସି ଆକ୍ସିଡେଣ୍ଟରେ ପଡ଼ିଥିଲ ତମେ ?

ସିପ୍ରା ଗୋଟିଏ ଚେୟାରରେ ଧୀରେ ବସିପଡ଼ିଲା, ବସି ସେ ଚାହିଁଲା ମହେଶର ମୁହଁକୁ । ମହେଶ ଖୁବ ଶୁଷ୍କ ଆଉ ବିସ୍ମିତ ହୋଇ ଅନେଇ ରହିଛି ସିପ୍ରାର ମୁହଁକୁ । ମହେଶର ଏ ଚେହେରା ଦେଖିବାକୁ ସିପ୍ରା ଜମା ନିଜ ଭିତରୁ ସମର୍ଥନ ପାଇପାରିଲା ନା । ସେ କଥା କହିବାକୁ ଚେଷ୍ଟାକଲା—

ଏ କାର୍ଡ଼ଟା କିଣିଥିଲି ମୁଁ ପୁଅ ପାଇଁ, ପାଞ୍ଚହଜାର ଟଙ୍କାକୁ ।

ମହେଶ ଆଶ୍ଚର୍ଯ୍ୟ ହୋଇ ପଚାରିଲା—

ସେହି ଉଜ୍ଜ୍ୱଳ ତାରକା ପାଇଁ ସିପ୍ରା ?

ସିପ୍ରା ସଂକ୍ଷେପରେ ଉତ୍ତର ଦେଲା—ହଁ ।

କିନ୍ତୁ କାର୍ଡ଼ଟା ଏଠି ପଡ଼ିରହିଲା କାହିଁକି ?—ମହେଶ ଜିଜ୍ଞାସୁ ହୋଇ ପଚାରିଲା ।

ସେହି ଶେଠ୍‌ଙ୍କୁ ମୁଁ ଯେତେବେଳେ ଅନୁମତି ମାଗେ କାର୍ଡ଼ଟି ପଠେ-ଇବା ପାଇଁ.........

ସିପ୍ରାର କଥା ଶୁଣି ମହେଶ ଉତ୍ତେଜନା ସହ ପ୍ରଶ୍ନ କଲା ।

ସେ କଣ କହିଲେ ସିପ୍ରା ?

ସେ ମନା କରି ପଠେଇଲେ......

ସିପ୍ରାର କଣ୍ଠ ଓ ଚକ୍ଷୁରେ ସେତେବେଳକୁ ଅଶ୍ରୁ ଯେପରି ନିବିଡ଼ଭାବରେ ବସା ବାନ୍ଧି ସାରିଲାଣି । ସେ ଅଧୀର ହୋଇ ଆଖି ପୋଛିବାକୁ ଲାଗିଲା ପଣତରେ—ଏତକ କହି ।

ମହେଶର ହୃଦୟ ମଧ ଆର୍ଦ୍ର ହୋଇଯାଇଥିଲା । ସେ ଅସ୍ପଷ୍ଟ ସ୍ୱରରେ କହିଲା—

ସେଥିପାଇଁ ଏତେ ଉଜ୍ଜ୍ୱଳ ଦିଶୁଚି କାର୍ଡ଼ଟା !

ଏହାପରେ ସିପ୍ରାକୁ ଉଦ୍ଦେଶ୍ୟ କରି ସ୍ପଷ୍ଟଭାବରେ କହିଲା ମହେଶ—

ସେହି ଉଜ୍ଜ୍ୱଳ ତାରକାର ଆସନରେ ମୁଁ ବସିବାକୁ ଅଯୋଗ୍ୟ ସିପ୍ରା !

ସିପ୍ରା ଅତି ବିହ୍ୱଳ ହୋଇ କହିଉଠିଲା—

ମୁଁ ଯେ ତାକୁ ଭୁଲିଯାଇଛି ମହେଶବାବୁ ! ସେ ଗ୍ୟାରେଜକୁ ମୁଁ କେବେ ଯାଏନା । ଦରଓ୍ୱାନ୍‌ଇ ତାକୁ ଦେଖାଦେଖି କରେ ।

ତମେ ଭୁଲିଯାଇପାର ସିପ୍ରା, ତମେ ଜନନୀ—ତମେ ଉଜ୍ଜ୍ୱଳ ତାରକାର ଜନ୍ମ ଦିଅ । ଉଜ୍ଜ୍ୱଳ ତାରକା ଯେ ଜଗତର ଉଜ୍ଜ୍ୱଳ ତାରକା—ମୁଁ କପରି ଭୁଲିଯିବି ସିପ୍ରା ? ମୁଁ କପରି ତାର ଆସନରେ ବସିବି ସିପ୍ରା ? ସେହି ଅମ୍ଳାନ ଆସନରେ କେବଳ ଉଜ୍ଜ୍ୱଳ ତାରକାହିଁ ବସିବ ।

ଏହା କହି ଚିନ୍ତାମଗ୍ନ ହୃଦୟରେ କାର୍ପେଟର ମସୃଣତାକୁ ପାଦରେ ସ୍ପର୍ଶ କରି ମହେଶ ସେହି ଘର ଚାରିପଟେ ବୁଲିବାକୁ ଲାଗିଲା ।



କୋମଳ ଚରଣ ଛନ୍ଦା,

ମାଳତୀ ପୁଷ୍ପ ଗନ୍ଧା······

ଗୁଣୁ ଗୁଣୁ ହୋଇ ଅର୍ଦ୍ଧସ୍ପଷ୍ଟଭାବରେ ଉପରର ଚରଣ ଦୁଇଟି ଗାଇ ମହେଶ ଘର ଭିତରେ ବୁଲୁଥାଏ । ଏହି ସମୟରେ ଅନ୍ୟ ପ୍ରକୋଷ୍ଠରୁ ମଧମନ୍ଦ୍ର ଝଙ୍କାରରେ ବୀଣା ବଜାଇ ଗାଇଉଠିଲି ସିପ୍ରା – ତାର ସୁଲଳିତ କଣ୍ଠରେ –

ଚପଳ ଚରନ ଛନ୍ଦା

ନନ୍ଦମୀ ପୁଷ୍ପଗନ୍ଧା—

କ୍ଷୀପ୍ରପଦରେ ସେଠାରେ ମହେଶ ଆସି ପହଞ୍ଚି କହିଉଠିଲି –

କାସ୍ତବକ୍ ମୋର ଭୁଲ ହୋଇଥିଲି ସିପ୍ରା । ମୁଁ ଯେପରି କାଳିଦାସଙ୍କ ଉପରେ ମାଷ୍ଟ୍ରି କରିବାକୁ ବସିଥିଲି ।—ଆଚ୍ଛା, ଗା' ଗା', ଗା' ତମେ—ହଁ, ଲ, ଣ, ନ କରି ଲ, ନ, କରି ଗାଇବ, ଭାରି କୋମଳ ଶୁଭୁଛି ସେ; ଆଉ କାଳିଦାସ, ବୋଧ-ହୁଏ ସେହିପରି ଉଚ୍ଚାରଣ କରିଥିବେ,—ହଁ, ଗା', ଗା',—

ସିପ୍ରା ଗାଇଲି—

ଚପଲ ଚରନ ଛନ୍ଦା

ନନ୍ଦମୀ ପୁଷ୍ପଗନ୍ଧା,

—ଆନନ୍ଦା ।

ଏହିଠାରେ ପୁଣି ଗୋଳ କରି ଚପଳ ଭଳି କହିଉଠିଲି ମହେଶ—

ଏଇଟା ଯେ ମୋର ପୁରାତନ ଭାବନା ସିପ୍ରା ! ବୋଧହୁଏ ମୋର ନୋଟ୍ ଖାତାରୁ ଏଇଟାକୁ ପାଇଛ । ଆଚ୍ଛା—

ସିପ୍ରା କିନ୍ତୁ ଅପ୍ରତିହତ ଭାବରେ ଗାଇ ଚାଲିଥାଏ, ତାର ମନ ଯେପରି ସେହି ସଙ୍ଗୀତର ଛନ୍ଦେ ଛନ୍ଦେ ମିଶିଯାଇଛି ।

ଏତେ ପୁଷ୍ପ କାହିଁ ଯାଅ ନେଇ,

ମୋର ହସ୍ତେ ଏକ ଦିଅ ଫେଇ

ଏକ ଶୁଭ୍ର ରଜନୀଗନ୍ଧା—

ଅଲି ଯାର ଆଙ୍କିନ ଚୁମ୍ବି

ଚନ୍ଦ୍ରବଦନ ଯଥା ଭୁମ୍ବି

ଏକ ଅବ୍ୟୟ ମଧୁ ମକରନ୍ଦା ।

ଅୟି, ଚପଲ ଚରନ ଛନ୍ଦା ।

ଗୋଟିଏ ମୁଗ୍‌ଧ ଭ୍ରମର ସୌରଭରେ ଆକୁଳ ହୋଇ ପୁଷ୍ପର ଚାରିପାଖରେ ବୁଲିଲା ପରି ଏହି ସଙ୍ଗୀତର ଝଙ୍କାରରେ ମୁଗ୍‌ଧ ହୋଇ ଚାରିପାଖଯାକ ବୁଲୁଥାଏ ମହେଶ । ଗୀତଟି ସରିଯିବା ପରେ ତାର ଧ୍ୟାନ ଭଙ୍ଗ ହେଲା ଯେପରି । ସେ ନିଦ୍ରୋତ୍‌ଥିତ ପରି ଚମକି ଉଠି କହିଲା—

ଆଉ ଗୋଟା ଗୀତ ତମେ ଗାଇ ପାରିବ ସିପ୍ରା,—ଖୁବ୍ ଭଲ ଗୀତ, ଆମର ଅନ୍ତରର କଥା ଯେଉଁ ତାହା ଆସିଛୁ—ଗାଇବ ନିଶ୍ଚେ ଏକା ।

ଏହା କହି ଆର କୋଠରୀରୁ ଆସି ନୋଟ୍‌ବୁକ୍ ନେଇ ଗୀତଟିକୁ ଦେଲା ସିପ୍ରାକୁ । ସିପ୍ରା କିଛି ସମୟ ପରେ ସେ ଗୀତଟିକୁ ଦେଖିଲା ପରେ ନିଜର ଅନିଚ୍ଛା ପ୍ରକାଶ କରି କହିଲା—ନା, ପାରିବ ନାହିଁ, ଏଟା ତମ ଅନ୍ତର କଥା ନୁହେଁ, ମହେଶବାବୁ !

ମହେଶ ଆହ୍ଲାଦିତ ହୋଇ କହିଲା ସିପ୍ରାକୁ—ମୋତେ ଭୁଲ୍ ବୁଝନା ସିପ୍ରା, ତମର ଆଉ ମୋର ଚିନ୍ତା ମଧ୍ୟରେ ତମେ ପ୍ରଭେଦର କଳ୍ପନା କରନା ଜମା । ଏ ମୋର ଇଚ୍ଛା, ମୋର ଆକାଂକ୍ଷା । ତମେ ଗା' ସେ ଗୀତଟା । ମୁଁ ଭାରି ଖୁସି ହେବି ଏକା—ମନୋରଞ୍ଜନ ପାଇଁ ନୁହେଁ, ପ୍ରାଣ ରଞ୍ଜନ ପାଇଁ ମୁଁ ଏ ଗୀତଟି ଲେଖିଛି । ଗୋଟିଏ ଭଲ ସ୍ୱର ଦେଇ ତମେ ଗାଅ ସିପ୍ରା ।

କିଛି ସମୟ ଗୁଣୁ ଗୁଣୁ ହୋଇ ସ୍ୱର କରିନେଲା ପରେ ସିପ୍ରା ବୀଣାରେ ଟିପ ଛୁଇଁଲା । ତା' ପରେ ଖୋଲିଲା ତାର କଣ୍ଠ—

ମୁହଁ ଲୋଡ଼େ ଉଜ୍ଜ୍ୱଳ ତାରକା,
ଏ ଯେ ଖସିଆସେ ହାତେ ମୋର କରକା ।
ସୁମନର ସୌରଭ ଚାହେଁ
ଏ ଯେ ରୌରବ ପାଶେ ମୋର ଧାଏଁ,
ଏକ ଶୁଦ୍ଧ କନକ ଲପନେ
ବହି ମୋର ଅନ୍ତର ସପନେ
ଖୋଲ, ଚିତ୍ତେ ମୋ ଚିତ୍ରିତ ଝରକା,
ଆସ ଆସ ଉଜ୍ଜ୍ୱଳ ତାରକା ।

ସୁନ୍ଦର ହେଇନି ସିପ୍ରା ? ମତେ ଖୁବ୍ ଚମତ୍କାର ଲାଗୁଛି ।—ଆଉ ମୋର ରଚନା ଅପେକ୍ଷା ତମର ସ୍ୱର ତାକୁ ଅତି ମଧୁର କରିଦେଲା ।

ସିପ୍ରାର ମୁହଁରେ କୌଣସି ଭାଷା ନାହିଁ । କେବଳ ଆଖିରେ ତାର ଦୁଇବିନ୍ଦୁ ଅଶ୍ରୁ ।

ପରିସ୍ଥିତିକୁ ବଦଳେଇବା ପାଇଁ ମହେଶ ତାର ଭାବ ଓ ସ୍ୱର ପରିବର୍ତ୍ତନ କରି କହିଲା—

ହଁ, ସିପ୍ରା, ଆହୁରି କେତେ ପରିବର୍ତ୍ତନ କରିଛି—ପ୍ରୋଗ୍ରାମ୍‌ର । ସେ କାଶ୍ମୀର ଯିବାଟା ଏକଦମ୍ କାଟିଦେଲି । ଯିବା ଦିଲ୍ଲୀ ।

ଦିଲ୍ଲୀ ?

ଚମକପଡ଼ି କହିଉଠିଲା ସିପ୍ରା । ପୁଣି କହିଲା—ନା, ନା, ଦିଲ୍ଲୀ ମୁଁ ଯିବ ନେଇଁ ।

ମହେଶ ଏତିକବେଳେ ହସି ହସି କହିଲା ଖୁବ୍ ଶାନ୍ତଭାବରେ—

ଦିଲ୍ଲୀ ପରେ କଣ ପ୍ରୋଗ୍ରାମ୍ ଅଛି ଜାଣ ?

ସିପ୍ରା ଚକିତ ନୟନରେ ଅନାଇଲା ମହେଶର ମୁହଁକୁ । ମହେଶ ପୂର୍ବପର ହସି ହସି କହିଲା—

ଓଡ଼ିଶା—ମାତୃଭୂମି ।

ସିପ୍ରା ଅତି ଆହ୍ଲାଦିତ ହୋଇଉଠିଲା ଯେପରି ଏଥିରେ । ନାଇଁ, ନାଇଁ, ଆଉ କୋଉଠିକି ଯିବାନି, ସିଧା ସିଧା ଯିବା ଦେଶକୁ ।

ମହେଶ ମଧ୍ୟ ଖୁସିହେଲା ସିପ୍ରାର ଏ କଥାରେ । ସେ ପ୍ରସନ୍ନ ଭାବରେ କହିଲା—

ଆଚ୍ଛା, ସିପ୍ରା, ଆମେ ବମ୍ବେ ଛାଡ଼ିବା, ଆଉ ବମ୍ବେର ବିଦାୟ ସଙ୍ଗୀତ କିଛି ଗାଇବା ନି ? ଯେଉଁ ବମ୍ବେରେ ମୁଁ ପାଇଲି ଅପ୍‌ସରୀ—ଯେଉଁ ବମ୍ବେରେ ମୁଁ ଦେଖିଲି ଉଜ୍ଜ୍ୱଳ ତାରକାର ସ୍ୱପ୍ନ, ସେହି ବମ୍ବେକୁ କଣ କିଛି କୃତଜ୍ଞତା ଜଣାଇବା ନି ?

ସିପ୍ରା ହସି ହସି କହିଲା—

ହୃଦୟରେ ଯାହା ଅନୁଭବ କରୁଛେ ତାହା ତ ବମ୍ବେପାଇଁ କୃତଜ୍ଞତା, ଭାଷାର ଆବଶ୍ୟକତା କ'ଣ ମହେଶବାବୁ ?

ନା, ସିପ୍ରା, ମୁଁ ଯେ କବି । ମତେ ପ୍ରକୃତି ପଠେଇଛି କଥା କହିବାକୁ, ମୁଁ ମୂକ ହେବି କିପରି ? ବୁଢ଼ିଆଣୀ ସୂତା ନ କାଟି ରହିପାରେ ସିପ୍ରା ?—ହଁ, ଆଉ ତମେ ମଧ୍ୟ ଗାୟିକା, କୋଇଲି କେଉଁଠି ନୀରବ ରହିପାରେ ବସନ୍ତ ଆସିଲେ ? ଆମର ଦେଶ ପ୍ରତ୍ୟାବର୍ତ୍ତନର ବସନ୍ତ ଯେ ଆମର ଦ୍ୱାରଦେରେ କରାଘାତ କଲାଣି, ସିପ୍ରା !

ସିପ୍ରା ତାର ମୁହଁକୁ ଆନନ୍ଦର ଆତିଶଯ୍ୟରେ ବୁଲାଇଦେଲା ଯେପରି—ଖୁବ୍ ବଡ଼ ଆଉ ସାନ ହୋଇଆସିଲା ତା'ର ଆକାର କ୍ଷଣକ ପାଇଁ । ସେ ହସ ଗୁପି ଖୁବ୍ ମିଠାସ୍ୱରରେ କହିଲା—

ଆଗରୁ ତା' ହେଲେ ଅଭିନୟ ଲେଖା ସରିଛି, ଖାଲି ପ୍ଲେ ହେବାକୁ ବାକି ।

ମହେଶ ଉତ୍ସାହର ସହିତ କହିଉଠିଲା—

ତମେ ଜାଣି ନା ସିପ୍ରା, ଜଗତର ସବୁ କଥା ଯେ—ପ୍ରି-ଡିଟରମିଣ୍ଡ୍, ନ ହେଲେ ତମେ କିଏ, ମୁଁ କିଏ ? ଆଉ ଘରେ ଶୋଇବା ଲୋକ ବା ଇଣ୍ଡିଆ ଟୁର୍ କରିବାକୁ ସ୍ୱପ୍ନ ଦେଖନ୍ତା କାହିଁକି ? ହେଇ ଏହି ସେହି ଗୀତଟା, ଖୁବ ଭଲ ସୁର୍ ଦବ ଏକା, ନ ହେଲେ ବମ୍ବେ ରାଗିବ ଯେ ।

ସିପ୍ରାକୁ ଖାତାଟା ବଢ଼େଇଦେଇ କ୍ଷଣକ ପରେ ପୁଣି କହିଲା ମହେଶ—

ଆଚ୍ଛା, ତମେ ଏଇଟା ସୁର୍ କର । ମୁଁ ଗୋଟା ସ୍ୱଦେଶକୁ ଅଭିନନ୍ଦନ ଜଣେଇ ସଙ୍ଗୀତ ଲେଖେ ।

ମହେଶ ଆସି ପଲଙ୍କ ଉପରେ ପଡ଼ି କ୍ରମେ ଲେଖିବାକୁ ଲାଗିଲା—

ମାତୃ-ଭୂମି ହେ, ମୋର ମହୀୟସୀ
ହେ ଜନନୀ ସ୍ୱର୍ଗହୁଁ ଗରୀୟସୀ······

ମହେଶ, ମୁଁ ଆସିଛି ମହେଶ୍ !

ମହେଶ କବିତାରୁ ମୁହଁ ଉଠେଇ ଦେଖିଲା, ବିପିନ୍ । ସେ ଆନନ୍ଦରେ ଉଠିଆସି ବିପିନ୍‌କୁ ଧରିପକାଇ କହିଲା—

ତୁ କେତେବେଳେ ଆସିଲୁ, ବିପିନ୍ ? ବସ୍ ବସ୍, ତୋ ସାଙ୍ଗରେ କେତେ କଥା ଅଛି । ହଁ ଜାଣିଲୁ ନା ବିପିନ୍···ଆରେ—ସିପ୍ରା, ବିପିନ୍ ଆଇଚି ଯେ !

ହଁ ଜାଣିଲି ଯେ, ଷ୍ଟିମର ଯାଉଚି ବିପିନ୍‌ବାବୁ, ଅପେକ୍ଷା କରନ୍ତୁ—

କହି କହି ହସି ହସି ଆସି ପହଞ୍ଚିଲା ସିପ୍ରା । ଗୋଟିଏ ସୁନ୍ଦରଭଙ୍ଗୀରେ ନମସ୍କାର କରି ଦଖଲ କଲା ଗୋଟିଏ ଚେୟାର ।

ହଁ, ବିପିନ୍, ଆମେ ଶୀଘ୍ର ଓଡ଼ିଶା ଫେରିଯାଇଚୁ । ହଁ, ଗୋଟା କଥା ତତେ କହିବାକୁ ଥିଲା, ତୁ ରାଗିବୁନି ବିପିନ୍ ?

ମହେଶ କହିଲା, ଆଉ ହସି ହସି ଉତ୍ତର ଦେଲା ବିପିନ୍—

ଆରେ ରାଗିଲେ କ'ଣ ହେଲା; ପ୍ୟା' ବୋଲି ତୁ ଆଉ କଥା କହିବୁନି ନା ? କ'—କ'—କ'ଣ ଚାହୁଁ ?

ମୁଁ କହିବାକୁ ଚାହେ ଯେ ତତେ ଯଦି ଗୋଟା ଲିଫ୍‌ଟ୍ ଦିଆଯାଏ, ତୁ ଆକ୍‌ସେପ୍‌ଟ୍ କରିବୁନି ?

ମହେଶର ଏ କଥା ଶୁଣି ବିପିନ୍ ପୁଣି କହିଲା—

ତୋର ତ ଗୋଟା ନୂଆ ଢଙ୍ଗ ଦେଖୁଚି ଆଜି, ମହେଶ ! ଏତେ ଭୂମିକା ଲେଖୁଚୁ କାହିଁକି କହିଲୁ ?

ତୁ କାଳେ ବିଷୟଟା ବୁଝିବାରେ ଭୁଲ୍ କରିବୁ ସେଇଥିପାଇଁ । ଆଚ୍ଛା, ଏଥର କହେ, ମୁଁ ଚାହେଁ, ତୁ ଏ ବମ୍ବେ ସର୍ଭିସ୍‌ଟା ଛାଡ଼ିଦେଇ ଚାଲ୍ ଓଡ଼ିଶା, ମାନେ ଆମ ସାଙ୍ଗରେ—ଏଇଟା ସିପ୍ରାର ଇଚ୍ଛା, ଆଉ ମୋର ବି । ମେନେଜର ତ ବୁଢ଼ା ହେଲାଣି, ଅବଶ୍ୟ ତାଙ୍କୁ ବିଦାୟ ଦେଇ ନୁହେଁ, ତାଙ୍କୁ ଡ଼ୁଏଡ଼ ପେନ୍‌ସନ୍ ଭଳି ଦେଇ ତୋ ଉପରେ ମୁଁ ଭାର ଦେବାକୁ ଚାହେ ।

ବିପିନ୍ ନୀରବ । ସେ କିଛି କହିବାକୁ ଅପେକ୍ଷା ନ କରି ମହେଶ ପୁଣି ଆରମ୍ଭ କଲା—

ହଁ, ତୁ ତ କହୁଥିଲୁ, 'ତୁ ବା'ହେଇ ଗୋଟା ମସ୍ତ ସଂସାର ଫାନ୍ଦ ବସ, ମୁଁ ଯାଇଁ ସେଠି ମଜା କରିପାରିବି ।' ଏବେ ତ ସେଇଆ ହେଲା, ତୁ ମଜା କରିବୁ କ'ଣ ବମ୍ବେରେ ବସି ?—ଚାଲ୍—ଚାଲ୍, ଆମ ସାଙ୍ଗରେ ଚାଲ୍ । ନ ଗଲେ ଜାଣିଚୁ ନା, ମୋ ପାଖରେ ରିଭଲ୍ଭର୍ ଅଛି—

ବିପିନ୍ ହସି ଉଠିଲା ଏକାବେଳକେ । ହସି ହସି ସେ କହିଲା ସିପ୍ରାକୁ ଲକ୍ଷ୍ୟ କରି—

ସିପ୍ରା ଦେବୀ, ଏ ଦୁଷ୍ଟଠଉଁ ପିସ୍ତଲ୍‌ଟା ଜବତ୍ କରିନିଅନ୍ତୁ । ନ ହେଲେ ଗୋଟା ଟ୍ରାଜେଡ଼ି କରିବସିବ କୋଉଦିନ ।

ସିପ୍ରା ଟିକେ ଗମ୍ଭୀର ହୋଇ କହିଲା—

ସତେ ତ, ସେ ଦିନେ କହୁଥିଲେ, "ବିପିନ ଯେଉଁଦିନ ଯାଇ ଗାଁ'ରେ କହିବୁଲିବ, 'ମହେଶ ଗୋଟା ବେଶ୍ୟାଟା ବମ୍ବେରୁ ଆଣି ଘରେ ପୂରିଇଚି', ସେହିଦିନ ମୁଁ ସମାଜର ଛାତିରେ ନିଶ୍ଚୟ ପିସ୍ତଲ୍ ମାରିବି ।"

କହି କହି ସିପ୍ରା ଚାଲିଗଲା ଆର କୋଠରୀକି, ଯାଇଁ ବୀଣାରେ ଟିପ ଦେଲା ।

ଝରେ ତୋର ଲକ୍ଷ ଘନୁ ଅସ୍ତ
ପଶ୍ଚିମେ ଡାକେ ତୋର ହସ୍ତ,
ମୁଗ୍ଧ ମନେ—
ପଶ୍ଚିମ ପଥ ତୋର ଚରଣେ
ନିତ୍ୟ ଫେନିଲମାଳେ ଚୁମ୍ବେ—

ବିପିନ୍ କ୍ଷଣକରେ ସିପ୍ରାର ସେହି କଥା ବିସ୍ମୃତ ହୋଇ ଶୁଣିଲା ତାର ଏହି ସୁମଧୁର କଣ୍ଠସ୍ୱର ।

ମହେଶ କହିଲା, ଏଇଟା ବମ୍ବେର ବିଦାୟ ସଙ୍ଗୀତ, ବିପିନ୍ !

---

ରଚନାକାଳ ୧୯୪୩

ପୂର୍ବପୁରୁଷଗଣ ଯେ ତମର ଥିଲେ—
ହୁଏତ  ଥିଲେ ସେ ସାହସୀ ଜ୍ଞାନୀ,
ହୁଏତ  ଅପୂତ ପାପ ଜାଳଥିଲେ ସେହୁ—
କିନ୍ତୁ ତହିଁରେ କି ଯାଏ ଆସେ ?

ଶ୍ମଶାନ-ଭୂମିର ସମାଧି ସମ୍ମୁଖରେ
ତମେ ବସିଅଛ ବୃଦ୍ଧ ନୃପତି ଖାଲି,
ନିଜର ପାପରୁ ପଡ଼ିଅଛ ତମେ ଧ୍ୱସ୍ତ ହୋଇ—
ଉପରେ ତମର ଭଗ୍ନ ବିଶ୍ୱ ପଡ଼ିଛି ଲୋଟି ।

ପ୍ରାଚୀନ ତମର
ରାଜକୀୟ ପରିଧେୟ,
ଛିନ୍ନ, ଭିନ୍ନ, ମାଟିରେ ପଡ଼ିଛି ଝୁଲି—
ଜମିଉଠିଛି ତା' ସ୍ୱର୍ଣ୍ଣଜରିର ଫୁଲେ
ମଳିନ ଧୂଳିର କର୍କଶ ଆବରଣ ।

ଥାଉ,—ପଡ଼ିଥାଉ ସେହିପରି
ଛିନ୍ନ, ଶ୍ରସ୍ତ, ଜୀର୍ଣ୍ଣ ଏ ରାଜବେଶ,
ତମ ଇତିହାସ-ଶେଷ ପାଦଟୀକା ପରି ।
କାଳର ଲୌହ ପୁସ୍ତକାଧାରେ ବସି
ବିଶ୍ରାମ କର ତମେ—
ଶୁଣ ଅନାଗତ ଭବିଷ୍ୟତ ସଙ୍ଗୀତ,
ଦେଖ କେଉଁପରି
ହାସ୍ୟମୁଖର ଶିଶୁ
ପରିଣତ ବୟସରେ
ତମର ଧ୍ୱଂସ ସ୍ତୂପର ଉପରେ ଗଢ଼େ
ନୂତନ ପୃଥିବୀ—ସୁନ୍ଦର, ରମଣୀୟ ।

**"ପ୍ରାଚୀନ ପୃଥିବୀ"**

**…ଜୋସେଫ୍ ଫ୍ରିମ୍ୟାନ୍**

॥ ଏକ ॥

ଶୀତଋତୁର ଅଳସ ଅପରାହ୍ଣ ।

କେତେକ ମାସ ଆଗରୁ ଯେଉଁ କ୍ଷେତଗୁଡ଼ିକ ସବୁଜର କ୍ରୀଡ଼ାଭୂମି ଥିଲା, ଆଉ କଚ୍ଛବନ ତଳେ ଯାହା ଥିଲା ସ୍ୱର୍ଣ୍ଣ ଶସ୍ୟର ଲୀଳାକ୍ଷେତ୍ର, ସେ ସମସ୍ତର ଆଜ ମହାନିର୍ବାଣ ଘଟିଛି । ଭାରତର ବିସ୍ତୀର୍ଣ୍ଣ ବକ୍ଷ ଉପରୁ ବୌଦ୍ଧଯୁଗର ସ୍ୱର୍ଣ୍ଣାଭ ରୂପ ଅପସରି ଯାଇ ତାହା ଉପରେ ନାନା ଭେଦବାଦ, ନାନା ସଙ୍କୀର୍ଣ୍ଣ ସିଦ୍ଧାନ୍ତ ଉଦ୍‌ଭବ ହେଲାପରି ବିସ୍ତୀର୍ଣ୍ଣ କୃଷିକ୍ଷେତ୍ରଗୁଡ଼ିକର ହୋଇଛି ଅବସ୍ଥା । ଚତୁର୍ଦ୍ଦିଗରେ ନାନା ହିଡ଼- ବାଡ଼ର ପଂକ୍ତି ରଚନା – ଧର୍ମର କଙ୍କାଳରୂପୀ ମନ୍ଦିରମାନଙ୍କ ପରି । ତାହା ମଧ୍ୟରେ ପୁଣି କଟା ଧାନଗଛଗୁଡ଼ାକର ଅୁଣ୍ଟା ମୂଳ । ଜୀବନର ସମସ୍ତ ରିକ୍ତତା ସହ ସେ ଯେପରି ଆତୁର ଆତଙ୍କ ସୃଷ୍ଟି କରୁଛି କୌଣସି ନଗ୍ନପଦ ସ୍ୱାଧୀନ ଯାତ୍ରୀ ପାଇଁ ।

କୃଷିକ୍ଷେତ୍ରର ବିଶାଳତାକୁ ଶାନ୍ତ କରୁଛି ଦୂର ଜନପଦମାନଙ୍କର ସୀମା । ଜନପଦର ଗୃହଗୁଡ଼ିକ ଆଖିକୁ ଦେଖା ଯାଏନା । ସେହି ପଲ୍ଲୀ କୁଟୀରଗୁଡ଼ିକୁ କୋଳାଗତ କରି ସାମ୍ମୁଖ୍ୟ ରଚନା କରିଛନ୍ତି ଯେଉଁ ପାଦପଶ୍ରେଣୀ, ସେହିମାନେ ହୁଅନ୍ତି ପାନ୍ଥନୟନର ପଥିକ । ଦୂର ଦୂରାନ୍ତରର ସେହି ପାଦପଶ୍ରେଣୀ ସହିତ ଯୋଗ ଦେଇଛି ବ୍ୟାବଧାନିକ ବାୟୁସ୍ତରର ଘନାୟମାନତା । ସେହି ବନ୍ଧ-ଶୀର୍ଷକ ପାଦପରେଖା ହୋଇଉଠିଛି ସେଥିପାଇଁ ଅଶ୍ୟାମଳ – ଯେପରି ଶ୍ୟାମଳମା ଉପରେ ଘୋଟିଯାଇଛି କୁଜ୍‌ଝଟିକା ।

ଚାଲ ନୁହେଁ, ଦୂରରେ—କ୍ଷେତଗୁଡ଼ିକର ଉପରେ ଉପରେ ଉଡ଼ି ଯାଉଛନ୍ତି ପଂକ୍ତିଏ ବଗ । ଅଳ୍ପଦୂରରେ ପାଟଜମିର ସନ୍ତସନ୍ତିଆ, ଆବଦ୍ଧ ପାଣିପଚ୍ଛ ସ୍ଥାନରେ ବସିଛନ୍ତି କେତେ ଶିକାରୀ ଗେଣ୍ଡାଳିଆ । ସେ ଆଜ ମତ୍ସ୍ୟଶିକାରୀ—ଆଜ ପୁଷମାସ । ଆଜ ସମସ୍ତଙ୍କର ହାତରେ ଧାନ – ଆଜ ସମସ୍ତଙ୍କର ଉଦର ପୂର୍ଣ୍ଣ—ଭିକ୍ଷାଣୀ ବି ଆଜ ଭିକ୍ଷା ପାଏ । ଗେଣ୍ଡାଳିଆ ସେଥିପାଇଁ ନୁହେଁ ଆଜ ମତ୍ସ୍ୟ—ସେ ଆଜ ଏହି ପୁଷମାସରେ ଖାଇବ ନାହିଁ ଗେଣ୍ଡା । ଶସ୍ୟ ଭଳି ମତ୍ସ୍ୟ ଆଜ ଖୁବ୍ ପାଖରେ । ସେଥିପାଇଁ ସେ ଆଜ ସେହିମାନଙ୍କୁ କରୁଛି କଲ୍ୟାଣ—ଯେଉଁମାନେ ଏହି ଜଳାଭୂମି ଉପରୁ ସ୍ୱର୍ଣ୍ଣଶସ୍ୟ ଆହରଣ କରି ରଜତ ମତ୍ସ୍ୟର ଦେଇଛନ୍ତି ସନ୍ଧାନ ।

ଆକାଶର ଅବସ୍ଥା ଆହୁରି ଶୋଚମୀୟ । ନା ବର୍ଣ୍ଣର ଔଜ୍ଜ୍ୱଲ୍ୟ—ନା ମେଘ-ବାଳକାର କ୍ରୀଡ଼ା । ଅଜସ୍ର ଶିଶିରବିନ୍ଦୁ ପଡ଼ି ଶୀତ-ବୁଢ଼ୀର ଯେଉଁ ଧୂସର କମ୍ବଳ ଖଣ୍ଡିକ ଭିଜି ଯାଇଥିଲା ରାତିରେ, ତାହାକୁ ସେ ଶୁଖେଇ ଦେଇଛି ଆକାଶଟାଯାକ । ସେହି ଧୂସର ଆକାଶ ଭିତରେ ଆଲେଖ୍ୟ ଲେଖିଛି ମୋଟେ ତିନି ଚାରି ଖଣ୍ଡ ବଡ଼ ପାଉଁରର ଥୋପା ଭଳି ମେଘ ।

ଏହିପରି ପରିସ୍ଥିତି ଭିତରେ ଠିକ୍ ଜାମୁଝାରି ପୋଲ ପାଖର ବାବୁଲି-ଗଛରେ ଦୁଇଖଣ୍ଡ ସାଇକେଲ ଡେରିଦେଇ ଦୁଇ ଜଣ ଯୁବକ ଠିଆ ହେଲେ ସଡ଼କ ଉପରେ । ଏହି ସଡ଼କଟା ଧାନମଣ୍ଡଳ ଷ୍ଟେସନରୁ ଆସି ବଡ଼ଚଣାଠାରେ ନିଜକୁ ଜଗନ୍ନାଥ ସଡ଼କରେ ମିଶେଇ ଦେଇ ପୁଣି କିଛିଦୂରରେ ନିଜକୁ ସ୍ୱତନ୍ତ୍ର କରି ପୂର୍ବମୁଖୀ ହୋଇ ଚାଲିଯାଇଛି ବାଲିଚନ୍ଦ୍ରପୁରଯାଏ ।

ଯୁବକ ଯୁଗଳର ଚେହେରା ସୁନ୍ଦର ଏବଂ ଖୁବ୍ ମାର୍ଜିତ । ସୁସଭ୍ୟ ପରି-ପାଟୀରେ ଦୁହେଁ ଶୋଭମାନ । ସେମାନେ ଦେଢ଼ଘଣ୍ଟା ପୂର୍ବରୁ କଟକରୁ ବାହାରି ରେଳରେ ଆସି ଧାନମଣ୍ଡଳରେ ଓହ୍ଲାଇ ପାଞ୍ଚ-ଛ' ମାଇଲ ବାଟ ସାଇକେଲ ଯୋଗେ ଆସିଲେଣି । ତଥାପି ସେମାନଙ୍କର ପରିପାଟୀ ସେମାନଙ୍କର ଆଶଙ୍କାକୁ ଉପହାସ କରି ଏ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ଅଛି । ନିଜ ନିଜ ଦେହର ଏହି ସୁରୁଚିପୂର୍ଣ୍ଣ ପରିପାଟୀକୁ ପୂର୍ଣ୍ଣ-ଭାବରେ ରକ୍ଷାକରିବା ପାଇଁ ସେମାନେ ଫାଷ୍ଟ କ୍ଲାସରେ ଆସିଥିଲେ । ଆଉ ମଧ୍ୟ ସେମାନେ ଏହି ଦୂର ମଫସଲକୁ ଆସିବେ ବୋଲି ଷ୍ଟେସନକୁ ସେମାନଙ୍କ ପାଇଁ ଯାଇଥିଲା ଟୋରୁଗାଡ଼ି । ପରିପାଟୀକୁ ବିକୃତ କରିବା ପାଇଁ ଆଉ ସେମାନଙ୍କର ଯୁବ-ଚାପଲ୍ୟକୁ ପଙ୍ଗୁ କରିବା ପାଇଁ ସେମାନେ ମୃଦୁ ମନ୍ଥରଗାମୀ ଗୋ-ଯାନକୁ ଆଶ୍ରୟ କଲେ ନାହିଁ ।

ଯୁବକ ଦୁହିଁଙ୍କର ବେଶଭୂଷା ସୁରୁଚିପୂର୍ଣ୍ଣ ହେଲେ ବି ଦୁହିଁଙ୍କର ପରିଧେୟ ସମାନ ମୂଲ୍ୟର ନୁହେଁ । ସୁନ୍ଦର ହେଲେ ବି ଚେହେରାରେ କିଛି ପାର୍ଥକ୍ୟ ଜଣାପଡ଼େ । ସେଥିପାଇଁ ଅଧିକ ସୁନ୍ଦର ଯେଉଁ ଯୁବକଟି ତାହାର ପୋଷାକର ମୂଲ୍ୟ ଟିକେ ବେଶୀ । ସେ ଲଗାଇଥାଏ କ୍ରୋମିୟମ୍ ରଙ୍ଗର ଦାମିକା ଗରମ କାଶ୍ମିରର ଅଲଷ୍ଟର । ତଳେ ବଟୁମେନ୍ ରଙ୍ଗର ସାର୍ଜର କାମିଜ । ଆଉ ପିନ୍ଧିଥାଏ ଦୋକଚ୍ଛିମାରି ମୁଣିଦାବାଧୀ ଧୋତି । ଧୋତିର ଧଡ଼ି ଲାଗିଛି ପାଦର ଗୁଲ୍‌ଫକୁ । ସେଥିଲାଗି ବୁଲିଗଲାବେଳେ ପଛ ପାଖରୁ ଜଣାପଡ଼େ ପାଣ୍ଡୁ ବର୍ଣ୍ଣର ମୋଜାର ଅସ୍ତିତ୍ୱ । ପାଦରେ ଫ୍ଲେକ୍‌ସ କମ୍ପାନୀର ଅକ୍‌ସ୍‌ବ୍ଲଡ଼୍ ରଙ୍ଗର ଅକ୍‌ସଫୋର୍ଡ଼ ଯୋତା । ତାହା ଅନେକ ବେଳଯାଏ ଥିଲା ଖୁବ ଉଜ୍ଜ୍ୱଳ, ଏବେ କେତେକାଂଶରେ ଧୂଳି ଧରଣୀର ପ୍ରଭାବରେ ତାହା ହୋଇଛି ଈଷତ୍ ଅସ୍ୱଚ୍ଛ ।

ସାଇକେଲରୁ ଓହ୍ଲାଇବା ପରେ ଏହି ଯୁବକଟି ପକେଟରୁ ଗୋଟିଏ କେଶ ବାହାର କରି ଗୋଟିଏ ସିଗାରେଟ୍ ଟାଣିଲା । ଅନ୍ୟ ଆଡ଼କୁ ଚାହିଁବା ପୂର୍ବରୁ ତାହାର ଆଖି ପଡ଼ିଲା ନିଜର ଯୋତା ଉପରେ । ତାର ବି· ଏସ୍· ଏ· ସାଇକେଲର ସିଟ୍ ତଳୁ ଖଣ୍ଡେ କନା ବାହାର କରି ସେ ସଫାକଲା ତାହାର ପାଦୁକା ।

ଅପର ଯୁବକଟି ତାର ଓଠକୁ ଲାଲ ଟକ୍ ଟକ୍ କରି ପାନ ଗୋଇବାରେ ଲାଗିଥାଏ । ସେ ପିନ୍ଧିଥାଏ ସ୍ୟାପ ଗ୍ରୀନ୍ ରଙ୍ଗର ସିଏଲ୍ କାମିଜ୍ ଉପରେ ମଭ୍ ରଙ୍ଗ ବେଲ୍‌ଜର୍‌ର ଓପନ୍ କୋଟ୍ । କଟକରେ ତେଲଙ୍ଗା ଧୋବାର ବାସିକରା ଶୁଭ୍ର କାଲିକୋର ପରିଧେୟ ତଳେ କଳାରଙ୍ଗର ଗ୍ରୀସିୟାନ୍ ଯୋତା ।

ଏହି ଯୁବକଯୁଗଳର ମଣ୍ଡନ ଓ ପ୍ରସାଧନପରିପାଟୀ ଅନେକାଂଶରେ ଅଦ୍ଭୁତ ଥିଲେ ବି ସେମାନଙ୍କର ଖୁବ୍ ନିକଟକୁ ଗଲେ ସହଜରେ ଅନୁଭବ କରିହୁଏ ଯେ ଯାତ୍ରାର ପ୍ରାକ୍‌କାଳରେ ସେମାନେ ଯେଉଁ ଯାସ୍‌ମିନ ଅତର ନିଜ ନିଜର ପୋଷାକ ଉପରେ ଛିଞ୍ଚି ଆସିଥିଲେ, ତାହା ବହୁଭାବରେ ରହିଛି ଯାଇଁ ପବନ ଭିତରେ । ଅଧିକ ସୁନ୍ଦର ଯେଉଁ ଯୁବକଟି ସେ ରୁମାଲ୍‌ରେ ମୁହଁ ପୋଛି ବେକ ସଫା କରୁ କରୁ ପଚାରିଲା ତାର ବନ୍ଧୁକୁ—

ଆଉ କେତେ ବାଟ ଅଛି ରେ ?

ଅପର ଯୁବକଟି ସଂଯତ ଭାଷାରେ ଦେଲା ଉତ୍ତର—

ମୁଁ ତ ତୋରି ପରି ନୂଆ ।

ପ୍ରଶ୍ନକାରୀ ଯୁବକଟି ଈଷତ୍ ଅସହିଷ୍ଣୁ ହୋଇ କହିଲା—

ନିଶ୍ଚେ ତୁ ଠକରେ ପଡ଼ିଛୁ ମୁରଲି ! ତୁ କଣ ଭାବୁ ଏଇ ଗଣ୍ଡ ମଫସଲ ଭିତରେ ତୁ ଗୋଟାଏ ରୂପସୀର ସାକ୍ଷାତ୍ ପାଇବୁ ?

ଆଚ୍ଛା, ସେଇ ଲୋକଟା ଆସୁ, ବଳଦଗାଡ଼ିରେ ସେ ବୋଧେ ଆସୁଛି ।

ଟିକେ ଦମ୍ ନେଇ ପୁଣି କହିଲା ମୁରଲି ନାମକ ସେହି ଯୁବକଟି—କିନ୍ତୁ ତୋ କଥା ଯେ ଯୁକ୍ତି ହିସାବରେ ଠିକ୍ ନୁହେଁ ପ୍ରଫୁଲ୍ଲ ! ତୁ ତ ପୁଣି ଦେଖିଚୁ ଲକ୍ଷ୍ମୀକି ?

ଜିଜ୍ଞାସୁ ହୋଇ କହିଲା ପ୍ରଫୁଲ୍ଲ—

ଲକ୍ଷ୍ମୀ ?

ମାଧବର ସ୍ତ୍ରୀ । ଶଙ୍କର ବାବୁଙ୍କ ପୁଅ, ଯିଏ ଏବର୍ଷ ସବ୍‌ଡେପୁଟି ହେଲା ।

ତା' ହେଲେ ତୁ କହିବାକୁ ଚାହୁଁ ମଫସଲଟା ଖାଲି ଲକ୍ଷ୍ମୀମୟ ?

ନା, ମୁଁ କାହିଁକି ତା' କହିବି । ହୁଏତ ଆମେ ଯାହାକୁ ଦେଖିବାକୁ ଯାଉଚେ ସେ ରୂପସୀ ହୋଇ ନ ପାରେ । ଯେମିତି ଆମେ କଟକର ମହଲ୍ଲାସାହି, ଝୋଲସାହି କମ୍ବା ମେହେନ୍ଦିପୁରରୁ ଗୋଟିଏ ରୂପସୀ ପାଇପାରିବା ନାହିଁ—ଏଠି ହୁଏତ ସେଇଆ ଘଟିପାରେ ।···ଆଉ ମୁଁ ତୋ ପାଖରେ ଖୁବ କୃତଜ୍ଞ ରହିଲି ପ୍ରଫୁଲ୍ଲ ! କଟକର ଗାଡ଼ି ଘୋଡ଼ା ଛାଡ଼ି ତୁ ଯେ ଆଜି ମୋ ସାଙ୍ଗରେ ଏ ଖରାତରାରେ କନ୍ୟା ଦେଖିବାର ସାଥି ହେଲୁ, ଏଥିପାଇଁ ମୁଁ ଖୁବ୍ ଉପକୃତ ।

ମୁରଲିର କଥା ଶୁଣିବା ଭିତରେ ପ୍ରଫୁଲ୍ଲ ଆଉ ଗୋଟିଏ ସିଗାରେଟ୍ ଧରିଲା । ଆଉ ଗୋଟିଏ କାଢି ଦେଲା ମୁରଲିକି । ସିଗାରେଟ୍‌ରେ ନିଆଁ ଧରିସାରି ସେ ହସି ହସି କହିଲା—

ଘର ତ କାଇଁଦା ଜଗୁଚୁ ରେ··· ।

ସବୁ କଥାର ଉତ୍ତର ନ ଥାଏ କିମ୍ବା ସବୁ କଥାର ଉତ୍ତର ଦିଆଯାଏ ନା । ସେଥିପାଇଁ ହୁଏତ ନୀରବ ରହିଲା ମୁରଲି । କିନ୍ତୁ ସେ ପ୍ରଫୁଲ୍ଲକୁ ଉତ୍ତର ଦେବ କଣ, ସେ ଯେ ନିଜେ ଉତ୍ତର ପାଇବାର ଆକାଂକ୍ଷୀ । ସେ ମନେ ମନେ ଭାବୁଛି, ସେହି ଲୋକଟି ତାକୁ ସତ କହିଛି ନା ମିଛ ? ଯାହା ତ ହେଉଥିଲା ଭିତରେ, ଆଜି ସେ ପ୍ରଫୁଲ୍ଲକୁ ଟାଣିଆଣିଛି ଏହା ଭିତରକୁ । ପରିଣାମ ଯଦି ଭଲ ନ ହୁଏ, ସେ ଯେ ପ୍ରଫୁଲ୍ଲ ପାଖରେ ଚିରଦିନ ଲାଗି ଉପହାସର ପାତ୍ର ହୋଇ ରହିବ । ସେ ପୁଣି ଭାବେ, ଅନ୍ୟର ଉପହାସଟା ତ ବଡ଼ କଥା ନୁହେଁ । ତାହାର ଏ ଦିଗରେ ଅକୃତକାର୍ଯ୍ୟତା କଣ ଏକ ମସ୍ତ ପରାଜୟ ନୁହେଁ ନିଜ ପକ୍ଷରେ ?

ମାଟ୍ରିକୁଲେଶନ୍ କ୍ଲାସ୍‌ରେ ଥିବାବେଳେ ବାପା ତାର ମରିଗଲେ । ବାପା ତାର ପାଉଥିଲେ ପଚିଶଟି ଟଙ୍କା ପେନ୍‌ସନ୍ । ଭାଗ୍ୟକୁ ସେ ସରକାର ଘରେ ଓଭର୍-ସିଅର୍ ଚାକିରୀ ଖଣ୍ଡେ ପାଇଥିଲେ, ସେଥିପାଇଁ ସେ ବୃଦ୍ଧ ବୟସରେ ପାଉଥିଲେ ବୃତ୍ତି । ତାହାରି ଉପରେ ଥିଲା ସାରା କୁଟୁମ୍ବର ଆଶ୍ରୟ । ସେ ମଧ ବନ୍ଦ ହେଲା ଶେଷକୁ । ସେ ଯେ କିପରି ଏତେ ବାଟ ଆସିଲା, ସେ ଯେ କିପରି ଏମ୍. ଏ. ପର୍ଯ୍ୟନ୍ତ ପଢ଼ି ପାରିଲା, ଏହା ମଧ ସେ ଭାବିପାରିଲା ନାହିଁ । ତାହାର ଦୃଷ୍ଟି ଯେପରି ସେହି ପଥ ତାକୁ ଦେଖାଇ ଦେଲା । ଆଖି ତାର ସହସା ଚାଲିଗଲା ପ୍ରଫୁଲ୍ଲର ପକେଟ୍ ପାଖକୁ ।

ଏହି ସମୟରେ ପ୍ରଫୁଲ୍ଲ କହିଉଠିଲା—

ଆରେ ନୋଟ୍ ଖଣ୍ଡେ ଉଡ଼ିଗଲା ରେ ମୁରଲି...

ମୁରଲି ଦେଖିଲା, ପ୍ରଫୁଲ୍ଲ ମନୋଯୋଗ ଦେଇ ନୋଟ୍ କେତେ ଖଣ୍ଡ ଧରିଛି ହାତରେ, ଆଉ ବୋଧହୁଏ ସେଗୁଡ଼ିକ ଗଣୁଥିଲାବେଳେ ସେଥିରୁ ଖଣ୍ଡେ ନିଜସ୍ୱ କରିଛି ପବନ ।

ମୁରଲି ଝଟ୍ ଯାଇଁ ନୋଟ୍ ଖଣ୍ଡିକୁ ହସ୍ତଗତ କଲା ପାଖର ଧାନକିଆରୀ ଉପରୁ ।

ଏତିକିବେଳେ ପଛରୁ ଡାକ ଶୁଭିଲା—ବାବୁମାନେ, ଫେରିଆସନ୍ତୁ, ଫେରିଆସନ୍ତୁ—ଆମେ ସା'ଙ୍ଗେ ଯିବା ନେଇଁ—ଆମ ବାଟ ଇଆଡ଼େ ।

ପ୍ରଫୁଲ୍ଲ ସାଇକେଲ ଧରି କହିଲା—

ଆମକୁ ଯେ ଏଥର ଫେରିବାକୁ ପଡ଼ିଲା ମୁରଲି !

ମୁରଲି ସଂକ୍ଷେପରେ କହିଲା—କିନ୍ତୁ କଟକକୁ ନୁହେଁ ।

ଏହା ପରେ ସେମାନେ ଆସି ପହଞ୍ଚିଲେ ସେହି ଲୋକଟି ପାଖରେ ।

ପହଞ୍ଚିଲାକ୍ଷଣି ପ୍ରଫୁଲ୍ଲ ବଡ଼ ପାଟିକରି ପ୍ରଶ୍ନକଲା—

କହେ, ତୁମେ ଏତେବେଳଯାଏ କୁଆଡ଼େ ଗଲ ?

ଲୋକଟି ହାତ ମଳି ମଳି କହିଲା—

ଆଜ୍ଞା, ମୟୂର ଆଉ ମୂଷା କଣ ସମାନ ? ମୟୂର ଯେତେହେଲେ ପକ୍ଷୀ । ଆପଣଙ୍କର ଶୂନଗାଡ଼ି, ଆଉ... । ଆଜ୍ଞା, ଆପଣମାନଙ୍କର ଶ୍ରୀଅଙ୍ଗ କୁଶଳ ତ ?

ମୁଖମଣ୍ଡଳର ଭଙ୍ଗୀ ସହ ଅଭିବ୍ୟକ୍ତିର ଶୈଳୀ ଏବଂ ତାହାର ଭାଷା ଅତି

ଉପଭୋଗ୍ୟ ହୋଇପଡ଼ଲା । ସେଥିରେ ନ ହସି ରହି ପାରିଲ ନାହିଁ ପ୍ରଫୁଲ୍ଲ । ମୁରଲି ମୁରୁକି ମୁରୁକି ହସୁଥାଏ । ହସି ହସି କହିଲା ପ୍ରଫୁଲ୍ଲ—କହୋ, ତମେ କଣ କୋଉଠି ନାଟ ଦଳରେ ଥିଲ କି ?

ତାହାର କାର୍ଯ୍ୟ ପ୍ରଶଂସିତ ହୋଇଛି ବୋଲି ଲୋକଟି ମନେ କଲା । ସେ ପୁନର୍ବାର କହିଲା ସେହିପରି ଅଭିନୟର ଭଙ୍ଗୀରେ—

ଏ ବଅସରେ ସେ କାମ କଣ ହେବ ଅଁଜ୍ଞା, ଏଇ ଟିକେ ଗାଁରେ ଯାଇଁ ଚଇତନର ଆଖଡ଼ାରେ ବସାଉଠା କରିବା କଥା···

ଅତି ରୁଚିକର ବୋଧହେଲା ମୁରଲିଙ୍କ ଏହି ଲୋକଟିର କଥାବାର୍ତ୍ତା । ବିଶେଷତଃ ତାହାର ସମ୍ବନ୍ଧ ଏଠାରେ ହେବାକୁ ଯାଉଛି ଭିନ୍ନ ରକମର । ଆଉ ସେହି ସମ୍ବନ୍ଧର ମଧ୍ୟସ୍ଥ ଏହି ଯାତ୍ରାଦଳର ଲୋକ—ଏହା ତାଙ୍କୁ ଭାବିବାକୁ ଅତ୍ୟନ୍ତ ଖରାପ ଲାଗିଲା । ସେ ଲୋକଟିର ଚେତନା ଫେରାଇ ଆଣିବା ପାଇଁ କହିଲା—

କୋଉ ବାଟେ ଯିବା ତମ ଗାଁକୁ ସନେଇବାବୁ ?

ଭରତମୁନିଙ୍କର ନାଟ୍ୟଶାଳାରେ ପୂର୍ବଜନ୍ମରେ ତାଲିମ ହୋଇଥିଲା ବୋଧହୁଏ ଲୋକଟି । ସେଥିପାଇଁ ତାର ଅସ୍ଥି ମଜ୍ଜାରେ ଫୁଟିପାରୁଛି ନୃତ୍ୟର ଲୀଳା । ସେ ହସ୍ତ ଦୁଇଟିରେ ଅଭିନୟ ବିକାଶ କରି ପୁନଶ୍ଚ କହିଉଠିଲା—

ଆଜ୍ଞା, ଏଇ ବାଟେ । ଏଇ ଶଗଡ଼ ଗୁଳାରେ ଠିକ୍ । ଅଡ଼ାରେ ଦାସିଆ, ଗାଡ଼ି ଅଡ଼େଇଲୁ ଗୁଳାକୁ, ବାବୁମାନେ ଦେଖିବେ ଆମ ଗାଁର ବାଟ ।

ସଡ଼କ ଉପରୁ ଗାଡ଼ିବାଲା ଗାଡ଼ି ଗଡ଼େଇଦେଲା କୃଷି ଜମିଭିତରେ ପଡ଼ିଥିବା ଶଗଡ଼ ଗୁଳାକୁ । ପଛକୁ ଉଡ଼ିଆସିଲା ଗୁଳାର ଧୂଳି । ମୁରଲି ଓ ପ୍ରଫୁଲ୍ଲ ରୁମାଲ୍ ହଲେଇ ଟିକେ ପଛକୁ ଘୁଞ୍ଚିଗଲେ ।

ମୁହଁଟା ଭଲଭାବରେ ରୁମାଲ୍‌ରେ ପୋଛିନେଇ କହିଲା ପ୍ରଫୁଲ୍ଲ—

ତମ ନାଁ ତା' ହେଲେ ସନାତନ ?

ଆଜ୍ଞା !

କୌଣସି ରହସ୍ୟର ଦ୍ୱାରୋଦ୍‌ଘାଟନ କରିବା ପାଇଁ, ଆଉ ଉପଭୋଗ କରିବା ପାଇଁ ଏହି ଅଦ୍ଭୁତ ଲୋକଟିର କ୍ରିୟାକଳାପ, ପ୍ରଫୁଲ୍ଲ ଭାବି ଭାବି କହିଲା—

ଆଚ୍ଛା, ସନାତନ ବାବୁ, ଆମେ କାହାଁକି ଆସିଛୁ କହିଲେ ?

ଯେପରି କୌଣସି ପାପ କଥା ପ୍ରକାଶ କରିବାକୁ ପଡ଼ିଲା ସନାତନକୁ । ହାତ ମଳି ମଳି, କାନ୍ଧକୁ ନଚେଇ, ମଝିରେ ମଝିରେ ପାନ ଛେପ ଢୋକି ଲୋକଟି କହିବାକୁ ଲାଗିଲା—

ଆପଣ ଆସିଚନ୍ତି······ଉଁ, ଆପଣମାନେ ଆସିଚନ୍ତି···ଆସିନା'ନ୍ତି ଆଉ କଣ, ହୁଁ···ଆସିଚନ୍ତି ତ······

କିଛି ସମୟ ଦମ୍ ନେଇ ପୁଣି ଲୋକଟି କହିବାକୁ ଲାଗିଲା—

ହେଇ, ଏଇ ଖାଇବ ହାତ—ସେ ବରଗଛ ଗୋଟା ସେଠି ଦିଶୁନେଇଁ··· ସେଇଟା ଗୋକର୍ଣ୍ଣ ବର । ଗୋକର୍ଣ୍ଣ ବର କଣ ବାବୁ ଜାଣିଚନ୍ତି ନା ? ଗୋରୁକର୍ଣ୍ଣ ପରି

ଦେଖିବାକୁ ସେ ବରଗଛର ପତର । ଆଉ ତାର କରରେ, ଓ ହେଇ, ସେଠି ଯୋଉ ଦେଉଳ ଦିଶୁଚ, ସିଏ କପିଳଶରଙ୍କ ଦେଉଳ । ସେଇଠି ଯଜ୍ଞ ଆରମ୍ଭ ହେଇଚ—କାଲି ସେଇଠି ଶେଷ ହୁମ ପଡ଼ିବ । ଆରେ···

ଏହି ସମୟରେ ସନାତନର ଆଖି ପଡ଼ିଲା ଆଗର ଗାଡ଼ିବାଲା ଉପରେ । ସେ ପାଟିକରି କହିଉଠିଲା—

ଆରେ ଗାଡ଼ି ହ' କଲୁ କାଇଁକି—ଯା, ଘରକୁ ନେଇଯା' । ଘରେ କଇଦବୁ, ପାଣି ଫାଣି ସବୁ ଯୋଗାଡ଼ କରିବେ । ଚରଣ ଧୌତ କରିବାକୁ—ମୁଖ ଧୌତ କରିବାକୁ ସବୁ ଯୋଗାଡ଼ କରିଦେବେ । ହଁ······ବାବୁଙ୍କର ଚମଡ଼ା ବାକ୍ସ··· ହଁ ସୁଟ୍‌କେଶ୍‌ଟା ମେଲି ବଖରାରେ ରଖିବ । ଭାଗବତଘର ଆଡ଼େ ନବ ନେଇକି ।

ଏହାପରେ ଗାଡ଼ିବାଲା ଚାଲିଗଲା । ମୁରଲି ଏବଂ ପ୍ରଫୁଲ୍ଲ ଲୋକଟିକୁ ଯେତେ ବୋକା ବୋଲି ମନେ କରୁଥିଲେ, ଦେଖିଲେ ଲୋକଟା ଭିନ୍ନ ଧରଣର । କିନ୍ତୁ ତାହାର ଏହିସବୁ ଅବାନ୍ତର କଥାରେ ସେମାନେ ଅସନ୍ତୁଷ୍ଟ ହେଉଥିଲେ ମଧ୍ୟ କୌତୂହଳୀ ହୋଇ ଉଠୁଥିଲେ ଅନେକ ।

ସନାତନ ପୁଣି କହିବସିଲା—

ହଁ, ମୁଁ କଣ କହୁଥିଲି କି ଆଜ୍ଞା ! ଆଜ୍ଞା ମାପ୍ କରନ୍ତୁ, ସେଇ ଗାଡ଼ିଆଳଟାକୁ ବିଦା ନ କରିଦେଇ······ପର ଝିଅ, ବୋହୂ କଥା···ହଁ ଜାଣିଲେ ନା, ସେଠି ଯୋଉ ତୋଟା ପଇଲା ନେଇଁ ବାଟରେ, ସେଇଟା ମେଲଣ ତୋଟା, ସେଠି ଦୋଳକୁ ବାଇଶି ମଉକା ମେଲଣ ହୁଏ । ସେଇଠି ଗୋଟାଏ ଟୁଙ୍ଗୀଘର ଦେଖିଲେ ନେଇଁ······! ···ହଁ, ଦେଖିଥେବେ ଯେ, ଡେବିରି ହାଣ୍ଡି ରଇଥିବ···ସେଇଠି ଛତ୍ରେସ୍ତା ସନ ହେଇଥିଲା ଯଜ୍ଞ ।

ଧୈର୍ଯ୍ୟ ଧରିପାରିଲା ନାହିଁ ଆଉ ପ୍ରଫୁଲ୍ଲ । ତାହାର ଅଧୈର୍ଯ୍ୟକୁ ପ୍ରକାଶ କଲା ସେ ବ୍ୟଙ୍ଗରେ ।

ଆଉ ଗୋଦସ୍ତା ?

ନିର୍ବିକାର ଭାବରେ କହିଲା ଲୋକଟି ।

ଗୋଦସ୍ତା ସାଙ୍ଗରେ ଆମର କଣ ଅଛୁ ! ଏଇ ଯୋଉ କପିଳଶରଙ୍କ ଯଜ୍ଞ ନାଗି ସିନା ଏତେ କଥା କହିବସିଲି । କାଲି ପୂର୍ଣ୍ଣାହୁତି । ସବୁ ବୋହୂ, ଝିଅ ସେଠିକି ଆସିବେ । ଦେଖିବ ତ, ଦେଖୁଥା—ଦେଖିଲେ ତ ପିଲାଟାକୁ ଆମର ଖାଇ ଯିବନେଇ ତମେ ଆଉ । ଓଃ, ଦେଖିବ ନେଇଁକି ପିଲାଟା ତ ! ଏ ସନେଇ ବଳର ଆଖି ଆଉ ଏମିତି ସେମିତି ନୁହେଁ । ଚଇତନିଆର ଗୋଟିପୁଅ ସବୁ ମୁଇଁ ବାଛୁଚ ଗାଁ ଗାଁ ବୁଲି ।··· ଇନାମ୍ ମିଳିବ ଏକା । ହଁ···ବାବୁ, ଆଛା,···ଆଜ୍ଞା, ଆପଣଙ୍କର ନାଁଚ ଏ ସନେଇ ବଳ ଆଉ ଜାଣିଲା ନେଇଁ ।

ପ୍ରଫୁଲ୍ଲ ଏତିକିବେଳେ ଇଂରେଜରେ କହିଲା ମୁରଲିକି—

ଲୋକଟାର ବୁଦ୍ଧି ତାର ଚେହେରା ସଙ୍ଗରେ ବିଶ୍ୱାସଘାତକତା କରୁଛି । ତାହା ପରେ ହସି ହସି ସେ କହିଲା ସନାତନକୁ—

ମୋ ନାଁ ପ୍ରଫୁଲ୍ଲକୁମାର ଭରଦ୍ଵାଜ ।

କହିଉଠିଲା ଆଶ୍ଚର୍ଯ୍ୟ ହୋଇ ସେହି ଲୋକଟି—

ଭରଦ୍ଵାଜ ! ଏ ତ ନୂଆ ସାଙ୍ଗିଆ ବାବୁ ! ସାହାଣି କ ସୁନ୍ଦରୀ କ ବଳବନ୍ତରାୟ କ ବଳ କ ରାଏ ଏସବୁ ଛାଡ଼ି ଯାଇ ଧରିଲେ ଗୋଟା ଚଢ଼େଇକ !

ହଠାତ୍ ବିସ୍ମିତ ହୋଇପଡ଼ିଲା ପ୍ରଫୁଲ୍ଲ । ସେ ସେହି ବିସ୍ମୟର ଭାଷାରେ କହିଲା—

ଚଢ଼େଇ ?

ହଁ ଆଜ୍ଞା, ଭରଦ୍ଵାଜ ମାନେ ଭଦଭଦଳିଆ ଚଢ଼େଇ ନୁହେଁ ଆଉ କଣ ! ସେ ଦେଖୁଡ଼ ଭଞ୍ଜିଆଙ୍କର ଭରଦ୍ଵାଜ ଗୋତ୍ର ଯେ, ସେମାନେ ଯା ଭଦଭଦଳିଆକୁ ଦେଖିଲେ ଦଣ୍ଡବତ ହେବେ । ଯା କୁହନ୍ତୁ, ଏକା ପହିଲୁ ପ୍ରଜାପତ ଭଦଭଦଳିଆ ମୁହଁ ଗୃହିଁଥିଲେ ବର୍ଷ୍ଟାଯାକ ଆଉ କଏ ହଟେ ! ଟୋକାସବୁ ନାଗିଥେବେ ଖଣ୍ଡାଭୂଜାଲ ମାଳବାରେ— ମୁଁ ତ ବୁଲୁଥେବ ଭଦଭଦଳିଆଟା ନାଗି ! ଓ, ଆଚ୍ଛା ଗୋତ୍ର ଏକା ! ମୁହଁ ଗୃହିଁଲେ ଯଶ ।

ସିଗାରେଟ୍ ବାହାର କରି ପ୍ରଫୁଲ୍ଲ ଓ ମୁରଲି ଗୋଟିଏ ଲେଖାଏଁ ଧରିଲେ । ଗୋଟିଏ ବଢ଼ାଇ ଦେଇ ସନାତନକୁ ଦିଆସିଲି ମାରିଲା ପ୍ରଫୁଲ୍ଲ । ଏକା ଶୋଷାରେ ସିଗାରେଟ୍‌ଟାକୁ ଅଧା କରିଦେଲା ସନାତନ । ସିଗାରେଟ୍‌ର କାଗଜ ଜଳିଉଠିଲା ହୁତ୍‌କନ । ତାହାପରେ ସିଗାରେଟ୍‌କୁ ଫୁଙ୍କିଦେଇ ଶ୍ଳେଟ ଶ୍ଳେଟ ଶୋଷାଦେଲା ସେଥିରେ । ପ୍ରଫୁଲ୍ଲ ସନାତନକୁ ଯେପରି କଚ୍ଛ ବୁଝାଇବାକୁ ଚେଷ୍ଟାକଲା । ସେ କହିଲା ଆସ୍ତେ ଆସ୍ତେ—କୌଣସି କଥା ଯେପରି କଳ୍ପନାରୁ ସଂଗ୍ରହ କଲା ସେ ।

ଜାଣିଲ ସନାତନ, ଜଣେ ଋଷିଙ୍କ ଆଶ୍ରମରେ ଖୁବ୍ ଭଦଭଦଳିଆ ଚଢ଼େଇ ରହୁଥିଲେ—ମାନେ ଆଶ୍ରମର ଗୃହପଟରେ ଯୋଉସବୁ ଗଛ ଥେଲା ସେଇଥିରେ । ସେଥିପାଇଁ ଋଷିଙ୍କ ନାଁ ଦିଆହେଲା ଭରଦ୍ଵାଜ । ଯେମିତି ବାଲିହୁଙ୍କାରୁ ବାହାରିଲେ ବୋଲି ନାଁ ହେଲା ବାଲ୍ମୀକ ଋଷି । ଆଉ ଭରଦ୍ଵାଜ ଋଷି ଗୋତ୍ର ଗଢ଼ିସାରିଲା ପରେ ଭଦଭଦଳିଆ ଚଢ଼େଇକି ନ ମାରିବାକୁ, ଆଉ ତାଙ୍କ ଗୋତ୍ରର ଲୋକେ ତାଙ୍କୁ ଦଣ୍ଡବତ ହେବାକୁ ନିୟମ କରିଦେଲେ ।

## ॥ ଦୁଇ ॥

ଏହିପରି କଥାବାର୍ତ୍ତା ପରେ ସେମାନେ ଆରମ୍ଭ କଲେ ଚାଲିବାକୁ । ମୁରଲି ଓ ପ୍ରଫୁଲ୍ଲ ଯୋଡ଼ା ଅପରିଷ୍କାର ହେବା ଭୟରେ ଗୁଳାର ଧୂଳିବାଟ ଗୁଡ଼ ହିଡ଼ ଉପରେ ଚାଲୁଥାନ୍ତି । କିନ୍ତୁ ଗାଡ଼ିଗୁଳା ଠିକ୍ ହିଡ଼ କରେ କରେ ଯାଇ ନାହିଁ । ସେଥିପାଇଁ ଧାନଗଛର ଥୁଣ୍ଟା ମୂଳ ଉପରେ ସେମାନଙ୍କୁ ସାଇକେଲ୍ ଗଡ଼ାଇ ଚାଲିବାକୁ କଷ୍ଟ ହେଉଥାଏ । ଚାଲୁ ଚାଲୁ ମୁରଲି କହିଲି—

ସନେଇ ବାବୁ, ଧାନକଟା ସରିଚି ବୋଲି ସିନା, ତା' ନ ହେଲେ ଏ ବାଟେ ତମ ଗାଁକୁ ଗାଡ଼ି ଯାଏ କେମିତି ?

ସନାତନ ବି ଏହା ମଧ୍ୟରେ ଚାହୁଁଥିଲି କଥା କହିବାକୁ । ସେ ଉତ୍ସାହିତ ହୋଇ ଏ କଥାର ଉତ୍ତର ଦେବାକୁ ବସିଲି—

ଆଜ୍ଞା କାହିଁକି, ସେତେବେଳେ ତ ସବାରି ବେଠହରାରେ ଯିବାକୁ ହବ । ଆଉ ଆଜ୍ଞା ଦେଖନ୍ତୁ—ଓ ହେଇ, ସେଠି ଯେଉଁ ହାଟଘରଗୁଡ଼ା ଦିଶୁଚନେଇଁ, ସେଇଟା ବରଠା ହାଟ । ସଡ଼କରୁ ଭାଙ୍ଗି ସେଇବାଟେ ଗାଡ଼ି ଚଳେଇ ତା ବାଦେ ସେ ଦଣ୍ଡା ଭିତର ଦେଇ କପିଳଶର ପାଖକୁ ଆସିଲେ ତ ସରିଲା । କପିଳଶରଙ୍କ ପାଖରୁ ତ ସଫା ସଡ଼କ ପଡ଼ିଚି ଆମ ଗାଁକୁ ।

ଧେତ୍ ମୁଁ ଆଉ ଚାଲିପାରିବି ନେଇଁ । ଲୋକଗୁଡ଼ା ହିଡ଼ ଖଣ୍ଡେ ବି ଭଲ କରି ବସେଇ ନାହାନ୍ତି—ଏତେ ଖାଲ ଠିପର ବାଟରେ ମଣିଷ ଚାଲେ !

ବିରକ୍ତହୋଇ କହି ଉଠିଲି ପ୍ରଫୁଲ୍ଲ । କହି କହି ସେ ମଧ୍ୟ ଛିଡ଼ା ହୋଇପଡ଼ିଲି ସେଇଠି । ରୁମାଲ୍ କାଢ଼ି କେବଳ ମୁହଁ ପୋଛିବାକୁ ଲାଗିଲି ।

ସବୁ ସାହସ ହଜିଗଲି ସନାତନର ଯେପରି । ମନେ ମନେ ସେ ହୋଇ-ପଡ଼ିଲି ମଧ୍ୟ ଅତି ଶଙ୍କିତ । କଣ ଭାବି ସେ ହଠାତ୍ କହିଲି—

ଆଜ୍ଞା, ରଖିଦିଅନ୍ତୁ ଶୂନ୍‌ଗାଡ଼ି ସେଇଠି—ମୁଁ ତାର ସୁବିଧା କରୁଚି ।

ଏହା କହି ସେ ନିକଟରେ ଥିବା ଗୋଟିଏ ଗୋଟିକିଆ ଘର ପାଖକୁ ଦୌଡ଼ି ଦୌଡ଼ି ଚାଲିଗଲି । ଦେହରେ ତାର ତୋରିଆ କାମିଜ ଖଣ୍ଡିକ ପବନରେ ଫୁଲିକି ଫୁଲିକି ଉଠୁଥାଏ । ଭଙ୍ଗା ହୋଇ ପଡ଼ିଥିବା ନୀଳ ରଙ୍ଗର ଶୀତ ଚଦର ଖଣ୍ଡିକ ବି ନାଚି ଉଠୁଥାଏ ତାର ଚାଲିକୁ ଅନୁସରଣ କରି କାନ୍ଧ ଉପରେ ।

ଶେଷରେ ସେ ଘର ପାଖରେ ପହଞ୍ଚି ଡାକ ପକେଇଲି ସନାତନ—

ନିଧିଆମା, ଲୋ ନିଧିଆମା ! ନିଧିଆ ଘରେ ଅଛି ?

ଘରୁ ଜବାବ ଦେଲା ବୋଧହୁଏ ନିଧିଆମା, କିନ୍ତୁ ବାହାର ଆସିଲା ବୋଧହୁଏ ନିଧିଆ । ମୁହଁରେ ତାର ଖଣ୍ଡେ ଦରପୋଡ଼ା ପିକା । ଉଚ୍ଚ ମୂଳଦୁଆର ଅପ୍ରଶସ୍ତ ପିଣ୍ଡା ଉପରେ ଠିଆହେଲା ନଗ୍ନବକ୍ଷ ବଳିଷ୍ଠ ଏକ ଯୁବକ ।

ହାତ ହଲେଇ ସନାତନ କହିଉଠିଲା—

ଅନେଇଚୁ କଣ ରେ, ଧାଇଁଆ ଧାଇଁଆ—ଧାଇଁଆରେ ନିଧିଆ । ମଣିଷର ମାନ ଇଜ୍ଜତ୍ ସବୁ ଗଲା—ତମେ ସବୁ ଥାଇଁ ଆଉ କଣ କରୁଚ ଆମର !

ଉଚ୍ଚ ମୂଳଦୁଆ ଉପରୁ ଗଡ଼ିବାର ଉପକ୍ରମ କରିଥିଲା ନିଧିଆ । କେତେକ ବଡ଼ ବଡ଼ ଜଡ଼ା ଗଛ ଏବଂ ଶେଷକୁ ଗୋଟିଏ ଶ୍ରେଷ୍ଠ ଖଜୁରିଗଛ ଅତିକ୍ରମ କରି ସନାତନର ପାଖରେ ସେ ଆସି ପହଞ୍ଚିଲା ।

ନିଧିଆକୁ ସେହିଠାରେ ତାହାର ବକ୍ତବ୍ୟ କିମ୍ବା ନିର୍ଦ୍ଦେଶ କହିଦେଇଥିଲେ ପ୍ରାୟ ଶେଷ ହୋଇଥାନ୍ତା ସନାତନର କର୍ତ୍ତବ୍ୟ—କିନ୍ତୁ ତାହା ସେ ନ କରି ନିଧିଆକୁ ସଙ୍ଗରେ ଡାକି ନେଇଗଲା ଯେଉଁଠାରେ ଛିଡ଼ା ହୋଇଥିଲେ ସେହି ଯୁବକ ଦୁଇଟି ।

ସେଠାରେ ପହଞ୍ଚି ସନାତନ ଖାନ୍‌ଦାନ ଆଡ଼ାରେ କହିଲା—ବାବୁମାନେ ଆଇଚନ୍ତି କଟକରୁ, ବଳିଆର ସିଂଙ୍କ ଚଉପାଢ଼ୀକି ଯିବେ । ହୁଁ ଜାଣିଲୁ ନିଧିଆ—ଏଇ ଶୂନ୍‌ଗାଡ଼ି ଦି'ଖଣ୍ଡ ନେଇ ତୁ ବଳିଆର ସିଂଙ୍କ ମେଲରେ ପହଁଚେଇବୁ।···ହୁଁ, ଜାଣିଲୁ, ହୁଁ, ଘର କଉଡ଼ିଆ ଟଙ୍କ ଇଏ···ହୁଁ, ଜାଣିଲୁ ତତେ, ତୋ ଘର ଢିଅ ଏମିତି ଗବଗଛ···ହଁ, ଆରେ ତୋ—ବାଟରେ ଗୋଟାଏ ବରକୋଳି ଗଛ ଥେଲା ଅଛି ନା···ହୁଁ, ବରକୋଳି ତ ଫଳିଥିବ । ହଁ ସବୁ ବରକୋଳିଯାକ ବିକିଲେ···ଆରେ ହଁ, ତୋ···ବରକୋଳି ଗଛରେ ଯେତେ କୋଳି ଫଳିଥିବ—ସେତିକି ଟଙ୍କା ହବ ଏ ଶୂନ୍‌ଗାଡ଼ି ଦିଟାର ଦାମ୍ !···କି ତା' ଗୁହିଁ ବେଶୀ—ହୁଁ, ଇଏ କଣ ଜଳିଆ କି ଧନିଆର ଶୂନ୍‌ଗାଡ଼ି ହେଇଚ ନା କଣ ? ଦେଖ୍ କେମିତି ଚକ୍ ଚକ୍ ଦୁଉଚ ! ହୁଁ ହୁସିଆର, କିଛି ଖରାପ ନ ହୁଏ ଯେମିତି !

ଚେହେରାଟା ବି ଅପୂର୍ବ ଏଇ ସନାତନର । ମୁଣ୍ଡରେ ପାତିଆ ପଡ଼ି ବାଳ ଉଙ୍ଗାହୋଇଚ । ଡାହାଣ ପାଖ ବାଳ କେତକ—ଯେଉଁତକ କୁକୁଡ଼ାଚୂଳି ପରି ବୁଲିପଡ଼ି ଶେଷରେ ଆସି ମେଣ୍ଢା ଶିଙ୍ଗ ପରି ଘୂରି ପଡ଼ିଛି ଆଗକୁ, ତାହାର ଆଗରେ ମହମ୍‌ର ଗନ୍ଧ ଥିଲା ପରି ମଧ ମାଲୁମ୍ ହୁଏ । ପାଟି ଉପରେ ପେଚ୍ଛାଳିଆ ନିଶ । ସେହି ନିଶର ପ୍ରାନ୍ତରେଖା ଆସି ସ୍ପର୍ଶ କରୁଛି ନିମ୍ନୋଷ୍ଠକୁ, ଆଉ ସେହି ଶେଷ ସୀମାରେ ଲାଗିଛି ପାନଛେପର ବୋଳ । ସେହି ନିଶ ଦି' ପେଣ୍ଡାରେ ହାତମାରି ଆଣି ସନାତନ ପୁଣି କହିବାକୁ ଲାଗିଲା—

ହଁ ଆଜ୍ଞା, ଏଥର ଆପଣମାନେ ସିଗ୍ରେଟ୍ ଖା'ନ୍ତୁ--ରୁମାଲ କାଢ଼ି ମୁହଁ ହାତ ପୋଛିପାଛି ହୁଅନ୍ତୁ । ମୁଁ ମାସକୁ ଦଶ ଦଶ ଥର କଟକ ଯାଉଚ; ମୁଁ କଣ ଆପଣ-ମାନଙ୍କର ଷ୍ଟାଇଲଚଳଣ ଜାଣି ନେଇଁ—ହଁ, ମତେ କୋଉକଥା ଅଛପା ଅଛି ! ହୁଁ, ଆପଣମାନଙ୍କର ଦିନକୁ ପାଞ୍ଚଖଣ୍ଡେ ରୁମାଲ ଦରକାର···ଆରେ ବାପ୍‌ରେ, ଆଉ ସେ

ରୁମାଲ୍ ପୁଣି କ ଧୋବ୍ । ମୁଁ ସବୁ କଥା ଜାଣି ନେଇଚ, ମୁଁ ବ ସବୁ କଥା ଠିକ୍ କର ନେଇଛୁ—ଦେଖିବେ ନେଇଁ କ । ମୁଁ ମୁରଲ ବାବୁଙ୍କୁ ସବୁ କହିଦେଇଚ – ଜାଣିବେ ନେଇଁ କ ପ୍ରଫୁଲ୍ଲବାବୁ—ଜାଣିବେ କଣ ଦେଖିବେ ତ !

ଏତେ କଥା କହିବାର କୌଣସି ଆବଶ୍ୟକତା ଦେଖୁ ନ ଥାଏ ପ୍ରଫୁଲ୍ଲ । ସେ କେବଳ ଶୁଣି ଯାଉଥାଏ ସବୁ । ମୁରଲି ତାହାର ଏହି ପରିଚିତ ଲୋକ, ପୁଣି ବିବାହର ମଧ୍ୟସ୍ଥ ଥିଲୁ, କିଛି କହିପାରୁ ନ ଥାଏ । ଏହି ଶୁଣିବା ଭିତରେ ସେମାନେ ଆସ୍ତେ ଆସ୍ତେ ଚାଲିବାକୁ ବି ଆରମ୍ଭ କରିଛନ୍ତି । ଏତିକ ବେଳେ ପୁଣି ସନାତନ କହିଉଠିଲା—

କିନ୍ତୁ ହେଲେ କଣ ହେଲା, ଆପଣ ଏକା ଲାଏକ୍ କଥାଟା କହିଲେ, ଭଦଭଦଳିଆ ଯୋଗୁଁ ଭରଧ୍ୱାଜ ଋଷି । ଫାର୍ଣ୍ଣା ନ ଥାଇ ପଶୁରାମ କ୍ଷେତ୍ରୀ ! ମୁଁ ଭାବେ କି ଏ ଭଂଜଆଗୁଡ଼ାକ ଭଦଭଦଳିଆକୁ ଦଣ୍ଡବତ ହୁଅନ୍ତି କାହିଁକି ? ମୁଁ ତ ଗଲା ସେତିକବେଳୁ ସେଇ କଥାଟା ଭାବୁଚ—ପଢ଼ାଶୁଣାର ଅକଲ ନ ହେଲେ ଏସବୁ ହୁଏ ! ଥେଲା ତ ଗୋଟାଇ ପିଲା—ବଦନଶ୍ ପ୍ରଫୁଲ୍ଲବାବୁଙ୍କ ନେଖା । ସିଏ ଥେଲେ ଆଜ ଆଉ ଆପଣମାନଙ୍କୁ ଏଯାକେ ଆସିବାକୁ ପଡ଼ଥାନ୍ତା ! ବଳିଆର ସିଂଙ୍କ ଅବସ୍ଥା ଆଉ ଆଜ ଯା ହେଇଥାନ୍ତା !

ମୁରଲି ଅସହିଷ୍ଣୁ ହୋଇ କହିଲା ଏହି ସମୟରେ—

ଆଉ କେତେ ବାଟ ରହିଲା ସନେଇବାବୁ ? ଦିନ ଯେ ଆସି ବୁଡ଼ିବାକୁ ବସିଲା ।

କାନମୂଳର ବାଳ-କୁଣ୍ଡେଇ କହିଲା ସନାତନ—

ଆଜ୍ଞା, ମୁଁ ତ କିଛି ନାକରି କଥା କହୁନେଇ । ବଳିଆର ସିଂଙ୍କ ବଡ଼ପୁଅ ମରିଗଲେ । ଏଇଟା କ'ଣ ନାକରି କଥା; ଆଉ ସେ ଥେଲେ ଯୋଗ୍ୟର୍...

କଥା କାଟି କହିଲା ପ୍ରଫୁଲ୍ଲ—

କଣ କରୁଥିଲେ ସିଏ ?

କରିବେ ଆଉ କଣ, ଆପଣମାନଙ୍କ ପରି କଲେଜ୍‌ରେ ପଢ଼ୁଥିଲେ । ମରି ତ ଗଲେ, ଛାଡ଼ ତାଙ୍କ କଥା । ବାପକୁ ଏକା କାଙ୍ଗାଳ କରିଦେଇ ଗଲେ ସିଏ । ହଁ, ମୁରଲିବାବୁ, ମୁଁ ତ କହିଚ—ଦାବି ନ ହୁଏ ଯେମିତି କିଛି...

ସନାତନର ଏହି ବାଗାଡ଼ମ୍ବରର ହେତୁ ଏତେବେଳେ ମୁରଲି ଓ ପ୍ରଫୁଲ୍ଲ ବୁଝିପାରିଲେ । ପ୍ରଫୁଲ୍ଲ କୌତୂହଳୀ ହୋଇ ପଚାରିଲା—

ସେ କେତେ ଦିନ ହେଲା ଗଲେଣି ?

ହାତରେ ଅଭିନୟ କରି ସନାତନ କହିଲା—

ଏଇ ପାଞ୍ଚ ଛ' ବର୍ଷ ହବ !······ଆଚ୍ଛା ପ୍ରଫୁଲ୍ଲବାବୁ, ଆପଣମାନେ କାହିଁକି ଆଇଚନ୍ତି କହିଲେ ?

ପ୍ରଫୁଲ୍ଲ ଓ ମୁରଲି ଉଭୟେ ଅନାଇଲେ ଉଭୟର ମୁହଁକୁ । ଗୁଲିବା ବାଟରୁ ଆଖି ଟେକି ସନାତନ ମଧ୍ୟ ଅନାଇଲା ସେମାନଙ୍କୁ । ଅନେଇସାରି ପୁଣି ମୁହଁ ଫେରେଇନେଇ କହିଲା—

ଆଜ୍ଞା, ଏଥିରେ ନାଜ କଣ ଅଛି ? ଆପଣ ଆଇଚନ୍ତି ଯଜ୍ଞ ଦେଖିବାକୁ— ଏଥିରେ ନାଜ କଣ ? ବଡ଼ଚଣା ଡାକବଙ୍ଗଳାରେ ଥିଲେ, ମୁଁ ଏବେ ଆପଣମାନଙ୍କୁ ଯଜ୍ଞ ଦେଖିବାକୁ ଡାକିଆଣିଲି ; କ'ଣ ହେଇଗଲା ଏଥିରେ ?

ମୁରଲି ଓ ପ୍ରଫୁଲ୍ଲ କେତେକ ପରିମାଣରେ ଆଶ୍ୱସ୍ତ ହେଲେ ବର୍ତ୍ତମାନ । ପ୍ରଫୁଲ୍ଲ ନିଶ୍ୱାସ ମାରି ଇଂରେଜିରେ କହିଲା ମୁରଲିକି—

ଲୋକଟା ତ ବଡ଼ ଅଦ୍ଭୁତ ! ଫ୍ରଏଡ୍‌ଙ୍କର ଆକୁ ବୋଧହୁଏ ବୁଝିବା ମୁସ୍କିଲ ହେଇଥାନ୍ତା ।

ପୁଣି କହିଲା ସନାତନ—

ଆପଣ ଇଂରେଜିରେ ଯା' କହନ୍ତୁ, ମତେ ଏକା ଗାଳି ଦଉନାଆନ୍ତି ଏ କଥା ସତ ; କିନ୍ତୁ ଏ ଶଳା ଲୋକଙ୍କ ପେଇଁ ମୁଁ ଏତେ କଥା କହିଲି । ଶଳାଗୁଡ଼ା କେତେ ରକମର କଥା ଉଠେଇବେ । ଆଉ କଥାଟା ପ୍ରଘଟ ହେଇ ଯେବେ ଭାଙ୍ଗିଯାଏ ତ ଏ ଶଳା ମୁଣ୍ଡଟାକୁ କାଟିଦେଇ ମତେ ବାଟ ଗୁଲିବାକୁ ହବ ଗାଁଆରେ ।

ପ୍ରଫୁଲ୍ଲ ସମ୍ଭାଳି ନ ପାରି ଫେଁ କରି ହସିଉଠିଲା । ହସ ସମ୍ଭାଳୁ ସମ୍ଭାଳୁ ମୁରଲି କହିଲା—

ଆମେ ଯେ କାଲି ଭୋରୁ ଗୁଲିଯିବୁ ବୋଲି କଥା ହେଇଚି ସନେଇ ବାବୁ, କଣ ଭୁଲିଗଲେଣି କି ?

ଚଟ୍‌କରି କହିଉଠିଲା ସନାତନ—

ସେଇନାଗି ତ ଗିଚାଗିଚି କାମ ଫିନିଶ୍ ।

କହିସାରି ଗୋଟାଏ ଫୁଟ୍‌କି ମାରିଲା ସନାତନ ।

ପ୍ରଫୁଲ୍ଲ ହସି ହସି କହିଲା—

ଫିନିଶ୍ କଣ ସନାତନ ବାବୁ ?

ସନାତନ ଖୁବ୍ କାଇଲ ମାନିଗଲା ଏ କଥାରେ ଯେପରି । ଛେପ ଟୋକି ନେଇ ସାହସ ବାନ୍ଧିନେଲା ସିଏ । ଭିତରେ ଭିତରେ ଗଳା ସଫାକରି କହିଲା—

ଆଜ୍ଞା, ମତେ କଣ ଆଉ ଏମିତି କରି ପାଇଲେ ? ଆପଣଙ୍କ କଇଲଣିରୁ ଆମେ ଆଉ କିଛି ଅକଲ ପାଇନୁ ! ଦଶ ଦଶଟା କେଶ୍ ମୋ ହାତରେ ଛି ! ଏଇ ଯୋଡ଼ି ତଳହଟିଆ ଓକିଲ ପଞ୍ଚାଟା, ତାଙ୍କର ଅଧେ ରୋଜଗାର ମୋ ହାତରେ ।......କିନ୍ତୁ କଥାରେ ଅଛି ରଥ ଦେଖା......କଦଳୀ ବିକା...

ଏଥରକ ଉତ୍ତର ଦେଲା ମୁରଲି, ଆଉ ଏଠି ମଧ୍ୟ ପ୍ରକୃତ ମୁରଲିହିଁ ଉତ୍ତର ଦେବାର କଥା । ସେ କହିଲା—

ନା' ଆମର ଖାଲି ରଥ ଦେଖାଟା ଇ ହଉ ।

କିଛି ସମୟ ପରେ ସେମାନେ ଗୃଷଜମିର ହାଡ଼ବାଟ ଅତିକ୍ରମ କରି ପହଞ୍ଚିଲେ ଗୋଟିଏ ଛୋଟ ଆମ୍ବତୋଟା ଭିତରେ । ଦକ୍ଷିଣ ପାଖରେ ଅନତିଦୂରରେ ରହିଲା କପିଳେଶ୍ୱରଙ୍କ ମନ୍ଦିର । ସେଠାରେ ଯଜ୍ଞ ଉତ୍ସବର କୀର୍ତ୍ତନ ହେଉଥାଏ । ସେହି କୀର୍ତ୍ତନର ସ୍ୱର ଭାସି ଆସୁଥାଏ ପବନରେ ଏହି ଯୁବକମାନଙ୍କ ପର୍ଯ୍ୟନ୍ତ ।

ଦିଗନ୍ତରେ ସୂର୍ଯ୍ୟାସ୍ତ ହେଲା ଏତିକବେଳେ । ସୂର୍ଯ୍ୟଙ୍କୁ ବିଦାୟ ଦେଇ ଉଡ଼ିଯାଉଥାନ୍ତି ନୀଡ଼ାଶ୍ରୟୀ ବିହଗର ଦଳ । ଗୋଟିଏ ପ୍ରଶସ୍ତ ଆମ୍ବଗଛର ଉପରେ କ୍ଲାନ୍ତହୋଇ ବସିପଡ଼ିଲେ ଯୁବକ ଦୁହେଁ । ଉଭୟେ ଗୋଟିଏ ଗୋଟିଏ ସିଗାରେଟ୍ ଟାଣିଲେ ବସି ବସି । ସନାତନ ମାଟି ଉପରେ ବସିପଡ଼ି ପକେଟରୁ ବଡ଼ ଅଣ୍ଟାଳିବାର ଅଭିନୟ ଭିତରେ ବାହାରିଲା ଗୃହିଁଲା ସେମାନଙ୍କଠାରୁ । ବାହାରିଲ ସହ ଗୋଟିଏ ସିଗାରେଟ୍ ବଢ଼ାଇ ଦେଇ ପଚ୍ଚରିଲା ପ୍ରଫୁଲ୍ଲ—

ଆଉ କେତେ ବାଟି ରହିଲା କହୋ ? ରାତିରେ ଆମେ ଆଉ ଏ ବାଟରେ ଗୃଲପାରିବୁ ନାହିଁ ଏକା ।

ଏତିକବେଳେ ମୁରଲି ଗାଇଉଠିଲା—

ଆମ୍ର କାନନ ଗ୍ରୁଇ ପରି ତାର ଚକୁର ଗୁରୁ……

କବିତାର ଛନ୍ଦଟି ଆବୃତ୍ତି କରି ମୁରଲି ବୋଧହୁଏ ଭାବିବାକୁ ଲଗିଲା ଆଉ କିଛି । ବର୍ତ୍ତମାନ ସନାତନ ଉତ୍ତର ଦେବାର କଥା; ମାତ୍ର କଥା କହିଲା ପୁଣି ପ୍ରଫୁଲ୍ଲ ।

ସେମିତି ସବୁ ସ୍ୱପ୍ନ ଦେଖ୍ ନା ବର୍ତ୍ତମାନ ଭୁ । ଚକୁର ସ୍ଥାନରେ ହୁଏତ ଆଜି ଦେଖିବାକୁ ହେବ ବିରାଟ ଅବଗୁଣ୍ଠନ । ମୋର ଜମା ବିଶ୍ୱାସ ନାହିଁ ଏହି ଲୋକମାନଙ୍କର ମନ୍ତବ୍ୟ ଉପରେ ।

ଶେଷ ପଂକ୍ତିଟି ଇଂରେଜରେ କହିଲା ପ୍ରଫୁଲ୍ଲ ।

ସନାତନ ଦେଖିଲା, କେବଳ ଇଂରେଜ କଥାଟିକ ନୁହେଁ, ସମସ୍ତ ଏହି ଓଡ଼ିଆ କଥା ବି ତା' ପକ୍ଷରେ ହୋଇଉଠିଲା ଦୁର୍ବୋଧ । ସନାତନ ଭାବିଲା, ଏଇଟା ତାର ବାପ ମା'ଙ୍କର ଦୋଷ, ଆଜି ସେଥିପାଇଁ ଚିନ୍ତାକରି ଲାଭ କଣ ?

ସବୁ ଚିନ୍ତାକୁ ପଛକୁ ଫିଙ୍ଗିଦେଇ ସେ ଉଠୁ ଉଠୁ ହୋଇ ସିଗାରେଟ୍‌ଟା ଜୋର୍‌ରେ ଟାଣିନେଇ ଫୁ କରି ଗୋଟିଏ ଧୂଆଁର ସ୍ରୋତ ବୁହାଇଦେଇ କହିଲା—

ହେଇ ନଈଆ ସେଠି ଚୈତ୍ରକଣରେ ହେଲାଣି ଶୂନ୍‌ଗାଡ଼ ନେଇ । ଆମେ ଏଥର ଯିବା ଗୃଲନ୍ତୁ……

ଏହା କହି ସେ ସମ୍ପୂର୍ଣ୍ଣଭାବରେ ଛିଡ଼ା ହୋଇପଡି ପଛପାଖ ଲୁଗାରୁ ଧୂଳି ଝାଡ଼ିବାକୁ ଲଗିଲା ।

ସନାତନର ଏ କଥାରୁ ପ୍ରଫୁଲ୍ଲ ଓ ମୁରଲି ଅନୁମାନ କଲେ ଆଉ ବୋଧହୁଏ ବେଶୀ ବାଟ ନାହିଁ । ତାହା ପରେ ସେମାନେ ଦୂରକୁ ଅନାଇ ଦେଖିଲେ ବାଁ ଦିଗରେ ଗୋଟିଏ ଯୋର ପାର ହେଉଛି ନଈଆ ବି କାନ୍ଧରେ ସାଇକେଲ ବିଖଣ୍ଡକୁ କାନ୍ଧେଇ ।

ସେମାନେ ଚାଲିବାର ଉପକ୍ରମ କଲେ ଏହା ପରେ । କାନ୍ଧରେ ଭଙ୍ଗା ହୋଇ ପଡ଼ିଥିବା ଶୀତଚାଦରର ଖଣ୍ଡକୁ ଖୋଲି ସନାତନ ନିଜର ଦେହଟିକୁ ଆବୃତ କଲା ।

କପିଳେଶ୍ୱର ପାଖଦେଇ ଯେଉଁ ପଥଟି ଜନପଦର ଅନ୍ତର୍ଥି ହୋଇଛି, ସେମାନେ ସେ ବାଟେ ଗଲେ ନାହିଁ । ପ୍ରଶସ୍ତ ଟ୍ରଙ୍କ୍‌ରୋଡ ଯୋଉର ଏହି ପଟ ଶେଷମୁଣ୍ଡରେ ଯେଉଁ ଅପ୍ରଶସ୍ତ ରାସ୍ତାଟି ପଥିକମାନଙ୍କର ପଦଚିହ୍ନରେ ନିଜକୁ କରିରଖିଛି ପରିସ୍ଫୁଟ, ସେହି ପଥକୁ ନିଜ ନିଜର ପଦଚିହ୍ନରେ କଲେ ସେମାନେ ଅଲଙ୍କୃତ । ସେହି ସରୁ ରାସ୍ତାଟି ପାର ହେବା ପରେ ସେମାନେ ଗୋଟିଏ ବିସ୍ତୀର୍ଣ୍ଣ ଆମ୍ବତୋଟା ଭିତରେ ପଶିଲେ । କିଛି ସମୟ ପରେ ସେମାନେ ସ୍ପର୍ଶ କଲେ ଗ୍ରାମଦାଣ୍ଡର ସୀମା ।

ସାୟଂକୃତ୍ୟ ପାଇଁ ସେହି ସମୟରେ ଯୋଉ କୂଳକୁ ଆସୁଥିଲେ ଗ୍ରାମର ସୀମନ୍ତିନୀ କେତେକ । କେହି କେହି ସେମାନଙ୍କ ମଧ୍ୟରୁ ପଥ ପାର୍ଶ୍ୱରେ ଆଡ଼ହୋଇ ଠିଆ ହେଲେ । କେହି ଯେପରି ଲୋଭ ସମ୍ବରଣ କରି ନ ପାରି ଏହି ସୁଦର୍ଶନ ଯୁବକ ଦୁହିଁଙ୍କର ରୂପକୁ ସେମାନଙ୍କର ଦର୍ଶନେନ୍ଦ୍ରିୟର ନୈବେଦ୍ୟ ରୂପେ କଲେ ଗ୍ରହଣ । କାହାରି ମଧ୍ୟରେ ପ୍ରତିକ୍ରିୟା ମଧ୍ୟ ଦେଖାଗଲା—ଦ୍ୱାରବନ୍ଧର ସମୀପବର୍ତ୍ତିନୀ ହେଉଁ ହେଉଁ କେହ କେହି ନବୀନା ଚଞ୍ଚଳ ପଦବିକ୍ଷେପରେ ଆତ୍ମଗୋପନ କଲେ ଗୃହାନ୍ତରାଳରେ । ଯେପରି ଏହି ଅସୂର୍ଯ୍ୟଂପଶ୍ୟାମାନଙ୍କ ପାଇଁ ଏହି କ୍ଷୁଦ୍ର ଜନପଦ-ପଥରେ ହୋଇଛି ସୂର୍ଯ୍ୟାଗମ ।

ସେମାନଙ୍କର ଚକ୍ଷୁକୁ ନିର୍ଯ୍ୟାତିତ କରୁ ନ ଥିଲେ ଯୁବକ ଦୁହେଁ । ଅଧିକନ୍ତୁ ସେମାନେ ଉତ୍ସୁକ ହୋଇ ଦେଖୁଥିଲେ ଏହି ସୀମନ୍ତିନୀମାନଙ୍କର ସୁଷମା । ସେମାନଙ୍କ ମଧ୍ୟରୁ ଜଣକୁ ଆଜ ସେମାନେ ଖୋଜିବାକୁ ଆସିଛନ୍ତି ଏତେଦୂର । ସେମାନଙ୍କର ଭାବନାର କାର୍ଯ୍ୟାଳୟ ଦୁଇଟି ମସ୍ତିଷ୍କ ଭିତରେ ବିଭିନ୍ନଭାବରେ ଅସ୍ତିତ୍ୱ ବିକାଶ କରୁଥିଲେ ମଧ୍ୟ ଗତିର ଦିଗ ଥାଏ ଅଭିନ୍ନ—ଯେପରି ବିଭିନ୍ନ ଜାହାଜର ଦିଗନିର୍ଦ୍ଦେଶକାରୀ ଯନ୍ତ୍ର ଏକ ଅଭିନ୍ନ ଦିଗକୁ ଚାଳି ଦେଇଥାଏ ତାର ଲକ୍ଷ୍ୟ ।

କିଛି ଦୂର ଆସି ସେମାନଙ୍କର ହଠାତ୍ ଧାରଣା ହେଲା ଯେ, ସନାତନ ସେମାନଙ୍କ ସଙ୍ଗରେ ନାହିଁ । ସେମାନେ ଉଭୟେ ବୁଲିପଡି ଚାହିଁଲେ ପଛକୁ । ପ୍ରାୟ କୋଡିଏ ହାତ ବ୍ୟବଧାନରେ—ଯେଉଁଠି ତୋଟା ଭିତରର ସ୍ୱାଧୀନ ସରୀସୃପ ପଥ ବକ୍ରାକାରରେ ଆନତ ହୋଇଛି ପଲ୍ଲୀ-ଜନମାନଙ୍କର ଯୁଗ ଯୁଗର ପଦାଘାତରେ, ସେହିଠାରେ ବିନମ୍ର ଭୂମିଷ୍ଠଭାବରେ ସନାତନକୁ ଦେଖିଲେ ସେମାନେ । ଏ ପର୍ଯ୍ୟନ୍ତ ସେଠାରେ ଦୁଇ ତିନୋଟି ପଲ୍ଲୀବଧୂ ବ୍ରୀଡ଼ାବନତ ଭଙ୍ଗୀରେ ପାର୍ଶ୍ୱପରିବର୍ତ୍ତିତ କରି ଛିଡ଼ା ହୋଇଛନ୍ତି । ସେମାନଙ୍କର ନିତମ୍ବରେ ଚନ୍ଦ୍ରହାର । ଏହି ମେଖଳିତ ନିତମ୍ବର ସୌନ୍ଦର୍ଯ୍ୟପଟ ଉପରେ ସେମାନଙ୍କର ଦୃଷ୍ଟିଶକ୍ତି ଯେପରି ଅବସରର ଆବେଦନ ପତ୍ର ଲେଖିବସିଲା । ମୁହୂର୍ତ୍ତିକର ବିଶ୍ରାନ୍ତି ଭିତରେ ସେହି ଶିକ୍ଷିତ ଯୁବକ-ଯୁଗଳର ମନ ଭାବନାର ସୈକତ ଭୂମିରେ ବିଚରଣ କରିଗଲା—ସେମାନେ ଭାବିବାକୁ ଲାଗିଲେ, ସମାଜ ବୋଧହୁଏ ଏହି ନବୀନାମାନଙ୍କୁ ନିର୍ଦ୍ଦେଶିତ କରିପାରି ନାହିଁ, ସେମାନଙ୍କର ଅନ୍ୟତମ ଶ୍ରେଷ୍ଠ ସମ୍ପଦ କିଣ ! ଧନ୍ୟ ଏହି ସାମାଜିକ ପୁରୁଷ ! ଯୁବତୀର ନିତମ୍ବ

ଉପରେ ମେଖଳା ଝୁଲାଇବା ପାଇଁ ଯେ ଅଜସ୍ର ପରିଶ୍ରମ କରେ, ସେହି ପୁଣି ସହସ୍ର ଚେଷ୍ଟା କରିଛି ତାହାକୁ ଆଚ୍ଛାଦିତ କରି ରଖିବା ପାଇଁ ।

ପ୍ରଫୁଲ୍ଲ କହିଲା ଏହା ପରେ ମୁରଲିକୁ—

ଏ ସମାଜର ପୁରୁଷ ଦିନେ ହୁଏତ ହିଲ୍ ମଙ୍ଗଳ ହବ । ନ ହେଲେ ଏ ସମାଜ ହେବ କେବଳ ପୌଢ଼ାର ଲୀଳାକ୍ଷେତ୍ର । ଏ ଦେଶରେ ଯୁବତୀର ଆଗମନ ଘୋର ଅନ୍ୟାୟ !

ବାକ୍ୟର ଶେଷ ସଂଯୋଗ ଦେଇ କହିଲା ମୁରଲି—

ବିଡ଼ମ୍ବନା ମଧ୍ୟ ।

ଏହାପରେ କେବଳ ସେମାନେ ସନାତନକୁ ଦେଖିବାକୁ ପାଇଲେ । ସେ ଛୁଟି ଛୁଟି ଆସୁଥାଏ ସେମାନଙ୍କ ପାଖକୁ । ପାଖରେ ପହଞ୍ଚି ସନାତନ କହିଉଠିଲା ଉପଯାଚକ ହୋଇ—

ଆଜ୍ଞା, ଆମେ ତ ଆଉ ପଥର ଖଣ୍ଡେ ରଖିପାରିନୁ ବାପ ଅଜାଙ୍କର । ଏଇ ମାଟି ମୁଠା, ପଥର ଖଣ୍ଡେ ପକେଇ ରଖିଚୁ ତାଙ୍କ ନାଁରେ ।

ମୁରଲି କିମ୍ବା ପ୍ରଫୁଲ୍ଲ କେହି ଏହାର କୌଣସି ଅର୍ଥ ବୁଝିପାରିଲେ ନାହିଁ । ସମସ୍ତ ଶିକ୍ଷା ସେମାନଙ୍କର ଏହି ଲୋକଟି ସକାଶେ ଯେପରି ଅଥର୍ବ ହୋଇଛି ।

ଦୌଡ଼ି ଆସିବାର ଶ୍ରାନ୍ତି ଅପନୋଦନ କରି ସନାତନ ପୁଣି କହିବାକୁ ଲାଗିଲା—

ଆମ ବଂଶର ଶମ୍ଶାନ ଏଇ ଚୋଟା କଣରେ । ପୂର୍ବପୁରୁଷଙ୍କର ସମାଧିକି ଆମେ ଓଲିକି ହଉ ଏବାଟେ ଯିବା'ସିବା କଲେ । ଓଃ, ମନ୍ଦୁଟା କେତେ ନିର୍ମଳ ଲାଗିଲା !

ଯୁବକ ଦୁଇଟି ଯେପରି ବିଶେଷ କୌଣସି ଭବ୍ୟତାର ଆତ୍ମପ୍ରକାଶ ଗ୍ରହୁଁ-ଥିଲେ ସେମାନଙ୍କ ଭିତରେ । ସେଥିପାଇଁ ସେମାନେ ଭାବୁଥିଲେ ଆଉ ବୋଧହୁଏ ଅଳ୍ପ ବାଟ ରହିଲା । କିନ୍ତୁ ସେମାନେ କୌଣସି ମନ୍ତବ୍ୟ ପ୍ରକାଶ କଲେ ନାହିଁ ସନାତନର ମତ ଉପରେ । ସେମାନେ ଭାବୁଥିଲେ ଆଉ ବୋଧହୁଏ ଅଳ୍ପ ବାଟ ରହିଲା । କିନ୍ତୁ ସେମାନେ ଏହି ଅଦ୍ଭୁତ ସାର୍ଥୀଟିର ଚରିତ୍ର ସମ୍ବନ୍ଧରେ କୌଣସି ଭାବନାକୁ ନିର୍ବାସିତ କରିପାରୁ ନ ଥିଲେ ସେମାନଙ୍କ ମନରୁ । ସେମାନେ କେବଳ ଉପାୟହୀନତାର ହିଁ ସାକ୍ଷ୍ୟ ଲାଭ କରୁଥିଲେ । ସେଥିପାଇଁ ଏହି ବିଚିତ୍ର ଲୋକଟିକୁ ଇଡିଅଟ୍, ମୂର୍ଖ କିମ୍ବା ବୋକା କହି ବସିବା ହେବ ମସ୍ତବଡ଼ ଭୁଲ୍ । ବରଞ୍ଚ ସନାତନ ପାଇଁ କୌଣସି ବିଶେଷଣ ସଂଗ୍ରହ ନ କରିବା ସବୁଠାରୁ ଶ୍ରେୟ ।

କିନ୍ତୁ ପ୍ରତ୍ୟୁତ୍ପନ୍ନମତିତାର ପର୍ଯ୍ୟାପ୍ତ ଭ୍ରୂଣ ଯେ ଏହି ସନାତନ ଭିତରେ ନିହିତ ଏହା ଅସ୍ୱୀକାର କରିହେବ ନାହିଁ ଜମା । ଯେତେବେଳେ ଏହି ପଥିକଦ୍ୱୟ ଗ୍ରାମର ଅନ୍ୟତମ ବୃଦ୍ଧିଷ୍ଣୁ ଶ୍ରେଣୀର ମୁଖ୍ୟ ଲୋକ ରତନ ବଳଙ୍କ ଦାଣ୍ଡ ଆଗରେ ପହଞ୍ଚିଲେ, ସେତେବେଳେ ରତନ ବଳ ଛିଡ଼ା ହୋଇଥିଲେ ଦାଣ୍ଡରେ । ଅର୍ଦ୍ଧ ଶତାବ୍ଦୀବ୍ୟାପୀ ଶିଶିର

ପାର ଦେଖିଲେଣି ସେ ପୃଥିବୀରେ, ତଥାପି ବହୁ ବସନ୍ତର ସ୍ୱାଗତ ଗାଉଛୁ ତାଙ୍କର ରୂପ । ନିଜର ସଙ୍ଗତକୁ ଗ୍ରହିଁ ସେ ପୋଷାକ ପିନ୍ଧି ବାହାରୁଥିଲେ ଯଜ୍ଞ ଦେଖି—ମୁଣ୍ଡର ଚକ୍ଷିତ କମ୍ପଟର ଖଣ୍ଡକ ତାଙ୍କୁ ବଢ଼ିଯ ଶୋଭା ଦେଉଥାଏ । ଆଗରେ ସନାତନକୁ ଦେଖି ସେ ଆଖିରେ ପଗ୍ଗରନେଲେ ତାହାର ସହପାଠୀ ବାବୁମାନଙ୍କର ପରିଚୟ !

ପାଖକୁ ଲଗିଯାଇ ଅର୍ଦ୍ଧସ୍ପଷ୍ଟଭାବରେ ସନାତନ ଝଟ୍ କହିଉଠିଲା ଡିଷ୍ଟ୍ରିକ୍ଟ୍ ଅଫିସରମାନ ଆଉ ଭାଇ ଅଫିସରମାନ । ବାଙ୍ଗୁରିମୁଠା ପୋଲ ଆଉ ଜାମୁଝାଇ ରାସ୍ତା ଦେଖି, ଯାଉଛନ୍ତି ଜଇପୁର ରାସ୍ତାରେ । ସେଠି କାଲି କନଫରସ୍ ହବ । ହାକିମ ଆଜି କଲଆରସିଂଙ୍କ ମେଲାରେ ରହିବେ । ଶୁନଗାଡ଼ି ସବୁ ଚାଲିଗଲା ସେଠିକି । ···ଟୋକା ଦେଖୁଚ କ—ଓଃ—ଭାରି ଗ୍ଲିଁ ! ବାଇଶମଉଜା ଘାଟିଆକୁ ନାକରେ ହାଲ କରିଦେଇ-ଛନ୍ତି ଆଜ । ହୁଃ, ଶଳା ମତେ ମାଗୁଥିଲା ବକ୍‌ସିସ୍ !

କଥାତକ ଯେତେ ଶୀଘ୍ର ପାରେ କହିଦେଇ ସନାତନ ମାରିଲା ସେଠୁ ଚମ୍ପଟ । ଆସି ଯୁବକ ଦୁହିଁଙ୍କ ସାଙ୍ଗରେ ଯୋଗ ଦେଲା ଖୁବ୍ କ୍ଷୀପ୍ର ଗତିରେ । ରତନବଳଙ୍କର ଇଚ୍ଛା ହେଉଥାଏ, ଏହି ହାକିମ ଦୁଇ ଜଣଙ୍କୁ ଭଦ୍ରତାର ପରିଚୟ ଦେଇ ଗୋଟାଏ ଲେଖା ଦଣ୍ଡବତ ପକେଇଥିଲେ ହୋଇଥାନ୍ତା । ମାତ୍ର ସେ ନିରୁପାୟ ହୋଇ ଅନାଇ ରହିଲେ କେବଳ ସେମାନଙ୍କର ଚାଲିକି ।

ମୁରଲି ଓ ପ୍ରଫୁଲ୍ଲ ହସି ହସି ସେତେବେଳକୁ କେବଳ ଦୁଇଟି ସିଗାରେଟ୍‌କୁ ଆଶ୍ରୟକରି ସେଠାରୁ ଅନ୍ତର୍ହିତ ହେବା ସକାଶେ ଆଗକୁ ଗୋଟିଏ ଗୋଟିଏ କଦମ୍ ପକାଇ ଚାଲୁଥିଲେ । ସନାତନ ଆସି ସେମାନଙ୍କ ସହିତ ଯୋଗଦେଇ ଫୁସ୍ ଫୁସ୍ କରି କହିବାକୁ ଲାଗିଲା—

ବାବୁ, ରତନବଳ ଇଏ—ବନା ସୂତାରେ ହାଟ କଲବାଲା । ଲୋକଟା ଭାରି ଫଉଦାରିଆ ବାବୁ । ଭାରି ବଗଡ଼ବାଜ୍ । ଦେଖିଲେ ନେଇଁ ନିଶଦାଟା କେମିତି ତାର ଶିଙ୍ଗାର ହୋଇ ରହିଚ । ···ଏକା ଖେପାକେରେ ତ ଲଙ୍କା ପାର୍ । ନ ହେଲେ ତ ମତେ କେତେ ଜେରା କରିଥାନ୍ତା ଏଇକ୍ଷଣି ।···କଏ···କାହିଁକି ଆଇଚନ୍ତି···କୋଉଠି ରହିବେ···ତୋର ତାଙ୍କର ଚିହ୍ନା ହେଲା କେମିତି ? ···ଆଉ କଣ କଣ ପଗ୍ଗରିଛୁ । ହାକିମ ହୁକୁମାଙ୍କର ନାଁରେ ପାଟି ଚୁପ୍ ବାପଧନଙ୍କର । କହିଲେ ଆଜ୍ଞା, ମୁଁ କଣ ମିଛ କହିଚି···ଆପଣମାନେ ପୁଣି ହାକିମ ହୁକୁମା ହଉଚନ୍ତି ନା—ଆପଣ କଣ ପୁଣି ହେବେ ନେଇଁ ! ମୁରଲିବାବୁଙ୍କର ତ ପୁଣି ଦୋପଟି କାମପେଇଁ ଦରଖାସ୍ତ ପଡ଼ିଚ ।

ମୁରଲି ଓ ପ୍ରଫୁଲ୍ଲ ମନେ ମନେ ହସୁଥାନ୍ତି କେବଳ । ସନାତନ ଯେ ସମସ୍ତଙ୍କ ପାଇଁ ମିଥ୍ୟାର ବାତାବରଣ ସୃଷ୍ଟି କରି ସମସ୍ତଙ୍କୁ ବିସ୍ମିତ କରିଦେଇପାରେ, ଏହା ସେମାନଙ୍କୁ ଅନୁଭବ କରିବାକୁ ପଡ଼ୁଥାଏ ଖାଲି ।

## ॥ ତିନି ॥

ଗୋଧୂଳିର ଶେଷ ଲଗ୍ନରେ ସେମାନେ ପହଞ୍ଚିଲେ ବଳଆର ସିଂଙ୍କ ଚଉ-ପାଢ଼ୀରେ । ଏଠାରେ ପହଞ୍ଚି ଯୁବକ ଦୁଇଟିଙ୍କର ଧାରଣା ସଂପୂର୍ଣ୍ଣ ପରିବର୍ତ୍ତିତ ହୋଇ-ଗଲା ଯେପରି ।

ଦକ୍ଷିଣମୁଖ ଚଉପାଢ଼ୀ ଘରର ସମ୍ମୁଖରେ ପ୍ରଶସ୍ତ ଦାଣ୍ଡ । ଦାଣ୍ଡର ଦକ୍ଷିଣ ପ୍ରାନ୍ତର ସୀମା ଟାଣି ପୂର୍ବରୁ ପଶ୍ଚିମକୁ ଚାଲିଯାଇଛି ଲୋକାଲ ବୋର୍ଡ଼ର ରାସ୍ତା । ସେହି ରାସ୍ତାର ଦକ୍ଷିଣ ଦିଗକୁ ପୁରାତନ ପ୍ରସ୍ତର ସୋପାନ । ସେହି ସୋପାନଶ୍ରେଣୀକୁ ସ୍ପର୍ଶ କରିଛି ବିରାଟ ପୁଷ୍କରିଣୀ । ପୁଷ୍କରିଣୀର ଦକ୍ଷିଣ ପ୍ରାନ୍ତରେ ସବୁଜ ବର୍ଣ୍ଣର ଦଳ । ତଥାପି ପୁଷ୍କ-ରିଣୀର ବହୁଭାଗ ନିର୍ମଳ ସଲିଳରେ ଉଜ୍ଜ୍ୱଳ । ପୁଷ୍କରିଣୀର ମଧ୍ୟଭାଗରେ ଦୀପଦଣ୍ଡିର ଚତୁର୍ଦ୍ଦିଗରେ ଧୂମ୍ରାଭ ଜଳୀୟବାଷ୍ପ । ଜଳୀୟବାଷ୍ପର କିଛି ଉର୍ଦ୍ଧ୍ୱରେ ଏବଂ ପୁଷ୍କରିଣୀର ଶେଷପ୍ରାନ୍ତରେ ଭାସିବୁଲୁଛି କୁହେଳିକାର ସ୍ତର । କୁହେଳିକାର ଆହୁରି ଦକ୍ଷିଣକୁ ନାରିକେଳ ଏବଂ ବିଭିନ୍ନ ପାଦପର କୁଞ୍ଜ । ସେହି ନିବିଡ଼ ପାଦପକୁଞ୍ଜ ଭିତରେ ସନ୍ଧ୍ୟା ଗୋଧୂଳି ହତ୍ୟା କରୁଛି । ଦାଣ୍ଡର ଦକ୍ଷିଣ ପଶ୍ଚିମ କୋଣରେ ଗୋଟିଏ ପ୍ରକାଣ୍ଡ କଦମ୍ବ ଗଛ । କଦମ୍ବ ଗଛର ତଳେ ଶୁଭ୍ରାଭ ଝୁଲଣ ମଣ୍ଡପ । ତାହାର ପଶ୍ଚିମକୁ କିଛି ଦୂରରେ ଅସ୍ତାଚଳ ।

ଝୁଲଣ ମଣ୍ଡପ ଉପରେ ବସି ଚିତ୍କାର କରୁଛି ଏକ ରାଜହଂସ । ତାହା ଯେପରି ମୁମୂର୍ଷୁ ଗୋଧୂଳିର ଆର୍ତ୍ତନାଦ । ସମସ୍ତ ବାୟୁତରଙ୍ଗରେ ଛାଇଯାଇଛି ସେହି ଗୋଧୂଳି-ମୃତ୍ୟୁର ଶ୍ଳେଷ୍ମ—ଆଉ କୁଜ୍‌ଝଟିକାରେ ତାର ଆତ୍ମା ।

ବଳଆର ସିଂହଙ୍କୁ ଦେଖି ଯେପରି ଆହୁରି ଆଶ୍ଚର୍ଯ୍ୟ ହେଲେ ଯୁବକ ଦୁହେଁ । ସେମାନେ ଭାବିଥିଲେ, ଏହି ଗଣ୍ଡ ମଫସଲ ଭିତରେ ସେମାନେ ହୁଏତ ଅତି ସାଧାରଣ ଜଣେ ଲୋକକୁ ଭେଟିବେ । କିନ୍ତୁ ସେମାନେ ଦେଖିଲେ, ବଳଆରସିଂଙ୍କ ଦେହରେ ସଭ୍ୟତାର ଗନ୍ଧ ପ୍ରଚୁର । ଶୁଭ୍ର ଧୋତି ଉପରେ ସେପିଆ ରଙ୍ଗର ଫ୍ଲାନେଲ୍‌ର କାମିଜ୍, ଆଉ ତା' ଉପରେ ଖଣ୍ଡେ କାଶ୍ମୀରୀ ଶାଲ—ରଙ୍ଗଟା ତାର ସାଧା—କିନ୍ତୁ ସେହି ସାଧା ରଙ୍ଗକୁ କହି ହେବ ନାହିଁ ଶୁଭ୍ର । ମୁଖମଣ୍ଡଳରେ ମୁଛ, ଗାଲମୁଛ ଏବଂ ମସ୍ତକର ନିମ୍ନ ଅଂଶରେ ଯାହା କିଛି ବାଳର ସତ୍ତା ଅଛି, ସମସ୍ତ ଶୁଭ୍ରତାର ସନ୍ଧାନୀ । ଦୃଷ୍ଟି ପ୍ରଶାନ୍ତ—ନାସିକାର ଗଢ଼ ତୀକ୍ଷ୍ଣ ଏବଂ ମୁଖର ଭାବ ପ୍ରସନ୍ନ । ଦେଖିବାମାତ୍ରେ ଜଣେ ବିଶିଷ୍ଟ ସମ୍ଭ୍ରାନ୍ତ ଲୋକ ପରି ଜଣାପଡ଼େ—ଆଉ ସେହି ସାମ୍ଭ୍ରାନ୍ତ୍ୟ ଟାଣିନିଏ ଚୁମ୍ବକ ପରି ଅନ୍ୟର ସମ୍ଭ୍ରମ ।

ସେ ବସିଛନ୍ତି ଖଣ୍ଡିଏ ପୁରୁଣା ଆରାମଚୌକି ଉପରେ । ଗୋଡ଼ ତଳେ ଖଣ୍ଡେ ପିଢ଼ା ଏବଂ ତା' ଉପରେ ଓ୍ବେଷ୍ଟ ଖଣ୍ଡେ ନରମ ଗାଲିଚା—ଏ ଶୀତଦିନରେ ପାଦକୁ ଗରମ ଦେବା ପାଇଁ ବୋଧହୁଏ ।

ପାଦର ଗ୍ରୀସିୟାନ୍ ଯୋତା ହାଲକା ଖସେଇଦେଇ ମୁରଲି ପ୍ରଣାମ କଲା ବଲଆରସିଂହଙ୍କୁ । ପ୍ରଫୁଲ୍ଲ ସେହି ଉଦ୍ଦେଶ୍ୟରେ ତାର ଅକ୍ସ୍‌ଫୋର୍ଡ଼୍ ଯୋତାର ଫିତା ଖୋଲିବାକୁ ନଇଁପଡ଼ିଲା । ବଲଆର ସିଂହ ପାଟିକରି କହିଉଠିଲେ ଏହି ସମୟରେ

ଆରେ, ଏ କଦର୍ଯ୍ୟ କଥା କିଏ ଶିଖେଇଚି ତମକୁ ? ମତେ ନମସ୍କାର କରିବାକୁ ଯଦି ଯୋତା ଖୋଲୁଥାଅ ତ ତା'ହେଲେ ଖୁବ୍ ଭୁଲ୍ କରୁଚ ବୋଲି କହିବାକୁ ହବ । କିନ୍ତୁ ଅନେକ ସମୟ ପାଦକୁ କଷ୍ଟ ଦେଲିଣି ; ଯୋତା, ମୋଜା ଖୋଲି ଗରମ ପାଣିରେ ପାଦ ଧୋଇବାକୁ ଭାବୁଥିଲେ ଯୋତା ଖୋଲ, ମୋର କିଛି ଆପତ୍ତି ନାହିଁ ।

ଏହି ସମ୍ମାନାସ୍ପଦ ବୟସ୍କ ଲୋକଙ୍କୁ କୌଣସି ଉତ୍ତର ଦେବାକୁ ଉଚିତ ମନେ କଲା ନାହିଁ ପ୍ରଫୁଲ୍ଲ । ଶେଷରେ ସେ ଯୋତା ହିଁ ଖୋଲିଲା ଏବଂ ନମସ୍କାର ମଧ୍ୟ କଲା ।

ତାହା ପରେ ଆସନ ଗ୍ରହଣ କରିବାକୁ ସେମାନଙ୍କୁ ଇଙ୍ଗିତ କଲେ ବଲଆର-ସିଂହ । ପକ୍କା ଧୂଳିଆ ଘରର ଚଉପାଢ଼ୀରେ ସମ୍ମୁଖ ଦ୍ୱାରର ପ୍ରଶସ୍ତ ବାରଣ୍ଡାର ପଶ୍ଚିମ ପାଖରେ ପୂର୍ବମୁଖ ହୋଇ ବଲଆର ସିଂହ ବସିଥିଲେ । ଦ୍ୱାରର ପୂର୍ବପାଖକୁ ଦୁଇଖଣ୍ଡ ବେତବୁଣା ଚଉକୀ ପଡ଼ିଥାଏ । ପ୍ରଫୁଲ୍ଲ ଏବଂ ମୁରଲି ବସିଲେ ସେହିଠାରେ ।

ସେଠାରେ ପହଞ୍ଚିବାର କିଛି ସମୟ ପରେ ସନାତନ ଘର ଭିତରକୁ ଚାଲି ଯାଇଥିଲା । ବର୍ତ୍ତମାନ ସେ ଗୋଟିଏ ଲଣ୍ଠନ ଘେନି ସେଠାରେ ପହଞ୍ଚିଲା । ବାଲ୍‌ଟିରେ ଗରମ ପାଣି ଏବଂ ତାଳି ହାତରେ ଧରିକରି ପହଞ୍ଚି ବାବୁମାନଙ୍କୁ ଅନୁରୋଧ କଲା ଗୋଡ଼ ଦେଖେଇବା ପାଇଁ ।

ବଲଆର ସିଂହ ସନାତନକୁ ଉଦ୍ଦେଶ୍ୟ କରି କହିଲେ—

ବାବୁମାନଙ୍କର ନିତ୍ୟକର୍ମ ବଢ଼ାଇବାର ସୁବିଧା କର—ସେମାନେ ପୋଷାକପତ୍ର ଛାଡ଼ନ୍ତୁ । ଯା' ସେମାନଙ୍କୁ ଘର ଭିତରକୁ ନେଇଯା ।

ଭିତରକୁ ଗଲେ ସନାତନ ସଙ୍ଗରେ ଯୁବକ ଦୁହେଁ । ଚଉପାଢ଼ୀର ମଝି ବଖରା ପୂର୍ବକୁ ଗୋଟିଏ ବଖରା ସେମାନଙ୍କର ରହିବା ପାଇଁ ନିର୍ଦ୍ଦିଷ୍ଟ ହୋଇଥିଲା । ଏହି ପ୍ରକୋଷ୍ଠର ପୂର୍ବପାଖକୁ ଭାଗବତ ଘର । ସେଠାରେ ପହଞ୍ଚିଲା ପରେ ଆହୁରି ଆଶ୍ଚର୍ଯ୍ୟ ହେଲେ ଯୁବକ ଦୁହେଁ । ବାଟରେ ଗାଡ଼ିଆଳକୁ ଗୃହ ବିଷୟରେ ଯେଉଁ ଇଙ୍ଗିତ ଦେଇଥିଲା ସନାତନ, ସେଥିରୁ ସେମାନେ ଅନୁମାନ କରିଥିଲେ ଯେ ହୁଏତ ଭାଗବତ ଘରର ପୋଥି ପରି ସେମାନେ ଆଜି କୌଣସି ଏକ ଅନ୍ଧକୂପର ଆଶ୍ରୟ ନେବେ । କିନ୍ତୁ ଦେଖିବାକୁ ପାଇଲେ ସେମାନଙ୍କର ଆଶଙ୍କାକୁ ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ କରିଛି ସେହି ପ୍ରକୋଷ୍ଠର ପ୍ରଶସ୍ତ ବାତାୟନ-ଗୁଡ଼ିକ । କକ୍ଷ ମଧ୍ୟରେ ଦୁଇଟି ନାତିବୃହତ୍ ପଲଙ୍କ, ତହିଁରେ ମଧ୍ୟ ମଶାରି ଟଣା

ହୋଇଛି—ଶୟନର ବହୁ ପୂର୍ବରୁ ମଶକମାନଙ୍କର ପ୍ରବେଶାଧିକାର ନିଷେଧ କରି । ଆଉ ଏହି ସୁନ୍ଦର ମଶାରି ଓ ପଲଙ୍କ ଭିତରେ ସୁବିଧାଜନକ ଶଯ୍ୟାର ଯେ ଅଭାବ ଥିବ ଏହା ସେମାନଙ୍କର ଭାବନାକୁ ସ୍ପର୍ଶ କଲା ନାହିଁ । ତଥାପି—ଟ୍ରେଜେରି ଟଙ୍କାରେ ମଧ୍ୟ ଅଚଳ ଟଙ୍କା ରହିଯାଇଥାଏ—ବୋଧହୁଏ ଏହିପରି କୌଣସି ସନ୍ଦେହର ବଶବର୍ତ୍ତୀ ହୋଇ ଗୋଟିଏ ଖଟ ଉପରୁ ମଶାରି ଟେକିଦେଇ ବସିପଡ଼ିଲା ମୁରଲି । ସେହିଠାରେ ବସି ବସି ସେ ତାହାର ଜାମା ଖୋଲିବାକୁ ଲାଗିଲା ଏବଂ ବସି ବସି ସେ ମନେକଲା, ଏହି ଶଯ୍ୟା-ଠାରୁ ଆଉ କୌଣସି କୋମଳ ଜିନିଷ ଏଥିପୂର୍ବରୁ ସେ ସ୍ପର୍ଶ କରିବାକୁ ପାଇ ନାହିଁ ।

ପ୍ରଫୁଲ୍ଲ ତାହାର ଅଲଷ୍ଟର୍ ଖୋଲୁ ଖୋଲୁ ଦେଖିଲା, ମୁରଲି ଯେଉଁ ଶଯ୍ୟା ଉପରେ ନ୍ୟସ୍ତ କରିଛି ତାହାର ଦେହ, ତାହାର କପଡ଼ା ଅତ୍ୟନ୍ତ ସୁନ୍ଦର ଏବଂ କାର୍ପାସ ନୁହେଁ, ତାହା ଆଜକାଲିକାର କଟକ ସହରରେ ଦୁର୍ଲ୍ଲଭ ।

ଏହା ପରେ ସେମାନେ ସନାତନ ସଙ୍ଗରେ ବାଡ଼ିରେ ଯାଇ ପହଞ୍ଚିଲେ । ସେମାନେ ଆହୁରି ହେଲେ ଆଶ୍ଚର୍ଯ୍ୟ, ସନାତନ ଅଙ୍ଗୁଳି ସଙ୍କେତ କରି ଯେଉଁ ସ୍ଥାନଟି ସେମାନଙ୍କୁ ଦେଖାଇ ଦେଉଛି, ପୁରାତନ ହେଲେ ମଧ୍ୟ ତାହା ସୁଦୃଢ଼ ଏବଂ ରୁଚିକର ଗୋଟିଏ ପାଇଖାନା । ଆଉ ଏହି ବାଡ଼ିର ଚତୁଃସୀମା ଅନ୍ଧକାରରେ ହଜି ଯାଉଥିଲେ ମଧ୍ୟ ଆଘ୍ରାଣରେ ଉଲ୍ଲାସ ଦେଉଛି ଅଗଣିତ ପୁଷ୍ପର ସୁଗନ୍ଧ ।

ପ୍ରଫୁଲ୍ଲ ଗୋଟାଏ ସିଗାରେଟ୍ ଟାଣି ଟାଣି ଆସୁଥିଲା । ତାହାର ଲଣ୍ଠନଟା ନେଇ କୂଅର ଚଉତରା ଉପରେ ସନାତନ ରଖିଦେବା ପରେ ସେ ସିଗାରେଟ୍‌ରେ ଜୋରରେ ଗୋଟା ଟାଣ ଦେଇ ସନାତନକୁ ଲକ୍ଷ୍ୟ କରି କହିଲା—

ତମେ ଭାରି ବୋକା ସନାତନ...

ସନାତନ ଚୁମ୍ବକରେ ସମ୍ମତି ଦେଇ କହିଲା—

ଆଜ୍ଞା !

ହସିଉଠି କହିଲା ମୁରଲି—

ତମେ ବୋକା ହେଲ କାହିଁକି ସନେଇବାକୁ ?

କୌଣସି ଲଘୁରସର ଚର୍ଚ୍ଚାକୁ ପ୍ରଶ୍ରୟ ନ ଦେଇ ପ୍ରଫୁଲ୍ଲ ଶକ୍ତଭାବରେ କହିଉଠିଲା—

ତମେ କାହିଁକି ଆଗରୁ ଆମକୁ କହିଲ ନେଇଁ କହି ?

ସେହିପରି ଚୁମ୍ବକରେ କହିଲା ସନାତନ—

କୋଉ କଥା ଆଜ୍ଞା ?

ତମେ କଣ ବୁଝିପାରୁନା କହି ? ଜଣେ ଏତେବଡ଼ ସମ୍ଭ୍ରାନ୍ତ ଲୋକଙ୍କ ଘରକୁ ଡାକଆଣି ତମେ ଆମକୁ କୌଣସି ଧାରଣା ଦେଲ ନେଇଁ ଆଗରୁ ?

ତାହାର ନାମ ପଛରୁ ବାବୁ ଶବ୍ଦଟା ଲୋପ ହେବାବେଳୁ ସନାତନ ବୁଝିସାରିଲାଣି ପ୍ରଫୁଲ୍ଲ ବାବୁ ତା' ଉପରେ ରାଗିଛନ୍ତି । ତାହାର ଦୋଷ ଖଣ୍ଡନ ପାଇଁ ସେ କହିବାକୁ ଲାଗିଲା -

ମୁଁ ତ ସବୁକଥା କହୁଛି ଆଗରୁ ମୁରଲିବାବୁଙ୍କୁ । ଆଜ୍ଞା, ଆପଣ ଇମିତି ଆଉ ଘାବର ହଉଚନ୍ତି କାହିଁକି ?···ବାଘ-ଗୁଲ ଦେଖି ଆପଣ ଡରିବେ ବୋଲି ତ ଆଉ ମୁଁ ଜାଣି ନ ଥିଲି ।···ଏ କାନ୍ଥଯାକରେ ଯେ କେତେ ଫାଟ ତା' କଣ ଅନ୍ଧାରରେ ଆଉ ଦେଖାଯିବ···

ପ୍ରଫୁଲ୍ଲ ଉତ୍ତେଜିତ ହୋଇ କହିଲା······

ସନାତନ ! !

ଏହି ସମୟରେ ଚାକର ଆସି ସେଠାରେ ଗରମ ପାଣିର ବାଲ୍‌ଟି ଓ ତାଳ ଥୋଇଦେଇ ଚାଲିଗଲା । ସନାତନ କେବଳ ତଟସ୍ଥ ହୋଇ ସେହି ଚାକରକୁ ଚାହିଁ ରହିଲା—ତାର ଆଶଙ୍କା ହେଲା, ଏ ଚାକର ତାର କୌଣସି କଥା ଶୁଣି ନାହିଁ ତ !

କିଛି ସମୟ ପରେ ମୁରଲି କହିଲା ଆପେ ଆପେ—

ନୂଆ ଚାହିଁ ପୁରୁଣା ମଧ୍ୟ ଖୁବ୍ ଦରକାରୀ···ନିମୋନିଆ ରୋଗ ଭଲ ହୁଏ ତ ପୁଣି ପୁରୁଣା ଘିଅରେ······

ସନାତନ ଯେପରି ଭୂତଗ୍ରସ୍ତ । ଏହି ଦୁଇ ଯୁବକଙ୍କର ଏହି ଜୀର୍ଣ୍ଣ ପୁରାତନ ପରିବାର ପ୍ରତି ଅନୁରକ୍ତି ଦେଖି ସେ ଆହୁରି ଅନୁତପ୍ତ ହେଲା କେବଳ । କେବଳ ରହିଲା ନୀରବ । ଲଣ୍ଠନଟା ଟିକିଏ ତେଜିଦେଇ ସନାତନର ମୁହଁକୁ ଚାହିଁ କହିଉଠିଲା ପୁଣି ମୁରଲି—

ଭାରି ଶୀତ ହଉଚି ବୋଧେ ତମକୁ ?

ସନାତନ ତଥାପି ରହିଲା ନୀରବ । ତାର ସେହି ନୀରବତା ଉପରେ ପ୍ରାନ୍ତିମା ଟାଣିଦେଇ ପ୍ରଫୁଲ୍ଲ ଲଣ୍ଠନ ନେଇ ଚାଲିଗଲା ପାଇଖାନାକୁ । ପ୍ରଫୁଲ୍ଲ ଚାଲିଯିବାର କିଛିକ୍ଷଣ ପରେ ସନାତନ ମୁରଲି ପାଖକୁ ଲାଗିଆସି ଫୁସ ଫୁସ କରି କହିଲା—

ପ୍ରଫୁଲ୍ଲବାବୁ ଭାରି ବଡ଼ଲୋକର ପିଲା—ନୁହେଁ ?

"ହଁ", ମୁରଲି କହିଲା, "ବାପା ତାଙ୍କର ଆଠକୋଶ ଇଲାକାର ଜମିଦାର । ଆଉ ତାଙ୍କର ଅନେକ ବ୍ୟବସାୟ ଅଛି ।"

ତାହାର କଥାର ପଛେ ପଛେ ସେହି ଅନ୍ଧାର ଭିତରେ ଗୋଟିଏ ତାଳ ଶବ୍ଦରେ ହଠାତ୍ ଚମକି ଉଠିଲା ମୁରଲି । ତାଳ ପଛେ ପଛେ ସେ ଶୁଣିଲା ମଧ୍ୟ ସନାତନର ସ୍ୱର—

ତା' କଉ ନା'ନ୍ତି କାହିଁକି, ନାଗକୁ ନାଗ ଚହ୍ଲେ······

ଏ କଥାର ନିରର୍ଥକ ଅଭିମାନ ଜାଗିଲା ମୁରଲି ଭିତରେ କେବଳ । ତାହାର କିଛି ସମୟ ପରେ ସେମାନେ ଫେରିଆସିଲେ ଚଉପାଢ଼ୀକି । ଚଉପାଢ଼ୀ ଅଗଣାରେ ପହଞ୍ଚି ସେମାନେ ଶୁଣିବାକୁ ପାଇଲେ ତାରଯନ୍ତ୍ରର ସ୍ୱର । ତାହା ପରେ ଦେହର ପୁଲ୍‌ଓଭର୍ ପରେ ଗୋଟିଏ ଲେଖାଁ ଶାଲ୍ ଆଚ୍ଛାଦନ କରି ଯୁବକ ଦୁହେଁ ପହଞ୍ଚିଲେ ବୈଠକଖାନା ଘରେ । ନିଜ ନିଜର ଚକ୍ଷୁକୁ ବିସ୍ମିତ କରି ସେମାନେ ଦେଖିବାକୁ ପାଇଲେ ବଳିଆର ସିଂହଙ୍କ ପାଖରେ ଗୋଟିଏ ପରମାସୁନ୍ଦରୀ କନ୍ୟା ବସି

ବେହେଲାରେ ସ୍ୱରଝଙ୍କାର ତୋଳୁଛି । ବଳିଆର ସିଂହ ସ୍ୱର ବାନ୍ଧୁଛନ୍ତି ତବଲାରେ —ହାତରେ ଖଣ୍ଡେ ଚୂଡ଼ା ଧରି । ସ୍ଲେଟ ବଇଠା ଉପରେ ଜଳୁଛି ଗୋଟିଏ ସୁନ୍ଦର ଲ୍ୟାମ୍ପ୍ । ସାରା କକ୍ଷତଳକୁ ମନୋରମ କରୁଛି ସୁନ୍ଦର ଏକ ଗାଲିଚ୍ଚର ବିସ୍ତୃତି ।

ବାଳକାଟି ନମସ୍କାର କଲା ଯୁବକଦ୍ୱୟଙ୍କୁ ସେଇଠାରେ ବସିବସି—ହାତରେ ତାହାର ବେହେଲାର ସ୍ୱରଣବନ୍ଧନର ଛଡ଼ । ବସିଥାଏ ସେ ବୀରାସନ ପକାଇ । ଯୁବକ ଦୁହେଁ ପ୍ରତିନମସ୍କାର କରି କରି ମନେକଲେ, ଯେପରି ସ୍ଥଳଭାଗକୁ ଆସି ଜଳର ସେଇ ବିକଚ ପଦ୍ମାସନକୁ ଛାଡ଼ି ଆସିଚନ୍ତି ସରସ୍ୱତୀ ।

କ୍ଷଣକର ଚାହାଁଣୀରେ ବାଳକାଟି ଦେଖିଲା, ଆଗରେ ତାହାର ସୁଦର୍ଶନ ଦୁଇଟି ଯୁବକ । ପୌରାଣିକ ଭାଷାରେ ଯାହାକୁ କହିହେବ ଗନ୍ଧର୍ବଯୁଗଳ ।

ଏହି ସମୟରେ ବଳିଆର ସିଂହ ଇଙ୍ଗିତ କଲେ ଯୁବକ ଦୁହିଁଙ୍କୁ ବସିବା ପାଇଁ ।

ରୂପାର କେଟଲିରୁ ଚାକର ଆସି ଚା' ଢାଳିଲା ଦୁଇଟି ପିଆଲାରେ । ତାହା ପରେ ରୂପାରେ ଗୋଟିଏ ରେକାବିରେ ଥୋଇ ଦେଇଗଲା ପାନ ଆଉ ମସଲା ।

ଚା' ପିଇଲେ ବସି ବସି ଯୁବକ ଦୁଇଟି । କିନ୍ତୁ ସେମାନେ ଜାଣିପାରିଲେ ନାହିଁ କଣ ସେମାନେ ପିଉଚନ୍ତି—ଆଉ କଣ ତା'ର ସ୍ୱାଦ ।

ତାହା ପରେ ତବଲାରେ ଟ୍ରେଟ ଟ୍ରେଟ ଟୁକା ବସାଉ ବସାଉ କହିଲେ ବଳିଆର ସିଂହ—

ବୋଧହୁଏ ଆମର ଏଇଟା ଖୁବ୍ ବେସ୍ୱାଦପି—ଏଇ ମଫସଲ ଭିତରେ ଏହିପରି ଗୋଟିଏ ଆବହାଓୟା ଗଢ଼ିବା । କିନ୍ତୁ କଣ କରିବି ବାବା, ଏଇ ଗୁଇଟାରଟା······

ଏଇଠାରେ ସ୍ୱଳ୍ପ ବ୍ୟଥା ଅନୁଭବ କଲେ ବଳିଆର ସିଂହ । ତାହା ପରେ ସେ କହିଲେ —

ପାଗଳ କରିଦେଲା ମତେ ପିଲାଟିକୁ ଏଇ ବେହେଲାଟା । ଆବଶ୍ୟ ତମର ଆଇନ୍‌ଷ୍ଟିନ୍‌ଙ୍କ ପରି ମତେ ଭାବ ନା । ବିଜ୍ଞାନ ସଙ୍ଗରେ ମୁଁ ବେହେଲା ବଜେଇ ପାରିନେଇ— ପାରିଚି ଅଜ୍ଞାନ ସଙ୍ଗରେ ।

କିଛି ସମୟ ରହି ପୁଣି କହିଲେ ସେ —

ଆଉ ଶେଷ ବିଖତରେ ତ ବିଧର୍ମୀ ହୋଇପାରିବି ନେଇଁ ମୁଁ···ଚାଲିଯାଉ କେଇଟା ଧନ ।······ହଁ ବାବା, ଏଇ ମୋର ଝିଅ, ଆକୁଇ ଦେଇଯାଉଚି ଉତ୍ତରାଧିକାର । ଏଇ ସଙ୍ଗୀତଟା ମୋର ଖୁବ୍ କ୍ଷତି କରିଛି ଜାଣି ମଧ୍ୟ ଆକୁ ପୁଣି ମୁଁ ବଜେଇ ଦେଇଗଲି— ପୁଣି ମୋର ପିଲାଟି ହେଇ ।

ଶେଷ କଥାରେ ବଳିଆର ସିଂହଙ୍କର କେବଳ ଖେଦ ଓ କ୍ଷୁବ୍ଧତାର ଗରପ ।

ବେହେଲାରେ ସାନ୍ଦ୍ର ଝଙ୍କାର ତୋଳିଲା ବାଳକାଟି । ଯେପରି ସେ ହଜାଇଦେବାକୁ ଚାହିଁଲା ତାହାର ପିତାର ଏହି କ୍ଷୁବ୍ଧତାକୁ ତାହାର ସ୍ୱରଝଙ୍କାର ତଳେ । ହାତ ତାର ହୋଇଉଠିଲା ଯେପରି ପାଗଳ । ଯେ କୌଣସି ଦର୍ଶକ ଭାବିବ,

ବାଳକାଟି କେବଳ ସୂକ୍ଷ୍ମ ତନ୍ତ୍ରୀଗୁଡ଼ିକୁ ପର୍ଯ୍ୟାପ୍ତ ପ୍ରହାର କରିବା ପାଇଁ ଛଡ଼ିଟିକୁ ବ୍ୟବହାର କରୁଛି ଯେପରି । କିନ୍ତୁ ଯେ କୌଣସି ଶ୍ରୋତା ଭାବିବ ତାହାର ବିପରୀତ, ଯେପରି ଯାଦୁମନ୍ତ୍ରରେ କିଏ ସ୍ୱର-ବନ୍ୟା ବୁହାଉଛି କ୍ଷିପ୍ର ହୋଇ ।

ବଳଆର ସିଂହ ମଧ୍ୟ ନିଜର ପ୍ରବୀଣ ତାଳ ସମନ୍ୱୟରେ ଆଗେଇ ନେଇଗଲେ କନ୍ୟାର ନିପୁଣତାକୁ ।

କିଛି ସମୟ ପରେ ନୀରବ ହେଲା ବାଦ୍ୟ । ହାତର ତନ୍ତ୍ରୀକୁ ତଳେ ଥୋଇଦେଇ ଯୁବକ ଦୁଇଟିର ପ୍ରାଣରେ କମ୍ପନ ତୋଳି ବୀରାସନ ଭାଙ୍ଗି ସରଳ ହୋଇ ବସିଲା ବାଳକାଟି । ପଛରେ ପଡ଼ିଥିବା ଶାଲ୍ ଖଣ୍ଡିକରେ ତାହାର ଦେହ ଆବୃତ କଲା । ସ୍ଥାନବିଶେଷରେ ଶାଢ଼ୀକୁ ସଜାଡ଼ିନେଲା ଠିକେ ଏବଂ ଯୁବକ ଦୁହିଁଙ୍କୁ ଚିହ୍ନିନେଲା ପଲକ ମଧ୍ୟରେ ।

କୋଳରୁ ବାୟାଁଟାକୁ ଖସେଇ ବଳଆର ସିଂହ କହିଲେ—

ଝିଅର ମୋର ନାଁ କଣ ଜାଣିଛନ୍ତି ନା—ନିଦ୍ରା । ଅବଶ୍ୟ ତା'ର ଏଇ ନାଁ ପାଇଁ ମୁଁ ବିଜ୍ଞାନର ଆଶ୍ରୟ ନେଇଛି । ଆଉ ମୋର ନିଦ୍ରା ହିଁ ମତେ ଚେଇଁରଖିଚି ଆଜିଯାଏ ।···ହଁ, ଆପଣମାନେ କିଛି କଥା କହୁ ନାହାନ୍ତି କାହିଁକି ! ନିଦ୍ରା କଣ ଭାବୁଥିବ କହିଲେ ? ଆଜି ସଭ୍ୟତା ତ ଏହା ଶିକ୍ଷା ଦିଏ ନା ଯେ, ଆମେମାନେ ହେଉ ମୂକ । ହସିଉଠି ମୁହଁରେ ଶାଲ୍ ଢାଙ୍କିଦେଲା ନିଦ୍ରା । ନିଜେ ବଳଆର ସିଂହ ମଧ୍ୟ ହସିଉଠିଲେ ନିଜର କଥାରେ । ସେହିପରି ହସି ହସି ସେ କହିଲେ—ନିଦ୍ରା, ଆଗେ ତୁ କଥା କ', ସେମାନେ କଥା ନ କହି ଯିବେ କୁଆଡ଼େ ? ତତେ ସାବାସ୍‌ଟାଏ ତ ପୁଣି ଦେବେ । ପୁରୁଷ ତ ଅନେକ କଥା କହିଛି ।

ପ୍ରଫୁଲ୍ଲ ଓ ମୁରଲି କେବଳ ଆଶ୍ଚର୍ଯ୍ୟ ହିଁ ହେଉଥାନ୍ତି । ଏପରି ସଂସ୍କୃତିବାନ୍ ସମ୍ଭ୍ରାନ୍ତ ବୟସ୍କ ବ୍ୟକ୍ତିଙ୍କ ପାଖରେ କଥା କହିବା ପାଇଁ ସେମାନଙ୍କର ପୁଞ୍ଜି ଯେପରି ସଂଗୃହୀତ ହୋଇ ନାହିଁ ବୋଲି ସେମାନେ ମନେ କରୁଥାନ୍ତି । ଦେହରୁ ଶାଲ୍ ଖଣ୍ଡିକ କାଢ଼ିଦେଇ ବେହେଲା ଧରି ନିଦ୍ରା ତାହାର କଥା କହିବାକୁ ଲଗିଲା ସଙ୍ଗୀତରେ । ବଳଆର ସିଂହ ବାଦ୍ୟ ଛୁଇଁଲେ ନାହିଁ । କାରଣ ନିଦ୍ରା ଗାଉଛି ମୀରବାଈଙ୍କର ଭଜନ—ତାହା ତାଙ୍କର ଅତି ପ୍ରିୟ । ସେ ଶ୍ରୋତା ଶ୍ରେଣୀଭୁକ୍ତ ହେବାକୁ ଲଗିଲେ ।

ସଙ୍ଗୀତ ଶେଷ ହେବା ପରେ ଯୁବକ ଦୁହିଁଙ୍କୁ କଥା କୁହାଇବା ପାଇଁ ବଳଆର ସିଂହ ବୋଧହୁଏ ଚେଷ୍ଟା କଲେ । ସେ ଧୀର କଣ୍ଠରେ କହିଲେ—

ଦୁର୍ବଳ ଲୋକଙ୍କ ପାଇଁ କିମ୍ବା ନିରାଶ୍ରୟମାନଙ୍କ ପାଇଁ ଏଇସବୁ ଭଜନ ଛଡ଼ା ଆଉ କଣ ଆଶ୍ରୟ ହେବ ତା' ହେଲେ ?

ମୁରଲି କହିଲା—

ଆମେ ଆଜି ଅତି ଅପୂର୍ବ ସଙ୍ଗୀତ ଶୁଣିଲୁ···

ଏହି ସଙ୍ଗତିହୀନ ଉତ୍ତର କେବଳ ନିଦ୍ରାର ମୁହଁରେ ହାସ୍ୟ ଫୁଟାଇପାରିଲା । ଏହା ପରେ ସେ ଉଠି ଛିଡ଼ାହେଲା ସେଠାରୁ ଚାଲିଯିବା ପାଇଁ । ନିଦ୍ରା ଛିଡ଼ା ହେବାହାରି ପ୍ରଫୁଲ୍ଲର ଦୃଷ୍ଟି ପଡ଼ିଲା ତାହାର ପାଦ ଦୁଇଟି ଉପରେ । ସେ ନିରୀକ୍ଷଣ କଲା—ସେହି

ସୁନ୍ଦର ଗାଲଗୁଡ଼ିକୁ ତାହା ଧନ୍ୟ କରିଦେଉଛି ଯେପରି । କନ୍ୟାର ଗତି ବୁଝିପାରି ବଳଆର ସିଂହ କହିଲେ—

ଆଚ୍ଛା, ତୁ ବର୍ତ୍ତମାନ ଯା'......

ଯୁବକ ଦୁଇଟିକୁ କେତେକ ପରିମାଣରେ ଆଶ୍ୱସ୍ତ କରି ନିଦ୍ରା ସେଠାରୁ ଚାଲିଗଲା । ତାହା ପରେ ବଳଆର ସିଂହ କହିଲେ—

ଆପଣମାନେ ବୋଧହୁଏ ମୋ ସଙ୍ଗରେ କଥାବାର୍ତ୍ତା କରିବାକୁ ଉଚିତ ମନେ କରୁ ନାହାନ୍ତି ?

"ପ୍ରକୃତରେ ଆମେ ଭୟ କରୁଚୁ"—ବିନମ୍ର ଭାବରେ କହିଲା ପ୍ରଫୁଲ୍ଲ । ହସିଉଠି କହିଲେ ବଳଆର ସିଂହ—

ନାଇଁ, ନାଇଁ, ବଡ଼ ଭୁଲ୍ କରୁଚ ବାବା ! ମତେ ଭୁଲ୍ ବୁଝନା– ଏଇ ବୁଢ଼ାଟା ଜୀବନରେ ଜଣକୁ ହେଲେ ଭୟ ଦେଇନେଇଁ । ମୁଁ ଖାଲି ଜୀବନଟାଯାକ ନିଜ ପେଇଁ ଭୟ ସଂଗ୍ରହ କରି ବୁଲିଚି । ଏଇ ଝିଅଟାକୁ ସଙ୍ଗୀତ ଶିଖେଇ ମୁଁ ହୁଏତ କେତେଟା ମୁହୂର୍ତ୍ତିକୁ ଖୁବ୍ ଠକିଦିଏ । ତା' ପରେ ସେ ମୁହୂର୍ତ୍ତଗୁଡ଼ାକର ଦାୟାଦ ମୋଠାରୁ ଚକ୍ରବୃଦ୍ଧିରେ ବସି ସୁଧ ଆଦାୟ କରେ । ବର୍ତ୍ତମାନ ସେହି ମୁହୂର୍ତ୍ତଗୁଡ଼ାକର ଆକ୍ରୋଶ ପଡ଼ୁଛି ଯାଇଁ ମୋର ଝିଅ ଉପରେ । ତାକୁ ସଙ୍ଗୀତ ଶିଖେଇବା କଣ ପାପ ?

ପ୍ରଫୁଲ୍ଲ ଧୀର ସ୍ୱରରେ କହିଲା –

ଆପଣଙ୍କର ଅନୁଯୋଗର କାରଣ କିଛି ଆମେ ବୁଝିପାରୁନୁ ଆଜ୍ଞା !

ମୁରଲୀ କହିଲା—

ଆପଣ ଯେ ଜଣେ ଆଦର୍ଶ ଜନକ ।

ଅମାୟିକଭାବରେ ହସିଉଠିଲେ ବଳଆର ସିଂହ । କିଛିକ୍ଷଣର ନୀରବତା ପରେ ସେ କହିଲେ –

କିନ୍ତୁ ମୋର ଏଇ ଆଦର୍ଶ ମତେ ନଷ୍ଟ କରିଚି ବାବା ! ଏଇ ବାସ୍ତବତାର ଜଗତରେ ମତେ ପ୍ରତି ମୁହୂର୍ତ୍ତରେ ପିଟିବାରେ ଲଗିଚି ସେ···

ଏତିକ କହି ନୀରବ ରହି କିଛିକ୍ଷଣ ପରେ ପୁଣି ହସିଉଠିଲେ ବଳଆର ସିଂହ । ହସି ହସି କହିବସିଲେ ଗୋଟିଏ ଶିଶୁର ସାରଲ୍ୟ ଧରି—

ଆଦର୍ଶର ପଛରେ ଗୋଡ଼େଇ କୋଡ଼ିଏ ବର୍ଷ ତଳେ ମୁଁ ଥରେ ଜାମୀନ୍ ହେଇଥିଲି ଜଣେ ବନ୍ଧୁଙ୍କ ପାଇଁ । ବନ୍ଧୁ ମୋର ଆଦର୍ଶବାଦକୁ ପଦାଘାତ କରି ହେଲେ ନିରୁଦ୍ଦିଷ୍ଟ –ଆଉ ଆଦର୍ଶକୁ ପୋଷଣ କରି ମୁଁ ହେଲି କାଙ୍ଗାଳ—ପୂର୍ବପୁରୁଷର ସମ୍ପତ୍ତି ବିକ୍ରିକରି ସରକାରକୁ ଗଣିଦେଲି ପଚାଶ ହଜାର ଟଙ୍କା ।

ଯୁବକ ଦୁଇଟି ଅବାକ୍ ହୋଇ ଚାହିଁରହିଲେ ବଳଆଙ୍କୁ । ବଳଆର ସିଂହ ପୁଣି କହିବାକୁ ଲାଗିଲେ—

ଆଉ ତ ବିଧର୍ମୀ ହୋଇପାରିବି ନେଇଁ ବୁଢ଼ାଦିନେ । କିନ୍ତୁ ଏଇ ନିଦ୍ରାକୁ ହୁଏ ତ ବିଧର୍ମୀ କରିପାରିଥିଲେ ମୁଁ କ୍ଷତିପୂରଣ ପାଇ ପାରିଥାନ୍ତି ।

ମୁରଲୀ ବ୍ୟଗ୍ରହୋଇ କହିଲା –

ବିଧର୍ମୀ ?

ଖୁବ୍ ନରମ କଣ୍ଠରେ କହିଲେ ବଳିଆର ସିଂହ—

ହଁ, ବିଧର୍ମୀ—ତାକୁ ମୋର ଧର୍ମ ନ ଦେଇ, ସଂସ୍କୃତି ନ ଦେଇ । ତାକୁ ଅସଭ୍ୟ କରି—ଅନାଦର୍ଶ କରି······।···ତାକୁ ବଞ୍ଚେଇବା ପାଇଁ ମୋର ଆତ୍ମହତ୍ୟା କରିବା ଉଚିତ ଥିଲି ।···କିନ୍ତୁ ଜାଗରଣ ମୋର ଠିକ୍ ହବ ଓଲ୍‌ଟା । ଏ ଘରେ ସେ ଆଜି ନରମ ଗାଲିଚା ବିଛେଇବ ନାଇଁ ନିଶ୍ଚୟ, କିନ୍ତୁ ଏ ଭଙ୍ଗା ଘରଟାକୁ ନିଶ୍ଚେ ସଜାଡ଼ି ଦବ ସିଏ···

ପ୍ରଫୁଲ୍ଲ ଜିଜ୍ଞାସୁ ହୋଇ କହିଲି—

ଜାଗରଣ ?

ମୋର ପୁଅ—

ସଂକ୍ଷେପରେ ଉତ୍ତର ଦେଲେ ବଳିଆର ସିଂହ ।

ଆପଣଙ୍କ ପୁଅ ପରି···

ମୁରଲିର ଏହି କଥା ଶୁଣି କୁହୁଳି କୁହୁଳି କହିଲେ ବଳିଆର ସିଂହ—ହଁ, ମୋର ଆଦର୍ଶ ମରିଯାଇଚି—ମୋର ବଡ଼ ପୁଅ ବିକ୍ରମ । ଅନେକ ଅର୍ଥର ବିନିମୟରେ ତା'ଠାରେ ମୋର ଆଦର୍ଶ ରଖିବା ପାଇଁ ଚେଷ୍ଟା କରିଥିଲି ।···ତା ଆଉ ହୋଇଥାନ୍ତା କିମିତି···

ଏହାପରେ ବଳିଆର ସିଂହଙ୍କ ମୁହଁରେ ଖେଳିଗଲା ରୁକ୍ଷତା ।

ତାହା ପରେ ସେ ଯେପରି ନିଜକୁ ଉତ୍ତର ଦେବା ପାଇଁ କହିଲେ—ହଁ, ମୋର ଆଦର୍ଶ ହିଁ ମରିବ । ଜଣକ ସାଙ୍ଗରେ ସମସ୍ତେ କୃତଘ୍ନତା କରି ଆସିଛନ୍ତି ସବୁଦିନେ—ଆଉ ଏ ବର୍ତ୍ତମାନର ସମୟ ନ କରନ୍ତା କେମିତି ! ସମୁଦ୍ରର ମଧ୍ୟ ପରିବର୍ତ୍ତନ ହଉଚି । ଅଂଶୁପା ହ୍ରଦକୁ ଆମେ କଣ ସମୁଦ୍ରର ପ୍ରତିନିଧି କହିପାରିବା ସେଥିପାଇଁ ?

ଯୁବକ ଦୁଇଟି ବସି କେବଳ ଶୁଣିଯାଉଥାନ୍ତି ଏହି ପ୍ରବୀଣତାର କଥା । କୌଣସି କଥାର ତାଳ କାଟିବା ତାଙ୍କ ପକ୍ଷରେ ସମ୍ଭବ ହେଉ ନ ଥାଏ ଜମା ।

କ୍ଷଣକର ନୀରବତା ପରେ ବଳିଆର ସିଂହ ପଚାରିଲେ—

ତମର ନାଁ କଣ ବାବା ?

ପ୍ରଫୁଲ୍ଲକୁମାର ଭରଦ୍ୱାଜ ।

ବାଃ, ଏ ନାଁଟା ତ ଗୋଟାଏ ଆଦର୍ଶ ।···ତମର ?

ମୁରଲୀମୋହନ ନାଗେଶ ।

ବାଃ, ଆଦର୍ଶରେ ପୁଣି ନୂତନ ଛନ୍ଦ ବି ଦେଇପାରିଚ । ଆଉ ତମେମାନେ ମୋ ସଙ୍ଗରେ କଥାବାର୍ତ୍ତା କରୁନ କେମିତି ।···ଯେତିକି ନାଞ୍ଜି ପିଟିପାରିବ ସେତିକି କିଛି ପାଇବ ଏ ଯୁଗରେ । ନ ହେଲେ ଏ ଅକର୍ମା ବଳିଆର ସିଂହ ପରି ଏ ଗାଁରେ ଖାଲି ଗୀତ ଗାଇ ଗାଇ ମରିବ ।

କିଛି ସମୟ ମୌନ ହୋଇ ପୁଣି ମୁଖର ହେଲେ ବଳଆର ସିଂହ । ସେ ଉତ୍ତେଜିତ ହୋଇ କହିଲେ—

ବେଶ୍ ତ ସ୍ୱପ୍ନ ଅଛି ତମମାନଙ୍କର । ନେଇ ଯା ନିଦ୍ରାକୁ, ସେ ଗୀତ ଗାଉ ତମେ ଦିଅ ସ୍ୱୀତ···ଓଃ, ପୁଣି ହେଲା ମୋର ସେହି ଭୁଲ୍ । ହଁ ତମେ ଦିଅ ବକ୍ତୃତା । ଜଗେଇଦିଅ ଏଇ ଦେଶଟାକୁ । ···ହଁ, ଏଇ ଆଗେଇଯିବାର ବାଟରେ ଏ ବଳଆର ସିଂହ ପରି ସେଇ ପୁରୁଣା ଆଦର୍ଶକୁ ଧରିବାକୁ ଚେଷ୍ଟା ନ କର ଯେପରି । ତାହେଲେ ସବୁ ପଣ୍ଡ ହବ – ସେଇ ଆଦର୍ଶର ମୂଳ ପୁଣି ଯିବ ପଚି···

···ଥୋଡ଼ାଏ ବି ଅନେକଦିନୁ ଧରିଚନ୍ତି ଦା' । ଯା' ଅନ୍ୟମାନଙ୍କଠାରୁ ଆଦାୟ କରିନିଅ ହାତୁଡ଼ି । ବଳଆର ସିଂହର ଏଇ ଫିଟା କାନ୍ଧକୁ ଭାଙ୍ଗି ଚୂରମାର କରିଦିଅ ସେଥିରେ । ସ୍ୱଧର୍ମକୁ ଧରି ଏଇ ନିର୍ବୋଧ ଲୋକଟା ପଛକେ ମରୁ, କିନ୍ତୁ ଅନ୍ୟମାନେ ଯେପରି ବଂଚନ୍ତୁ—ଯେ କୌଣସି ଉପାୟରେ ।···କାହିଁ, ପୁଅ ମୋର ଟାଇଫଏଡ୍‌ରେ ପଡ଼ିଥିଲା ବେଳେ ମୁଁ ତ ବିଦେଶୀ ଇନ୍‌ଜେକସନ୍ ଦେବାକୁ ଟିକିଏ ମାତ୍ର କୁଣ୍ଠା କରିନେଇ ।···ଓଃ ପୁଅ ପଛକେ ପାଚନ ପିଇ ପିଇ ମରୁ, ସେ ଇନ୍‌ଜେକ୍‌ସନ ନେଇ ନ ବଞ୍ଚୁ ! ଏଇ ମୂର୍ଖତା, ଏଇ ସ୍ୱଧର୍ମବାଦ, ଏଇ ପୁରାତନ ଆଦର୍ଶକୁ, ଏଇ ଅନ୍ଧ ବିଶ୍ୱାସକୁ ତମେ ଭାଙ୍ଗିଦିଅ ଭରଦ୍ୱାଜ ! ଜାଳି ପୋଡ଼ିଦିଅ ନାଗେଶ ! ଏହା ଶତାବ୍ଦୀର ପ୍ରତିନିଧି, ଏ ବଳଆର ସିଂହର ଅଭିଜ୍ଞତା । ଧ୍ୱଂସ କରିଦିଅ ସେଇ ପୁରାତନ ଦର୍ଶନକୁ—ଗଢ଼ିଦିଅ ନୂତନର ଆଦର୍ଶ ।

ପୁଣି କଣ ଭାବି ସଂଶୋଧନର ସ୍ୱରରେ କହିବସିଲେ ବଳଆର ସିଂହ—

ଆଦର୍ଶ, ନା, ନା, କୌଣସି ଆଦର୍ଶ ଆଉ ଦରକାର ନାହିଁ ଏଇ ବଳଆର ସିଂହ ବଂଶ ପାଇଁ ।···ତମେ କଣ କୌଣସି ଆଦର୍ଶ ଚାହଁ ବାବୁମାନେ ? ଯୁବକ ଦୁହିଁଙ୍କ ମୁହଁରେ ନିରୁତ୍ତରତାର ପ୍ରଲେପ । ସେମାନେ ଆସିଥିଲେ ପ୍ରେୟସୀର ଅନ୍ୱେଷଣରେ । ଶେଷରେ ସେମାନେ ଆସି ପଶିଛନ୍ତି ବାଘର ଗୁମ୍ଫାରେ – ସେଠି ସେମାନେ କି ଉତ୍ତର ଦେବେ ?

ବଳଆର ସିଂହ ଈଷତ୍ ଉତ୍ତେଜନାର ସହ କହିଲେ –

କଣ, କୌଣସି ଆଦର୍ଶ ଚାହଁ ତମେ ନାଗେଶ ?

ମୁରଲି ସରଳଭାବରେ କହିଲା—ନା ।

ତାହାର ମୁହଁକୁ ଚାହିଁଲା ପ୍ରଫୁଲ୍ଲ । ମୁରଲିର ମୁହଁରେ ପ୍ରଫୁଲ୍ଲ ଦେଖିଲା ଯେପରି ନିଦ୍ରାକୁ । ମୁରଲି ରହିଁଲା ସେଇଠିକି, ଯେଉଁଠି ନିଦ୍ରାର ବେହେଲାଟି ତାହାର ସ୍ମୃତି ଧରି ପଡ଼ିରହିଚି ଗାଲିଚା ଉପରେ । ଏହା ପରେ ଚାକରକୁ ଡାକି, ନିଦ୍ରାକୁ ଡାକିପଠେଇଲେ ବଳଆର ସିଂହ । ପ୍ରସନ୍ନ ମୁଖରେ ନିଦ୍ରା ଆସି ପହଞ୍ଚିଲା ସେହି ଘରେ । ଯୁବକଯୁଗଳ ଉପରେ ନିମିଷକର ଦୃଷ୍ଟି ବୁଲାଇନେଇ ସେ ବସିପଡ଼ିଲା ତାହାର ବାପାଙ୍କ ପାଖରେ ।

ତା'ର ଦେହସାରା ଯେପରି ଆଲୋକର ବାର୍ତ୍ତା । ଯେଥିରେ ସଜାଗ ହୋଇଉଠିଲେ ଯୁବକଦ୍ୱୟ । ହସି ହସି ଝିଅର ପିଠିରେ ହାତ ବୁଲେଇ ବୁଲେଇ ବଳଆର ସିଂହ କହିଲେ –

ମା'ରେ, ସନାତନଠାରୁ ଆମେ ଯେଉଁ ବାବୁଙ୍କ କଥା ଶୁଣି ନ ଥିଲେ ଏ ହେଉଚନ୍ତି ସେଇ ମୁରଲିବାବୁ । ପୂରା ନାଁ ତାଙ୍କର ମୁରଲିମୋହନ ନାଗେଶ । ଆଉ ଶ୍ରୀମାନ୍ ନାଗେଶ ହେଉଚନ୍ତି ଅସ୍ୱପ୍ନା — କୌଣସି ସ୍ୱପ୍ନରେ ବୋଧହୁଏ ବିଶ୍ୱାସ ନାହିଁ ତାଙ୍କର । ଆଉ ସେ ବାବୁ ହେଉଚନ୍ତି ପ୍ରଫୁଲ୍ଲକୁମାର ଭରଦ୍ୱାଜ ।

ଈଷତ୍ ହାସ୍ୟ ମିଶାଇ ଶାନ୍ତସ୍ୱରରେ କହିଲି ନିଦ୍ରା—

ସ୍ୱପ୍ନ ତ ଅଛି ସେମାନଙ୍କର ବାପା !

ଓ, ତୁ ଠିକ୍ ବୁଝିଚୁ ତା'ହେଲେ । କିନ୍ତୁ ନିରୁଦ୍ଦେଶ୍ୟଭାବରେ ବୁଲିବା ପାଇଁ ମଧ୍ୟ ମଣିଷ ଆଗକୁ ଗୋଡ଼ ପକାଇବାକୁ ବାଧ୍ୟ—ଯାକୁ ଅଗ୍ରସର କହିବା ବୋଧହୁଏ ଭୁଲ୍ ।···ଥାଉ ମା, ସେମାନେ ହୁଏତ ବେଶୀ ବୁଝିଚନ୍ତି ଆମ ଅପେକ୍ଷା ସମସ୍ୟାକୁ । ସେମାନେ ଯୁଗଯାତ୍ରୀ । ବୋଧହୁଏ ସେମାନେ ଆମ ସାଙ୍ଗରେ ମିଶି ନାହାନ୍ତି ବୋଲି ଆମ ସାଙ୍ଗରେ ବେଶି କଥା କହୁ ନାହାନ୍ତି ।···ଥାଉ ସେ କଥା ; ପୁଣି ଯାଇଁ ସେଇ ଭଉଁରି ଭିତରେ ଆମେ ବୁଡ଼ିମରିବା ଶେଷକୁ ।···ତୁ ଏବେ ଗୀତଟିଏ ଗା'— ଖାଇବାକୁ ଯିବା ଆଗରୁ ଆମ ସମସ୍ତଙ୍କ ମନ ଯେମିତି ଆନନ୍ଦମୟ ହେଉ ।

## ॥ ଚାରି ॥

ବହୁଦିନର ସନ୍ଧାନ ପରେ ସନାତନ ପାଇଥିଲା ମୁରଲିକି । କଟକରେ କୌଣସି ଏକ ବିଶିଷ୍ଟ ଉକିଲଙ୍କ ପାଖକୁ ସନାତନ ଯାଇଥାଏ କୌଣସି ମକଦ୍ଦମା ଘେନି ଆଉ ମୁରଲି ଯାଇଥିଲା ସେହି ଉକିଲଙ୍କ ପାଖକୁ ଖଣ୍ଡେ ସୁପାରିଶ୍‌ପତ୍ର ଭିକ୍ଷା କରି । ଉକିଲଙ୍କୁ ଅପେକ୍ଷା କରି ରହିବା ଭିତରେ ଦୁହିଁଙ୍କର ହେଲା ଆଳାପ - ପରିଚୟ । ନିଜର ମସ୍ତିଷ୍କର ଉର୍ବରତାର ଆଶ୍ରୟରେ ସନାତନ ଅନେକ କଥା ବୁଝିନେଲା ମୁରଲିଠାରୁ । ଶେଷରେ ମୁରଲିଠାରୁ ତାହାର ଠିକଣା ପର୍ଯ୍ୟନ୍ତ ସେ ସଂଗ୍ରହ କଲା । ତାହା ପରେ ସେ ଘଟନାକୁ ଆଣିଲା ଏପର୍ଯ୍ୟନ୍ତ କେବଳ ବଳିଆର ସିଂହଙ୍କ ପତ୍ନୀଙ୍କର ଉପର୍ଯ୍ୟୁପରି ଅନୁରୋଧରେ । କିନ୍ତୁ ମୁରଲି ସମ୍ବନ୍ଧରେ ସନାତନର ଜ୍ଞାନ ଖୁବ୍ ସୀମାବଦ୍ଧ । ସେ କେବଳ ଏତିକି ଜାଣେ, ଦୋପଠି କିମ୍ବା ଉକିଲ ହେବାପାଇଁ ଯେଉଁ ପାଠ ଦରକାର, ତାହା ଆୟତ୍ତ କରିଛି ମୁରଲି । ମୁରଲିର ଆର୍ଥିକ ଅବସ୍ଥା ସମ୍ବନ୍ଧରେ ସେ ସମ୍ପୂର୍ଣ୍ଣ ଅଚେତନ । ସେ ମୁରଲିର ଘର ମଧ୍ୟ ଦେଖିଛି । କଟକ ସହର ଭିତରେ

ଯାହାର ଏକମହଲା କୋଠା, ସେ କେବେହେଁ ନିର୍ଜନ କମ୍ବା ଅବସ୍ଥା ତାହାର ଅସ୍ୱଚ୍ଛଳ ହେବ ବୋଲି ଏହି ପଲ୍ଲୀପ୍ରାନ୍ତବାସୀବୋଲା ସନାତନର ମନ ଉପରେ ସନ୍ଦେହର ଅଙ୍କୁରୋଦ୍‌ଗମ କରିବ କାହିଁକି ? ସେ କିପରି ଜାଣିବ, ସେହି କେଉଁ ବିସ୍ମୃତିର ପ୍ରାନ୍ତିକ ଅବସରେ ମୁରଲିର ବାପା ଆସିଥିଲେ ଟାଉନ୍‌କୁ, ସେ କିପରି ଜାଣିବ, ବର୍ତ୍ତମାନର ମୁରଲିର ସେହି ଘରଟି, ଯାହା ସାଧୁବାବୁଙ୍କର କୋଠା ବୋଲି ସମସ୍ତଙ୍କଠାରେ ପରିଚିତ, ତାହା ପ୍ରକୃତିରେ ନୁହେଁ ମୁରଲିର ବାପାଙ୍କର ! ମୁରଲିର ମା, ଭଉଣୀ ଏବଂ ନିଜେ ମୁରଲି ମଧ୍ୟ ଭାବିପାରେ ନାହିଁ ଏହା ତାଙ୍କର ନିଜର ଘର ନୁହେଁ, ଯଦ୍ୟପି ଅନ୍ୟ ସମସ୍ତେ ଜାଣନ୍ତି କଟକ ସହରର ଏହା ଏକ ଅତି ପୁରାତନ ଭଡ଼ାଘର । ଏହି ଘରେ ମୁରଲିର ଜନନୀଙ୍କର କଟିଛି ଯୌବନ, ସେ ଏହିଠାରେ ହୋଇଛନ୍ତି ଜନନୀ । ଏହି ଘରେ ମୁରଲି ଓ ତାହାର ଭଉଣୀର ହୋଇଛି ଜନ୍ମ । ଏହି ଘରର ଅଳନ୍ଦ, ଅଗଣା ତାଙ୍କର ପ୍ରିୟ । ସେହିଠାରେ ସେମାନେ କେତେ ଉତ୍‌ଥାନ ପତନର ହୋଉଛନ୍ତି ଭାଗୀ । ଏହି ଘରର କାନ୍ଥ ଧରି ଧରି ଚାଲି ଶିଖିଛନ୍ତି ସେମାନେ । ମୁରଲି ପାଠପଢ଼ି ଶିଖିଛି ଏହି ଘରର ବାତାୟନର ଆଲୋକ ଏବଂ ପବନରେ । ଏହି ଘରେ ଅତିବାହିତ ହୋଇଛି ମୁରଲିର ଜନକଙ୍କର ଜୀବନ । ଏହି ଘରେ ହଜଯାଇଛି କେତୋଟି ମାନବଶିଶୁର ଆତ୍ମା — ଯେଉଁମାନେ ଆସିଥିଲେ ମୁରଲିର ଅନେକ ପୂର୍ବରୁ । ତାହାପରେ ଏହି ଘରର ପୁତ୍ର ହୋଇଛି ମେଧାବୀ, କନ୍ୟା ହୋଇଛି ମାଧବୀ । ମାଧବୀର ଅଙ୍ଗରେ ଏହି ଘର ଦେଇଛି ଲତାର ତନୁତା, ସେହି ଲତାରେ ଏହି ଘରର ସମୀରଣ ଫୁଟାଇଛି ପୁଷ୍ପ । ଆଜି ସେହି ପୁଷ୍ପିତା ଲତା କରିଛି ଏହି ଘରକୁ ସୁନ୍ଦର । ଆଉ ସେହି ସୁନ୍ଦରିମା ଉପରେ ମୁରଲି ଲେପିଛି ଆଜି ଆଲୋକ । କଟକ ସହରରେ ଏହିପରି ଯେଉଁ ଘରଟି ଅତି ନିଜର ଓ ଅତି ପରର ହୋଇ ରହିଛି, ଏପର୍ଯ୍ୟନ୍ତ ତାହାର କୌଣସି ମୌଳିକ ସନ୍ଧାନ ପାଇ ନାହିଁ ସନାତନ ।

ପ୍ରଫୁଲ୍ଲ ଭାବୁଛି ମୁରଲିର କଥା……

ସେମାନେ ଖାଇ ସାରିଛନ୍ତି କିଛୁକ୍ଷଣ ହେଲା । ଶୋଇ ଶୋଇ ସିଗାରେଟ୍ ଟାଣି ସିଗାରେଟ୍‌ର ଗନ୍ଧ ଏବଂ ଧୂଆଁରେ ବଳଆର ସିଂହଙ୍କ ଚଉପାଢ଼ୀର ରୂପ ବଦଳାଇ ଦେଇଛି ପ୍ରଫୁଲ୍ଲ । ମୁରଲି ଏପର୍ଯ୍ୟନ୍ତ ଫେରି ନାହିଁ ସେହି କୋଠରୀକୁ । ବଳଆର ସିଂହଙ୍କ ଖଞ୍ଜାରେ ବସି ସେ ଏପର୍ଯ୍ୟନ୍ତ ଆଳାପବ୍ୟସ୍ତ । ସନାତନର ମଧ୍ୟସ୍ଥତାରେ ସେଠି ବୋଧହୁଏ ଅନେକ କଥାର ମସୁଧା ହେଉଛି ।

ପ୍ରଫୁଲ୍ଲ ଭାବୁଛି, ମୁରଲି କେବେହେଲେ ଆସି ନ ଥିଲା ନନ୍ଦାକୁ ଦେଖିବା ପାଇଁ । ସେ ଆସିଥିଲା ତାହାର ଶ୍ରେଷ୍ଠ ପରିବାରକୁ ସୁଗମ କରି, ତାହାକୁ ଆନନ୍ଦ ଦେଇ ଯେ ହୋଇପାରିବ ଏକ କାର୍ଯ୍ୟକୁଶଳା ବଧୂ, ତାହାର ସନ୍ଧାନ ନେବା ପାଇଁ । ସେ କେବେ ଆଶା କରି ନ ଥିଲା ଗଞ୍ଜି ମଫସଲରେ ଅଛି ବଳଆର ସିଂହଙ୍କ ଘର । ଆଉ ସେହି ଘରର କୁସୁମ ପଲଙ୍କରେ ଶୋଇରହିଛି ରୂପସୀ ନନ୍ଦା । ନନ୍ଦାକୁ ନେଇ କଣ କରିବ ମୁରଲି ? କାନ୍ଥର ଛବି ଏବଂ ଟେବୁଲ ଉପରି ଗ୍ରାମୋଫୋନ୍ ମିଶି ଏହି ନନ୍ଦା । ତା' ଦେହରେ ପୁଣି ମିଶିଛି ଅତି ସାଂସ୍କୃତିକ ବଳଆର ସିଂହଙ୍କ ମନ ଏବଂ ଆଦର୍ଶ ।…

ଏତେ କଥା ଗପି ବଳଆର ସିଂହ କାହିଁକି ଭୁଲିଗଲେ ନାହିଁ କୌଣସି ଆଦର୍ଶ ? ସେ କଣ ମୁରଲିକୁ କନ୍ୟାଦାନ କରିବେ ବୋଲି ଭାବି ମୁରଲୀ ଅନୁଯାୟୀ ରୂପାୟିତ କଲେ ତାଙ୍କର ଚିନ୍ତା ? ମତେ ତ କିଛିହେଲେ ପସନ୍ଦ କଲେ ନାହିଁ ଆଦର୍ଶ ଯେମିତି ! ବଡ଼ ଅଦ୍ଭୁତ ଏଇ ବଳଆର ସିଂହ । ଝିଅଟାକୁ ବଞ୍ଚେଇବା ପାଇଁ କହୁଚନ୍ତି, ଅଥଚ······

ଏହି ସମୟରେ ତାହା ଉପରେ କାହାର ଛାଇ ପଡ଼ିଲା । ଦକ୍ଷିଣ ପାଖର ପଲଙ୍କରେ ଶୋଇଥାଏ ପ୍ରଫୁଲ୍ଲ, ଉତ୍ତର ପାଖରେ ଜଳୁଥାଏ ଗୋଟିଏ ମହମ୍‌ବତୀଦିଆ ସୁନ୍ଦର ଲ୍ୟାମ୍ପ୍, ବୋଧହୁଏ ଯୁଦ୍ଧକାଳରେ ଅଧିକ କିରାସିନି ନ ମିଳିବାରୁ ଏହି ମହମ୍‌ବତୀର ବ୍ୟବସ୍ଥା !

ଚିତ୍‌ହୋଇ ଶୋଇଥିଲା ପ୍ରଫୁଲ୍ଲ । ସେ କଡ଼ ଲେଉଟାଇ ଦେଖିଲା, ଘର ଭିତରେ ପ୍ରବେଶ କରିଛି ନିଦ୍ରା ନିଜକୁ ସଂଯତ କରି । ଧୀରେ ଉଠିବସିଲା ବିଛଣା ଉପରେ ପ୍ରଫୁଲ୍ଲ; କିନ୍ତୁ କୌଣସି କଥା କହିପାରିଲା ନାହିଁ ସେ ।

କିଛିକ୍ଷଣ ପରେ ଗୁଢ଼ ବ୍ରୀଡ଼ାଭଙ୍ଗୀରେ ନିଦ୍ରା ଯାଇ ଠିଆ ହୋଇପଡ଼ିଲା ଜଳୁଥିବା ଲ୍ୟାମ୍ପ୍‌ର ଗ୍ଲେଟ ଟେବୁଲ ଖଣ୍ଡିକ ଆଗରେ । ପ୍ରଫୁଲ୍ଲ ଆଡ଼କୁ ସଂପୂର୍ଣ୍ଣ ପଶ୍ଚାଦ୍‌ଦେଶ ତାହାର ଦେଖାଗଲା । ପ୍ରଫୁଲ୍ଲର ଆଖିରେ ନିଦ୍ରାର ରୂପର ଅନବଦ୍ୟମାଧୁରୀ ଅଧିକ ନିର୍ଦ୍ଦୋଷଭାବରେ ଦେଖାଗଲା ବର୍ତ୍ତମାନ । ସେ ଦେଖିଲା, ଏହି ନିଦ୍ରାନାମ୍ନୀ କିଶୋରୀ ତାହାର ଦର୍ଶକକୁ କେବଳ ଉନ୍ନିଦ୍ର କରିବା ପାଇଁ ତନୁରେ ଲାବଣ୍ୟ ଯୋଜନା କରି ରଖିଛି । ଆଉ ସେହି ଲାବଣ୍ୟର ଆଧାର ଉପରେ କଳା-ଲକ୍ଷ୍ମୀର ରୂପବର୍ତ୍ତିକାଟି ଖସିପଡ଼ୁଛି ବେଣୀ ରୂପରେ ରୂପସୀର ଜାନୁ ପର୍ଯ୍ୟନ୍ତ—ଗୁମ୍ଫିତ ହୋଇ ଅସଂଖ୍ୟ ପୁଷ୍ପରେ, ତାହା ଯେପରି ଦର୍ଶକର ହୃଦୟକୁ ଚକିତ କରିବା ପାଇଁ—କରିବା ପାଇଁ ପୁଷ୍ପିତ ।

ହଠାତ୍ କକ୍ଷଟି ଅନ୍ଧାର ହୋଇଉଠିଲା ଏହି ସମୟରେ । ଆଲୋକନିର୍ବାଣର କାରଣ କିଛି ବୁଝିପାରିଲା ନାହିଁ ପ୍ରଫୁଲ୍ଲ । ଆଉ କିଛି ଘଟିବ ବୋଲି ଯୁବକର କୌତୂହଳ ଯେମିତି ସେ ଅପେକ୍ଷା କରି ରହିଲା କେବଳ । କିଛି ସମୟ ପରେ କଳହଂସର ସ୍ୱରରେ ସେହି ଅନ୍ଧକାର ହେଲା ପ୍ରଫୁଲ୍ଲିତ । ପ୍ରଫୁଲ୍ଲ ଶୁଣିଲା ସେହି ଅନ୍ଧକାରର ଭାଷା···

ଆପଣ ଏମିତି ଚଞ୍ଚଳ ହଉଛନ୍ତି କାହିଁକି ଚାଲିଯିବା ପେଇଁ···

ଶୀତଦିନର ରାତିରେ ନିର୍ଜନ ଗୃହ । ସେହି ଗୃହ ମଧ୍ୟରେ ଅଖଣ୍ଡ ଅନ୍ଧକାର । ସେହି ଅନ୍ଧକାର ମଧ୍ୟରେ ଦୁଇଟି ରୂପାଶ୍ରୟୀ ତରୁଣ ତରୁଣୀ । ତଥାପି ସେମାନେ କିଛି ସମୟ କାଟିନେଲେ ଅଭଗ୍ନ ନୀରବତା ଭିତରେ ।

ନିଦ୍ରା ପ୍ରତ୍ୟାଶା କରୁଥିଲା ତାହାର ଉତ୍ତର, ପ୍ରଫୁଲ୍ଲ ଅପେକ୍ଷା କରୁଥିଲା ଅଧିକର । କିନ୍ତୁ ଉଭୟଙ୍କୁ ନିରାଶ କଲା ପ୍ରଲମ୍ବ ନୀରବତା । କେତେକ୍ଷଣ ପରେ ପ୍ରଫୁଲ୍ଲ ପୁଣି ଶୁଣିଲା ସେଠାରୁ କିଛିଦୂରରେ, ପ୍ରାୟ ଚଉପାଢ଼ୀର ଅଗଣା ମଧ୍ୟରେ ନିଦ୍ରା ହସିଉଠିଲା କଲ୍ କଲ୍ ହୋଇ ।

ଯେପରି ଉଡ଼ାଜାହାଜ ଆକ୍ରମଣର ସାଇରେନ୍ ବାଜିଥିଲା ଆଗରୁ, ଆଉ ବ୍ଲାକ୍ ଆଉଟ୍ ବି ହୋଇଥିଲା ସେଥିଲାଗି । ବର୍ତ୍ତମାନ ଯେପରି ଅଲ୍ କ୍ଲିଅର୍ ସାଇରେନ୍

ବାକୀଲା ନନ୍ଦାର ସେହି ହାସ୍ୟରେ । ସେଥିପାଇଁ ପ୍ରଫୁଲ୍ଲ ଉଠିପଡ଼ି ବଢ଼ାଇଆସିଲ ଜାଳି ଲ୍ୟାମ୍ପ ଲଗାଇଲା । ଲ୍ୟାମ୍ପ୍ ଲଗାଇବା ଆଗରୁ ତା' ଉପରୁ ପାଇଲା ସେ ଖଣ୍ଡେ ସ୍ଲେଟ ଶଠି । ତାହାଦ୍ୱାରା ଲ୍ୟାମ୍ପ୍‌ଟିର ମୁଖ ରୁଦ୍ଧକରି ବୋଧହୁଏ ଆଲୋକ ନିର୍ବାପିତ କରିଥିଲା ନନ୍ଦା ।

ସେହି ସ୍ଲେଟ ଶଠିଖଣ୍ଡିକ ଫିଟେଇ ପ୍ରଫୁଲ୍ଲ ଦେଖିଲା, କେତୋଟି ଅକ୍ଷର ଲେଖା ହୋଇଛି ଇଂରେଜୀରେ······

"ଯଦି ଆପଣ ଚାଲିଯିବେ ନିଶ୍ଚୟ, ଆପଣଙ୍କର ଠିକଣାଟା ଦେଇଯିବେ ଯେମିତି ।"

ଥର ଥର କରି ପ୍ରଫୁଲ୍ଲ ସେହି ଅକ୍ଷର କେତୋଟି ପଢ଼ିଲା । ଅକ୍ଷରଗୁଡ଼ିକ ବି ସୁନ୍ଦର । କେତେକ ଥର ପଢ଼ିବା ପରେ କିଛି ନ ଭାବି ପ୍ରଫୁଲ୍ଲ ବାହାରିପଡ଼ିଲା ପଦାକୁ । ନନ୍ଦା ସେ ପର୍ଯ୍ୟନ୍ତ ବୁଲୁଥିଲା ଚଉପାଢ଼ୀର ଅଗଣାରେ । ପ୍ରଫୁଲ୍ଲର ସେହି କୋଠରୀର ଆଲୋକ ଦ୍ୱାରଦେଇ କିଛି ଅଂଶରେ ଛିଡ଼କି ପଡ଼ୁଛି ପଦାକୁ ।

ପ୍ରଫୁଲ୍ଲ ନନ୍ଦାକୁ ଦେଖି ତାହାର ପାଖକୁ ଯାଇ କିଛିଦୂରରୁ କହିଲା—

ଖାଲି ଗୃହମାଲିକ, କଟକ ।

ମଧୁର ସ୍ୱରରେ ଶୁଭିଲା ପ୍ରଶ୍ନ—

ଆଉ ଡିଗ୍ରୀ ?

ନା···ମୁଁ ଲେଖେ ନା ।

ପ୍ରାୟ ପନ୍ଦର ମିନିଟ ପରେ ଫେରିଆସିଲା ମୁରଲି । ପଛେ ପଛେ ତାର ସନାତନ ମଧ୍ୟ ପହଞ୍ଚିଲା । ପ୍ରଫୁଲ୍ଲ ସେ ପର୍ଯ୍ୟନ୍ତ ସିଗାରେଟ୍ ଟାଣି ଟାଣି ସେହି କୋଠରୀଟାରେ ପରିକ୍ରମା କରୁଥାଏ ।

ଘରେ ପହଞ୍ଚି ସନାତନ କହିଲା—

ସବୁ ଠିକ୍ କରିଦେଲି ପ୍ରଫୁଲ୍ଲବାବୁ !

ସେହିପରି ବୁଲୁ ବୁଲୁ ପ୍ରଫୁଲ୍ଲ ଅନୁତ୍ତେଜିତ ଭାବରେ କହିଲା—

ବଂଚିବାର ନା ମରିବାର ?

ମୁରଲି ବିସ୍ମିତ ହୋଇ ପଚାରିଲା—

କଣ କହୁଛ ପ୍ରଫୁଲ୍ଲ ?

ଭିନ୍ନ ଏକ ଭାବନାର ଜନକ ରୂପେ କହିଲା ପ୍ରଫୁଲ୍ଲ—

ସନାତନ ଆସିଲାବେଳେ କହୁ ନ ଥିଲେ, ନ ହେଲେ ମୁଣ୍ଡଟାକୁ କାଟି ପକେଇ ସେ ବାଟ ଚାଲିବେ, ସେଇ କଥାକୁ ମୁଁ କହିଲି, ସନାତନର ମୁଣ୍ଡଟା ରହିଲା କି ନାହିଁ······

କହିସାରି ହସିଉଠିଲା ମଧ୍ୟ ପ୍ରଫୁଲ୍ଲ ।

ଏହା ଶୁଣି ମୁରଲି ହସିଉଠି କହିଲା—

ଦେ, ଦେ, ସିଗାରେଟ୍ ଗୋଟା ଦେ······

ତାହା ପରେ ସିଗାରେଟ୍ ଗୋଟା ଧରି ଇଂରେଜୀରେ ସେ କହିଲା—

ବାସ୍ତବିକ୍, ବିବାହ ଠିକ୍ ହୋଇଗଲା······

ତାହାର କିଛି ସମୟ ପରେ ପୂର୍ବପାଖର ପଲଙ୍କ ଉପରେ ବସିପଡ଼ି ସିଗାରେଟ୍‌ରେ ନିଆଁ ଧରି ସେଥିରେ ଗ୍ରେଟ ବଡ କେତୋଟି ଶୋଷା ଦେଇ ରହି ରହି କହିଲା ମୁରଲି—

ସେମାନେ ଯୌତୁକ ଦେବେ ନେଇଁ କାହିଁକି ସନେଇବାବୁ ?···ସେମାନେ ତ ଖୁବ ଥେଲିବାଲା···ରଜା ବାଦ୍‌ଶା ପରି ଚଳୁଛନ୍ତି···ଗ୍ରସ୍ତାଖର୍ଚ୍ଚ ବା ନ ଦେବେ କାହିଁକି ?···ସେମାନେ ତା'ହାଲେ କଟକ ଗୃଲନ୍ତୁ···ସେଇଠି ବା'ଘର ହବ । ମୁଁ ଏଠିକି ଏତେ ବନ୍ଧୁବାନ୍ଧବ ଧରି ଖର୍ଚ୍ଚକରି ଆସିବି କେମିତି ?···ସନେଇ ବାବୁ, ସେମାନଙ୍କର ଭାବିବା ଉଚିତ୍ ଯେ ଏତେ ଶସ୍ତାରେ ବା'ଘର ହୁଏନା—ମୁଁ ଏମ୍. ଏ. ପାଶ୍ କରିଛି···

ପ୍ରଫୁଲ୍ଲ ଏଇସବୁ କଥା ଶୁଣି ଜୋର୍‌ରେ ସିଗାରେଟ୍ ଟାଣି ବୁଲୁଥାଏ । ସନାତନର ଉତ୍ଫୁଲ୍ଲତା ଏ କଥାରେ କ୍ଷମ୍ପିଷ୍ଟ ହେବାକୁ ଲଗିଲା କ୍ରମେ କ୍ରମେ । ସେ ରହି ରହି ଥତ ମତ ହୋଇ କହିଲା—

ସେଇନାଗି ତ ରତଲାଂ ଉଆସକୁ ମନା କରିଦେଲେ ବଳଆର ସିଂହ ! ସେ ମୋଟେ ଯଉତୁକ ଦେବେ ନେଇଁ···ଆଉ ଗ୍ରସ୍ତାଖର୍ଚ୍ଚ ନାଁ ସେଠି ଉଠେଇବ କିଏ ?

ମୁରଲି ଉତ୍ତେଜିତ ହୋଇ କହିଲା—

କଣ ଝିଅ ତାଙ୍କର ଗୀତଗାଇ ଶିଖିଚ ବୋଲି ! ଆଜକାଲି ସବୁ ଝିଅ ଗାଇ ବଜେଇ ଶିଖିଲେଣି । ଆଜକାଲି ସମସ୍ତେ ବେଶ ସାଜ ଶିଖିଲେଣି, ନାଚ ବି ଶିଖିଲେଣି ଅନେକ ।

ପ୍ରଫୁଲ୍ଲ ଭାବୁଥାଏ, ଏମ୍. ଏ. ପାଶ୍ କରିବା ପରେ ମୁରଲି ଭିତରେ ବୋଧହୁଏ ଏତେ ଦମ୍ଭ ଦେଖାଦେଇଚି । ଆଉ ଏଠିକି ଆସି, ଏମାନଙ୍କର ଆଡ଼ମ୍ବର ଦେଖି ଯୌତୁକର ଦାବି ଝୁଙ୍କିଚି ତା ମୁଣ୍ଡରେ ।···ଚହ୍ନିପାରୁ ନାହିଁ ସେ ବଳଆର ସିଂହଙ୍କୁ । ତାର ଏହି ଶିକ୍ଷାଭିମାନୀ ଅଜ୍ଞାନ ବନ୍ଧୁଟିକୁ ଜ୍ଞାନ ଏବଂ ସଭ୍ୟତାର ଧକ୍‌କା ଦେବା ପାଇଁ ସେ ମନେକଲା ମାତ୍ର ପନ୍ଦର ମିନିଟ୍ ପୂର୍ବରୁ ତାର ହୋସ ଲୋପ ପାଇଯାଇଛି । ସେ ମନେ ମନେ କେବଳ ହସିଲା ଏହି ନିର୍ବୋଧ ବନ୍ଧୁଟି ପାଇଁ । ତତ୍‌ପରେ ସେହି ହସକୁ ବାହାରେ ଖେଳାଇ ସେ କହିଲା—

କଣ ସୁନା ନାଇଁ ବୋଲି କହୁଚନ୍ତି—ଅନେକ ଗହଣା ତ ଦେଖାଯାଉଚି ତାଙ୍କ ଘରେ···

ମୁରଲି ଏ କଥାରେ ସାହସ ପାଇ ଆହୁରି ଉତ୍ତେଜିତ ହୋଇ କହିଲା—ଅନେକ ସୁନା ଅଛି ତାଙ୍କ ଘରେ—ଏସବୁ ନ ଦବାର ଫିକିର ।

ଏହି ନିର୍ବୋଧ ବନ୍ଧୁ ପାଇଁ ପୁନର୍ବାର ଯେଉଁ ଭାବର ଉଦୟ ହେଲା ପ୍ରଫୁଲ୍ଲର ହୃଦୟରେ, ସେ କେବଳ ତାହାକୁ ଦୟାରେ ପରିଣତ କଲା । ଶେଷରେ ସେ ହସିଉଠି କହିଲା—

କଲେଜର ବହିଗୁଡ଼ା ସାଙ୍ଗହୋଇ ପଢ଼ିଥିଲେ ଭଲ ହୋଇଥାନ୍ତା ମୁରଲି ! ଖୁବ ତଫାତ୍ ରହିଗଲା ପାଠରେ, ସେଥିଲାଗି ବଳଆର ସିଂହ ଆଜ ଫରକ୍ ହେଇ

ଛୁଡ଼ା ହୋଇ ନ ଥାନ୍ତେ ଆମ ବାପ୍ପାଙ୍କ ପାଖରେ ।···ଆଜି ଜାଣ ମୁରଲୀ ଜାଣିଲୁ, ଏମ୍. ଏ. ପାଶ, ବି. ଏ. ପାଶ, ଇଣ୍ଟରମିଡ଼ିଏଟ୍ ପାଶ୍ ଏ ସମସ୍ତଙ୍କ ପାଇଁ ଯୌତୁକର ପରିମାଣ ନିର୍ଦ୍ଦେଶ କରି ଆଇନ ଜାରିହେବା ଉଚିତ ।···ବାସ୍ତବିକ୍ ବାପ-ମା ଆମକୁ ଏତେ ଟଙ୍କା ଖର୍ଚ୍ଚ କରି ପାଠ ପଢ଼େଇଲେ—ଏମାନେ ତାହାର କୌଣସି କ୍ଷତିପୂରଣ କରିବେ ନେଇଁ ?

ନିଶ୍ଚୟ !

ପୂର୍ବକଥା ସମସ୍ତ ଭୁଲିଯାଇ ପ୍ରଫୁଲ୍ଲର ଶେଷ କଥାର ସମର୍ଥନ କଲା ଉତ୍ତେଜନା ସହ ମୁରଲୀ ।

ଠୋ ଠୋ ହୋଇ ହସିଉଠି ପ୍ରଫୁଲ୍ଲ ଯାଇ ତାର ବିଛଣାରେ ପଡ଼ିଗଲା । ହାତରୁ ସିଗାରେଟ୍‌ର ଶେଷାଂଶଟା ଫୋପାଡ଼ିଦେଲା ତଳକୁ । ସିଗାରେଟ୍‌ର ମୁମୂର୍ଷୁ ଆତ୍ମା ଧୂଆଁର କ୍ଷୀଣ ରୂପରେ ପୌଷ ନିଶୀଥର ଶୀତଳ ବାୟୁରେ ମିଶିଯିବାକୁ ଲଗିଲା ପ୍ରଫୁଲ୍ଲର କ୍ରୋଧ ଭଳି ।

ମୁରଲୀ ଏତେବେଳେ ବୁଝିଲା, ତାକୁ ଉପହାସ କରୁଛି ପ୍ରଫୁଲ୍ଲ । କେତେବେଳକରେ ସେ ପୁଣି କହିଲା—

ତୁ କହ ତ ପ୍ରଫୁଲ୍ଲ ! ମାଧବୀ ପୁଣି ବା'ହବ କେମିତି ?

ପ୍ରଫୁଲ୍ଲ କହିଲା—

ଠିକ୍ କଥା, ନିହାତ୍ ଶବ୍ଦେ ଭରି ସୁନା ନ ହେଲେ ମାଧବୀକି ବାହା ହବ କିଏ ?···ମୋ ବିଷୟରେ ପ୍ରସ୍ତାବ ପଡ଼ିଲେ ତ ଆହୁରି ବେଶୀ ଦରକାର ହବ ।··· ଆଉ ପୁଣି ଆମେ ଅର୍ଥନୀତି ପଢ଼ିଚେ କାହିଁକି, ଯଦି ଆମେ ଗୋଟାଏ ବା'ଘର ଭିତରେ ଦି'ଟା ବା'ଘରର ଖର୍ଚ୍ଚ ନ ଉଠେଇବା ?···ଆଚ୍ଛା, ମାଧବୀ କଣ ନାଚ ଜାଣେ ମୁରଲୀ ?

ମୁରଲୀ ମ୍ରିୟମାଣ ହୋଇ କହିଲା—

ମତେ ଥଟ୍ଟା କରୁଚୁ···?

ଖୁବ୍ ଅସନ୍ତୁଷ୍ଟ ହୋଇ କହିଲା ପ୍ରଫୁଲ୍ଲ—

ତୁ ଯେ ଖୁବ୍ ସାହସରେ ନିନ୍ଦା କରିଗଲୁ ଜଣେ ସମ୍ଭ୍ରାନ୍ତ ଲୋକର ଝିଅକୁ ?

ମୁରଲୀ ଅଜ୍ଞାନ ହେଲେ ମଧ୍ୟ ଶିକ୍ଷିତ···ସ୍ୱାର୍ଥପର ହେଲେ ମଧ୍ୟ ଭଦ୍ର । ତାର ବନ୍ଧୁର ଏଇ କଥାରେ ସେ କିଞ୍ଚିତ୍ ତ୍ରୁଟି ଅନୁଭବ କରିପାରିଲା ନିଜର । ଏହି ସମୟରେ ଉଠି ଚାଲିଗଲା ସେଠାରୁ ସନାତନ । ତା'ର ମନେହେଲା, ଗୋଟାଏ ଭ୍ରମରେ ପଡ଼ି ସେ ଏତେଗୁଡ଼ା ପରିଶ୍ରମ କରିପକେଇଚି ଯେପରି । ଏହି ଏମ୍. ଏ. ପାଶ୍ ଭିତରେ ଯେ କେବଳ ଅର୍ଥର ଆର୍ତ୍ତନାଦ—ସ୍ୱର୍ଣ୍ଣମୃଗର ସନ୍ଧାନ, ତାହାର ଅମାର୍ଜ୍ଜିତ ମନ ମଧ୍ୟ ଏହାକୁ ଉପଲବ୍ଧି କରିପାରିଲା ମର୍ମେ ମର୍ମେ । ସେ ମନେ କରିଥିଲା, ବଳିଆର ସିଂହ ନାମର ଓ ଆଭିଜାତ୍ୟର ସୁଗନ୍ଧରେ ଏହି ଯୁବକ ଦୁଇଟି ମୋହିତ ହୋଇ ଉପଯାଚକ ହେବ ବିବାହ ପାଇଁ । ସେ ବର୍ତ୍ତମାନ ଭଲଭାବରେ ଅନୁଭବ କଲା—ଏହି ବଣିକ ସଭ୍ୟତାର ଯୁଗରେ ସମସ୍ତ ସମ୍ଭ୍ରମତାର ଗୌରବ ଯେପରି ହିଣିକୁ ହୋଇଛି ।

ପୁଣି ଗୋଟିଏ ସିଗାରେଟ୍ ଟାଣିଲା ପ୍ରଫୁଲ୍ଲ । ସେ ଖୁବ ଉତ୍ତେଜିତ ହୋଇ ପଡ଼ିଛି ଏହିପରି ପରିସ୍ଥିତି ଭିତରେ ପଡ଼ି । କିଛି ସମୟ ପରେ ସେ କହିଲା—ଏହା ନିଷ୍ପତ୍ତି ଠିକ୍ ଯେ ତମ ଘରକୁ ଯାଇ ନିଦ୍ରା ତାର ବେହେଲା ଖଣ୍ଡିକୁ ତମର ଭିତରିଆ ଚୁଲିରେ ଆଶ୍ରୟ ଦେବ !···ଆଉ ତାର ସୁନ୍ଦର ବେଣୀରେ ଆତ୍ମହତ୍ୟାର କରିବ ଆୟୋଜନ···

ଖୁବ୍ ଜୋରରେ ଏତିକିବେଳେ ମୁରଲି ଗାଇଉଠିଲା ପ୍ରାର୍ଥନାର ସଙ୍ଗୀତ । ମଶାରି ପକାଇଦେଇ ଦି କାନରେ ସେ ଦେଇଛି ଆଙ୍ଗୁଠି । ଯେପରି ହରିନାମ ଉଚ୍ଚାରଣ ଛଡ଼ା କୌଣସି ଶବ୍ଦ ସେ ଆଉ ଶୁଣିବାକୁ ଚାହେଁନା । ସେ ଅନେକ ଦିନ ହେଲା ଗୌଡ଼ୀୟ ସଂଘରୁ ଦୀକ୍ଷା ନେଇଛି । କେବଳ ବେକର ତୁଳସୀମାଳିକୁ ସଭ୍ୟତାର ଅନୁସରଣରେ ସେ ଲମ୍ବମାନ କରି ପିନ୍ଧେ ।

ଏହି ସମୟରେ ବ୍ୟସ୍ତଭାବରେ ସେହି ଘରେ ପହଞ୍ଚିଲେ ବଳିଆର ସିଂହ । ବୋଧହୁଏ ଏଠାରୁ ଫେରି କୌଣସି କଥା କହିଛି ଯାଇ ସନାତନ । ମୁଖରେ ତାଙ୍କର ମ୍ଳାନାୟମାନ କାରୁଣ୍ୟ । ଶୁଭ୍ର ମୁଛ ଓ ଗାଲମୁଞ୍ଚରେ ବିଦ୍ରୋହ କରିଛି ରକ୍ତଗତ ଶୌର୍ଯ୍ୟ ।

ପ୍ରାର୍ଥନାର ସ୍ୱରରେ ସେ ସ୍ତମ୍ଭିତ ହୋଇ ଛିଡ଼ାହୋଇ ପଡ଼ିଲେ । ହାତର ସିଗାରେଟ୍ ଖଣ୍ଡିକ ଫିଙ୍ଗିଦେଇ ପ୍ରଫୁଲ୍ଲ ଉଠିଆସି ତାହାଙ୍କୁ ଅଭ୍ୟର୍ଥନା କଲା ।

ସମସ୍ତ ବାକ୍ୟଗୁଡ଼ିକୁ କୋମଳତାରେ ଆପ୍ଲୁତ କରି କହିଲେ ବଳିଆର ସିଂହ—

ଥାଉ, ଥାଉ, ଶୁଅ ବାବା, ଶୁଅ; ପ୍ରାର୍ଥନାରେ ବ୍ୟାଘାତ ଦେବା ଉଚିତ ନୁହେଁ ।

ଏହା କହି ସେ ଫେରିଯିବାକୁ ଲାଗିଲେ । କିଛିଦୂର ତାହାଙ୍କୁ ଅନୁସରଣ କଲା ପ୍ରଫୁଲ୍ଲ—ଯେପରି ପାଛୋଟି ଦେବାର ଭଙ୍ଗୀ ତାହାର ଚାଲିରେ । ଯାଉଁ ଯାଉଁ ବୁଲିପଡ଼ି କହିଲେ ବଳିଆର ସିଂହ—

ହଁ ବାବା, ତମେ ପ୍ରାର୍ଥନା କରୁନା କାହିଁକି ?

ମୀରବତାର ଶରଣ ନେଲା ପ୍ରଫୁଲ୍ଲ । ସେଥିରେ ଯେପରି ଭରସା ପାଇଲେ ବଳିଆର ସିଂହ । ବନ୍ଧା ହୋଇଥିବା ମୁଣ୍ଡରେ କମ୍ଫର୍ଟର୍‌ଟା କାନ ଉପରକୁ ଟାଣିଦେଇ ସେ କହିଲେ —

ଭୁଲ୍ କରନା ବାବା, ଭୁଲ କରନା, ଯୁଗଯାତ୍ରୀ ହୁଅ । ବାଟରେ ନିଜେ କଣ୍ଟା ପକେଇ ପ୍ରଭୁ ପକେଇଲେ ବୋଲି କୁହନା । ନିଦ୍ରାର ବିବାହ ଲାଗି ମୁଁ ଅବଶ୍ୟ ଏଇଟା ପ୍ରଚାର କରୁନେଇଁ । ପ୍ରଚ୍ଛର ମତେ ଆସେନା ।···ବାବା, ପ୍ରଚ୍ଛର ମତେ ଆସେନା । ଏଇ ବଳିଆର ସିଂହର ଆଦର୍ଶ ଧ୍ୱଂସ ହେଉ—ସମସ୍ତଙ୍କର ମଙ୍ଗଳରେ ମୋର ମଙ୍ଗଳ ହେଉ······

କହି କହି ଅଂଧାରରେ ମିଶିଯାଇ ବଳିଆର ସିଂହ ଚାଲିଗଲେ ତଲ-ଖଞ୍ଜାକୁ । ଦୂରରେ ପତ୍ନୀ ତାଙ୍କର ଆଲୁଅ ଧରି ଛିଡ଼ା ହୋଇଥିଲା ପରି ଜଣା-ଯାଉଥାଏ ।

ଅଗଣାରୁ ଫେରିଆସି ଲ୍ୟାମ୍ପର ଆଲୁଅକୁ ନିଜର ଇଚ୍ଛାନୁଯାୟୀ ପରାଧୀନ କରି ଖୁବ ସ୍ୱାଧୀନଭାବରେ ବିଛଣାରେ ପଡ଼ିରହିଲା ପ୍ରଫୁଲ୍ଲ । ତାହାର ସମସ୍ତ ଅବୟବ ଯେପରି ଶଯ୍ୟାର ସମସ୍ତ କଳେବରକୁ ଆପ୍ଲୁତ କରିବାକୁ ଚେଷ୍ଟା କଲା । କିନ୍ତୁ ତାହାର ଚକ୍ଷୁ ଆପ୍ଲୁତ କରିପାରିଲା ନାହିଁ ନିଦ୍ରାକୁ । ନିଦ୍ରାର ରୂପ ଚିନ୍ତାରେ ସେ ଉନ୍ନିଦ୍ର ରହିଲା ନାହିଁ । ସେ ଭାବିଲା, ନିଦ୍ରାନାମ୍ନୀ ବାଳିକାର ପିତାଙ୍କର କଥା—ଏତେ ବଡ଼ ଲୋକ; ଏତେ ସଂସ୍କାରମୁକ୍ତ ଏବଂ ଜ୍ଞାନୀ ଅଥଚ ଆସିଥିଲେ ଜଣେ ଅନାମଧେୟ ଅଜ୍ଞାନ ଯୁବକକୁ ତାଙ୍କର ଜାମାତା ହେବା ପାଇଁ ଅନୁରୋଧ କରିବାକୁ ;ଆଉ ତାହା ମଧ୍ୟ ଘଟିପାରିଲା ନାହିଁ । କିଛିକ୍ଷଣ ଆଗରୁ ଶୁଣିଥିଲେ ସବୁ ଠିକ ହୋଇଗଲା, ସେ ବୋଧ-ହୁଏ ସନାତନଠାରୁ ଶୁଣିଥିବେ, ସବୁ ଖଡ଼ପାଠ—ଡାହାଣ ହାତର ଲେଖାକୁ ବାଁ ହାତର ଶକ୍ତି ସ୍ୱୀକାର କରିବାକୁ ହୋଇଛି । ଜଣେ ବିଶାଳ ସମ୍ଭ୍ରାନ୍ତଙ୍କୁ ଏକ ନିଃସ୍ୱ ଯୁବକ ପାଖରେ ଅବନତ ହେବାକୁ ହୋଇଛି, ଯେଉଁ ଯୁବକର କି ଏହି ବିଶାଳ ପୃଥିବୀରେ ନିଜର କୁଟୀର ଖଣ୍ଡେ ମଧ୍ୟ ନାହିଁ । ସାମାନ୍ୟ ଶୁଷ୍କ ଡିଗ୍ରୀ ଉପରେ ଯାହାର ଭିତ୍ତି, କୌଣସି ଶୂଦ୍ରତାର ଆଶ୍ରୟ ନ ନେଲେ ଯାହାର କୌଣସି ମୂଲ୍ୟ ନାହିଁ, ସେ ପୁଣି କରିଦେଇଯିବ ଏତେବଡ ପ୍ରତିଷ୍ଠିତ ବିକାଶ ଉପରେ ନିର୍ମମ ପଦାଘାତ ! ଜ୍ଞାନ, ସଂସ୍କୃତି, ଶିଳ୍ପ—କୌଣସି ଜିନିଷକୁ ସେ ବୁଝିପାରିବ ନାହିଁ ବୋଲି ତାହାକୁ ସମ୍ମାନ ଦେଇପାରିବ ନାହିଁ କିଛି ? ଏହା କଣ ଶିକ୍ଷା, ଏହି କଣ ଶିକ୍ଷିତ ?

ଏହିପରି ଭାବୁ ଭାବୁ ତା'ର ମନେହେଲା, ନ ହୋଇଥାନ୍ତା କି ମୁରଲି ତାହାର ବନ୍ଧୁ, ନ ପାଇଥାନ୍ତା କି ସେ ସେହି ଶିକ୍ଷା—ନିଜକୁ ଯଥେଷ୍ଟ ଉନ୍ନତ ବୋଲି ସେ ମନେ କରିପାରୁଥାନ୍ତା ଆଜି । ଜଣେ ମହିମାମୟ ଲୋକ ନିରୁପଦ୍ରବତାର କରୁଣ ବର୍ତ୍ତିକା ଧରି ନିଜ ଘରେ ଆସି ଭିକ୍ଷୁକ ପରି ଠିଆହେଲେ, ଅଥଚ ଗୋଟାଏ ଶିକ୍ଷିତ ଯୁବକ ତାଙ୍କର ଘରେ, ତାଙ୍କର ମଶାରି ଭିତରେ ପୁଣି ତାଙ୍କୁ ହିଁ ଛଳନା କରିବାରେ ଲାଗିଲା । ପ୍ରଫୁଲ୍ଲର ଇଚ୍ଛାହେଲା, ପଦାଘାତରେ କରିଦିଅନ୍ତା ସେ ଏହି ପଶୁଟାକୁ ଏଠୁ ବହିଷ୍କାର—ଭାଙ୍ଗିଦିଅନ୍ତା ମୁଥ ମାରି ତାହାର ପ୍ରାର୍ଥନା ଗାଇବାର ମୁଖ ।...ତାର ମନେହେଲା, ସେ ଏହିକ୍ଷଣି ଦୌଡ଼ି ଦୌଡ଼ି ଯାଇ ବଳିଆର ସିଂହଙ୍କ ପାଖରେ କୁହନ୍ତା, ମୁଁ ବିବାହ କରିବି ଆପଣଙ୍କ ଝିଅକୁ, ମୁଁ ଖୁବ୍ ସଭ୍ୟ, ମୁଁ ଖୁବ ଉନ୍ନତ, ମୁଁ ସହସ୍ର ଗୁଣେ ଅର୍ଥବାନ ମୁରଲି ଅପେକ୍ଷା । ଆପଣଙ୍କର ସଂସ୍କୃତିକୁ ମୁଁ ସମ୍ଭ୍ରମ କରେ । ଆପଣଙ୍କ ଝିଅକୁ ମୁଁ ପ୍ରଶଂସା କରେ । ମୁଁ କରେ ଆପଣଙ୍କୁ ଭକ୍ତି ।...ଆଉ ସେ ଯାଇ ନିଦ୍ରାକୁ ଧରି କୁହନ୍ତା—ଏହି କାପୁରୁଷକୁ ତମେ ପଦାଘାତ କଲ ନାହିଁ କାହିଁକି ? ତମର ମଧୁର ସଙ୍ଗୀତକୁ ପ୍ରଶଂସା କରିପାରି ନାହିଁ ଯେଉଁ ଭୀରୁ, ତମେ ପୁଣି ତା ପାଖକୁ ଉପଯାଚିକା ଭାବରେ ଆସିଥିଲ—ତୁମେ ପୁଣି ଅଯାଚିତ ଭାବରେ ତାହାକୁ କହିଲ କଥା । କୌଣସି ଉତ୍ତର ଦେଲା ନାହିଁ ତମକୁ ଯେଉଁ ଭୀରୁ, ସେହି ଭୀରୁକୁ ଧ୍ୱଂସ କରି ତମେ ନିଦ୍ରା...ଭୀରୁ ପୁରୁଷକୁ ଏ ସମାଜରୁ କରି ବହିଷ୍କାର ।

ଏହିଠାରେ ମନେପଡ଼ିଲା ତାହାର ବାପାଙ୍କ କଥା । ତାହାର କେତେ ବିବାହ ଭାଙ୍ଗି ଦେଲେଣି ସେ, କୋଷ୍ଠୀ ପଡ଼ୁ ନାହିଁ ବୋଲି । ଆଉ ତାଙ୍କର କିପରି ଏକ କଥା ।

ଓଃ

ଯେପରି ବିବ୍ରତ ହୋଇଉଠିଲା ପ୍ରଫୁଲ୍ଲ । ମନେ ମନେ ସେ ଝଙ୍କାର ତୋଳି କହିଲା—

କେବଳ ଅସଭ୍ୟ ନୁହେଁ ମୁରଲି ! କାହିଁ ରକ୍ତରେ ମୋର ସେହି ସ୍ୱାଧୀନତାର କ୍ରୀଡ଼ା ?···ଅନେକ କଥା ବୁଝୁଛି ଅଥଚ କରି ପାରୁ ନାହିଁ ତ କିଛି···

ଏହିପରି ଚିନ୍ତାର ଆବର୍ତ୍ତନରେ ଘସି ସେ ଶେଷରେ ପାଇଲା ବାସ୍ତବ ନିଦ୍ରାର ସ୍ପର୍ଶ । ମୁରଲି ସେତେବେଳକୁ ଦଶାବତାର ଗାଉଚି ବସି ।

॥ **ପାଞ୍ଚ** ॥

ରାତି ଅନେକବେଳୁ ପରାସ୍ତ ହୋଇଛି ପ୍ରଭାତ ପାଖରେ । ଅନେକ ବେଳୁ ଆଲୋକଦ୍ୱାରା ବିଜିତ ହୋଇଛି କୁଜ୍‌ଝଟିକା । ଅନେକ ବେଳୁ ଜାଗରଣ ଖେଳିଲାଣି ଏହି ବଳିଆର ସିଂହ ପରିବାରରେ—ତଥାପି ଏପର୍ଯ୍ୟନ୍ତ ଗୋଟିଏ କୋଠରି ଭିତରେ ରହିଯାଇଛି ରାତି । ସେହି ରାତି ଭିତରେ ଏପର୍ଯ୍ୟନ୍ତ ଶୋଇ ରହିଛି ପ୍ରଫୁଲ୍ଲ ।

ହଠାତ୍ ଘୋଡ଼ାର ହ୍ରେଷାଧ୍ୱନିରେ ଭାଙ୍ଗିଗଲା ପ୍ରଫୁଲ୍ଲର ନିଦ୍ରା । ଆଖି ଫିଟାଇ, ମଶାରି ଟେକି ସେ ଖୋଲିଦେଲା ଦକ୍ଷିଣ ପାଖର ଝରକା । ଗୋଟିଏ ଆଲୋକ ସ୍ରୋତ ବହିଆସି ଆକ୍ରମଣ କଲା କକ୍ଷର ଅନ୍ଧକାରକୁ ।

ତାହା ପରେ ପ୍ରଫୁଲ୍ଲ ଶୁଣିବାକୁ ପାଇଲା—

ଓହ୍ଲାଇ ପଡ଼୍ ଘୋଡ଼ାରୁ ନିଦ୍ରା, ଆଗେଇବାର ସୀମା ମତେ ଆଜି ତିଆରି କରିବାକୁ ପଡିବ···ଓହ୍ଲେଇ ପଡ଼୍···

ଏହିସବୁ ଶବ୍ଦ ଶୁଣି ଅତି ଆଶ୍ଚର୍ଯ୍ୟ ହେଲା ପ୍ରଫୁଲ୍ଲ । ଦେହର ଲୁଗାପଟା ସଜାଡ଼ି ସଜାଡ଼ି ସେ ଆସି ପହଞ୍ଚିଲା ବାଣ୍ଡରେ । ସେଠି କେବଳ ଆଶ୍ଚର୍ଯ୍ୟ ହେଲା ତାହାର ଯୌବନ ।

କିଛିଦୂରରେ ଗୋଟିଏ ସୁନ୍ଦର ନାଲିଘୋଡ଼ା ଉପରେ ବସିଛି ନିଦ୍ରା । ତଳେ ସଇସ ଛିଡ଼ାହୋଇ ହାତକୁ ତାର ଚାବୁକ୍ ବଢ଼ାଇଦେବା ଉପରେ । ପିଣ୍ଡା ଉପରେ ବଳିଆର ସିଂହ ଛିଡ଼ାହୋଇ ଚିତ୍କାର କରୁଛନ୍ତି ।

ଯୁବକ ପ୍ରଫୁଲ୍ଲ ଏହିସବୁ କେବଳ ଦେଖିବାକୁ ଲାଗିଲା । କିଛି ସମୟ ଦେଖିବା ପରେ ସେ ଯନ୍ତ୍ରଚାଳିତ ପରି ଚାଲିଗଲା ନିଦ୍ରାର ପାଖକୁ । ସଇସ ହାତରୁ ଚାବୁକ୍‌ଟା ଟାଣିନେଇ ସେ ବଢ଼ାଇଦେଲା ନିଦ୍ରାକୁ । ଲଗାମ କୋହଳ କରିଦେଲା

ନିଦ୍ରା । ଘୋଡ଼ାର ଗୋଡ଼ରେ ଫୁଟିଉଠିଲା କଦମ୍‌······କ୍ଷୁରାଘାତରେ ବିକ୍ଷତ ହେଲା ଶିଶିରାର୍ଦ୍ର ମୃତ୍ତିକା ।

ସେଠାରୁ ଫେରିଆସି ପ୍ରଫୁଲ୍ଲ ପହଞ୍ଚିଲା ବଳିଆର ସିଂହଙ୍କ ପାଖରେ । ବଳିଆର ସିଂହ ହସି ହସି କହିଲେ—

ଖୁବ୍ ତ ସାହସ ଅଛି ବାବା, ତମର······

କେତେକ ସମୟ ଚୁପ୍ ପୁଣି କହିଲେ···

କିନ୍ତୁ ସମସ୍ତେ ମତେ ଏମିତି ଅବହେଳା କଲେ ମୁଁ ଚଳିବି କେମିତି ବାବା କହିଲ···?

କିନ୍ତୁ ଆପଣ ଯୁବକଟିର ଯୌବନ କାଢ଼ିନେବେ କେଉଁଥିପାଇଁ ? ଗୋଟିଏ ରାତିର ଚିନ୍ତା ଭିତରେ ପ୍ରଫୁଲ୍ଲ ଯେପରି ଯଥେଷ୍ଟ ଆଗେଇଯାଇଛି । ସେଥିଲାଗି ତାର ଏହି କଥାରେ ପ୍ରଥମେ ଆଶ୍ଚର୍ଯ୍ୟ ହେଲେ ବଳିଆର ସିଂହ । ତାହା ପରେ ଶରଣ୍ୟ କରି ଗୋଟିଏ ଦୀର୍ଘଶ୍ୱାସକୁ ସେ ଆସି ବସିପଡ଼ିଲେ ତାଙ୍କର ଆରାମ ଚୌକିରେ । ବସି ବସି ସେ ଚାହିଁଲେ ଦୂରକୁ—ଦାଣ୍ଡ ଆଗର ରାସ୍ତାଟା ଯେଉଁଠାରେ ପୂର୍ବମୁଖ ପରିବର୍ତ୍ତନ କରି ହୋଇଛି ଦକ୍ଷିଣଗାମୀ । ସେହି ମୋଡ଼ ଉପରେ ଉଚ୍ଚ କଆଁଗଛର ପ୍ରାଚୀର-ବାଡ଼ ମଧ୍ୟରେ ବିସ୍ତୀର୍ଣ୍ଣ ପଡ଼ିଆ । ସେହିଠାକୁ ଚାହିଁ ଚାହିଁ ଉତ୍ସାହିତ ହୋଇ କହିଲେ ବଳିଆର ସିଂହ—

ହେଇ···ତମେ ଏମିତି ଘୋଡ଼ା ଛୁଟେଇ ଜାଣ ବାବା !

ବଳିଆର ସିଂହଙ୍କ ଦୃଷ୍ଟିକୁ ଅନୁସରଣ କରି ପ୍ରଫୁଲ୍ଲ ସେହିଠାକୁ ଅନେଇ ଅନେଇ ଦେଖିଲା, ଦୂରର ପଡ଼ିଆ ଭିତରେ ଘୋଡ଼ା ଛୁଟାଉଛି ନିଦା ସୁନ୍ଦର ଗୋଲ-ବଳୟ ସୃଷ୍ଟିକରି, ଯେପରି ଘୂରି ବୁଲୁଚି ମଙ୍ଗଳଗ୍ରହ । ଶେଷରେ ଉତ୍ତର ଦେଲା—

ନା ।

ଆଉ, ତମର ଯୌବନ ନାହିଁ ବୋଲି କହିବାକୁ ହବ ମତେ ?······ଆଉ, ମୁଁ କଣ ଠିକ୍ କରୁଛି ଜାଣ ବାବା······ହଁ, ଯେମିତି ବହିପ୍ରକାଶ ନ ଥାଇ ମଧ୍ୟ ତମର ଯୌବନ ଅଛି···ସେଥିପେଇଁ, ମୁଁ ଠିକ୍ କରିଛି······ଏଇ ଘୋଡ଼ାଟାକୁ ବିକ୍ରିକରି ନିଦ୍ରାର ବିବାହ ପାଇଁ ରାସ୍ତାଖର୍ଚ୍ଚ ଯୋଗାଡ଼ କରିବି । ଏହା କହି ଦେହର ନରମ ଶାଲରେ ମୁହଁଟାକୁ ପୋଛିଦେଲେ ବଳିଆର ସିଂହ । ତାହାଙ୍କର ଏହି କଥାତକ ସମ୍ପୂର୍ଣ୍ଣ ଶେଷ ହେବା ଆଗରୁ ପ୍ରଫୁଲ୍ଲ ସେଠାରୁ ଶୀଘ୍ର ଚାଲିଗଲା ତାହାର କୋଠରୀକି । ସେ ମନେ ମନେ ଭାବିଲା, ସେ କ'ଣ ଏତେ ଅପଦାର୍ଥ ହୋଇପାରେ ଯାହାକୁ ସେ ମଣିଷ କରିବା ପାଇଁ ନିଜର ପକେଟ୍‌କୁ ଶୂନ୍ୟ କରିଛି ଅନେକ ସମୟରେ ।

ତାହାର ଇଚ୍ଛା ହେଲା, ମୁରଲିକି ସେ ଧକ୍କା ମାରି ଉଠେଇ, ତାର କାନ ଧରି ଆଣି ପକେଇବ ବଳିଆର ସିଂହଙ୍କ ଗୋଡ଼ତଳେ ।

କୋଠରୀ ଭିତରେ ପହଞ୍ଚି ସେ ଜୋରରେ ଟେକିଦେଲା ମୁରଲି ପଲଙ୍କର ମଶାରୀ । ଦେଖିଲା ମୁରଲି ପ୍ରାର୍ଥନାରତ । ମୁଖରେ ତାର ଗୁଞ୍ଜନ । ଯେତେ ସାହସ ସଞ୍ଚୟ କରିଥିଲା ସେ ଏହି ମୁରଲିର ଚେତନା ଫେରାଇବା ପାଇଁ, ତାହା ହୋଇଉଠିଲା

ଅତି ଅଥର୍ବ । କୌଣସି ମହାଜ୍ଞାନୀ ହିନ୍ଦୁ ଯେପରି ଦେବତାତତ୍ତ୍ୱ ଭଲଭାବରେ ଶିଖିଥିଲେ ମଧ୍ୟ ସେ କୌଣସି ସିନ୍ଦୂରଲଗା ଶୁଷ୍କ ପଥରକୁ ମଧ୍ୟ ପଦାଘାତ କରିପାରେନା, ସେହିପରି ଏହି ପ୍ରାର୍ଥନାରତ ମୂରଲକୁ ଭଲଭାବରେ ଅନୁଭବ କରିବା ପରେ ମଧ୍ୟ ତାହାକୁ କୌଣସି କଥା କହିପାରିଲା ନାହିଁ ବର୍ତ୍ତମାନ ପ୍ରଫୁଲ୍ଲ । ଉଦ୍ଦେଶ୍ୟରେ ବାଧାପାଇ ସେ ଖୁବ୍ ଉଦ୍ଧତ ଭାବରେ ବୁଲିଲା ସେହି ଘରଟାଯାକ । କେତେକ ସମୟ ବୁଲିବା ପରେ ସେ ଯାଇ ଛିଡ଼ା ହୋଇପଡ଼ିଲା କାଲିର ସେଇ ଗ୍ଲେଟ ଲ୍ୟାମ୍ପଟିର ଟେବୁଲ ପାଖରେ—ସେଠି ସେ ପର୍ଯ୍ୟନ୍ତ ପଡ଼ିରହିଛି ନନ୍ଦାର ସେହି ଗ୍ଲେଟ ଶାଡ଼ି । ତାହା ପରେ ଆଲନାର କାମିଜ୍ ପକେଟରୁ ସିଗାରେଟ୍ କେଶ୍ କାଢ଼ି ମନେକଲା ସେ ସବୁ ସିଗାରେଟ୍ ଏକାଥରକେ ଟାଣିବ । ଶେଷରେ ଗୋଟାଏ ସିଗାରେଟ୍ ଉପରେ ସବୁ ଆକ୍ରୋଶଯାକ ଗୃପି କୋଠରିଟାକୁ ଧୂମଳ କରି ବସିପଡ଼ିଲା ପଲଙ୍କ ଉପରେ । ତାହା ପରେ ସିଧା ଉଠି ଗ୍ଲଲିଗଲା ବଳିଆର ସିଂହଙ୍କ ପାଖକୁ—ମୁହଁରେ ତାର ସେ ପର୍ଯ୍ୟନ୍ତ ସିଗାରେଟ୍ । ହଠାତ୍ ସେ ପ୍ରଶ୍ନ କଲା ବଳିଆର ସିଂହଙ୍କୁ—

ଏଇ ଭାଗବତ ଘରଟା ଏଠି କାହିଁକି ଅଛି ଆଜ୍ଞା ?

ଚମକିପଡ଼ି ବଳିଆର ସିଂହ ଅନାଇଲେ ପ୍ରଫୁଲ୍ଲର ମୁହଁକୁ । କୁଜ୍‌ଝଟିକା ତଳର ସୂର୍ଯ୍ୟ ପରି ସିଗାରେଟ୍ ଧୂଆଁ ତଳେ ଦିଶୁଛି ପ୍ରଫୁଲ୍ଲର ମୁହଁ । ହଁ, ଏହି ପ୍ରଫୁଲ୍ଲ ଛଡ଼ା ଅନ୍ୟ କେହି ଏଠି ନାହିଁ । ସେହି ତାଙ୍କୁ ପଗ୍ଲରିଛି ଏହି ଅଭାବିତ ପ୍ରଶ୍ନ । ମୁହୂର୍ତ୍ତେ ଅବସର ନେଇ ହସି ହସି କହିଲେ ବଳିଆର ସିଂହ—

ତମ ଘରେ କଣ ନାହିଁ ?

ଅଛି, କିନ୍ତୁ କାହିଁକି ଅଛି ?

ପ୍ରଫୁଲ୍ଲର ସ୍ୱରରେ ଦୃଢ଼ତା ।

ବୋକାମି । ମୋ ଝିଅର ବିବାହ ଦେବା ଭଳି ଏ କଥାଟା···

ଏତିକି କଥା କହିଲେ ସେ ହସି ହସି । ତାହା ପରେ ସୁପ୍ତ ସିଂହ ଜାଗ୍ରତ ହେଲା ପରି ସେ କହିଲେ—

ଅଥଚ ନନ୍ଦା ଲାଗି ମୋର ବିବାହ ମୋଟେ ହେଲେ ଦରକାର ନାହିଁ; ତଥାପି ମୁଁ ତାକୁ କରିଦେବି ଜଣକର ଦାସୀ—ମୋର ପ୍ରାଣତୁଲ୍ୟ କନ୍ୟାକୁ ଶେଷରେ ସମାଜର ଯୂପ ଖଣ୍ଡରେ ନେଇ ଭର୍ତ୍ତି କରିବି ତାହାର ମୃତ୍ୟୁ ପାଇଁ······

ନନ୍ଦା ଯେଉଁଠାରେ ଘୋଡ଼ାରେ ବୁଲୁଛି ସେହିଠାକୁ ଅନେଇ ଅନେଇ କହିଲେ ପୁଣି ବଳିଆର ସିଂହ—

ଯେଉଁ ଯୁବକ ନନ୍ଦା ପଛରେ ଦୌଡ଼ି ଦୌଡ଼ି ମଧ୍ୟ ତାଳ ପକାଇ ପାରିବ ନେଇଁ—ଅଥଚ ମୁଁ ସେଇ ଯୁବକକୁ କରିଦେବି ତାର ଭାଗ୍ୟନିୟନ୍ତା—ସାରା ଜନ୍ମଟା ପାଇଁ······

ତାହା ପରେ ହସିଉଠିଲେ ଖୁବ୍ ଲଘୁଭାବରେ ।

—ତମେ ତ ବି.ଏ., ଏମ୍.ଏ ପାଶ୍ କଲ । ତମେ କହନା—ବାପା ତମର ଯୋଉ ବହିକି ଫୁଲ ଚନ୍ଦନ ମାରି ଘଣ୍ଟ ପୂଜ ବିଭୋର ହୋଇ ବସିଛନ୍ତି, ସେ ବହି

ତମକୁ ନ ପଢ଼େଇ କାହିଁକି ବଜାରରୁ ବହି କିଣି ତମକୁ ପଢ଼େଇ ଯୋଗ୍ୟ କଲେ ।

କିଛି ସମୟ ଅବସର ନେଇ ପ୍ରଫୁଲ୍ଲକୁ ନିରୀକ୍ଷଣ କରି ପୁଣି କହିଲେ ସେ—

ତମେ ଏ ସବୁଥିରେ ପଶୁଚ କାହିଁକି ବାବା ! ଯା, ମୁହଁ ହାତ ଧୁଅ—ମୁଣ୍ଡ କୁଣ୍ଡା, ଗୁ' ଖାଅ, ସିଗାରେଟ୍ ଟାଣ, ଫୁର୍ତ୍ତି କରି ବୁଲ—ଜୀବନକୁ ଉପଭୋଗ କର—ଫାଙ୍କିଦେଇ ଚାଲିଯାଅ ଏଇ ଜଗତଟାକୁ । ଏ ସବୁଥିରେ ପଶ ନା—ଏ ସବୁଥିରେ ପଶ ନା ବାବା ! ନିଦ୍ରା ହାତକୁ ଚାବୁକ ବଢ଼େଇଦବା, ଆଉ ଏ କଥାରେ ହାତ ଦବା ସମାନ କଥା ନୁହେ ବାବା !···

ହାତରେ ସିଗାରେଟ୍‌ର ଟିକିଟାରେ ଲମ୍ବା ଟାଣଦେଇ ତାକୁ ଫୋପାଡ଼ ଦେଇ ପ୍ରଫୁଲ୍ଲ ଚାଲିଯିବାକୁ ଲାଗିଲା ଭିତରକୁ । ଅଧବାଟରୁ ଫେରିପଡି ପୁଣି ଆସି ପଚାରିଲା—

ଆପଣ ତା' ହେଲେ କ'ଣ କରିବାକୁ କହୁଚନ୍ତି ?

ମୁଁ···ମୁଁ ତମକୁ କ'ଣ କରିବାକୁ କହିବି ପ୍ରଫୁଲ୍ଲ ? ତମେ ଯୁବକ, ତମେ ପ୍ରେମର ଜଗତରେ ବୁଲୁଚ । ଆଉ ମୋ ଘରକୁ ଆସିଚ ତାହାର ସଙ୍ଗିନୀ ଖୋଜି—ତା ସଙ୍ଗରେ ପୁଣି ଚାହୁଁଚ ସୁନା । ତମେ କାମିନୀ ଆଉ କାଞ୍ଚନର ସନ୍ଧାନ କରି ଆସିଛ ପ୍ରଫୁଲ୍ଲ ! ମୁଁ ସେଥିରେ କଣ କହିବି ତମକୁ ?—ମୁଁ ତମ ପାଖରେ ଜଣେ ଅଧମର୍ଣ୍ଣ—କୃପାଭିକ୍ଷୁ ।

ପାଦରେ ନିଷ୍କ୍ରାନ୍ତ ଧରି ଚାଲିଗଲା ପ୍ରଫୁଲ୍ଲ ଏକ ଚିନ୍ତାଶୀଳ ପରି । କୋଠରୀରେ ପହଞ୍ଚି ଦେଖିଲା, ପ୍ରାର୍ଥନା ଶେଷ କରି ପଲଙ୍କର କୋମଳ ଶଯ୍ୟାକୁ ନିର୍ଯ୍ୟାତିତ କରି ବିଛଣାରେ ଦଣ୍ଡ ଭାଙ୍ଗୁଚି ମୁରଲି । ସେ ମନେ ମନେ ଭାବିଲା, ବେଶ୍ ଫୁର୍ତ୍ତିରେ ଅଛି ତ ତା'ର ସାଥୀ···ଗୋଟିଏ ଦୁର୍ଲ୍ଲଭ ବ୍ୟକ୍ତିତ୍ୱକୁ ଜଞ୍ଜାଳରେ ପକେଇଦେଇ !

ତାହାର ପାଖକୁ ଚାଲିଯାଇ ପ୍ରଫୁଲ୍ଲ ପଚାରିଲା—

ଅର୍ଥ ନା ପରମାର୍ଥ ବଡ଼ ମୁରଲି ?

ଦଣ୍ଡ ଭାଙ୍ଗିବା ବନ୍ଦ କରି ସେହିପରି ଆଣ୍ଠେଇଥିବା ଅବସ୍ଥାରେ ମୁରଲି କହିଲା—ତା'ର ନା ତ ତା'ର ପ୍ରମାଣ । ପରମାର୍ଥ ସଙ୍ଗରେ ଅର୍ଥର ତୁଳନା ହେଇପାରେ କେବେ···

ଖୁବ୍ ପ୍ରତିକୂଳ ଅବସ୍ଥା ଭିତରେ ଥିଲେ ମଧ୍ୟ ତଥାପି ହାସ୍ୟ ଅନୁଭବ କଲା ପ୍ରଫୁଲ୍ଲ ।

ସେହି କୋଠରୀର ଗୋଟିଏ କୋଣରେ ଭାଗବତ ଘରକୁ ଯିବାର ବାଟ । ଏହା ଭିତରେ ଚାକର ଆସି ଠାକୁର ଘରର ବାସନ, ଆଳତି ଏବଂ ହାତଘଣ୍ଟି ମାଜି ଭାଗବତ ଘରର ଗୋଟିଏ କୋଣରେ ରଖିଦେଇ ସେହି ଘରର କବାଟକୁ ଆଉଜାଇ ଦେଇ ଯାଇଛି ।ପ୍ରଫୁଲ୍ଲ ସେହି ଘରକୁ ପଶିଯାଇ ଭଲ ଭାବରେ ଅନେଇଗଲା ଭାଗବତ ଗାଦୀକି ।

ଏହି ସମୟରେ କଦମ୍ବକ ଶବ୍ଦରେ କମ୍ପି ଉଠିଲା ବଳଆର ସିଂହଙ୍କ ଦାଣ୍ଡ । ମୁରଲି ଖଟ ଉପରୁ ଓହ୍ଲାଇଯାଇ ବାତାୟନ ପାଖରେ ଛିଡ଼ା ହେଲା । ସେ ଯେପରି ସିନ୍ଧଆ, ସେ ଦେଖିଲା ଲକ୍ଷ୍ମୀବାଈ ଛୁଟିଆସିଲା ଘୋଡ଼ାରେ । ଭିତରର ସମସ୍ତ କାପୁରୁଷତା କେନ୍ଦ୍ରୀଭୂତ ହେଲା ତାହାର ଆଖିରେ ।

ହାତରେ ତାହାର ଚାବୁକ୍···ମୁହଁରେ ବିନ୍ଦୁ ବିନ୍ଦୁ ଝାଳ । ଅଙ୍ଗଗଠନକୁ ବିକଚ କରି ଦେହର ଯାବକବର୍ଣ୍ଣର ଶାଢ଼ୀ ଉପରେ ରୁନ୍ଧ ହୋଇଛି କ୍ରିମ୍‌ସନ୍ ରଙ୍ଗର ହାତବୁଣା ଉଲ୍‌ର ସ୍ଲେଟ ଓଭର୍ କୋଟ୍ । ପାଦରେ ମାଜେଣ୍ଟାରଙ୍ଗର ନାଗ୍ରା ଯୋତା । ସାରା ଦେହରେ ଯୌବନର ଉଦ୍ଦାମ ସଙ୍ଗୀତ ଗାଇ ଗୋଟିଏ ରକ୍ତ ତାରକା ଭଳି ସେହି ଘରେ ପ୍ରବେଶ କଲା ନନ୍ଦ୍ରା । ମୁରଲି ଶଙ୍କିତ ହୋଇଉଠିଲା ଏହି ଦୃଶ୍ୟରେ ।

ଓଜସ୍ୱିନୀ ଭାଷାରେ ପଚାରିଲା ନନ୍ଦ୍ରା—

ପ୍ରଫୁଲ୍ଲ ବାବୁ ?

ନନ୍ଦ୍ରା ଓ ମୁରଲି ଆଖିରେ ସୀମାଞ୍ଚିତ ବିସ୍ମୟ ବୋଳି ଚନ୍ଦନଲଗା ଗୁଡ଼ାଏ ତାଳପତ୍ର ପୋଥି କୁଣ୍ଢାଇ ସେଠାରେ ପହଞ୍ଚିଲା ପ୍ରଫୁଲ୍ଲ । ସ୍ୱରରେ ଝଙ୍କାର ତୋଳି ସେ କହିଲା ମୁରଲିକୁ—

ନେ ପରମାର୍ଥ ନେ ! ତତେ ଅନେକ ଅର୍ଥ ଦେଇଛି—ଏଥର ଏଇ ପରମାର୍ଥରେ ସନ୍ତୁଷ୍ଟ ହୋ !

କହି କହି ପ୍ରଫୁଲ୍ଲ ସେହି ତାଳପତ୍ର ପୋଥି ଗୋଟିକ ରଖିଦେଲା ମୁରଲିର ଶଯ୍ୟା ଉପରେ । ତାହାପରେ ନନ୍ଦ୍ରାର ହାତ ଧରିପକାଇ କହିଲା—

କ୍ଷମାକର ମତେ, ଏଇ ଅପଦାର୍ଥକୁ ତମେ କାଲି କୃପାକରି କଥା କହିଲ । ଅଯାଚିତଭାବରେ ସାନ୍ନିଧ ଦେଲ ଆସି । ମୁଁ ତାହାର କୌଣସି ସତ୍କାର କରିନେଇଁ । ମୋର ସମସ୍ତ ଅସଭ୍ୟତା······ମୋର ସମସ୍ତ କୁସଂସ୍କାର···ମୋର ପୌରୁଷାଭିମାନକୁ ତମର ଏଇ ଚାବୁକ୍‌ରେ ବାଡ଼େଇ ଧ୍ୱଂସ କର ନନ୍ଦ୍ରା !···ଯୁବତୀବିଳାସୀ ଅହଙ୍କାରୀ ପୁରୁଷର ରକ୍ତରେ ତମର ଘୋଡ଼ାକୁ ଆଦ୍ଦ୍ର କରିଦଅ ଲାଲ୍···

ନନ୍ଦ୍ରାକୁ ସଙ୍ଗରେ ଧରି ଏହା ପରେ ପ୍ରଫୁଲ୍ଲ ଚାଲିଗଲା ବାହାରକୁ । ଦାଣ୍ଡପିଣ୍ଡାରେ ପହଞ୍ଚି ପ୍ରଫୁଲ୍ଲ ଦେଖିଲା, ବଳଆର ସିଂହଙ୍କ ଆସନ ଶୂନ୍ୟ । ତାହାର ଗତିବିଧି ଦେଖି ନନ୍ଦ୍ରା କହିଲା—

ବାପା ବଗିଚାକୁ ଯାଇଥିବେ···

ଚାଲ, ତମର ବାପାଙ୍କ ପାଖକୁ ଯିବା—ତାଙ୍କ ପାଖରେ ବସିବା—ତାଙ୍କଠାରୁ ଅନେକ ଶୁଣିବାର ଅଛି······

ତୀବ୍ର ଜଡ଼ତାର ନିର୍ଯ୍ୟାସରେ ଯେପରି ମୁରଲିର ଶରୀର ବର୍ତ୍ତମାନ ତିଆରି ହୋଇଛି । କିଛି ସମୟ ପରେ ଚେତନା ସଂଗ୍ରହ କରି ତାହାର ବିମୂଢ଼ତା କାଟି ସେ ଭାବିଲା, ମୋର ସ୍ତ୍ରୀକୁ ସଙ୍ଗରେ ନେଇ ଚାଲିଗଲା ପ୍ରଫୁଲ୍ଲ—ମତେ ନିର୍ମମ ଭାବରେ ଅପମାନ ଦେଇ, ଅଥଚ ପ୍ରଫୁଲ୍ଲ ମୋର ବନ୍ଧୁ !···ପୁଣି ପ୍ରଫୁଲ୍ଲ ପାଖକୁ ଆସିଥିଲା ନନ୍ଦ୍ରା, କେତେବେଳେ ?···ଆଜି ନନ୍ଦ୍ରା ସଙ୍ଗରେ ମୋର ବିବାହର ସମ୍ବନ୍ଧ !

ଯାହା କେବଳ ମୁରଲି ହିଁ ଭାବିପାରିବ, ଏହିପରି ଭାବନା ସେ ଭାବିଗଲା ଅନେକ । ଶେଷକୁ ସେ କିଛି ମଧ୍ୟ ଭାବିପାରିଲା ନାହିଁ । କେତେକ କ୍ଷଣ ପରେ ସେ ତାଳପତ୍ର ପୋଥିଗୁଡ଼ିକର ଶରଣ ନେଲା । ଶିର ଲଗାଇ ସେହି ପୋଥିଗୁଡ଼ିକରେ ସେ ଗଦ୍‌ଗଦ ସ୍ୱରରେ କହିଲା—

ପ୍ରଭୁ ! ବନ୍ଧୁତା, ସମାଜ ଆଉ ପ୍ରେମ ତମେ ହିଁ ସୃଷ୍ଟି କରିଥିଲ ମନୁଷ୍ୟ ପାଇଁ । ସେହି ବନ୍ଧୁତା ଏବେ ମଣିଷଦ୍ୱାରା ଅପବିତ୍ର ହୋଇଛି । ସମାଜ ଆଜି ନରକରେ ପରିଣତ ହେବାକୁ ବସିଛି—ସ୍ୱାଧୀନାର କଳହାସ୍ୟ ରେ ସମାଜ ହେଉଛି ବିକଳ । ପ୍ରେମ ଆଜି ସଚ୍ଚୋଉ ହରାଇବାକୁ ବସିଛି । ପୁରୁଷ ଆଜି ଅନ୍ଧ ହେବାକୁ ବସିଛି—ସେ ଆଜି ନାସ୍ତିକ ଦେବାକୁ ଯାଉଛି ଅଧିକାର ; ତମେ ଗଢ଼ିଥିବା ନିୟମକୁ ଅସ୍ୱୀକାର କରି ସେ ଆଜି ବହିଷ୍କାର କରୁଛି ତମକୁ । ନିଜର ବିଶିଷ୍ଟତାକୁ ଆଜି କହୁଚି ଅହଙ୍କାର ।···ହେ ପ୍ରଭୁ, ଆଜି ତମର ଦୁର୍ଦ୍ଦଶା ଦେଖିବାକୁ ହେଲା—ଆଜି ମୋର ଜୀବନର ସବୁଠିହିଁ ଅପବିତ୍ର ଦିନ । ଏହି ଅଧର୍ମର ଦଳନ ପାଇଁ ତମେ ଆଉ କୋଉଦିନ ଆସିବ ପ୍ରଭୁ !

ତାହାପରେ ସେ ଗଦ୍‌ଗଦ ସ୍ୱରରେ ଗାଇଲା—
ମ୍ଳେଚ୍ଛନିବହ ନିଧନେ କଳୟସି କରବାଳଂ
ଧୂମକେତୁମିବ କିମପି କରାଳଂ
କେଶବ ଧୃତ କଲ୍‌କି ଶରୀର
ଜୟ ଜଗଦୀଶ ହରେ···

ଦେବୀପୀଠରେ ଜୀବ ବଳି ସମର୍ପିତ ଆତ୍ମର-ନିଷ୍ଠାକୁ ମଧ୍ୟ ପବିତ୍ରତା କୁହାଯାଏ, ସେହି ପ୍ରାଣୀହତ୍ୟାକୁ ମଧ୍ୟ ଭକ୍ତି କୁହାଯାଏ । ଭକ୍ତିତନ୍ମୟତା ମଧ୍ୟ କୁହାଯାଏ ହତ୍ୟା-ବିଶ୍ୱାସିକାର ସେହି ଏକନିଷ୍ଠତାକୁ । ସେହିପରି ଶ୍ରୀଯୁକ୍ତ ମୁରଲିମୋହନ ନାଗେଶଙ୍କ ଭିତରେ ଘଟନାର ସଂଘାତରେ ଭକ୍ତି ଓ ଧର୍ମର ଯେଉଁ ଆବେଗ ପ୍ରକାଶ ପାଇଲା, ତାହା କୁସଂସ୍କାର ଏବଂ ଭ୍ରମପୂର୍ଣ୍ଣ ହେଲେ ମଧ୍ୟ ହୋଇଉଠିଲା ଅନବଦ୍ୟ । ଅନ୍ୟାୟ ଉପାୟରେ ଧନଲାଭ କରିଥିଲେ ମଧ୍ୟ ତାହା ଯଦି କୌଣସି କାରଣରୁ ନଷ୍ଟ ହୋଇଯାଏ ସେଥିପାଇଁ ଅନ୍ୟାୟୀର ଯେଉଁ କ୍ରନ୍ଦନ ତାକୁ କ୍ରନ୍ଦନ ହିଁ କୁହାଯିବ । ଆଉ ଯଦି ସେହି କ୍ରନ୍ଦନ ହିଁ ଆମର ସଂଗ୍ରାହ୍ୟ ହୁଏ, ଆମେ ତିଳେମାତ୍ର ତ୍ରୁଟି ଦେଖିପାରିବା ନାହିଁ ସେହି କ୍ରନ୍ଦନରେ; ସୁତରାଂ ମୁରଲିର ଏହି କରୁଣ ଆବେଗକୁ ଚିତ୍ତ-ସ୍ପନ୍ଦନର ସାଥୀ କରିବାରେ କୌଣସି ବାଧା ରହିବ ନାହିଁ, ଯଦି ତାହାର ବାକ୍ୟଗୁଡ଼ିକ ସହି ଆମେ ଶୁଣିବାକୁ ପାଉ ତାହାର ସ୍ୱର ।

ମୁରଲିର ମନ୍ତ୍ରମୁଗ୍ଧଗୁଞ୍ଜନ, ମୁରଲିର ଆବେଗମୟ ଆବୃତ୍ତି ତାହାର ଆୟତ୍ତ-ହୀନ ହୋଇ ପଡ଼ିଥିଲା ଶେଷକୁ । ତାହା ଅତିକ୍ରମ କରିଥିଲା ସେହି କକ୍ଷର ଚତୁଷ୍କୋଣ ସୀମା । ଏହି ସମୟରେ ଅଗଣାକୁ ଯାଉଁ ଯାଉଁ ଗତି ପରିବର୍ତ୍ତନ କରି ବଳଆର ସିଂହ ପହଞ୍ଚିଲେ ସେହି କକ୍ଷର ଦ୍ୱାରରେ । ସେ ତନ୍ମୟ ହୋଇ ମୁରଲିର ସ୍ୱରରେ ସ୍ୱର ମିଳାଇ ଗାଇଉଠିଲେ—

କେଶବ ଧୃତ କଲ୍‌କି ଶରୀର
ଜୟ ଜଗଦୀଶ ହରେ...

ଜୟଦେବ ଗାଇ ସାଲବେଗ୍ ଖାଁ ଭଗବାନଙ୍କୁ ଭେଟିବାର ଶୁଣାଅଛୁ । କିନ୍ତୁ ମୁରଲି ପଛକୁ ଗୁହିଁ ଦେଖିଲା, ଠିଆ ହୋଇଛନ୍ତି ବଳଆର ସିଂହ, କଣ୍ଠରେ ତାଙ୍କର ଗୀତାଂଶ । ସେ ନୀରବ ରହିଲା କ୍ଷଣକ ପାଇଁ । ଆଖିରେ ତାହାର ଅଶ୍ରୁର ଝଲକ ।

ବଳଆର ସିଂହ ବିଭୋର ହୋଇ କହିଲେ—

ଗାଅ ବାବା, ବନ୍ଦ କଲି କାହିଁକି ?...ସୁନ୍ଦର ଗାଉଥିଲ ତୁମେ, ଯେମିତି ଅନ୍ତର ଦେଇ...... ।

କିନ୍ତୁ ମୁରଲି ରହିଲା ନୀରବ । କଣ୍ଠରେ ତଥାପି ତାହାର ଜଡ଼ତା । ବଳଆର ସିଂହ ତାହାର ମୁହଁର କାରୁଣ୍ୟ ଦେଖି କହିଲେ—

କ'ଣ ତମର ସନ୍ଦେହ ହଉଚି ମୁଁ ସୁନା ଦେବି ନାହିଁ ବୋଲି ? ନା, ନା, ଛିଃ, ସେସବୁ ସନ୍ଦେହ କରନା । ଖୁବ୍ କଞ୍ଚା ଗୁଣ୍ଡ ତମର—ତାକୁ ସନ୍ଦେହରେ ଖରାପ କରନା ବାବା !...ମୁଁ ତମକୁ ଖୁବ୍ ଦେବି...ତମେ ଯା' ଗୁହିଁ ତା'ଠାରୁ ବେଶୀ ...ମୁଁ ତ ଆଗରୁ କହିଛି ବାବା, ଜାଗରଣ ହବ ଠିକ୍ ମୋର ଓଲଟା...ନାଗଟ ବାସ୍ତବ । ଯେତେବେଳେ ଗୃଷୀ ମୂଲିଆର ପାଦ ଜଳି ଯାଉଥିବ ତାତିଲା ଭୂଇଁରେ, ସେତେବେଳେ ସେ କଣ ଘୋଡ଼ା ଚଢ଼ି ବୁଲିବ ଆଉ ବାବା ! ଆଉ ନିଦ୍ରା ବାହାହୋଇ ଗଲା ପରେ ଏ ଘୋଡ଼ାଟା ହବ ମୋର ପୁଣି କଣ ? ତା' ବଦଳରେ ତମର ରାସ୍ତା-ଖର୍ଚ୍ଚର ଯୋଗାଡ଼ କରୁଚି ।...ଆଉ ସୁନା ତ ଅଛି କିଛି...ଆଉ କିଛି ବାକିଗଙ୍କି ଯୋଗାଡ଼ କରିବାକୁ ହେବ...ସେଥିପାଇଁ ଏ ଚିନ୍ତା କରୁଚ କାହିଁକି ? ସେ ସବୁ ଯୋଗାଡ଼ କରି ମୁଁ ବର୍ତ୍ତମାନ ତ ଫେରିଲି ।...ହିଁ, ଗା', ଗା' ବାବା, ଏଥର ......ସେଇ ବୌଦ୍ଧାବତାର ଅଂଶଟା ଗାଇଲ ?

ସମ୍ପୂର୍ଣ୍ଣ ସୁସ୍ଥ ହୋଇପାରି ନ ଥିଲେ ମଧ୍ୟ ମୁରଲି ଗାଇଲା । ସେହିପରି ସେହିଠାରେ ଛିଡ଼ାହୋଇ ସେଥିରେ ଯୋଗଦେଲେ ମଧ୍ୟ ବଳଆର ସିଂହ ।

ଗାନ ଶେଷରେ ବଳଆର ସିଂହ ବିଭୋର ହୋଇ କହିଲେ—

ଜୟଦେବ କେବଳ ଏତିକି ଲେଖିଯାଇଥିଲେ ବି ଢେର୍ ହୋଇଥାନ୍ତା ।

ସାହସର ଆଶ୍ରୟ ନେଇ ମୁରଲି ଏହିଠାରେ କହିଲା—

ଗୀତଗୋବିନ୍ଦ ?

ହିଁ, ହିଁ, ସେସବୁ ଅଶ୍ଳୀଳ ବାବା, କିନ୍ତୁ ଏଇଟା ସୃଷ୍ଟି ଥିଲା ପର୍ଯ୍ୟନ୍ତ, ମଣିଷ ଥିଲା ପର୍ଯ୍ୟନ୍ତ—ନିତ୍ୟକାଳର । ମଣିଷକୁ ଏହା ବିଳାସୀ କରେନା, ସଚେତନ କରେ ।

କ୍ଷଣକର ନୀରବତା ପରେ ପୁଣି ବଳଆର ସିଂହ କହିଲେ—

ନିଦ୍ରାକୁ ମୁଁ ଅନେକ ଭଜନ ଶିଖେଇଚି ବାବା—ଦାଦୁ, କବିର, ତୁଳସୀ-ଦାସ, ମୀରାବାଈ ପ୍ରଭୃତିଙ୍କର । ତମକୁ ସେସବୁ ଖୁବ୍ ଭଲ ଲାଗିବ ବାବା...ଆଉ

ସେ ଗାଏ ବି ସୁନ୍ଦର ।...ହଁ, ମୁଁ ତ ସେଇଲଗି କେତେଥର କହିଚି ବାବା,... ସେଇମାନେ ଗାଇବେ କଣ...ସେଇମାନେ ସାନ୍ତ୍ୱନା ପାଇବେ କେମିତି, ସେଇ ନିପୀଡ଼ିତମାନେ, ଦୁର୍ଗତମାନେ ବାବା ! ହଁ, ମୁଁ ତ କାଲି ସେଇ କଥା ତମକୁ ପଚାରୁଥିଲି...କାହିଁ, କିଛି ଉତ୍ତର ଦେଲନେଇଁ ବାବା !

କହି କହି ବଳିଆର ସିଂହ ଘର ଭିତରକୁ ଗଲେ । ତାହା ପରେ ମୁରଲି କହିଲି...

ଭଜନ ନ ଗାଇବେ କାହିଁକି — ଅନ୍ୟ ପ୍ରଶ୍ନ ଉଠିବାର କାରଣ କାହିଁ ?

ହଁ, ଅନ୍ୟ ପ୍ରଶ୍ନର କାରଣ ନାହିଁ ? ଭଜନ ଗାଇବେ ?

ଭାବ ବଦଳେଇ ପୁଣି ବଳିଆର ସିଂହ କହିଲେ—

ହଁ ବାବା, ଭଜନ ଗାଇବେ, ତମେ ତ ପୁଣି ଗାଉଚ — ତମେ ତ ପୁଣି ଯୁବକ ! ଏହି ସମୟରେ ବଳିଆର ସିଂହଙ୍କ ଦୃଷ୍ଟି ପଡ଼ିଲି ପୋଥିଗୁଡ଼ିକ ଉପରେ ।

ଆରେ, ଏ ପୋଥିକି ଆଣିଲି ଏଠିକି କିଏ ? ତମେ ଭାଗବତ ପଢ଼ୁଚ ନା କଣ ବାବା ? କିନ୍ତୁ ତମର ତ ଏ ସାହସ ହବନେଇଁ ବାବା !

କ୍ଷୁଣ୍ଣତା ଭିତରେ କେବଳ ମୌନତା ସଂଗ୍ରହ କଲି ମୁରଲି ।

ଆଚ୍ଛା, ଆଚ୍ଛା, ପୋଥିଗୁଡ଼ାକ ସେ ଥାକ ଉପରକୁ ରଖିଦିଅ । ପୂଜାପାଠ ଆଜି କିଛି ମିଛ କହିବାକୁ ପଡ଼ିବ ପ୍ରଫୁଲ୍ଲ ଲଗି ।...ପାଗଳାମୀ ତାର ଅଛି ବୋଲି ଜଣାପାଉଥିଲି ।...କୁଆଡ଼େ ଗଲି ସେ ?......କଣ ନିଦ୍ରା ସାଙ୍ଗରେ ଘୋଡାଦୌଡ଼ ଶିଖୁଚି...

କହି କହି କକ୍ଷରୁ ବାହାରିଗଲେ ବଳିଆର ସିଂହ । ଯାଉ ଯାଉ ବାରଣ୍ଡାରେ ଥୁଆ ହୋଇଥିବା ଦାନ୍ତକାଠି, ପାଣିତାଳ ଉପରେ ତାଙ୍କର ଆଖି ପଡ଼ିଲି । ଲେଉଟିପଡ଼ି ସେ କହିଲେ—

ମୋ ଉପରେ ରାଗ କରିଚ ବାବା ? ଦାନ୍ତ ଘଷିନା ଏତେବେଳଯାଏ— ପାଇଖାନା ଯାଇନା ?...ଆସ ବାବା, ଆଉ ଡେରି କରନା...ତମେ ଅତିଥି... ତମେ...ଅତିଥି ବାବା !

ଏହା ପରେ 'ଗଉରୀ' 'ଗଉରୀ' ବୋଲି ଚାକରକୁ ଡାକି ଡାକି ସେ ଚାଲିଗଲେ ।

ଦାନ୍ତ ଘଷୁ ଘଷୁ ମୁରଲି ଭାବିଲି—ଗୋଟାଏ ଭଣ୍ଡାମି କରୁଚି ଏଇ ବୁଢ଼ା ମୋ ସଙ୍ଗରେ । ମୋ ସାଙ୍ଗରେ ବା'ଘରର ପ୍ରସ୍ତାବ, ଏଣେ ଝିଅ ପ୍ରେମ କରିବୁଲୁଚି ଅନ୍ୟ ସାଙ୍ଗରେ । ନିଜର ବଡ଼ଲୋକିଆର ପରିଚୟ ବୋଧହୁଏ ପ୍ରଫୁଲ୍ଲ ଏମାନଙ୍କୁ ଦେଇଚି ସେ ବି ଗୋଟାଏ ବିରାଟ ଜଗ୍‌ଜଗ ପାଲଟି ଯାଇଚି ଏଠି । ଏଇ ଗଣ୍ଡ ମଫସଲ ଭିତରେ, ବୋଧ ହୁଏ ବିଳାସ-ବ୍ୟଭିଚାରରେ ନିଜର ସମ୍ପତ୍ତିଯାକ ଉଡ଼େଇ, ଶେଷକୁ ଏଇ ବୁଢ଼ାଟା ହେଇଉଠିଚି ଗୋଟାଏ ସଂସ୍କାରକ । ବିଦ୍ୟାଘରେ ହଳଦିଗୁଣ୍ଡା ପଡ଼ିଥିବ କି ନାହିଁ, ଆଉ କହିପାଉଚି ଖୁବ୍ ବଡ଼ ବଡ଼ କଥା । ସେଇ ଲୋକଗୁଡ଼ାକ, ସହରର ଆବର୍ଜନା ଘାଣ୍ଟି ଯେଉଁମାନେ କାଉ ପରି ଖାଲି ବୁଲନ୍ତି, ବୋଧହୁଏ ଆଡ୍‌ଡା ଦେଇଛନ୍ତି ଏଠି କେବେ କେବେ ମଫସଲକୁ ଆସି । ତାଙ୍କୁ ଏଇ ଅକର୍ମଣ୍ୟ ଲୋକଟା ଭାବିଚି ହଂସ । ସେଥିରେ

ଜଣଙ୍କଠାରୁ ପାଞ୍ଚକଥା ଶୁଣି ଏ ବୁଢ଼ା ବି ବନିଯାଇଚି ଗୋଟିଏ ବୁଦ୍ଧୁ । ଆଉ ଗୋଟାଏ ସାମାନ୍ୟ ଝିଅ—ତାକୁ ଧରି ଏଠି ଗୋଟାଏ ପର୍ବ ଲଗିଛି । ନା ଅଛି ବିଦ୍ୟାବୁଦ୍ଧି, ନା ଡିଗ୍ରୀ ଡିପ୍ଲୋମା । ଟିକେ ଗୀତ ଗାଇ ଜାଣିଛି, ପୁଣି ଗୋଟାଏ ଘୋଡ଼ା ଚଢ଼େଇ ଶିଖେ-ଇଚି ଏ ବୁଢ଼ାଟା ତାକୁ । ଯେମିତି ରୁଷିଆର କସାକ୍ କି ଚୀନର ଗରିଲାବାହିନୀ ଗଢ଼ିବ ଇଏ ! ଓଡ଼ିଶାର ଗୋଟାଏ ଝିଅ, ପୁଣି ମଫସଲର—ସେ ପୁଣି ଧରିଛି ଗୋଟାଏ ଆଦର୍ଶ । ତାର ପୁଣି ପୂଜାରୀ ହେଇଗଲା ପ୍ରଫୁଲ୍ଲ !

ଏହିପରି ଏ ଭାବ କୌଣସି ସଂହାରକ ବେଗରେ ପଡ଼ିଲା ଯେପରି ମୁରଲି । ଏହି ବେଗରେ ପଡ଼ି ତା ଆଖିରେ ପ୍ରଥମେ ଭାସିଉଠିଲା ନିଦ୍ରା ଓ ପ୍ରଫୁଲ୍ଲର ଛବି—ସେମାନେ ଯେତେବେଳେ ହାତ ଧରାଧରି ହୋଇ ବାହାରିଗଲେ ଏଠୁଁ । ତାହାର କ୍ରମୋନ୍ନତି ସେ କରିଗଲା କଳ୍ପନାରେ । ସେହି କ୍ରମୋନ୍ନତିର ଶେଷରେ ସେ ଦେଖିଲା, ନିଦ୍ରା ଢଳିପଡ଼ିଛି ପ୍ରଫୁଲ୍ଲର କୋଳରେ—ସେଠି ବିଳାସର, ଉପଭୋଗର ସାମଗ୍ରୀ ଛଡ଼ା କିଛି ନୁହେଁ ସେହି ନିଦ୍ରା । ମରିଯାଇଛି ତାର ଘୋଡ଼ା । ଭାଙ୍ଗି ଯାଇଛି ତାହାର ବେହେଲା । ତାହାର ସମଗ୍ର ଦେହଟି ପୁରୁଷ ହାତରେ ହୋଇଛି ଖଣ୍ଡିଏ ବୀଣା—ସେଥିରୁ ବିଳାସର ନାନା ସ୍ୱର ଶୁଣୁଛି ବସି ପୁରୁଷ । ସେହି ପୁରୁଷ ପ୍ରଫୁଲ୍ଲ, ଯାହାର ଧନିକତା ଛଡ଼ା ଆଉ କୌଣସି ଉଚ୍ଚ ମୂଲ୍ୟ ନାହିଁ ମୁରଲିର ବିଚାରରେ ତାହାର ନିଜଠାରୁ ।

ବିଦ୍ରୋହୀ ହୋଇଉଠିଲା ମୁରଲିର ପୁରୁଷକାର ଏହିଠାରେ । ସେ ସହସା ଜିଜ୍ଞାସା କଲା ତାର ସ୍ମୃତିକୁ—କେତେ ହେବ ପ୍ରଫୁଲ୍ଲର ଟଙ୍କା ? ଦୁଇ ତିନି ହଜାର ତ ! ହୁଏ ତ ଏହି ବିଭାଘରର ସମସ୍ତ ଯୌତୁକ ବିକିକରି ତାହାର ଅନେକ ଦିନର ଦାନକୁ ଦିନକେ ପରିଶୋଧ କରିଦେବ । ଏଥିପାଇଁ ସେ କଣ ମୋର ସ୍ତ୍ରୀ ସଙ୍ଗରେ କରିବ ପ୍ରେମ ? ନିର୍ବୀର୍ଯ୍ୟ ମୁଁ ହେବି କାହିଁକି ? କାପୁରୁଷ ହେବି କାହିଁକି, ମୁଁ ଅନେକଥର ଗୀତା ପଢ଼ିଛି । ମୁଁ ମୋର ସ୍ୱତ୍ୱ ଆଦାୟ କରିନେବି ପୃଥିବୀଠାରୁ । ମୁଁ ଏହି ସୁନ୍ଦରୀ ଯୁବତୀକି କରିବି ମୋର ନିଜର । ନିଦ୍ରା ହେବ ମୋର । ତାକୁ ସ୍ପର୍ଶ କରିପାରିବ ନାହିଁ ଅନ୍ୟ କେହି ।

ଏହି ସମୟରେ ସେ ଚମକିଉଠିଲା ହଠାତ୍—ତାକୁ ଭୟତ୍ରସ୍ତ କରି ତା' ଆଗରେ ଘୋଡ଼ା ଛୁଟାଇନେଲା ନିଦ୍ରା ।

କିଛିକ୍ଷଣ ପରେ ପୁଣି ଆଶ୍ୱସ୍ତ ହେଲା ମୁରଲି—ଘୋଡ଼ାରୁ ଓହ୍ଲାଇପଡ଼ି ତାର କ୍ରିମ୍ସନରଙ୍ଗର ଓଭରକୋଟ୍ ପିନ୍ଧି ତା'ପାଖରେ ଛିଡ଼ାହୋଇଛି ନିଦ୍ରା । ସୁବର୍ଣ୍ଣ ମୁହଁରେ ତାର ବିନ୍ଦୁ ବିନ୍ଦୁ ମୁକ୍ତା । କୋମଳ ଓଠରେ ତାହାର ଅନିନ୍ଦ୍ୟ ହସ । ଗ୍ଲୁଭ୍-କ୍ଷ୍ଟା ଫୋପାଡ଼ି ଦେଇ ହାତରୁ; ଦେହରୁ କାଢ଼ିଦେଇ ତାର କୋଟ୍, ଜୋତା ତାର ଫିଙ୍ଗି ଦେଇ ଦୂରକୁ, ଲାବଣ୍ୟତନୁକୁ କରି ଲୀଳାମୟୀ ପାଖରେ ତାର ବସୁଛି ଆସି ନିଦ୍ରା । ହାତରେ ତାର ବେହେଲା, କଣ୍ଠରେ ତାହାର ସଙ୍ଗୀତ । ଆଖିରେ ତାର ରୁନ୍ଧିତ କାମନା କଟାକ୍ଷରେ ବିଦ୍ଧକରି ସେ ମୁରଲିକୁ ସେ କହୁଛି, ତମେ କାହିଁକି କରୁନା ମତେ ନିଜର ? ମୁରଲି କେବଳ ଶୁଣିଥିଲା ମୋର କାନ—କାହିଁକି ଆଣିଲ ଏହି

ପ୍ରଫୁଲ୍ଲକୁ ? କାହିଁକି ତମେ ଗୁହୁଁଚ ପୁଣି ସୁନା ? ତମେ ମତେ ସ୍ପର୍ଶ କର—ଏଇ ବେହେଲର ଛଡ଼ ଧରିଚ ଯେଉଁ ହାତରେ, ପରିଷ୍କାର ଭାବରେ ଦେଖାଯାଉଚି ଯାହାର ବାହୁ; ତାହାଠାରୁ କଣ ସୁନ୍ଦର, ତାହାଠାରୁ କଣ କୋମଳ, ତାହାଠାରୁ କଣ ମୂଲ୍ୟବାନ୍ ତମ ପାଖରେ ସୁନା ?······ମୁଁ କେବଳ ନାରୀ । ନାରୀର ସକଳ ଲଜ୍ଜା ଧରି ଶ୍ରେଷ୍ଠ ସୌକୁମାର୍ଯ୍ୟ ଓ ସୌରଭ ଧରି ମୁଁ ଆଜି ଯୁବତୀ । କୌଣସି ଆଦର୍ଶ ନାହିଁ – କୌଣସି ଉଚ୍ଚାଭିଳାଷ ନାହିଁ ମୋର···ମୁଁ ଗୁହେଁ ଯୁବକର ଉଷ୍ମ ଆଶ୍ଳେଷ—ଉଦ୍‌ବେଳ ସମ୍ଭୋଗ । ତମେ ବନ୍ଦ କରିଦେଲ କାହିଁକି କାବ୍ୟ—ତମେ ବୋଲ, ସେହି ଛନ୍ଦଟା—

ସ୍ମରଗରଳ ଖଣ୍ଡନଂ ମମ ଶିରସି ମଣ୍ଡନଂ
ଦେହି ପଦପଲ୍ଲବମୁଦାରମ୍···

ହଠାତ୍ ସ୍ୱପ୍ନ ଭାଙ୍ଗିଗଲା ମୁରଲିର । ସେ ଶୁଣିଲା ଦୂରରୁ ଯେପରି ଗାଇ ଗାଇ ଆସୁଚି ନନ୍ଦା···

ଧାନ ଦଳିତ ରୁଧିରେ ଜଗତ ଜର୍ଜର ପାପେ
ଉଠ ଯୁଗ-ଯାତ୍ରୀ
ଦଳ ଘନ ବାନ୍ଧି
ଶମ ନତ ମନୁଜ ମଳିନ ଅଭିଶାପେ ।
ମାନବ ଧରିଚି ଦାନବ ରୂପ
ମାନବ ଗ୍ରାସ କରେ,
ଯୁବ ଜନ ଜାଗ ଖରେ······
ଖଡ଼୍‌ଗ କରେ ।

କିନ୍ତୁ ସେହି ସ୍ୱର ସଙ୍ଗରେ ନନ୍ଦା ଆଉ ଆସିଲା ନାହିଁ ଏହି ଅଗଣାକୁ । ମୁରଲି ବାରିପାରିଲା, ସ୍ୱରଟା ବାରିପଟରୁ ଆସି ଗୁଲିଗଲା ସେମାନଙ୍କର ଖଞ୍ଜା ଭିତରକୁ । ସେ ସ୍ଥିର କରିନେଲା, ନିଶ୍ଚୟ ବୁଲି ବୁଲି ସେମାନେ ଫେରିଲେ ବର୍ତ୍ତମାନ—ପ୍ରଫୁଲ୍ଲ ବି ଏତେବେଳଯାଏ ନନ୍ଦା ସଙ୍ଗରେ ଅଛି !

ଅତି ଅସ୍ଥିର ହୋଇଉଠିଲା ମୁରଲି । ରାଗରେ ସେ ହଗହଗି ହୋଇ, ବେକ ମୂଳର ଜାମା ତଳେ ହାତ ପୂରେଇ ଦୁଇକେଗି ଭୁଲସୀ ମାଳିକି ସେ ଖୁବ୍ ଜୋରରେ ଟାଣିଆଣିଲା । କେତୋଟି ଭୁଲସୀକଣ୍ଠି ଗଡ଼ିପଡ଼ିଲା ତଳେ, ଆଉ ବାକିଗୁଡ଼ିକୁ ସେହି ଛିନ୍ନମାଳ ସହ ମୁରଲି ଫିଙ୍ଗିଦେଲା ଗୁଳ ଉପରକୁ । ତାହା ପରେ ଘର ଭିତରକୁ ଯାଇ କାନ୍ଥର ଛୋଟ ଦର୍ପଣଟିରେ ନିଜର ବେକକୁ ଖୁବ୍ ଭଲକରି ଦେଖିଲା । ଦେଖି ଦେଖି ସେ କହିଲା—

ହୋଇଚି, ଗୋଟାଏ ଅଥର୍ବ ବୁଢ଼ା, ସେ ପୁଣି କହିବ ସାହସ ନାହିଁ ତମର ?

ଏହା ପରେ ମୁରଲି ମନେ ମନେ ଖୋଜିଲା ପ୍ରଫୁଲ୍ଲକୁ, ଯେପରି ତାହାକୁ କଣ ସେ ବର୍ତ୍ତମାନ କହିବାକୁ ଗୁହେଁ । କିନ୍ତୁ ସମସ୍ତ ପରେ ବ୍ୟାହତ ହେଲା ମୁରଲିର କଳ୍ପନା । ସେ ଶୁଣିଲା ବଳିଆର ସିଂହଙ୍କ ଗୁକର ଆସି କହୁଚି—

ଆଜ୍ଞା, ମାଜଣାକୁ ଯିବେ ଆସନ୍ତୁ....

ନିଷ୍ଫଳ ଦୃଷ୍ଟିରେ ମୁରଲି ଅନାଇରହିଲା ଗୃହକଙ୍କୁ । ତାହା ପରେ ଗୃହକ ରତି ପାଖକୁ ଆସି ତେଲଗିନା ଥୋଇଦେଇ କହିଲା—

ଆଜ୍ଞା, ଘରେ ମର୍ଦ୍ଦନ ହବ ନା ଘାଟରେ ?

ତାହା ମଧ୍ୟ ବୁଝିପାରିଲା ନାହିଁ ମୁରଲି । କେବଳ ତେଲଗିନା ଦେଖି ବୁଝି ନେଲା ଯେ, ଗୃହକ ତାକୁ ଗାଧୋଇଯିବା ପାଇଁ ଡାକୁଛି । ତାହା ପରେ ମୁରଲି ଜାମା ଖୋଲପକାଇ ଦେହ ମୁଣ୍ଡରେ ଟିକେ ତେଲ ମାରିଦେଇ ଗୃହକର ସଙ୍ଗରେ ବାହାରିଗଲା ବାଳକ । ବିଚରା ସେବକଟିକୁ ଆଉ ତେଲ ମର୍ଦ୍ଦନ କରିବାକୁ ପଡ଼ିଲା ନାହିଁ ।

## ॥ ଛଅ ॥

ବଳିଆର ସିଂହଙ୍କ ଉଦ୍ୟାନର ସୁଦୀର୍ଘ ପ୍ରାଚୀରଟା ଯେପରି ତାଙ୍କର କ୍ଷୟିଷ୍ଣୁ ସମ୍ଭ୍ରାନ୍ତତାର ଜାଗ୍ରତ ପ୍ରତିନିଧି । କେଉଁଠି ଭାଙ୍ଗିଯାଇଛି ଇଟା, କେଉଁଠି ଖସିଯାଇଛି ଚୂନ । କେଉଁଠି ପାଷାଣଭେଦୀ ଏବଂ ବିଷଲ୍ୟକରଣୀର ଗୁଳ୍ମ । କେଉଁଠାରେ ନାମଗନ୍ଧହୀନ ଅଖ୍ୟାତ ଶୈବାଳନିଚୟର ଗଣତାନ୍ତ୍ରିକ ବିଶାଳ ଶୋଭାଯାତ୍ରା । ତାହାଙ୍କର ବିସ୍ତୀର୍ଣ୍ଣ ଗୃହବେଷ୍ଟନୀର ବିଶାଳ ବ୍ୟଞ୍ଜନବର୍ଣ୍ଣର ଏହି ପ୍ରାଚୀରଟା ବର୍ତ୍ତମାନ ଯେପରି ଏକ ବିରାଟ ହସନ୍ତ ।

ନିଦ୍ରା ଓ ପ୍ରଫୁଲ୍ଲ ଚଉପାଢ଼ୀରୁ ଯିବା ପରେ ପହଞ୍ଚିଲେ ବଗିଚାରେ । ବଳିଆର ସିଂହ ସେଠାରେ ନ ଥିଲେ । ତାହାଙ୍କୁ ନ ପାଇ ଦୁହେଁ ବଗିଚା ଭିତରେ ବୁଲିବାକୁ ଲାଗିଲେ ।

ବୁଲୁ ବୁଲୁ ନିଦ୍ରା ହାତରୁ ଗୃହୁକ୍‌ଟା ନେଇ ତାହାକୁ ହଲେଇ ହଲେଇ କହିଲା ପ୍ରଫୁଲ୍ଲ—ତମକୁ ସାଇକେଲ ଚଢ଼ି ଆସେ ?

ନା ।

ମତେ ବି ଘୋଡ଼ା ଚଢ଼ିଆସେନା ।

ସମସ୍ତଙ୍କୁ ଯେ ଗୋଟାଏ କାମ ଆସିବ, ସ୍ୱାର କାରଣ ଅଛି ?

ଗୋଟାଏ ଶ୍ରେଷ୍ଠ ଗୁଳ୍ମ ଉପରେ ଗୃହୁକ୍‌ଟା ବାଡେଇଦେଇ ପ୍ରଫୁଲ୍ଲ ପୁଣି କହିଲା—

କିନ୍ତୁ ମୋର ଘୋଡ଼ା ଚଢ଼ି ଶିଖିବା ଉଚିତ···

ଓ, ଏ ଗଛଟା ବୋଧହୁଏ ଘୋଡ଼ା ।

ନିଦ୍ରାର ଓଠରେ ରହସ୍ୟର ସ୍ମିତ ; କିନ୍ତୁ ଯଥାର୍ଥ ଉତ୍ତର ପାଇଲା ନାହିଁ ବୋଧହୁଏ ପ୍ରଫୁଲ୍ଲ । ପୁଣି ସେ କହିଲା—

ମୋର କାହିଁକି ଘୋଡ଼ାଚଢ଼ି ଶିଖିବା ଉଚିତ କହିଲ ?

ପାଖର ଗୋଟିଏ ସ୍ଥଳପଦ୍ମ ଗଛରୁ ଗୋଟିଏ ଫୁଲ ଛିଣ୍ଡେଇ କହିଲା ନିଦ୍ରା—

କାରଣ କାହିଁ ?

କୌଣସି ମୀମାଂସାର ପଥରେ ପାଦ ଦେଇଛି ଯେପରି ପ୍ରଫୁଲ୍ଲ । ସେଥିପାଇଁ ଦୃଢ଼ତାର ସହ ସେ କହିଲା—

ଯଥେଷ୍ଟ କାରଣ ଅଛି ।

ସତେ ! ଏଇ ମୋ ଫୁଲ ଛିଣ୍ଡେଇବା ଭିତରେ ବି ଅଛି କାରଣ ?

ନିଦ୍ରାର ମୁହଁକୁ ବର୍ତ୍ତମାନ ଚାହିଁଲା ପ୍ରଫୁଲ୍ଲ । ସେଠାରେ କେବଳ ରହସ୍ୟର ହସ । ନିଦ୍ରା ମଧ୍ୟ ଚାହିଁଲା ପ୍ରଫୁଲ୍ଲକୁ । ସମ୍ପତ୍ତିବାନ୍ ବଳଆର ସିଂହଙ୍କ କନ୍ୟା ହେଲେ ମଧ୍ୟ ନିଦ୍ରା ଯୁବତୀ । ସେ ସେ ଜୀବନରେ ବେଶୀ ଯୁବକଙ୍କ ସହିତ ସାଥୀ ହୋଇଛି, ଏହା ମଧ୍ୟ ନୁହେଁ । ଆଉ ମଧ୍ୟ ସେ ସେହି ଝିଅ ନୁହେଁ, ଯାହାକୁ ନେଇ କେବଳ ବିଳାସର ରଙ୍ଗମହଲ କଳ୍ପନା କରିହୁଏ । କିନ୍ତୁ ଯାହାକୁ ନେଇ ଅଗ୍ରସରର ପଥକୁ ଆତୁର କରିହୁଏ ଅଗ୍ରଗାମୀ, ଦେଖିହୁଏ ଅବଚେତନାର ବିନାଶର ସ୍ୱପ୍ନ, ଅଧିକନ୍ତୁ, ଯେଉଁ ଯୁବତୀ ପାଇଁ ବିପ୍ଳବରୁ ହୋଇ ହୁଏନା ବିଚ୍ଛିନ୍ନ, ଯାହାକୁ କରିହୁଏନା ବିଦ୍ରୋହ ଅଭିଧାନରୁ ପୃଥକ୍, ସେହି ଶକ୍ତିର ଭ୍ରୂଣାୟମାନତା ଏହି ନିଦ୍ରାଠାରେ । ମାଂସଲୋଭୀ ହିଂସ୍ର ଯୁବକ ପାଇଁ ଯଥେଷ୍ଟ ଆହାର ଯେଉଁ ବୁଲୁଥିଲେ ମଧ୍ୟ ସେ ମାଂସ ନିଦ୍ରାର, ସେ ତାହାକୁ ବିନିଯୋଗ କରିପାରେ ନିଜର ପ୍ରୟୋଜନରେ । ଏହିପରି ଯୁବତୀ ଯୁବକକୁ ହିଂସ୍ର ହିଁ କରିପାରେ, କିନ୍ତୁ ଲାଭର ଖାତାରେ ଲେଖିହୁଏ କେବଳ ଶୂନ୍ୟ ।

ସେହି ହିଂସ୍ରତାର ବାଳରଶ୍ମି ପ୍ରଫୁଲ୍ଲର ପ୍ରକୃତି ଉପରେ ଆପେ ଉଇଁ ଆପେ ହିଁ ବିଲୀନ ହେଲା ବର୍ତ୍ତମାନ—ଯେପରି ଜ୍ୟୋତ୍ସ୍ନାର ପଞ୍ଜୁରୀ ଭିତରେ ଉଲ୍‌କାପାତର ପ୍ରଭା । କିନ୍ତୁ ତାହାର ଦାୟାଦ ରୂପରେ ପ୍ରଫୁଲ୍ଲର ମୁହଁରେ ଭାସିବୁଲିଲା ପ୍ରସନ୍ନତାର ଅଭିବ୍ୟକ୍ତି । ପ୍ରଫୁଲ୍ଲ କହିଲା—

ଛନ୍ଦ ପତନ ।

ହସି ହସି କହିଲା ନିଦ୍ରା—

ଆପଣ ବୋଧହୁଏ ଗୀତ ଗାଇ ଜାଣନ୍ତି···?

ନା ।

କବିତା ଲେଖି ଜାଣନ୍ତି ?

ନା ।

ଆଉ···

ଶେଷଟା କଣ ମତେ କହିବାକୁ ହବ ନିଦ୍ରା !

ନନ୍ଦ୍ରା ତାହାର ସରସ କଣ୍ଠରେ ଦେଲା ଭାଷା—

ଆଉ କଣ ସେହି ପାଠପଢ଼ାର କଥା ମୁଁ କହିବ !

ନା, ତମେ ଠିକ୍ କହିଚ ।···ମୁଁ ଗୋଟାଏ ଅପଦାର୍ଥ ।···ତମେ କିନ୍ତୁ ଗୋଟିଏ ଛନ୍ଦ ପତନ ଏଇ ମଫସଲ ଭିତରେ ।

ଗୋଟିଏ ବିଷୟକୁ ରୋମନ୍ଥନ କରିବାର ଚେଷ୍ଟା ନ କରି ନନ୍ଦ୍ରା ଅନ୍ୟ ପ୍ରସଙ୍ଗର କଲା ଅବତାରଣା –

କିନ୍ତୁ ଏଇ ଛନ୍ଦପତନ କେମିତି ଛନ୍ଦର ସାମଞ୍ଜସ୍ୟ ଆଣିପାରେ ?···ମୁଁ ଖୁବ୍ ଭାବେ ଅଥଚ ଏଇଟା ସତ୍ୟ ଅଥଚ ଖୁବ୍ ଭୁଲ । ହୁଏତ ଏଇଟା ଶଙ୍କରଦର୍ଶନର ମାୟା ।

ଅବାକ୍ ହୋଇ ପ୍ରଫୁଲ୍ଲ ଅନେଇଲା ନନ୍ଦ୍ରାକୁ । ତାହା ପରେ ସଚେତ ହୋଇ କହିଲା—ତମର ଏଇ ସଚେତନତା ନେଇ ତମେ କହୁଚ ତ ?

ହଁ ଏ ସମାଜର ଛନ୍ଦ ଭିଆରି···

କିନ୍ତୁ ତମେ ଏ ଦିଗରେ କ'ଣ କରି ପାରିବ ?

କିଛି ନ ହେଲେ ତ ସେଇମାନଙ୍କୁ ମୁଠା ଭାତ ରାନ୍ଧିଦେବି, ଘୋଡ଼ାଚଢ଼ି ଶିଖେଇଦେବି – ଯେମିତି ଆପଣ ବଢ଼େଇଦେଲେ ମତେ ଗୃହକୁ······

ବିସ୍ମୟର ବୁଦ୍‌ବୁଦ୍ ବାନ୍ଧି କହିଲା ପ୍ରଫୁଲ୍ଲ –

କାହାକୁ ଏସବୁ ଦବ ନନ୍ଦ୍ରା ?

ନିର୍ଦ୍ଦିକଭାବରେ କହିଲା ନନ୍ଦ୍ରା, ଅଥଚ ମୁହଁରେ ତାଙ୍କ ରହସ୍ୟର ଲୀଳା—

ଆଉ କାହାକୁ, ମହଣେ ସୁନା ଦାନ ଦେଇ ଯାହାକୁ ବାପା ମତେ ଦକ୍ଷିଣା ଦେବେ ।

ଗୀତ ବି ଶୁଣେଇବ ?

ନିଶ୍ଚୟ, ଯୁଦ୍ଧକ୍ଷେତ୍ରରୁ ସୈନିକ ଫେରିବ କ୍ଲାନ୍ତ ହୋଇ, ସେ ଯେ ଖୁବ୍ ଗୀତ ଶୁଣିବାକୁ ଚାହିଁବ······

ଆଉ ସେ ତମକୁ ଚାହେନା !

ଛନ୍ଦପତନକୁ କିଏ କାହିଁକି ଚାହିଁବ ପ୍ରଫୁଲ୍ଲବାବୁ ! ଏଇ ଆମ ଗାଁର ଝିଅଗୁଡ଼ା କଣ ମତେ ଚାହାନ୍ତି—ମତେ ସମସ୍ତେ କହନ୍ତି ଅଣ୍ଡିରାଚଣ୍ଡୀ । କିନ୍ତୁ ମୁଁ ଚାହୁଁଚି ସେମାନଙ୍କର ଭଲ ହୁଏତ କେବଳ ସେମାନଙ୍କ ସକାଶେ ମୁଁ କରୁଚି ଏତେ କଷ୍ଟ ।

ଏହା ପରେ କିଛି ସମୟର-ମୀରବତା ଭିତର ଦେଇ ସେମାନେ କେବଳ ଚାଲିଲେ । ଚାଲୁ ଚାଲୁ ନନ୍ଦ୍ରା କହିଲା—

ଆପଣମାନେ ଆସି ବଡ଼ ନିରାଶ ହୋଇଚନ୍ତି ଏକା

ବିସ୍ମୟର ଆଘାତ ପାଇ ପ୍ରଫୁଲ୍ଲ କହିଲା—

ମାନେ ?

ଆପଣମାନେ ଆସିଥିଲେ ଗୋଟିଏ ଲଜକୁଳୀଲତା ଦେଖିବାକୁ । ଆଉ ଆପଣଙ୍କୁ ସେ ଦେଖା ଦେଇ ଥାନ୍ତା ଥର ଥର—ଆପଣଙ୍କ ଭାଷାରେ ବେପଥୁମତୀ ହୋଇ । ଆଉ ସିଏ ହୁଏତ କାନ୍ଦ ପକେଇଥାନ୍ତା ତାକୁ ତା'ର ନାଁ ପଚାରୁ ପଚାରୁ । ନାକରେ

ନାଇଥାନ୍ତା ନୈଳକ···ପାଦରେ ମଲ··ଚନ୍ଦ୍ରହାର ନିତମ୍ବରେ । ହୁଏତ କଙ୍କିଣୀଟା ବି ଆଶା କରିଥାନ୍ତେ ଆପଣମାନେ । ଓଃ, ଆପଣମାନଙ୍କ ଆଖିକି ମୁଁ ଖୁବ୍ ନିରାଶ କଲି······ ନୁହେଁ ?

ପ୍ରଫୁଲ୍ଲ ଏଠାରେ କିଛି କହିଲା ନାହିଁ— ଶ୍ରବଣରେ ତାର ଆତୁର ପ୍ରତୀକ୍ଷା । କାଳେ ତାହାର ଉତ୍ତରରେ କଥାର ଗତିଟା ଭିନ୍ନ ହୋଇ ଯାଇପାରେ ବୋଲି ସେ ଭାବିଲା । ଏହି ସମୟରେ ନିଦ୍ରା ହସି ହସି କହିଲା—

ଆଉ ବି ବଂଧୁଯାକ ଫେରିଯାଇ କେତେକଥା ଗଢ଼ିଦେଇଥାନ୍ତି ସେଇ ବାଳିକାଟି ସକାଶେ ।

ବର୍ତ୍ତମାନ ନ କହି ରହିପାରିଲା ନାହିଁ ପ୍ରଫୁଲ୍ଲ । ସେ କହିଲା—

ଆମେ କିନ୍ତୁ ତାକୁ ପସନ୍ଦ କରି ନ ଥାନ୍ତୁ ।

ଆଉ ମତେ କ'ଣ ପସନ୍ଦ କରିଚନ୍ତି ?

ନା ।

ଧୀର ଭାବରେ କହିଲା ନିଦ୍ରା—

କାହିଁକି !

ନିରୁତ୍ତର ରହିଲା ପ୍ରଫୁଲ୍ଲ । ନିଦ୍ରା କହିଲା—

ଆଉ ମୁଁ ଯଦି କହେ ମୁଁ ଆପଣଙ୍କୁ ପସନ୍ଦ କରିନି···

ବୁଲିପଡ଼ି ଆଶ୍ଚର୍ଯ୍ୟତାର ଘନକେନ୍ଦ୍ର ଦେଖିଲା ପରି ପ୍ରଫୁଲ୍ଲ ଅନାଇଲା ନିଦ୍ରାର ମୁହଁକୁ । ନିଦ୍ରା ହସି ହସି ପ୍ରଫୁଲ୍ଲର ହାତ ଧରିପକେଇ ଚାଲିଲା । ଚାଲି ଚାଲି କିଛିଦୂର ଗଲା ପରେ ଗୋଟିଏ ଗନ୍ଧରାଜ ଫୁଲ ଛିଣ୍ଡାଇ ଆଣି ପ୍ରଫୁଲ୍ଲର ଫୁଲ୍ ଓଭର ବୋତାମ ମୂଳେ ଖୋସିଦେଇ ତା' ହାତରୁ ଚାବୁକଟା ଛଡ଼େଇ ଆଣି, ଦେଇଦେଲା ଆଗରୁ ଧରିଥିବା ସ୍ଥଳପଦ୍ମଟା । ତାହା ପରେ ହସି ହସି ଗେହ୍ଲେଇ ହୋଇ କହିଲା—

ଚାଲନ୍ତୁ, ମୁଁ ବୋଉକୁ କହୁଚି ଯେ, ଆପଣ କେମିତି ଆମ ଭାଗବତଘର ଆଙ୍କ ମାରି କଲେ···

ତାହା ପରେ କଣ ଭାବି ପୁଣି କହିଲା—

ମୁରଲିବାବୁ କଣ ସେ ପୋଥିଗୁଡ଼ା ପଢ଼ିବେ ବୋଲି ଆପଣ ତାଙ୍କୁ ଦେଲେ ?

ପ୍ରଫୁଲ୍ଲ ହସିଉଠିଲା କେବଳ । କିନ୍ତୁ ପ୍ରଫୁଲ୍ଲର ଉତ୍ତର ପାଇବାକୁ ନିଦ୍ରା ବିଶେଷ ଆଶା ରଖି ନ ଥିଲା ଯେପରି, ପ୍ରଫୁଲ୍ଲ କୌଣସି ଉତ୍ତର ଦେବା ଆଗରୁ ସେଥି-ପାଇଁ ପୁଣି କହି ବସିଲା ନିଦ୍ରା—

ଆପଣଙ୍କ ଦେହରେ ଫୁଲ ଖୋସିଦେଲି ବୋଲି ଆପଣ କଣ ଭାବିଲେ ପ୍ରଫୁଲ୍ଲବାବୁ ?

ଏକଥା ଶୁଣିବାପାଇଁ ପ୍ରଫୁଲ୍ଲ ମୋଟେ କାମନା କରି ନ ଥିଲା । ସେ କିଛି ଉତ୍ତର ଦେଇ ପାରିଲା ନାହିଁ ମଧ୍ୟ ସେଥିଲାଗି । ତାହା ପରେ ପୁଣି କହିଲା ନିଦ୍ରା—

ବାଟରେ ଗୋଟା ଚମ୍ପାଗଛ ଗଲା—ଅନେକ ଫୁଲ ବି ଫୁଟିଥିଲା ହାତ ପ ହାନ୍ତାରେ । ଆପଣ ଗୋଟା ଖୋସି ଦେଲେନେଇଁ ତ ମୋ ବେଣୀରେ ?

ଏଥିରେ ବି ପ୍ରଫୁଲ୍ଲର କୌଣସି ଉତ୍ତର ନ ପାଇ ସରସ ଝଙ୍କାର ତୋଳି କହିଲା ନିଦ୍ରା—

କାମନା ଗୁଡ଼ାକ ରୁଦ୍ଧହୋଇ ଘୁଞ୍ଚ ଭିତରେ ମଣିଷକୁ ଅଣନିଶ୍ୱାସୀ କରିବ । ଆଉ ଗୋଟା ସାମାନ୍ୟ କାର୍ଯ୍ୟରେ ଆମେ ନିଜକୁ ସୁସ୍ଥ କରିପାରିବା ନାହିଁ । ଆମେ ଦୁ'ଜଣ ସାଙ୍ଗହୋଇ ବୁଲୁଚେ—ଯେମିତି ରୁଷିଆ ଆଉ ଜର୍ମାନୀର ଦୁଇଜଣ ଗୁପ୍ତଚର— ଉପରେ ଗୋଟା ସଭ୍ୟ ମଣିଷର ଖୋଳ, ଭିତରେ ବର୍ବରର ଅସଭ୍ୟତା ।···କଣ ଆପଣଙ୍କର ଇଚ୍ଛା ହୋଇ ନ ଥିଲା ଏ କଥା କରିବା ପେଇଁ ?

ପ୍ରଫୁଲ୍ଲ ଯତ୍ପରୋନାସ୍ତି ଚମତ୍କୃତ ହେଲା । ତାହାର ଶିକ୍ଷାଭିମାନ ତ ଅନେକ ଆଗରୁ ଦେବାଳିଆ ହୋଇଥିଲା – ବର୍ତ୍ତମାନ ତାହାର ଖାନ ଦାମୀ, ସଭ୍ୟତା- ଭିମାନ ମଧ୍ୟ କଠୋର ଆଘାତରେ ହୋଇ ପଡ଼ିଲା ମୁମୂର୍ଷୁ ।

ତାହାର ଏହି ସଭ୍ୟତାର ଆବରଣ ଜୀର୍ଣ୍ଣ ହୋଇଯିବାରୁ ତାହାର ଭିତରେ ବର୍ବରତା ମଧ୍ୟ ବର୍ତ୍ତମାନ ବିଦାୟ ଭିକ୍ଷାପାଇଁ ଆଲୋକକୁ ଆସିଲା, ସେହି ବର୍ବରତା ପ୍ରଫୁଲ୍ଲ କଣ୍ଠର ଭାଷା ଛଡ଼ାଇ କହିଲା –

ତମର ବାପା ବି ଏସବୁ କ'ଣ ତମକୁ ଶିଖେଇଚନ୍ତି ?

ହସରେ ନବଖଣ୍ଡ ହୋଇପଡ଼ିଲା ନିଦ୍ରା । ପାଟିରେ ପଣତ ଦେଇ ହସ ବନ୍ଦ କରି ସେ କହିଲା —

ଆପଣଙ୍କର ପ୍ରଫେସର କଣ ଶିଖେଇନାହାନ୍ତି କେମିତି ମୋ ସାଙ୍ଗରେ କଥାବାର୍ତ୍ତା କରିବାକୁ ହବ ମିଷ୍ଟର ଭରଦ୍ୱାଜ ?

ସେତେବେଳକୁ ସେମାନେ ଆସି ବଗିଚ୍ଚ ମଝିର ଛୋଟ ପୁଷ୍କରଣୀଟିର ପାଖରେ ପହଞ୍ଚିଥିଲେ । ତାହାର କୂଳରେ ଛିଡ଼ାହୋଇ, ହାତର ଗ୍ଲୋବ୍‌ରେ ଗୋଟା ଛୋଟ ଉଡ଼ିଗଛକୁ ବାଡ଼ଉ ବାଡ଼ଉ ନିଦ୍ରା ହସି ହସି ପ୍ରଫୁଲ୍ଲ ଉପରେ କଟାକ୍ଷ ହାଣି ହାଣି କହିଲା —

ଆଉ କଣ ମୋର ମନେପଡ଼ୁଚି ଜାଣନ୍ତି ପ୍ରଫୁଲ୍ଲବାବୁ—ବୈଜ୍ଞାନିକ କୌଶଳରେ ବଙ୍ଗୋପସାଗରର ପାଣିରେ ଏଇ ଛୋଟ ପ୍ରଦେଶଟାକୁ ଆମର କଚ୍ଛାବନ ବୁଡ଼େଇ ଦେଇ, ତା' ଉପରେ ବଟପତ୍ରରେ ଗୋଟିଏ ବିଷ୍ଣୁମୂର୍ତ୍ତି ଭସେଇ ତାହାଙ୍କୁ ପ୍ରାର୍ଥନା କଲେ ହୁଅନ୍ତା···

ନିଦ୍ରାକୁ ପ୍ରାୟ କୋଳାଗତ କରି ପ୍ରଫୁଲ୍ଲ କହିଉଠିଲା···

ତା' ଅପେକ୍ଷା ଏ ଦେଶଟାରେ ଘୋଡ଼ା ଛୁଟେଇ ତମେ ଖାଲି କଦମ୍ବକ ଫୁଟାଅ, ହାତର ଗ୍ଲୋବକରେ ପିଟିଯାଅ ଏଇ ପ୍ରଫୁଲ୍ଲଗୁଡ଼ାକୁ – ସେଥିରେ ହିଁ ମ୍ଳେଚ୍ଛନିଧନ ହେବ,···ଏଇ ଜନ୍ମରେ ହବ ଜନ୍ମାନ୍ତର······

ଅଗ୍ନି କମ୍ବା ଜଳକଣା ଦେହରେ ଲାଗିଲେ ତାହାକୁ ସମ୍ଭାଳ ହୁଏ ସତ କନ୍ତୁ ତାହାର ପ୍ରଭାବକୁ ଅସ୍ୱୀକାର କରହୁଏନା । ସେହପର ସ୍ପର୍ଶଦ୍ରବ୍ୟକୁ କେବଳ ସ୍ୱୀକାର କଲା ନନ୍ଦା । କନ୍ତୁ ସେ ନଜକୁ ବଚଳତ କଲା ନାହିଁ ସେଥିରେ । ଚତୁର୍ଦ୍ଦିଗରେ ସକାଳର ତେଜ ଝଲମଲ । ଶବକ୍ତ ଉଦ୍ୟାନ । ଦେହରେ ଉଚ୍ଛ୍ୱସିତ ଯୌବନ । ସେହ ଯୌବନ ଉପରେ ଯୁବକର ଆଶ୍ଳେଷ । ଏଥିରେ କଣ କୌଣସି ଯୁବତୀ ଚହ୍ନି ପାରେନା ନଜକୁ ! ନଜକୁ ଅଧିକଭାବରେ ଚହ୍ନିଲା ବୋଧହୁଏ ନନ୍ଦା । ସେଥିପାଇଁ ସେ ବସିପଡ଼ଲା ସେହ ପୋଖରୀ କୂଳର ଘାସ ଉପରେ । ପାଖରେ ତାହାର ବସିଲା ପ୍ରଫୁଲ୍ଲ । ପ୍ରଫୁଲ୍ଲ ବସିଲା ବ୍ୟବଧାନ ରଖି । ସେହ ବ୍ୟବଧାନର ସୀମା ଭିତରେ ଧୃଷ୍ଟତାର କ୍ଷମାଭିକ୍ଷା ଲେଖି ଯେପରି ଅପରାଧୀ ପୁରୁଷର ପ୍ରତନଧି ସାଜଲା ପ୍ରଫୁଲ୍ଲ ।

ପାଖକୁ ଘୁଞ୍ଚିଯାଇ, ଦେହରେ ଦେହ ବଜେଇ, ବାଁ ହାତ ଭିଡ଼ାଦେଇ ପ୍ରଫୁଲର ପାଖକୁ, ହସି ହସି କହଲା ନନ୍ଦା —

ଏଇ ଦେହର କଛି ପରବର୍ତ୍ତନ ହବ ନାହିଁ, ଆଉ ଅଦୃଶ୍ୟ ନାମାଙ୍କ ସେଥିରେ ମାତ୍ର ଜଣେ ପୁରୁଷ ମୋର ଖୁବ ନକଟରେ ବସିପାରେ, ଆଉ ସେ ମତେ କହବ ତାହାର ସ୍ତ୍ରୀ — ମୁଁ ଯେମିତ କଛି ନୁହେଁ । ······ତାର ଇଚ୍ଛା ହେବ ମୋର ଇଚ୍ଛା— ମୋର ଇଚ୍ଛା ତାର ଇଚ୍ଛା ହେବ ନାହିଁ କାହିଁକ ।···ଅଥଚ ଉଭୟଙ୍କ ଇଚ୍ଛାର ସମାନ ମୂଲ୍ୟ ରହବା ଉଚତ । କନ୍ତୁ ତାହାର ଏହ ଅନନ୍ତକାଳର ଅଯୌକ୍ତିକ ଦାବୀ ପାଇଁ ବର୍ତ୍ତମାନ ମୋର ଇଚ୍ଛା ତାହାର ଇଚ୍ଛା ହେବା ଉଚତ··· । କଣ କହୁଚନ୍ତ ଆପଣ ?

ଅପାରଗତାର ସ୍ୱରରେ କହଲା ପ୍ରଫୁଲ୍ଲ—

ମୁଁ ଏସବୁ ଭାବ ପାରୁନାହିଁ··· । ଏଇ ସକାଳର କଅଁଳ ଖରା ଭିତରେ ମଧ୍ୟ ତମେ ଏସବୁ ଭାବପାରୁଚ ନନ୍ଦା ?

ଆଉ କଣ ଫାୟାର୍‌ସାଇଡ୍‌ରେ ବସି ବଲାତର ଲୋକ ଭାବବେ ଭାରତର ସ୍ୱାଧୀନତା କଥା ।

କହସାରି ଉଚକତ ଭାବରେ ହସିଉଠିଲା ନନ୍ଦା । ହସରେ ଯୋଗ ଦେଲା ମଧ୍ୟ ପ୍ରଫୁଲ । ତାହା ପରେ ନଜର ମୁଠା ଭିତରେ ନନ୍ଦାର ହାତ ଆଙ୍ଗୁଠିଗୁଡ଼କୁ ଧର ଦେଖୁ ଦେଖୁ କହଲା ପ୍ରଫୁଲ—

ସୁନ୍ଦର !

କ'ଣ ମୋର ହାତ ନା ମୋର କଥା ?

ଉଭୟ ।

କନ୍ତୁ ମୋର ପ୍ରଶଂସାରେ ମୁଁ ଅନ୍ୟ ଝିଅଙ୍କପର ଲାଜରେ ଭାଙ୍ଗି ପଡ଼ୁଥିଲେ ଆପଣ ବୋଧହୁଏ ମତେ ବେଶୀ ନମ୍ବର ଦେଇଥାନ୍ତେ ?

ପ୍ରଫୁଲ୍ଲ ହସିଉଠି କହଲା—ଯେପରି ତା' ଭିତରେ ସଚେତନ ସ୍ୱାଧୀନ ଯୁବକର ସ୍ପର୍ଶ-ପ୍ରଲେପ ।

ତମର ଦେହ-ମନରେ ଯେ ଗୋଟାଏ ଘୋଡ଼ା ଛୁଟୁଚି ଜାଗ୍ରତର ଶିଙ୍ଗା ବଜେଇ, ଏହା କେବଳ ମତେ ବାରମ୍ବାର ଅନୁଭବ କରିବାକୁ ପଡ଼ୁଚି । ତମକୁ ମୁଁ ନମ୍ବର ଦେବ କଣ ? ତମକୁ ମୁଁ ଇଗ୍ନୋର ମଧ କରିପାରୁନେଇ, ତମକୁ ଯେମିତି ଗ୍ରହଣ କରି ହେଉ ନେଇଁ କି ତ୍ୟାଗ କରି ମଧ ହେଉନେଇଁ—ଯେମିତି ତମେ ମୂର୍ତ୍ତିମନ୍ତ ବିପ୍ଳବ ।

ଓଃ, ମୁଁ ଏତେ ବଡ଼ !

ଉଠି ଠିଆହୋଇ ପଡ଼ିଲା ନିଦ୍ରା । ପ୍ରଫୁଲ୍ଲ ମଧ ଠିଆହେଲା । ତାହା ପରେ ସେମାନେ ଫେରିବାକୁ ଲାଗିଲେ । ଫେରିବାବାଟରେ ଦୁଇ ତିନି ପହଣ୍ଡ ଚାଲି କହିଲା ପ୍ରଫୁଲ୍ଲ—

ତମର ବୟସ ବୋଧହୁଏ କମ୍ ନୁହେଁ ।

ଆଖି ଦୁଇଟିକୁ ମିଞ୍ଜି ମିଞ୍ଜି କରି କହିଲା ନିଦ୍ରା—

ଅନୁମାନ ?

ଅନୁମାନ ମତେ ଆସେନା ।

ଏହା ପରେ ଦୁଷ୍ଟାମି କରି କହିଲା ନିଦ୍ରା—

କିନ୍ତୁ କୋଷ୍ଠୀ ପଡ଼ି ବା'ଘର ହଉଥିଲେ ବୟସଟା ଆଉ ନୁଚେଇ ପାରି ନ ଥାନ୍ତି ।

ତା'ହେଲେ ତମେ ଅନେକ ବଡ଼ !

ନିଶ୍ଚୟ, ଘୋଡ଼ାରେ ବସିଲାବେଳେ ମୋର କେତେ ଉଚ୍ଚତା ହବ କହିଲେ ?

ହଠାତ୍ କଣ ଭାବି ନିଦ୍ରାର ଗ୍ରୁରୁକଧରା ହାତକୁ ଧରି ନିଜ ଦେହରେ ଆଣି ବାଡ଼େଇଦେଲା ଖୁବ୍ ଜୋର୍‌ରେ ପ୍ରଫୁଲ୍ଲ ।

ଅତି ବ୍ୟଥିତ ହେଲା ଏଥିରେ ନିଦ୍ରା । ବ୍ୟଥାଜର୍ଜ୍ଜରିତ ସ୍ୱରରେ ପ୍ରଫୁଲ୍ଲକୁ କୁଣ୍ଢାଇ ଧରି ସେ କହିଲା—

ଆପଣ ଏତେ କ୍ରୋଧୀ ? କେଉଁଠୁ ଶିଖିଲେ ଆପଣ ଏଇ ନିରହର ଅସଭ୍ୟତା ? ନିଦ୍ରାର ବାହୁପାଶ ଭିତରେ ଥାଇ ଲୁହ ଛଳ ଛଳ ଆଖିରେ କହିଲା ପ୍ରଫୁଲ୍ଲ—

ମୁଁ କାହିଁକି ଉଦାର, ମୁଁ କାହିଁକି ମହତ୍ ହେଲିନାହିଁ ନିଦ୍ରା ? ତଥାପି ମୁଁ ତମ ବିଷୟରେ ଅନ୍ଧବିଶ୍ୱାସ ରଖିଲି ? ଏଥିପାଇଁ ମୋର ତେର୍ ଶାସ୍ତି ପାଇବା ଉଚିତ ।

ତାହା ପରେ ପ୍ରଫୁଲ୍ଲର ହାତ ଧରି କହିଲା ନିଦ୍ରା—

ଆପଣ ବାସ୍ତବିକ୍ ମହତ୍—ଆପଣ ବାସ୍ତବିକ୍ ସୁନ୍ଦର, ଆପଣ ମୋର ସହଯାତ୍ରୀ ହେଲେ ଖୁବ୍ ଆନନ୍ଦ ଲାଗିବ ମତେ ପ୍ରଫୁଲ୍ଲବାବୁ ।

ନିଦ୍ରାକୁ ଚାହିଁ ରହିଲା ପ୍ରଫୁଲ୍ଲ । ଆଲୋକ ଭଳି ସୁନ୍ଦର ଦେଖାଗଲା ତାହାକୁ ନିଦ୍ରାର ମୁହଁ ।

## ॥ ସାତ ॥

ଗାଧୋଇ ଆସି ମୁରଲି ଦେଖିଲା, ପଲଙ୍କ ଉପରେ ଶୋଇଛି ପ୍ରଫୁଲ୍ଲ । ଦେହରେ ତାହାର ଅବଗାହନର ସଦ୍ୟତା, ମୁଖରେ ଭୋଜନର ତୃପ୍ତି, ଅଧରର ସିଗାରେଟ୍‌ର ଧୂଆଁରେ ଉଡ଼ୁଛି ପରିତୃପ୍ତିର ବୈଜୟନ୍ତୀ ।

ଗୁଣୁ ଗୁଣୁ ହୋଇ କୌଣସି ସ୍ତୋତ୍ର ଆବୃତ୍ତି କରି ଭାଗବତଘରକୁ ଯାଉଁ ଯାଉଁ ସେ ଫେରିଆସିଲା ହଠାତ୍ । ଆଲ୍‌ନାରୁ ଗେଞ୍ଜିଟା ନେଇ ଝଟ ଗଳେଇପକେଇଲା ଦେହରେ । ତାହା ପରେ ପାଲଟିବାକୁ ଲାଗିଲା ଲୁଗା । ଲୁଗା ପିନ୍ଧିସାରି ସେ ବେକ-ମୂଳରେ ହାତ ବୁଲେଇ ଆଣିଲା ଥରେ ।

ପଶ୍ଚିମ ପାଖର କାନ୍ଥ ପାଖକୁ ଯାଇ ଦର୍ପଣ-ଆଗରେ ଛିଡ଼ା ହୋଇ ମୁଣ୍ଡ କୁଣ୍ଡେଇ ଆସିଲା ପରେ ମୁରଲି ଦେଖିଲା, ଉଠି ବସିଛି ପ୍ରଫୁଲ୍ଲ—କପାଳରେ ତାହାର ବୋଳା ହୋଇଛି ଗୁଡ଼ାଏ ଚନ୍ଦନ ।

ବର୍ତ୍ତମାନ ମୁରଲି ଭାବିଲା, ସେ ଅନେକ ଭୁଲ କରି ପକେଇଛି । ତାହାର ସଂଶୋଧନ ପାଇଁ ସେ ଗମ୍ଭୀର ଗୁଞ୍ଜନ ସହ ପ୍ରାର୍ଥନା କଲା ଖଟ ଉପରେ ବସି—ଘରି ପାଖରେ ମଶାରିକ ଝୁଲେଇ ଦେଇ ।

ପ୍ରଫୁଲ୍ଲ ଉଠି ଚଳେ ଥୁଆହୋଇଥିବା ତାହାର ସୁଟ୍‌କେଶ୍‌ରୁ ହାତଘଣ୍ଟା ବାହାର କରି ଘରି ଦେବାକୁ ଗଲା । ଘରି ଦେଉଁ ଦେଉଁ ଆଖି ପଡ଼ିଲା ତାହାର ପୋଥି-ଗୁଡ଼ିକ ଉପରେ । ଘଣ୍ଟାକୁ ହାତରେ ବାନ୍ଧିଦେଇ, ଥାକ ଉପରୁ ଗୋଟିଏ ପୋଥି ଆଣି, ମୁହଁରେ ଆଉ ଗୋଟିଏ ନୂଆ ସିଗାରେଟ୍ ଧରି ବିଛଣା ଉପରେ ବସି ପୋଥି ପଢ଼ି-ବାକୁ ଲାଗିଲା । ହାତରେ ପଡ଼ିଲା ଗୀତଗୋବିନ୍ଦର ଖେଦା । ପଢ଼ୁ ପଢ଼ୁ ହଠାତ୍ ସ୍ୱର ସଂଯୋଗରେ ଗାଇଉଠିଲା ପ୍ରଫୁଲ୍ଲ—

> ପ୍ରଥମ ସମାଗମ ଲଜ୍ଜିତୟା
> ପଟୁଚାଟୁ ଶତୈରନୁକୂଲମ୍
> ମୃଦୁ ମଧୁରସ୍ମିତ ଭାଷିତୟା
> ଶିଥିଳୀକୃତ ଜଘନ ଦୁକୂଳମ୍...

ବାଃ, ଚମତ୍କାର !

ଚମକି ଉଠି ଆଖି ଟେକି ପ୍ରଫୁଲ୍ଲ ଦେଖିଲା ଘର ଭିତରେ ନନ୍ଦା । ତାହା ପରେ ସେ ଦେଖିଲା, ହସି ହସି ଚଳେ ଗୋଟିଏ ରୁପା ଥାଳିଆ ଥୋଇଛି ନନ୍ଦା—ତହିଁରେ ଚନ୍ଦନ ପଙ୍କ ।

ହଠାତ୍ ପ୍ରାର୍ଥନା ବନ୍ଦ ହେଲା ମୁରଲୀର । ରସକାବ୍ୟ ବନ୍ଦ ହେଲା ପ୍ରଫୁଲ୍ଲର ।

ନନ୍ଦ୍ରାର ମୁହଁରେ ହାସ୍ୟର ଅସ୍ତାଭା । ସେହି ଅସ୍ତରାଗ ଭିତରେ ସନ୍ଧ୍ୟା ତାରକାଭଳି ଫୁଟିଉଠିଲା ନନ୍ଦ୍ରାର ସମୁଜ୍ଜ୍ୱଳ ଭାଷା ।

ତା'ପରେ କଣ ଅଛି ପଢ଼ନ୍ତୁ···, ପଢ଼ିଥିଲେ ନା ପ୍ରଫୁଲବାବୁ ପିଲାଦିନେ 'ଫାଷ୍ଟ୍ ବୁକ ?' ମନେ ଅଛି···"ଏ ସ୍ଲାଯ୍ ଫକ୍ସ ମେଝ ଏ ହେନ୍ ?"

ଏହି ସମୟରେ ମଣାଖି ଉଠେଇ, ମୁରଲି ମୁହଁ ବାହାର କରି କହିଲା—
ଆମେ ଫକ୍ସ୍ ?

ନା, ଫକ୍ସ୍ଟେରିଅର୍ । ଫକ୍ସ୍ଟା ମରିଯାଇଚି ।···ଓ, ଆପଣ, ସୁବର୍ଣ୍ଣ ବଣିକ ।

ମୁହଁ ଫେରାଇ ମୁରଲିକୁ ଚାହିଁ ଦେଖିଲା ନନ୍ଦ୍ରା । ବିଦ୍ରୁମର ଓଠରେ ତାହାର ବିଦ୍ରୂପର ହସ, ଚକ୍ଷୁରେ ହିଂସ୍ରକବିନାଶୀ ହିଂସା ।

ଅପରାଧୀର ସ୍ୱର ଧରି କହିଲା ପ୍ରଫୁଲ୍ଲ—

ମୁଁ ଦେଖୁଥିଲି ପୈତୃକ ସମ୍ପତ୍ତି···

ପ୍ରଫୁଲ୍ଲ ବୋଧହୁଏ କହିବାକୁ ଚାହୁଁଥିଲା ଯେ, ପୋଥି ଭିତରର ସମ୍ପଦ ଖୋଜୁ ଖୋଜୁ ସେ ଏହି ପଦଟା ଗାଇଉଠିଥିଲା, ସେ ତାହାର ମାନସିକ ନୁହେଁ । କିନ୍ତୁ ସେ କଥାରେ କାନ ନ ଦେଇ ନନ୍ଦ୍ରା ହସି ହସି ଚନ୍ଦନଗୁଣ୍ଡାକ ନେଇ ବୋଳି-ଦେଲା ମୁରଲୀର କପାଳରେ । ବୋଳୁ ବୋଳୁ ସେ କହିଲା –

ଗୋଟାଏ ପଶୁ ଶବକୁ ଧରି ଫକ୍ସ୍ ଟେରିଅ ର ଗୁଡ଼ା ପାଗଳ ହେଇ ଖାଲି କାମୁଡ଼ା କାମୁଡ଼ି ହେଇ ମଲେ । ତାର ଦୁର୍ଗନ୍ଧରେ ସମସ୍ତେ ଅସୁସ୍ଥ—ତାକୁ ଦାହ କରିବାକୁ ଏମାନଙ୍କର ଶକ୍ତି ବି ନାହିଁ···ଆଉ ଏମାନଙ୍କର ଗର୍ବ ଯେ, ଆମେ ଶିକ୍ଷାର ଗଡ଼ ଜୟ କରିଛୁ ।

ଚନ୍ଦନ ବୋଳସାରି ସେହି ଚନ୍ଦନଲଗା ହାତକୁ ପରିଷ୍କାର କରିବା ପାଇଁ ନନ୍ଦ୍ରା ତାହାର ଡାହାଣ ଗୋଡ଼ର ଲୁଗା କଞ୍ଚିତ ଟେକି ସେଥିରେ ପୋଛିବାକୁ ଲାଗିଲା । ଏତେକଥା ପରେ ମଧ୍ୟ ଆଖିରେ ପ୍ରସ୍ତରଯୁଗର ଦୃଷ୍ଟି ଘେନି ସେଠାକୁ ଚାହିଁ ରହିଲା ମୁରଲି ବିଭ୍ରାନ୍ତ ହୋଇ । ହାତ ପୋଛିସାରି ନନ୍ଦ୍ରା ହସି ହସି କଟାକ୍ଷରେ ଅନାଗତ କ୍ଷଣ କ୍ଷରର ଜନ୍ମ ଦେଇ ପୁଣି କହିଲା—

ଏତିକ ଚନ୍ଦନରେ କଣ ସେ ଦୁର୍ଗନ୍ଧ ମରିବ – କେତେ ଶତାବ୍ଦୀର ଦୁର୍ଗନ୍ଧ···

କହି କହି ସେ ଚାଲିଗଲା ସେଠାରୁ ।

ତାହା ପରେ ଯୁବକ ଦୁହେଁ ଯେପରି ଆତ୍ମ-ଚିନ୍ତା କରିବାକୁ ଲାଗିଲେ । ପୋଥିଖଣ୍ଡିକ ଯଥାସ୍ଥାନରେ ରଖିଦେଇ ପ୍ରଫୁଲ୍ଲ ଶୋଇ କଣ ଚିନ୍ତାକଲା; ଆଉ ମୁରଲି ପୁନଃସ୍ଥ ଶେଯ ଉପରେ ପଦ୍ମାସନ ପକାଇ ଏପରି ଧ୍ୟାନସ୍ଥ ହେଲା ଯେ, ଯେପରି ସେ କୁଳକୁଣ୍ଡଳିନୀକୁ ଜାଗ୍ରତ କରୁଛି ତା' ଭିତରେ । କ୍ଷଣକ ପରେ ପୁଣି ପହଞ୍ଚିଲା ନନ୍ଦ୍ରା, ହାତରେ ତାହାର ଜଳଖିଆର ଥାଳି ।

ଏହି ସମୟରେ ଚାକର ଆଣି ଖଣ୍ଡିଏ ଛୋଟ ଟେବୁଲ ପକାଇଦେଲା ଖଟକୁ ଲଗାଇ । ତାହା ଉପରେ ହାତର ଥାଳଟିକୁ ରଖିଦେଇ ନିଦ୍ରା ହସି ହସି କହିଲା—

ଆପଣ ଯୋଗ କରୁ ନାହାନ୍ତି ପ୍ରଫୁଲ୍ଲ ବାବୁ ! ଗୋଟାଏ ନୂଆ ଆଦର୍ଶ ଆପଣ ନିଶ୍ଚୟ ପାଆନ୍ତେ—ମୁରଲିବାବୁଙ୍କ ପରି ଯୋଗରୁ ଅସହଯୋଗ ଆବିଷ୍କାର କରନ୍ତେ ନେଇଁ ଏକା !

ବ୍ରହ୍ମଚର୍ଯ୍ୟାଶ୍ରମର ଛାତ୍ର ମାନସିକ କୌତୂହଳରେ ଯେପରି ଅଶ୍ଳୀଳ ଶିଳ୍ପ ଆଙ୍କୁଥିଲା ଖଡ଼ିରେ, ଆଉ ଆଚାର୍ଯ୍ୟ ଆସି ପହଞ୍ଚିବାରୁ ତାହାକୁ ସହସା ଲିଭାଇ ପକାଇଛି, ଏହିପରି ଭାବ ପ୍ରକାଶ ପାଇଲା ମୁରଲିର ଭଙ୍ଗୀରେ । ସେ ଆଖି ଖୋଲି ଦେଖିଲା, ତାହାର ଭିତରର କୁଣ୍ଡଳିନୀ ହସୁଛି ବାହାରର ଆଲୋକରେ ।

ଆପଣ ଚଞ୍ଚଳ ଖାଇଦିଅନ୍ତୁ ମୁରଲି ବାବୁ ! ଘଣ୍ଟାକ ଭିତରେ ପୁଣି ଭାତ ଖାଇବାକୁ ହବ—ଗଉଡ଼ ଆସି ପହଞ୍ଚିବେ ଆଉ ଟିକକୁ···

ଅର୍ଥ ଭିକ୍ଷାର ଦୃଷ୍ଟିରେ ଚାହିଁଲା ପ୍ରଫୁଲ୍ଲ ।

ଆରେ, ସକାଳରେ ଷ୍ଟେସନକୁ ଯିବେ ଆପଣମାନେ ! ସାଇକେଲ୍‌ରେ ଆସି ଯୋଉ କଷ୍ଟ ପାଇଚନ୍ତି···ସନିଆଦା' କହୁଥିଲେ······

କିଛି ସମୟ ଚୁପ୍ ରହି ପୁଣି କହିଲା ସେ—

ଘୋଡ଼ାଟିଏ ଜାଣିଥାନ୍ତେ କି, ମହାପାତ୍ର ଘର ଘୋଡ଼ାଟା ମାଗି ଆଣିଥିଲେ ହଜଣସାକ ଚାଲିଯାଆନ୍ତେ······ମଣିଷ ଆଉ ମଣିଷକୁ ବୁହନ୍ତା ନେଇଁ··· ।

ନିଜର 'ଜ୍ଞାନ ଉପରେ ଯଥେଷ୍ଟ ଆସ୍ଥା ରଖି ମୁରଲି ପ୍ରତିବାଦସ୍ୱରୂପ କହିଲା—

ଘୋଡ଼ା ବି ପୁଣି ଜୀବ ।

ଅସନ୍ତୁଷ୍ଟ ହୋଇ, "ଏଇଟା କଲେଜର କମନ୍‌ରୁମ୍ ନୁହେଁ ମୁରଲି"— କହିଲା ପ୍ରଫୁଲ ।

ନିଦ୍ରା ହସି ହସି କହିଲା—

ଖା'ନ୍ତୁ, ଖାନ୍ତୁ'; ମୁଁ ବସୁଛି ଯେ, ଆପଣ ଆଉ ଠକିପାରିବେ ନେଇଁ ଖାଇବାରେ ! ପ୍ରଫୁଲ୍ଲବାବୁ, ମୁରଲିବାବୁଙ୍କ ଖାଇବା ଭିତରେ ଆମର ଥୁକୁଲ୍ ।

ଖାଇବାକୁ ବସି ଠାକୁରଙ୍କୁ ନୈବେଦ୍ୟ ଦେବା ପାଇଁ ମୁରଲି କୌଣସି ସାହସ ପାଇଲା ନାହିଁ । କେବଳ ବକ୍ରଦୃଷ୍ଟିରେ ଚାହିଁଲା ସେ କେତେଥର ନିଦ୍ରାକୁ । ପ୍ରଫୁଲ୍ଲକୁ ମଧ୍ୟ ତାହାର ଭୟ ହେଉଥାଏ ଯେପରି । ସେ ପ୍ରଥମଥର ଖାଇବା ଉପରେ, ଏତିକବେଳେ ପଣତକାନିରୁ କେତୋଟି ତୁଳସୀପତ୍ର ବାହାର କରି ଟେବୁଲ୍ ଉପରେ ଥୋଇ ଖୁବ୍ ନମ୍ର ହୋଇ କହିଲା ନିଦ୍ରା—

କ୍ଷମା କରିବେ, ମୋର ମନେ ନ ଥିଲା । ତେବେ ତୁଳସୀପତ୍ରତକ ଖାଇ-ଦିଅନ୍ତୁ, ବଡ଼ ଉପକାରୀ······

ଏତକବେଳେ ହସି ଉଠୁଥିଲା ପ୍ରଫୁଲ୍ଲ, ତା' ଉପରେ କଟାକ୍ଷ ରଖି ଓଠରେ ବଷି ଆଙ୍ଗୁଠି ବଳେଇ ନନ୍ଦ୍ରା କହିଲା—

ଥୁକୁଲ୍ !

ଖାଇସାରି ମୁହଁ ଧୋଇସାରିବା ପରେ ମୁରଲୀକ ଖଣ୍ଡେ ସିଗାରେଟ୍ ବଢ଼େଇଦେଲା ପ୍ରଫୁଲ୍ଲ । ନନ୍ଦ୍ରା ଏପର୍ଯ୍ୟନ୍ତ ଠିଆ ଠିଆ ବୁଲୁଥାଏ । ମୁରଲୀର ଭବୀ-ପତ୍ନୀକୁ ତାହାର ଖଟ ଉପରେ ବସିବା ପାଇଁ ପ୍ରଫୁଲ୍ଲ ଡାକପାରୁ ନ ଥାଏ । ମୁରଲୀ ମଧ୍ୟ ସେଥିପ୍ରତି ନିଷ୍କ୍ରିୟ ।

କିଛିକ୍ଷଣ ପରେ ଗୃହର ପାନ ଘେନି ପହଞ୍ଚିଲା । ତା'ହାତ ଚୌକି ମଗାଇ ନନ୍ଦ୍ରା ବସିପଡ଼ିଲା । ଗୋଟିଏ ଦୀର୍ଘଶ୍ୱାସ ଛାଡ଼ିଲା ପ୍ରଫୁଲ୍ଲ । ଅଶ୍ୱସ୍ତି କଟାଇବାକୁ ସେ କଥା କହିଲା ଯେପରି—

ମତେ ଖଣ୍ଡେ ପାନ ଦିଅ ନନ୍ଦ୍ରା—ଖଣ୍ଡେ ସାଦା ପାନ ।

ନନ୍ଦ୍ରା ପରିବର୍ତ୍ତରେ ମୁରଲୀ ଉଠିଯାଇ ଖଣ୍ଡିଏ ପାନ ଦେଇଆସିଲା ପ୍ରଫୁଲ୍ଲକୁ । ପ୍ରଫୁଲ ଭାବିଲା, ଏହା ମୁରଲୀର ଶିଷ୍ଟାଚାର ନୁହେଁ—ବୋଧହୁଏ ନାରୀରକ୍ଷା, ତାହାର ସ୍ତ୍ରୀ ମତେ ଛୁଇଁ ପାନ ଦେବା ଉଚିତ ନୁହେଁ ବୋଲି ସେ ଭାବୁଚି······

ଏହାପରେ ମୁରଲୀର କଥାରେ ସମସ୍ତଙ୍କର ମନୋଯୋଗ ଆକର୍ଷିତ ହେଲା ଭିନ୍ନ ଦିଗକୁ । ମୁରଲୀ କହିବାକୁ ଲାଗିଲା—

ପାଟ୍‌ନାରେ ଏମ୍. ଏ. ପଢ଼ୁଥିଲାବେଳେ ଜଣେ ଭଦ୍ରଲୋକଙ୍କର ଆଇ. ଏ. କ୍ଲାସ୍‌ର ପୁଅକୁ ମୁଁ ଟିଉସନ୍ କରୁଥିଲି । ପିଲାଟାକୁ ପଢ଼େଇ ପଢ଼େଇ ମୁଁ ଥକିଲି—କାହିଁକି ହେଲେ ପାଠ ହବ । ତାହାପରେ ବାପା ତାର ଜଣେ ଆଙ୍ଗ୍ଲୋଇଣ୍ଡିୟାନ୍ ମିଷ୍ଟ୍ରେସ୍ ରଖିଦେଲେ । ପିଲାଟା ଚମତ୍କାର ପଢ଼ିଲା ।

ଏହାର ତାତ୍ପର୍ଯ୍ୟ କେହି ବୁଝି ନ ପାରିଲେ ବି କଥାଟା ସମସ୍ତେ ଶୁଣିଲେ । ତାହାପରେ ପୁଣି ମୁରଲୀ କହିଲା—

ଏଇ ଭଗବତ ଘରଟାକୁ ଏଠୁ ଉଠେଇଦିଅ ନନ୍ଦ୍ରା ! ସେଠି ଗୋଟାଏ ଲାଇବ୍ରେରୀ ଖୋଲ । ଆଉ କ କ ଭଲ ବହି ରଖିବାକୁ ହବ ମୁଁ ତାର ଗୋଟାଏ ତାଲିକା ଦେବି ।

ଚଉକିରୁ ଉଠିପଡ଼ି ନନ୍ଦ୍ରା ହସି ହସି କହିଲା—

ଏଠି ସେଇ ଆଇ. ଏ. କ୍ଲାସର ଛୁଆ କଏ ହେଲା କହିଲେ ପ୍ରଫୁଲ୍ଲବାବୁ ?

କିନ୍ତୁ ପ୍ରଫୁଲ୍ଲର ଉତ୍ତରକୁ ଆଶା ନ ରଖି କହିବସିଲା ନନ୍ଦ୍ରା—

ସେଇଟା ତ ହବ ପ୍ରଫୁଲ୍ଲବାବୁଙ୍କ ପଡାଘର । ବା'ଘରର ଖର୍ଚ୍ଚ ପାଇଁ ଟଙ୍କା ଅଘଟ ହଉଛି । ବାପା ତାଙ୍କୁ ଦିଟା ହୀରମୁଦି ଦଉଚନ୍ତି ବନ୍ଦି କରିଦବା ପାଇଁ । ଟଙ୍କା ଧରି ସେ ଆର ସପ୍ତାହକୁ ଆସିଲେ ସେ ଘରଟା ପରିଷ୍କାର ହବ—ସେ ସେଠି ପଢ଼ିବେ । ···ହଁ ଆପଣ ବି ତାଲିକା ଦେବେ ତାଙ୍କ ହାତରେ ।

ଏହା ପରେ ମୁରଲୀ ଭାବିଲା, ବୋଧହୁଏ ଘୋଡ଼ାଚଢ଼ି ବି ଶିଖିବ ସିଏ······

ଏହାପରେ ନିଦ୍ରା ଚାଲିଗଲା ସେଠାରୁ ।

ପ୍ରଫୁଲ୍ଲ ଭାବିବାକୁ ଲାଗିଲା, କିଛି ତ ହୋଇ ନାହିଁ କଥା, ମୁରଲି ପଚାରିଲେ ମୁଁ କଣ କହିବି ତାଙ୍କୁ !

ଶକ୍ତିଶେଳ ପ୍ରୟୋଗ କରି ଚାଲିଗଲା ଯେପରି ମହିଷମର୍ଦ୍ଦିନୀ ।

ମୁରଲି ଓ ପ୍ରଫୁଲ୍ଲ ଉଭୟେ ହୋଇଉଠିଲେ ଅନ୍ତର ଭିତରେ ଜିଜ୍ଞାସୁ ; ମାତ୍ର ଶେଲକୁ କେହି ଉପାଡ଼ି ପାରିଲେ ନାହିଁ ହୃଦୟରୁ ।

ଏହିପରି କିଛି ସମୟ ଚିନ୍ତା-ସମୁଦ୍ରରେ ବୁଡ଼ିରହିବା ପରେ ସେହି ଚିନ୍ତା ଜାଲଗୁଡ଼ିକ ଆକଣ୍ଠ ହୋଇ ସବାଦୌ ଅସହିଷ୍ଣୁ କଲା ମୁରଲିଙ୍କ । ସେ କହିଉଠିଲା ହଠାତ୍—

ତୁ ଫେରେ ଆସିବୁ ଏଠିକି କାହିଁକି ?

ଧୀରେ ଧୀରେ ଅନ୍ୟମନସ୍କଭାବରେ କହିଲା ପ୍ରଫୁଲ୍ଲ, ଯେପରି ସେ ଯଥେଷ୍ଟ ସଚେତନ ନୁହେଁ ଉତ୍ତର ଦେବାକୁ—

ଶୁଣିଲୁ ତ···

ମତେ ହସ ମାଡ଼ୁଚି, ତୁ ପୁଣି ଆସି ପଢ଼ିବୁ ଏଇ ମଫସଲରେ —କଣ ପଢ଼ିବୁ ?

ଯେପରି ସଂଗ୍ରାମର ଡାକ ଶୁଣିଲା ପ୍ରଫୁଲ୍ଲ । ସେ ଉଠିପଡ଼ି ଆଲନାର ଜାମା ପକେଟରୁ ସିଗାରେଟ ଗୋଟାଏ ନେଇ ପାଟିରେ ଦେଇ ହଆସିଲି ଜାଲୁ ଜାଲୁ ଅସ୍ୱାଭାବିକ ସ୍ୱରରେ କହିଲା—

ତେର୍ ପଢ଼ିବାକୁ ଅଛି ।

ତାହା ପରେ ସିଗାରେଟଟା ଆଙ୍ଗୁଠିରେ ଧରି, ପାଟିରୁ ଧୂଆଁ ଉଡ଼େଇ କହିଲା ସ୍ୱାଭାବିକଭାବରେ—

ବଳିଆର ସିଂହଙ୍କଠାରୁ ତ ଦୂରର କଥା, ଏଇ ଝିଅଟାଠାରୁ ବି ତେର୍ ପଢ଼ିବାକୁ ଅଛି ।

ତା'ହେଲେ ତ କଟକରେ ତୋ ଇଚ୍ଛା ପୂରଣ ହୋଇପାରିବ

ପ୍ରଫୁଲ୍ଲ ବୁଝିଲା ନିଜର ବିବାହ ଉପରେ ନିର୍ଭର କରି ମୁରଲି କହୁଚି ଏକଥା । ତାହାପରେ ସେ ଧୀରେ ଧୀରେ କହିଲା—

ହଁ, ହଁ—ଠିକ୍, କିନ୍ତୁ ସେ ତ ଆଉ ବଳିଆର ସିଂହଙ୍କ ଝିଅ ସେତେବେଳେ ନଥିବ !

ଆଉ ?

ମୁରଲିର ସ୍ୱରରେ ଆଶ୍ଚର୍ଯ୍ୟତାର ଝଂକୃତ । ଏତିକିବେଳେ ବଳିଆର ସିଂହ ସେହି ଘରେ କହି କହି ପହଞ୍ଚିଲେ—

ଭୁଲ୍ କରୁଚ ବାବା, ଭୁଲ ; ଯୋଉଠି ରହିଲେ ବି ନିଦ୍ରା ଏଇ ବଳିଆର ସିଂର ଝିଅ ।

ପ୍ରଫୁଲ୍ଲ ଉତ୍ତେଜନା ସହ କହିଲା—

ନା ।

ହସର ଉତ୍ସବ ରଚନା କର ବଳଆର ସିଂହ କହିଲେ—

ଆଉ କଣ ନନ୍ଦା କାହାର ଝିଅ ନୁହେଁ ?

ଯେମିତ ନନ୍ଦାର ମା, ଆପଣଙ୍କର ସହଧର୍ମିଣୀ ଛଡ଼ା ତାଙ୍କର ଆଉ ପରିଚୟ କଣ ଏଠି ?

ପ୍ରଫୁଲ୍ଲ ଭାଷାରେ ପୂର୍ବର ସେହି ଉତ୍ତେଜନାର ପ୍ରଭାବ ।

ଆରେ, ସିଏ ଯେ ଅଳପୁଆ ଦଳଗଞ୍ଜନଙ୍କ ଝିଅ, ତମେ ଏତକ ବି ଖବର ରଖିବ ନେଇଁ !

ପ୍ରଫୁଲ୍ଲ ତଥାପି କହିଲା—

ନା ।

ତା' ହେଲେ ତମେ କହିବାକୁ ଚାହିଁ ଯେ, ଏଇ ଦେଶଟାର ଯେତେ ଇତିହାସ ତମେ ପଢ଼ିଲେ ମଧ୍ୟ, ତାହାର ସ୍ୱତନ୍ତ୍ର ଶକ୍ତି ତମେ ଦେଖିଥିଲେ ମଧ୍ୟ— ଦେଶଟା ପ୍ରକୃତ ହେଉଛି ଅନ୍ୟର ।

ଏହିଠାରେ ମୁରଲି କହିଲା—

ହଁ ।

ହଁ ? ତମେ ହଁ କହୁଚ ନାଗେଶ ? ଝିଅକୁ ମୋର ତମେ ସ୍ୱାତନ୍ତ୍ର୍ୟ ଦବ-ନେଇଁ, ଅଥଚ ଝିଅ ମୋର ତମ ଚାହିଁ ସମସ୍ତ ଗୁଣରେ ଶ୍ରେଷ୍ଠ ।······ତମେ ଏତେ ଦରିଦ୍ର ?

ତାହା ପରେ ଅସ୍ପଷ୍ଟଭାବରେ ସେ କହିଲେ—

ଓ···ତମର ସୁନା ଚାହିଁବା ହିଁ ଏଇ ଦରିଦ୍ରତାର ପରିଚୟ ।

ତାହାକୁ ପୁଣି ଆପଣ ଦେବେ ନନ୍ଦାକୁ ? ସିଏ ଆମଭଳି ଶତ ଶତ ଯୁବକଙ୍କୁ ଚାବୁକ୍ ପିଟି ଦଣ୍ଡକରେ ସଚେତନ କରିଦେଇପାରେ, ତାକୁ ପୁଣି ଆପଣ କରିଦେବାକୁ ଚାହୁଁଚନ୍ତି ବନ୍ଦିନୀ ?

ଏହି ବିଦ୍ରୋହର କଥା ଶୁଣି ପ୍ରଫୁଲ୍ଲଠାରୁ ଚମକିପଡ଼ିଲା ମୁରଲି । ଏହା ପରେ ଖୁବ୍ କୋମଳ ହୋଇ ମୃଦୁକଥା କହିଲେ ବଳଆର ସିଂହ······

ମୁଁ ତ ସେଇଆ କହିବାକୁ ଆଇଥେଲି । ଏହା ପରେ ନନ୍ଦାର ମା ଆଉ ସନାତନ ମୁରଲିବାବୁଙ୍କର ଘର ଦେଖିବାକୁ ଯିବେ—ଯାହାକୁ କହନ୍ତି ବରଘର ଦେଖା ।

ତଥାପି ପ୍ରଫୁଲ୍ଲ ଭିତରେ ବିଦ୍ରୋହୀ ସଚେତନ । ସେହି ସଚେତନତା ପାଖରେ ଏହି ମୁରଲି ନାମକ ଜୀବର ବନ୍ଧୁତା ଅତି ଅକିଞ୍ଚନ ହୋଇ ଛୁଡ଼ା ହେଲା । ସେ ଝଙ୍କାର ଦେଇ କହିଲା—

ଖଣ୍ଡେ ଭଡ଼ାଘରେ କଟକ ସହରରେ ଥାନ୍ତି ସେମାନେ—ଏ ପୃଥିବୀରେ ତାର ନିଜର ବୋଲି ଘର ନାହିଁ—ଯା'ନ୍ତୁ ଦେଖି ଆସିବେ······

ଏହା ମଧ୍ୟରେ ବଳଆର ସିଂହ ଚୌକି ଉପରେ ବସି ସାରିଥିଲେ ।

ପ୍ରଫୁଲ୍ଲର ଏକଥା ଯେପରି ବିପଯ୍ୟସ୍ତ କାମ କଲା ତାଙ୍କ ପାଖରେ । ସେ ବିଭୋର ହୋଇ ଚୌକିରୁ ଉଠିପଡ଼ି ମୁରଲିକି ଧରିପକେଇ କହିଲେ—

ତା'ହେଲେ ତମେ ସର୍ବହରା ବାବା ! ମୁଁ ଏଇକ୍ଷଣି ସର୍ବହରାର ପାହାଚରେ ନା, ମୁଁ ଖୁବ୍ ବୁଝିପାରୁଚି ତମକୁ ନାଗେଶ ! କି ଦୁଃଖ, ଗୋଟାଏ ପ୍ରକାଣ୍ଡ ଜଗତରେ ଗୋଟା ଗୋଟା ଲୋକଙ୍କର କିଛି ବୋଲି ନାହିଁ ! କି ଦୁଃଖ !

ପୁନଶ୍ଚ ବିଦ୍ରୋହ ଘୋଷଣା କଲା ପ୍ରଫୁଲ୍ଲ—

ସର୍ବହରା ହବା ଗୋଟିଏ ପ୍ରଶଂସାର କଥା ନୁହେଁ । ହୁଏତ ଏଇ ଶିକ୍ଷିତ ବୈଷ୍ଣବ ସର୍ବହରାଟି ପ୍ରେମତତ୍ତ୍ୱ ପାଇସାରିଲା ପରେ ଯଦି ସନ୍ନ୍ୟାସ ନିଏ କିମ୍ବା ଭଗବାନ ତାକୁ ଭଲପାଇ ନେଇଯାଆନ୍ତି ଏଠୁ, ତା' ହେଲେ ସାରା ପରିବାରକୁ ହେବାକୁ ହେବ ନିରାଶ୍ରୟ—ନିରକ୍ଷ । ଯେମିତି ସତୀଦାହ ସମୟରେ ସ୍ୱାମୀ ମରିଗଲେ ସ୍ତ୍ରୀମାନେ ପୋଡ଼ା ଯାଉଥିଲେ ତାଙ୍କ ସଙ୍ଗରେ, ଏ ତା'ଠାରୁ କେଉଁ ଅଂଶରେ ଭଲ ? ଖଞ୍ଜର ଭଙ୍ଗା ଗୋଡ଼ ଲାଗି ଆମେ ଶୁଶ୍ରୂଷା କରିପାରୁ, ବ୍ୟବସ୍ଥା କରିପାରୁ, ହୁଏତ ସେଇ ଖଞ୍ଜତା ଯଦି କୌଣସି ସାମାଜିକ ବୃତ୍ତିରୁ ହୋଇଥାଏ, ତାହାକୁ ଆମେ ନିରାକରଣ କରିପାରୁ । ଏଥିପାଇଁ ଆମେ କଣ ନିଜର ଗୋଡ଼ କାଟିଦେବା ତା' ଲାଗି ?

ମୁରଲିକି ଛାଡ଼ିଦେଇ ବଳିଆର ସିଂହ ଛାଡ଼ା ହୋଇପଡ଼ିଲେ ନିଶ୍ଚେଷ୍ଟ ହୋଇ । ଛାଡ଼ାହୋଇ ଗମ୍ଭୀରଭାବରେ ପଚାରିଲେ ସେ ପ୍ରଫୁଲ୍ଲକୁ—

ତମେ ଏଠିକି କେମିତି ଆସିଲ—ଏସବୁ ସାହସ ଦେଇଚି ତମକୁ କିଏ ?

ନିର୍ଭୀକ ଭାବରେ କହିଉଠିଲା ପ୍ରଫୁଲ୍ଲ—

ନିଦ୍ରା । ନିଦ୍ରା ମତେ ଲେଖିଥିଲେ ଏଠିକି ଆସିବାକୁ ସନାତନ ହାତରେ···

କହିବାକୁ ଯାଇଁ ବଳିଆର ସିଂହ ବସିପଡ଼ିଲେ—

ସେଥିଲାଗି ତମେ ମୋର କଥାରେ ମତେ ଶାସନ କଲ ।··· ତମକୁ ତାହାହେଲେ ନିଦ୍ରା କହିଚି ଏଠି ସିଏ ବନ୍ଦୀ ହବ ନାହିଁ ବୋଲି ?

ହଁ ।

ତା' ହେଲେ ?

ବର୍ତ୍ତମାନ ମୁରଲି ଏଇ ପରମାର୍ଥ ସଂଗ୍ରହ କରୁ ।

ଏତିକି କହି, ମୁରଲିକି ଆଦେଶ କରି କହିଲା ପ୍ରଫୁଲ୍ଲ—

ମୁରଲି, ଏଇ ପରମାର୍ଥର ପୋଥିଭିତରୁ ଯାହା ପ୍ରକୃତ ପରମାର୍ଥ, ଅନ୍ତତଃ ଆମ ପାଇଁ, ତାହା ପାଇପାରିବୁ ନେଇଁ—ତୋର ସେ ଆଖି ନଷ୍ଟ ହେଇଚି,—ଯେପରି ଆମ ଆଖି ବି ନଷ୍ଟ ହେଇଚି ତୋର ତୁଳସୀ କଣ୍ଠି ଭିତରେ ଈଶ୍ୱରଙ୍କୁ ଦେଖିବାକୁ । ତୁ ସେଇ ପୋଥିଗୁଡ଼ାକ ନେଇଯା ମ୍ୟୁଜିୟମ୍‌ରେ ଦେଇଦବୁ । ଅନେକ ଶିଳ୍ପ ଅଛି ସେଥିରେ ।

ଯେଉଁ ମେଘମାଳା ଭାସି ବୁଲୁଥିଲା ମୁରଲିର ମାନସପଟରେ, ତାହା ବର୍ତ୍ତମାନ ନିରକଣାରେ ପରିଣତ ହୋଇ ମୁରଲିର ଆଖି କଣରେ କଲା ବିକାଶ ଭିକ୍ଷା । ଯେଉଁ ଜଳକଣାର ଆର୍ଦ୍ରତାରେ ଅଭିନବର ଅଙ୍କୁରୋଦ୍‌ଗମ ହେଲା ମୁରଲିର ଅନ୍ତରରେ ।

ଭାବାବେଗରେ ଦେହର ଗେଞ୍ଜି ଖଣ୍ଡିକ ଉତାରି ପକେଇ ପ୍ରଫୁଲ୍ଲର ପାଖକୁ ଲାଗିଆସି ସେ କହିଲ—

ମୁଁ ମୁକ୍ତ—ମୁଁ ମୁକ୍ତ ପ୍ରଫୁଲ୍ଲ ! ମୁଁ ତୋର ବନ୍ଧୁ, ଆମେ ଉଭୟେ ଉଭୟର ବନ୍ଧୁ—ସେହି ବନ୍ଧୁତାର ଗୋଡ଼ରେ ବାଧା ଲାଗିବା ପାଇଁ ମୋଠାରେ କୌଣସି ବନ୍ଧୁରତା ଆଉ ନାହିଁ । ମୁଁ ଏତେ ନିଃସ୍ୱ ବୋଲି ନିଜକୁ ଜାଣିପାରି ନ ଥିଲି । ମୁଁ ମନେ କରିଥିଲି ଉଗ୍ରିର ଅଳଙ୍କାରଟା ମୋର ଅନେକ ।···ମୁଁ ଆଜ ବୁଝୁଛି, ତାହା କେବଳ ମୋର ମାନସିକ ଅଳଙ୍କାର ।···ମୁଁ ଆଉ ସୁନା ଗୁହେଁନା—ମୋର ଦାରିଦ୍ର୍ୟତା ପାଇଁ ଆଉ ସୁନା ଦରକାର ନାହିଁ । ସେଇ ସୁନାକୁ ହୁଏତ ମୁଁ ହରେଇ ବସିବି—ହୁଏତ କେହି ଲୁଟି ନେଇଯିବ ଏଇ ନିଃସ୍ୱଠାରୁ ।···ମତେ ନିଦ୍ରାକୁ ଦିଅ···ମତେ ଶକ୍ତି ଦିଅ ପ୍ରଫୁଲ୍ଲ······

ଏହି ସମୟରେ ସନାତନ ଆସୁଥିଲା ଗଉଡ଼ ଆସିଗଲେଣି ବୋଲି ତାହାର ସମ୍ବାଦ ବଳିଆର ସିଂହଙ୍କୁ ଦେବା ପାଇଁ । ଏହି ଅଭିନବ ଦୃଶ୍ୟ ଦେଖି ମୁରଲିର ବ୍ୟାକୁଳତାରେ ସେ ବଗଲତ ହୋଇ କହିଲା—ହଁ, ନିଦୁକୁ ଆମର ମୁରଲିବାବୁଙ୍କ ସଙ୍ଗରେ ବା' କରିଦିଅ । ମୁଁ ଅନେକ ଚେଷ୍ଟା କରିଛି,—ମୁରଲିବାବୁ ଦୋପଟି ଗୃକିରି ପାଇବେ । ନିଦୁ ଆମର ସୁଖରେ ରହିବ ସେଠି ।

କେହି ଆଉ କିଛି କହିପାରଲେ ନାହିଁ । ସମସ୍ତଙ୍କର ଭାବନାରେ ସମସ୍ୟାର ଆଲୋଡ଼ନ !

କିଛି ସମୟ ପରେ ବଳିଆର ସିଂହଙ୍କ ଆଖିରେ ଗ୍ରୁପ୍ୟାଚନ ଭାସିଉଠିଲା । ସେ ଦେଖିଲେ, ଏହି ସର୍ବହରା ମୁରଲିର ହାତରେ ହାକିମର ଗୃବୁକ୍, ତଳେ ତାର ନିଷ୍ପେଷିତ ଶତ ଶତ ନିଃସ୍ୱ । ସେ ଚମକି ପଡ଼ିଲା ପରି କହିଉଠିଲେ—

ତମେ କିଏ ସେହି ନିଃସ୍ୱ ?

ଏହାର ଅର୍ଥ କେହି ବୁଝିପାରଲେ ନାହିଁ ।

## ॥ ଅଠ ॥

ଏହିପରି ଆନ୍ଦୋଳନ ଭିତରେ ସେହି ଯୁବକ ଦୁଇଟି ବିଦାୟ ନେଇ ଗଲେ ବଳଆର ସିଂହଙ୍କ ଘରୁ । କନ୍ୟା ଦେଖିବାକୁ ଆସି ଭାସିଗଲେ ସେମାନେ ବନ୍ୟାରେ । ସେଥିରୁ କିଏ ପାଇଲା ବିପ୍ଳବ, କିଏ ତ୍ୟାଗ । କିନ୍ତୁ କିଛି ପାଇଲେ ନାହିଁ ବଳଆର ସିଂହ ଆଉ ନିଦ୍ରା । ହୁଏତ ବଳଆର ସିଂହ ଅଧିକ ଶୋଚନା ଭିତରକୁ ଚାଲିଗଲେ; କିନ୍ତୁ ଶୋଚନା-ଅସ୍ପର୍ଶ୍ୟା ନିଦ୍ରା; ତାହାକୁ ଏପର୍ଯ୍ୟନ୍ତ ସ୍ପର୍ଶ କରି ନାହିଁ ବିବାହର ଗୁରୁତ୍ୱ । ମାତ୍ର ସବୁଠାରୁ ଅଧିକ ବ୍ୟଥିତ ହେଲେ ବଳଆର ସିଂହଙ୍କ ସ୍ତ୍ରୀ । ଏହି ସଂସ୍କୃତି, ଆଭିଜାତ୍ୟ ଏବଂ କର୍ତ୍ତବ୍ୟ ତଥା ଦାୟିତ୍ୱର ଦୋଳାରେ ଦୋଳାୟମାନ ସ୍ୱାମୀଙ୍କର ନିଷ୍କ୍ରିୟତାରେ ସନ୍ଦିଗ୍ଧ ହୋଇ କେବଳ ସେ ହିଁ ଶୁଭ ଦେଇଥିଲେ ଏହି ଉଦ୍ୟୋଗ ପର୍ବର, ପୂର୍ବରୁ । ଅନେକ ଉଦ୍ୟୋଗ ଭଳି ଏହା ମଧ୍ୟ ଯେପରି ପଣ୍ଡ ହେଲା ଶେଷକୁ । ସେଥିପାଇଁ ସେ କେବଳ ଭାଗ୍ୟ ଆଦରି ରହିଲେ ଏହା ପରେ ।

କିଛିଦିନ ଗତ ହୋଇଯିବା ପରେ ଦିନେ ଖରାବେଳେ ବଳଆର ସିଂହ ଶୋଇ ଭାବୁଛନ୍ତି ତାଙ୍କ ଶୟନକକ୍ଷରେ । ଅଳ୍ପଦୂରରେ ଭୂମି ଉପରେ ଖଣ୍ଡେ ଆସନ ପକାଇ ସ୍ତ୍ରୀ ତାଙ୍କର ପଢ଼ୁଛନ୍ତି ରାମାୟଣ । ଅଶ୍ରୁମୟ ତାଙ୍କର ଆଖି । କଣ୍ଠରେ ବାଷ୍ପର ମାଡ଼ ।

ବଳଆର ସିଂହ ଭାବୁଥାନ୍ତି, କଣ ହେବ ନିଦ୍ରାର ଅବସ୍ଥା । କଣ କହିବେ ସମସ୍ତେ ମତେ, ଝିଅଟାକୁ ବାଧା କରିପାରିଲା ନାହିଁ ବଳଆର ସିଂହ—ଅଥଚ ଲୋକଙ୍କୁ ଶିକ୍ଷା ଦଉଚି କେତେ କଥା । ବିବାହ ଛଡ଼ା ନାରୀର ଆଉ ଗତି କଣ, ସେ କଣ କରିବ ଏଠି ରହି, କେତେଦିନ ସେ ଘୋଡ଼ାଚଢ଼ି ବୁଲିବ—ଆଉ ସେଥିରେ ଲାଭ ହେବ ତା'ର କଣ ! ଏହି ବୁଢ଼ାଟା ଥିଲା ଯାଏ ସିନା ସେ ଗୀତ ଗାଇବ—ତାହା ପରେ ସିଏ କଣ କରିବ ? ଏଇ ଘରଟା ହବ ଜାଗରଣର, ଜାଗରଣ କଣ ଭଲ ପାଇବ ନେଇଁ ନିଦ୍ରାକୁ ?

ଏହି ସମୟରେ ବାଷ୍ପ ଗଦ୍‌ଗଦ କଣ୍ଠରେ କହିଲେ ତାଙ୍କର ସ୍ତ୍ରୀ—

ସବୁଦିନେ ମାଇପିଗୁଡ଼ା ଏମିତି ସନ୍ତୁଳ ହୋଇ ମଲେ ?

ପାର୍ଶ୍ୱ ପରିବର୍ତ୍ତନ କରି ବଳଆର ସିଂହ ଅର୍ଥଶୂନ୍ୟ ଆଖିରେ ଅନାଇ ରହିଲେ ସ୍ତ୍ରୀଙ୍କ ପ୍ରତି ।

ଦେଖନ୍ତୁ, ସ୍ୱାମୀଙ୍କୁ ଝୁରି ଝୁରି ଅଗ୍ନିସାର...ସେଥିରେ ପୁଣି ସ୍ୱାମୀ ଆସି ତାଙ୍କୁ ନିଆଁରେ ଜଳାଇଲେ ! ରାମ ତ ଭଗବାନ, ସେ କଣ ଜାଣିପାରିଲେ ନାଇଁ ସୀତାଙ୍କ ଚରିତ୍ର ଖରାପ ହେଇଚି କି ନାଇଁ !

ବିଚଳିତ ହୋଇ କହିଉଠିଲେ ବଳିଆର ସିଂହ—

ବନ୍ଦ କର, ବନ୍ଦ କର, ତମକୁ କିଏ କହିଲା ରାମାୟଣ ପଢ଼ିବାକୁ—ସେଥିରେ ଭଗବାନଙ୍କର ନିନ୍ଦା ହୁଏ ।

ଆଉ ପାଖ ଘରେ ବେଦେହେଲା ସଜାଉଥିଲା ନିନ୍ଦ୍ରା, ସେଠୁ ଚାଲିଆସି ସେ କହିଲା—

ମଣିଷର ବି ନିନ୍ଦା ହୁଏ ବାପା ! ମଣିଷ ଭଗବାନ ଗଢ଼ିବାକୁ ଯାଇ ଶେଷରେ ସେ ଗଢ଼ିଦିଏ ଗୋଟାଏ ମଣିଷ—ଯିଏ କି ଦନୁବଳ ସାଙ୍ଗରେ ସମାନ । ଆଉ ଦନୁବଳ ବି ସେହି ମଣିଷଗଢ଼ା ଭଗବାନ ଅପେକ୍ଷା । ବଡ଼ ।

ବଳିଆର ସିଂହ ବିସ୍ମିତ ହୋଇ କହିଲେ—

ଦନୁବଳ ?

ଏତିକବେଳେ ଆଖି ପୋଛୁ ପୋଛୁ ନିନ୍ଦ୍ରାର ମା କହିଲେ—

କୁହନା, କୁହନା, ବୋହୂଟାକୁ ଯୋଉ ହାଲ୍ କରିଚି ଦନୁଆ··· । କ'ଣ ବୋହୂଟି କୁଆଡ଼େ ବିଅର ସାଙ୍ଗରେ ଥଟ୍ଟା ମକଲି ହଉଥେଲା···ତାକୁ ଦେଖି ତ ଦନୁଆ ଅସମ୍ଭାଳ ! ଯୋଉ ମାଡ଼ ମାରିଚି, ଶତ୍ରୁ ବି ଦେଖିବ ନେଇଁ ଆଖିରେ······

ଆଉ ସିଏ ରାମଙ୍କ ଗୃହିଁ ବି ବଡ଼ ବାପା, ଦନୁବଳ କିନ୍ତୁ ତା' ଭାରିଜାକୁ ଘରେ ରଖିଚି ବାହାର କରି ନ ଦେଇ ।

ଏହା ଭିତରେ ବଳସ୍ମାଆର ସିଂହ ଉଠି ବସିଥିଲେ । ଝିଅର କଥା ଶୁଣି ସ୍ୱରରେ କଠୋରତା ଦେଇ କହିଲେ—

ବାହାର କରି ଦେଇଥିଲେ ବରଂ ଭଲ ହେଇଥାନ୍ତା ।

ଓଃ କୁଆଡେ ଯାଇଥାନ୍ତା ସିଏ, ତାଙ୍କ ଦାଣ୍ଡ ଦୁଆର ମୁହଁ ବି ସିଏ ଦେଖି ନେଇଁ !······ଆଚ୍ଛା ବାପା, ଏଇ ଯିବା ଭିତରେ କଣ ମୁକ୍ତି ଅଛି କହୁଚ ?

ଝିଅର କଥା ଶୁଣି ବଳିଆର ସିଂହ ହସି ହସି କହିଲେ—

ମୁକ୍ତି ଆଉ କାହିଁ ଏଥିରେ—ବରଂଚ ପରାସ୍ତର ଭାବ । ଏଇପରି ଅତ୍ୟାଚାର ଭୋଗିବା ଭିତରେ ଅତ୍ୟାଚାରୀର ହୃଦୟ ପରିବର୍ତ୍ତନ ହବ ବୋଲି କେତେକ କହନ୍ତି, କିନ୍ତୁ ସେଇଟା ମସ୍ତବଡ଼ ଭୁଲ୍···

ଆମେ କେତେ ଯୁଗ ତା'ହେଲେ ଅପେକ୍ଷା କରିବା ?

ଆଉ କଣ ମାଡ଼ ଖାଇ ମରିଯିବାରେ······ ?

ନା, ତାର ସେଥିରେ ବିନାଶ—ବିନାଶ କେମିତି ମୁକ୍ତି ହବ ମା !

ଆଉ ତା' ହେଲେ ମୁକ୍ତି କଣ ନାଇଁ ?

ଅଛି, ତୁ କଣ କରନ୍ତୁ ଏଠି କହିଲୁ ମା ?

ଉତ୍ତେଜିତ ହୋଇ କହିଲା ନିନ୍ଦ୍ରା—

ଗୁଳିକ ବସେଇ ଦେଇଥାନ୍ତି···

ଉଚ୍ଚକିତ ହାସ୍ୟ ଖେଳିଗଲା ବଳିଆର ସିଂହଙ୍କ ମୁହଁରେ ।

ବାଃ,ମୁରଲିକ ତୁ ଖୁବ୍ ସିଖିଥାନ୍ତୁ ତା'ହେଲେ ମା ?

ଖୁବ୍ ଲଜ୍ଜାନତା ହେଲା ନିନ୍ଦ୍ରା ଏ କଥାରେ । ସେଥିପ୍ରତି ଦୃଷ୍ଟି ନ ଦେଇ ବଳିଆର ସିଂହ କହିଲେ—

କିନ୍ତୁ ଏମିତି ସମୟ ଆସେ; ଯେତେବେଳେ ନାରୀ ହୁଏ କର୍ତ୍ତବ୍ୟହୀନ, ବିବାହର ପ୍ରବେଶପଥ ଦେଇ ସେ ସେହି ନିଷ୍ପେଷଣ, ସେହି କର୍ତ୍ତବ୍ୟହୀନତା ପାଖକୁ ଚାଲିଯାଏ । ସେତେବେଳେ ପୁରୁଷର ଦାୟିତ୍ୱବୋଧ ଛଡ଼ା ନାରୀର ଅନ୍ୟ ଭରସା ପାଇବାର ଆଉ ଉପାୟ ନାହିଁ । ଆଉ ପୁରୁଷର ଏଇ ଦାୟିତ୍ୱବୋଧ ଉପରେ ଆସ୍ଥା ରଖିବା ଗୋଟାଏ ମୂର୍ଖତା ।

କାହିଁକି ?

ବୁଝିପାରୁନୁ ମା, ତତେ ମୁଁ ଯଦି ଆଜି ଗୋଟିଏ ସାମାନ୍ୟ ବାଳିକା ଭାବରେ ଗଢ଼ିଥାନ୍ତି, ସେଥିରେ ମୋର ପିତୃତ୍ୱର କଣ କିଛି ହାନି ହୋଇଯାଇଥାଆନ୍ତା, ନା ତୁ ମୋର ଝିଅ ବୋଲି କେହି ନ କହନ୍ତେ !

କୌତୂହଳୀ ହୋଇ କହିଲା ନିଦ୍ରା—

ଫେର୍ ?

ନିର୍ଭୀକତାର ସ୍ପର୍ଶରେ ଯେପରି ବଳିଆର ସିଂହ ଉତ୍ତେଜିତ ହୋଇଉଠିଲେ ।

ସେଥିପାଇଁ ସମାଜ ହେବା ଉଚିତ୍ ମାତୃ-ପ୍ରଧାନ । ଏ ସମାଜ ମାତାର—ନାରୀର । ମୁଁ ଏକ ନାରୀର ଅଂଶ, ତୋର ମା ଏକ ନାରୀର ଅଂଶ; ଆଉ ତୁ, ଜାଗରଣ ବି ସେହି ନାରୀର ଅଂଶ । ଏଇ ନାରୀଠାରୁ ଜୀବନ ପାଇ, ତାହାର ମାଂସରେ ଦେହ ଧରି ଆମେ କେବଳ ତାହାକୁ କରିବା ନିର୍ଯାତିତ ? ସବୁଠାରୁ ସେ ହବ ବଞ୍ଚିତ— ଧର୍ମରେ ତାହାର ଭାଗ ନାହିଁ, ସ୍ୱର୍ଗରେ ତାହାର ଭାଗ ନାହିଁ—ସମାଜରେ ତା'ର ଦାବୀ ନାହିଁ !···ତାର ମନରେ ବି ନାହିଁ ତା'ର ଅଧିକାର ? ଏଇ ମାତୃଭୂମିରେ ସେ ହବ ପୁରୁଷର ଦାସୀ—ପୁଣି ଯେଉଁ ପୁରୁଷ ତା' ପ୍ରତି କରେ ଅତ୍ୟାଚାର ?

ଅନୁପ୍ରାଣିତ ହୋଇ, ଭାଷାରେ ଉଚ୍ଛ୍ୱାସ ଦେଇ କହିଉଠିଲା ନିଦ୍ରା—

ତା ହେଲେ ଏସବୁ ବିରୁଦ୍ଧରେ ନାରୀ ପ୍ରଥମେ କାର୍ଯ୍ୟ କରିବା ଉଚିତ ବାପା ?

ନିଜକୁ ଭୁଲିଯାଇ ଅନ୍ୟ ଏକ ମନୁଷ୍ୟର ଭାଷା ଧରି କହିଲେ ବଳିଆର ସିଂହ—

ନିଶ୍ଚୟ !

ଏହି ସମୟରେ ସ୍ତ୍ରୀ ତାଙ୍କର ଅଧୀର ହୋଇ କହିଲେ—

କଣ ତମେ ସବୁ କହୁଚ ନିଦ୍ରାକୁ !···ତାକୁ ତ ପାଗଳ କରିସାରିଲଣି, ପୁଣି ତାକୁ କରିବ କୁଳଙ୍ଗୁଣୀ । କାଲି ସେ ପଠାଣସାହିରେ ଯାଇ ଘୋଡ଼ା ନେଇ ପହଞ୍ଚିଲା, କଣ ସେଠିସବୁ କରିଚି କୁଆଡ଼େ । ରତନ ବଳି କେତେକଥା ଶୁଣେଇ ଶୁଣେଇ ସନାତନ ଆଗରେ କହୁଥିଲା । ତମେ ତ ଏସବୁ କିଛି ବୁଝୁନା—ଖାଲି ବସି ମହାଭାରତ ଶୁଣାଉଚ ଝିଅକୁ !···ହଁ, ସେଇ ପୁଅଟି ସାଙ୍ଗରେ ନିଦୁର ବାହାଘର କରିଦିଅ······ ଆଉ ଆଉ ରଖି ହବନେଇଁ ଏ ଘରେ······

ନିଦ୍ରା ଅଭିମାନ ସ୍ୱରରେ କହିଲା—

କଣ ପାଇବ ବାପା ତମେ ବୋଉ କଥାରୁ । ମୁରଲୀବାବୁ ଯେମିତି ନୁହନ୍ତି ଯୁବକର ପ୍ରତିନିଧି—ବୋଉ ଯେମିତି ନାରୀମାନଙ୍କର ପ୍ରତିନିଧି ନୁହେଁ । ସେଇ ବା' ଘରଟା ଭିତରେ ସେ ଦେଖିଛି ସ୍ୱର୍ଗ । ପଠାଣ ସାଇକୁ ଗଲେ କ'ଣ ହେଇଗଲା ବାପା —ସେଇ ଯୋଉ ରସୁଲ ଖାଁ, ଆମର ଜମି ଭାଗ ଚଷେନା ବାପା, ତାଙ୍କର ଘରକୁ ଯାଇଥିଲି । ଓଃ, କେଡ଼େ ସୁନ୍ଦର ସେମାନଙ୍କର ବ୍ୟବହାର ! କେତେ ଆଦର କଲେ ସେମାନେ ! ଝିଅ-ବୋହୂଗୁଡ଼ାକ ବି ଭାରି ଭଲ !···ବାପା, ଏତେଟିକେ ମିଶିଲେ ଯଦି ସେମାନେ ଏତେ ଖୁସି, ଆଉ ତାଙ୍କ ସାଙ୍ଗରେ···

ଏକ ଦୀର୍ଘନିଃଶ୍ୱାସ ଛାଡ଼ିଲେ ଏତିକବେଳେ ବଳିଆର ସିଂହ । ସେଥିରେ ଚିନ୍ତିତ ହେଲା ଯେପରି ନିଦ୍ରାର ବାପୁବ୍ୟ ଅଭିବ୍ୟକ୍ତ । ସେଠାରୁ ଚାଲିଯାଇ ପାଖ ଘରୁ ବେହେଲା ଖଣ୍ଡିକ ନେଇଆସି ନିଦ୍ରା କହିଲା—

ବାପା, ଭଜନ ଗାଇବି ?

ଝିଅର ମୁହଁକୁ ଚାହିଁଲେ ବଳିଆର ସିଂହ । ସେ ଯେପରି ନିଦ୍ରାକୁ ଚିହ୍ନି ପାରିଲେ ନାହିଁ । ଏଇ ସମୟରେ ନିଦ୍ରାର କଣ୍ଠରୁ ସ୍ୱର ବାହାରିଲା—

ରଘୁପତି ରାଘବ ରାଜାରାମ
ପତିତ ପାବନ ସୀତାରାମ······

ଗୀତ ଶୁଣୁ ଶୁଣୁ ନିଦ୍ରାର ମା କହିଲେ—

ତୁ ବରାବର ବସି ବାପାଙ୍କ ପାଖରେ ଏଇସବୁ ଭଜନ ଗା' । ବାପାଙ୍କର ବି ମନ ଭଲ ରହିବ, ଆଉ ତୋ ମନ ବି ବସିବ—ବଦଳି ଯିବ । ଆମେ ହିନ୍ଦୁଘରର ଝିଅ—ଆ'କୁ ସବୁ ଅମାନତି କଲେ ଆମର ଖରାପ ହବ ।

ବୋଉର ଏକଥା ଶୁଣି ନିଦ୍ରା କେବଳ ମୃଦୁହାସ୍ୟ ସଂଗ୍ରହ କରୁଥାଏ । ଆଖିବୁଜି ବଳିଆର ସିଂହ କଣ ଭାବୁଥାନ୍ତି । ସେଥିରୁ ବୋଧହୁଏ ସ୍ତ୍ରୀ ଅନୁମାନ କଲେ ଯେ, ସେ ଯେପରି ବୁଡ଼ିଯାଇଚନ୍ତି ଧର୍ମଜଳରେ । ସେହିପରି ଥାଇଁ ବଳିଆର ସିଂହ କହିଲେ—

ତମେ କାହାକୁ କଣ କହୁଚ ବନ୍ଧ୍ୟମ ବୋଉ, ଏ ତମର ଝିଅ ବି ନୁହେଁ, ମୋର ବି ନୁହେଁ । ଏ ଆଉ ଆମ ବୋଲି ମାନିବ ନେଇଁ ଜାଣି ଥା । ଏ ଏଥର ଆମକୁ ଠକିବ, ଯେମିତି ମୁଁ ତାକୁ ଠକୁଥିଲି ଭଜନ ଶିଖେଇ । ···ମୁଁ ପ୍ରଫୁଲ୍ଲକୁ ଲେଖି ଦେଉଚି; ସେ ଆସୁ, ଓଃ, ତା'ର ଏଠୁ ଯିବା ଉଚିତ ନ ଥିଲା । ଆଉ ସନାତନକୁ କୁହ, ଆକୁଳା ହାତରେ ଘୋଡ଼ା ପଠେଇ ଜାଗୁକୁ ଡାକିଆଣୁ । ତାର ଆଉ ମାମୁଁ ଘରେ ରହି କାମ ଶିଖିବା ଦରକାର ନାଇଁ—ତାର ଭଉଣୀ ପାଖରେ ସେ ରହୁ ଏଥର ।···ନେଇ ଯୁବକ ଦୁଇଜଣ ଫେରିଯିବା ହିନୁ ମୋର ବରାବର ଧାରଣ ହେଇଚି ଏଥର ଜାଗରଣ ଫେରିଆସୁ ନିଦ୍ରା ପାଖକୁ ।

ନିଦ୍ରା ତାହାର ବାପାଙ୍କର ଏହି ବ୍ୟଥାପୂର୍ଣ୍ଣ କଥାରେ କାତର ହୋଇ-ପଡ଼ିଲା ।

ସେ ଥରି ଥରି କହିଲା—

ତମେ ଏସବୁ କ'ଣ କହୁଚ ବାପା ?······ମୁଁ ଯେ ତମର ଝିଅ—ମୁଁ ନିଦ୍ରା । ମୁଁ ତମର ପାଖରେ ବସି କଥା ଶୁଣିବ, ତମ ପାଖରେ ବସି ଭଜନ ଗାଇବ ବାପା ! ମତେ ଭୁଲ୍ ବୁଝନା—ନ ହେଲେ ମୁଁ ମରିଯିବ ବାପା !

ପଲଙ୍କରୁ ଉଠିଆସି ଝିଅକୁ କୁଣ୍ଢେଇ ବଳଆର ସିଂହ ଗଦ୍‌ଗଦ୍ ହୋଇ କହିଲେ—

ତୁ ମରିଯିବୁ—ମୋର ଶତାବ୍ଦୀର ସାଧନା, ତୁ ମରିଯିବୁ ନିଦ୍ରା ! ମରିଯାଇଚ ତୋର ବଡ଼ଭାଇ—ତାର ମରିବାର ଥିଲା।···ନା, ନା, ତୁଇ ବଞ୍ଚିବୁ ନିଦ୍ରା । ବଞ୍ଚିବ ହବ ଦୀର୍ଘଜୀବୀ । ଏଇ ବୁଢ଼ା—ଏଇ ବଳଆ ର ସିଂହ ମରିଯିବ । ମରିଯିବ ଏଇ ଜୀର୍ଣ୍ଣ ଅତୀତ।···ମୁଁ ତତେ ଠିକ ପାରିବ ନେଇଁ କି ଆ ର ମତେ ତ ଠିକ ପାରିବୁ ନେଇଁ ମା । ମୁଁ ମୋର ଝିଅକୁ ଭୁଲ୍ ବୁଝିଥିଲି—ମୁଁ ଚହ୍ନି ନ ଥିଲି ମୋ ନିଦ୍ରାକୁ । ପ୍ରଫୁଲ୍ଲ ପାଗଳ ହୋଇ ଫେରିଯାଇଚ, ସେ ନିଶ୍ଚୟ କିଛି କରିବ ।···ଆଉ ମୁରଲି—ମୋର ତାକୁ ଜମା ବିଶ୍ୱାସ ହଉନେଇଁ—ହୁଏ ତ ଆଉ କୌଣସି ସ୍ୱର ପୁଣି ତା ଭିତରେ ପଶିଯିବ—ସେ ପୁଣି ଭିନ୍ନ ରୂପରେ ବାଜିଉଠିବ ।···ଉପାୟହୀନ, ସେ ସବାହବ, ହୁଏ ତ କିଛି ଗୋଟା ସେ ଖୁବ ଚଞ୍ଚଳ ଧରି ପକେଇବ—ତାକୁ ତୋର ଧରିବା ଉଚିତ୍ ଥିଲା, ତୋର ଆଶ୍ରୟ ଦେବା ଉଚିତ୍ ଥିଲା ।

କଣ କହୁଚ ବାପା !

ନିଦ୍ରାର ଏହି ସ୍ୱରରେ ସଚେତନ ହୋଇ ବାରଦର୍ପରେ ଛିଡ଼ା ହୋଇପଡ଼ିଲେ ବଳଆର ସିଂହ—ଶୁଭ୍ର ଗାଲମୁଛ ଓ ନିଶହାଲକ ଜଳିବାକୁ ଲାଗିଲା ତାଙ୍କର । ତାହା ପରେ ସେ ଦୃଢ଼ଭାବରେ କହିଲେ—

ହଁ, ପଠାଣ ସାହିରେ ଆଉସବୁ କଣ କଲୁ ? କି, କିଏ ମୋର କଣ କରିବ, ମୁଁ ପ୍ରତାପ ବଳଆର ସିଂହ—ନିଦ୍ରା ସେହି ପ୍ରତାପ ବଳଆର ସିଂହର ଝିଅ—ସେ ଯାହା କରିବ ତାହା ହବ ଠିକ୍ । ହଁ, କହ ମା !

ନିରୁତ୍ତର ହୋଇ ରହିଲା ନିଦ୍ରା । ତାହାର ମା ଏସବୁ ଦେଖୁଥାନ୍ତି ନିର୍ବାକ ହୋଇ । ଘର ଭିତରେ ପଦଚାରଣ କରି ବଳଆର ସିଂହ କହି ବସିଲେ ପୁନର୍ବାର—

ହଁ, ରସୁଲ ଖାଁ ପୁଅ ଗ୍ଲୋବ ଖେଳ ଜାଣେ, ତାକୁ ଆଜ କହି ପଠଉଚ ତତେ ସେ ଗ୍ଲୋବ୍ ଖେଳ ଶିଖେଇ ଦବ ।

ଏହା ପରେ ହସିଉଠି ବଳଆର ସିଂହ କହିଲେ—

ତତେ ମୁଁ ଆଉ ସୀତା-ସାବିତ୍ରୀର କଥା କହି ଭୁଲେଇ ପାରିବ ନାଇଁ, କି ତୁ ମତେ ଆଉ ଭଜନ ଶୁଣେଇ ଭୁଲେଇ ପାରିବୁ ନେଇଁ ମା—ଠିକ ହେଇଚ, ଗୋଟା ସମତଳ ସୀମାକୁ ଆମେ ଚାଲି ଆଇଚେ।···ବହମ ବୋଉ, କଣ, ଝିଅଟା ତମର ବିଗିଡ଼ି ଗଲା, ନା ?···ଖୁବ ଭଲ ହେଲା···ଏଇଭଳି ବାପ-ମା ସବୁ ମରନ୍ତୁ ଆକାଶକୁ ଅନେଇ, ଏଇ ଝିଅସବୁ ବଞ୍ଚନ୍ତୁ,—ଶସେ ଶହେ ବର୍ଷ ବଞ୍ଚନ୍ତୁ ।···ଏଇଭଳି କୋଟି କୋଟି ଝିଅର ଆବଶ୍ୟକ ଆମର । କାହାନ୍ତି ସେ ଝିଅ—କୋଉଠି ମିଳିବେ ସେମାନେ···

ଏହିପରି କହି କହି, ବୁଲୁ ବୁଲୁ ବଳିଆର ସିଂହ ପୁଣି କହିଲେ—

ଠିକ୍ କଥା ନିଦୁ, ପ୍ରଫୁଲ୍ଲ ତାର ଶୁଭ ଦେଇଯାଇଛି—ସେଇ ଘରଟାକୁ ଖାଲି କରିଦେ। ସାରା ଚଉପାଢ଼ୀରେ ତୁ ଗୋଟା ଶିକ୍ଷାକେନ୍ଦ୍ର ଖୋଲ୍—ତୋର ମନ ଇଚ୍ଛା ତୁ ତାଲିମ କର ନିରାଶ୍ରିତାମାନଙ୍କୁ ଧରି ଆଉ ଯିଏ ଆସିବ ବି କ୍ଷତି ନାହିଁ। ଯିଏ ଆସିବେ ସେମାନେ ମାସକୁ ପାଇବେ ପ୍ରତ୍ୟେକ ତିରିଶ ଟଙ୍କା ଭତ୍ତା।

କିଛି ସମୟ ରହି ସେ ପୁଣି କହିଲେ—

ଢେର ଅଛି ଟଙ୍କା। ଦିଅ ବିନ୍ଦମ ବୋଉ, ସେଇ ପୈତୃକ ଜହରତ୍ ବାକ୍ସଟାର ଚାବି ଦେଇଦିଅ ନିଦ୍ରାକୁ। ଏ ଘର ନିଦ୍ରାର—ନାରୀର, ସେହି ନାରୀ ନିଦ୍ରା। ଜାଗରଣକୁ ରକ୍ଷା କରିବ ନିଦ୍ରା। ···ଆଉ ଗୁମାସ୍ତାକୁ ମୁଁ କହିଦେଉଛି, ଯେତେ ପୁରୋହିତ ଜାଗିର, ବ୍ରହ୍ମା ଜାଗିର, ଗ୍ରାମିକ ଜାଗିର ଆଉ ପୁଝାରି ଜାଗିର ଅଛି ତାକୁ ସବୁ ଛଡ଼େଇ ଦବ। ସେଗୁଡ଼ାକ ସବୁ ଲାଗିବ ତୋରି କାମରେ।

ତାହାପରେ ପଲଙ୍କ ଉପରେ ବସିପଡ଼ି ବଳିଆର ସିଂହ କହିଲେ—

ଗା, ଗା, ସେଇ ତୋର ଗୀତଟା ଗା'। ମତେ ମାଫ୍ କର୍ ମା, ତତେ ବହୁତଗୁଡ଼ା ସମୟ ମୁଁ ଠକିଛି······। ହଁ ଗା-ଗା, ପୂରାପୂରି ଗା'।

ଧୀରେ ଧୀରେ ନିଦ୍ରା ଗାଇବାକୁ ଲାଗିଲା—

ଘନଦଳିତରୁଧିରେ ଜଗତ ଜର୍ଜର ପାପେ·········

ଗୀତ ଗାଇସାରି ନିଦ୍ରା ଚାଲିଗଲା ନିଜର କୋଠରୀକୁ ବିଶ୍ରାମ ପାଇଁ। ଭିତରୁ ପଟୁ କବାଟ ବନ୍ଦକରି ଦେଇ ସେ ଯାଇଁ ବିଛଣାରେ ପଡ଼ିଗଲା। ବିଛଣାରେ ପଡ଼ି ଆଜି ତାହାର ପ୍ରଥମେ ମନେ ପଡ଼ିଲା ପ୍ରଫୁଲ୍ଲ। ପୋଖରୀ କୂଳରେ ପ୍ରଫୁଲ୍ଲର ଦେହକୁ ଲାଗି ଆଉଜିଦେଇ ବସିଛି ସେ। କେଡ଼େ ସୁନ୍ଦର ଏଇ ପ୍ରଫୁଲ୍ଲ! କାହିଁକି ଛାଡ଼ିଦେଲି ସେ ପ୍ରଫୁଲ୍ଲକୁ, ଏଡ଼େ ଭୀରୁ ପୁଣି ସେହି ପ୍ରଫୁଲ୍ଲ, ଗୋଟାଏ ଚମ୍ପାଫୁଲ ମାରିଦେଲା ନାହିଁ ମୋର ବେଣୀରେ! ଭୀରୁତାର ଶରଣ ନେଇ ଆତ୍ମନିଗ୍ରହ କଲା, ଅଥଚ ସାହାସ ଧରି କହିପାରିଲା ନାହିଁ ପଦେ ହେଲେ ଅନ୍ତରର କଥା। ଓଃ, କେଡ଼େ ଭୀରୁ ଏଇ ଯୁବକ-ଗୁଡ଼ାକ! କେଡ଼େ ସୁନ୍ଦର—ଅଥଚ ବାହା କାମୁଡ଼ି ହୋଇ ମରୁଛନ୍ତି। ଖାଲି ଫାଶି ଦେଇଦିଅନ୍ତି ଏଇ ସୁନ୍ଦର ଯୁବକଗୁଡ଼ାକୁ! ଖୁବ୍ ମଜା ଲାଗେ ଏଇ ସୁନ୍ଦର ଟୋକା-ଗୁଡ଼ାକୁଙ୍କୁ ନେଇ ଖେଳିବାକୁ! ଅକ୍ଳେଶରେ ଏମାନେ ଅର୍ଗଳରେ ବେକ ରଖିଦେବେ ମୋ ପାଇଁ···ଏମାନଙ୍କୁ ସମସ୍ତଙ୍କୁ ମରେଇବାକୁ ହବ···

ଚମକି ପଡ଼ିଲା ଏହିଠାରେ ନିଦ୍ରା। ଏହିପରି ଅଶୋଭନ କଥା କଣ ଭାବୁଛି ସେ? ଭବିଷ୍ୟତ ଏଇ ଯୁବକମାନେ ଆମ ଦେଶର—ଆଉ ତାଙ୍କର ମୃତ୍ୟୁ ଆଣିବାକୁ କାମନା କରୁଛି ସେ? ମୃତ୍ୟୁ ହେଉ ସେଇମାନଙ୍କର, ଯେଉଁମାନେ ଏହି ସୁନ୍ଦର ଯୁବକମାନଙ୍କର ରକ୍ତକୁ କରିବାକୁ ଚାହାନ୍ତି ବିବର୍ଣ୍ଣ—ଅତି ପୁରାତନ ଦୂଷିତ ଅସ୍ଥି-ଖଣ୍ଡକୁ କୁକୁର ଭଳି ଲେହନ କରି ଯେଉଁମାନେ ଏହି ଯୁଗଯାତ୍ରୀମାନଙ୍କୁ ମଣୁଛନ୍ତି ହେୟ।

ଛୁଡ଼ା ହେଲା ଆସି ଯେପର ନିଦ୍ରା ଆଗରେ ବର୍ତ୍ତମାନ ମୁରଲି । ନିଦ୍ରା ହସି ହସି ତାହାକୁ ଯେପର କହିଲା···ଓ, ମୁରଲିବାବୁ, ଆଉ ଚନ୍ଦନ ଦରକାର ? ଏତେ ସୌଗନ୍ଧ୍ୟର ଉତ୍ସବ ତମ ଦେହରେ—ଏମ୍. ଏ., ଭାଗବତରତ୍ନ, ତଥାପି ଏତେ ଦୁର୍ଗନ୍ଧ ? ଏତେ ଅଂଧକାର ?···ମତେ ଦେଖି ତମେ ଠାକୁର ପୂଜା କରିବାକୁ ବି ଭୁଲିଗଲ । କିନ୍ତୁ ତୁଳସୀପତ୍ର କିଣ ଖାଅ—ଭାରି ଉପକାରୀ ।···ଓଃ, ଖୁବ୍ ଦମ୍ଭ ନେଇ, ଶକ୍ତି ଅଳଙ୍କାର ଲଗେଇ ତମେ ଆସିଥିଲ ମୋ ପାଖକୁ । ତମେ ପରାସ୍ତ ହେଲ ସିନା—କୌଣସି କାରଣ ନଥିଲା ପରାସ୍ତ ହେବାର । ତମ ପାଇଁ ଅନେକ ଯୁବତୀ ଅର୍ଘ୍ୟଥାଳ ଧରି ଚାହିଁଛନ୍ତି—କିନ୍ତୁ ସେ ଯୁବତୀମାନଙ୍କ ମଧ୍ୟରେ ନାହିଁ ନିଦ୍ରା ।··· ନାଁ ଟା ମୋର କେଡ଼େ ଭୀଷଣତାର ପ୍ରତୀକ ବୁଝିପାରୁନା । ମତେ ତମେ କାହିଁକି ଭଲ ପାଇଲ—ଓଃ, ଖୁବ୍ ଭୁଲ୍ କଲ···ବିଚରା ନିଃସ୍ୱ ତା ଉପରେ ଲଦି ନେଲ ଦୀର୍ଘଶ୍ୱାସ । ···ମୋର ଇଚ୍ଛା ହେଉଛି ମୁଁ ତମ ପାଖକୁ ଯାଆନ୍ତି—ପୂର୍ତ୍ତି କରିଦିଅନ୍ତି ତମର ଘର । କିନ୍ତୁ ହେବ ନାଇଁ, ଭାଙ୍ଗି ପଡ଼ିବ ତମେ ମୋର ଆଘାତରେ । ମତେ ଭୁଲ୍ ବୁଝନା ମୁରଲିବାବୁ—କେବଳ ତମର ଲାଗି ମୁଁ ଭଲ ପାଇପାରିଛି ଖୁବ୍ ପ୍ରଫୁଲ୍ଲିକୁ । ସେ ଧନୀକର ସନ୍ତାନ, ମୁଁ ନାରୀ—ମୁଁ ଚାହେଁ ଅର୍ଥ । ସେହି ପ୍ରଫୁଲ୍ଲର ଅର୍ଥରେ ମୁଁ ତମର ନିଃସ୍ୱତାକୁ କରିବି ଧ୍ୱଂସ । କିନ୍ତୁ ସେହିଦିନକୁ ତମେ ଅପେକ୍ଷା କରି ରହିବ ନାଇଁ ମୁଁ ଜାଣେ—ତମେ ହେବ ପଥଭ୍ରଷ୍ଟ । ହଁଅ, ମତେ ବି ଖୁବ୍ ମୁରଲି ମିଳିବେ ସେତେବେଳେ ।···ବାପା ଦେଇଛନ୍ତି ମତେ ଜହରତ୍ ବାକ୍ସର ଚାବି, ସମସ୍ତଙ୍କ ପାଖକୁ ଯାଇପାରିବ—ମୁଁ ହେବ ସମସ୍ତଙ୍କର । ଏଇ ରସୁଲ୍ ଖାଁ ପୁଅ ଗଫୁର ବି ମତେ ଚାହେଁ ···ଏକାକୀ ତମେ ଅନ୍ତରରେ ହୋଇ ନଥାନ୍ତ କି ନିଃସ୍ୱ ।

ଯେପରି ଆଗରେ ବର୍ତ୍ତମାନ ନିଦ୍ରା ଦେଖିବାକୁ ପାଇଲା ଗଫୁରକୁ । ପ୍ରଫୁଲ୍ଲିତ ହୋଇ ତାହାକୁ କ୍ଷଣକାଳ ଚାହିଁରହିଲା ଯେପର ନିଦ୍ରା । ତାହାପରେ ସେ ଭାବିବାକୁ ଲାଗିଲା—ତମେ ଦିନେ ଆସିବ ବୋଲି ମୁଁ ଭାବୁ ନଥିଲି ଗଫୁର୍ । କିନ୍ତୁ ତମେ ମତେ ଅନେକଦିନୁ ଭାବୁଥିଲପର ଜଣାଯାଏ । ତମେ ପ୍ରତିବର୍ଷ ଆମ ଘରକୁ ଗୃହଧାନ ନେଇ ଆସ—ଦେହଟା ତମର କି ସୁନ୍ଦର, ବଳିଷ୍ଠ । ମୁଁ ବରାବର ତାକୁ ଅନେଇ ରହିଚି ଅନେକଦିନୁ । ଭାବୁଥିଲି କୋଉଦିନ ତୁମେ ମତେ ଚାହିଁବ । ତମେ ମୋର ଘୋଡ଼ାକୁ କାଲି ଅଟକାଇ ଦେଲ ବାଟରେ । ମୁଁ ବାପାଙ୍କୁ ସେସବୁ ଲୁଚେଇଚି । କିନ୍ତୁ ବାପା ତମକୁ ଡାକଦେବେ ପୁଣି ମୋଲାଗି ।···କି ସୁବର୍ଣ୍ଣ ସୁଯୋଗ । ମୁଁ ତମକୁ ଚାହେଁ, ତମେ ମତେ ଚାହଁ, ପୁଣି ତମର ଆମନ୍ତ୍ରଣ ।···ଶୁଣ ଗଫୁର୍, ତମେଇ କେବଳ ତାଙ୍କୁ ଡାକଆଣି ପାରିବ—ସେଇ ଗାଁ ଶେଷମୁଣ୍ଡରେ ଯେଉଁମାନେ ପୁଳାଏ ଜାଗାରେ ଗଢ଼ିଛନ୍ତି ଅନେକଗୁଡ଼ା କୁଟୀର, ଅଛୁଚ ଆକାଶ ତଳେ ଯେଉଁମାନଙ୍କୁ କରାଯାଇଚି ଅତି ସଙ୍କୁଚିତ । ଯୁଗ ଯୁଗର ଖରା ପବନ ଲାଗି ମଧ୍ୟ ଯେଉଁମାନଙ୍କର ଅସ୍ପୃଶ୍ୟତା ଏପର୍ଯ୍ୟନ୍ତ ଛାଡ଼ୁନାହିଁ—କେବଳ ତମେହିଁ ତାକୁ କରିପାରିଛ ଅସ୍ୱୀକାର, ତମେ ଅଗ୍ନି ଭଳି ପବିତ୍ର । ଅଶ୍ରୁଳ ଆଖିରେ କେତେଟା ଟୋକା ଅଛନ୍ତି ସେହି କୁଟୀର ତଳେ ଖୁବ୍ ସୁନ୍ଦର । ସଭ୍ୟ-ଲୋକ ଦେଖିପାରେନା ତାଙ୍କର ବଳିଷ୍ଠତା । କିନ୍ତୁ ଯୁବତୀ ଆଖିରେ ଯୁବକର ଏହି

ପ୍ରାକୃତିକ ସୌନ୍ଦର୍ଯ୍ୟ ଲୁଚି ପାରେନା ଗଫୁର୍ ! ସଭ୍ୟଲୋକ ବୁଝିପାରେନା ଯୁବତୀ କ'ଣ ଚାହେଁ । ହଁ ଖୁବ୍ ବଳମ୍ବ କରି ରାତିବେଳେ ଡାକିଆଣିବ ସେହି ଟୋକାଙ୍କୁ । ଯୁଗ ଯୁଗର ରକ୍ଷିତ ସ୍ପର୍ଶ—ନିପୀଡ଼ିତ ଆକାଂକ୍ଷା, ଖୁବ୍ ଆନନ୍ଦ ଦବ ମତେ ।···ଯାଅ ଗଫୁର୍, ଏପରି ହିଂସ୍ର ହେଇ ଚାହୁଁଚ କାହିଁକି ମତେ । ଖୁବ୍ ଭୁଲ୍ କରୁଚ ତମେ—ମୋତେ ଦରକାର ନାହିଁ ଏହି ହିଂସ୍ରତା···

ଏହିପରି ନାନା କଥା, ନାନା କଳ୍ପନା କରୁ କରୁ ଶେଷରେ ଶୋଇ ପଡ଼ିଲି ନିଦ୍ରା । ଶୋଇ ଶୋଇ ମଧ୍ୟ କେତେକ ସମୟପରେ ଦେଖିଲି ସ୍ୱପ୍ନ—ସେ ଦେଖିଲି ଅତି ଅପୂର୍ବ ସ୍ୱପ୍ନ ।

॥ ନଅ ॥

ଶୋଇ ଶୋଇ କହିଉଠିଲି ନିଦ୍ରା—

ଓଃ ଏତେ ଆଲୋକ, ଏତେ ଯୁବତୀ, ତମେ ସବୁ କୋଉଠି ଥିଲ ଆଜଯାଏ ?

ଶିକ୍ଷାକେନ୍ଦ୍ରର ଦ୍ୱାରରେ କେତେ ଦଳିତା, କେତେ ଲାଞ୍ଛିତା, କେତେ ଧର୍ଷିତା, କେତେ ବିଧବା, କେତେ ଅଧବା, କେତେ ନିପୀଡ଼ିତା, କେତେ ଅସ୍ପୃଶ୍ୟା ଯୁବତୀର ମେଳା । ଅସଂଖ୍ୟ ମୁକ୍ତିକାମୀ ବାଳିକାମାନଙ୍କର କଳନାଦ—ବିଚିତ୍ର ବେଶଭୂଷା ସେମାନଙ୍କର । ସେମାନଙ୍କ ମଧ୍ୟରୁ ଆଗକୁ ବାହାରି ଆସିଲି ଜଣେ—ତାହାର କାଞ୍ଚନ ଫୁଲପରି ଦେହରେ ମନ୍ଦାର ଫୁଲ ଫୁଟିଉଠିଛି ପୁରୁଷର ସ୍ପର୍ଶରେ । ଆଖିରେ ଅଶ୍ରୁ-ଉଚ୍ଛ୍ୱାସ—ମୁଖରେ ନିପୀଡ଼ନର ଆର୍ଦ୍ରତା । ଯେପରି ଆଷାଢ଼ ଆକାଶର ମେଘାଳି ଶ୍ରୀର ଗମ୍ଭୀର ସେହି ମୁହଁ ।

ତାହାକୁ ଆଲିଙ୍ଗନ କରି, ନିଜର ପଣତରେ ପୋଛିଦେଇ ତାହାର ଅଶ୍ରୁ ବିଗଳିତ ଭାଷାରେ କହିଲି ନିଦ୍ରା—

କାନ୍ଦନା, କାନ୍ଦନା, ଦନୁବଳ ତମକୁ ମାଇଲେ, ନା ! ଏଇ ମନ୍ଦାର-ଫୁଲଗୁଡ଼ା ସେମିତି ରହିପାରନ୍ତା କି ଶେଷଯାଏ—ତମର ଶିକ୍ଷା ଶେଷ ହେବାଯାଏ—ଖୁବ୍ ଭଲ ହୁଅନ୍ତା, ଠିକ୍ ଏହାରି ସଙ୍ଗରେ ମିଳାଇ ନିଅନ୍ତେ ତାହାର ଶାସ୍ତିକୁ । ଆଚ୍ଛା, ତମର ଭୁଲ୍ ହେଇପାରେ, ମୋର ସବୁ ଠିକ୍ ମନେ ରହିବ । ଆସ—ଆସ, ତମକୁ ମୁଁ ଆଗେ ଶିଖେଇ ଦିଏ ତମର ଶିକ୍ଷା ।···ଜାଗୁ, ଜାଗୁ ରେ, ତୁ

ସମସ୍ତଙ୍କୁ ବସେଇଦେ ଗୋଟି ଗୋଟି କର ।...ମୁଁ ଆଙ୍କୁ...ହଁ କଣ ତମ ନାଡି, କଣ ? ବଡ଼େ କୁହ, ଏଠି ଆଉ ନାଜ କଣ, ଏଠିକି ସେମାନେ ଜମା ଆସି ପାରବେ ନେଇଁ, ଏଇଟା ମୁକ୍ତିଶିବର ।...ଜାଗୁରେ,ଗଫୁର୍‌କୁ କହ, ସେ ସବୁବେଳେ ଘୋଡ଼ାରେ ଚଢ଼ି ଘରପାଖରେ ବୁଲୁଥାଉ...ହାତରେ ଧରଥାଉ ହଉଆର୍ । ଦନୁବଳ ଯାଇ ରତନକୁ କହ କିଛୁ ଗୋଲ୍‌ମାଲ କରପାରେ । ହଁ, କଣ ତମର ନାଁ'ଟ ?...ରଞ୍ଜା ? ଓ, ସେଇଲାଗି ତମକୁ ରଞ୍ଜନ କରଦେଇଚ ପୁରୁଷ । ରଞ୍ଜା, ଆସ, ସେଇଠିକି ଚାଲ...

ନିଦ୍ରା ଆସି ପହଞ୍ଚିଲ ରଞ୍ଜାକୁ ଧର ଗୋଟିଏ କାଠର ପୁରୁଷମୂର୍ତ୍ତି ପାଖରେ । ସେ ପୁରୁଷର ଚେହେରା ଅତି ବଭତ୍ସ । ପାଖରେ ତାହାର ପହଞ୍ଚ ରଞ୍ଜା ହାତରେ ଗୋଟା ଚାବୁକ୍ ଦେଇ କହିଲା ନିଦ୍ରା—

ଧର, ଖୁବ୍ ଜୋର୍‌ରେ ଧର ଏଇ ଚାବୁକ୍‌ଟା । ଆଉ ଯେତେ ଜୋର୍‌ରେ ମୁଠେଇବ, ସେତେ ଶୀଘ୍ର ତମର ପରାଣ ଚାଲଯିବ ଦେହରୁ ।...ହଁ, ଧର, ଖୁବ୍ ଜୋର୍‌ରେ । ବାଃ, ସୁନ୍ଦର୍, ବେଶ୍ ଧଲଚ ତମେ—ଅଥଚ ତମେ, ଧରୁନା—ଧରୁ ନଥେଲ, କେହି ବ ଦଉ ନଥେଲେ ତମକୁ ! ଏଇ ଗାଁଟାରେ ମୁଁ ଏତେ ଚାବୁକ୍ ମାର ଘୋଡ଼ା ଛୁଟଉଚ, ତମେ କେହି ମତେ ଦେଖୁନା । ଆଚ୍ଛା, ଆଗରେ ଏଇଟା କଣ ?

ରଂଜା ଲାଜ ଲାଜ କର କହିଲା—ମିଣିପିଟା !

ନିଦ୍ରା ହସି କହି ଉଠିଲା ତାହାର କଥାରେ—

ନା, ନା, ଗୋଟା କାଠର ମୂର୍ତ୍ତି । ପିଟିଲ ଏହାକୁ ଗୋଟା ଚାବୁକ୍ ।... କଣ, ହାତ ଉଠୁନେଇ ତମର ? ହେଇ, ଦଅ ମୋ ହାତକୁ ଚାବୁକ୍‌ଟା ।

ରଂଜା ହାତରୁ ଚାବୁକ୍ ନେଇ ସେହି ମୂର୍ତ୍ତିକୁ ଦେଲା ଏକ ଚାବୁକ୍ ନିଦ୍ରା । ଶବ୍ଦରେ ତାହାର ସେହି ବଧୂଟି-ଚମକ ଉଠିଲା । ତାହା ପରେ ନିଦ୍ରା କହିଲା—

ସେମିତି ପିଟ । ହଁ, ବାସ୍ ଆହୁର ଜୋରେ—ଆହୁର ଜୋରେ—ଆହୁର ଜୋରେ ।...ହଁ, ଏମିତି ତମେ ପିଟି ଶିଖ ନିତ—ଆହୁର ବ ଅନେକ କଥା ଶିଖିବାକୁ ଅଛି । ହଅ, ଏଥର ଉଢ଼ଣାଟା ଏକଦମ୍ ଉଠେଇ ଦଅ । ଯା' ସେ ଆର୍-ଘରେ ବସ ।

ଜାଗୁ ଆଣିଲୁ ଆଉ ଜଣକୁ !

ଗୋଟିଏ ଶଙ୍କିତା ନାରୀ ଆସି ଠିଆହେଲା ନିଦ୍ରାର ପାଖରେ । ତାହାର ଶୋଭନତା ନଷ୍ଟ ହୋଇଛି ଅପରିଚ୍ଛନ୍ନତାରେ । ଦେହରେ ତାହାର ଦୁର୍ଗନ୍ଧ; ନାକରେ ପଣତ ଦେଇ ନିଦ୍ରା କହିଲା—

ଯାଆ, ଏତେ ଅପରିଷ୍କାର । ଗଜର, ଗୋଟା ଭଲ ଶାଢ଼ୀ ଦେଲୁ ଏଇ ସ୍ତ୍ରୀଲୋକଟିକୁ । ଯା, ହେଇ ସେ କଣଘରେ ଲୁଗା ବଦଳ ଆସ, ମୁହଁ ହାତ ବ ଧୋଇ ଆସ ।

ଏହା ଭିତରେ ବୁଲ ବୁଲ ହାତରେ ଗୋଟା ଚାବୁକ୍ ଧରିଲା ନିଦ୍ରା । କିଛିକ୍ଷଣ ପରେ ସେହି ସ୍ତ୍ରୀଲୋକଟି ପରିଷ୍କୃତ ପରିଚ୍ଛନ୍ନ ହୋଇ ପହଞ୍ଚିଲା ।

ବେଶ୍ ଆସ, ହଁ, କଣ ତମର ନାଁ ? ଆଁ, ବଡ଼େ କୁହ—ଖୁବ୍ ବଡ଼େ, ଆଁ···ରସି ! ହଁ, ତମ ପ୍ରତି କ ଅତ୍ୟାଚ୍ଚର କରିଛି ପୁରୁଷ ?

କିଛି ସମୟ କାନ ପାରି ନନ୍ଦ୍ରା ଶୁଣିଲା ସେହି ସ୍ତ୍ରୀଲୋକର କଥା । ତାହା ପରେ ହସିଉଠି କହିଲା—

···ତମର କିଛି ପିଲା ହେଲା ନେଇ ବୋଲି ତମକୁ ବାହାର କରିଦେଲେ ଘରୁ ? ଆଉ ସେଇ ପୁରୁଷ ବୁଝିଲାନାଇଁ, ଯିଏ ବାହାର କରିଦେଲା ତମକୁ, ଯିଏ ବି ଏଇ ସ୍ତ୍ରୀର ପିଲା ! ଆଚ୍ଛା, ବୁଝେଇ ଦବାକୁ ହବ । ହଁ, ତମେ କେତେଦିନ ହବ ଘରୁ ଆଇଲଣି ?···ଆଁ, ଦବର୍ଷ ! କୋଉଠି ଥେଲ ଆଜଯାଏ ? ଆଁ, ଜଣକ ଘରେ ଗୃକରଣୀ ହେଇ !···ତା ହେଲେ ତମର କିଛି ସନ୍ତାନ ହେଇଥିବ ନିଶ୍ଚୟ ?

ଚମକିଉଠି କହିଲା ନନ୍ଦ୍ରା—

ଆଁ···ଆଁ···ବଡ଼େ କୁହ, କିଛି ଦୁଃଖ କରନା ସେଥିପାଇଁ ······ତମେ ତାକୁ ମାରିଦେଇଛ । କାହିଁକି, ସେଇ ସନ୍ତାନକୁ ନେଇ ସେଇ ପୁରୁଷ ପାଖକୁ ଯାଇ କହିଲ ନେଇଁ—ତମେ ବନ୍ଧ୍ୟା ନୁହଁ ଓ, ତମେ ଦୋଗ୍ଧ୍ରୁଣୀ ହେଇଯାଇଚ । ବାଃ, ବେଶ୍ ଫିକର । ଆଚ୍ଛା, ଆସ ରସି, ତମେ ସେଇମାନଙ୍କ ବେକରେ ରସି ଦେଇଦବ ଆସ, ଆପଣାର ସନ୍ତାନକୁ ମାରିଦବାକୁ ତମକୁ ଯିଏ ନିର୍ଦ୍ଦେଶ ଦେଇଚନ୍ତି ।···ଆସ, ମୋ ସାଙ୍ଗରେ ଆସ ।

ଗୋଟିଏ ସୁନ୍ଦର ଘର ପାଖରେ ଯାଇ ପହଞ୍ଚିଲେ ସେମାନେ । ଗୋଟିଏ ପ୍ରକୋଷ୍ଠର ଦ୍ୱାର ଫିଟାଇଦେଲା ତାହାର ଜଗୁଆଳ । ସେହି ଘର ଭିତରକୁ ରସିକୁ ନେଇ ନନ୍ଦ୍ରା କହିଲା—

ହେଇ, ଏ ଯୋଡ଼ା ପୁରୁଷ ମୂର୍ତ୍ତିଗୁଡ଼ା ଏଠି ରହିଚ, ହେଇ ଏ ଗୃହିକୁ ନେଇ ସମସ୍ତଙ୍କୁ ବାଡ଼େଇ ବାଡ଼େଇ ଭାଙ୍ଗି ଦିଅ ।······

ଭାଙ୍ଗି ସାଇଲ, ବେଶ୍, ଆସ···

ନନ୍ଦ୍ରା ଅନ୍ୟ ଏକ କୋଠରି ପାଖରେ ପହଞ୍ଚିବାକ୍ଷଣି ଆପେ ଖୋଲିଗଲା ସେହି ଘରଟି ।

ହେଇ, ଏଇ ଯୋଡ଼ ମୂର୍ତ୍ତିଗୁଡ଼ାକ ଅଛି···। ହଁ, ରସି, ଏ ଗୁଡ଼ା ଖୁବ୍ ସୁନ୍ଦର, ନୁହେଁ ?···ତମେ ପ୍ରଫୁଲ୍ଲବାବୁଙ୍କୁ ଦେଖିଚ···ଓ, ମୋର ଭୁଲ୍ ହେଲା । ହଁ, ଏଇ ମୂର୍ତ୍ତି ଭିତରୁ ତମେ ଗୋଟାକୁ ନିଅ ।···ଓ···ଭାରି ସୁନ୍ଦରଟିଏ ତ ବାଛି ନେଲ ! ଆଚ୍ଛା, ଯା, ଓ ହେଇ, ସେ ପାଖର ସେ କଣଘରକୁ ଯା, ତମେ ଦିହେଁ ଏକାଠି ରୁହ । ହଁ, ଯୋଉଦିନ ମନାନ୍ତର କି ଆଉ କିଛି ହବ, ଚେଷ୍ଟା କରିବ ତାକୁ ଅପୋଷରେ ଭାଙ୍ଗି ଦେବାପାଇଁ; ବେଶୀ କିଛି ଖରାପ ହେଲେ, ଆଉ ଗୋଟିଏ ମୂର୍ତ୍ତି ଆସି ବଦଳେଇ ନବ । ଯା···

ଏହାପରେ କେନ୍ଦ୍ରସ୍ଥଳକୁ ଫେରିଆସି ନନ୍ଦ୍ରା ଦେଖିଲା, ଆଉ ଜଣେ ଯୁବତୀ ସେଠି ଛିଡ଼ାହୋଇଛି । ତା' ପାଖରେ ପହଞ୍ଚି ପହଞ୍ଚି ନନ୍ଦ୍ରା କହିଉଠିଲା—

ଘର ତ ବାସୁଚ ତମେ, ସାଜ ହେଇଚ ବି ଖୁବ୍—ଅଳଙ୍କାର ବି ଲଗେଇଚ ଅନେକ । ଲାଜ କରୁନା ଜମା । ତମେ ବାହାର କେଉଁ ଜଗତର ବୋଧହୁଏ ?

ଯୁବତୀଟି ହସି ହସି କହିବାକୁ ମୁହଁ ଉଠାଇବାରୁ ନିଦ୍ରା ଦେଖିଲା, ସେତେ ସୁସ୍ଥ ନୁହେଁ ସେହି ଯୁବତୀଟି । ନିଦ୍ରା ଭାବିଲା, ବୋଧହୁଏ ଏହି ସଂସ୍କାର-ନିବାସକୁ ସ୍ୱାସ୍ଥ୍ୟ-ନିବାସ ବୋଲି ଭାବିଛି ଏହି ଧମାକ ଯୁବତୀଟି । ଏହି ସମୟରେ କହିଉଠିଲା ସେହି ଯୁବତୀ—

ମୋ ନାଁ ମେନକା ।

ନିଦ୍ରା ହସିଉଠି ଆଶ୍ଚର୍ଯ୍ୟ ହୋଇ କହିଲା—

ତା' ହେଲେ ତମେ ସ୍ୱର୍ଗର ! ସ୍ୱର୍ଗ କଣ ଅଛି କେଉଁଠି ? ତା' ହେଲେ ମୋର ସ୍ୱର୍ଗ ସଙ୍ଗରେ ତାକୁ ମିଳେଇ ନବା ଥରେ—ତମେ ଠିକେ ତାହାର ପ୍ରଧାନ ଦେବ ମେନକା ।···ହଁ, ସ୍ୱର୍ଗବାସୀର ପୁଣି ଅଭିଯୋଗ କ'ଣ ? ଖାଲି ହସୁଚ ଯେ······କୁହ, କୁହ, ମୋର ଅନେକ କାମ···ଦେଖୁନା···ଆହୁରି କେତେ ଅଛନ୍ତି···କେତେ ବି ଆସିବେ ।···ଏତେ ଫୁର୍ତ୍ତି, ଆଉ କହିଲାବେଳକୁ ଏକବାର ଚୁନି···ତମର ସ୍ୱାସ୍ଥ୍ୟ ପରି-ବର୍ତ୍ତନ ବୋଧହୁଏ ଦରକାର ?

ଏତକ ବେଳେ ସେଇ ସୁସଜ୍ଜିତା ଯୁବତୀଟି କହିଲା—

ମୁଁ ବେଶ୍ୟା ।

"ଆଁ" କଣ କହିଲ, ଯେପରି ଶୁଣିବାକୁ ଖୁବ୍ ଉତ୍କଣ୍ଠିତା ହେଲା ନିଦ୍ରା ।

—ତମେ ବେଶ୍ୟା ! ଓ, ଆସ···ଆସ, ମୋ ପାଖକୁ ଆସ, ଆହୁରି ପାଖକୁ । ମୁଁ ଅନେକଥର ଭାବିଚି ତମମାନଙ୍କ କଥା, ତମମାନଙ୍କର ଚାଲିଚଳନ, ତମର ଜୀବିକା ନିର୍ବାହ ଦେଖିଆସିବି ବୋଲି ମୁଁ କେତେଥର ଭାବିଚି, କିନ୍ତୁ ଯାଇ ପାରିନେଇ ।··· ଆଚ୍ଛା, କାହିଁକି ତମକୁ ବେଶ୍ୟା କଲା ପୁରୁଷ—କଣ ଭ୍ରମଣର ବିଳାସପାଇଁ ?—ଆଁ, ତମେ ବାଲ୍ୟବିବାହ କରିଥିଲ, ଯୌବନ ଆସିଲା ବେଳକୁ ସ୍ୱାମୀ ଯାଇଁ ସ୍ୱର୍ଗରେ ହାଓ୍ୱା ଖାଉଚନ୍ତି—ସେଥିଲାଗି ତମେ ଖାଇଲ ନରକର ବତାସ । ବାଃ, ଚମତ୍କାର ବ୍ୟବସ୍ଥା । ସେଥିପାଇଁ ତମେ ଆଉ କା' ବଗିଚାରୁ ଫୁଲ ତୋଳିଲ, ଆଉ ତା'ର ଗନ୍ଧ ବି ରଖିଲ ତମର ଦେହରେ···ସମାଜର ନାକ ସେଥିରେ ବାଧେଇବାରୁ ସେ ତମକୁ କରିଦେଲା ବାହାର—ଏୟା ତ ?

ଏଥିରେ ସମ୍ମତି ଜଣାଇଲା ମେନକା । ତାହାପରେ ନିଦ୍ରା ତାକୁ କହିବାକୁ ଲାଗିଲା—

ଆସ ମୋ ସାଙ୍ଗରେ ମେନକା, ହଁ, ତା' ଆଗରୁ ଏଇ ପୋଷାକଟା ତମର ବଦଳେଇ ଦିଅ । ଗହଣାଗୁଡ଼ା ଖୋଲିପକା । ଏ ସବୁ ଶିକାର କରିବାର ପୋଷାକ । ଭଦ୍ର, ସଭ୍ୟଜଗତ ପାଇଁ ଏ ସବୁର ଆବଶ୍ୟକତା ନାହିଁ । ବେଶିକଥା, ତମର ପ୍ରକୃତ ସୌନ୍ଦର୍ଯ୍ୟ, ଆଉ ତମର ସ୍ୱଚ୍ଛମନକୁ ତାହା ଖୁବ୍ ଖରାପ କରୁଥିବ । ତଥାପି ତମେ

ପରିଷ୍କାର ହୁଅ, ପରିଚ୍ଛନ୍ନ ହୁଅ, ସୁନ୍ଦର ହୁଅ, କିନ୍ତୁ ସୁନ୍ଦର ନାମରେ ନିଜକୁ ଅଳଙ୍କାର ଓ ବିଳାସର ଯାଦୁଘର ତିଆରି କରିବା ବୃଥିନା । ହଁ, ଖୋଲି ସାରିଲ,—ଆସ, ହଁ, ତମର ଘୁହାଁଣିଟା ବି ବଦଳେଇ ଦିଅ—ଏମିତି ଛନ ଛନ କନ କନ ହଉଚ କାହିଁକି—ସୁପ୍ତସବଳ ଆଖିରେ ଅନାଅ ପୃଥିବୀକୁ ।

କିଛିଦୂର ଯାଇ ସେମାନେ ଗୋଟିଏ ଖ୍ୟିଷଣ କୋଠରୀରେ ପହଞ୍ଚିଲେ । ତାହା ଭିତରେ ଥିବା ମୂର୍ତ୍ତିଗୁଡ଼ିକ ଆହୁରି ଖ୍ୟିଷଣ, ସମସ୍ତେ ଯେପରି ବିଭିନ୍ନ ଷଡ଼ଯନ୍ତ୍ରରେ ବ୍ୟସ୍ତ, ସମସ୍ତେ ଯେପରି ମଦ୍ୟପ—ଉପରେ ସେମାନଙ୍କର ଶୁଚିତାର ଆଡ଼ମ୍ବର । ସେଠାରେ ପହଞ୍ଚି ନିଦ୍ରା କହିଲି—

ଏଇମାନଙ୍କର ଷଡ଼ଯନ୍ତ୍ରରେ ସମାଜ ଆମର ଧ୍ୱଂସ ହେଇଚ, ତମର ଅଧଃପତନପାଇଁ ଏମାନେ ସମସ୍ତେ ଦାୟୀ—ଏମାନଙ୍କର ସବୁ ଗୃହଁ ବଡ଼ ହିଂସା ଯୁବତୀର ରକ୍ତରେ । ହେଇ, ଇଏ ହରିଚନ୍ଦ୍ର ମନୁ, ଏ ପରାଶର, ଏ ସମାଜପତି, ଇଏ ପୁରୋହିତ —ଆଉ ଏମାନେ ଭଣ୍ଡ ଧର୍ମଧ୍ୱଜୀର ଦଳ, ଏମାନେ ସମସ୍ତେ ତମର ଶତ୍ରୁ । ତମେ ତମର ଶତ୍ରୁକୁ କି ଶାସ୍ତି ଦବ ମେନକା ?···କୁହ ?

ଥରି ଥରି କହିଲି ମେନକା—

ମତେ ଡରମାଡୁଚି ଏମାନଙ୍କୁ ଦେଖି···ମୁଁ କିଛି ଭାବି ପାରୁନେଇ···

ହସିଉଠିଲି ନିଦ୍ରା ।

ଡରିବାର କିଛି ନାହିଁ ମେନକା । ···ଏମାନଙ୍କର ଶାସ୍ତି ହେଉଚି ମୃତ୍ୟୁ । କିନ୍ତୁ ସେମାନେ ବଡ଼ ଭାଗ୍ୟବାନ ଯେ, ତମଭଳି ସୁନ୍ଦରୀ ହାତରେ ସେମାନେ ମରିବେ ।

ଏ କଥାରେ ଶିଉେଇ ଉଠିଲି ମେନକା । ତାହାର ହାତକୁ ଧରି ପକାଇ ତାକୁ ସ୍ତୁକ୍ ଦେଖେଇ କହିଲି ନିଦ୍ରା—

ହେଇ, ଏଠି ପିସ୍ତଲ୍ ଅଛି ନିଅ, ତାଳ ତାଙ୍କର ଉପରେ, ଏଇ ଦିଅସିଲ୍ ନିଅ ଏଠି ଥୁଆ ହୋଇଚି ।···ମାରି ଦିଅସିଲ ।···ମେନକା, ଦିଅସିଲ୍ ମାରି ପାରୁନା, କୋଟି କୋଟି ଯୁବତୀର ଜୀବନ ରହିବ ଏହି ରାକ୍ଷସମାନଙ୍କୁ ମାରିଦେଲେ—ଏହା ମନେକରିପାରୁନା ତମେ ? ମାରି ଦିଅସିଲ୍, ମୁଁ କହୁଚି ମାରି ।···ବାସ୍, ଧନ୍ୟବାଦ, ସାବାସ୍—ଭଉଣୀ ! ଯୁଗ ଯୁଗର ଅତ୍ୟାଚାର ଆଜି ମୁହୂର୍ତ୍ତିକରେ ଶେଷ ପାଇଲି ।

ଦାବାନଳପରି ଜଳିଉଠିଲି ଅଗ୍ନି । ହଠାତ୍ ମେନକାର ପରିଧେୟ ଶାଢ଼ୀକି ଝିଙ୍କିନେଇ, ତାକୁ ନଗ୍ନକରି, ସେହି ଶାଢ଼ୀକୁ ସେହି ହୁତାଶନ ଉପରକୁ ଫିଙ୍ଗିଦେଲି ନିଦ୍ରା । ଏହାପରେ ସେହି ଘରର ଦରଜା ବନ୍ଦ କରି ମେନକାକୁ ଆଉ ଗୋଟିଏ ଘରକୁ ନେଇ ତାହାକୁ ଭିନ୍ନଭାବରେ ସଜ୍ଜିତ କରି ଫେରି ଆସିଲି ନିଦ୍ରା ତାହାର ସଙ୍ଗରେ ।

ଆଚ୍ଛା ଭଉଣୀ, ମୁଁ ତମକୁ ବର୍ତ୍ତମାନ ଦୁଇଟି କଥା ପଚାରିବି, ତମେ ଦିଅ ତାର ଉତ୍ତର ।···ହଁ କ'ଣ ତମର ନାଁ ?

ମେନକା ।

ତମର ପେଶା କଣ ଥିଲା ?

ମେନକା ଭାବିବାକୁ ମନେ କଲା ତାର ବ୍ୟବସାୟ, କିନ୍ତୁ ସେ କିଛି ସ୍ମରଣ କରି ପାରିଲା ନାହିଁ— ନିଷ୍ପଳ ଆଖିରେ ନିଦ୍ରାକୁ ଅନାଇ ରହିଲା । ହସି ହସି କହିଲା ନିଦ୍ରା —

ଯା, ବର୍ତ୍ତମାନ ତମେ ଯା — ତମେ ମୁକ୍ତ ।

କୁଆଡ଼େ ଯିବି ?

ଏତେ ସାହସ ଏତେ ବଳ ପାଇ ମଧ୍ୟ ତମେ ପଥ ପାଉନା ? ହେଇ ସେଠି ଯୋଉ ଯୁବତୀଯାକ ଘୋଡ଼ାରେ ଜୀନ୍ ବାଂଧୁଛନ୍ତି ଯିବେ ବୋଲି ଅମୃତର ସନ୍ଧାନ କରିବାକୁ, ଯା, ତମେ ତାଙ୍କର ସାଙ୍ଗରେ ମିଶିଯା' ।

ପୁଣି ଫେରିଆସିଲା ନିଦ୍ରା କେନ୍ଦ୍ରକୁ । ତାହାର ଭାଇ ଜାଗରଣ ତା' ପାଖରେ ପହଞ୍ଚି କହିଲା —

ଅପା, ଗଫୁର୍ ପଠେଇଚି ତାର ଭଉଣୀକି । ସେ ଆସୁଚି ଅଥଚ ଆସି ପାରୁନେଇଁ । ତୁ ତାକୁ ନେଇଆସିବୁ ଯାଆ ।

ହସି ହସି ଚାଲିଗଲା ନିଦ୍ରା । ଯାଇଁ ଗୋଟିଏ ଅବଗୁଣ୍ଠନବତୀ ସୁନ୍ଦରୀ ଯୁବତୀ ପାଖରେ ପହଞ୍ଚି, ପଲକରେ ତାହାର ଗୁଣ୍ଠନଟା ଓଟାରିଦେଇ କହିଲା —

ଆରେ···ତାମିନା ! ତୁ ପୁଣି ଲାଜ କରୁଚୁ ? ସେଦିନ କେତେ କଥା ବୁଝେଇଥିଲି ତମ ଘରେ ।···ଅନେକ ଆଗରୁ ଆସିବା ତୋର ଉଚିତ୍ ଥିଲା । ଆଚ୍ଛା···ଆ···

ତାମିନାକୁ ସଙ୍ଗରେ ନେଇ ନିଦ୍ରା ଆଉ ଗୋଟିଏ କୋଠରୀକି ଚାଲିଗଲା । ସେ କୋଠରୀଟି ଯେପରି ଗୋଟିଏ ଚିତ୍ରଶାଳା । ସେଥିରେ ଲକ୍ଷ୍ମୀବାଈ, ଦୁର୍ଗାବତୀ, ବ୍ରଜସୁନ୍ଦରୀ, ସାରନ୍ଧା, ପଦ୍ମିନୀ, ସଂଯୁକ୍ତା, ଚାନ୍ଦବିବୀ, ରେଜିୟା ଏବଂ ଶୁକଦେବୀ ପ୍ରଭୃତିଙ୍କର ପ୍ରତିଛବି ପୂର୍ଣ୍ଣ ହୋଇଛି । ଗୋଟିଏ ଛବିପାଖକୁ ଯାଇ ନିଦ୍ରା ତାମିନାକୁ କହିଲା —

ହେଇ ଦେଖ୍ ତାମିନା, ଏଇ ସୁଲତାନ ରେଜିୟାର୍ — ସିଏ ଚାନ୍ଦବିବୀ । କେମିତି ଘୋଡ଼ାରେ ଛୁଟୁଛନ୍ତି ଦେଖ୍ । ହେଇ ରେଜିୟାର ଗୋଟା ହାତରେ ଗୋଟା ଶିକାରୀ ଛଞ୍ଚାଣ, ଯୋଉ ହାତରେ ସେ ଘୋଡ଼ାର ଲଗାମ୍ ଧରିଛି—ସେଥିରେ ଧରିଛି ଗୋଟା ଭଲ୍ଲ । ତୋ ପେଇଁ ସେମିତି ମୁଁ ଗୋଟା କାଇଞ୍ଚିଆ ଘୋଡ଼ା ଆଣିଚି—ଆଉ ହେଇ ଦେଖ ଏ ଗୋଟା ଭଲ୍ଲ — କେଡ଼େ ଚକ ଚକ୍,···ଆଁ, ଏମିତି ଚମକି ପଡ଼ୁଚୁ କାହିଁକି ! ଧରିଲୁ···ଧର,—ଜୋର୍‌ରେ ଧର ।···ହଁ, ଠିକ୍ ହେଇଚି,···ବାଃ ତୁ ତ ଗୋଟା ରେଜିୟା ।···ହେଇ ଏଠି ଯୋଉ,···ହେଇ ଏଇ ତେବରିହାଣୀ — ଯୋଉ

ସ୍ୱାର୍ଥସେବୀ—ସୁବିଧାବାଦୀର ଦଳ, ସେଠି ଗୋଷ୍ଠୀ ସଂକୀର୍ଣ୍ଣତାର ପତାକା ଉଡ଼େଇ ଆସୁ ନା'ନ୍ତୁ···ସେମାନେ କହୁଚନ୍ତି ନିଦ୍ରା ତାମିନା ସାଙ୍ଗରେ ଏକାଠି ବସିପାରେନା । ତୁ କହିଲୁ, ତମର ଘରପାଖରେ ଆମର ଘର, ଗଫୁର୍ ଭାଇ ମତେ କେତେ ଭଲପାଏ, ଆମେ ଏକାଠି ବସି ପାରିବୁ ନେଇଁ ? କଣ କହୁଚୁ, ତୁ ମୁଁ ଏକାଠି ହବା ନେଇ ? ଆଉ ଜାଗରଣ ଡାକଲେ ତୁ ଯିବୁ ନେଇଁ ଆମ ଘରକୁ ?

ହଁ ।—ମୁଣ୍ଡ ହଲାଇ କହିଲା ତାମିନା ।

ତେବେ ଫୋପାଡ଼୍ ସେଇ ସଂକୀର୍ଣ୍ଣତାର ପତାକା ଉପରକୁ ତୋର ଭଲ୍ଲ ।

ତା'ପରେ ଘୋଡ଼ାଚଢ଼ି ଶିଖି ସାରିଲେ, ତୁ ଘଉଡ଼େଇ ଦେବୁ ସେହି ସ୍ୱାର୍ଥସେବୀମାନଙ୍କୁ ।···ବାଃ, ଠିକ୍ ବାଜିଚି ତୋର ଭଲ୍ଲ···ପତକା ଏକ୍‌ବାରି ଦୁଖଣ୍ଡ ହେଇଚି । ମୋର ତାମିନାର ଜୟ ହେଉ !

ତାପରେ ତାମିନାକୁ କୋଳାଗତ କରି କହିଲା ନିଦ୍ରା—

ବାଃ, ତୁ କାହିଁକି ଆଜଯାଏ ଥିଲୁ ଘର କଣରେ ! ତୁ ଏଥର ମୋର ପାଖେ ପାଖେ ରହିବୁ······

ଯା, ତୁ ଏଥର ଯାଇ ପାଠ ପଢ଼୍ । ଓ ହେଇ ସେଠି ମାଷ୍ଟ୍ରାଣୀ କେତେ ଝିଅଙ୍କୁ ପଢ଼ଉଚି, ଯା'ଯେଇଠିକି ।

ନିଦ୍ରା କେନ୍ଦ୍ରସ୍ଥଳକୁ ଫେରିବା ଆଗରୁ ଯେଉଁ ଯୁବତୀଟିକୁ ଜାଗରଣ ଆଣି ସେଠାରେ ଛିଡ଼ା କରିଦେଇ ଯାଇଥିଲା, ନିଦ୍ରା ସେଠାରେ ପହଞ୍ଚିଲାକ୍ଷଣି ସେ ସଙ୍କୁଚିତା ହୋଇ ଘୁଞ୍ଚିଗଲା ଦୂରକୁ । ତାହାର ହାତକୁ ଧରିପକାଇ କହିଲା ନିଦ୍ରା—

କଣ ତମର ନାଁ ?

ସୁନେଇ ।

ତାହା ପରେ ନିଦ୍ରା ଗାଇଉଠିଲା—

ନଈରେ କଙ୍କଡ଼ା ଗାତ

କୋଚିଆ ବୋଲି ମୁଁ ଧରି ପକେଇଲି ନୂଆସମଦୁଣୀ ହାତ···

କିନ୍ତୁ ସୁନ୍ଦର ଆଉ ପବିତ୍ର ବୋଲି ମୁଁ ଏଇକ୍ଷଣି ଧରି ପକେଇଲି ମୋର ସୁନେଇର ହାତ ।···ହୋତୃଶର୍ମାର ହୃତାହୁତି ଦେବାର ସ୍ରୁବ ଧରିବା ହାତଠାରୁ ତମ ହାତ ପବିତ୍ର, ସୁନେଇ ! କେତେ ହୋତୃଶର୍ମାଙ୍କୁ ତମେ କରିଚ ସୁନ୍ଦର, ଦୀର୍ଘାୟୁ, କିନ୍ତୁ କେଇଜଣ ହୋତୃଶର୍ମା କରିଚନ୍ତି ତମର ଭଲ ? ତମେ ଜନମ୍ମି ଭଲ ଆମର କରିଛ କେବଳ ଉପକାର । ଆସ, ତମେ ହାଡ଼ିଘର ଝିଅ ବୋଲି ଏମିତି ଡରି ଯାଉଛ କାହିଁକି ? ଏଠି ସେ ଭୟ ନାହିଁ ।···ହଁ, ମୁଁ ତମର ନା ଦେଲି ସୁନେଲି । ତମେ ଆମ ଜୀବନରେ ଦେଇଚ ସୁନାର ରଙ୍ଗ ।···ବାଃ, ତମକୁ ଏମିତି ପରିଷ୍କାର କରିଦେଲୁଁ

କଏ ? ଜାଗରଣ ? ସେଇ ଜାଗରଣ ତମର ଭାଇ । ଆସ, ମୁଁ ତମକୁ ସୁନ୍ଦର କରଦେବ ଏଥରକ !···ତମେ କେତେଦିନରୁ ଆମକୁ ସେବା କରୁଚ—ଆଉ ଆମେ ତମକୁ କରଚୁ କେବଳ ଘୃଣା । ସୁନେଲ, ତମର ମନ ସବୁ କଣ ହୋଇଯାଉ ନ ଥିବ—ଯେତେବେଳେ ଆମେ ଠାକୁର ଘରକୁ ଦୌଡ଼ୁ, ଯଜ୍ଞ ଦେଖି ବୁଲୁ ?···ତମ ହାତରେ ସେଷ୍ଟ ଜାଗାଗୁଡ଼ାକ ପ୍ରଥମେ ସଫା କରନେଇ ଶେଷକୁ ଆମେ କରୁ ତମକୁ ବହିଷ୍କାର ! ନିଶ୍ଚେ ତମ ମନ ଭାର ଖରାପ ହଉଥିବ !···ଆଚ୍ଛା ତମେ ଆଗେ କୋଉଠିକ ଯିବ କହିଲ ସୁନେଲ ?···ମନ୍ଦର ଭିତରକୁ ଯିବ ?

ମୁଣ୍ଡ ହଲେଇ ସୁନେଲ କହିଲ, ହଁ ।

ଆଚ୍ଛା ଆସ···

ସେମାନେ ଯାଇଁ ମନ୍ଦର ନାମକ ଗୋଟିଏ ଯାଦୁଘରେ ପହଞ୍ଚିଲେ । ତା'ଭିତରେ ଦୁହେଁ ବୁଲୁ ବୁଲୁ ନିଦ୍ରା ବୁଝାଇବାକୁ ଲଗିଲ ସୁନେଲକୁ···

ଏଇ ମନ୍ଦର ଭିତରକୁ ଆସି ତମର କଛୁ ଉନ୍ନତ ହବ ନେଇଁ, ସୁନେଲ । ଆମର ବ କଛୁ ଉନ୍ନତ ହେଇନ । ଦେଖୁନା ଆମେ ଖାଲ ସମସ୍ତଙ୍କୁ ଘୃଣା କରବାକୁ ଶିଖିଚୁ··· । ଆମେ ଆସି ଶୁଖି ଶୁଖି ସଳତା ହେଲୁଣି···ଏଥିରେ କଣ ଆମର ଉନ୍ନତ ହଉଚ ବୋଲ ଆମେ କହିବା ?···ହେଇ ଦେଖ, ସେଠି ଯୋଉ ବଡ଼େଇଛି ଆମର କେନ୍ଦ୍ରଘର କବାଟ ତିଆର କରୁନେଇଁ—ଆଠଦିନ ତଳେ ସେ ଏସ୍ତାକୁ କାଟି ଏଠି ଠାକୁର କର ବସେଇଲ, ଆଉ ତା'ପରେ କେତେ ଲୋକ ଆସି ତାକୁ ମୁଣ୍ଡିଆ ମାରବାକୁ ଲଗିଲେ । ମୁଁ ଏସବୁ ଏଠି ବନ୍ଦ କର ଦେଇଚ । ତମେ କେମିତି ଉନ୍ନତ ହବ, କେମିତି ଶିକ୍ଷିତ—ସଭ୍ୟ ହବ, ତା' ଏଇ ମନ୍ଦରକୁ ଆସି ପାଇବ ନେଇଁ । କେତେଗୁଡ଼ା ବେକାର ଆଉ ନିଶାଖୋର ଲୋକଙ୍କୁ ପୋଷିବାକୁ ଏଠିକ ସମସ୍ତେ ଭୁଲ୍‌ରେ ପଡ଼ ଆସନ୍ତି ଖାଲ ।···ହେଇ ଦେଖ ସୁନେଲ, ସେଠି ଯୋଉ ଲୋକଟା ମଠାଲୁଗା ପିନ୍ଧି ବେକରେ ମୋଟ ମୋଟ ମାଳ ପକେଇ ଖପରାକୁ ଡେଇଁ ଡେଇଁ ଯାଉନେଇଁ, ସେ ମନ୍ଦରରୁ ଫେରଲ । ସେ କାହିଁକ ଖପରକୁ ଡେଇଁ ଡେଇଁ ଯାଉଚ କହିଲ—ସେଇ ଖପରାକୁ ତମେ ଛୁଇଁଚ ବୋଲ । ତମ ଯୋଗୁ ସିଏ ଅନେକ ଉପକାର ପାଇଚ, ଯାହାର ମା'—ଭଉଣୀ ବ ତମଭଳ ଉପକାର କରପାରବେ ନେଇଁ ତାହାର, ସେ ପୁଣି ତମ ଛୁଆଁ ଖପରଟିକକୁ ବ କରୁଚ ଘୃଣା !···ହେଇ ଦେଖ; ରାସ୍ତା କଡ଼ରେ ସେଠି ଗୋଟିଏ ଭିକାରୀ ଛୁଆଟା ଅଖିଆ ଅପିଆ ପଡ଼ଚ, ତାକୁ ଦେଖି ସିଏ ଆହୁର ଆହୁର ଡେଇଁ ଚାଲଯାଉଚ ଜୋର୍‌ରେ ।···ତମେ ଏଠି କଣ କରନ୍ତ କହିଲ ?

କଛୁ ନ ହେଲେ ସେଇ ଛୁଆଟା ମୁହଁରେ ଟୋପା ପାଣି ଦେଇଥାନ୍ତ···

ନାଁ, ଏଠିକ ଆସିଲେ ତା' କର ହବନେଇଁ । ତମେ ଚାଲ ସେଇଠିକ ଯିବ, ଯୋଉଠି ସମସ୍ତଙ୍କ ଦେହରେ ବୋଳଦବ ତମେ ଚନ୍ଦନ—ଯୋଉଠି ତମେ ସମସ୍ତ ସେବକାମାନଙ୍କୁ ଭଲ ଶିକ୍ଷା ଦେଇ ପାରବ—ସେମାନଙ୍କର ଭୁଲ୍ ବ ଧର ପାରବ ତମେ ।···ନାଁ ତମକୁ ଆଉ ସେବା କରବାକୁ ହଆଯିବ ନେଇଁ ।···ହେଇ

ସେଇଠିକି ଯା,···ସେଠି ଦେଖେ ଯୁବକ ଆଉ ଯୁବତୀ ବସି ଅଭିଯାନର ଉଦ୍ଦର୍ଶୀଲ କରୁଚନ୍ତି,···ଯା, ତମେ ସେଠି ତାଙ୍କ ସାଙ୍ଗରେ ନାଚ—ଆଉ ଇଚ୍ଛା ହେଲେ ତମ ମନ ମୁତାବକ ଗୋଟା ପାର୍ଟ ନେବ ।···ହଁ, ସୁନେଲ, ଚଣ୍ଡାଳକାର ପାର୍ଟ ଆଉଗୋଟା ଝିଅ ନେଇଚ, କଣ ତାର ଭୁଲ୍ ହଉଚ ତମେ ସେଠି ଦେଖିବ···ଯେମିତି ଶିଖେଇଦେବ ତାକୁ ଖାଣ୍ଟି ଚଣ୍ଡାଳକାର ଅଭିନୟ, ତାହାର ହାତରେ ଦେବ ଗୋଟା ମସ୍ତବଡ଼ ଝାଡ଼ୁ, ଯେମିତି ସବୁ ଅଳଆଗୁଡ଼ାକ କରିଦେବ ସିଏ ଖୁବ୍ ସଫା । ଯା'···

ସୁନେଲକ ଗୁଡ଼ ନିଦ୍ରା ଫେରଆସି ଗୋଟିଏ ଅସ୍ଥିମୟୀ ବାଳିକାକୁ ଦେଖି ଚମକି ପଡ଼ିଲା । ତାହାର ଚାଲିବାପାଇଁ ମଧ୍ୟ ଶକ୍ତି ନାହିଁ । ତାହାକୁ ନିଜର କାଖରେ ବସାଇ ଗୋଟିଏ ସୁନ୍ଦର ଘରକୁ ଚାଲିଗଲା ନିଦ୍ରା । ସେହି ବାଳିକାଟିକୁ ଗୋଟିଏ ନରମ ଶେଯରେ ଶୋଇଦେଇ ସେ କହିଲା—

ତମକୁ କିଛି କରିବାକୁ ପଡ଼ିବନେଇଁ—ତମର କାମସବୁ ମୁଁ ଏଇକ୍ଷିଣି କରୁଚ, ତମେ ଖାଲି ଦେଖ···। ଆଚ୍ଛା, ତମେ ଆଗେ ଖା,···ଅଳ୍ପ ଅଳ୍ପ ଖା, କାଲିକି ଟିକେ ବେଶୀକରି ଖାଇବ ।

ଏହାକହି ଗୋଟିଏ ସୁନ୍ଦର ଥାଳରେ ଅନେକଗୁଡ଼ିଏ ସୁସ୍ୱାଦୁ ଖାଦ୍ୟ ଆଣି ଥୋଇଦେଲା ସେହି ଝିଅଟି ପାଖରେ ନିଦ୍ରା । ସେଥିରୁ କାହାକୁ ଆଗେ ଖାଇବ, ଆଉ କେମିତି ଖାଇବ କିଛି ଠିକ କରି ପାରିଲା ନାହିଁ ସେହି ବାଳିକାଟି । ଏହା ଦେଖି ଗୋଟିଏ କମଳା ଛଡ଼େଇଦେଇ ନିଦ୍ରା ତାର ପାଟିରେ ଦେଇ କହିଲା—

ଏହାକୁ ଆଗେ ଖା'···ତମର ପାଟି ସରସି ଯାଉ···

କମଳାର କେତୋଟି କୋଳା ଗୋଟିବାଇ ଗୋଟିବାଇ ସେହି ଝିଅଟି ନିଜ ହାତରେ ଧରିବାକୁ ଲାଗିଲା ଆଉ କେତେକ ଖାଦ୍ୟ । ତାହାପରେ ସେହି କମଳାଚୋପା ଗୁଡ଼ିକୁ ନେଇ ନିଦ୍ରା କେତୋଟି ସୁନ୍ଦରୀ ନାରୀମୂର୍ତ୍ତିକୁ କହିଲା—

ନିଅ, ତମେମାନେ ଖାଆ ଏଯାକୁ, ଏତକ ବି ତମେ ଦେଇ ନ ଥିଲ କାହାକୁ ।

ସେହି ସ୍ତ୍ରୀ ମୂର୍ତ୍ତିମାନଙ୍କ ଦେହରେ ନାନାପ୍ରକାର ରତ୍ନାଳଙ୍କାର । ପରିଧେୟ ତାଙ୍କର ଆଖିଝଲସା ଶାଢ଼ୀ—ଦୃଷ୍ଟିକଟୂ ପୃଥୁଳତା ତାଙ୍କର ଦେହରେ । ପୂର୍ବେ ସେହି ନାରୀମାନଙ୍କର ନାମ ଥିଲା—ନିତମ୍ବିନୀ, ଶିରୀଷକୋମଳା, ସୁଭ୍ରୂ, ଘନଜଘନା, ଚମ୍ପା ଗୋରୀ, ତଉଲ୍ଲତା, ପୀନବକ୍ଷା, ସୁମଧ୍ୟମା, କଳକଣ୍ଠୀ, ରମ୍ଭୋରୁ, ତନ୍ୱୀ, କେଳପ୍ରବୀଣା, ଗଜେନ୍ଦ୍ରଗମନା, ସାରସାକ୍ଷୀ, ମିନାକ୍ଷୀ ପ୍ରଭୃତି । ସେମାନେ ଚାଲୁଥିଲେ ଅସଂଖ୍ୟ କବି-ଗଣର ଅଶେଷ କାବ୍ୟକବିତା ଉପରେ । କିନ୍ତୁ ବହୁକାଳ ଧରି ସୁଯୋଗ ଏବଂ ସୌଭା-ଗ୍ୟର ଗଙ୍ଗା-ଯମୁନା-ସଙ୍ଗମରେ ସେମାନେ ଲୀଳା କରି କରି ସେମାନଙ୍କର ଶରୀରର କ୍ରମବର୍ଦ୍ଧମାନତା ବୃଦ୍ଧି ପାଇଛି ବର୍ତ୍ତମାନ ବହୁଗୁଣିତ ହୋଇ । ସମସ୍ତ କାବ୍ୟ-କବିତାର ସମାଧି ରଚି, ସେମାନଙ୍କର ନିଜ ନିଜର ଦେହରେ ବଗତର ସେହି କବିମାନଙ୍କୁ ସେମାନେ ଆଜି କରୁଚନ୍ତି ନିର୍ମମ ଉପହାସ । ତୁଚ୍ଛ କବି-ବର୍ଣ୍ଣନାକୁ ରକ୍ଷାକରିବା ପରି-

ବର୍ତ୍ତେ ସେମାନେ ଆଜ ସୁଖ ପାଉଚନ୍ତି ଲୁଟି କରିବାପାଇଁ ସମସ୍ତ ମେଦ ଓ ଚର୍ବିର ଗନ୍ତାଘର ।

କିଛିସମୟ ପରେ ନିଦ୍ରା ସେହି ବାଳକାଟିକୁ ବୁଝାଇବାକୁ ଯାଇ କହିଲା—

ତମ ହାତରେ ରହିଲା ଏମାନଙ୍କର ପଡ଼ି । ଏମାନେ କେତେ ଖାଇବେ ତାହା ତମେ ଠିକ୍ କରିବ—କିନ୍ତୁ ତମକୁ ସେମାନେ ଉପାସ ରଖିଥିଲେ ବୋଲି ଆମେ ଆଉ ଉପାସ ରଖିବାନେଇଁ ତାଙ୍କୁ ······ଅଶେଷ ଦୁଃଖ ଭିତରେ ମଧ୍ୟ ସେମାନଙ୍କ ଭଳି ଆମର ମନୁଷ୍ୟତା ଲୋପ ପାଇନେଇଁ । ଆମର ଦେହ ଭିତରେ ଏପର୍ଯ୍ୟନ୍ତ ଅଛି ଆମର ହୃଦୟ ।···ହିଁ, ତମେ ତାଙ୍କୁ ଖାଇବାକୁ ଦେଇ ତାଙ୍କୁ ଗହମ ପେଶିବାକୁ ଦିବ···ଡିଙ୍କି କୁଟିବାକୁ ଦିବ—ଖୁବ୍ ମୋଟା ହୋଇଯାଇଚି ସେମାନଙ୍କର ଦେହ···ଖୁବ୍ ଅସ୍ୱାଭାବିକ ଜୀବଗୁଡ଼ା, ସେମାନେ ଯିମିତି ଏଇ ସମାଜ ଭିତରେ ତାଙ୍କୁ ଆମରି ସାଙ୍ଗରେ କରିଦିଅ ସମାନ ।

ତାହାପରେ ସେହି ନାରୀମାନଙ୍କୁ ନିରାଭରଣା କରି, ସେମାନଙ୍କର ଅଳଙ୍କାରକୁ ସ୍ତୂପୀକୃତ କରି ଜମାକଲା ନିଦ୍ରା । ତାହାପରେ ଚିତ୍କାର କରି କହିଉଠିଲା—

ଏହି ଗୋଟିଏ ଗୋଟିଏ ଅଳଙ୍କାରରେ କୋଟି କୋଟି, ଅର୍ବୁଦ ଅର୍ବୁଦ ଧାନ ଆଉ ଗହମ ଜମା ହୋଇ ରହିଚି । ଏମାନେ ଆମର ଅନେକ ଖାଦ୍ୟକୁ ପେଟରେ ଭର୍ତ୍ତିକରି ନିଜର ଦେହରେ ବି ଜମା କରୁଛନ୍ତି ହଜାର ହଜାର ଲୋକଙ୍କର ଖାଦ୍ୟ । ଆମ ସମସ୍ତଙ୍କର ରକ୍ତରେ ମୋଟା ହୋଇ ଶେଷରେ ଏମାନେ ଆମକୁ କରୁଚନ୍ତି ଘୃଣା··· । ଦରଓ୍ୟାନ୍ !

ନିଦ୍ରାର ଡାକ ଶୁଣି ଗୋଟିଏ ବଳିଷ୍ଠ ପୁରୁଷ ଆସି ସେଠାରେ ପହଞ୍ଚିଲା । ତାହାକୁ ନିର୍ଦ୍ଦେଶ କରି ନିଦ୍ରା କହିଲା—

ନେଇ ଯା, ଏଇ ଗହଣାଗୁଡ଼ା । ବ୍ୟାଙ୍କ୍‌ରେ ଜମା କରିଦେଇ ତାହାର ଧନରେ ଗରିବ ଲୋକମାନଙ୍କପାଇଁ ସୁନ୍ଦର ସୁନ୍ଦର ଘର ତିଆରି କରିଦବାକୁ ମେନେଜରଙ୍କୁ କହିଦିଅ······

ଶେଷରେ ଫେରିଆସିଲା ନିଦ୍ରା କେନ୍ଦ୍ରସ୍ଥଳକୁ । କେନ୍ଦ୍ରର ଗୋଟିଏ ପାଖକୁ ଗୋଟିଏ ଅଲୋକିତ ବେଦୀକା—ସେହି ବେଦୀ ଉପରେ ସ୍ତୂପୀକୃତ ଅସଂଖ୍ୟ ପୁଷ୍ପ—ନାନା ଯୁବକ-ଯୁବତୀଙ୍କର ଅର୍ଘ୍ୟ ସେଥିରେ । ସେହି ପୁଷ୍ପିଳ-ବେଦିକା ଉପରେ ଛିଡ଼ା ହୋଇ-ପଡିଲା ନିଦ୍ରା । ତାହାପରେ ସେ ବକ୍ତୃତା ଦେବା ଭଙ୍ଗୀରେ କହିବାକୁ ଲାଗିଲା—

ମୁକ୍ତି-ସନ୍ଧାନୀ ଯୁବଶକ୍ତିମାନେ, ତମେମାନେ ଆଉ ପଛକୁ ଚାହିଁନା ଜମା । ସେହି ପଛରେ ଜମା ହୋଇଚି ମ୍ଳେଚ୍ଛ ଯାଯାବରର ଉଚ୍ଛିଷ୍ଟ ।···ଯାହାକୁ ଇତିହାସ କହୁଛି ଆର୍ଯ୍ୟ ବୋଲି—ସେହିମାନଙ୍କୁ ମୁଁ କହୁଛି ଆଜି ମ୍ଳେଚ୍ଛ । ଯେପରି ଆଜି ବି ଇତିହାସ କହୁଚି କେତେକ ବିଦେଶୀମାନଙ୍କୁ ମ୍ଳେଚ୍ଛ । ସେହି ପଛରେ ଜମା ହୋଇ ରହିଛି ସେହି ମ୍ଳେଚ୍ଛ ଯାଯାବରମାନଙ୍କର ଆଗ୍ରାସୀତାର ଉଚ୍ଛିଷ୍ଟ । କେହି ଆଉ ଭ୍ରୂକ୍ଷେପ କରନା ତାହା ପ୍ରତି । ଯୁଗ ଯୁଗ ଧରି ତାହା କେବଳ ଆମକୁ ମ୍ଳେଚ୍ଛତ୍ୱ ହିଁ ଦାନ କରିଛି । ଆମର ନାହିଁ ଇତିହାସ—ଆମର ନାହିଁ ଅତୀତ । କୌଣସି ଇତିହାସ ଆମର ନୁହେଁ—ଯେଉଁମାନେ ନିଶ୍ଚିହ୍ନ ହୋଇଯାଇଛନ୍ତି ତାଙ୍କର । ସେହି ମୃତମାନଙ୍କର ସେହି ମୃତ ଇତିହାସରେ ଆଜି ଲାଭ କଣ ? ଯେଉଁମାନେ ରକ୍ଷା କରିପାରି ନାହାନ୍ତି ନିଜକୁ, ସେଥିରେ ସେହିମାନଙ୍କର କଥା ଲେଖାହୋଇଚି, ସେହି ମୃତ କିଂକର୍ତ୍ତବ୍ୟବିମୂଢ଼ମାନଙ୍କର କାହାଣୀରେ ଆଜି ଆମର ଆବଶ୍ୟକ ନାହିଁ କିଛି । ଆମେ କେବଳ ଏହି ଯୁଗର ଯୁବଶକ୍ତି, ଏହି ଯୁଗର ଯୁବକ—ଏହି ଯୁଗ, ଏହିକ୍ଷଣର ଯାତ୍ରୀ···ଆମେ କେବଳ ଯିବା ଆଗକୁ । ଆମେ କାଟିବା ସମସ୍ତ ଅଂଧକାର । ଆମେ ଏହି ଧରଣୀକି କରିବା ସ୍ୱର୍ଗ । ମୁଠାରେ ମୁଠାରେ ବାଣ୍ଟିଦେବା ଅମୃତ । ପଥଘାଟରେ ବାଣ୍ଟିଦେବା ଉଜ୍ଜ୍ୱଳ ଜୀବନ । କଳହାସ୍ୟରେ ଲେଖିଦେବା ନୂତନର ସୃଷ୍ଟି—ଦେହ ଦେହରେ ଆମର ନୃତ୍ୟ କରିବ ଆନନ୍ଦର ମହୋଜ୍ଜ୍ୱଳ ଆଲୋକ । ଏହି ଜୀବନ-ପଥରେ, ଏହି ସୃଷ୍ଟି—ଏହି ବିକାଶର ମାର୍ଗରେ—ଏହି ଆନନ୍ଦର ରାଜପଥରେ ଆମର ଶତ୍ରୁ କିଏ ସେମାନଙ୍କୁ ଚିହ୍ନିରଖ ତମେମାନେ ଆଗେ । ଆସ ତମେମାନେ ମୋ ସଙ୍ଗରେ ଆସ···

ଅସଂଖ୍ୟ ଯୁବଶକ୍ତି ଅନୁସରଣ କଲେ ନିଦ୍ରାକୁ । ସେମାନଙ୍କର ଅତ୍ୟୁଜ୍ଜ୍ୱଳ ବେଶ—ସମୁଜ୍ଜ୍ୱଳ ରୂପ, ଚଳଚଞ୍ଚଳ ଗତି ।

ସେମାନେ ଶେଷରେ ଯାଇ ଗୋଟିଏ ବିରାଟ ପ୍ରକୋଷ୍ଠରେ ପହଞ୍ଚିଲେ । ପ୍ରକୋଷ୍ଠର ମଧ୍ୟସ୍ଥଳରେ ଅତିକାୟ ରହସ୍ୟମୟ ଏକ ମୂର୍ତ୍ତି । କ୍ଷଣକ୍ଷଣକରେ ତାହାର ବର୍ଣ୍ଣ ହେଉଚି ପରିବର୍ତ୍ତିତ, ତାହାର ଆକୃତି ହେଉଚି ରୂପାନ୍ତରିତ । କିନ୍ତୁ ଅତି ବୃଦ୍ଧ, ଅଥବ ସେହି ମୂର୍ତ୍ତି—ସୁନ୍ଦର ଆଉ ଭୀଷଣ ।

ନିଦ୍ରା ଚିତ୍କାର କରି କହିଲା—

ଏଇ, ଏଇ ଆମର ଶତ୍ରୁ । ଇଏ ଅତୀତ । ଇଏ ଅଥର୍ବ ଅଥଚ ଶକ୍ତି-ଶାଳୀ । ଏ ଶିଶୁଭଳି ଆମକୁ କେବଳ ଭୁଲାଉଚି ଅନେକ କାହାଣୀ ଧରି—ଅଶେଷମୁଖା ପରିବର୍ତ୍ତନ କରୁଛି ସେ ଆମର ଲାଗି, କିନ୍ତୁ ଅସଲ ରୂପ ଏହାର କେବଳ ରକ୍ତାକ୍ତ । ଏହାର ତିନୋଟି ଆୟୁଧ —ଧର୍ମ, ଜାତି ଆଉ ବର୍ଣ୍ଣ । ମଣିଷ ଏହାକୁ ଗଢ଼ିଥିଲା ଭୁଲରେ —ସେଥିପାଇଁ ଯୁଗ ଯୁଗ ଧରି ସେ କେବଳ ଗ୍ରାସ କରିବାକୁ ଲାଗିଚି ମଣିଷକୁ—ସବୁ-ଠାରୁ ଏ ବେଶୀ ଖାଇଚି ଯୁବଶକ୍ତିର ମାଂସ ଆଉ ରକ୍ତ । ଆଜି କେବଳ ଏହାକୁ ଯୁବଶକ୍ତି ହିଁ ଖାଇବ । ଯାଅ ଯୁବଶକ୍ତିମାନେ, ତମେ ସମସ୍ତେ ଏକ ସମୟରେ ଏକ ତାଳରେ ଦଉଡ଼ି ଘୋଡ଼ା ଛୁଟାଇ । ଜାଗରଣ ତମ ପାଇଁ ଅନେକ ସୁନ୍ଦର ସୁନ୍ଦର ଲାଲଘୋଡ଼ା ଘେନି ଆସିଛି—ଦଉଡ଼, ଏଇ ଅଥର୍ବ ଅତୀତଟାକୁ ଚିକଟ, ମାରି—ବିନଷ୍ଟ କରିଦଅ ତମର ଦୁପ୍ତ

ଅଶ୍ୱ ଖୁରାଘାତରେ । ଜୟଧ୍ୱଜା ଉଡ଼ାଅ ନୂତନର—ତାରୁଣ୍ୟର—ଯୌବନର ।···ସାମ୍ୟ ଆଉ ମୈତ୍ରୀର । ସମସ୍ତ କୁସଂସ୍କାର, ସମସ୍ତ ଅତ୍ୟାଚାର, ସମସ୍ତ ନିଷ୍ପେଷଣ ଆଜି ଧ୍ୱଂସ ହେଉ । ଶେଷରେ ତାହାର ଖଣ୍ଡ ବିଖଣ୍ଡ ଶରୀରକୁ ମଧ୍ୟ ଜଳାଇଦିଅ—ଲଗାଇ ଦିଅ ଅଗ୍ନି । ସେଥିରେ ଧ୍ୱଂସ କର ସମସ୍ତ ଅନ୍ଧକାର । ଆମେ ନୂତନ, ନୂତନର ନାହିଁ ଇତିହାସ, ନୂତନର ନାହିଁ ଅତୀତ ।

ଏହା ପରେ ଯୁବତୀମାନେ ଲାଗିଗଲେ ସେମାନଙ୍କର କାର୍ଯ୍ୟରେ । ଅସଂଖ୍ୟ ଯୁବତୀର କଳହାସ୍ୟ ଏବଂ ସଂଖ୍ୟାତୀତ ଅଶ୍ୱର ହ୍ରେସାଧ୍ୱନିରେ କମ୍ପି ଉଠିଲା ଦିଗନ୍ତ ।

ଘାସ୍ତ ଉତ୍ତେଜନା ଧରି ଫେରି ଆସିଲା ତାହାପରେ ନିଦ୍ରା ସେଠାରୁ । ଫେରି ଆସି ସେ ଦେଖିଲା, ସୁନ୍ଦରୀ ଏକ ଯୁବତୀର ହାତଧରି ଠିଆହୋଇଛି ଜାଗରଣ । ନିଦ୍ରା ବିସ୍ମିତ ହୋଇ ପଚାରିଲା—

ଏ କିଏ, ଏ ପୁଣି ରହିଗଲା କେମିତି ଜାଗୁ ?

ମୁଁ ତ ଚିହ୍ନି ନେଇ ଆଣୁ ଅପା । ଏ ତତେ ଜାଣେ ବୋଲି କହୁଚି ! ତୋ ଅପେକ୍ଷାରେ ତାକୁ ଧରି ମୁଁ ଏଠି ଠିଆ ହେଇଚି ।

କିଏ, ତମର ନାଁ କଣ ?

ମାଧବୀ ।

ମାଧବୀ—କଣ, ଏଠାରେ ତମର କିଛି କାମ ଅଛି, ଏଇ ଶିବିରରେ ?

ହଁ ।

ତମର ପରିଚୟ କଣ ତା'ହେଲେ ?

ମୁଁ ଜଣେ ସବହରାର ଭଉଣୀ ।

ସବହରା !···ସବହରା ତ ଏଠି ସମସ୍ତେ !···ସେମାନଙ୍କର ସ୍ୱତନ୍ତ୍ର ପ୍ରତିନିଧି ହେଇ ତମେ ଆସିଛ ତା' ହେଲେ ! ଜାଗୁ ଏ ସବହରା ଯୁବତୀଟି ତୋର, ମୁଁ ଯାଏ ଆଉ କଣ କାମ ଅଛି ଦେଖେ···

ନିଦ୍ରା ଚାଲିଯିବା ଉପରେ, ମାଧବୀ ତାହାର ପଣତ ଧରି ତାହାକୁ ଅଟକାଇ ଦେଇ କହିଲା—

ଶୁଣ, ଭାଇ ଜରୁରୀ କାମ, ଭାଇ ମତେ ପଠେଇଛନ୍ତି···

ଭାଇ ?···ଓ !···ସବହରା·····ମୁରଲିବାବୁ ?

ହଁ, ଭାଇଙ୍କି ଟାଇଫଏଡ୍·····

ଓଃ, ମୁଁ ଯାଏ ଜାଗୁ··ମୁରଲିବାବାଙ୍କୁ ଟାଇଫଏଡ୍, ଓଃ, ମୁଁ ଯାଏ ଜାଗୁ·····ମୋ ଘୋଡ଼ା ଆଣିବାକୁ କ' ଆକୁଳାକୁ । ମୁରଲିବାବୁ···ମୁରଲିବାବୁ··· ମୁଁ ଯାଉଚି ମୁରଲିବାବୁ···!!

ହଠାତ୍ ଚମକିଉଠିଲା ନିଜର ଚିତ୍କାରରେ ନିଜେ ନିଦ୍ରା । ଏହି ସମୟରେ ବାହାର ପାଖରେ କବାଟ ଖଡ୍ ଖଡ୍ ସହ ଡାକ ଶୁଭିବାକୁ ଲାଗିଲା—

ଅପା, ଅପା, କବାଟ ଖୋଲ୍···

ନିଦ ଭାଙ୍ଗିଗଲା ନିଦ୍ରାର । ଅସମ୍ବୃତା ଭାବରେ ଉଠିଆସି ସେ ଫିଟେଇ ଦେଲା କବାଟ । ଆଗରେ ଗୋଟିଏ ସୁନ୍ଦର ତରୁଣ, ତାହାକୁ ଦେଖି ଦେଖି ଉଚ୍ଛନ୍ନ ହୋଇ କୁଣ୍ଢାଇ ପକାଇଲା ନିଦ୍ରା ।

ଆରେ ଜାଗୁ, ତୁ କେତେବେଳେ ଆଇଲୁ ? ବାପା ତ ତୋ ପାଖକୁ ଘୋଡ଼ା ପଠେଇବେ ବୋଲି ଆଜି କହୁଥିଲେ !

ମୁଁ ଚୁଁ ଚାଲିଆଇଲି ଅପା, ମାମୁଁଘର ମତେ ଆଉ ଭଲ ଲାଗିଲା ନେଇଁ— ମାମୁଁ କହିଲେ ତୁ ଯା । ମାମୁଁଙ୍କର ପେଗୁଟା ବି ସେ ମତେ ଦେଇଛନ୍ତି···

ଆରେ, ଆମର ତା' ହେଲେ ଦିଟା ଘୋଡ଼ା । ଆମେ ଦିଜଣ ଯାକ ଏଥର ସାଙ୍ଗ ହୋଇ ଘୋଡ଼ାରେ ବୁଲିବା । ଭଲ କଲୁ ତୁ ଜାଗୁ, ତୁ ଆସିଲୁ ଭଲ କଲୁ— ମତେ ଘର ଏକୁଟିଆ ଲାଗୁଥିଲା ସେମାନେ ଚାଲିଗଲା ଦିନୁ ।

ଜାଗରଣକୁ କୋଳକରି କହି କହି ବାହାରକୁ ଚାଲିଆସିଲା ନିଦ୍ରା । ସେ ବରଣ୍ଡାକୁ ଆସି ଦେଖିଲା, ସେଠି ଠିଆ ହୋଇଛି ମ୍ରିୟମାଣା ଗୋଟିଏ ଯୁବତୀ ।

ଆରେ, ଏ କିଏ ଜାଗୁ—ତୋର ସାଥୀ ବୋଧହୁଏ । ମୁଁ ବି ମୋର ସାଥୀ ପାଇଚି ଜାଗୁ······ଆରେ ତୋର ସାଥୀକି ତ ମୁଁ କୋଉଠି ଦେଖିଚି ?

ହଁ ଅପା ସେ କହୁଚି ତତେ ସେ ଚିହ୍ନେ—ଆଉ ତୁ ତାକୁ ଦେଖିନୁ ?

ମୁଁ ଦେଖିନେଇ ! ନା, ମୁଁ ତ ଦେଖିଚି······ତମ ନାଁ ମାଧବୀ ?

ହଁ ।

ଜାଗରଣକୁ ଛାଡ଼ି ନିଦ୍ରା ଆସି ମାଧବୀକୁ ଧରିପକାଇ କହିଲା—

ମାଧବୀ···ତମେ ମାଧବୀ !!······ମୁରଲିବାବୁଙ୍କର ଖବର କଣ ମାଧବୀ ? ମୁରଲିବାବୁ କେମିତି ଅଛନ୍ତି ?···ଆଁ, ତମେ କିଛି କହୁନା କାହିଁକି ?···ମୁରଲିବାବ ତା'ହେଲେ ନାହାନ୍ତି······

ଓଃ, ମୁରଲିବାବୁ, ମୁରଲିବାବୁ ତମ ପାଖକୁ ମୋର ଆଗେ ଯିବା ଉଚିତ ଥିଲା ମୁରଲିବାବୁ—ତମେ ସବୁହରା, ମତେ ବୋଧହୁଏ ଭାବି ଭାବି ତମେ ମରିଗଲ ମୁରଲିବାବୁ······

କିଛିକ୍ଷଣର ବିହ୍ୱଳତା ପରେ ନିଦ୍ରାର ଭାବାନ୍ତର ହେଲା । ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲା ମାଧବୀକୁ—

ତମେ ଏଠିକି ଆସିଲ କେମିତି ମାଧବୀ ?ତମ ଘର ତ କଟକରେ ?

ଅଶକ୍ତଭାବରେ କହିଲା ମାଧବୀ—

ପ୍ରଫୁଲ୍ଲବାବୁଙ୍କ ସାଙ୍ଗରେ···।

ପ୍ରଫୁଲ୍ଲବାବୁ···ସିଏ କଣ ଆସିଚନ୍ତି ?

ହଁ ଅପା, ଆଉ ବ ଗପୁର୍ ବସିଚ ଦାଣ୍ଡରେ···ତଟେ କୁଆଡ଼େ ଷ୍ଟ୍ରେଖେଳ ଶିଖେଇବ ବୋଲ ବାପା ତାକୁ ପଠେଇଛନ୍ତ···

ଓ, ବାପା ଏତେ କାମ କର ଦେଲେଣି !

ଆନନ୍ଦରେ ନାଚଉଠି କହିଲ ନନ୍ଦ୍ରା—

ଜାଗୁ, ଆଉ ମୋର କଚ୍ଛ ଚନ୍ତା ନାଇଁ—ପ୍ରଫୁଲ୍ଲବାବୁ ଆସିଚନ୍ତ···ଭୁ ଆସିଚୁ, ମାଧବୀ ବ ଆସିଚ—ଓ—ମୁରଲବାବୁ···ହଁ ଦାଣ୍ଡକୁ ଚ୍ଲ । ପ୍ରଫୁଲ୍ଲବାବୁ, ପ୍ରଫୁଲ୍ଲବାବୁ···ଗପୁର୍···

ଡାକ ଡାକ ନନ୍ଦ୍ରା ପହଞ୍ଚିଲ ଯାଇ ଦାଣ୍ଡରେ । ପ୍ରଫୁଲ୍ଲକୁ କୁଣ୍ଢେଇ ପକେଇ ସେ କହିଲ—

ଆପଣଙ୍କ ଚେହେରା ଏମିତି କାହିଁକ ହେଇଚ ପ୍ରଫୁଲ୍ଲବାବୁ ? ବାଳଗୁଡ଼ା ଏମିତି, ଜାମାପଟା ଏତେ ମଇଳା କାହିଁକ ତମର ?

ସେ ସବୁ ଠିକ୍ ହେଇଯିବ···ଅନେକ ବପଦ ଘଟିଗଲ ମୋର···

କଣ ବପଦ ?···ମୁରଲବାବୁଙ୍କ କଥା···ଓଃ ମୁରଲବାବୁ···

ନାଁ ଆହୁର ବପଦ······

ଆହୁର ବପଦ ? କଣ ହେଇଚ ତମର ?

ମୁଁ ଏଠୁ ଫେର କଟକରେ ଚିଠି ପାଇଲ ବାପା ଶକ୍ତ ବେମାର—ଘରକୁ ଗଲ, ଘରେ ପହଞ୍ଚି ଦେଖିଲ, ବାପା ମରିଯାଇଚନ୍ତ······

ଓଃ, ଏତେ ବପଦ ।

ତା'ପରେ··ବାପାଙ୍କ କ୍ରିୟା ପରେ ମୁରଲର ଚିଠି ପାଇଲ । କଟକ ଆସି ତାକୁ ମଧ୍ୟ ହରେଇଲ । ମୁରଲର ମା'ଙ୍କୁ ଆମ ଘରେ ଛାଡ଼ିଦେଇ, ମାଧବୀକ ଧର ମୁଁ ଏଠିକ ଆସୁଚ···

ଓଃ, ଏତେ ବପଦ ! ମୁରଲବାବୁ ଥା'ନ୍ତେ କ !······ଆପଣ ଜାଗୁକୁ ଦେଖିଲେଣି ପ୍ରଫୁଲ୍ଲବାବୁ ?

ହଁ ଦେଖିଚ—ଗୋଟିଏ ସୁନ୍ଦର ଟୋକା, ମୁଣ୍ଡରେ ·ଫେଜ୍ ଟୋପି ·ଦେଇ ଚ୍ଲଗଲ ଏଇବାଟେ ।

ଓଃ, ଭାର ବଚଣ ସିଏ, ସେ ମାମୁଁ ଘରେ ଥେଲ ଆଜଯାଏ । କେତେ-ବେଳେ ଫେଜ୍, କେତେବେଳେ ଫେଲ୍ଟ୍, କେତେବେଳେ ପଗଡ଼ି, କେତେବେଳେ ହ୍ୟାଟ୍ - କେତେ ଟୋପି ସିଏ ଲଗେଇବ । ମାମୁଁ ଥରେ ଲେଖିଥେଲେ, ତା' ପେଇଁ ଟୋପି କଣି କଣି ସେ ଥକ ଗଲେଣି । ମାଧବୀକ ସିଏ ଭାର ଭଲ ପାଇବ ବୋଧହୁଏ—ସିଆଡ଼େ ଖଞ୍ଜା ଭିତରେ ରହିଲଣି ତାକୁ ଧର······। ଆରେ ଜାଗୁ, ଜାଗୁ···!

ଜାଗରଣ ଆସି ପହଞ୍ଚିଲା ହସି ହସି ।

ଜାଗୁ, ଏ ପ୍ରଫୁଲ୍ଲବାବୁ, ମୋର ସାଥୀ···

ତାଙ୍କୁ ଦଣ୍ଡବତ୍ ହବାକୁ କହୁଚୁ ତ ଅପା—ମୁଁ ଆଉଚ···।

କୌତୁକୋଜ୍ଜ୍ୱଳ ଭାଷାରେ କହିଲା ନିଦ୍ରା—

ଦେଖିବେ ରହନ୍ତୁ ପ୍ରଫୁଲ୍ଲବାବୁ; କଣ ଗୋଟା ଫିକର୍ କରି ଆସିବ ଏ ଇକ୍ଷଣି ।

ଏତିକବେଳେ ଜାଗରଣ ଆସି ପହଞ୍ଚିଲା । ମୁଣ୍ଡରେ ତାର ଗୋଟିଏ ଗାନ୍ଧୀଟୋପି । ଗୋଟିଏ ସଲାମ୍ ପକେଇଲା ସେ ପ୍ରଫୁଲ୍ଲକୁ । ତାହାପରେ ସେ କହିଲା—

ଜାଣିଲେନା ପ୍ରଫୁଲ୍ଲବାବୁ, ମୁଁ କାହିଁକି ଗାନ୍ଧୀଟୋପି ଲଗେଇ ଆପଣଙ୍କୁ ଅଭିବାଦନ କଲି ?···ଭାରତର ପ୍ରଥମ ଜାଗରଣ ଏଇ ଗାନ୍ଧୀଟୋପି ତଳେ, ଆଉ ମୋ ନା'ଟାବି ଜାଗରଣ···ଆଉ ବି ହେଲା ପ୍ରଥମ ପରିଚୟ ଆପଣଙ୍କ ସାଙ୍ଗରେ । ସେଥିପାଇଁ ସେଇ ପ୍ରଥମ ଜାଗରଣ ସ୍ମାରକ ଧରି କଲି ସଲାମ୍ ।

ହସି ହସି କହିଲା ନିଦ୍ରା—

ସଲାମ୍ କଲୁ, କାହିଁକି ନମସ୍ତେ ନ କରି ?

ତୁ ଜମା କିଚ୍ଛି ବୁଝିନୁ ଅପା, ଗଫୁର୍‌ର ପ୍ରଭାବ କିଚ୍ଛି ଆମେ ରଖିବାନେଇଁ —ସେ ଆମ ଗାଁର, ସେ ଆମ ପଡ଼ୋଶୀ ?

କହି କହି ଜାଗରଣ ସେଠାରୁ ଚାଲିଗଲା । ଏହା ପରେ ନିଦ୍ରାର ଆଖି ପଡ଼ିଲା ଗଫୁର୍ ଉପରେ । ସେ ପାଟିକରି କହିଉଠିଲା—

ଆରେ ଗଫୁର୍‌ଭାଇ, ପାଖକୁ ଆସ—।

ଗୋଟିଏ ମଜ୍‌ଭୁତ୍ ମୁସଲମାନ୍ ଯୁବକ । ଦେହରେ ତାହାର ଖାଲି ଖଣ୍ଡେ ଗେଞ୍ଜି । ଯେମିତି ଏ ମାଘମାସ ଶୀତ ତାର ଗୋଲାମ୍ । ଗଫୁର୍ ପାଖକୁ ଆସିବାରୁ ତାହାରି ବାହୁକୁ ଚପି ଚପି କହିଲା ନିଦ୍ରା—

ଦେଖନ୍ତୁ ପ୍ରଫୁଲ୍ଲବାବୁ, ଜଣେ ବଳିଷ୍ଠ ଯୁବକ ଦେଖନ୍ତୁ । ଗଫୁର୍ ଭାଇ ଯା' ଖାଇଥାଉ, ତାକୁ ପଛେ ଆମେ ଭଲ ନ ପାଇପାରିବା, କିନ୍ତୁ ତାର ଦେହକୁ ଆମେ ଖୁବ୍ ଭଲ ପାଇବା ।

ଏହି ସମୟରେ କଣ ଭାବି ଚମକିଉଠି କହିଲା ନିଦ୍ରା—

ଆରେ, ଆପଣତ ଖାଇ ନାହାନ୍ତି ମୁଁ ଗପୁଚ କଣ ବସି । ···ହଁ, ଗଫୁର୍ ଭାଇ, ତମେ କାଲିଠାରୁ ମତେ ସ୍ଲେଟ ଶିଖେଇବାକୁ ଆସିବ···ଆଉ ବକ୍‌ସିଙ୍ଗ୍ ବି ଶିଖିବେ ପ୍ରଫୁଲ୍ଲବାବୁ ।

ଏହା କହି ନନ୍ଦ୍ରା ପ୍ରଫୁଲ୍ଲର ମୁହଁକୁ ଅନେଇଲା ହସି ହସି । ଗୋଟା ସଲମ୍ ବଜେଇ ଗ୍ଳଲଗଲା ଗଫୁର୍ । ଏହାପରେ ନନ୍ଦ୍ରାର ପୁଣି ଖିଆଲ ହେଲା ଯେପରି, ସେ ଚଞ୍ଚଳ ହୋଇ ପଗ୍ଚରିଲା—

ଆପଣ ଆସିଲେ କେମିତି ଏତେବାଟ ?

ଏ କଥାରେ ଦୂରର କାନ୍ଥକୁ ଲାଗି ତାର ଧୂଳିଧୂସର ବି. ଏସ. ଏ. ସାଇକେଲକୁ ଅନେଇଲା ପ୍ରଫୁଲ୍ଲ । ପ୍ରଫୁଲ୍ଲର ଦୃଷ୍ଟିକି ଅନୁସରଣ କରି ନନ୍ଦ୍ରା ପୁଣି କହିଲା— ଆଉ ମାଧବୀ ?

ସେଇଥିରେ···ପଛର କ୍ୟାରିଅର୍‌ରେ ବସି ।

ଭାଷାରେ ଆଶ୍ଚର୍ଯ୍ୟତା ପ୍ରକାଶକରି କହିଲା ନନ୍ଦ୍ରା—

ତା'ହେଲେ ତ ଘୋଡ଼ା ଗ୍ଳହୁଁ ଏ ଖୁବ୍ ସୁବିଧା···।

ଗୋଟା ସିଗେରେଟ୍ ମୁହଁରେ ଦେଇଥିଲା ପ୍ରଫୁଲ୍ଲ । ପେଟର କ୍ଷୁଧା ହେତୁ ତାହାକୁ ଖୁବ ଜୋରରେ ଶୋଷିନେଇ ସେ କହିଲା—

ନା, ତମର ଘୋଡ଼ା କାଦୁଅରେ ଛୁଟେ···ଅବାଟରେ ଛୁଟେ ···ବଣ ଜଙ୍ଗଲ, ପାଣି ପବନରେ ବି ଛୁଟେ···ହୁଏତ ନିଆଁରେ ବି ତମେ ଛୁଟେଇ ନେଇ ପାରିବ···

ଏହାପରେ ହସିଉଠିଲେ ଉଭୟେ । ହସି ହସି ନନ୍ଦ୍ରା କହିଲା—

ତା'ହେଲେ ଆପଣ ମୋ ବିଷୟରେ ଖୁବ୍ ଭାବିଚନ୍ତି ଏହା ଭିତରେ··· । ଗ୍ଳଲନ୍ତୁ, ଗ୍ଳଲନ୍ତୁ, ଖାଇବେ ଗ୍ଳଲନ୍ତୁ ଆଗେ···

## ॥ ଦଶ ॥

ହଁ, ତମେ ବର୍ତ୍ତମାନ କଣ କରିବାକୁ ଗ୍ଳହୁଁଚ ପ୍ରଫୁଲ୍ଲ ?

ପ୍ରଫୁଲ୍ଲ ଏବଂ ଜାଗରଣ ପ୍ରଭୃତି ପହଞ୍ଚିବାର କିଛି ସମୟ ପରେ ବଳିଆର ସିଂହ ଆସି ପହଞ୍ଚିଲେ ଘରେ । ପ୍ରଥମେ ନନ୍ଦ୍ରାଠାରୁ ସେ ପାଇଲେ ମୁରଲିର ମୃତ୍ୟୁ-ସମ୍ବାଦ । ତାହା ପରେ ମାଧବୀକୁ ପାଖରେ ବସାଇ ବହୁତ ଦୁଃଖ ପ୍ରକାଶ କଲେ ବଳିଆର ସିଂହ । ତତ୍ପରେ ଅତିଥି-ଚର୍ଚ୍ଚାର ଖବର ନେଇ କିଛି ସମୟ ଚିନ୍ତା କରିବା ପରେ ପ୍ରଫୁଲ୍ଲକୁ ପଗ୍ଚରିଲେ ସେ ଉପରଲିଖିତ ପ୍ରଶ୍ନ ।

ସେତେବେଳକୁ ସନ୍ଧ୍ୟାର ଘଜଉ । ସ୍ୱଜାତ ପଲ୍ଲୀସୀମନ୍ତମାମାନଙ୍କ ପାଇଁ ଆଜ କ ସୁଯୋଗ ବହ୍ନ ଆଣିଛୁ ଏହ୍ନ ସଂଧ୍ୟା ତାହା ଭିନ୍ନ କଥା, କିନ୍ତୁ ସଂଧ୍ୟାର ମ୍ଳାନାସ୍ଯ ମାନତା ମଧ୍ୟରେ ସୀମନ୍ତମାମାନଙ୍କର ପ୍ରତିନିଧିରୂପେ ନିଦ୍ରା ଆଜ ଗ୍ୱହିଁ ରହିଛି ପ୍ରଫୁଲ୍ଲର ମୁହଁକୁ । କଙ୍କାସିତ ହୋଇ ବଳଆର ସିଂହଙ୍କ ଆଗରେ ବସିଛି ପ୍ରଫୁଲ୍ଲ ।

ସମସ୍ତେ ଚଉପାଢ଼ୀର ଦାଣ୍ଡଘରେ ବସିଥାନ୍ତି । କେବଳ ଜାଗରଣ ଯାଇଁ ଘର ଭିତରେ ତାହାର ମା' ପାଖରେ ବସିଥାଏ । ମା' ତାକୁ ମାମୁଁଘରର କଥାସବୁ ପଗ୍ୱରୁ ଥାନ୍ତି ଗୋଟି ଗୋଟି କରି ।

ଗାଲଗ୍ଭ ଉପରେ ଥୁଆ ହୋଇଥିବା ଲଣ୍ଠନକୁ ତେଜେଇ ଦେଇ ପ୍ରଫୁଲ୍ଲ କହ୍ନଲ—

ବର୍ତ୍ତମାନ ମୁଁ ସବୁ ବନ୍ଧନରୁ ମୁକ୍ତ—ଏଣିକି ଆପଣ ଯାହା କହ୍ନବେ ।

ଶାନ୍ତସ୍ୱରରେ ଅଭିଜ୍ଞତାର ମୂର୍ଚ୍ଛନା ଦେଇ କହ୍ନଲେ ବଳଆର ସିଂହ—

ଭୁଲ କରୁଚ ପ୍ରଫୁଲ୍ଲ । ବର୍ତ୍ତମାନ ତମେ ହୁଏତ ବେଶୀ ବଂଧନରେ ପଡ଼ିଲ । ବାପା ତମର ଥିଲେ, ତମେ କୌଣସି କଥା ଭାବୁନଥିଲ—ଆଉ ତମେ ତ ଗୋଟିଏ ପୁଅ ବୋଲି କହୁଚ···

ନା ଆଜ୍ଞା, ମୁଁ ଏବେ ଏଇ ଦାୟିତ୍ୱକୁ ମୋର ଉଦ୍ଦେଶ୍ୟ ସିଦ୍ଧିରେ ଲଗେଇବ—ସେଇ ଉଦ୍ଦେଶ୍ୟ ମୁଁ ତିଆରି କରିବ ଆପଣଙ୍କର ପରିକଳ୍ପନାରୁ, ଯେମିତି ସାରା ଜମିଦାରୀଟାକୁ କରିବ ମୁକ୍ତ-କ୍ଷେତ୍ର ।

ଏହି ସମୟରେ ଚଉପାଢ଼ୀର ଅଗଣାଟା ଅଗ୍ନି ତେଜରେ ଆଲୋକିତ ହୋଇଉଠିଲା, ସଙ୍ଗେ ସଙ୍ଗେ ଜାଗରଣର ପାଟି ଶୁଣାଗଲା ମଧ୍ୟ—

ମାଧବୀ, ମାଧବୀ, ଏଇଠିକି ଆ, ମୁଁ କେମିତି ବନାଟି ଖେଳୁଚି ଦେଖ !

ବଳଆର ସିଂହ ପାଟିକରି କହ୍ନଉଠିଲେ—

ଜାଗୁ, ଜାଗୁ, ଏ ନିଆଁ ବନାଟି ଖେଳେ ନା, ଆମର ଗ୍ୱଳଘର ବାବା—ଅନିଷ୍ଟ ହେବ, ଖାଲି ବନାଟି ବୁଲା ।

ନିଦ୍ରା ଓ ମାଧବୀ ଦୌଡ଼ିଗଲେ ଅଗଣାକୁ । ଜାଗରଣ ସେହ୍ନଠାରୁ ବଡ଼ ପାଟିକରି କହ୍ନଉଠିଲା—

ନା ବାପା, ମାମୁଁ କଇଚନ୍ତି—ଖାଲି ବନାଟିରେ କିଛି ଲାଭ ନାହିଁ । ସେଇଟା ଗୋଟା ସୌଖୀନ୍ ଖେଳ ।

"ଓଃ, ସମସ୍ତେ ମତେ ହରେଇଲେ ।" କହ୍ନ ଦୀର୍ଘନିଶ୍ୱାସ ଛାଡ଼ିଲେ ବଳଆର ସିଂହ । ସେ ପର୍ଯ୍ୟନ୍ତ ବନାଟି ବୁଲିବାର ତାଳରେ ଆଲୋକ ଘୂର୍ଣ୍ଣନର ଘାତ, ଘର ଭିତରର ଅନ୍ଧକାରକୁ ଧକ୍କା ଦେଉଥାଏ । ଏହ୍ନ ସମୟରେ ପ୍ରଫୁଲ୍ଲ କହ୍ନଲ—

ଆପଣ ବୋଧେ ନିଜକୁ ଭୁଲିଯାଉଚନ୍ତି ଆଜ୍ଞା !

ନିଜକୁ ମୁଁ ଭୁଲିଯାଉଚି—ପ୍ରତାପ ବଳଆର ସିଂ ଭୁଲିଯାଉଚି ନିଜକୁ ! ଆଁ ! ମୁଁ ଏଇକ୍ଷଣି ସାହି ସାହି ବୁଲି କହ୍ନଦେଇ ଆସିନେଇ, ଝିଅ ମୋର ଇସ୍କୁଲ ଖୋଲୁଚି, ତମେ ସମସ୍ତେ ଝିଅମାନଙ୍କୁ ପଠେଇବ ସେଠିକି ପାଠ ପଢ଼ିବାକୁ ? ତମେ କ'ଣ କହୁଚ ପ୍ରଫୁଲ୍ଲ, ମୁଁ ଭୁଲିଯାଇଚି ନିଜକୁ ?

ଏହାପରେ ଖେଦୋକ୍ତି ପରେ ନୀରବ ରହି ଆତ୍ମସ୍ଥ ହେବାକୁ ଯେପରି ଚେଷ୍ଟାକଲେ ବଳଆର ସିଂହ । ତାହା ପରେ ସେ ଧୀରେ ଧୀରେ କହିଲେ—

ତା' ହେଲେ ତମର ବାପା ମରିଯିବାଦ୍ୱାରା ତମର ଅନେକ ଭଲ ହେଇଚି ପ୍ରଫୁଲ୍ଲ । ଅର୍ଥାତ୍ ତାଙ୍କର ମୃତ୍ୟୁଦ୍ୱାରା ତମର ଉଦ୍ଦେଶ୍ୟସାଧନ କରିବା'ର ବାଟ ସୁଗମ ହେଇଚି ?

ଏହା ପ୍ରଫୁଲ୍ଲ ପକ୍ଷରେ କଳ୍ପନାତୀତ ପ୍ରଶ୍ନ । ବାପାଙ୍କ ମୃତ୍ୟୁ ତ ସେ କେବେ କାମନା କରି ନାହିଁ; ତାହାର ବାପାଙ୍କର ତତ୍ତ୍ୱାବଧାନରେ ସେ ଯେଉଁ ଉତ୍ତରାଧିକାର ବା ଦାୟିତ୍ୱ ପାଇଲା, ତାହାକୁ ସେ ଭିନ୍ନ ଦିଗରେ ଲଗାଇବା ପାଇଁ ଚିନ୍ତା କରୁଛି ମାତ୍ର । ଏଥିପାଇଁ ସେ କିପରି କହିବ ଯେ, ବାପା ମରିଯିବାଦ୍ୱାରା ଭଲ ହୋଇଛି ତାହାର ?

କ'ଣ ତମର ଉତ୍ତର ? କିଛି କୁହ ?

ବଳଆର ସିଂହଙ୍କ କଣ୍ଠରେ ଅସ୍ୱାଭାବିକ ଗାମ୍ଭୀର୍ଯ୍ୟ । ଯେପରି ନିଜର କୌଣସି ସମାଧାନ ଲାଗି ସେ ସଂଗ୍ରହ କରୁଛନ୍ତି ଏହି ଉତ୍ତର । ସେଥିରେ ଚମକିପଡ଼ି କହିଲା ପ୍ରଫୁଲ୍ଲ –

ଉତ୍ତର ସହଜ ନୁହେଁ ।

ସହଜ ନୁହେଁ ? ହା-ହା-ହା—! ତମେ ମତେ ହରେଇ ପାରିବ ନେଇଁ ପ୍ରଫୁଲ୍ଲ ! ହରେଇବେ ଏଇ ଦିଜଣ—ଜାଗୁ ଆଉ ନିଦ୍ରା । ସେମାନେ ବିଧାତାର ବର ପାଇ ଆସିଛନ୍ତି ବାପକୁ ପରାସ୍ତ କରିବେ—କରିବେ ଅଜ୍ଞାତକୁ ପଦାନତ । ଆଉ ମୁଁ କାମନା କରିଥିଲି, ମୋର ସନ୍ତାନ ହେଉ ମୋ ଅପେକ୍ଷା ବଡ଼ ।

ଆପଣ ଅଦ୍ଭୁତ, ଆପଣଙ୍କୁ କଳ୍ପନା କରିବାର ଶକ୍ତି ମୋର ନାହିଁ ।

ବିସ୍ମୟର ଅବଧି ନ ରଖି କହିଲା ପ୍ରଫୁଲ୍ଲ ।

"ଏଇକ୍ଷଣି ନିଦ୍ରା ଠିକ୍ କହିଦେବ" ଏହା କହି ସେ ନିଦ୍ରାକୁ ଡାକିଲେ । ନିଦ୍ରା ପହଞ୍ଚିବାରୁ ପ୍ରଶ୍ନଟା ତାକୁ ବୁଝେଇ କହିଲେ ବଳଆର ସିଂହ । ହସି ହସି କହିଉଠିଲା ନିଦ୍ରା—

ଉତ୍ତର ତ ଅତି ସହଜ !

ଯେପରି ସପାଘାତରେ ଚମକିପଡ଼ିଲା ପ୍ରଫୁଲ୍ଲ । ସେ ଚମକି ଚମକି ଦେଖିଲା, ଅବଲୀଳାକ୍ରମେ କହିଯାଉଚି ନିଦ୍ରା—

ବିଗ୍ରହର ତୁଳାଦଣ୍ଡରେ ଓଜନ କଲେ ତାଙ୍କ ବାପାଙ୍କର ମୃତ୍ୟୁ ଏଠି ଆବଶ୍ୟକ । ଆଉ ହୃଦୟାବେଗ ଦେଇ ଧଇଲେ ଠିକ୍ ତାର ଓଲଟା ।

ଆନନ୍ଦରେ ଅଧୀର ହୋଇ କହିଉଠିଲେ ବଳଆର ସିଂହ—

ମୋର ଝିଅ, ମୋର ଝିଅ ! ମୁଁ ଭୁଲିଯାଇଚି ନିଜକୁ ପ୍ରଫୁଲ୍ଲ ? ମୁଁ ଭୁଲି ଯାଇପାରେ ?

କ୍ଷଣକର ମୌନତା ପରେ ପୁଣି ସେ କହିଲେ—

ତେବେ କଥା କ'ଣ କି ପ୍ରଫୁଲ୍ଲ, ଅନେକଦିନ ତଳେ, ସେତେବେଳେ

ମତେ ପ୍ରାୟ ତିରିଶ କି ପଇଁତିରିଶ ହବ—ମୁଁ ଜଣେ ବଡ଼ ସାଧୁଙ୍କଠାରୁ ଦୀକ୍ଷା ନେଇଥିଲି······

ତମେ ଦୀକ୍ଷା ନେଇଥିଲ ବାପା ?

ପ୍ରଫୁଲ୍ଲ ମଧ୍ୟ ବିସ୍ମୟ ଧରି ଗୃହିଁରହିଲା ବଳଆର ସିଂହଙ୍କୁ । ଏହି ସମୟରେ ମାଧବୀ ସେଠାକୁ ଫେରିଆସିଲା । ତା' ଦେହରେ ନିଜର ଶାଲ୍‌ଟା ଘୋଡ଼େଇ ଦେଇ ନିଦ୍ରା ହସି ହସି କହିଲା—

ଏଇକ୍ଷଣି ବାପାଙ୍କର ସନ୍ନ୍ୟାସଯୋଗ ପଡ଼ୁଛି ନା, ଏଇଟା ମୋର ତ୍ୟାଗ ।

ବଳଆର ସିଂହ ହସି ହସି କହିଲେ—

ଏଇ ନିଦ୍ରା ମୋର ସବୁ ଛଡ଼େଇଲା । ମୋର ଅବଚେତନ କାମନା-ଗୁଡ଼ାକରେ ସେ ଗଢ଼ିଛି ନିଜର ବିଗ୍ରହ ।

ପ୍ରଫୁଲ୍ଲ କହିଲା—

ଆପଣ ସେଇକଥା କହନ୍ତୁ ଆଜ୍ଞା, କଣ ହେଲା ସେଇଠୁ ?

ବଳଆର ସିଂହ ଆରମ୍ଭ କଲେ—

ସେହି ସାଧୁଙ୍କର ଦୀକ୍ଷାର ଶକ୍ତି ଯେ, ଶିଷ୍ୟ ଏକା ଜନ୍ମକରେ ପାଇବ ମୁକ୍ତି । ମୋର ସେଇକଥା ବରାବର ମନେ ପଡୁଚି ଯେ, ମୋର ମୁକ୍ତି ଲାଗି ଅପେକ୍ଷା କରିବାଟା ଖାଲି ତମମାନଙ୍କୁ ହଇରାଣ କରୁଚି ।

ମାନେ ?

ପ୍ରଫୁଲ୍ଲର ଏହି ପ୍ରଶ୍ନ ନିର୍ଯାସକୁ ସମସ୍ତେ ଆଘ୍ରାଣ କଲେ । ସମସ୍ତଙ୍କ ଭିତରେ ଫୁଟିଉଠିଲା ଅର୍ଥଜିଜ୍ଞାସା ।

ବଳଆର ସିଂହ ଖୁବ୍ ନିର୍ଭିକ ହୋଇପଡ଼ିଲେ—ଯେପରି ତାଙ୍କ ଭିତରେ ଅଶାନ୍ତ ଦଧୀଚିର ଆତ୍ମା ।

ମାନେ ଆଉ ତମେ ବୁଝିପାରୁନା ? ତମମାନଙ୍କର ସତ୍ୟ-ଦର୍ଶନ ପାଖରେ ଯେ ମୋର ମୁକ୍ତି-ଦର୍ଶନ କିମ୍ବା ମୁକ୍ତି-କାମନା ଅତି ତୁଚ୍ଛ ହୋଇପଡ଼ୁଛି ବର୍ତ୍ତମାନ । ଦେବତାମାନଙ୍କର ମଙ୍ଗଳ ପାଇଁ ତ ଦଧୀଚି ପୁଣି ନିଜର ପରକାଳକୁ କାଟି ପକେଇଲେ !···ଆଉ ତମମାନଙ୍କର ମଙ୍ଗଳ ହବ, କୋଟି କୋଟି ଲୋକଙ୍କର ମଙ୍ଗଳ ଆଣିବାକୁ ତମର ଅଭିଯାନ—ସେଥିରେ କେବଳ ଏଇ ବୁଢ଼ାଟା ହୋଇଚି ପ୍ରତିବନ୍ଧକ··· ଗୋଟାଏ ତୁଚ୍ଛ ଜୀବନ ନେଇ······ଗୋଟାଏ ତୁଚ୍ଛ ମଶାଚିକାର କାମନା ରଖି ! ତମମାନଙ୍କୁ କେବଳ ଭୟ ହିଁ ଦଉଚି ମୁଁ !!

ଚିତ୍କାର କରି ନିଦ୍ରା କହିଉଠିଲା—

କଣ ସବୁ କହୁଚ ତମେ ବାପା ? ତମେ ଯେ ନିତି ବସି ମତେ ବିପ୍ଳବର ସବୁକଥା ଶିଖେଇଚ—ତମେ ତ ଜାଗୁକୁ ମାମୁଁଙ୍କ ପାଖକୁ ପଠେଇଥିଲ ନୂତନର ଆଦର୍ଶ ଆଣିବା ପାଇଁ ! ତମେ ତ ଆମକୁ ତିଆରି କରିଚ ! ତମେ କାହିଁକି ଏମିତି ଅନୁଶୋଚନା କରୁଚ ବାପା !

କ୍ଷୁବ୍‌ଧ କଣ୍ଠରେ କହିଲେ ବଲଆର ସିଂହ—

ତଥାପି ମୁଁ ଜାଗୁକୁ ନିଆଁ ବନାଟି ବୁଲେଇବାକୁ ମନା କଲି – ତଥାପି ମୁଁ ଘର ପୋଡ଼ିଯିବ ବୋଲି ଭୟ କଲି ! ଯୋଉ ଘରଟା ବହୁତ ଆଗରୁ ଜଳିଯିବା ଉଚିତ ଥିଲା—ତଥାପି ତାକୁ ରକ୍ଷା କରିବାକୁ ଦୟା ମାୟା ହଉଚି ।

ପ୍ରଶ୍ନ ଧରି କହିଉଠିଲା ପ୍ରଫୁଲ୍ଲ—

ସେମାନେ ପୁଣି ମଣିଷ ହେଇଥାନ୍ତେ କୋଉଠି ? ବଢ଼ିଥାନ୍ତେ କୋଉଠି ?

ହଠାତ୍ ସିଂହଭଳି ଠିଆହୋଇପଡ଼ି ବଜ୍ରକଣ୍ଠରେ କହିଲେ ବଲଆର ସିଂହ—

ଘୋଡ଼ା ପିଠିରେ । ଆଲୋକ ତଳେ । ବିପ୍ଳବ ଭିତରେ । ବିଦ୍ରୋହ ଭିତରେ । ଯାଅ ପ୍ରଫୁଲ୍ଲ, ତମେ ଏଠୁ ଯାଅ, ତମେ ସେମାନଙ୍କୁ ନେଇଯାଅ ଏଠୁ । ଏ ଘର ସେମାନଙ୍କ ପକ୍ଷରେ ଅଭିଶାପ । ଏ ବଲଆର ସିଂ ସେମାନଙ୍କର କାଳ । ଅତୀତର ଯାଦୁଘର ହେଇ ଏ ଘରଟା ଏଠି ପଡ଼ିଥାଉ – ତାର ରକ୍ଷକ ହେଇ ପ୍ରେତ ପରି ମୁଁ ଏଠି ବୁଲୁଥାଏ — ଏଠି ସେମାନଙ୍କର ନାହିଁ ମଙ୍ଗଳ । କହି କହି କଳ୍ପନାତୀତ ଦ୍ରୁତଗତିରେ ଚାଲିଗଲେ ବଲଆର ସିଂହ ଅଗଣା ଆଡ଼େ ।

ଅଗଣାରେ ସେ ପର୍ଯ୍ୟନ୍ତ ବନାଟି ଖେଳୁଚି ଜାଗରଣ । ଚିତ୍କାର କରି କହିଉଠିଲା ନିଦ୍ରା—

ବନାଟି ବନ୍ଦ୍ କର, ବନାଟି ବନ୍ଦ୍ କର, ବନାଟି ବନ୍ଦ୍ କର ଜାଗୁ !···

ନିଦ୍ରାର କଥା ନ ସରୁଣୁ ଗୋଟିଏ ବ୍ୟଥାବ୍ୟଞ୍ଜିତ କରୁଣ ଶବ୍ଦ ଆହତ କରିଦେଲା ସମସ୍ତଙ୍କର ଅନ୍ତରକୁ । ତା' ସହିତ ଭାସି ଆସିଲା ଉଚ୍ଚ ପତନର ଗମ୍ଭୀର ଶବ୍ଦ ।

ପଲକ ମଧ୍ୟରେ ସମସ୍ତେ ଯାଇଁ ପହଞ୍ଚିଲେ ଅଗଣାରେ । ଜାଗରଣର ବନାଟି ବାଜିଛି ବଲଆର ସିଂହଙ୍କ କଙ୍କାଳରେ । ବନାଟିର ନିଆଁ ହୁଳା ଖସିଯାଇ ଦୂରରେ ହୁତୁ ହୁତୁ ହୋଇ ଜଳୁଚି । ତାହାର ତେଜରେ ବଲଆର ସିଂହଙ୍କ ମୁହଁ ଦେଖାଯାଉଛି ଅତି କରୁଣ—ଅତି ବିବର୍ଣ୍ଣ ।

ବଲଆର ସିଂହଙ୍କର ଅତି ପାଖକୁ ଯାଇ ବସିପଡ଼ିଲା ନିଦ୍ରା । ଜାଗରଣ କାନ୍ଦି କାନ୍ଦି କେବଳ ଗଡ଼ୁଥାଏ ଭୂଇଁରେ । ପ୍ରଫୁଲ୍ଲ ଓ ମାଧବୀ ବଜ୍ରାହତ ପରି ଛିଡ଼ା ହୋଇଥାନ୍ତି ନିକଟରେ । ଝଂଜା ବେଗରେ ପହଞ୍ଚି ଦୁରରେ କଣ୍ଢ଼ ହୋଇ ପଡ଼ିଲେ ବଲଆର ସିଂହଙ୍କର ସ୍ତ୍ରୀ ।

ଏହି ସମୟରେ ହଠାତ୍ ଚମକିଉଠି ପ୍ରଲାପ କଲା ପରି କହିଲା ନିଦ୍ରା –

ବାପା କାହାନ୍ତି ? ଇଏ ଯେ ଅତୀତ ! ମୁଁ ତ ସପନରେ ଆଜି ଏହାଙ୍କୁ ଘୋଡ଼ା ଟାପୁରେ ଚକଟି ଦେଇଚି ! ବାପାଙ୍କୁ ତା ହେଲେ ମାରିଚି ମୁଁ ?

ତାହାପରେ ସେ ପ୍ରଫୁଲ୍ଲକୁ କୁଣ୍ଢାଇ ପକାଇ କହିଲା—
ପିତୃହନ୍ତୀକ ତମେ ଭଲପାଇବ ପ୍ରଫୁଲ୍ଲବାବୁ ?
ତାହାପରେ ସେ ମାଧବୀ ପାଖକୁ ଯାଇ କହିଲା—
ପିତୃହନ୍ତାକୁ ତୁ କଣ ଭଲ ପାଇପାରିବୁ ମାଧବୀ ?

ତାହାପରେ ସେ ତାହାର ବୋଉ ପାଖରେ ପାଗଳମି ପରି ପଚାରି କହିଲା—

ତୁ କଣ ଆମକୁ ଜନ୍ମ କରିଥିଲୁ ବୋଉ, ବାପାଙ୍କୁ ମାରିବାକୁ ? ଜାଗରଣ ପିତୃହନ୍ତା — ମୁଁ ପିତୃହନ୍ତୀ···ଯୋଉ ବାପା ଆମକୁ ସ୍ନେହ କରୁଥିଲେ ଖୁବ୍, ଆମେ ତାହାଙ୍କୁ ମାରି ଦେଇଚୁ ଶେଷରେ···

ବୁକୁଫଟା ଚିତ୍କାରରେ କେବଳ ରୋଦନ କରିଉଠିଲେ ବଳଆର ସିଂହଙ୍କ ସ୍ତ୍ରୀ ।

କିଛି ସମୟ ପରେ ସମଗ୍ର ପରିବେଶରେ ଜାଗି ଉଠିଲା ସୂଚୀତୀକ୍ଷ୍ଣ ନୀରବତା ଏବଂ ନୂତନ ପ୍ରଭାତର ମଞ୍ଚଭୂମି ପ୍ରସ୍ତୁତ କରିବା ପାଇଁ କ୍ରମେ ଗମ୍ଭୀର ହୋଇ ଉଠିଲା **ମହାସନ୍ଧ୍ୟା ।**

ରଚନାକାଳ
୨୦-୧୦, ୩-୧୧
୧୯୪୪

ରାତି ପାହି ପାହି ଆସୁଛି । ଚଇତ ମାସର ଶେଷ ରାତି । ଜହ୍ନ ପକ୍ଷ । ଆକାଶ କୋଳରେ ଜହ୍ନର ଶେଷ ଆଲୁଅ ହଜି ହଜି ଯାଉଚି ।

ଶୋଇ ପଡ଼ିଚି ଅତନୁ । ଖୋଲା ଆକାଶ ତଳର ପାହାନ୍ତା ପବନର ପରଶ ଦେହ ମନରେ ତାର ଯେମିତି ସପନର ଆବେଗ ବୋଳି ଦେଇଚି । ଦୋ'ମହଲା କୋଠାର ଖୋଲା ଛାତ । ତାରି ତଳେ ବସି ତିନି ଚାରି ଘଣ୍ଟା ଆଗେ ପାଖରେ ଗପୁ ଥିଲେ ଅତନୁର ନୂଆବୋଉ । କେତେବେଳେ ସେ ଉଠି ଯାଇଚନ୍ତି ତା' ହୁଏତ ଅତନୁକୁ ଆଉ ଜଣାଯାଇନି । ଅତନୁ ଶୋଇ ପଡ଼ିବାର ଦେଖି ଦେହ ମୁଣ୍ଡକୁ ତାର ଅନେଇ ଅନେଇ ନୂଆବୋଉ କ'ଣ ଭାବୁଚନ୍ତି । ଦୋତାଲାକୁ ଆସିଥିବା ପାହାଚର ଶେଷ ମୁଣ୍ଡ ଉପରେ ଉଠିଥିବା ଚନ୍ଦ୍ରଶାଳାର କୋଠରୀ ଭିତରେ ଦୁଇଟି ବାଳିକାର ହସ ଉଚ୍ଛୁଳି ଉଠିଲା । ନୂଆବୋଉ ମୁହଁ ଫେରେଇ ଦେଖିଲେ, କୋଠରୀର କଣ ପଟକୁ ନେଶି ହୋଇ ଯାଉଚି ଛନ୍ଦା । ଛନ୍ଦା ଦେହର ଫିକା ପାଟଳ ରଙ୍ଗର ଶାଢ଼ୀର ପଣତ ବାହାରକୁ ଉବୁକି ଉଠିଛି, ସେଥିରେ ଚନ୍ଦ୍ର କିରଣର ପରଶ । ଯେମିତି ଛନ୍ଦାର ରଙ୍ଗିନ୍ ମନ ଉପରେ ଅତନୁର ଛାଇ ।

'ଛନ୍ଦୁ !'

କୌଣସି ଉତ୍ତର ନାହିଁ ।

'ଆଲୋ ସେ କଣରେ ପଶୁଚୁ କାହିଁକି ?'

ତାପରେ ପାହାଚରେ ଦୁଲ୍ ଦୁଲ୍ ହୋଇ ତଳକୁ ପଳେଇଲା ଛନ୍ଦା ।

'ନଳି ? ଆଲୋ ନଳି ! ନଳିମା ?'

ମୁହଁର ହସକୁ ପଣତରେ ଚାପି ପାହାଚ ସନ୍ଧିରୁ ଅପରାଧୀ ପରି ପଦାକୁ ଆସିଲା ନଳିମା । ଜହ୍ନ ଆଲୁଅ ଭିତରେ ସତେ ଯେପରି ଗୋଟିଏ ରଜନୀଗନ୍ଧା । ଦେହରେ ଅଗୁରୁ ଅତରର ବାସନା । ପିନ୍ଧିଥିବା କେଶରୀ ରଙ୍ଗର ଶାଢ଼ୀରୁ ଅନେକ ରଙ୍ଗ ଧୋଇହୋଇ ଯାଇଛି । ବାକି ଥିବା ରଙ୍ଗରେ ନଳିମା ଦିଶୁଛି ଗେରୁଆ ଶାଢ଼ୀ ପିନ୍ଧା ଗୋଟିଏ ଆଶ୍ରମ ବାଳିକା ଭଳି । ବେକଠଉଁ ଜାନୁଯାଏ ଲମ୍ବି ଆସିଥିବା କଳାଧୂମର ବେଣୀଟାକୁ ଟାଣି ଦେଲା ନୂଆବୋଉ । ଉଁ ଉଁ ହୋଇ ନାଥୁକନା ବସି ପଡ଼ିଲା ନଳିମା ।

ମନର ହସକୁ ମୁହଁରେ ଚାପି ପଚାରିଲେ ନୂଆବୋଉ, 'କଣ ସଙ୍କେତ ଦେଇଥିଲେ ଅତୁ, ନାଁ ସେମିତି ସେମିତି !'

'ଉଁ !'

ଗାଲରେ ତାର ଝୁନ୍ଦାଟାଏ ହାଣିଦେଲା ନୂଆବୋଉ ।

'ସତ କ' ! କହ୍ବ କହ୍ବ ବେଣୀକ ତାର ପୁଣି ଝିଙ୍କି ଧଇଲା ନୂଆବୋଉ ।

'ସେମିତି, ସେମିତି···ସେମିତି ଲୋ ଅପା !'

ବେଣୀଟା ସେମିତି ରହିଛି ନୂଆବୋଉର ହାତ ମୁଠା ଭିତରେ, ସେମିତି ଆତୁର କଣ ଜେଗ ବାକଅଛି ।

'ଆଲୋ ସେମିତି ସେମିତି କଣ ?'

'ଆଲୋ ମୋ ବେଣୀଟା ଆଗେ ଛାଡ଼୍ ! କାଟୁଚ ପରା···'

'କ' ସେମିତି ସେମିତି କଣ ?'

'ଆଇଥେଲୁ ଅଭୁଷଇ ଶୋଇଲେଣି କ ନା ଦେଖିବାକୁ ।'

'ଆଉ ବାସୁଚୁ ତୁ ଏତେ କାହିଁକ ।'

'ଉଁ'

'ଅଭିସାରକା ସାଜଚ ଆଜ ରାତିରେ ! ଛନ୍ଦା କୁଆଡେ ଗଲା—ତାର ଏ ଫିକର ।···ଆଲୋ କଣ କରଥାନ୍ତ ସବୁ କହିଲ ?'

ଭୁଷ୍‌କନା ଉଠି ପଳେଇଲା ନଳମା । ବେଣୀର ରେଶମ ଦୋଳାଟା ଛୁଣ୍ଡି ରହି ଗଲା ନୂଆବୋଉର ହାତରେ । ଅତନୁର ନିଦ ପତଳା ଧରିଲା । ଆପେ ଆପେ ଆଖି ଖୋଲଗଲା କ୍ଷଣକ ପରେ । ଅତନୁ ଅନେଇ ଦେଖିଲା, ଗ୍ଭତସାଗ ଚନ୍ଦ୍ର କରଣର ଝରଣା, ନିଜକୁ ଗୋଟିପଣେ ସେଥିରେ ଭଜେଇ କାହାକୁ ଗୃହିଁ ରହିଛନ୍ତ ନୂଆବୋଉ ।

'କଣ,···କଏ ଦୁମ୍ ଦୁମ୍ ହେଇ ପଳେଇଲା ?'

'ତମେ ତାକୁ କହିଥେଲ ରାତିରେ ଲୁଚ କର ଆସିବାକୁ ? ତମେ ଏଡ଼େ ଦୁଷ୍ଟ ହେଲଣି ନା ଅଭୁ ?'

ମୁହଁ ବୁଲେଇ ନେଲା ନୂଆବୋଉ । ଅତନୁକୁ ଦେଖାଯାଉ ନାହିଁ ସେ ମୁହଁ । ଅତନୁ ପଗ୍ଭର ଉଠିଲା—'କଏ ଆଇଥେଲା ନୂଆବୋଉ । କାହାକୁ ମୁଁ କଣ କହିଥିଲ ?'

ନୂଆବୋଉ ହସ ମିଶା ସ୍ୱରରେ କହିଲେ, 'ତମର ମାନସୀ, ସୁନ୍ଦରୀ··· ଶ୍ରୀମତୀ···'

'ଛନ୍ଦା !'

କଲ୍ କଲ୍ ହୋଇ ହସି ଉଠିଲା ନଆବୋଉ ।

॥ ଦୁଇ ॥

ସତ୍ତ ପାହ୍ୱ ପାହ୍ୱ ଯେମିତି ପାହ୍ୱନ୍ତ । ଅତନୁର ନିଦ ଯେମିତି ଭାଙ୍ଗିବା ଭାଙ୍ଗିବା ହୋଇ ଭାଙ୍ଗିନ । ହୁଏତ ଭାଙ୍ଗିଛି କିନ୍ତୁ ଉଠି ପାରୁନି ଅତନୁ, ପୁଣି ନିଦର ଆବେଗ ଭିତରେ ବୁଡ଼ି ରହୁଛି ତକିଆଟାରେ ମୁହଁମାଡ଼ି ।

ଗୋଡ଼ ଚପି ଚପି ପାହାଚ ଉପରେ ଉଠିଲେ ଛନ୍ଦା ଆଉ ନଳିନୀ । ଯେମିତି ଗୋଡ଼ ଚପି ଚପି ଆହୁରି ଯୋଡ଼ିଏ ପାହାଚ ଉପରକୁ ଉଠିଲେ ଦୁହେଁଯାକ । ଆଉ ଯୋଡ଼ିଏ ପାହାଚ ଟପିଲେ ଗୁଡ଼ । ସେତକ ଶେଷକୁ ସନ୍ଧ୍ୟା । ଭୋର ସମୟର ଫରଗ୍ଣ ଭିତରେ ଆଗରେ ଶୋଇଚି ଅତନୁ । ହିସାବରେ ଅତନୁ ବାଳିକା ଦୁଇଟିଙ୍କର ଭଉଣୀ ହେବ । ଅତନୁର ନୂଆବୋଉ ସବିତା ହେବ ଭଉଣୀ । ସମ୍ପର୍କରେ ମଧୁରତା ଭରପୂର ହୋଇ ରହିଛି । ତା'ର ଆକର୍ଷଣରେ ବାଳିକା ଦୁଇଟି ଯେମିତି ପାଗଳ ହୋଇ ଉଠିଛନ୍ତି । ଯେମିତି ନେପାଳର ଘନ ଜଙ୍ଗଲ ଭିତରର କସ୍ତୁରୀ ହରିଣ ଦୁଇଟି ।

ପାଖରେ ମଧୁଆ ଶୁକର ଶୋଇଥିଲା । ସେ ଅନେକ ବେଳୁ ଉଠିଯାଇ ଗୁହାଳ କାମରେ ଲାଗିଗଲାଣି । ସବିତା ଅପା ଉଠିବ ଯାଇ ଆଉ ଘଣ୍ଟାକ ପରେ । ସେଥିପାଇଁ ଏଇ ବେଳଟା ବାଳିକା ଦୁଇଟିଙ୍କ ପାଇଁ ଶୁଭ ସମୟ । ଯେମିତି ମାହେନ୍ଦ୍ର-କ୍ଷଣ ।

ନିଦୁଆ ନିଦୁଆ ମୁହଁ । ଅଲରା ଅଲରା ବାଳ ଝୁଲି ପଡ଼ିଚି ମୁହଁ ଉପରକୁ । ଆଖି ଆଉ ଓଠରେ ରସ-ରହସ୍ୟର ଆଭା ଫୁଟିଉଠୁଚି । ଏପାଖ ସେପାଖ ଆଖି ବୁଲେଇ ଗୁଞ୍ଜୁଣି ମୁଠେ ଯୋଗାଡ଼ କରିନେଲା ନଳିନୀ । ହାତରେ ଅଳତାର ଗୋଟିଏ ଶିଶି ଧରି ଅତନୁର ଶୋଇବା ଦେହକୁ ଅନେଇ ରହିଚି ଛନ୍ଦା । ଅତନୁର ମୁଣ୍ଡ ତଳୁ ଆସ୍ତେ ତକିଆ କାଢ଼ି ନେଇ ତା' ଜାଗାରେ ଗୁଞ୍ଜୁଣିକ ରଖିଦେବା ପାଇଁ ନଳିନୀ ଚେଷ୍ଟାକଲା । ଛନ୍ଦା ନଳିନୀର କାରସାଦିକ ଅନେଇ ରହିଲା ଆବେଗ ଧରି । ତକିଆ ଅଧବୁଞ୍ଜା ହୋଇଚି, ଗୁଞ୍ଜୁଣି ତକିଆର ଜାଗା ଦଖଲ କରିନି, ଏତିକବେଳେ ବଡ଼ ଅଡୁ-ଆରେ ପଡ଼ିଲା ପରି ଜଣାଗଲା ନଳିନୀ । ଅତନୁର ଆଖି ଏପର୍ଯ୍ୟନ୍ତ ଖୋଲିନି; କିନ୍ତୁ ତାର ହାତ ମୁଠା ଖୁବ୍ ଜୋର୍‌ରେ ଧରିଚି ନଳିନୀର ଡାହାଣ ହାତକୁ ।

ହଠାତ୍ ଛନ୍ଦାର ନଜର ପଡ଼ିଲା ଅତନୁର ଶେଯ ଉପରେ ପଡ଼ିଥିବା କଣ ଗୋଟିଏ କଳା ଜିନିଷ ଉପରେ । ବେଣୀର ରେଶମ ଦୋଳା । କାହାର ଏଇ ରେଶମ ଦୋଳା ? ଅତୁ ଭାଇଙ୍କର ବିଛଣାକୁ ଆସିଲା ନଳିନୀର ଏ ବେଣୀ ଦୋଳାଟା କେମିତି ? ନଳିନୀ କୁ ଅନେଇଲା ଛନ୍ଦା । ଗୁଡ଼ ତାର ରଗ ରଗ ହୋଇ ଉଠିଲା । ନଳିନୀର ମୁହଁ-ସାରା ସେତେବେଳକୁ ରଙ୍ଗା ପଡ଼ି ଗଲାଣି । ରାତିରେ ସବିତା ଅପାଠୁଁ ଏଇଠିକି ଆସିବା

ଯୋଗୁ ଖାଇଥିଲ ଖୁନ୍ଦା ଆଉ ଚୁଟିଝିଙ୍କା । ପୁଣି ସକାଳୁ ଏ କ ଦ୍ୱଶା । ଯେମିତି ପୁଲିଶ ହାତରେ ଗିରଫଦାଗି । ଭାବି ଭାବି ଛନ୍ଦାର ମୁହଁକୁ ଚାହିଁଲା ନଳିନୀ । କଣ କରିବ ସିଏ ? ଛନ୍ଦା ଏତେବେଳକେ ଦେଖିଲା ନଳିନୀର ହାତକୁ ଧରିଛି ଅତନୁ । ଛନ୍ଦା ହାତରୁ ଛିଟକି ଅଳତାର ଶିଶିଟା ଠକ୍ କରି ଖସି ପଡିଲା କୋଠାର ଛାତ ଉପରେ । ଚାରି-ଆଡ଼େ ନାଲି ଛିଟା ହସି ଉଠିଲା ଟକ୍ ଟକ୍ ହୋଇ । କୋଉଠି ରହିଲା ଅତନୁର ପାଦ, କୋଉଠି ରହିଲା ଛନ୍ଦାର ଅଳତା ଲେଖା । କ୍ଷଣକରେ ସବୁ କଥା ଭୁଲିଯାଇ ଥର ଥର ହୋଇ ଛନ୍ଦା ଚାଲିଗଲା ତଳକୁ ।

ଚମକି ପଡ଼ି ଅତନୁ ଉଠି କରି ଅନେଇଲା ଚାରି ଆଡ଼କୁ । କିଏ ବୁଣିଛି ଏଇ ନାଲି ? କାଚ ଭାଙ୍ଗିଛି ପୁଣି କିଏ ? ହାତରେ ତାର ବନ୍ଧା ରହିଛି ଗୋଟିଏ କୁମାରୀ କନ୍ୟାର ହାତ । ନଳିନୀର ମୁହଁରେ ଅତନୁର ଆଖି ପଡ଼ିଲା । ତଳର ନାଲି ରଙ୍ଗଠାରୁ ଆଉ ପ୍ରକାରେ ନାଲି ରଙ୍ଗ ସେଠି ଓଜାଡ଼ି ହୋଇ ଯାଇଛି ରୂପଦେବତାର ହାତରୁ ।

ନଳିନୀର ମୁହଁକୁ ଅନେଇ ଅତନୁ ଚମକି ଉଠି କହିଲା, 'ତୁମେ ନଳିନୀ, ଆଉ !!'

ଏତିକି କଥା ଭିତରେ ଅତନୁର ଧରିବା ହାତ କୋହଳ ହୋଇଗଲା । ସେ ଖାଲି ବଲବଲ କରି ଅନେଇ ରହିଲା ନଳିନୀର ଲାଜରେ ଭାଙ୍ଗି ପଡ଼ିଥିବା ମୁହଁକୁ । ବାଳଗୁଡ଼ାକ ଭୁରୁ ଭୁରୁ ହୋଇ ମୁହଁର ଶୋଭାକୁ ଆହୁରି ବଢ଼େଇ ଦେଇଛି । ତଳକୁ ନଇଁପଡ଼ିଥିବା ମୁହଁର ଗାଲ ଉପରେ କୁଣ୍ଡଳଟା ମୂର୍ଚ୍ଛିତ ହୋଇ ଲାଗି ରହିଛି । ହସ ନ ଫିଟୁଥିଲେ ମଧ୍ୟ ଓଠ କଣରେ ଲାଜମିଶା ସ୍ମିତ ରେଖାର ବିକାଶରେ ଓଠ କଣ ଆହୁରି ଗମ୍ଭୀର ହୋଇ ଉଠିଛି । ଛନ୍ଦା ନ ହେଲେ ମଧ୍ୟ ନଳିନୀ ବି ଅତନୁର ଶାଳୀ । ଉଣେଇଶ୍ ବିଶର ତଫାତ୍ । ମନ ଛଡ଼ା ଆଉ ସବୁ ଉପାଦାନ ନିର୍ଭୁଲ ଭାବରେ ଠିକ୍ । ନଳିନୀର ରୂପ ମଧ୍ୟ ଛନ୍ଦାର ରୂପଠାରୁ ଊଣା ହେବନି । ତଥାପି ଛନ୍ଦାର ଅନୁପସ୍ଥିତି ଭିତରେ ନଳିନୀର ହାତ ଧରିବାଟା ଏବଂ ପାହାନ୍ତାର ଶେଷ ବେଳାର ନିକାଞ୍ଚନତା ଭିତରେ ଗୋଟିଏ ବାଳିକା ସହିତ ଏକାଠି ରହିଥିବା ହେତୁ କ୍ଷଣକ ଭିତରେ ଅତନୁର ମନର ଅବସ୍ଥା ବଡ଼ ନିସ୍ତେଜ ହୋଇ ପଡିଲା । ଅନ୍ୟମନସ୍କ ଭାବରେ ନଳିନୀର ହାତରୁ ତା ହାତ ଅଲଗା ହୋଇଗଲା ।

ଅଭାବିତ ଭାବରେ ନଳିନୀ ଯେମିତି ଅଠା କାଣ୍ଡିଆରେ ପଡ଼ି ଯାଇଥିଲା । ଛନ୍ଦା କାହିଁକି ପଳିଯାଇ ପଳେଇ ଯାଇଛି, କାହିଁକି ହାତର ଅଳତା ଶିଶିକି ତଳେ ଫୋପାଡ଼ି ଦେଇଛି ଏସବୁ ଭାବନା ନଳିନୀର ମନରେ ଲହଡ଼ି ପିଟୁଥିଲେ ମଧ୍ୟ ସେ ନିରୁପାୟ ହୋଇ ରହିଥିଲା । ଖେଳ ଖେଳିବାକୁ ଆସି ଅତନୁ ହାତରେ ବନ୍ଦୀ ହେବ ବୋଲି ସେ ମଧ୍ୟ ଭାବି ପାରି ନଥିଲା । ଭିତରେ ଭିତରେ ସେ ସରମରେ ଦରମରା ହୋଇ ଚାଲିଣି । ହାତରୁ ତାର ଅତନୁର ହାତ ଖସିଲାକ୍ଷଣି ସେ ଦି' କ୍ଷେପାରେ ଛାତଟାକୁ ଟପି ପଳେଇ ଯିବାକୁ ଉଠି ପଡ଼ିଲା । କ୍ଷେପାକ ପରେ ଆଉ କ୍ଷେପା ପାଇଁ ଗୋଡ଼ ପକାଇଲା କ୍ଷଣି ରଇ୍ କିନା ପାଦରେ ତାର ଅଳତା ଶିଶିର ଭଙ୍ଗା କାଚ ଗଳିଗଲା । ଲାଜ ମିଶା କଣ୍ଠରେ ଗୋଟିଏ 'ଉହୁ' ଶବ୍ଦଟିଏ କରି ଛଟ କରି ବସିପଡ଼ିଲା ନଳିନୀ ।

ଆଖିରେ ତାର ଲୁହର ବନ୍ଦ । ପାଦରୁ ଏଣେ ରକ୍ତର ଧାର ଛୁଟିବାକୁ ଲାଗିଲା । ପଳେଇଯିବା ପାଇଁ ମନ ଭିତରେ ଆବେଗ ସୀମା ଟପିବାକୁ ବସିଥିଲେ ବି ସେ ନାଗର ହୋଇ ଗୋଡ଼କୁ ଧରି ବସି ପଡ଼ିଲା ।

ଆଖି ଆଗର ଘଟଣା । ଅତନୁକୁ କୌଣସି କଥା ଅଛପା ରହିଲାନି । ଆଖି ପିଛୁଳାକରେ ସେ ଉଠିଯାଇ ନଳିନୀକ ନିଜର ଦୁଇ ହାତରେ ଧରି ପକେଇ ଧୀରେ ନିଜର ବଛଣା ଉପରକୁ ନେଇ ଆସିବାକୁ ଚେଷ୍ଟାକଲା ।

ନିଜର ଅବସ୍ଥା ଭୁଲିଯାଇ ନଳିନୀ ପାଟି ଖୋଲି କହି ଉଠିଲା, 'କାଚ ମାଡ଼ିବ, କାଚ ମାଡ଼ିବ ।'

ହସି ଉଠିଲା ଅତନୁ । ନଳିନୀକ ବଛଣାରେ ଶୋଇ ଦେଇ ସେ ଅନୁଭବ କଲା ତାର ନିଜ ପାଦରେ ଯେମିତି କଣ ଆଘାତ ଲାଗିଚି । ପାଦକୁ ଟେକି ପଛ ଆଡ଼ୁଆ ନଇଁ ପଡ଼ି ନିଜର ପାଦରୁ କାଚର ଗ୍ଲେଟ ଗୁଣ୍ଡିଟିଏ କାଢ଼ି ଦେଇ ଅତନୁ ଦେଖିଲା ମସ୍ତ ବଡ଼ ଖଣ୍ଡିଏ କାଚ ଗଳି ଯାଇଚି ନଳିନୀର ପାଦରେ । ପଦାକୁ ବାହାରି ଥିବା କାଚର ବାକି ଅଂଶକୁ ଧରି ଅତନୁ କାଚ ଖଣ୍ଡକୁ ଟାଣି ଆଣିଲା ।

ଗୋଡ଼ ବଳା ଗଣ୍ଠିର ଗୃଖଣ୍ଡେ ଉପରକୁ ନଳିନୀର ଲୁଗା ଉଠି ଯାଇଥାଏ । ଖୁବ୍ ଫର୍ସା ନ ହେଲେ ମଧ୍ୟ ନଳିନୀର ଦେହର ରଙ୍ଗ ମଳିଗ୍ନ ନୁହେଁ । ଆଖିକି ସୁନ୍ଦର ଦିଶିଲା ଭଳି ରଙ୍ଗ । ସେଥିରେ ପୁଣି ନୂଆ ଯୌବନର ଉଚ୍ଛୁଳା ତରଙ୍ଗ ଖେଳି ବୁଲୁଚି । ଅତନୁ ଏ ସବୁ କିଛି ଦେଖିବ ବୋଲି ଆଶା କରି ନ ଥିଲା । ବଛଣାର ରେଜେଇ ତଳୁ ରଖିଥିବା ରୁମାଲ ଖଣ୍ଡକ ବାହାର କରି ଆଣି ତାର ଗୋଟିଏ କାନିରେ ବନ୍ଧା ହୋଇଥିବା ଧଳା ପଥର ବସା ମୁଦିଟିକୁ ନିଜର ଆଙ୍ଗୁଠିରେ ଲଗେଇ ରୁମାଲ ଖଣ୍ଡକ ଚିରି ଦେଇ ନଳିନୀର କ୍ଷତ ସ୍ଥାନରେ ପଟି ବାନ୍ଧୁ ବାନ୍ଧୁ ଅତନୁର ଆଖି ପଡ଼ିଲା ନଳିନୀର ବଲୋମ ଭଣ୍ଡା ଉପରେ । ବାଁ ଗୋଡ଼ର ପାଦରେ ଆଘାତ ଲାଗିଥାଏ, ଡାହାଣ ଗୋଡ଼ଟି ଟିକେ ଦୂର ଛଡ଼ା ହୋଇ ଦୁଇ ଗୋଡ଼ ଭିତରେ ଗୋଟିଏ ତ୍ରିକୋଣ କ୍ଷେତ୍ର ସୃଷ୍ଟି କରି ବଛଣାର ଟିକେ ବାହାରକୁ ଗୃଲିଯାଇ ଥାଏ । ପୂର୍ବ ଦିଗକୁ ମୁଣ୍ଡ କରି ଦକ୍ଷିଣ ମୁହାଁ କଡେଇ ହୋଇ ପଡ଼ି ରହିଥାଏ ନଳିନୀ । ନିତମ୍ବ ଓ ବାହୁମୂଳ ମଝିରେ ସୀମା ରେଖା କଟିବନ୍ଧ ପାଖରେ ଯଥେଷ୍ଟ ତଳକୁ ନଇଁ ଯାଇଚି । ବର୍ତ୍ତୁଳ ନିତମ୍ବ ଉପରେ କେବଳ ପରସ୍ତେ ମାତ୍ର ଲୁଗାର ଆବରଣ । ସେଥିରେ ଫଳତ ତନୁଲତାର ଗଠନ ଯୁବକ ଆଖିରେ ମାୟା ଲଗେଇ ଦେବା ପାଇଁ ଅନେକ ସୁବିଧା ପାଇଚି । ନଳିନୀର ଦୋଳାହୀନ ବେଣୀଟା ଗୃତ୍ତରେ ନିଦ ବାଉଳା ଶୋଇବା ଭିତରେ ଦରଫିଟା ହୋଇ ବର୍ତ୍ତମାନ ଅତନୁର ବଛଣାରେ ଲୋଟି ପଡ଼ିଚି । ବେକ ମୂଳର ଚୂନା ଚୂନା ବାଳ-ଗୁଡ଼ିକ ପାହାନ୍ତା ପବନରେ ଝୁରୁଝୁରୁ ହୋଇ ଥରୁଚି । ଗ୍ଲଷ୍ଟ ଉପରର ହାରଟା ପିଠି ପାଖକୁ ଲୋଟି ପଡ଼ି ତାହାର ପଦକଟା ବାଁ କାନ୍ଧର ଟିକେ ତଳକୁ ଝୁଲୁଚି । ବ୍ଲାଉସ ନାହିଁ ନା ବଡ଼ିଶ ନାହିଁ । ଲୁଗାରେ ଘୋରେଇ ହୋଇ ରହିଛି ପିଠି ଆଉ ଗ୍ଲଷ୍ଟ । ଡାହାଣ ହାତଟି ଯାକ ହୋଇ ରହିଚି ତଳ ପାଖରେ । ବାଁ ହାତଟା ପଦ୍ମନାଡ଼ ପରି ନିତମ୍ବ

ଯାଏ ଲମ୍ବି ଆସିଛି କଟି ଉପର ଦେଇ । ଦେହର ସମସ୍ତ ଯନ୍ତ୍ରଣା ସତ୍ତ୍ୱେ ମୁହଁକୁ ତକିଆ ବହରେ ମାଡ଼ି ଦେଇଛି ନଳିନୀ, ଯେମିତି ସରମ ଲହଡ଼ିରେ ଅତଳ ଲାଜ-ସମୁଦ୍ର ଭିତରକୁ ଖସି ଯାଇଛି ସେ ଆଜି ।

॥ ତିନି ॥

ନଳିନୀ ପାଦରେ ପଟି ବାନ୍ଧି ଦେଇ ଥରେ ତାକୁ ଭଲ କରି ଅନେଇ ନେଲା ଅତନୁ । ସେତେବେଳକୁ ଗୃହଆଡ଼ ଅନେକ ସଫା ହେଇ ଗଲାଣି । ବିଛଣାରେ ସେଇ ବେଣୀର ଦୋଳାଟା ସେମିତି ସେଇଠି ପଡ଼ିଛି । ତାକୁ ହାତରେ ଗୋଟେଇ ନେଇ ଆବେଗ ଧରି ଅତନୁ ପଚାରିଲା—

'ଏ ଦୋଳାଟା କା'ର ନଳିନୀ ?'

ରାତିର ପହିଲୁ ପହରର କଥା ଶେଷ ପହରକୁ ବିଲ୍‌କୁଲ୍ ଭୁଲି ଯାଇଛି ନଳିନୀ । ଅତନୁର କଥାରେ ସେ ମୁହଁ ବୁଲେଇ ଅତନୁ ହାତରେ ତାର ଦୋଳାଟାକୁ ଦେଖି ହସ ଟହ ଟହ ଓଠରେ କହିଲା ।

'ମୋର, ସଞ୍ଜତା ଅପା କାଲି ଛୁଣ୍ଡେଇ ଦେଇଥିଲା ଏଇଠି !'

'ଏଇଠି, କାଲି ଏଇଁଠି କି ତମେ କେତେବେଳେ ଆଇଥିଲ ପୁଣି ?'

ଅତନୁର ଏକଥାର କିଛି ଜବାବ ନ ଦେଇ ହସି ହସି ତକିଆରେ ମୁହଁ ମାଡ଼ିଦେଲା ନଳିନୀ । ଆକାଶରେ ପଞ୍ଝାଏ ପକ୍ଷୀ ନାନା ସ୍ୱରର କାକଳି କରି କରି ଉଡ଼ି ଚାଲିଗଲେ । ବିଛଣା ଉପରେ ଆଣ୍ଠୁ ମାଡ଼ି ବସି ନଳିନୀର ଲେଟି ପଡ଼ିଥିବା ବେଣୀରେ ନିଜର ଅନାଡ଼ି ହାତରେ ଦୋଳାଟାକୁ ଅତନୁ ବାନ୍ଧିବାକୁ ଲାଗିଲା । କାଲି ଗୋଧୂଳି ସମୟରେ ବାନ୍ଧିଥିବା ବେଣୀରେ ଏ ପର୍ଯ୍ୟନ୍ତ କାନ୍ଥାରାଇଡ଼ିନ ତେଲର ବାସନା ଅଳ୍ପ ଅଳ୍ପ ରହିଛି । ଅତନୁର ନାକ ପାଖରେ ସୁବାସର ଛୋଟ ଲହରୀଟିଏ ଘୂରିଗଲା । ଦୋଳାଟାକୁ ଯାଇତାଇ ବାନ୍ଧି ଦେଇ ଉଠି ଯାଉ ଯାଉ ଟିକେ ଟାଣି ଦେଲା ସେଇ ବେଣୀଟାକୁ । ବେଣୀଟାକୁ ଟାଣି ଦେଇ ନିଜର ସାହସରୁ ଅଧେ ଯେମିତି ଅତନୁ ହଜେଇ ଦେଲା । ହଠାତ୍ ଠିଆ ହୋଇ ପଡ଼ି ଉତ୍ତର ପାଖର ପାରାପେଟ୍ ପାଖକୁ ଚାଲି ଯାଇଁ ଦୂରକୁ ଅନେଇଲା ଅତନୁ । ଦୂରରେ ପଶ୍ଚିମ କୋଣରେ ମଲା ଜହ୍ନର ତଳେ ତଳେ ଖଣ୍ଡେ ଛୋଟ ବଉଦ ଭାସି ଯାଉଛି । ଦୂର ପାହାଡ଼ ତଳର ବେଲ ବଣ ଉପରେ ଉପରେ ମାଡ଼ି ଯାଉଛି କୁହୁଡ଼ିର ସୁଅ । ସୁନ୍ଦର ଦିଶୁଛି ପୃଥିବୀ ।

ଅତନୁ ମନେ ମନେ କ୍ଷଣକ ସକାଶେ ଭାବିଲା ଏଇ ମେଘ ଆଉ କୁହୁଡ଼ିର କୌଣସି ସ୍ଥାୟୀ କରାମତି ନ ଥିଲେ ବି ପୃଥିବୀକୁ ସୁନ୍ଦର କରି ଦେଖାଇବାରେ ଏହାର ପ୍ରଭାବକୁ ଅସ୍ୱୀକାର କରି ହୁଏନି । ଯେମିତି ନଳିନୀର ବେଣୀ ଆଉ ତାର ଦୋଳା । ଛିଣ୍ଡି ଯାଇଥିଲା ହୁଏତ କାଲିଠାଇଁ; କିନ୍ତୁ ପୁଣି ନିଜ ଜାଗାରେ ଲାଗିଯାଇ ଦୋଳାଟି ସୁନ୍ଦର କରି ଦେଇଛି ବେଣୀକୁ ।

ଏତିକ ଭାବ ହଠାତ୍ ପଛକୁ ବୁଲିପଡ଼ି ଅତନୁର ଆଖି ମିଳିଗଲା ନଳିମାର ଆଖି ସାଙ୍ଗରେ । ଫିକ୍ କରି ହସି ଉଠିଲେ ହିଁହେଁଯାକ । କ୍ଷଣକ ବାଦ ଅଭିମାନଭରା ସ୍ୱରରେ ନଳିମା କହି ଉଠିଲା—

'ଛନ୍ଦା ଅପା କଣ କରୁଚି କି ସେଠି ? ତାଙ୍କୁ ଏତେ ଅନେଇ ଅନେଇ ତମେ କଣ ଦେଖୁଚ ଅତନୁ ଭାଇ ?'

ଏତିକ କଥା ଖୁବ ସାହସରେ କହିଲା ନଳିମା । ପୁଣି ଆଗର ଲଜରେ ନିଜେ ତାଙ୍କି ପଡ଼ିଲା ସେ । ଭିତରେ ନାରୀର ଅଭିମାନ ଭରି ରହିଛି । ବାହାରେ ଲଜ । କିନ୍ତୁ ନିଜ କଥାରେ ଅତନୁକୁ ଦୂରକୁ ଠେଲିଦେଲା ବୋଲି ନଳିମା ଭାବି ପାରିଲା ନି । ଜଣେ ସାନ ଭଉଣୀ ଭାବରେ ଛନ୍ଦାର ସହଚରୀ ରୂପେ ସେ ଯେ ଅତନୁର ଏତେ ପାଖକୁ ଆସିଥିଲା ସେ କଥା ତା'ର ଆଉ ମନେ ନାହିଁ ।

ନଳିମାର ପାଖକୁ ଲାଗି ଅତନୁ ଅଧୀର ହୋଇ ପଚାରିଲା—'ମୁଁ ଭୁଲି ଯାଇଥିଲି ନଳିମା, ତମେ ସତ କହିବ ଏକା—ଛନ୍ଦା ଏଠୁ ସେତେବେଳେ କାହିଁକି ପଳେଇଗଲା କହିଲ ? ଅଳତା ଶିଶିଟା ଏଠିକି ଆଣି ଏତେ ସକାଳୁ ସେ ଏଠି ଭାଙ୍ଗିଦେଇ ଗଲା କାହିଁକି ? କଣ ମୁଁ ଯେମିତି ସକାଳୁ ଉଠି କାଚ ମାଡ଼ି ପକେଇବି ସେଇଥିଲାଗି ?'

ଏତେ ସମୟ୍ଯ ଆଉ ଏମିତି ଭୋର ସମୟରେ ଜଣେ ଯୁବକ ପୁରୁଷ ପାଖରେ ଏକୁଟିଆ ରହିବାର ଅଭ୍ୟାସ ନଳିମାର କେବେ ନ ଥିଲା । ଦଳଛଡ଼ା ହୋଇ ଏକୁଟିଆ ଭାବରେ ନକଲ ପରିହାସର ଦୁଃସାହସିକତା ତା'ଭିତରେ କେବେ ଦେଖା ଦେଇନି । ଆଜି ସେ ସବୁ କଥାର ଓଲଟ ପାଲଟ ହୋଇଯାଇଛି । ଗୋଡ଼ କାଟି ହୋଇ ଖେପା ମାରି ପଳେଇ ଯିବାର ସୁବିଧା ମଧ୍ୟ ନଷ୍ଟ ହୋଇଚି । କିନ୍ତୁ ଅତନୁର ଏହି ନିରୋଳା ମିଳାମିଶା ଭିତରେ ମନ ତାର ଆଉ କଣ ହୋଇ ଉଠିଥିଲେ ବି ସେ ଭିତରେ ବଡ଼ କାତର ହୋଇ ପଡ଼ିଲାଣି । କାଳେ କେତେବେଳେ କଣ ଘଟିଯିବ ! ନାରୀ ମନର ଏହି ଚିରକାଳ ପାପ ତା' ଭିତରେ ଥରେ ଥରେ ଉକୁକି ଉଠିବାକୁ ଲାଗିଲା ।···କଣ ସେତେବେଳେ ସେ କହିପକାଇଲା ଅତନୁ ଭାଇଙ୍କି ! ଛନ୍ଦା ଅପାକୁ ଅତନୁ ଭାଇ ଅନେଇ ରହିଲେ ତାର କଣ ଏବେ ହାନି ହୋଇଗଲା ! ସବିତା ଅପା ଉଠିବଣି । ଛନ୍ଦା ଅପା ସେତେବେଳୁ ପଳେଇଯାଇଛି । ମୋ ରହିବା କଥାକୁ ସେ କଣ ଭାବୁଥିବ ଏଇକ୍ଷିଣି । ନିଜର ସବୁତକ ସାହସକୁ ହଜେଇ ଦେଇ ସେ କାତର ଭାବରେ କହିଲା—

'ନାଁ, ଛନ୍ଦା ଅପା ଅଳତା ବୋଳି ଦେବାକୁ ଆଇଥିଲା ତମ ଗୋଡ଼ରେ । ହାତରୁ ଅଳତା ଶିଶିଟା ଖସି ପଡ଼ିବାରୁ ସେ ଧରା ପଡ଼ିଯିବ ବୋଲି ଲଜରେ ଏଠୁ ପଳେଇଚି ।'

'ସତେ ତମେ ଏତେକଥା କରିବ ବୋଲି ରାତିରେ ସପନ ଦେଖୁଥିଲ ନା କଣ ?'

ଏତିକ କଥା କହି ପାହାଚରେ ଦୁମ୍ ଦୁମ୍ ହୋଇ ତଳକୁ ଓହ୍ଲାଇ ଗଲା ଅତନୁ । ନିଃଶ୍ୱାସ ମାରି ନଳିମା ଉଠି ବସିଲା ବିଛଣାରେ । ପାଦରେ ବନ୍ଧା ହୋଇଥିବା

ପଟିକି ଅନାଇ ଦେଖିଲା, ଟିକେ ଟିକେ ରକ୍ତ ଜମିଛି କନା ଉପରେ । ପାଦକୁ ତଳେ ଚିପି ପରୀକ୍ଷା କରିନେଲା ଆଘାତର ଗୁରୁତା । ତା ପରେ ଧୀରେ ଧୀରେ ଉଠି ଛିଡ଼ା ହେଲା । ବାଁ ଗୋଡର ଟିପ ଥର ଥର ହୋଇ ଉଠିଲା । ଗୋଇଠିଟା ଚିପି ହୋଇଗଲା ବିଛଣା ଦେହରେ । ଇସ୍ ଏ କଣ ହେଲା । ଅତୁ ଭାଇଙ୍କ ବିଛଣାରେ ଏ କଣ ହେଲା । ଭାରି ଦୁଷ୍ଟ ଛନ୍ଦା ଅପା ।

## ॥ ଗୃହ ॥

ତହିଁଆରଦିନ ରବି । ଅତନୁ ଦିନର ଉପର ଓଳଟା ଯାକ ଗାଁ ତୋଟା କୁଞ୍ଜବନର ତମାଳଗଛ ଛାଇଁରେ ମୁଚୁକୁନ୍ଦ ଆଉ ନାଗେଶ୍ୱର ଫୁଲର ସୁରଭି ପବନ ଭିତରେ ସାହି ଯୁବକମାନଙ୍କ ସହ ପଶା ଖେଳ କଟେଇ ଦେଇଚି । ଗାଁରେ ଗୋଟିଏ ମାଇନର ସ୍କୁଲ ଅଛି । ବୋର୍ଡ଼ିଂକୁ ଯାଇ ସେଠି ଶିକ୍ଷକମାନଙ୍କ ସାଙ୍ଗରେ ସେ ତାର କଲେଜ ଜୀବନର ଅଭିଜ୍ଞତା କିଛି ମଧ୍ୟ ଦେଖେଇ ପାରିଥାନ୍ତା; କିମ୍ବା ପିଲାଙ୍କ ଆଗରେ ଦୁନିଆର ତାଜୁବ୍ କଥା କିଛି କହି ନିଜର ପ୍ରତିଷ୍ଠା ହୁଏତ ଜମେଇ ପାରିଥାନ୍ତା; କିନ୍ତୁ ଆଜି ସେ ସବୁ କିଛି ସେ କରିନି । ଛନ୍ଦା ଘର କୋଠା ଆଗରୁ ଦୂରରେ ରହି କିଛି କରିବାକୁ ତାର ଆଜି ମନ ହେଉନି ଜମା । କୋଠା ଆଗରେ ଗାଁ ତୋଟା କୁଞ୍ଜବନ । କୋଠା ଆଉ କୁଞ୍ଜବନ ମଝିରେ ଗୋଟିଏ ନୀଳାମ୍ବୁ ପୁଷ୍କରିଣୀ । ଦୁଇଗୋଟା ହଂସ ମଧ୍ୟ ପାଣିରେ । ଖରାଦିନେ ଘାପଦଣ୍ଡୀର ଅଧାରୁ ତଳକୁ ପାଣି ଖସି ପଡ଼ିଥିଲେ ବି ହଂସ ମିଥୁନର କ୍ରୀଡ଼ାପାଇଁ ତାହା ଯଥେଷ୍ଟ । କୋଠାର ଦୋ'ମହଲାର ଝରକାରେ କୁଞ୍ଜବନର ସବୁଜ ଛାଇ ବିମ୍ବି ହୋଇ ପଡ଼େ । ସେଠି ମୁଚୁକୁନ୍ଦ ଆଉ ନାଗେଶ୍ୱରର ଗନ୍ଧ ବି ଯାଇ ପହଞ୍ଚେ । ଆଉ କୁଞ୍ଜବନଟା ବି ବେଳେ ବେଳେ ଉଜ୍ଜ୍ୱଳ ହୋଇଉଠେ ଝରକାର କରୁଣା ପାଇ । ତାହା ଝିଲ ପାଞ୍ଚାଳୀର ଝଟକରେ ନୁହେଁ । ଛନ୍ଦା ଆଉ ନଳିନୀର ଲୀଳାୟିତ ଭଙ୍ଗୀ ଆଉ ଯୌବନମୟ ସୁଷମାରେ । ପୁଷ୍କରିଣୀ ଆଉ କୁଞ୍ଜବନର ଧାରେ ଧାରେ ଚାଲିଯାଇଛି ରାସ୍ତା—ପୂର୍ବରୁ ପଶ୍ଚିମକୁ । କୋଠାଟି ଦକ୍ଷିଣ ମୁହାଁ । ଠିକ ଦକ୍ଷିଣରେ କୁଞ୍ଜବନ । ସେହି କୁଞ୍ଜବନ ଧାର ରାସ୍ତାରେ ପଥିକ ମଧ୍ୟ ଆନନ୍ଦ ପାଆନ୍ତି କୋଠାଟି ଯୋଗୁଁ । କୋଠା ଦୋମହଲାର ଝରକାଗୁଡ଼ିକ ଖୋଲା ନ ହୋଇଥିଲେ ସେଦିନ ସେ ବାଟରେ ପଥିକ ଯେମିତି ଭିତରେ ନୈରାଶ୍ୟର ବୋଝ ବୋହି ଫେରେ । ଝରକା ପ୍ରାୟ ଚାରୋଟି, ସେଗୁଡ଼ିକ ଖୁବ ବଡ଼ । ମଣିଷର ପୂରା ଅବୟବ ସେଥିରେ ପ୍ରକାଶ ପାଇ ପାରିବ । ସେହି ଝରକାଗୁଡ଼ା କଖୋଲା ରହିଲେ ଯେ ସବୁବେଳେ ବାତାୟନ ପଥରେ ବାଳିକାର ଦର୍ଶନ ମିଳେ ତାହା ମଧ୍ୟ ନୁହେଁ । କିନ୍ତୁ ଏକ ତୀର୍ଥସ୍ଥଳ ପରି ସେଠିକି ଦୃଷ୍ଟି ଫେରେଇ ପଥିକ ଯେମିତି ଆଶ୍ୱସ୍ତ ହୁଏ । ହୁଏତ ମୁହୂର୍ତ୍ତକ ଆଗରୁ ସେଠାରେ କେହି ଥିଲା, ଏ ଏକ ସନ୍ତୋଷ । ବାଟଚଲା ପଥିକ ପାଇଁ ଏତିକି ଟିକେ ଆନନ୍ଦ । ସେଥିରେବି ତାର ଖୁସି ।

ଝରକାର ରେଲିଂ ଧରି ଛୁଡ଼ା ହେଇଚ କିଏ ? ଛନ୍ଦା ନା ନଳିମା । ଝାପ୍‌ସା ଝାପ୍‌ସା । ଧେତ୍ କୁଞ୍ଜବନର ଡାଳ ପତରଗୁଡ଼ା ଏତେ ତଳକୁ ଓହଳିଚ କାହିଁକି ! ପଶା ଖେଳୁ ଖେଳୁ ଅନ୍ୟମନସ୍କ ହେଇ ଉଠିଲି ଅତନୁ ।

'ପ' ବାର୍ ତେର । ହିଁ ଗୋଟା ବଡ଼ ଦାନ ପକେଇଲି ଭେଣେଇ !'

ସାହିର ଚତୁର୍ଭୁଜର କଥାରେ ପାଲି ଉପରକୁ ଆଖିଫେରେଇଲା ଅତନୁ । ଦେଖିଲା, ତା ପାଖକୁ କାଟି ଆସିବାକୁ ଆଉ ତିନି ମିନିଟ ବାକି । ଚତୁର୍ଭୁଜର ଏ ଗ୍ଳଟା ସେ ବୁଝିଲା । ବିମର୍ଷତା ଭିତରେ ମଧ୍ୟ ଟିକେ ହସ ଫୁଟେଇଲା ସେ ଓଠରେ ।

ଝଲକାଏ ପବନ ବହି ଆସିଲା । ନାଗେଶ୍ୱରର ବାସନାରେ ଭରି ଉଠିଲା ତୋଟାଟା । ଅତନୁର ସାର ଉପରେ ଠାଏ କରି ଗୋଟା ମାଡ଼ ବସେଇଲେ ଆଉ ସାହିର ଭଗତ ବାବୁ । ସାରଟା ଛିଟିକି ପଡ଼ିଲା ଦୂରକୁ । ଚତୁର୍ଭୁଜ ହସି ଉଠି କହିଲା, 'କୁଣିଆକୁ ଏମିତି ମାରୁଛ ଅଜା' । ଭଗତ ବାବୁ ଓସ୍ତାଦ୍ ଖେଳାଳୀ । ଏ କଥାରେ ହସି ହସି ଅତନୁକୁ କୋଳକୁ ଟାଣି ନେଇ ତା ହାତର କାଠି ମୁଠାକ ନିଜ ହାତର ଆଘାତରେ ଦୂରକୁ ଛିଆଡ଼ ଦେଲେ । ଏଣେ ପାଟିରେ ଡାକ ଉଠିଲେ 'ସତର' । ଦାନ ଠିକ୍ ସତର ପଡ଼ିଲା । ନିଜ ହାତରେ ଅତନୁର ସାର ଚଳେଇ ଭଗତବାବୁ ଠାଏ କରି ଗୋଟା ମାଡ଼ ଚଢ଼େଇଲେ ନିଜର ସାଥୀ ଖେଳାଳୀ ପାହାଡ଼ା ସିଂଙ୍କ ଗୋଟି ଉପରେ । ଠୋ ଠୋ ହୋଇ ସମସ୍ତେ ହସିଉଠିଲେ । ଅତନୁ ଜାଣିଲା ଏଇଟା ତା'ର ଗୌରବ ନୁହେଁ, ଅଖ୍ୟାତି । ତଥାପି କାମଟା ସରିଯାଇ ତା'ପାଖକୁ ଅବସର ଆସିଚି ବୋଲି ଭାବି ସେ ଆଶ୍ୱସ୍ତ ହେଲା । କିନ୍ତୁ ପରମୁହୂର୍ତ୍ତରେ ସେ ଖୁବ୍ ନିରାଶ ହୋଇ ପଡ଼ିଲା ଯେମିତି । କୁଞ୍ଜବନର ଡାଳ ପତରଗୁଡ଼ା ଆଗ ଭଳି ସେମିତି ଓହଳିଚି । ପବନରେ ହଲୁଚି ବି । କିନ୍ତୁ ସେ ଝରକାଟାର ଏ କି ଦଶା । କୁଆଡ଼େ ଗଲା କିଏ ? କିଏ ଠିଆ ହୋଇଥିଲା ସେଠି ? ନଳିମା ନାଁ ଆଗେ ଉଠିଲା ତା' ମନରେ । ସେଠି ସଂଗ୍ରାମ ଲଗିଲା କ୍ଷଣକ ପାଇଁ, ନା ଛନ୍ଦା । କିଏ କହୁଚି ଏକଥା । କାହା କୂଳ କିନାରା ନାହିଁ । ଅତନୁ ତଥାପି ଶୁଣିଲା ସେଠି ଛନ୍ଦାର ନାଁ ଶୁଭୁଛି । ଆଶ୍ଚର୍ଯ୍ୟ । କିଏ କହୁଚି ଏକଥା । ନିଜ ଭିତରେ ନୀରବ ହେଲା ଅତନୁ ।

ସନ୍ଧ୍ୟା ଆଗରୁ ଅତନୁ ଆଜି ଜଳଖିଆ ଖାଇବାକୁ ଆସିନି । ସରି ଯାଇଚି ସବୁତା । ଜୱାଁର ସାନଭାଇ ମଧ୍ୟ ଜୱାଁ । ଜୱାଁ ପୁଅଙ୍କ ଢଙ୍ଗରେ ସବୁତାର ବୋଉ ମଧ୍ୟ ଅସ୍ୱସ୍ତି ବୋଧ କରିଛନ୍ତି । ଟୋକାଙ୍କ ସାଙ୍ଗରେ ନଈବନ୍ଧ ଆଡ଼େ ବୁଲି ବୁଲି ଅତନୁ ପ୍ରାୟ ନଅଟା ବେଳକୁ ଫେରିଲା । ଜହ୍ନ ସେତେବେଳକୁ ଉଠି ସାରିଚି । ଆଲୁଅ ଅନ୍ଧାରରେ କୁଞ୍ଜବନର ତୋଟା ଭୂଇଁଟା ବଚିତ୍ର ହେଇ ଉଠିଛି । ଘରେ ପହଞ୍ଚି ଅତନୁ ତା'ର ନୂଆବୋଉ ଉଦ୍ଦେଶ୍ୟରେ ଡାକ ଉଠିଲା । ଶାଶୁ ଆଗରେ ହେବାର ଦେଖି ଟିକେ କାଇଲ୍ ହେଇ ପଡ଼ିଲା । ଚଟି ହଳଟା ଗୋଡ଼ରୁ କାଢ଼ି ପକେଇ ପିଣ୍ଡା ଉପରେ ବସି ପଡ଼ୁ ପଡ଼ୁ ଶାଶୁ ହାଁ ହାଁ କରି ତଳେ ବସିବାକୁ ବାରଣ କରି ଉଠିଲେ । ଅତନୁ ହସ ମିଶା ସ୍ୱରରେ କହିଲା, 'କିନ୍ତୁ ଏଠି ଯେ ଆପଣଙ୍କ ପାଦ ଧୂଳି ଲଗିଚି । ଆସନ ଗୃହଁ ଯାର ମୂଲ୍ୟ ତେର୍ ବେଶୀ ।'

ଶାଶୁଙ୍କର ଯାହାକିଛି ଅଶ୍ୱସ୍ତି ଥିଲା, ଏ କଥାରେ ତା ଯେମିତି ଉଭାନ୍ ହୋଇଗଲା । ଏତିକିବେଳେ ନଳିମା କହି କହି ଆସି ଖଣ୍ଡେ ଆସନ ପକେଇ ଦେଲା—

'ଆଜି ସେଠିକି ଖାଲି ଆମର ପାଦ ଧୂଳି ଲଗିଚି । ମୁଁ ଆଜି ସେଇଠି ବସି ସବିତା ଅପାର ମୁଣ୍ଡ ବାନ୍ଧି ଦଉଥେଲି । ବସ ମ, ବସ ମ ଟିକେ, ଆମ ପାଦଧୂଳି ହେଲେ ପାଇ ଯାଇ ଥା··· ।

ସବିତା ବୋଉ ପାଟି କରି ଉଠିଲେ—

'ଆଲୋ ଯିବେ ସେ କୁଆଡ଼େ । ଜମା ଦି ଦିନ ହେଲା ଆସିଲେ । ଏତିକିରେ ତମେ ତାଙ୍କ ଯିବା ନାଁ ଧରିଲଣି । ଖରା ଛୁଟିଟା ଯାକ ସେ ଏଠି ରହିବେ············'

କହି କହି ସବିତା ବୋଉ ଚାଲିଗଲେ ଆଉ ଖଞ୍ଜାକୁ । ଅତନୁ ନିର୍ଭୟରେ କହି ଉଠିଲା—ବେଶ ଛନ୍ଦରେ ଚାଲୁଚ ତ ତମେ ନଳିମା ।

ଏତିକି କହି ଆଟେପ ଆଟେପ ଅତନୁର ଦମ ଫେକ ହୋଇ ଗଲା । ନଳିମା ଚହିଁକି ଉଠି କହିଲା, 'ଓ, ମୋ ଗୋଡ଼ରେ ତମେ ପୁଣି ଦରଜ ପୂରେଇ ଦେଲ ।'

ଅତନୁର ମନ କିନ୍ତୁ ବାଗ ହରେଇ ବସିଚି । ନଳିମାର ଚାଲିବାର ଛନ୍ଦ ବାରିବାକୁ ଯାଇଁ ସେ ଛନ୍ଦାର ସ୍ପର୍ଶ ପାଇଚି । ଭୀଷଣ ରାଗ ହେଲା ତା'ର ନଳିମା ଉପରେ । କିନ୍ତୁ ପ୍ରକାଶ କରିବାର ଉପାୟ ନାହିଁ । ସେହି ରାଗର ନିରୁପଦ୍ରବ ଅଭିବ୍ୟକ୍ତି ରୂପେ ନଳିମା ପାରି ଦେଇଥିବା ଆସନକୁ ଘୁଞ୍ଚେଇ ଦେଇ ସେ ଖାଲି ପିଣ୍ଡାରେ ବସି ରହିଲା । ଏତିକିବେଳେ ଗୋଡ଼ ଧୋଇବା ପାଇଁ ଚାକର ପାଣି ଡାଳେ ଥୋଇ ଦେଇ ଗଲା । ଗୋଟା କିଛି କାମ କରିବା ଯେମିତି ଦରକାର ହୋଇ ପଡ଼ୁଚି । ଅତନୁ ଝଟ ଉଠିଯାଇ ଅଗଣା ଚଟାଣର ନଳା ପାଖରେ ଗୋଡ଼ ଧୋଇ ମୁହଁରେ ପାଣି ଛାଟିବାକୁ ଲଗିଲା । ପାରି ଦେଇ ଥିବା ଆସନ ଖଣ୍ଡିକର ବିଶୃଙ୍ଖଳ ଦଶା ଦେଖି ନଳିମା କହି ଉଠିଲା—

'ଆସନଟାରେ କଣ୍ଟା ଥିଲା କି ଅତନୁ ଭାଇ ?'

ମୁହଁରେ ପାଣି ଛାଟି ଛାଟି ଅତନୁ କହି ଯିବାରେ ଲଗିଲା—

'ନା, ନା, କଣ୍ଟା କାହିଁକି ଥିବ ! ତମର ପାଦଧୂଳି ସେଠି ଲଗିଚି ନା, ତାକୁ ଆଦର କରିବା ପାଇଁ ଆସନଟାକୁ ଘୁଞ୍ଚେଇ ଦେଲି ନଳିମା···'

ହଠାତ୍ ଅଗଣାରେ ଝାଁଏ କରି ଶବ୍ଦ ହୋଇ ଜଳଖିଆ ଗୁଡ଼ା ବିଞ୍ଚି ହୋଇଗଲା ଚାରିଆଡ଼େ । ତରକାରି ଡାଟିଆ ଗଡ଼ ଗଡ଼ ଆସି ପିଣ୍ଡାମୂଳରେ ଧକା ଖାଇ ନଳାରେ ପଡ଼ିଲା । ଏଥିରେ ନଳିମା ଓ ଅତନୁ ହଠାତ୍ ଚମକି ଉଠିଲେ । ଅତନୁ ପଛକୁ ଅନେଇ ଦେଖିଲା,'ଛନ୍ଦା । ହାତରୁ ତାର ଅତନୁ ପାଇଁ ଆଣୁଥିବା'ଜଳଖିଆଟିକ ଆଧାର ସହିତ ସ୍ଥାନଭ୍ରଷ୍ଟ ହେଇଛି । ଡେଙ୍ଗା ଜହ୍ନ ଆଲୁଅରେ ଛନ୍ଦା ଅଧୋମୁଖୀ ହେଇ ରହିଛି । ଯେମିତି ଆଖି ଫାଟି ତା'ର ଅଶ୍ରୁ ବୋହି ଯାଉଚି ।

ଅତନୁ ଅପେକ୍ଷା ନଳିମା ନିଜକୁ ଅଧିକ ଦୋଷୀ ମନେକଲା । ସକାଳର ସେହି ଘଟଣାଠୁଁ ଛନ୍ଦା ଅପା ଆଜି ଦିନ ଯାକ ଆଡ଼ ଆଡ଼ ହେଇ ରହିଚି । ପୁଣି

ଅଭୁଭାଇ ଏବେ ମୋର ପାଦଧୂଳିର ପ୍ରଶଂସା କରୁଥିଲି ବେଳେ ଏ କାଣ୍ଡ । ସବୁ କଥାଯାକ ଶୁଣିଛି ଛନ୍ଦା ଅପା ।

କାଠ ପଲଟିଗଲି ନଳମି ।

॥ ପାଞ୍ଚ ॥

ବଛଣାରେ ପଡ଼ି ପଡ଼ି କେତେବେଳେ ଆଖିରେ ନିଦ ଆସିଛି ସେ କଥା ଅତନୁର ଖିଆଲ୍ ନାହିଁ । କିନ୍ତୁ ରାତି ଅଧକୁ ସେ ନିଦ ବି ଭାଙ୍ଗି ଗଲା । ଝରକା କୋଠା ଛାତ ଉପରେ ଧଳା ଫର ଫର ଶେଯ । ଆକାଶଯାକ ଜହ୍ନ ଆଲୁଅ ବନ୍ୟା ହୋଇ ରହିଛି । ପୃଥିବୀ ଉପରେ ମଧ୍ୟ ତାର ଲୀଳା । କୋଉଠି ପୁଣି ବଇଁଶୀ ବଜଉଛି କିଏ । ଗୋଟା ଟେ ଟେୟୁଁ। ଚଢ଼େଇ କୋଉଠି ଗାଇ ଉଠୁଛି । ହୁଏତ ଚକୋର ଜ୍ୟୋତ୍ସ୍ନା ପିଉଥିବ କୋଉଠି ।

ଭାବ ଭାବ ଜ୍ୟୋତ୍ସ୍ନାକୁ ଚାହିଁ ରହିଲା ଅତନୁ । ପ୍ରକୃତିର ଏ ମାୟା ଲୀଳା ଆଜ ଯେମିତି ତାକୁ ସ୍ପର୍ଶ କରିବାକୁ ଚାହେଁନା ।···ଆଁ, ଗୀତ ଗାଉଛି କିଏ ? ହଁ ଗୀତ । କଣ ଏ ଜୋତ୍ସ୍ନାର ସ୍ୱର ଅଛି ତା ହେଲେ । ନାଁ, ଜ୍ୟୋତ୍ସ୍ନାର ସ୍ୱର ତ ନୁହେଁ । ପରିଚିତ ମଣିଷ କଣ୍ଠର ସ୍ୱର । ସ୍ୱରଟା ଖୁବ୍ କ୍ଷୀଣ ହେଲେ ମଧ୍ୟ ପରିଚିତ । ହଁ, ଏ ଛନ୍ଦାର ସ୍ୱର । ଛନ୍ଦା !

ତମେ ଗୀତ ଗାଉଛ ଛନ୍ଦା ! ମୁଁ ତମକୁ ବ୍ୟଥା ଦେଇଛି ବୋଲି ? କିନ୍ତୁ ମୁଁ ତମକୁ କେମିତି ବ୍ୟଥା ଦେଲି ତା' ଜାଣିନି । ତମେ ଯଦି ଜାଣନ୍ତ ମୁଁ କଣ ଭାବୁଛି, ତା' ହେଲେ ତମେ ଗୀତ ଗାଆନ୍ତନି ଏ ରାତିରେ । ଶାନ୍ତିରେ ଶୋଇ ପଡ଼ନ୍ତ ଛନ୍ଦା । ବାପା ନାହାନ୍ତି । ମାଆର ସାନ ଝିଅ ତମେ । ତମ ପାଇଁ ଏ ଘରେ ବିପୁଳ ସମ୍ଭୋଗର ବ୍ୟବସ୍ଥା । ହୁଏତ ତମର ହାତ ଧରି ଏକା ରାତିକେ କିଏ ଧନାଢ଼୍ୟ ପାଲଟି ଯିବ । ତମେ ଆଜ ମୋର ବ୍ୟଥାରେ ଅଧୀର ହୋଇ ଦୁଃଖର ଗୀତ ଗାଉଛ ଛନ୍ଦା !

ବଛଣାରୁ ଉଠି ଛାତର ଚାରିପଟେ ଅତନୁ ବୁଲିବାକୁ ଲାଗିଲା । ନିକଟରେ ମଧୁଆ ଚାକର ନିଘୋର ନିଦରେ ଶୋଇ ପଡ଼ିଛି । ଦିନର କର୍ମ-ସଂଗ୍ରାମରେ ଝାସ ଦେବା ପାଇଁ ତା'ର ଯଥେଷ୍ଟ ବିଶ୍ରାମ ଲୋଡ଼ା । ଦୁନିଆର ଏ ଭାବପ୍ରବଣତା ତା' ପାଖରେ ଅତି ତୁଚ୍ଛ···ନିରର୍ଥକ । ଏ ଜ୍ୟୋତ୍ସ୍ନାର ରୂପ ଯେତେ ଶୁଭ୍ର ହେଲେ ମଧ୍ୟ ତାର ଜୀବନ ଧାରଣରେ ସାହାଯ୍ୟ କରିବା ଲାଗି ସେଥିରୁ ଗୋଟିଏ ଟଙ୍କାର ରୂପା ମଧ୍ୟ ବାହାରିବ ନାହିଁ । କେଉଁ ଦୂର ଗାଁରେ ସେ ଛାଡ଼ି ଆସିଛି ତାର ଶିଶୁପୁତ୍ର ଆଉ ଯୁବତୀ ଭାର୍ଯ୍ୟା । ସେଠି ଏ ଜ୍ୟୋତ୍ସ୍ନାଧାରରୁ ରଜତ ଝରୁଥିଲେ ତାକୁ ଆଉ ଏତେ ବାଟ ଆସିବାକୁ ପଡ଼ି ନଥାନ୍ତା । ଏ ଜ୍ୟୋତ୍ସ୍ନାର ମାୟା ଅଛି, କିନ୍ତୁ ମୂଲ୍ୟ ନାହିଁ । ସେ ମାୟାରେ ମଧୁଆ ଚାକର ତାର ପେଟ ଭରି ପାରେ ନା ।

ଓଃ, ଏଇ ମଧୂଆ ଗୃହର କଥାରେ ତାର କ ଲଭ । ହୁଏତ ମୋ ଗୃହିଁ ସେ ନିଶ୍ଚିନ୍ତରେ ଅଛି । ସୁଖରେ ଅଛି । ଏଇ ଜ୍ୟୋତ୍ସ୍ନା ତାକୁ ପାଗଳ କରୁନାହିଁ, ଛନ୍ଦାର ଗୀତ ତାକୁ ଅଧୀର କରୁନି ।

ଛନ୍ଦାର ସ୍ୱର କ୍ରମେ ସ୍ପଷ୍ଟତର ହେଲା । ତା ସାଙ୍ଗରେ ହାରମୋନିୟମ୍‌ର ଅସ୍ପଷ୍ଟ ସ୍ୱର ମଧ୍ୟ ଶୁଣାଗଲା । ଯେମିତି ଛନ୍ଦାର ବ୍ୟଥାରେ ସହାନୁଭୂତି ପ୍ରକାଶ କରିବାକୁ ଧୀରେ ଜାଗି ଉଠୁଛି ସେଇ ଯନ୍ତ୍ର ।

ଛନ୍ଦା ! !

ଛନ୍ଦା ଗୀତଗାଇ ଚାଲିଛି । କେବଳ ନିଜର ସ୍ୱର ତାର କାନରେ । ସେଠି ଅନ୍ୟର ସ୍ୱର ପହଞ୍ଚୁନି । ଅତନୁ ଦେଖିଲା, ଛନ୍ଦାର ଏ ନିବଷ୍ଟତା ଭାଙ୍ଗିବା ବିପଦ ସୃଷ୍ଟି କରିପାରେ । ସେ ଧୀରେ ଧୀରେ ଛାତ ଉପରକୁ ଫେରି ଯିବାକୁ ଚେଷ୍ଟା କଲା । ଦୋମହଲାର ଏଇ ହଲ୍‌ଟିର ଆଗ ବାରଣ୍ଡାରୁ ଛାତ ଉପରକୁ ବନ୍ଦ ଗଡ଼ରେ ପାହାଚ ଉଠି ଯାଇଛି । ପାହାଚ କଡ଼େ କଡ଼େ କାଠର ବାଡ଼ । ପଥର ବନ୍ଦତା ଯୋଗୁଁ ସେଠି ଜ୍ୟୋତ୍ସ୍ନାର ଆଭା ନାହିଁକି, ଆଲୋକର ପ୍ରବେଶ ନାହିଁ । ଏହି ସମୟରେ ତଳ ମହଲାର ପାହାଚ ବାଟେ କିଏ ଉପରକୁ ଉଠି ଆସୁଥିବାର ଜଣା ଗଲା । ହୁଏତ ତାର ନୂଆ ବୋଉ । କବାଟ ଖୋଲିକରି ତଳକୁ ଯାଇଥିଲେ, ଏବେ ଫେରି ଆସୁଚନ୍ତି ଉପରକୁ । ନ ହେଲେ କବାଟ ଖୋଲା ରଖି ଛନ୍ଦା ଗୀତ ଗାଉ ଥାନ୍ତା କାହିଁକି । ନିଜର ପାଦଟିକେ ଚଞ୍ଚଳ କରି ସେ ଛାତ ଉପରକୁ ଯିବାର ପାହାଚରେ ଉଠିଲା । କିନ୍ତୁ ତଳ ପାହାଚରେ ନୂଆବୋଉଙ୍କର ଚାଲି ତା' ଅପେକ୍ଷା ଚଞ୍ଚଳ ହେଉଥିବାର ଜାଣି ଓ ସେ ପାଦ ଶବ୍ଦ ନିକଟ ହେଉଥିବା ଶୁଣି ନିଜର ପାଦ ଶବ୍ଦ ଗୋପନ କରି ଦେବା ଉଦ୍ଦେଶ୍ୟରେ ମୋଟେ ତିନି ଚାରି ପାହାଚ ଯାଇ ଅତନୁ ଛିଡ଼ା ହୋଇ ରହିଲା । ଭାବିଲା, ନୂଆବୋଉ ଘର ଭିତରକୁ ଯାଇ କବାଟ ବନ୍ଦ କରି ଦେବା ପରେ ସେ ନିର୍ବିଘ୍ନରେ ଉପରକୁ ଚାଲି ଯାଇ ପାରିବ ।

କିନ୍ତୁ ଏ କଣ ! ସବୁ ଓଲଟା । କିଏ ତା'ର ଆଡ଼କୁ ଆସୁଚି ? ତା ଦେହଟରେ ହଠାତ୍ ଧକା ଖାଇଗଲା କିଏ ? ଯୁବତୀର ସ୍ପର୍ଶ ।

'ନଳିନୀ ?'

'ଅତୁଭାଇ ?'

'ଚୁପ୍ ।'

ଅତନୁର ସ୍ୱର ଖୁବ ଅସ୍ପଷ୍ଟ ହେଲେ ମଧ୍ୟ ସେଥିରେ ଯେମିତି ଆତଙ୍କର ଝଙ୍କାର । ଯେମିତି ପୁଞ୍ଜୀଭୂତ ଅଶ୍ୱସ୍ତି ସେଥିରେ ମୂର୍ଚ୍ଛିତ ହୋଇ ପଡ଼ିଛି । କିନ୍ତୁ ସେ ସବୁ କିଛି ନଶୁଣି ପାଖ କାଟି ଉପରକୁ ଉଠିଗଲା ନଳିନୀ । ଅତନୁର ମନର ଅବସ୍ଥା ଭିନ୍ନ ଥିଲେ ମଧ୍ୟ ଦେହ ତା'ର କେମିତି କେମିତି ହୋଇ ଉଠିଲା । ଆଜ ଦିନ ଭିତରେ ଦୁଇ ଥର ଲାଗିଛି ସେ ଦେହରେ ନଳିନୀର ସ୍ପର୍ଶ । କିଛି ନ ଭାବି ଯନ୍ତ୍ରଚାଳିତ ପରି ଉପରକୁ ଉଠିଗଲା ଅତନୁ । କିନ୍ତୁ ଛାତ ଉପରଟା ଯାକ ବୁଲି ଦେଖିଲା ସେଠି ନଳିନୀର ଗନ୍ଧ ବି ନାହିଁ, ଭାବିଲା । ହୁଏତ ଚନ୍ଦ୍ରଶାଳାର ସେଇ କାଠ କୋଠରୀରେ ସେ ଲୁଚି ଯାଇଛି ।

ଲୁଚୁ । ନଳମା ପ୍ରତି ମନରେ ଯନ୍ତ୍ରପରେନାସ୍ତି ବନ୍ତୃଷ୍ଣା ଧରି ସେ ବଛଣାରେ ଶୋଇ ପଡ଼ିଲ୍ ଚିନ୍ତ ହୋଇ । ଆଖି ଉପରେ ଜ୍ୟୋତ୍ସ୍ନା । ଦୂରରେ ଚନ୍ଦ୍ର ।

କ୍ଷଣକ ପରେ ନିଦ ବଦଳରେ ଆଖିରେ ତା'ର ଭାସି ଉଠିଲା ନଳମାର ସେଇ ସକାଳର ରୂପ । ବଛଣାରେ ପଡ଼ି ଯାଇ ମୁହଁ ଲୁଚେଇ ଦେଲ ତକିଆରେ । ଜାମାହୀନ ଦେହରେ ଖାଲି ପତଳା ଶାଢ଼ୀ । ଗୋଡ଼ ଭଣ୍ଡା ଉପରକୁ ଉଠି ଯାଇଚ ଲୁଗା ଆଉ ସେଇ ଗୋଡ଼କୁ ଧରି କାଚ କଣ୍ଟା ସ୍ଥାନରେ ନିଜ ରୁମାଲଟାକୁ ଚିରି ପଟି ବାନ୍ଧି ଦେଉଁଚ । ଆଖିରେ ତାର ବାର ବାର ହେଇ ନେଣି ହେଲଗଲ ନଳମାର ସେଇ ବଲୋମ ଭଣ୍ଡା, ଆଉ ତାର ଲଜ ଛନ ଛନ ମୁହଁ । ସେହି ନଳମାକ ସେ କେମିତି ଦୂରକୁ ଠେଲି ଦେବ ପୁଣି । ସେ କଣ ଏଠି ସବୁଦିନେ ରହୁଚ ଯେ କାହାକୁ ପର-ଅନ୍ତର କରିବ । ନିଜ ଚନ୍ତାର ଏଇ ସିଦ୍ଧାନ୍ତରେ ପହଞ୍ଚି ସେ ବଛଣାରୁ ପୁଣି ଉଠି ପଡ଼ିଲା । ଏକ ମୁହାଁ ହେଇ ଯାଇ ଚନ୍ଦ୍ରଶାଳାର କାଠ କୋଠରୀରେ ପହଞ୍ଚିଲ । ଖୁବ୍ ନରମ କଣ୍ଠରେ ଡାକିଲ—

'ନଳମା !'

'ଅଭୁ ଭାଇ' କମ୍ୱା ଶ୍ଳେଷ ହସର ଢେଉଟିଏ ନଳମା କଣ୍ଠରୁ ଉଠି ତାକୁ ସ୍ୱାଗତ କରିବ ବୋଲି ଅତନୁ ଆଶା କରିଥିଲା । କିନ୍ତୁ ତାର ଡାକର କୌଣସି ଉତ୍ତର ନ ପାଇ ସେ କାଠ କୋଠରୀ ଭିତରେ ପଶି ଦେଖିଲା, ନିଶୂନ । ଏ ଘଟଣାରେ ଅତନୁ ନିଜକୁ ଭୂତଗ୍ରସ୍ତ ବୋଲି ମନେ କଲା । ସେହି ପାହାଚ ଉପର ଘଟଣା ଯେମିତି ସ୍ୱପ୍ନ କମ୍ୱା ପ୍ରେତର ମାୟା । ମନର ସବୁ ସାହସ ତାର ହଜିଗଲା । ବଛଣାରେ ନୀରବ ହେଇ ଆସି ପଡ଼ି ରହିଲା । ଆକାଶରେ ଚନ୍ଦ୍ର । ସେହି ହେଲା ତା'ର ଧ୍ୟେୟ । ତାର ମନ ହେଲା, ଏହି ଚନ୍ଦ୍ରକୁ ନାରୀ ରୂପରେ ଆଦର କରିବାପାଇଁ, ଅନ୍ୟ ଦେଶରେ ଲେଡ଼ୀ ମୁନ୍ ମଧ କହନ୍ତି ।

## ॥ ଛଅ ॥

ଘୋର ନିଦରେ ଶୋଇ ପଡ଼ିଚ ଅତନୁ । ହୁଏତ ରାତିର ଶେଷ ପ୍ରହରରେ ତାକୁ ନିଦ ଲାଗିଚ । ଆକାଶରୁ ଜ୍ୟୋତ୍ସ୍ନା ଲିଭି ଗଲଣି । ଚକ୍ରବାଳର ରଙ୍ଗ ଏହା ଭିତରେ ବଦଳି ଯାଇଚ । ଏକଥା ତାକୁ ମୋଟେ ଜଣା ନାହିଁ । ସେ ଏବେ ବି ନିଘୋର ନିଦରେ ଶୋଇଚ ।

ଦିଅରର ଉଠିବାରେ ଏତେ ଡେରି ହେବାର ଦେଖି ତାକୁ ଉଠେଇଦେବା ଲାଗି ସବିତା ଛାତ ଉପରକୁ ଆସୁଥିଲା, କିନ୍ତୁ ଛନ୍ଦା ଓ ନଳମା ତାକୁ ଅଟକେଇ ରଖି ଦୁହେଁ ଦୁଲ୍ ଦୁଲ୍ ହେଇ ଉପରକୁ ଉଠି ଆସି ଦେଖିଲେ ଅଭୁଭାଇର ନିଦ ପତଳା ମଧ ଧରିନି । ପାଦରେ ଅଳତା ପଟିର ଚିହ୍ନ । ମୁହଁ ଫାଳକରେ ନିଶ । ଢନ ଆଲୁଅରେ

ଅତନୁର ଏ ରୂପ ଦେଖି ହଠାତ୍ ଠୋ ଠୋ ହୋଇ ହସି ଉଠିଲେ । ହସରେ ଅତନୁର ନିଦ ଭାଙ୍ଗିଗଲା । ଆଗରେ ଛନ୍ଦା, ପଛରେ ନଳିନୀ । ଛନ୍ଦା ହସରେ ନବଖଣ୍ଡ ହୋଇ କହିଲା 'ଆଜି କି ବେଶ ହୋଇଚ ବାବୁ ।'

ଅତନୁର ଆଖି ପଡ଼ିଲା ନିଜର ପାଦରେ । ଦୁଇ ପାଦରେ ଅଳତାର ପଟି । କିନ୍ତୁ ତା ଚେହେରାରେ କଣୋଣି ଦୁଇଟିଙ୍କର ହାତ ବାଜି ଆଜି ଯେ କିଛି ପରିବର୍ତ୍ତନ ଘଟିଚି ସେ ତା' ଜାଣି ପାରିଲାନି । କେବଳ ହସି ଉଠି ଅଳସ ଭାଙ୍ଗି ହାଇ ମାରିଲା । ଚେହେରାର ପରିବର୍ତ୍ତନ ବିଷୟରେ ତାକୁ ସଚେତନ କରିଦେବା ପାଇଁ ଆଗେଇ ଆସିଲା ଛନ୍ଦା । ପଣତ ଭିତରୁ ଖଣ୍ଡେ ଚ୍ଛୋଟ ଆଇନା ବାହାର କରି କହିଲା 'ଦିଶୁଚି' ?

ଅତନୁ ଦେଖିଲା ତା ଗାଲ ଫାଳକରେ ମସ୍ତ ବଡ଼ ପଟେ ନିଶ ।

ଏହା ଭିତରେ ନଳିନୀ ଯେ ସେଠୁ ଚାଲିଗଲାଣି ସେ କଥା ଛନ୍ଦାକୁ ଆଉ ଜଣାନାହିଁ । ନଳିନୀ କେବଳ ଚାଲି ଯାଇନି, ଗଲାବେଳେ ସିଡ଼ି ମୂଳର ଦରଜାକୁ ସେପଟୁ ବନ୍ଦ କରି ଦେଇ ଯାଇଚି ।

ନିଜର ଏ ଚେହେରା ଦେଖି ଅତନୁ ଆପେ ମଧ୍ୟ ହସି ଉଠିଲା । ଚେହେରା ତା'ର ଯା' ହେଉ, ଏଇ ବାଳିକା ଦୁଇଟିଙ୍କ ମନରୁ ସବୁ କୁଜ୍‌ଝଟିକା ଯେ ଉଭେଇ ଯାଇଚି ଏହା ତା'ର ବିଶେଷ ଆଶ୍ୱାସନାର କଥା ହେଲା । ହସି ହସି ସେ ଠିଆ ହୋଇ ପଡ଼ି କହିଲା—

'ମୋ ଉପରେ ରାଗିଚ ଆଉ ଛନ୍ଦା ?'

ଏତିକି କହି ଟିକେ ଆଗେଇ ଆସିଲା ଅତନୁ । ଛନ୍ଦା ଚମକି ଉଠି ପଛକୁ ଚାହିଁ ଦେଖିଲା, ନଳିନୀ ନାହିଁ । ସିଡ଼ିର ଦରଜାଟା ମଧ୍ୟ ବନ୍ଦ । ଏଥିରେ ସେ ଭାଙ୍ଗି ନପଡ଼ି ଯେମିତି ସାହସ ପାଇଲା । ସ୍ୱରରେ ଉତ୍ତେଜନା ଭରି କରି କହିଲା, ଏସବୁ ନଳିନୀର କୀର୍ତ୍ତି ।

ପୁଣି ନଳିନୀ । ତମେ ଆ'ଭିତରକୁ ନଳିନୀକି ଆଣୁଚ କାହିଁକି ? କିନ୍ତୁ ଏସବୁ ମନେ ମନେ ଭାବିଲେ ବି ଅତନୁ କଥାରେ କିଛି ପ୍ରକାଶ ନକରି କହିଲା, 'କୀର୍ତ୍ତି ଯାହାର ହେଉ ସେ ସବୁ ତମକୁ ନିଭେଇ ଦବାକୁ ହେବ ।'

କହି କହି ସେ ଆହୁରି ପାଖକୁ ଚାଲି ଆସିଲା । ଆଗରେ ଛନ୍ଦା । ତା'ର ପଣତ ଫର୍ ଫର୍ ହୋଇ ଉଡ଼ୁଚି ସକାଳ ପବନରେ । ମୁଣ୍ଡ ବାଳଗୁଡ଼ାକ କେରା କେରା ଗାଲ ଉପରକୁ ଝୁଲି ପଡ଼ି ପବନରେ ଆନ୍ଦୋଳିତ ହେଉଚି । ତାର ଯୌବନ ଛନ ଛନ ଗଣ୍ଡରେ ବାଳସୂର୍ଯ୍ୟର ଛାୟା । ସେଥିରେ ଆକୃଷ୍ଟ ହୋଇ ଆହୁରି ପାଖକୁ ଲାଗି ଆସିଲା ଅତନୁ । ଛନ୍ଦାର ହାତଯୋଡ଼ିକ ନିଜ ହାତରେ ଧରି କହିଲା—

'ମୋର ଚେହେରା ତା'ହେଲେ ତମକୁ ଭଲ ଲାଗେନା ଛନ୍ଦା, ସେଥିପାଇଁ ନଳିନୀ ହାତରେ ତମେ ମତେ ଏଇ ଶାସ୍ତି ଦେଇଚ ?'

ଶାସ୍ତି ? ଆଖିରେ ଅଶ୍ରୁ ଫାଟି ପଡ଼ିଲା । କଣ କହୁଚନ୍ତି ଅତୁ ଭାଇ । ତାଙ୍କୁ ମୁଁ ଶାସ୍ତି ଦେଇପାରେ ! ତାଙ୍କ ଚେହେରା ମତେ ଖରାପ ଲାଗି ପାରେ ! ଅତନୁର ହାତ ମୁଠାରୁ ଛନ୍ଦା ତା'ର ହାତ ମୁକୁଳେଇ ନେଇ ନିଜର ପଣତରେ ଅତନୁ ମୁହଁର ନିଶ

ପଟକର କାଳ ପୋଛିବାରେ ଲଗିଲ । କିନ୍ତୁ ପୋଛୁ ପୋଛୁ ଛନ୍ଦା ନିଜର ସତ୍ତା ହରେଇ ଦେଇ ନିସ୍ତେଜ ହୋଇ ଆଉଜ ପଡ଼ଲ ଅତନୁ ଉପରେ । ଅତନୁ ମଧ୍ୟ ଅବାକ୍ ।

କିଛିକ୍ଷଣ ପରେ ପାହାଚରେ କାହାର ପାଦଶବ୍ଦ ଶୁଣାଗଲ । ଅତନୁ ଗୃର ଆଡ଼କୁ ଛନ ଛନ ହୋଇ ଗୃହିଁ କହି ଉଠିଲ, 'କଏ ଆଉଚ ଛନ୍ଦା । ଛନ୍ଦା ! ଛନ୍ଦା ?'

ଛନ୍ଦା ତଥାପି ନିରୁତ୍ତର ।

ପାଦଶବ୍ଦ ଆହୁରି ନିକଟ ହେଲ । ସେଥିରେ ଅତନୁର ଶୀରରେ ଶୀରରେ ଆଶଙ୍କା ଓ ଭୟର ଏକ କମ୍ପନ ଖେଳଗଲ । ଛନ୍ଦା ଦେହର ସ୍ପର୍ଶ ତା' ଦେହରେ ଭୂରିଭୂରି ଲଗି ରହିଚ । ତା' ଯେପରି ତା' ମନକୁ ଆହୁରି ବିଷାକ୍ତ, ଅଧିକ ଭୟାର୍ତ୍ତ କରି ଦେଲ । ଏଥିରୁ ରକ୍ଷା ପାଇବା ପାଇଁ ସେ ଜୋର୍‌ରେ ଛନ୍ଦାକୁ ହଲେଇ ଦେଇ ଦୁଇ ହାତରେ ଛନ୍ଦାର ଦେହକୁ ନିଜଠାରୁ ଅନ୍ତର କରି ଛଡ଼ା ହେବାର ଚେଷ୍ଟା କଲ । ସେଥିରେ ମଧ୍ୟ ଛନ୍ଦାର କୌଣସି ପରିବର୍ତ୍ତନ ସେ ଲକ୍ଷ୍ୟ କଲନି । ଏଥିରେ ଅସ୍ଥିର ହୋଇ ଖୁବ୍ ଚଞ୍ଚଳ ଛନ୍ଦାକୁ ନିଜର ବାସି ବିଛଣାକୁ ନେଇ ତାକୁ ଶୁଆଇ ଦେବାକୁ ବସିଲ । କିନ୍ତୁ ଛନ୍ଦା ନ ଶୋଇ ବିଛଣାରେ ବସି ରହି ବଲ ବଲ କରି ଅନେଇ ରହିଲ ଅତନୁକୁ । ଗୃହିଁବାରେ ଛନ୍ଦା ଆଜ ଲଜ୍ଜା ଅନୁଭବ କରୁ ନ ଥିଲେ ମଧ୍ୟ, ତାହାର ଅର୍ଥ ମଧ୍ୟ ସେ କିଛି ପାଉନି । କ'ଣ ଅଛି ଏ ଅନ୍ତୁଗଇଙ୍କ ମୁହଁରେ ?

ଏହା ଭିତରେ ଅତନୁ ସେଠୁ ଗୃଲ ଯାଇ ଉତ୍ତର ପାଖ ପାରାପେଟ୍ ଉପରେ ଚଢ଼ି ସେଠୁ ଚନ୍ଦ୍ରଶାଳାର ଛାତ ଉପରକୁ ଉଠି ଉଦୟ ସୂର୍ଯ୍ୟର ଅପେକ୍ଷା କରିବାକୁ ଲଗିଲ । ମୁହଁରେ ତାର ଅରୁଣ ରଶ୍ମି ପଡ଼ିଚ । ମୁଣ୍ଡର କୁଞ୍ଚକୁଞ୍ଚିଆ ବାଳଗୁଡ଼ାକ ବିଶୃଙ୍ଖଳ ହୋଇ ଆହୁରି କୁଞ୍ଚିତ ହୋଇ ଯାଇଚ । ସେଇ କାଳି ଗାର ନିଶ ନିଭି ଯାଇଥିଲେ ମଧ୍ୟ ସାମାନ୍ୟ ଦାଗ ତାହାର ରହିଚ । ସେଇ ଦାଗ ତଳେ ଖୁବ୍ ସରୁ ପାତଳ ନିଶର ଧାର । ସେଇ ନିଶ ଧାର ତଳେ ଯେମିତି ଛନ୍ଦାର ଦୃଷ୍ଟି ହଜ ଯିବାକୁ ଲଗିଲ ।

ଏତିକବେଳେ ହାତରେ କଣ ଗୋଟା କାଠର ଜିନିଷ ଧରି ସେଇ ଚନ୍ଦ୍ରଶାଳାର ଛାତ ଉପରୁ ପାଟି କରି ଉଠିଲ ଅତନୁ—

'ଆରେ ଏଠି ବନ୍ଧୁକ ଗୋଟା କଣ ପଡ଼ିଚ ।'

ଅତନୁର ଏଇ କଥାତକ ସରିବା ପୂର୍ବରୁ ସିଡ଼ି ଘରର ଦରଜା ଖୋଲ ପଶି ଆସିଲ ସବିତା । ଅତନୁ ହାତରେ କୋଉ କାଳର ଗୋଟା ପୁରୁଣା ବନ୍ଧୁକ । ହୁକୁମ୍ବରେ ନିର୍ଯ୍ୟାତନରେ ସେହି ଆଗ୍ନେୟାସ୍ତ୍ରର ରୂପ ବିକୃତ ହୋଇ ପଡ଼ିଥିଲେବି ତାହା ଗୋଟିଏ ବନ୍ଧୁକ ବୋଲ ଏବେ ମଧ୍ୟ ଚିହ୍ନି ହେଉଚ । କିନ୍ତୁ ସବିତା ଅତନୁର ଏ କାଣ୍ଡ ଦେଖି ଚିତ୍କାର କରି କହିଲ—

'ତମେ ଝଟ ପଳେଇ ଆସ ଅଜ୍ଞ । ସେଇ ନିଆଁଲଗା ଜିନିଷଟାକୁ ହାତରେ ଧରନା । ଓଃ, ତମକୁ କଏ କହିଲ ସେଠିକି ଯିବାକୁ । ପାଟିରେ ସେ ଜିନିଷଟାର ନାଁ ଧରନା । ତମେ ଚୁପ୍ କରି ଓହ୍ଲେଇ ଆସ, ସୁନାଟା ପରି !'

ତା'ପରେ ସେ ଛନ୍ଦାକୁ ଆକଟ କରି କହିଲା, 'ତୁ ପରା ଏଠି ଥିଲୁ, ଟିକେ ମନା କରି ପାରିଲୁନ୍ ସେଠିକି ଯିବାକୁ । ଆଉ କିଛି ନାହିଁ—ଖାଲି ଅଭିସାରିକା ସାଜିବାକୁ ଆଗ ।'

'ଓ, ଯୋଉ ଢଅରଚ !'

ଏତିକି କହି ସେଠୁ ଦୁଲ୍ ଦୁଲ୍ ହୋଇ ଛନ୍ଦା ପଳେଇଗଲା ତଳକୁ । ସବିତା ଅପା ଆଉ କିଛି ଜାଣି ପାରିନାହିଁ । ସେ ରକ୍ଷା ପାଇଗଲା ଯେମିତି । ତାର ଏଇ ଅଭିସାରିକା ରୂପଟା ଅତି ମାମୁଲି । ମନରେ ବିରାଟ ଆଶ୍ୱସ୍ତି ଘେନି ପାହାଚରେ ଛୁଟି ଛୁଟି ଚାଲିଗଲା ଛନ୍ଦା ।

ବନ୍ଧୁକଟିକୁ ରଖି ଦେଇଚି ସତ, କିନ୍ତୁ ଅତନୁ ଏପର୍ଯ୍ୟନ୍ତ ସେଠୁ ଓହ୍ଲେଇନି । ନୂଆବୋଉ ତାର ବିଚ୍ଛଣା ଗୋଟେଇବାରେ ଲାଗିଚି । ଅତନୁର ଆଖି ଅମାନିଆ ହୋଇ ଚାଲିଗଲା ବାଡ଼ି କୂଅ ମୂଳକୁ । ଏ ଅଞ୍ଚଳର ସବୁଠାରୁ ଉଚ୍ଚ ସ୍ଥାନରେ ଠିଆ ହୋଇଚି ସେ । ଯେଉଁଠି ଠିଆ ହେଲେ ଜଣେ ଯେମିତି ପ୍ରତ୍ୟେକ ବସ୍ତୁକୁ ଭଲ କରି ଦେଖି ପାରିବ, ସେହିପରି ସ୍ଥାନରେ ଠିଆ ହୋଇଚି ଅତନୁ । ଆଖିରେ ତାର ଏକ ତନ୍ୱୀ କିଶୋରୀର ବିସ୍ରସ୍ତ ସ୍ନାନମୁକ୍ତ ଦେହ ଫୁଟି ଉଠିଲା । ଅତନୁ ଆଉକୁ ଆଉବାଙ୍କରେ ପଛ କରି କୁଅର ଚଉତରା ଉପରେ ସାବୁନ ଲଗେଇ ନଳମା ପାଣି ଗୁଡ଼ି ହେଉଚି । ଛନ୍ଦା ସେଠି ଦୌଡ଼ି ଦୌଡ଼ି ପହଞ୍ଚି ତା ଉପରକୁ ବାଲଟିର ପାଣିତକ ଢାଳି ଦେଲା । ନଳମାର ତନୁଲତା ଏଥିରେ ପ୍ରାୟ ବିବସ୍ତ୍ର ହୋଇ ଉଠିଲା । ଅତନୁର ଆଖି ଦିଟା ଯେମିତି ଜଳି ଉଠିଲା ସେଥିରେ । ତା' ଭିତରେ କିଏ ଯେମିତି ଆର୍ତ୍ତ ଚିତ୍କାର କରି ଉଠିଲା । ଯେମିତି ଅରଣ୍ୟର ଗୋଟିଏ ପଶୁ । ଏହି ସମୟରେ ଛନ୍ଦାର ସ୍ପର୍ଶକାତର ମନ ତାର ଆଖିକି ଫେରେଇ ନେଲା ପଛକୁ । ଘୁଡ଼ି ଆସିଚି ସେ ଅତୁଭାଇଙ୍କି । ସେ ଓହ୍ଲେଇଲେଣି କି ନାହିଁ ?

କିନ୍ତୁ ପଛକୁ ଅନେଇ ନିସ୍ପନ୍ଦ ହୋଇ ଛନ୍ଦା ଛିଡ଼ା ହୋଇ ରହିଲା । ଅତୁଭାଇ ଛିଡ଼ା ହୋଇଚି ଚନ୍ଦ୍ରଶାଳାର ଛାତ ଉପରେ ଏବେ ବି ।

## ॥ ସାତ ॥

ଅତନୁର ଧୈର୍ଯ୍ୟ ବିଲକୁଲ ଫମ୍ପୁଆ ହୋଇ ସାରିଚି । ଯେମିତି ଗୋଟା ପ୍ରବଳ ଜଳସ୍ରୋତ ବାଲି ବନ୍ଧରେ ଧକା ଖାଇ ଖାଇ ତାକୁ ନିଶ୍ଚିହ୍ନ କରି ଦେବାକୁ ବସିଚି । ଅତି ବିମୂଢ଼ ଭାବରେ ସେ ଓହ୍ଲେଇଲା ଚନ୍ଦ୍ରଶାଳା ଉପରୁ । ଏଣେ ପାରାପେଟ୍‌ରେ ଗୋଡ଼ ତା'ର ଲାଗୁନି । ଆଉ ଚାରିଖଣ୍ଡେ ବାକି । ପାରାପେଟର ଉଚ୍ଚତା ହେବ ତିନି ହାତ । ପାରାପେଟ୍‌ଠାରୁ ଚାରି ପାଞ୍ଚ ହାତ ଉଚ୍ଚରେ ଚନ୍ଦ୍ରଶାଳାର ଛାତ । ହଠାତ୍ ହାତ ଖସି ଯିବାରୁ ଦୁଲ୍ କରି ଦୋ'ମହଲାର ଛାତ ଉପରେ ସେ ଖସି ପଡ଼ିଲା । ଶୁଖିଲା ପକକା ଚଟାଣରେ ମୁଣ୍ଡ ତାର ଛେଚି ହୋଇ ଯାଇଚି ।

ବଛଣା ଉଙ୍ଗା ସରିନ । ଏ ଶବ୍ଦରେ ସବିତା ଚମକି ପଡ଼ି ପଛକୁ ବୁଲି ପଡ଼ିଲା । ତା'ର ପ୍ରିୟ ବନ୍ଧୁର ଅଛି ବେହୋସ ହୋଇ ତଳେ ପଡ଼ି ଯାଇଚି । ପାଖକୁ ଦୌଡ଼ି ଯାଇ ଅତନୁକୁ ସେଇ ପଡ଼ିଥିବା ଅବସ୍ଥାରେ କୋଡ଼ଉଇ ଧରି ସେ କହିଯିବାକୁ ଲାଗିଲା—

'ସେ ମୁଣ୍ଡ ଆଉ ଅଛି ନା । ଆସିଥେଲି କଣ ଏଇଆ ହେବା ସକାଶେ ଏଠିକି । ମୁଁ ଯୁଆଡ଼େ ଗଲେବି ମୋ ପିଚ୍ଛା ଛାଡ଼ିଲ ନାଇ । ପୁଣି ଏଇ ଦୁଷ୍ଟାମି କଲି ଆସି ଏଠି । କେମିତି ସେ କେଇମାସେ ଯାଇ କଟକରେ ରୁହ କେଜାଣି । ମୁଁ ମନା କରୁଚି ସକାଳୁ ସେଇ ଅଶୁଭ ଜାମୁଅଟାକୁ ଧଇଲ । କେତେ ଖରାପ ଘଟଣା ଘଟିଚି ସେଥିରେ । ସେଇଆକୁ ତମେ ସକାଳୁ ଟାରୁ ଯାଇଁ ଧଇଲ । ଟୋକାଟା ଏଠି ବସିଥେଲା । ସେ ବି ଟିକେ ମନା କଲାନି......ନାଃ, ଏ ମହନପୁର ଟୋକା ତମକୁ ରହି ଦେବେନି । ତମେ ବି ଗୁଲ । ମୁଁ ବି ଯାଉଚି ଏଠୁ । ଦରକାର ନାଇଁ ମୋର ବାପ ଘର ରହିବା ସୁଖ ।......ଅତୁ, ଅତୁ...'

ସବିତାର ସ୍ୱରରେ ଯେମିତି କ୍ରନ୍ଦନର ନିର୍ଯ୍ୟାସ । ଅତନୁକୁ ପୁଣି ଜୋର୍‌ରେ ଥରେ ହଲେଇ ଦେଇ କହିଲା, ଅତୁ !!

ଅତନୁ ଆଖି ଖୋଲି ଅନେଇଲା । ଲାଜରେ ଜଡ଼ସଡ଼ ହେଇ ଝଟ ଉଠି ବସିବାକୁ ଚେଷ୍ଟା କଲା । ହାତକୁ ତାର ଧୀରେ ତୋଳି ନେଲା ସବିତା । ନିଜ କୋଳରେ ଆଉଜେଇ ଅତନୁର ମୁଣ୍ଡରେ ହାତ ବୁଲେଇ ବୁଲେଇ କହିଲା, 'କଣ ହାତ ଖସି ଗଲା ! କେଉଁଠି ଚାନରେ ପଡ଼ିଲ । ଓହୋ ମୁଣ୍ଡଟା କେଡ଼େ ଗୁମା ହୋଇ ଫୁଲି ଗଲା ।......ତମେ ଆଉ ଅଥାନ ଜାଗାକୁ ଯିବନି । ମୋର ଆଖି ଆଗରେ ରହିବ । ଏ ଟୋକା ବି ତମକୁ ନିଘା କରି ପକେଇଲେଣି...ଏଁ—ଏ ଗୋଡ଼ କଣ ହେଇଚି । ଏ ଅଲଚା ପଟି ଲେଖିଛନ୍ତି ନା ସେ ଟୋକାଏ ?'

ଅତନୁର ସେ ସବୁ କଥା ଆଉ ମନେ ନ ଥିଲା । ପାଦ ଦୁଇଟିକୁ ନୂଆବୋଉ ଆଖିରୁ ଲୁଚେଇବାକୁ ଚେଷ୍ଟା କରି ସେ ବିଫଳ ହେଲା । ଆଖୁରେ ଘାରି ଦରଜ । ଗୋଡ଼ ଆଉ ହଲେଇ ହଉନି ଜମା । ଲାଜ ସରସର ମୁହଁରେ ତଳକୁ ମୁହଁ ପୋତି କେବଳ ବସି ରହିଲା ।

ସବିତା ଅତନୁକୁ ଆଉ କିଛି ନ କହି ସେଇଠୁ ତଳକୁ ଉଦ୍ଦେଶ୍ୟ କରି ଡାକ ଛାଡ଼ିଲା, 'ନଳି, ଲୋ ନଳି ! ଅଲଚା ବୋଲିଲୁଟି ଆସି ବା'ହଉନୁ ବସି... । ଆଲୋ ଆସିଲୁ ନା ଏଣେ ।'

କାଳେ କିଏ ଆସି ପଡ଼ିବ ଭାବି ଅତନୁ ତରି ତରି ହେଇ କହିଲା, 'କାହାକୁ ଡାକ ନା ନୂଆବୋଉ, ମୁଁ ନିଜେ ଉଠି ପାରିବି । ମତେ ଘରି ଲାଜ ମାଡ଼ିବ ନୂଆବୋଉ—ସେମାନେ ଆସିଲେ ।'

ସବିତାର ପାଟି ଶୁଣି ଛନ୍ଦା ଆସି ପହଞ୍ଚିଲା । ପିନ୍ଧିଥିବା ଦେହର ଶାଢ଼ୀ ଖଣ୍ଡିକରେ ପାଣିର ଛିଟା ଲାଗିଛି ! ଛାତି ଉପରେ ଆଞ୍ଜୁଳାଏ ପାଣି ପଡ଼ି ଫୁଲାଏ ସେଠୁ ଭିଜି ଯାଇଛି । ସେ ସବୁକୁ ଛନ୍ଦାର ଯେମିତି ଖିଆଲ ନାହିଁ । ଅତନୁ ସେ ପର୍ଯ୍ୟନ୍ତ

ଉଠିନି । ନୂଆବୋଉ କୋଳରେ ମୁଣ୍ଡ ତା'ର ସେ ପର୍ଯ୍ୟନ୍ତ ଲାଗି ରହିଛି । ଗୋଡରେ ଅଳତା ପଟି ସେମିତି ଜକ ଜକ ଦିଶୁଛି । ଏ ଦୃଶ୍ୟ ଦେଖି ଛନ୍ଦା କିଛି ନ ବିଚାରି ଠୋ କରି ହସି ଉଠିଲା । ଉଭୟଙ୍କ ଆଖି ଫେରି ପଡ଼ିଲା ଛନ୍ଦା ଉପରକୁ । ସବିତା ଚମ ଚମ ହୋଇ କହିଲା—

'ଛି ! କୁଆଡ଼େ ଗଲୁ ସେ ଆରକ ?'

ସବୁ ଭୟଯାକ ସେମିତି ଛନ୍ଦା ଭିତରେ ଓଜାଡ଼ି ହୋଇ ପଡ଼ିଲା । ସେ ଥତମତ ହୋଇ କହିଲା, 'ନାଳ ଗାଧୋଉଛି ।'

'ହଁ, ନ ଗାଧେଇଲେ ଆଉ ଚଳୁନି । ବା' ଘର ବେଳ ଉଛୁର ହେଇ ଯାଉଛି । ତାକ ତାକୁ ଝିଅ । ହେଇଁ ଧରିକି ଅଛୁ ଭାଇକି ତଳକୁ ନିଅ । ମୁଣ୍ଡ କଣ ହେଲାଣି ଦେଖିଲୁ । ଲମ୍ବଜାଲ ହେଇ ତଳେ ପଡ଼ିଗଲେ ଯେ······ଓହୋ, ମୁଣ୍ଡରେ କେତେ ବାଧା ଲାଗି ନ ଥିବ ଅଛୁ । ତମେ ତ ଖୁବ୍ ସହିଚ ! ମ, ଚୁପ ହେଇ ବସିଚ କେମିତି !'

ସବିତାର ଏ କଥାରେ ଅତନୁକୁ ହସ ମାଡ଼ୁଥିଲେବି ସେ ଚୁପ ହୋଇ ରହିଲା । କିନ୍ତୁ ଫେଁ କରି ହସି ଉଠିଲା ଛନ୍ଦା । ହସମିଶା କଥାରେ କହିଲା—

'ଆଉ କଣ କାନ୍ଦିବେ । ଉଠ୍ ଉଠ୍ ମୁଁ ତାଙ୍କୁ ଧରିକି ତଳକୁ ନେଇଯିବି । କଣ ଟିକେ ହେଲେ ଗୋଡ଼ ଉଡ଼ ପାରୁନା ଅଛୁ ଭାଇ !'

ଛନ୍ଦାର ମୁହଁକୁ ଅନେଇଲା ଅତନୁ । ଆଉ ଲାଜ କରିବାର କିଛି ନାହିଁ । ଅବସ୍ଥା ତାହାର ଯା'ହେବାର ହେଇ ସାରିଚି । ଛନ୍ଦାର ମୁହଁରେ ଆଖି ରଖି ରଖି ସେ ଦୃଷ୍ଟି କ୍ରମେ ଛନ୍ଦାର ବକ୍ଷ ଉପରକୁ ଖସି ଆସିଲା । ତା'ର ମନେ ପଡ଼ିଲା, କିଛିକ୍ଷଣ ତଳେ ଆଉ ଗୋଟିଏ ଯୁବତୀର ନଗ୍ନ ବକ୍ଷ ତା' ଆଖିରେ ମାୟା ସୃଷ୍ଟି କରୁଥିଲା । ଏ ଦୃଶ୍ୟ ଆଉ ଚନ୍ଦା ଭିତରେ ଅତନୁ ନିଜର ସବୁ କଷ୍ଟ ସେମିତି ଭୁଲିଗଲା । ଛନ୍ଦା ପାଖକୁ ଲାଗି ଆସି ଅତନୁର ହାତକୁ ଧରି ତାକୁ ଉଠାଇ ଠିଆ କରିବା ପାଇଁ ଚେଷ୍ଟା କଲା । ଯନ୍ତ୍ରଚାଳିତ ପରି ଅତନୁ ମଧ୍ୟ ଛିଡ଼ା ହୋଇ ପଡ଼ିଲା । ସବିତା ଆଡ଼େଇ ହେଇଗଲା । ନା, ସେ ଅତନୁର ଯେତେ କ୍ଷତି ହେଇଚି ବୋଲି ଆଶଙ୍କା କରୁଥିଲା, ସେତେ ହେଇନି । ଛନ୍ଦା ଅତନୁକୁ ପାହାଚରେ ଓହ୍ଲେଇ ନେଇ ଯାଇ ପାରିବ । ସେତେବେଳକୁ ଛନ୍ଦା ଅନେକ ପରିମାଣରେ ମିଶି ଗଲାଣି ଅତନୁ ଦେହରେ । ଯେମିତି ଅତନୁର ଏ ବିପନ୍ନତାରେ କୌଣସି ସଙ୍କୋଚ ରଖି ପାର୍ଥକ୍ୟ ରଖିବା ଅନୁଚିତ । ସହାନୁଭୂତି ଓ ସମ୍ବେଦନତା ଭିତରେ ଛନ୍ଦା ଅତନୁର ଆହୁରି ନିକଟତର ହେଇ ଯାଉଛି । ସେମାନେ ଧୀରେ ଚାଲିବାକୁ ଆରମ୍ଭ କଲେ । ସବିତା ଅନେଇ ରହିଲା ଦୁହିଁଙ୍କି । ବେଶ୍ । ବୋଉ ଥରେ ଦେଖନ୍ତା କି ଏ ଦୃଶ୍ୟ । ଆଉ କିଛି ଭାବି ପାରିଲାନି । କେବଳ ଅନେଇ ରହିଲା ସବିତା । ସୁନ୍ଦର !

ପାହାଚରେ ଓହ୍ଲାଉ ଓହ୍ଲାଉ ଛନ୍ଦା ପଚାରିଲା —

'ତମେ ପଡ଼ିଗଲ ଅଛୁ ଭାଇ ସତେ ?'

'ମୋର ସତେ କିଛି ମନେ ନାହିଁ । ନୂଆବୋଉ କହୁଛନ୍ତି ମୁଁ ପଡ଼ିଗଲି ବୋଲି ।'

ହସି ଉଠିଲା ଛନ୍ଦା । 'ତା'ହେଲେ କଣ ତମେ ଆଜ ଖରାବେଳେ କୁଆଡ଼େ ବୁଲି ଚାଲି ଯାଇ ପାରିବ ! କୋଠାରେ ଯାଇ ପଶା ଖେଳି ପାରିବ ?'

ଅତନୁ ସଂକ୍ଷେପରେ ଉତ୍ତର ଦେଲା—

'ନାଁ, ତା' ହୁଏତ ପାରିବିନି ।'

ଏ କଣ ! ପାହାଚର ଦୋଷ ଦେଲା ଛନ୍ଦା । ପାହାଚଗୁଡ଼ା ଖୁବ୍ ଅଣଓସାରିଆ । ସେଥିଯୋଗୁଁ ଦେହଟା ତା'ର ଲାଗି ଯାଉଚି ଅତୁଭାଇଙ୍କ ସାଙ୍ଗରେ । ଓଃ, ଦେହଟା ତାର ଝିମ୍ ଝିମ ହେଇ ଯାଉଛି । କିଛି ସମୟ ପାଇଁ ଛନ୍ଦା ଆଉ କିଛି କହି ପାରିଲାନି । କେମିତି ଟିକେ ଦୂରଛଡ଼ାରେ ଚାଲନ୍ତା ହେଲେ । ନା, ଏ ପାହାଚଗୁଡ଼ା ଯେମିତି କିଛି ଗୋଟା ଅଭିସନ୍ଧି ଧରି ତିଆରି ।

'ଅତୁ ଭାଇ !'

କୌଣସି ଉତ୍ତର ପାଇବା ଆଶାରେ ଡାକି ନ ଥିଲା ଛନ୍ଦା । ଉତ୍ତର ମଧ୍ୟ ମିଳିଲାନି ! ଓଃ ଆହୁରି ତିନିଟା ପାହାଚ । ଏତିକି ପରେ ଜମା ଦୋମହଲାର ପାହାଚ ସରିବ । ତଳ ମହଲାରେ ପହଂଚିବାକୁ ଆହୁରି ଅନେକ ବାଟ—ନାଃ, ଆଉ ଚାଲି ହବନି ।

'ଏଇ ଦୋମହଲା ହଲଟାରେ ବସି ପଡ଼ିବା ଅତୁ ଭାଇ ।'

ଖୁବ୍ କ୍ଲାନ୍ତ ସ୍ୱରରେ କହିଲା ଅତନୁ, 'ମୋ ଲାଗି ଅନେକ କଷ୍ଟ କଲ ଛନ୍ଦା । ହଁ, ଆଉ ଚାଲି ହବନି । ମୁଁ ଏଇଠି ଟିକେ ବସି ପଡ଼ିବି । ତମେ ହୁଏତ ଦରଗାଧୁଆ ହେଇ ପଳେଇ ଆସିଚ ।'

ତିନୋଟି ପାହାଚ ପରେ ସେମାନେ ଦୋମହଲା ଦୋକଡ଼ରେ ପହଞ୍ଚିଲେଣି ସେତେବେଳକୁ । ଅତନୁର କଥାରେ ଟିକେ ଆଡ଼େଇ ହେଇ ଛନ୍ଦା ଛିଡ଼ା ହେଇ ପଡ଼ିଲା । ଗୁଡ଼ି ଲୁଗା ତାର ଏବେ ମଧ୍ୟ ଠାଏ ଓଦା ହେଇ ରହିଚି । ଛନ୍ଦାର ବିନା ସାହାଯ୍ୟରେ ଅତନୁ ହଲ୍ ଭିତରକୁ ଚାଲି ଯାଇ ଗୋଟିଏ ଆରାମ ଚୌକିରେ ବସି ପଡ଼ିଲା । ଛନ୍ଦା ସେ ପର୍ଯ୍ୟନ୍ତ ନିଜକୁ ଅନେଇଚି । ଗୁଡ଼ିର ଠାଏ ଲୁଗା ତାର ଓଦା । ସେଇ ଓଦା ଜାଗାଟା କେତେଥର ଲାଗି ଯାଇଚି ଅତୁଭାଇଙ୍କ ଦେହରେ । ଆଉ ସେଠି ତାଙ୍କର ଆଖି ମଧ୍ୟ ପଡ଼ିଚି । ଓଃ, ଏ ପାହାଚଗୁଡ଼ା କି ଅଭିସନ୍ଧି ଯେମିତି ତିଆରି । ଆଉ ନଳମା । ଅତୁ ଭାଇଙ୍କ ପାଦରେ ଅଳତା ବୋଳି ଦେଇଚି ସେଇ ନଳମା । ଆଉ ଗାଧେଇଚି ତାଙ୍କରି ଆଗରେ । ଆଉ ଚୋକାଗୁଡ଼ାଙ୍କ ଦେହରେ ଏ କି ପରିବର୍ତ୍ତନ ହୁଏ ପୁଣି । ସବିତାଅପା ଭାରି ଦୁଷ୍ଟ । ନିଜେ ନ ଆସି ମତେ କହିଲା ଅତୁଭାଇଙ୍କୁ ତଳକୁ ନେଇ ଯିବାକୁ । ପୁଣି ଅତୁ ଭାଇ । ତମେ ଏମିତି ଗୁଡ଼ରୁ ପଡ଼ିଗଲ କାହିଁକି ? ନିଜେ ଚାଲି ଯାଇ ଚୌକିରେ ବସି ପଡ଼ିଲ । ଆଉ ମୁଁ ନ ଧରିଲେ ଆସିଲନି । ହଠାତ୍ କଣ ଭାବି ହଲ୍ ଭିତରକୁ ପଶି ଆସିଲା ଛନ୍ଦା ।

ଜାଣିଲ ଅତୁଭାଇ, ଓ ହେଇ, ତମେ କାଲି ଖରାବେଳେ ସେଇଠି ପଶା ଖେଳୁଥିଲ ବସି । ଭାରି ଦୁଷ୍ଟ ତମେ । ଯେତେ ଅନେଇଲେ ଜମା ଏଆଡ଼େ ଅନେଇଲ ନେଇ ଥରେ ।

## ॥ ଅଠ ॥

ଏହା ଭିତରେ କେତୋଟି ଦିନ ଗତ ହୋଇ ଯାଇଛି । ମଝିରେ ଦିନେ ଘରଠାରୁ ଚାରିମାଇଲ ଦୂରରେ ଥିବା ଏକ ପ୍ରାଚୀନ କୀର୍ତ୍ତିସ୍ଥଳକୁ ବୁଲି ଯାଇଥିଲେ ସମସ୍ତେ । ଗୋଟିଏ ବୁଦ୍ଧ ମୂର୍ତ୍ତିକୁ ସେଠାରେ ମହାକାଳ ରୂପେ ପୂଜା କରାଯାଉଛି । ଆଗରେ ଯୂପକାଷ୍ଠ । ଛାଗବଳିର ଜମାଟରକ୍ତ ମାଟି ଉପରେ ଶୁଖି ହିଂସାର ବିଭୀଷିକା ସୃଷ୍ଟି କରୁଛି । ସୃଷ୍ଟି ବଦଳିଯାଇଛି ଯେମିତି । ଜୀବନରେ ବୁଦ୍ଧ ଯେଉଁ ରକ୍ତପାତ ବନ୍ଦ କରିଥିଲେ ତାହା ଯେପରି ବହୁଗୁଣ ହୋଇ ଆଜି ପ୍ରତିହିଂସା ବିସ୍ତାର କରୁଛି । କିଛି ଦୂରରେ ସଂଘମିତ୍ରାଙ୍କ ମୂର୍ତ୍ତି । ତାହାର ଦଶା ମଧ୍ୟ ସେହିପରି । କପାଳରେ ସିନ୍ଦୂର ବୋଳି ହୋଇ ମଙ୍ଗଳା ରୂପେ ପୂଜା ପାଉଛି । ମନାସି କରି ସେଠାରେ କେତେକ ଲୋକ ଆସି ଚାରି ଛଅଟି କୁକୁଡ଼ା ଛାଡ଼ି ଦେଇ ଯାଇଛନ୍ତି । ଗୃହପାଳିତ ପକ୍ଷୀ ନଟି ବଣ ଭିତରେ ପଥହରା ହୋଇ କାହାର ଆହାର୍ଯ୍ୟ ହେବାପାଇଁ ଯେମିତି ଅପେକ୍ଷା କରିଛନ୍ତି । ଦୂରରେ ଦୁଇ ତିନିଜଣ ପଠାଣ ଯୁବକ ଚାଲିଗଲେ । ଯେମିତି ମଙ୍ଗଳା ଠାକୁରାଣୀଙ୍କ ଦୂତ ସେମାନେ । ତିଥି ବାର ଗଣି ଏହି ପଠାଣ ଯୁବକମାନେ ଏହି ପାହାଡ଼ ଉପରକୁ ଆସନ୍ତି । ହିନ୍ଦୁର ମଙ୍ଗଳା ମନାସିର ପୂଜାରୂପେ ଉତ୍ସର୍ଗୀକୃତ ନିରୀହ କୁକୁଡ଼ାଗୁଡ଼ିକ ସେମାନଙ୍କୁ ଲାଭବାନ କରନ୍ତି, ପୁଷ୍ଟିକର ଖାଦ୍ୟ ମଧ୍ୟ ଯୋଗାଇ ଦିଅନ୍ତି ।

ଅଳ୍ପ ଦୂରରେ ଗୋଟିଏ ବାମ୍ଫି । ଚାରି ପାଖରେ ସ୍ନିଗ୍ଧ ତରୁଛାୟା । ଅନେକ କାଳ ତଳର ପୁରୁଣା ବାମ୍ଫି ହେଲେ ମଧ୍ୟ ଏବେବି ନିଖୁଣ ଅବସ୍ଥାରେ ରହିଛି । ନିର୍ମଳ ପାଣି ମଧ୍ୟ ଭଲ ରହିଛି । ପଥରର ପାହାଚଶ୍ରେଣୀ ଗଡ଼ିଯାଇଛି ପାଣି ପାଖକୁ । ଶେଷ ପାହାଚ ଉପରେ ବସି ହାତ ବଢ଼ାଇଲେ ପାଣି । ସେହି ପାହାଚ ଉପରେ ବସି ପଡ଼ିଲା ଅତନୁ । ଚଳା ଚଳା କରି ପାଣି ଆଣି ମୁହଁରେ ଛାଟିବାକୁ ଲାଗିଲା । ଉପର ପାହାଚରେ ବସିଲେ ଛନ୍ଦା, ନଳିନୀ ଆଉ ସବିତା । ବସିବାର କିଛି କ୍ଷଣ ପରେ କହିଲା ଛନ୍ଦା—

'ମତେ ଶୋଷ କରୁଛି ଅପା !'

'ସତେ ! ଆଉ ଭୋକ କରୁନି ?'

ସବିତାର କଥା ଶୁଣି ସମସ୍ତେ ଠୋ ଠୋ ହୋଇ ହସି ଉଠିଲେ । ତାହାପରେ କଥାର ଧାରା ବୁଲେଇ ନିଜର ସାନ ଭଉଣୀ ପ୍ରତି ସହାନୁଭୂତି ପ୍ରକାଶ କରି ସବିତା କହିଲା —

'ଗାଡ଼ି ତ ଯାଇ ରହିଲା ପାହାଡ଼ ତଳେ । ଡାଲ କି ଗିଲାସ ଗୋଟେ ଏଠି ମିଳିବ କୋଉଠୁ ! ତେବେ ସତରେ ଶୋଷ କରୁଛି ଛନ୍ଦା ?'

ଏ ପ୍ରଶ୍ନରେ ଏକାକୀ ଅତନୁ ହସି ଉଠିଲା । ପଛକୁ ବୁଲି ପଡ଼ି ସେ ଅନେଇଲା ଛନ୍ଦା ମୁହଁକୁ । ତଳକୁ ମୁହଁ ପୋତି ଦେଲା ଛନ୍ଦା । କିନ୍ତୁ ଅତନୁ ମୁହଁକୁ ନିର୍ନିମେଷ

ଆଖିରେ ଚାହିଁ ରହିଲା ନଳିନୀ । ଯେମିତି ସେ କହୁଛନ୍ତି ମତେ ବି ଶୋଷ କରୁଛି ଅରୁଣଭାଇ !

'ଅରୁ, ଛନ୍ଦାକୁ ପ୍ରକୃତରେ ଶୋଷ କରୁଛି ନା' କଣ । ତମେ ରୁମାଲଟା ଓଦା କରି ଦେଲେ ପାଣି ଆଣନ୍ତୁ !'

'ତା ଅପେକ୍ଷା କୂଳକୁ ଯାଇ ଚାଲ ଚାଲ ପାଣି ପିଇ ଆସିବା ଭଲ । ରୁମାଲଟା ଝୋଲରେ ବୁଡ଼ୁଛି ନୂଆବୋଉ, ଅତର ଗନ୍ଧ ବି ରହିଛି । ସେ ପାଣି ପିଇ ପାରିବନି ଛନ୍ଦା ।'

ନିକଟରେ ଗୋଟିଏ ମଠ ଅଛି ବୋଲି କାହାରି ଖିଆଲ୍ ନାହିଁ । ଅରୁଣ ତ ଏଠିକି ଆଜି ନୂଆ ଆସିଛି । ମହାନପୁରର ଏହି ଝିଅଗୁଡ଼ିକ ଏଠିକି ଆଗରୁ ଥରେ ଦି'ଥର ହୁଏତ ଆସିଥିଲେ । ମଠ କଥା ଶୁଣିଥିଲେ । ସେମାନେ ସେଠିକି କେବେ ଯାଇନାହାନ୍ତି । ସେଥିରେ ତାଙ୍କର ମଠ କଥା ମନେ ନ ପଡ଼ିବା ସ୍ୱାଭାବିକ । ଶୁଣାଯାଏ ଏହି ପାହାଡ଼ର ପାଦ ଦେଶରେ ପୂର୍ବେ ଏକ ବୌଦ୍ଧ ବିହାର ଥିଲା । ପାହାଡ଼ର ସାନୁ ଦେଶରେ ବିକ୍ଷିପ୍ତ ମଞ୍ଚର ସ୍ଥାନ ଏବେ ବି ଦେଖିବାକୁ ମିଳେ । ହତା ଗୁଳ୍ମରେ ସେ ସବୁ ଅରମା ହୋଇ ଯାଇଛି, କିନ୍ତୁ ନିରୀକ୍ଷଣ କରି ଦେଖିଲେ ପୂର୍ବର ବିଭବ କେତେ-କାଂଶରେ ଜଣାପଡ଼ିଯାଏ । ଯାହାହେଉ, ବିହାର ସ୍ଥାନରେ ଏବେ ଗୋଟିଏ ବାବାଜି-ମାନଙ୍କ ମଠ ରହିଛି । କିନ୍ତୁ ତାହାର ସନ୍ଧାନ ଏହି ଆଗନ୍ତୁକମାନେ କେହି ଜାଣନ୍ତି ନାହିଁ ।

ଯୋଗକୁ ଜଣେ ବାବାଜି ଏହି ସମୟରେ ବାମ୍ଫି କୂଳରେ ଆସି ପହଞ୍ଚିଲେ । ସୁନ୍ଦର ଗୋଟିଏ ଯୁବକ, ଚେହେରାରେ ତାରୁଣ୍ୟର ଉଦ୍ଦାମ ଲହରୀ ଖେଳି ଯାଉଛି, କିନ୍ତୁ ଏକ ଶାନ୍ତ ସମାହିତ ଭାବ ସେହି ଉଦ୍ଦାମ ତାରୁଣ୍ୟକୁ ଯେପରି ନିୟନ୍ତ୍ରଣ କରି ରଖିଛି । ଦେହସାରା ଭସ୍ମାଚ୍ଛାଦିତ ହୋଇଥିଲେ ମଧ୍ୟ ଅଙ୍ଗର ସୌଷ୍ଠବ ଦୃଷ୍ଟି ଅନ୍ତରାଳରେ ରହି ପାରୁନି । ହାତରେ ଗୋଟିଏ ପିତଳର ଗଡ଼ୁ । ହୁଏତ ନିତ୍ୟକର୍ମ ସାରିବା ପାଇଁ ବାବାଜି ବାମ୍ଫି କୂଳକୁ ଆସିଛନ୍ତି ।

ତାଙ୍କୁ ଦେଖି ସମସ୍ତେ କିଛିକ୍ଷଣ ପାଇଁ ନୀରବ ରହିଗଲେ । ନୀରବତା ଭଙ୍ଗ କରି ପ୍ରଥମେ ବାବାଜି କହିଲେ—

'କାହାକୁ ତୃଷା ହେଉଥିଲା ପରି ?'

'ହଁ' । ତଳ ପାହାଚରୁ ଉପରକୁ ଉଠି ଆସି କହିଲା ଅରୁଣ । ବାବାଜିଙ୍କୁ ଗୋଟିଏ ନମସ୍କାର ମଧ୍ୟ କଲା । କିଛିକ୍ଷଣ ପରେ ସେ ପୁଣି ବିସ୍ମୟଭରା ସ୍ୱରରେ ପ୍ରଶ୍ନ କଲା, 'କିନ୍ତୁ......'

ଏ ପ୍ରଶ୍ନରେ ବାବାଜି ହସି ହସି କହିଲେ—

'ଅର୍ଥାତ୍ ମତେ ଏ ବଣ ଭିତରେ ଦେଖି ଆଶ୍ଚର୍ଯ୍ୟ ହେଉଛ ! କିନ୍ତୁ ଆଶ୍ଚର୍ଯ୍ୟ ହେବାର କିଛି କାରଣ ନାହିଁ । ପାଖରେ ଆମର ମଠ ଅଛି !'

'ତା ହେଲେ ଆପଣମାନେ ଏ ବୌଦ୍ଧମୂର୍ତ୍ତିଗୁଡ଼ିକୁ ବିକୃତ କରି ଏଠି ଧ୍ୱଂସା ଆଉ ଅନୀତି ଘଟାଇବାରେ ସାହାଯ୍ୟ କରୁଛନ୍ତି ?"

ଅତି ଅପ୍ରତ୍ୟାଶିତ ପ୍ରଶ୍ନ । ପ୍ରଶ୍ନକର୍ତ୍ତା ଅତନୁ ମୁହଁକୁ ଅନେଇ ରହିଲେ ବାବାଜି । କ୍ଷଣକ ପରେ ଠୋ ଠୋ ହୋଇ ହସି ଉଠିଲେ । ଅତନୁର ଏ ଭଳି ଆଚରଣରେ ସବିତା ସେତେବେଳକୁ ଅସହିଷ୍ଣୁ ହେଲଣି । ଅତନୁକୁ ଆଖିଠାରି ଶାସନ କରିବାରେ ମଧ୍ୟ ସେ ବିଫଳ ହେଉଛି । ବାବାଜିଙ୍କ ମୁହଁକୁ ଏକ ଦୃଷ୍ଟିରେ ଚାହିଁ ରହିଛି ଅତନୁ ।

ବାବାଜି ଧୀର ଗମ୍ଭୀର ଭାବରେ ଅତନୁକୁ ଅନେଇ ଅନେଇ କହିଲେ—

'ବୁଦ୍ଧଙ୍କ ମୂର୍ତ୍ତି ପାଖରେ ପଶୁ ବଳି ପଡ଼ୁଛି । ବୁଦ୍ଧଙ୍କୁ ଏଠି ମହାକାଳ ରୂପରେ ପୂଜା କରାଯାଉଛି । ଏହାକୁ ତୁମେ ହିଂସା ଆଉ ଅନୀତି ବୋଲି କହୁଛ ବୋଧହୁଏ । କିନ୍ତୁ ଆମେ ଏଥିରେ ସାହାଯ୍ୟ କରିବୁ କାହିଁକି ? ଏ ସବୁ ଆପେ ହୋଇ ଯାଉଛି । ଲୋକେ ଯେଉଁଥିରେ ଚଳି ପାରିବେ ସେହି ବାଟ ଧରି ନେଉଛନ୍ତି । ବୁଦ୍ଧଙ୍କୁ ମହାକାଳ କରୁଛନ୍ତି; ପୁଣି ସେହିମାନେ ମହାକାଳଙ୍କୁ ବୁଦ୍ଧ କରି ପୂଜିବେ । ଆଜି ପଶୁ ହାଣି ମାଂସ ଖାଉଛନ୍ତି, ଦିନେ ହୁଏତ ଶାଗ ଖାଇବାକୁ ପାଇବେନି ।'

ବାବାଜି ଯେମିତି ତାଙ୍କ କଥାରେ ବହୁତଗୁଡ଼ାଏ ବାଟ ଆଗେଇଗଲେ । ଅତନୁ ଏତେ ବାଟ ଯିବାକୁ ଯେମିତି ପାଥେୟ ରଖିନି । ନୀରବ ରହି ସେ ଉତ୍ତର ବଦଳରେ ଆଉ କିଛି ପ୍ରଶ୍ନ ଖୋଜିବାକୁ ଲାଗିଲା ।

ଏହି ସମୟରେ ସବିତା ଉଠି କହିଲା—

'ଆମକୁ ଆପଣଙ୍କ ଗଡ଼ୁଟା ଟିକେ ଦିଅନ୍ତୁ । ଆମ ଭିତରୁ ଜଣଙ୍କୁ ଶୋଷ ହେଉଛି······'

'ହଁ ହଁ, ଛନ୍ଦାକୁ ଶୋଷ ହେଉଥିଲା ପରା !' ବାବାଜିଙ୍କ ହାତରୁ ଗଡ଼ୁଟା ଯେନି ଆସିଲା ଅତନୁ । ପାଣି ପାଇଁ ପାହାଚରେ ଖସିଗଲା ତଳକୁ । କିନ୍ତୁ ପାଣି ହାତରେ ଫେରି ପଡ଼ି ଦେଖିଲା ବାର୍ଣ୍ଣି ଉପରେ ବାବାଜି ଆଉ ନାହାନ୍ତି । ଝିଅମାନେ ମଧ୍ୟ ବାବାଜିଙ୍କ ଚାଲିଯିବା କଥା ଜାଣି ପାରି ନାହାନ୍ତି । ସମସ୍ତେ ଅନେଇ ରହିଥିଲେ ଅତନୁକୁ ।

ଅତନୁ । ଅତୁଭାଇ । ଅତୁ ।

ଗୋଟିଏ ରୂପରେ ତିନିଜଣଙ୍କର ଆଖି । କିନ୍ତୁ ଏ ସମସ୍ତଙ୍କୁ ଛାଡ଼ି ଅତନୁର ଆଖି ବାବାଜିଙ୍କୁ ଖୋଜିଲା । ଜଣେ ଚିନ୍ତାଶୀଳ ଲୋକ । ଆଉ ଏହି ବଣ ଭିତରେ ପଡ଼ିରହିଛନ୍ତି କାହିଁକି । ଗଡ଼ୁଟାକୁ ନିଶ୍ଚୟ ନେବା ପାଇଁ ସେ ଆସିବେ । ଭାବି ଭାବି ସେ ଉପରକୁ ଉଠିଆସି ଛନ୍ଦାର ପାଟିରେ ପାଣି ଢାଳିଲା । ଦାନ୍ତ ଗୁଡ଼ାକ ଛନ୍ଦାର କେଡ଼େ ଧଳେଟ ଧଳେଟ । ଆଁ ନକଲେବି ମୁହଁଟା ସୁନ୍ଦର ଦିଶୁଛି ଆହୁରି ।

କିନ୍ତୁ ଟେକାପାଣି ପିଇବା ଅଭ୍ୟାସ ଛନ୍ଦାର ନ ଥିଲା । ଅତନୁ ପାଣି ଟେକୁଛି, କେବଳ ସେହି ଲୋଭରେ ସେ ଆଁ କରି ଦେଇଥିଲା । ଚଳାଏ କି ଦି'ଚଳା ପାଣି ପାଟିରେ ଭରିଯିବା କ୍ଷଣି ତାକୁ ଢୋକି ନ ପାରି ଭକ୍ କରି ସେ ପାଣିତକ କାଢ଼ି-ପକେଇଲା । ହୁଏତ ବଉଳ ଗଛଟିଏ ହୋଇଥିଲେ ଷୋଡଶୀର ମୁଖମଦିରାର ଫୁତ୍କାରରେ କୌଣସି ଉପକାର ପାଇବାର ଆଶା ଥିଲା । କବିପ୍ରସିଦ୍ଧି ଅନୁଯାୟୀ

ସେ ହୁଏତ ପୁଷ୍ପିତା ହୋଇଥାନ୍ତା । କିନ୍ତୁ ଏଠାରେ ଛନ୍ଦାର ମୁଖର ପାଣି ଫୁତ୍କାର ଅତନୁର ଲୁଗାପଟାକୁ ଓଦା କରଦେବା ଛଡ଼ା ଆଉ କିଛୁ କରି ପାରିଲା ନାହିଁ ।

ଅତନୁ ଏଥିରେ ବିରକ୍ତ ନ ହୋଇ ହସି ହସି ଚାହିଁରହିଲା ଛନ୍ଦାର ମୁହଁକୁ । ଅଶୃସ୍ତି ଭିତର ଦେଇ ଏକ ହାସ୍ୟକର ପରିସ୍ଥିତିରେ ଛନ୍ଦା ମୁହଁରେ ଫୁଟି ଉଠିଛି ଭିନ୍ନ ଏକ ସୌନ୍ଦର୍ଯ୍ୟ । ତାହା ଏବେ ଅତନୁର ଆହାର୍ଯ୍ୟ ବସ୍ତୁରେ ପରିଣତ ହେଲା ଯେମିତି । ହଠାତ୍ ଅତନୁ ହାତରୁ ଗଡ଼ୁଟା ଟାଣିନେଇ ଛନ୍ଦା ନିଜେ ନିଜେ ପାଣି ପିଇବାକୁ ଲାଗିଲା । ତୃଷାର ତାଡ଼ନା ପାଖରେ ସେ ଅନ୍ୟକୁ ସୌନ୍ଦର୍ଯ୍ୟ ବିତରଣ କରିବା ପାଇଁ ଅନ୍ତରର ସମର୍ଥନ ହୁଏତ ପାଇ ପାରିଲା ନାହିଁ । ଏତିକବେଳେ ଅତନୁର ଆଖିପଡ଼ିଲା ନଳିନୀ ଉପରେ ! ନଳିନୀ ନା ଆଉ କିଏ ଇଏ ! କଣ ହେଉଛି ତାର ?

ଏହି ସମୟରେ ଅତନୁର ନୂଆବୋଉ ସବିତା ଦେଈ ପାଟିକରି କହିଲେ—

'ଆଉ ଗଡ଼ୁଏ ପାଣି ଆଣ ଅତୁ !'

'ତମେ ପିଇବ ?' ଅତନୁ ପଚାରିଲା ।

କିନ୍ତୁ ଅତନୁର କଥା ଶେଷ ହେବା ଆଗରୁ ଛନ୍ଦାଠାରୁ ଗଡ଼ୁଟା ଛଡ଼େଇ ନେଇ ନଳିନୀ ଦୁଲ୍ ଦୁଲ୍ କରି ଗଡ଼ିଗଲା ପାହାଚରେ ବାମ୍ଫି କୂଳକୁ ।

ଅତନୁ ପାଟିକରି କହି ଉଠିଲା—

ତମେ ପାଣି ଆଣିବ ନଳିନୀ ? କୂଳ ପାହଚଟା ଭାରି ଶିଉଳି ହେଇଛି—ଆସ୍ତେ ଯିବ ।'

ଅତନୁର ସବୁ କଥା ଯାକ ସରିନି । ପ୍ରାୟ ଦଶ ବାରଟି ପାହାଚ ଆଖି ପିଛୁଳାକେ ଅତିକ୍ରମ କରି ନଳିନୀ ସେତେବେଳକୁ ଶେଷ ପାହାଚରେ ପାଦ ଦେଇ ସାରିଛି । ପାଦ ଅପେକ୍ଷା ମନ ହୁଏତ ତା'ର ବେଶୀ ଅସ୍ଥିର । ଶିଉଳି ଲଗା ପାହାଚରେ ପାଦକୁ ସେ ଟାଣ ରଖି ପାରିଲାନି । ଭୁଷ୍ କରି କଚୁଡ଼ି ହୋଇ ଖସି ଗଲା ବାମ୍ଫି ଭିତରକୁ । ଶବ୍ଦରେ ସମସ୍ତେ ଅବାକ୍ ହୋଇ ଅନେଇ ରହିଲେ । ଛନ୍ଦା ଦୌଡ଼ି ଆସିବାକୁ ବସିଲା ଆଗେ । ଅତନୁ ପାଟି କରି କହିଲା—'ଯା ନା,ଯା'ନା, ତମେ ବି ଯାଇ ବାମ୍ଫି ଭିତରେ ପଡ଼ିଯିବ ।'

ଏ କଥାରେ ଛନ୍ଦା ଅର୍ଦ୍ଧ ପଥରେ ଅଟକି ଛିଡ଼ା ହେଇ ରହିଲା । ନଳିନୀ ବାମ୍ଫି ଭିତରେ ଆକଣ୍ଠ ପାଣିରେ ଛିଡ଼ା ହୋଇ ଲାଜରେ ମୁହଁ ପୋତି ଦେଇଛି ତଳକୁ । ଆଉ ହୁଏତ ଅଧିକ ବିପଦର ଆଶଙ୍କା ନାହିଁ । ସେଥିପାଇଁ ସବିତା ହସି ହସି ପାହାଚରେ ଓହ୍ଲେଇ ଓହ୍ଲେଇ କହିଲା—

'ଗଡ଼ୁଏ କଣ ଏଥର ବାମ୍ଫିକ ପାଣି ପିଇ ନେ ଲୋ ନଳିନୀ ! ମରଣ ହେଉ ନେଇଁ, ଆଲୋ ତତେ କ ଶୋଷ ହଉଥେଲା କଲୋ ! ତୋ ଶୋଷ ମରିଛି ନା ଲୋ ଛନ୍ଦା ?'

ପରିସ୍ଥିତିର ସମସ୍ତ ଅଶୃସ୍ତି ସମସ୍ତେ କ୍ଷଣକ ପାଇଁ ଭୁଲି ଯାଇ ସବିତାର ଏଭଳି କଥାରେ ଠୋ ଠୋ ହୋଇ ହସି ଉଠିଲେ ।

ନଳିନୀକୁ ଉଦ୍ଧାର କରିବା ପାଇଁ ଧୀରେ ଧୀରେ ଆଗେଇ ଗଲା ଅତନୁ । ନଳିନୀ ଉଦ୍ଦେଶ୍ୟରେ ନିଜର ଗୋଟିଏ ହାତ ବଢ଼େଇ ଦେଲା । କିନ୍ତୁ ନଳିନୀ ନିଜର ହାତ ନ ବଢ଼େଇ ସେମିତି ଠିଆ ହୋଇ ରହିଲା ପାଣି ଭିତରେ । ଗୁଣ୍ଠି ଯାଏ ତାର ପାଣି ବୁଡ଼ା ହୋଇ ରହିଛି । କେବଳ ବେକ ଆଉ ମୁହଁଟି ତାର ଉପରେ । ସତେ କି ଅବସ୍ଥାରେ ଏଠି ସେ ଆଜି ପଡ଼ିଲା ! ସବିତା ଦେଇ କଥାରେ କିଛିକ୍ଷଣ ଆଗରୁ ମୁହଁରେ ଯେଉଁ ହସ ଟିକିକ ତାର ଫୁଟି ଉଠିଥିଲା, ତାହା ବର୍ତ୍ତମାନ ନାହିଁ । କିଭଳି ସମସ୍ତଙ୍କ ଆଗରେ ଓଦା ସର ସର ଲୁଗାରେ ସେ ଅତନୁର ହାତ ଧରି ଉପରକୁ ଉଠିବ ! କେବଳ ସେଇ ଭାବନା ତା ମନରେ । ହାତ ବଢ଼ାଇବାରେ ତାର ଅନିଚ୍ଛା ଦେଖି ସବିତା କହି ଉଠିଲା—

'ଆଲୋ ହାତ ବଢ଼ଉନୁ କାହିଁକି ? କିଣ କିଏ ହାତଗଣ୍ଠି ପକେଇ ଦଉଚି କି ? ଆଲୋ ଘରକୁ ଯିବୁନା, ଏଇଠି ବାନ୍ଧି ଭିତରେ ତପସ୍ୟା କରି ରହିବୁ ! କିଣ ଅତୁଙ୍କୁ ପାଇବାକୁ ଏ ତପସ୍ୟା । ଚାଲ ଆଜି ଘରକୁ ।'

ଏତିକିବେଳେ ଛନ୍ଦା ହସି ହସି କହିଲା—

'ଆ, ମୋର ହାତ ଧରି ଉଠିଆ । ଅତୁ ଭାଇ, ତମେ ଚେଣିକି ଅନା । ନ ହେଲେ ବାନ୍ଧି ଉପରକୁ ଚାଲି ଯା' ।

ଛନ୍ଦାର କଥା ରଖି ଅତନୁ ବାହାରି ଗଲା ବାନ୍ଧି ଉପରକୁ । କ୍ଷଣକ ପରେ ସବିତାର ଉଚ୍ଚକିତ ହାସ୍ୟରୋଳ ଭିତରେ ପୁଣି ଏକ ପତନର ଶବ୍ଦ ଶୁଣାଗଲା । ସବିତା ଡାକ ଛାଡ଼ିଲା—

'ଅତୁ ! ଅତୁ ! ତମ ଛଡ଼ା ଆଉ ଉପାୟ ନାହିଁ ଏଠି । ଛନ୍ଦା ବି ଯାଇଁ ପାଣିରେ ପଡ଼ିଲାଣି ।'

ହସି ହସି ଉପରୁ ଅନେଇଲା ଅତନୁ । ବାନ୍ଧି ଭିତରେ ଯେମିତି ଦୁଇଟି ଜଳକନ୍ୟାର ଆବିର୍ଭାବ ହୋଇଛି ।

## ॥ ନଅ ॥

ପ୍ରାୟ ସନ୍ଧ୍ୟାବେଳେ ସମସ୍ତେ ବଳଦ ଗାଡ଼ିରେ ଝୁଲି ଝୁଲି ଆସି ଘରେ ପହଞ୍ଚିଲେ । ପାହାଡ଼ଠାରୁ ମଦନପୁର ଗାଁ ପ୍ରାୟ ପାଞ୍ଚ ମାଇଲ ବାଟ । ବାଟରେ ଗୋଟିଏ ନଈ ପାରହେବାକୁ ପଡ଼େ । ଖରାଦିନ ଯୋଗୁ ନଈଟି ଶୁଖି ଯାଇଥିବାରୁ ଆଉ କୌଣସି ଅସୁବିଧା ହେଲା ନାହିଁ ।

ସବିତାର ମା ସମସ୍ତଙ୍କୁ ଅନେକ ବେଳୁ ଅପେକ୍ଷା କରି ରହିଥିଲେ । ଝିଅମାନେ ଓ ଜ୍ୱାଇଁପୁଅ ଅତନୁ ଗାଡ଼ିରୁ ଓହ୍ଲାଇବା କ୍ଷଣି ସେ ସମସ୍ତଙ୍କୁ ଜଣ ଜଣ କରି ସଂଖ୍ୟାଳ ନେଲେ । ଅତନୁ ହାତରେ ଷ୍ଟୋଭ ପିତଳ ଗଣ୍ଡୁଟିଏ ଦେଖି ସେ ପଚାରି ବସିଲେ···

'ଇଏ କଣ ବାବୁ, କଣ ମଠକୁ ଯାଇଥିଲ କି !'

'ମଠ' ?

ଅତି ବିସ୍ମୟରେ ପଗ୍ଭରିଲ ଅତନୁ ।

ହସି ହସି ସବିତାର ମା କହିଲେ—

'ପାହାଡ଼ ତଳେ ଗୋଟିଏ ମଠ ଅଛି । ସେଠି ବାବାଜିମାନେ ଥାନ୍ତି । ଖୁବ ଭଲ ମଠଟିଏ । କଣ କି......ହଁ, ହଁ, ସାତଭାଇଙ୍କ ମଠ । କୋଉ ଗୋଟିଏ ଘରର ସାତଭାଇଯାକ ଥରେ ବାବାଜି ହୋଇ ଯାଇଥିଲେ । ସେଇମାନେ ସେଠି ମଠ କରିଥିଲେ ।'

ଅତନୁ ଆଶ୍ଚର୍ଯ୍ୟ ହୋଇ କହିଲ—

'ଏ ସବୁ କଥାତ କେହି ମତେ କହି ନାହାନ୍ତି । ଛନ୍ଦାକୁ ଶୋଷ ହବାରୁ ଝାଙ୍କିରୁ ପାଣି ଆଣି ପିଇବା ପାଇଁ ଜଣେ ବାବାଜି ଆସି ଏ ଗଡ଼ୁଟି ଦେଇ ଯାଇଥିଲେ । କିନ୍ତୁ ସେ ଆଉ ନବାକୁ ଆସି ନାହାନ୍ତି । ହଁ ହଁ, ମଠ ନ ଥିଲେ ବାବାଜି କୋଉଠୁ ଆସିଥାନ୍ତେ ।'

ସେତେବେଳକୁ ଛନ୍ଦା ଆଉ ନଳିମା ଘର ଭିତରକୁ ଭୁଷ୍ ଭାଷ୍ ହୋଇ ପଶି ଗଲେଣି । କେବଳ ସବିତା ଅଛି ପଦାରେ । ବୋଉ ସାଙ୍ଗରେ ସେ ଘର ଭିତରକୁ ଗଲ । ଅତନୁ ଗଲ ସେମାନଙ୍କ ପଛରେ ।

ଖରାଦିନ ଯୋଗୁ ଛନ୍ଦା ଆଉ ନଳିମାର ଓଦାଲୁଗା ଆପେ ଆପେ ବାଟରେ ଶୁଖି ଯାଇଥିଲ । ମାତ୍ର ସେମାନଙ୍କ ବେଶର ପରିପାଟୀ ଆଉ ପୂର୍ବ ପରି ନଥିଲ । ଛନ୍ଦା ଘର ଖଞ୍ଜାର ଆର ପଟେ ନଳିମାର ଘର । ହିସାବରେ ସେ ଛନ୍ଦାର ଖୁଡ଼ୁତା ଝିଅ ଭଉଣୀ । ନଳିମାର ବାପା ଶ୍ରୀମନ୍ତ ରାୟ ଛନ୍ଦା ଘର ସମ୍ପତ୍ତି ବାଡ଼ ବୁଝାସୁଝା କରନ୍ତି । ନଳିମାର ସବୁ ଆନ୍ଦୋଳ ଛନ୍ଦା ଘରେ । ଦୁହିଁଙ୍କ ଭିତରେ କ୍ଷୀର-ନୀର ସମ୍ପର୍କ । ନିଜ ଖଞ୍ଜାକୁ ଯାଇ ଶାଢ଼ୀଟା ପାଲଟି ପକେଇ ଆସି ଛନ୍ଦା ପାଖରେ ପହଞ୍ଚିଲ ନଳିମା । ଛନ୍ଦା ମଧ୍ୟ ସେତେବେଳକୁ ବେଶ ବଦଳାଇ ସାରିଛି । ଉଭୟ ଉଭୟଙ୍କୁ ଦେଖି ଅପ୍ରତ୍ୟାଶିତ ଭାବରେ ଠୋ ଠୋ ହୋଇ ତାନେ ହସି ଉଠିଲେ । ଖେଷେଇବାସର ବ୍ୟବସ୍ଥା ପାଇଁ ସବିତା ତଳ ଖଞ୍ଜାକୁ ଗ୍ଭଲି ଯାଇଛି । ସବିତାର ମା ମଧ୍ୟ ଯାଇ ତଳ ଖଞ୍ଜାରେ । ଉଚ୍ଚ ହାସ୍ୟ ପାଇଁ ଝିଅ ଦୁଇଟିଙ୍କ ପକ୍ଷରେ ଯେପରି ଅବାଧ ସୁଯୋଗ ଯୁଟିଗଲ ।

ହସ ଶେଷରେ ଦୁଇଜଣଙ୍କ ଗ୍ଭରୋଟି ଆଖି କାହାକୁ ଯେମିତି ଖୋଜିବାକୁ ଲଗିଲ । ଘର ଦୁଆର ଗ୍ଭରିଆଡ଼ ସେମାନେ ଦଉଡ଼ି ଗଲେ । ଶେଷରେ ଉଠିଲେ ଯାଇ ଛାତ ଉପରେ । ସେଠି ମଧ୍ୟ କେହି ନାହିଁ । 'ତା ହେଲେ ଅତୁଭାଇ କୁଆଡ଼େ ଗଲେ ?' କହି ଉଠିଲ ନଳିମା ।

ଦୂର ପାହାଡ଼ ଆର ପଟୁ ଜହ୍ନ ଉଠୁଛି । ଧୀରେ ଧୀରେ ଆକାଶ ଶୁଭ୍ର ହୋଇ ଉଠୁଛି ଜ୍ୟୋତ୍ସ୍ନାରେ । ସେଇ ପାହାଡ଼ ଆରପଟେ ଆଉ ଯେମିତି କିଏ ଲୁଚିଛି ।

କିନ୍ତୁ ସିଏ ଉଠୁନି । ତାହାକୁ ପ୍ରତୀକ୍ଷାର ଗୃହାଙ୍ଗଣରେ ଅନେଇଚି ଛନ୍ଦା । ପାଟିରୁ ତାର ଅସ୍ପଷ୍ଟ ହୋଇ ବାହାରିଗଲା···

'ଅଚ୍ଚୁ ଭାଇ, ତମେ କଣ ନଳମାକ ଧରା ଦେବ ବୋଲି ଲୁଚିଛ ? ନଳମାକୁ ଛୁଇଁବାକୁ ମଧ୍ୟ ମୁଁ ଆଜ ସେହି ବାମ୍ଫି କୂଳରେ ତମକୁ ସୁବିଧା ଦେବାକୁ ଚାହୁଁ ନ ଥିଲି । କିନ୍ତୁ ଶେଷକୁ ଏପରି ହେଲା ଯେ ତମେ ଆମ ଦୁଇଜଣଙ୍କୁ ଧରି ଉଦ୍ଧାର କଲ ।··· ଆଗେ କିନ୍ତୁ ତମେ ନଳମାକୁ ଧରିବା ପାଇଁ ହାତ ବଢ଼େଇ ଦେଇଥିଲ । ସେଥିରେ ବାଧା ଦେଇଛି ମୁଁ । ସେଥିଲାଗି କଣ ତମେ ରାଗିଛ ? କିନ୍ତୁ ନଳମା କାହିଁକି ପାଣି ପିଇବାକୁ ଗଲା— ତମେ କଣ ତାହାର କାରଣ କିଛି ବୁଝିଲ !'

ଛନ୍ଦାର ଏ ସବୁ ପ୍ରଶ୍ନ ଆପେ ମନରେ ଉଠି ସେହି ମନରେହିଁ ବିଲୀନ ହୋଇଗଲା । କାହାକୁ କହୁଛି ସେ ଏ ସବୁ କଥା । କାହାନ୍ତି ଅଚ୍ଚୁ ଭାଇ । ଧରନ୍ତୁ ସେ ପଛେ ନଳମାର ହାତ । ଥରେ ଆଖି ଆଗକୁ ଆସନ୍ତେ ହେଲେ !

ତା ପଛରେ ଆସି ଲାଗିଗଲା ନଳମା । ଛନ୍ଦା ଚମକି ଉଠି ବୁଲି ପଡ଼ିଲା । ନଳମା ! ନଳମାର ହାତକୁ ଧରି ପକେଇ କହିଲା ଛନ୍ଦା······

'ଅଚ୍ଚୁଭାଇ ହାତ ବାଢ଼େଇଲା ବେଳେ କାହିଁକି ତୁ ହାତ ବଢ଼େଇଲୁ କଲେ !'

ନଳମା ଆଉ କିଛି ନ ଭାବି କହି ପକେଇଲା·· ···

'ସତେ ମ, ଅଚ୍ଚୁଭାଇଙ୍କ ହାତ କି ସୁନ୍ଦର !'

ଦମ୍ ରୋକି ନେଲା ଛନ୍ଦା । କଣ କହୁଚି ନଳମା । ଅନେଇ ରହିଲା ସେ ନଳମାର ମୁହଁକୁ । ଜ୍ୟୋତ୍ସ୍ନାର ସରୁ ଆସ୍ତରଣ ଗୋଟିଏ ଲେପି ହୋଇ ଯାଇଛି ସେଠି । ମନେ ମନେ ସେ ପୁଣି କହି ଉଠିଲା······

'ଅଚ୍ଚୁ ଭାଇ, ତମରି ନଳମା ମୁହଁରେ ଜ୍ୟୋତ୍ସ୍ନା ଲାଗିଛି ! ତମେ ଦେଖିବ ଆସ ! ମୁଁ ଚାଲି ଯାଉଛି······'

ଯନ୍ତ୍ରଚାଳିତ ପରି ଗ୍ରାନ୍ତ ଉପରୁ ଚାଲିଗଲା ଛନ୍ଦା । ସେତେବେଳକୁ ନଳମା ମନରେ ଭାବାନ୍ତର ହୋଇଛି । ସେ ଯେପରି ଆଖି ଆଗରେ ଦେଖୁଛି—ଅଚ୍ଚୁଭାଇଙ୍କ ହାତ ଝିଙ୍କାରେ ସେ ଉଠି ଆସୁଚି ବାମ୍ଫି ଉପରକୁ । ତାହାର ଲୁଗାପଟା ପାଣିରେ ଜୁଡ଼ୁବୁଡ଼ୁ ହୋଇ ଜଡ଼ି ଯାଇଛି ଦେହରେ । କିନ୍ତୁ ଅଚ୍ଚୁ ଭାଇଙ୍କ ଦୃଷ୍ଟି ପଡ଼ୁଛି ସେଠି । ଅଚ୍ଚୁ ଭାଇ, ତମେ କଣ ଛନ୍ଦା ଅପା କଥା ଭାବୁଥିଲ ? ସତେ, ଛନ୍ଦା ଅପା କି ସୁନ୍ଦର ! ଅଚ୍ଚୁ ଭାଇ, ତମେ ମତେ ପୁଣି ବେଳେ ବେଳେ କମିତି ଅନାଅ ?

ଦ୍ରୁତ ଗତିରେ ଆସୁ ଆସୁ ଶେଷ ପାହାଚରେ ଛନ୍ଦାର ଗତି ହଠାତ୍ ବନ୍ଦ ହୋଇଗଲା । ଆଗରେ ଗୋଟିଏ ଖୁମ୍ବକୁ ଆଉଜି ଛିଡ଼ା ହୋଇଛି ଅଚ୍ୟୁତ । ହାତରେ ସେଇ ବାବାଜିଙ୍କର ଗଣ୍ଠିଟା । ପାଖରେ ଜଳୁଥିବା ଲଣ୍ଠନ ଆଲୁଅ ଅଚ୍ୟୁତର ଚେହେରାକୁ କେତେକାଂଶରେ ସ୍ପଷ୍ଟ କରି ଦେଇଛି । ମୁହଁରେ ତାର ଅନେକ ଭାବନା ଯେମିତି ଜମାଟ ବାନ୍ଧି ଯାଇଛି । ସେଠି ଛନ୍ଦା ନାହିଁ କି ନଳମା ନାହିଁ । କଣ ଅଛି ତାହା ମଧ୍ୟ ଅନ୍ୟକୁ ଅଗୋଚର ।

ଧୀରେ ଧୀରେ ପାଖକୁ ଆସି କହିଲା ଛନ୍ଦା······

'ଅନୁଭାଇ, କଣ ଭାବୁଛ ଏତେ । ଭାବନା ଭିତରେ ତମ ମୁହଁ ଭଲ ଦିଶୁନି ଜମା । କୋଉଠି ଥିଲ ଏତେ ବେଳଯାଏ ?'

ମୁଖ୍ୟତଃ ଦୁଇଟି ପ୍ରଶ୍ନ—କଣ ଭାବୁଚ ଓ କୋଉଠି ଥିଲ । ଅତନୁ କିନ୍ତୁ ଗୋଟିଏ ଉତ୍ତର ଦେଇ କହିଲା······

'ତମକୁ ମନେ ମନେ କେତେ ଖୋଜିଲିଣି । ତମେ କୋଉଠି ଛାତ ଉପରେ ଥିଲ ?'

ଛନ୍ଦାର ମନେ ହେଲା ସେ ପଚାରନ୍ତା, ତାକୁ ଖୋଜୁଥିଲେ ନା ନଳିନୀକୁ । କିନ୍ତୁ ପଚାରି ପାରିଲା ନାହିଁ । ସେଥିରେ ପୁଣି ଅନୁଭାଇଙ୍କ ମନର ଭାବ ଏତେ ଗମ୍ଭୀର । ଛି······।

ଛନ୍ଦା କହିଲା, 'ଆମେ ମଧ ତମକୁ କେତେ ଖୋଜିଲୁଣି । ସତେ ତମେ କୋଉଠି ଥିଲ ?'

'ବାଗ ପଟେ ସେଇ ଶେଫାଳୀ ଗଛ ତଳେ ଯାଇ ବସିଥିଲି । ତା ପରେ ଯାଇ ସେହି ମାଳତୀ କୁଞ୍ଜ ତଳେ ବସିଲି । ଜହ୍ନ ଆଲୁଅ ପଡି କେଡ଼େ ସୁନ୍ଦର ଚିକ ଚିକ ହୋଇଛି ତା ତଳଟା । ତା ପରେ ବାବାଜିର ଏଇ ଗଢ଼ୂଟା······। ତା ପରେ ବଡ଼ ଏକୁଟିଆ ଲାଗିଲା······ତମ ସମସ୍ତଙ୍କୁ ମନେ ପଡ଼ିଲା···। ସତେ ଛନ୍ଦା, ତମେ ମତେ ଖୋଜୁଥିଲ ?'

ଅତନୁର କଥା ଶୁଣି ବିଷଣ୍ଣତା ଭିତରେ ଛନ୍ଦା ଟିକେ ହସି ଦେଲା । 'ତମକୁ ଆଉ କିଏ ଖୋଜୁଥିବ ବୋଲି ତମର ବିଶ୍ୱାସ ହେଉଛି କହିଲ ?' ଏତିକ କହି ଛନ୍ଦା ଚାହିଁଲା ଅତନୁ ମୁହଁକୁ । ତଥାପି ବିରାଗ ଫୁଟୁନି ଅନୁଭାଇ ମୁହଁରେ । ପାଖକୁ ତାର ଲାଗି ଯାଇ କହିଲା······

'ବାଗର ସେଇ ମାଳତୀ କୁଞ୍ଜ ତଳକୁ ଚାଲ— କେମିତି ଚିକ ଚିକ ହୋଇ ଜହ୍ନ ଆଲୁଅ ପଡ଼ିଚି ଦେଖିବା······।'

'ହଁ ହଁ', ଅନ୍ୟମନସ୍କ ଭାବରେ କହିଲା ଅତନୁ । ଯେପରି ତାର ତୀବ୍ର ଭାବାନ୍ତରତାକୁ କାଟିବା ପାଇଁ କିଛି ଗୋଟା ଆଶ୍ରୟ ଦରକାର ପଡ଼ୁଛି । କିନ୍ତୁ ତାର ମନେ ହେଉଥାଏ ଯାଇ ତାର ନୂଆ ବୋଉ ପାଖରେ ବସନ୍ତା । କି ସୁନ୍ଦର ତାର ନୂଆବୋଉ । ବସି ବସି ତାଙ୍କ ରନ୍ଧଣା ଦେଖନ୍ତା । ରନ୍ଧଣାର ଛୁଙ୍କ ଭାସି ଆସନ୍ତା··· କେତେ ଆସକ୍ତି ଫୁଟି ଉଠନ୍ତା ସେଥିରେ । ସଂସାରରେ ରହିବା ପାଇଁ ଯେମିତି ବଡ଼ ଆକର୍ଷଣ ସେଇଟା—···ଖାଦ୍ୟର ଆଘ୍ରାଣ । କିନ୍ତୁ ଛନ୍ଦାକୁ ସେ ସବୁ କିଛି ସେ କହି ପାରିଲା ନି । ଚାଲି ଚାଲି ହୋଇ ଛନ୍ଦା ପଛରେ ଚାଲିଗଲା ବାଡ଼ିକି ।

'ଛନ୍ଦା !'

'ଏ ସମ୍ବୋଧନରେ ଆଖି ଟେକି ଛନ୍ଦା ଚାହିଁଲା ଅତନୁ ମୁହଁକୁ । କାହିଁକି ଡାକିଲେ ଅନୁଭାଇ ! ସେ ପୁଣି ଶୁଣିଲା ଅତନୁର ସ୍ୱର······

'ତମ ମୁହଁରେ ଜ୍ୟୋତ୍ସ୍ନା ପଡ଼ିଚି ଛନ୍ଦା ! ମାଳତୀ କୁଞ୍ଜ ତଳ ଚାହିଁ ତାହା ଯଥେଷ୍ଟ ସୁନ୍ଦର । ଦୁଃଖର କଥା ଯେ ଜ୍ୟୋତ୍ସ୍ନା ସ୍ପର୍ଶରେ ସୃଷ୍ଟି ହୋଇଥିବା ଏତେ ବଡ଼ ସୌନ୍ଦର୍ଯ୍ୟକୁ ତମେ ଦେଖି ପାରୁନା···

ଛନ୍ଦା ହସି ଉଠିଲା ଖିଲ୍ ଖିଲ୍ ହୋଇ । ସେହ୍ୱପର ହସି ହସି ସିଏ କହ୍ୱଲା—

'ମୁଁ ବ ଦେଖୁଚ ଗୋଟିଏ ଜନଷ । ସେଠି ବ ଜ୍ୟୋତ୍ସ୍ନା ଲାଗିଛି । ଆଚ୍ଛା ଅଚ୍ଚୁଭାଇ, ନଳମାକ ଡାକ ଦେବ ?'

ଛନ୍ଦାର ଖୁବ ପାଖକୁ ଲଗି ଆସିଲା ଅତନୁ । ଅନେଇଲା ନିରଖି କର ତାର ମୁହଁକୁ । ଜ୍ୟୋତ୍ସ୍ନାର ଚୁମ୍ବନ ଗ୍ରହଣ କରୁଛି ସେ ମୁହଁଖାଦ । ପୁଣି ଖୁବ ଦୂରକୁ ସେ ଘୁଞ୍ଚିଗଲା । କିଛିକ୍ଷଣ ଆଗରୁ ତାର ଇଚ୍ଛା ହେଉଥିଲା ଗୋଟାଏ ମାଳତୀ ଫୁଲ ଛିଣ୍ଡେଇ ସେ ଛନ୍ଦାର ଗଭାରେ ଖୋସି ଦିଅନ୍ତା । କିନ୍ତୁ ବର୍ତ୍ତମାନ ସେ ଆଉ କିଛି ଭାବ ପାରୁଲନ ।

ଦୂରରେ ଠିଆହୋଇ ସେ କେବଳ ପଗ୍ଚରଲା—

'ପାହାଡ଼ ତଳେ ସେଇ ବାବାଜୀ କଣ କହୁଥିଲେ···?'

ଅଳ୍ପ ହସି ଦେଇ ଛନ୍ଦା କହ୍ୱଲା···

'କହୁଥିଲେ, ତମେମାନେଇ ବୁଦ୍ଧଙ୍କୁ କରୁଛ ମହାକାଳ ।'

'ତମର ତ ସ୍ମରଣଶକ୍ତି ଖୁବ ଭଲ । ଖାଲି ମୁଁ ତାଙ୍କ ଗଣ୍ଠିଟାକୁ ଧରି ବସିଚ । କିନ୍ତୁ ତାଙ୍କର କଥା ମୋର କିଛି ମନେ ନାହିଁ । ତମକୁ ଧନ୍ୟବାଦ । ନଳମା କଣ ତମଠାରୁ ଆଉ କିଛି ଅଧିକ କଥା ମନେ ରଖିଛି ବୋଲି ଭାବୁଚ ?'

ଛନ୍ଦା ଏ ପ୍ରଶ୍ନରେ ଅନେକ ସମୟ ପର୍ଯ୍ୟନ୍ତ ନୀରବ ରହ୍ୱଲା । ଅତନୁ ଜ୍ୟୋତ୍ସ୍ନା ଉପଭୋଗ ପାଇଁ ଛନ୍ଦାକୁ ଉତ୍ସାହିତ କରିବାକୁ ପୁଣି ତା' ପାଖକୁ ଲଗି ଆସି କହ୍ୱଲା···

'ଜ୍ୟୋତ୍ସ୍ନା ସମସ୍ତଙ୍କର । ତାହାକୁ ଉପଭୋଗ କରିବାରେ କୌଣସି ଭେଦାଭେଦ ନାହିଁ ଛନ୍ଦା ! କିନ୍ତୁ ଦୁର୍ଭାଗା ଶଶାଙ୍କ ତାକୁ ଏକଚାଟିଆ କରିବାକୁ ଯାଇଁ ଶେଷରେ ଜୀବନ ତ୍ୟାଗ କଲା ।'

ହଠାତ୍ ଅତନୁକୁ କୋଳାଗତ କରି ଭିଡ଼ ଧରିଲା ଛନ୍ଦା । ଆଶ୍ଚର୍ଯ୍ୟ ହେଲା ଅତନୁ । ଛନ୍ଦା କଣ୍ଠରୁ କେବଳ ଗୋଟିଏ ଶବ୍ଦ ଶୁଭିଲା···'ଅଚ୍ଚୁଭାଇ !'

କିଛି କ୍ଷଣ ପରେ ଛନ୍ଦା ପୁଣି କହ୍ୱଲା···

'ଶଶାଙ୍କ କଣ ସତେ ମରି ଯାଇଛି ଅଚ୍ଚୁଭାଇ !'

'ସମସ୍ତେ କୁହନ୍ତି, ମୋର କିନ୍ତୁ ବିଶ୍ୱାସ ହୁଏନା । ଶ୍ରମର ସଫଳତାରେ ମୁଁ ବିଶ୍ୱାସ କରେ । ମୋର ମନେହୁଏ, ସେ ଯୁଗ ଯୁଗ ଧରି ଆକଣ୍ଠ ଜ୍ୟୋତ୍ସ୍ନା ପାନ କରିବାରେ ଲାଗିଛି । କହ୍ୱଲା ଅତନୁ ।

ପୂର୍ବ ଅବସ୍ଥାରେ ଥାଇଁ ଛନ୍ଦା କହ୍ୱ ଉଠିଲା···

'ହଁ, ତମ କଥା ସତ । ମରିବ କାହିଁକି ଶଶା !'

ଏହ୍ୱ ସମୟରେ ଦୂରରୁ କଲ୍ କଲ୍ ହୋଇ ନଳମା ଦୌଡ଼ି ଦୌଡ଼ି ଆସି ପହଞ୍ଚିଲା—ଆରେ ତମେ ସବୁ ଏଇଠି, ମୁଁ ତେଣେ କେତେ ଖୋଜୁଛି···ସତେ ଅଚ୍ଚୁଭାଇ, ତମେ ଛନ୍ଦାଅପାଙ୍କୁ ଭାରି ନିଷ୍ଠୁର ବ୍ୟବହାର କରୁଛ । ମତେ ବେଳେ ବେଳେ କାହିଁକି ଅନଉଚ କହ୍ୱଲ ?

ସେତେବେଳକୁ ଛନ୍ଦା ଓ ଅତନୁ ଦୁହେଁ ଦୂରଛଡ଼ା ହେଇ ଠିଆ ହୋଇ ସାରିଛନ୍ତି । ନଳିନୀ କଥାରେ ଦୁହେଁ ଠୋ ଠୋ ହେଇ ହସି ଉଠିଲେ ।

## ॥ ଦଶ ॥

ଯୁବକ ଅନୁର ସ୍ପର୍ଶ । ରାତିରେ ଛନ୍ଦାକୁ ଆଉ ନିଦ ହେଲାନି । ଅନୁଭାଇଙ୍କି ସେ କାହିଁକି କୁଣ୍ଢେଇ ଧରିଲା । ଛିଃ, ଗୋଟା ଦୁର୍ବଳ ମୁହୂର୍ତ୍ତର ଉତ୍ତେଜନାରେ ସେ କଣ କରି ପକେଇଲା । କଣ ଭାବିଥିବେ ଅନୁଭାଇ । ନା' ଅନୁଭାଇ ଭାରି ଭଲ ଲୋକ । ସେ ହୁଏତ କିଛି ଭାବି ନ ଥିବେ । କିନ୍ତୁ ତାଙ୍କ ପାଖକୁ ନଳିନୀକି ଡାକି ଦେବାକୁ କହି ସେ କାହିଁକି ଆଘାତ ଦେଲା ତାଙ୍କୁ । ଅନୁ ଭାଇ, ତମେ ସତେ କା'ର ?

ଭାବନା ତାର କେତେ କାଳ ପାଇଁ ବନ୍ଦ ହୋଇଗଲା । ଭାବି ଭାବି ସେ କିଛି ସ୍ଥିର କରି ପାରିଲାନି । ସତେ କଣ ଏଠିକି କାହାର ହେବାକୁ ସିଏ ଆସିଛନ୍ତି । ସିଏ ଆମର ବନ୍ଧୁ । ସବିତା ଅପାର ଦିଅର । ଆମ ସମସ୍ତଙ୍କର ସେ ବନ୍ଧୁ ; କିନ୍ତୁ ତାଙ୍କ ଉପରେ ଆମର ଏ ଅଧିକାରର ଦାବୀ ଉଠୁଚି କାହିଁକି ? ମୋର ଯେମିତି, ସେ ନଳିନୀର ମଧ ସେମିତି । ନଳିନୀ ପୁଣି କଣ କହିଲା ମ ! ଛି, ନଳିନୀଟା ଭାରି ଓଲି । ଅନୁଭାଇଙ୍କି ଏମିତି ସବୁ କୁହନ୍ତି । ତା' ହେଲେ ଅନୁଭାଇଙ୍କି ମୁଁ ଭଲ ପାଏ ବୋଲି ନଳିନୀ ବିଲକୁଲ ଜାଣି ନେଇଚି । ସତେ ତା'ହେଲେ ମୁଁ ଅନୁଭାଇଙ୍କି ଭଲ ପାଏ । **ଅନୁଭାଇ,** ତମେ କଣ ଏ କଥା ଜାଣ ? ନ ଜାଣିଥିଲେ ତମେ ସେହି ଶଶା କଥାଟା **କହିଥାନ୍ତ କାହିଁକି ?**

ଭାବି ଭାବି ଛନ୍ଦା ବାହାରକୁ ଅନେଇଲା । ବାହାରେ ସେ ପର୍ଯ୍ୟନ୍ତ ଜ୍ୟୋତ୍ସ୍ନା ବର୍ଷି ହୋଇ ପଡ଼ୁଛି । ଝରକା ପାଖକୁ ଉଠିଯାଇ ଆକାଶକୁ ଚାହିଁଲା । ଆକାଶରେ ଚନ୍ଦ୍ର । ଚନ୍ଦ୍ର ଦେହରେ କେଉଁ କାଳର ସେହି ଶଶାଟା ସେମିତି ଲାଗି ରହିଛି । ଶ୍ରେଷ୍ଠ ଜୀବଟିର କି ପରାକାଷ୍ଠା—ଜ୍ୟୋତ୍ସ୍ନା ପିଇବାକୁ ଯାଇ ଜ୍ୟୋତ୍ସ୍ନାରେ ଏକଦମ ବୁଡ଼ି ଯାଇଛି । କିନ୍ତୁ ମଣିଷର ସେ ଭାଗ୍ୟ କାହିଁ ? ଅନୁଭାଇ, ମୁଁ ତମ ଦେହରେ କଣ ଏମିତି ଜଡ଼ି ଯାଇ ପାରିବି ? ଅନୁଭାଇ, ତମକୁ ଭଲ ପାଇବାର ପରିଣାମ କଣ ? ତମେ ଛୁଟିରେ ବୁଲି ଆସିଚ । ଏଠିକି ସବିତା ଅପା ଲାଗି ଆସିଚ । ତମେ ପୁଣି ଚାଲିଯିବ ଅନୁଭାଇ । ତମେ ଚାଲିଯିବ ସତେ ? ତମେ ଚାଲିଯାଇ ପାରିବ ? ତମେ ଗଲା ପରେ·····

ଆଉ କିଛି ଭାବି ପାରିଲାନି ଛନ୍ଦା । ଧୀରେ ଧୀରେ ଝରକା ପାଖରୁ ଚାଲି ଯାଇ ବିଛଣାରେ କଚାଡ଼ି ହୋଇ ପଡ଼ିଲା । ବିଛଣାରେ ପଡ଼ି ପଡ଼ି ସେ ଭାବିଲା । ଯଦି ସବିତା ଅପା ଏ କଥା ଜାଣିବେ, ତାହାହେଲେ ସେ କଣ ଭାବିବେ ମତେ । ଛି, ଭାରି ଲାଜ କଥା । ନାଁ ଅନୁଭାଇଙ୍କି ମୁଁ ଆଉ ଚାହିଁବିନି, କଥା କହିବିନି, କି ତାଙ୍କ ଆଗକୁ ମଧ ଆସିବିନି । ସତେ ଅନୁଭାଇ, ତମେ ମଧ କଣ ଭାବିବ, ଆଜି ରାତିରେ ମୁଁ ତମକୁ

ଧରି ପକେଇ ଚେଷ୍ଟା ଲୁଚି ଲୁଚି ଦୂରରେ ରହିଲି । କିନ୍ତୁ କାହିଁକି ତମକୁ ଧରିଲି ? ଧରିଲି ବେଳେ ତମେ ମତେ ଠେଲିଦେଲ ନାହିଁ କାହିଁକି ? ନଳିମା ଆସିବା ଯାଏ ବି ମୁଁ ତମକୁ ସେମିତି ଧରିଥାଏ । ବାସ୍ତବିକ, କି ଭୁଲ ହୋଇଗଲି ମୋର······

ମୋର ଏଇ ଭୁଲ ବୋଉ ଜାଣନ୍ତୁ ନି ! ଏତିକି ଭାବି ସେ କିଲ୍ କିଲ୍ ହୋଇ ହସି ତକିଆରେ ମୁହଁ ମାଡ଼ି ଦେଲି । ତକିଆ ଦେହରେ ନିବିଡ଼ ହେବା ଫଳରେ ଛନ୍ଦାର ଅସ୍ୱସ୍ତି ଯେମିତି ଅଧିକ ବଢ଼ି ଉଠିଲି । ଉଠି ଝରକା ପାଖକୁ ଚାଲିଯାଇ ସେ ପୁଣି ଠିଆ ହୋଇ ରହିଲି ।

ଏହି ସମୟରେ ଦରଜା ପାଖରେ କାହାର ପଦଶବ୍ଦ ଶୁଭିଲି । ଚମକି ପଡ଼ି ପଛକୁ ଅନାଇଲି ଛନ୍ଦା । କିଏ ? କୋଉଠି ଶୋଇଲେ ଆଜି ଅନ୍ତୁଭାଇ !

ଧୀରେ ଧୀରେ ଟିପ ଅଗରେ ଚାଲି ଘରଭିତରକୁ ପଶି ଆସିଲି ନଳିମା । ଆଶ୍ଚର୍ଯ୍ୟ ହୋଇ ଛନ୍ଦା ତାକୁ ଅନେଇ ରହିଲି । ପାଖକୁ ଲାଗି ଆସି ନଳିମା କହି ଉଠିଲି······

'ଜମା ନିଦ ହଉନି ଛନ୍ଦା ଅପା । ଭାରି ଗରମ ଲାଗୁଛି । ଆଜି ମୁଁ ତୋର ପାଖରେ ଶୋଇବି ।···ନାଁ ଆଜି ଖାଲି ଗପି ଗପି ରାତି କାଟିଦେବା ।'

ଏଇ ନଳିମା ଆଗରେ ଆଜି ଛନ୍ଦାର ତ୍ରୁଟି ଧରାପଡ଼ିଯାଇଛି । ତାର ଯେମିତି କ୍ଷତିପୂରଣ କରି ସେ ହସି ହସି କହିଲି······

'ତୋର ଆଜି କଣ ହୋଇଛି କି ନଳି? ଶୋଇବୁନି କାହିଁକି ?'

ସ୍ମିତ ହାସ୍ୟ ଢାଳି ନଳିମା କହିଲି······

'ଅନ୍ତୁଭାଇ ଭାରି ଦୁଷ୍ଟ ! ଜୋରରେ ଧରି ପକେଇଲେ ଯେ ହାତଟା ଝିମ୍ ଝିମ୍ ହୋଇ ଯାଉଛି । ସବିତା ଅପା ଆସିବା ଯାକେ ବି ଛାଡ଼ିଲେ ନି ।'

ଛନ୍ଦା ନିର୍ବାକ ହୋଇ ଚାହିଁ ରହିଲି ନଳିମାର ମୁହଁକୁ । ତାର ସାଙ୍ଗ ନଳିମା । କ୍ଷୀର-ମାର ସମ୍ପର୍କ । ସେ ଆଜି ତା'ର ପ୍ରତିଦ୍ୱନ୍ଦୀ । ଅନ୍ତୁଭାଇ, ତମେ କହୁଥିଲ ନା ସେଇ ଶଶା କଥା । ସତେ ଅନ୍ତୁଭାଇ ନଳିମା ଯାହା କହୁଛି ସତ ?

ନଳିମା ହାତ ଧରି ପକେଇ ସେ ପୁଣି କହିଲି···

'ତୁ କଣ କହିଲୁ ସେତେବେଳେ ?'

'କେତେବେଳେ ?'

'ସେଇ ବାଡ଼ିରେ ଅନ୍ତୁ ଭାଇଙ୍କ ସାଙ୍ଗରେ ମୁଁ ଠିଆ ହୋଇଥିଲିବେଳେ······

'କହିଲି, ମତେ କାହିଁକି ସିଏ ବେଳେ ବେଳେ ଅନାନ୍ତି—ସିଏତ ବଲ - କୁଲ ଛନ୍ଦା ଅପାର······'

'କିନ୍ତୁ ଏବେ ଯେ ଧରି ପକେଇଲେ ତତେ ? ବାସ୍ତବିକ୍ ଅନ୍ତୁଭାଇ ତତେ ଭଲ ପାଆନ୍ତି ଲୋ···'

ଟିକେ ରହିଯାଇ ପୁଣି ଛନ୍ଦା କହିଲି···

'କୋଉଠି ତତେ ଧରିଲେ, ଏଇ ହାତରେ···'

'ହଁ ଲୋ ଅପା, ଭାରି ପୋଡ଼ୁଚି···'

କହି ଠୋ ଠୋ କରି ହସି ଉଠିଲା ନଳିମା । ହସର ଝଡ ଗୁପ୍ତିବା ପାଇଁ ପାଟିରେ ଲୁଗା ମେଞ୍ଚାଏ ଆପେ ମାଡ଼ିଦେଲା ।

ନଳିମା ମୁହଁକୁ ଅନେଇ ଅନେଇ ତା' ହାତକୁ ଛନ୍ଦା ଧୀରେ ଧୀରେ ଆଉଁସିବାକୁ ଲଗିଲା । ଅଭୁଭାଇଙ୍କ ସ୍ପର୍ଶ ଲଗିଛି ସେଠି । ତାହା ଯେମିତି ଅତି ମୂଲ୍ୟବାନ ଛନ୍ଦା ପକ୍ଷରେ । କିନ୍ତୁ ଛନ୍ଦାର ଏ ଭଳି ଆଚରଣରେ ନଳିମା ପୁଣି ଫେଁ କରି ହସି ଉଠିଲା । ହସ ଶେଷରେ ସେ ସ୍ୱର ବଦଳାଇ ବଦଳାଇ କହିଲା······

'ଗୋଟା କଥା ଶୁଣିଛି ଆଜି ଛନ୍ଦା ଅପା !'

ଛନ୍ଦାର ଛାତିରୁ ଅତଡ଼ା ଖସି ପଡ଼ିଲା ଯେମିତି ଏ କଥାରେ । କଣ ଶୁଣିଛି ନଳିମା ? ଅଭୁଭାଇଙ୍କ ସାଙ୍ଗରେ ତା' କଥା ବାହାରେ କିଏ ଆଉ ଜାଣିଲେ କି ? ନଳିମାର କଥା ଶୁଣିବା ପାଇଁ ସେ ସନ୍ତୃଷ୍ଟ ନୟନରେ ତା' ମୁହଁକୁ ଚାହିଁ ରହିଲା ।

ଆସ୍ତେ ଆସ୍ତେ କହିଲା ନଳିମା···

'ଆଜି ସବିତା ଅପା ବଡ଼ ମାଙ୍କୁ କହୁଥିଲା, ଅଭୁଭାଇ ଆର ବର୍ଷ ଏମ୍‌. ଏ. ପାଶ କଲେ କଣ ଆଉ ପଢ଼ିବା ପାଇଁ ଆମେରିକା ଯିବେ । ସେଠିକି ଯିବା ଆଗରୁ ବା'ଘର କରିଦେବାକୁ ତାଙ୍କ ବାପାଙ୍କ ଭାରି ଇଚ୍ଛା······'

ଛନ୍ଦାର ପୂର୍ବର ଭୟ କଟି ଯାଇଛି । ସେ ବର୍ତ୍ତମାନ ଆଶ୍ୱସ୍ତ ହୋଇ ସହଜ ଭାବରେ କହିଲା···

'ବା' ହଉ ନାହାନ୍ତି ସିଏ । ଅଭୁଭାଇ ଆମର କଣ କି !'

'ନା, ସିଏ କାହିଁକି ଆମର କଣ ହେବେ । ଖାଲି ସେଇ ଶେଫାଳି ଗଛ ତଳେ······'

ନଳିମାର ହାତ ଛାଡ଼ିଦେଲା ଛନ୍ଦା । ତାର ଯେମିତି ଭାବାନ୍ତର ହେଲା । ଆଉ ମନେ ହେଲା, ତାର ସବୁ ତ୍ରୁଟି ଜାଣିଚି ଏଇ ନଳିମା । ଆଖିକି ତଳକୁ କରି ସେ ଠିଆ ହୋଇ ରହିଲା ।

ନଳିମା ହସି ହସି କହିଲା······

'ସେତିକି ବେଳୁଲେ ଅପା, ସେତିକିବେଳୁ ଧିଅଟା ମୋର ଝିମି ଝିମି ହୋଇ ଯାଉଚି······ଉଃ, ଯେମିତି ମୋର ଏଇ ହାତଟାକୁ ସେ ଧରି ଥେଲେ······'

ଏତେବେଳକେ ନଳିମାର ସବୁ ପରିହାସ ଛନ୍ଦା ବୁଝି ପାରିଲା ଯେମିତି । ତାକୁ ଆଉ କିଛି ନକହି ଘରଭିତରେ ଯାଇ ବିଛଣାରେ ମୁହଁମାଡ଼ି ଶୋଇପଡ଼ିଲା । ନଳିମା ଖଣ୍ଡେ ପଙ୍ଖା ଧରି ତାକୁ ବିଞ୍ଚିବାକୁ ଲଗିଲା । କଣ୍ଠରେ ହସର ଘନ ଘନ ଲହଡ଼ି ବୁଲିଲା । ଦେହରେ ତାର ଫୁଟି ଉଠିଲା ସେଇ ହସ ଲହଡ଼ିର ଆଘାତ ।

ଅଭନୁ ମଧ୍ୟ ସେ ପର୍ଯ୍ୟନ୍ତ ଶୋଇନି । ତରୁଣୀ ତନୁର ଆଲିଙ୍ଗନ ଆଜି ତା' ଦେହରେ ସର୍ବପ୍ରଥମେ ଲଗିଛି । ସେ ପୂର୍ବ ପରି ଆଜି ମଧ୍ୟ ଶୋଇଚି ଦୋଚାଲିର

ସେଇ ଛାତ ଉପରେ । ଆଖି ଉପରେ ଜ୍ୟୋତ୍ସ୍ନା । ରଜତ ପରାଗର ଶୋଭାପାହାା ଭିତରେ ସେ ଯେମିତି ଆତ୍ମହରା ।

ସେ ମନେ ମନେ ଭାବୁଥାଏ କିଏ ତମେ ଛନ୍ଦା, କିଏ ତମେ ନଳିନୀ ? ଗୋଟିଏ ଯୁବତୀ ଦୁଇଟି ରୂପ ଧରି ମୋର ପଥରେ ତମେ କାହିଁକି ଆସି ଦେଖା ଦେଇଛ ? ନୂଆବୋଉ ଚାଲି ଫେରିଯିବା ଆମ ଘରକୁ । ଆଉ ରହି ହବନି ଏଠି । ମୋ ହାତରେ ଗୋଟିଏ ଅର୍ଘ୍ୟଥାଳି । ମୁଁ କାହାର ଅର୍ଚ୍ଚନା କରିବି ସେଥିରେ !

ଛନ୍ଦା, ମାଳତୀ କୁଞ୍ଜର ଜ୍ୟୋତ୍ସ୍ନାଠାରୁ ତମେ ଯଥେଷ୍ଟ ସୁନ୍ଦର । କୁଞ୍ଜ ତଳର ତିଳଚନ୍ଦ୍ରଲିତ ଛାୟାଠାରୁ ତମର କେଶରାଶି ଅଧିକ ମନୋରମ । ରାତିର ଏଇ ଜ୍ୟୋତ୍ସ୍ନାର ମାୟା ପ୍ରଭାତରେ ବିଲୀନ ହୋଇଯିବ । କିନ୍ତୁ ତମର ରାତିର ରୂପ ପ୍ରଭାତରେ ହେବ ଆହୁରି କମନୀୟ । ରାତିର କୁମୁଦ ତମେ ପ୍ରଭାତର ପଦ୍ମ ହୋଇ ହସିବ । ଶତ ପଦ୍ମଫୁଲରେ ତମର ତୁଳନା ହୁଏନା ଛନ୍ଦା । ତମକୁ ଫୁଲରେ ଉପମିତ କରିବାକୁ ହେଲେ ସେ ଫୁଲର ଏକ ସ୍ୱତନ୍ତ୍ର ନାମକରଣ ହେବା ଆବଶ୍ୟକ ।

ନଳିନୀ ବିଷୟରେ ସେ କିଛି ଆଉ ଭାବି ପାରିଲାନି । ସେଦିନ ସେ ଆଗରି ଏଇ ଚନ୍ଦ୍ରଶାଳା ଉପରେ ଠିଆ ହୋଇ ଦେଖିଥିଲା ନଳିନୀର ସ୍ନାନସିକ୍ତ ଦେହର ସୁଷମା । ସେ ଦିନର ଦୃଶ୍ୟ ଆଖିରେ ତାର ଜୀବନ୍ତ ହୋଇ ଫୁଟି ଉଠିଲା । କିଏ ଏଇ ବାଳିକା ! ପାଠ ପଢ଼ାର କର୍ମମୟ ଜୀବନରେ ଦିନେତ ସେ ଏମାନଙ୍କର ସ୍ୱପ୍ନ ମଧ୍ୟ ଦେଖି ନ ଥିଲା ।

କେତେବେଳକେ ମନେ ପଡ଼ିଲା ତାର କେତେ ଘଣ୍ଟା ତଳର ନଳିନୀର ସେଇ କଥାଗୁଡ଼ିକ···ଅଜୁହାଇ ତମେ ଛନ୍ଦା ଅପା ପ୍ରତି ଭାରି ନିଷ୍ଠୁର ବ୍ୟବହାର କରୁଛ । ମତେ ବେଳେ ବେଳେ କାହିଁକି ଅନଉଁଚ କହିଲ ?'

ନଳିନୀ, ଏତକ କଥା କହି ତମେ ମୋର ଆହୁରି ପାଖକୁ ଚାଲିଆସିଛ । ତମର ଗୋଡ଼ କାଟରେ କଟି ଯାଇଥିଲା ସେଦିନ । ରୁମାଲ୍ ଟାକୁ ଗୁଡ଼େଇ ତମ ଗୋଡ଼ରେ ମୁଁ ବାନ୍ଧି ଦେଇଥିଲି । ଏଇ ବିଛଣାରେ ତମେ ଶୋଇ ପଡ଼ିଥିଲ ସେଦିନ । ତମେ ପୁଣି ଆଜି ଆହୁରି ପାଖକୁ ଚାଲି ଆସିଛ । କିନ୍ତୁ ଏହାର ମୂଲ୍ୟ କଣ ? କଣ ଏହାର ଅର୍ଥ ? ଗୋଟିଏ ଅର୍ଘ୍ୟଥାଳି ଧରି ମୁଁ ତମମାନଙ୍କର କି ଅର୍ଚ୍ଚନା କରି ପାରିବି । ନଇଁ ପଡ଼ିବି ଅପଥର ଧାରକୁ । କେତେ ସମବୟସୀ ବନ୍ଧୁଙ୍କ ପରି ତମକୁ ନାୟିକା ସଜାଇ ପ୍ରେମ କବିତା ଗାଇବି ? କାହିଁ, ସେଥିପାଇଁ ମୋ ହୃଦୟରେ ଉତ୍ତେଜନା ତ ଆସୁନି । ମୁଁ ଏକାନ୍ତ ଅଭାଜନ । ତମେମାନେ ମୋ ପଥରୁ ଦୂରକୁ ଚାଲିଯାଅ । ଏ ପର୍ଯ୍ୟନ୍ତ ମୋ ଭିତରେ ନାରୀର ଆବଶ୍ୟକତା ସୃଷ୍ଟି ହୋଇନି ।

ଶେଷରେ ମନେ ପଡ଼ିଲା ସେଇ ପାହାଡ଼ ତଳର ବାବାଜୀଙ୍କ କଥା ।··· ମୋଠାରୁ ମଧ୍ୟ ସେ ବୟସରେ ଆହୁରି ତରୁଣ । କିନ୍ତୁ ସେ ତାରୁଣ୍ୟ ଭିତରେ ସଂସାର ପ୍ରତି କୌଣସି ଆସକ୍ତି ନାହିଁ । ତାଙ୍କର ସେଇ ଗଡ଼ୁଚା ରହି ଯାଇଚ । କାହିଁକି ସେ ଆସିଲେନି ଆଉ ଥରେ ଆମ ପାଖକୁ । ହୁଏତ ସେ ଭାବିଲେ ଆମେମାନେ ବିଳାସପଥର

ପଥିକ । ତଥାପି ସେଇ ବଳାସୀ ପ୍ରାଣକୁ ଶୋଷ ହେଉଥିଲା ବୋଲି ତାଙ୍କର ଗଣ୍ଡୁ ଖଣ୍ଡିକୁ ଦେଇ ଚାଲିଗଲେ ।

ଛନ୍ଦା ଆଉ ନଳମଣିକୁ ବାର୍ଥିରୁ ଉଦ୍ଧାର କରିବାକୁ ହେଲା ଶେଷରେ । ଗୋଟିଏ ତରୁଣର ଆଖି ଆଗରେ ଦୁଇଟି ତରୁଣୀ ତନୁର ସିକ୍ତ ସୌନ୍ଦର୍ଯ୍ୟ । ସେଥିରେ ବାବାଜୀଙ୍କର ସେଇ ପିତଳ ଗଣ୍ଡୁଟି ସମ୍ପୂର୍ଣ୍ଣ ଅବହେଳିତ ହୋଇ ରହିଗଲା । କର୍ତ୍ତବ୍ୟରେ ଏ ଏକ ଘୋର ତ୍ରୁଟି । ମନରେ ଅଶାନ୍ତି ଧରି ଆକାଶକୁ ଚାହିଁ ରହିଲା ଅତନୁ । କେତେ କଣ ଭାବି ଭାବି କେତେବେଳକେ ସେ ଶୋଇପଡ଼ିଲା ସେ ଜାଣେନି ।

## ॥ ଏଗାର ॥

ସକାଳୁ ଉଠି ଅତନୁ ଦେଖିଲା ତା' ଦେହସାକ ରାତିରେ କିଏ ଚନ୍ଦନ ବୋଳି ଦେଇଚ । ସେଥିରେ ପୁଣି ତୁଳସୀର ଅଗୁରୁ ଅତର ମିଶିଛି । କାହାର ଏ କାଣ୍ଡ ସେ କିଛି ଭାବି ନ ପାରିଲେବ ଆଗେ ତାର ନଳମଣିର ନାଁ ମନେ ପଡ଼ିଲା । କିନ୍ତୁ ଏ ସବୁ ଉପଚାରରେ ସେ ପ୍ରଭାବିତ ହେଲାନି । ଉଠି ପଡ଼ି ପାଖରେ ପଡ଼ିଥିବା ତଉଲିଆ ଖଣ୍ଡିକରେ ଦେହ ମୁଣ୍ଡିକୁ ଭଲ କରି ଘଷି ଦେଇ ଠିଆ ହୋଇ ପଡ଼ିଲା । ତଳକୁ ଯାଇ ପାଣିରେ ମୁହଁ ହାତ ଧୋଇ ସାଇକେଲ୍ ଧରି ପଦାକୁ ବାହାରିଗଲା । କେବଳ ତଉଲିଆ ଖଣ୍ଡିକରେ ଦେହର ଉପର ଅଂଶଟା ଆବୃତ କରିନେଲା ।

ଅତନୁର ଏ ସବୁ କାମ ଭଲ ଭାବରେ ଛନ୍ଦା ଲକ୍ଷ୍ୟ କରିଛି । କେତେବେଳୁ ଉଠି ଆଜି ସିଲେଇ କାମରେ ଲାଗି ଯାଇଛି । ଅତନୁର ଗୋଟିଏ ଜାମାର ଦୁଇଟି ବୋତାମ କୋଉଦିନୁ ଛିଣ୍ଡି ଯାଇଥିଲା । ତାକୁ ଲଗେଇ ଦେବା ପାଇଁ ସେ ଯେମିତି ଆଜି ତାର ପ୍ରଥମ କର୍ତ୍ତବ୍ୟ ମନେ କରିଛି । ଅତନୁ ପାହାଚରେ ଓହ୍ଲାଇବାର ଶବ୍ଦ ସେ ଶୁଣିଥିଲା । ସେତିକିବେଳୁ ତଳ ମହଲାର ତା'ର କୋଠରି ଭିତରେ ଲକ୍ଷ୍ୟ କରି ସେ ଅତନୁର ପ୍ରତ୍ୟେକ ଗତିବିଧି ଦେଖିନେଇଛି । କିନ୍ତୁ ଏ ପରିବାରରେ ଏତେ ନିଜର ହୋଇଯାଇଛି ଯେ ତାର ଗତିବିଧିରେ ଆଉ ସନ୍ଦେହ କରିବାର କାହାର କିଛି କାରଣ ନାହିଁ । ଭାବିଲା, ଅତନୁଭାଇ ବୋଧହୁଏ ସକାଳୁ ଟିକିଏ ବୁଲିଆସିବା ପାଇଁ ବାହାରିଗଲେ । ସେହି ଭାବନାହିଁ ତା ପକ୍ଷରେ ସ୍ୱାଭାବିକ, ଆଉ ଯଥେଷ୍ଟ । ତାରି ଅତନୁଭାଇ, ସେ ପୁଣି ଯିବେ କୁଆଡେ । ରାତିରେ ମିଛରେ ସେ ନଳମଣି କଥାରେ ବିଶ୍ୱାସ କରି ତାଙ୍କୁ ଯାହା କେତୋଟିକ୍ଷଣ ପାଇଁ ସେ ଭୁଲ୍ ବୁଝିଥିଲା ।

'କେତୋଟି ମିନିଟ୍ ଭିତରେ ବୋତାମ ଲଗା ଶେଷ ହୋଇଗଲା । ଛୁଞ୍ଚିରେ ଫିକା ନୀଳରଙ୍ଗର ଡି ଏମ୍ ସି ସୂତା ଦେଇ ବୋତାମ ଘରର ପଛପଟେ ସିଲେଇ କରି ଲେଖିଦେଲା 'ଛନ୍ଦା' । କିନ୍ତୁ କ୍ଷଣକ ପରେ ତାକୁ ସେ ଫିଟେଇ ଦେଇ କଣ ଭାବିଲା । ପୁଣି ସେଠି ସିଲେଇ କରି ଲେଖିଦେଲା 'ନଳମଣି' । ଶେଷ ଅକ୍ଷରଟି ସରିବା ଉପରେ,

ଏତିକବେଳେ ସେଠି ନଳମା ଆସି ପହଞ୍ଚିଲା । ନଳମାକ ଦେଖି ସେ ଜାମାଟାକୁ ଲୁଚେଇବାକୁ ଚେଷ୍ଟା କଲା । କିନ୍ତୁ ପାରିଲାନି । ସେତେବେଳକୁ ନଳମା ଆସି ଠିକ୍ ଆଗରେ ତାର ପହଞ୍ଚି ଯାଇଚି । ତାକୁ ଅନେଇ ସେ ଫିକ୍ କରି ହସିଦେଲା କେବଳ ।

ଅଭୁଭାଇଙ୍କ ଜାମାରେ ଛନ୍ଦା ଅପା ହାତରେ ନଳମା ବୋଲି ଲେଖା ହୋଇଛି, ଏକଥା ଭଲରୂପେ ନଳମା ଦେଖିପାରିଲା । ସେ ଏକ ଦୃଷ୍ଟିରେ ଚାହିଁ ରହିଲା ଛନ୍ଦା ଅପାର ମୁହଁକୁ । ଛନ୍ଦା ମୁହଁରେ ସେ ପର୍ଯ୍ୟନ୍ତ ଲଘୁ ହସର କ୍ଷୀଣ ରେଖାଟିଏ ଲଗି ରହିଛି ।

'ତା ହେଲେ ତୁ ମୋ ଉପରେ ରାଗିଚୁ ଛନ୍ଦା ଅପା ?'

ନଳମାର କଥା ଶୁଣି ଛନ୍ଦା ମୁଣ୍ଡ ଟେକିଲା । ଦୁହିଁଙ୍କ ଦୃଷ୍ଟି ଏକ ହୋଇଗଲା କ୍ଷଣକ ପାଇଁ । କିନ୍ତୁ ଓଠରେ ତାର ହସର ରେଖା ଲାଗିରହିଛି । ନଳମାକ କଣ ଜବାବ ଦେବ ସେ କିଛି ଭାବିପାରିଲା ନାହିଁ । ଉଠି ଠିଆ ହୋଇପଡ଼ି ନଳମାକ ଜଡ଼େଇ ଧରି ସେ କହି ପକାଇଲା......

'ତୁ ମୁଁ ଏକା ଘରେ ଯାଇ ପଡ଼ନ୍ତେ କି ଲୋ ! ଏମିତି କେତେ କୌତୁକରେ ଦିନ କାଟି ଦିଅନ୍ତେ......'

ନଳମା ହସି ହସି କହିଲା......

'କଣ ଗୋଟିଏ ବରକୁ—ଅଭୁ ଭାଇଙ୍କି ! ମରଣ ହଉ ନେଇ ଲୋ ତତେ !'

ସାନଭଉଣୀ ନଳମାର ଏ କଥାରେ ଛନ୍ଦା ବଡ଼ ଆହତ ହେଲା । ତା କଥାରେ ନଳମା ଆଜ ଭୁଲ ଧରିଚି । ତାର ଏବେ ସବୁ ଭୁଲ୍ ହେଇ ଯାଉଚି । ଏଥିପାଇଁ ସେ ମନେ ମନେ ଅଭୁଭାଇ ଉପରେ ରାଗିଗଲା ଯେମିତି । ତାଙ୍କରି ଯୋଗୁ ସବୁ ଭୁଲ୍ ହଉଚି । କାହିଁ, ଆଗେତ ମୋର ଏମିତି କିଛି ହଉ ନଥିଲା ।

ଏତିକି କହି ଘର ଭିତରକୁ ଚାଲିଗଲା ଛନ୍ଦା । ଅତନୁ ଉପରେ ହୋଇଥିବା ସବୁ ରାଗଯାକ ସେ ତାର ଜାମା ଖଣ୍ଡିକ ଉପରେ ସୁଝେଇ ସେ ଖଣ୍ଡିକକୁ ସେ ଆଲ୍ନା ଉପରକୁ ଫିଙ୍ଗି ଦେଲା । କିନ୍ତୁ ପର ମୁହୂର୍ତ୍ତରେ ସେ ଯେମିତି ହୃଦୟରେ ଦଂଶନ ଅନୁଭବ କଲା । ଜାମା ଖଣ୍ଡିକୁ ଆଲ୍ନାରୁ ତୋଳିଆଣି ସେଥିରେ ଗୋଟିଏ ଗଭୀର ଚୁମ୍ବନ ଆଙ୍କି ପୁଣି ଥୋଇଦେଲା ।

ବାହାରକୁ ହସି ହସି ଚାଲି ଆସି ସେ ନଳମାକ ଅନେଇ ଅନେଇ କହିଲା...

'ମୁଁ କାହିଁକି ତୋ ଉପରେ ରାଗିବି ଲୋ ନଳି ? ରାଗିଲେ ରାଗିଥିବି ଅଭୁଭାଇଙ୍କ ଉପରେ । ତୋରି ବର ହବାକୁ ଆସି ସେ ହଟ ସାଧୁଛନ୍ତି ମୋ ସାଙ୍ଗରେ । ଚାନ୍ଦରେ ଶଶା ଦେଖଉଛନ୍ତି ସେ ମତେ । ତୁ ତ ବୋଉ କଥା ସବୁ ଜାଣୁ । ଅପାତ ବା' ହେଇଚି । ଆଉ ଅଛି ମୁଁ । କିନ୍ତୁ ମୁଁ କୋଉଠିକି ଯିବିନି । ଯିଏ ମୋ ପାଇଁ ଆସିବ ସିଏ ଏଇଠି ରହିବ । ତୁ କଣ ଭାବୁଚୁ ସେଇ ଲୋକ ଅଭୁଭାଇ ? ସିଏ ଆସି ରହିବେ ଏଇଠି......ଆମ ଘରେ ଘର ଜଇଁଆ ହେଇ ?'

ଶେଷ କଥାଗୁଡ଼ାକ ଯେମିତି ଛନ୍ଦାର ଅନ୍ତଃସ୍ଥଳକୁ ମନ୍ଥି ବାହାରି ଆସୁଥାଏ । ଶେଷକୁ ଆଖିକଣରେ ତାର ଅଶ୍ରୁର ଉଦ୍‌ଗମ ହେବାକୁ ଲାଗିଲା ।

ବାଷ୍ପଜଡ଼ିତ କଣ୍ଠରେ ସେ ଆଉ କିଛି କହି ପାରିଲାନି ଯେମିତି । ଧରି ପକେଇଲା ନଳିନୀର ହାତକୁ, ଅତି ନିବିଡ଼ ଭାବରେ । ନଳିନୀ ସାନ ହେଲେ ମଧ୍ୟ ତା' ପାଖରେ ସେ ଆଜି ନଇଁ ପଡ଼ିଛି······କିଛି ଉପାୟ ନଦେଖି ।

ମନେ ମନେ କହିଲା······

ଜହ୍ନ ଭିତରେ ରହି ଶଶା ଆକଣ୍ଠ ସୁଧା ପାନ କରୁନି ଅଭୁଭାଇ ! ସେ ପ୍ରତାରିତ ହୋଇ ମରିଯାଇଚି···ବିଲକୁଲ ମରି ଯାଇଛି ।

ବଡ଼ ବିବର୍ଣ୍ଣ ହୋଇପଡ଼ିଲା ନଳିନୀ । ହେଉ ହେଲା ଦିନୁଁ ୨ସ ଏଇ ଛନ୍ଦା ଅପାର କେବଳ ଐଶ୍ୱର୍ଯ୍ୟ ଦେଖି ଆସିଛି । ଆଜି ଛନ୍ଦା ଅପାର ସେ ଐଶ୍ୱର୍ଯ୍ୟର ବିନାଶ ଘଟିଲା କାହିଁକି ? କଣ, ତାରି ଯୋଗୁଁ ? କେବଳ ତାରି ଯୋଗୁ କଣ ସେ ଅଭୁ ଭାଇଙ୍କି ଆଜି ଦୂରକୁ ଠେଲିବାକୁ ଯାଉଚି । ଆଉ ସେଥିଯୋଗୁ ସେ ତାର ସବୁ ଐଶ୍ୱର୍ଯ୍ୟ ହରେଇ ଭାଙ୍ଗି ପଡ଼ିବାକୁ ବସିଚି ।

ଏହିପରି ଭାବନା ଭିତରେ ଛନ୍ଦାକୁ ଆଶ୍ୱସ୍ତି ବାଣୀ ଶୁଣାଇବାକୁ ନଳିନୀ ଚେଷ୍ଟା କଲା । କିନ୍ତୁ ସେ କିଛି କହି ନପାରି ଛନ୍ଦାର ହାତକୁ ଖାଲି ଜୋର୍‌ରେ ଚିପି ଧରିବାକୁ ଲାଗିଲା । କିଏ ଏଇ ଅଭୁ ଭାଇ ? କୋଉଠି ଥିଲେ ଆଜଯାଏ ? ଏବେ ଦୁଇଟି ଜୀବନ ଏକ ସାଙ୍ଗରେ ଭାଙ୍ଗି ଦେବାକୁ ଆସିଲେ ଏଠିକି ?

ଏତିକବେଳେ ଦୂରରେ ସବିତା ଅପାର କଣ୍ଠସ୍ୱର ଶୁଣା ଗଲା । ସବିତା ଅପା ଉଠି ନୂଆ ଚାକର ଉଦ୍ଦେଶ୍ୟରେ ଡାକ ଛାଡ଼ୁଛି । ସେହି ଡାକ ଭିତରେ ଦୁହେଁ ନିଷ୍କ୍ରାନ୍ତ ହେବାର ପଥ ପାଇଲେ ।

ନଳିନୀ ପାଖରୁ ଫେରି ଛନ୍ଦା ନିଜର ଶୋଇବା ବିଛଣାକୁ ଚାଲିଗଲା । ସେଠି ସେ ବିଲକୁଲ ଶୋଇ ପଡ଼ିଲା । ଯେମିତି ରାତିର ନିଦ୍ରା ତାର ଏପର୍ଯ୍ୟନ୍ତ ଭାଙ୍ଗିନି । ସେ ସକାଳେ ଉଠିଥିଲା ଭୁଲରେ ।

ସାଇକେଲ ମାରି ଅତନୁ ଅନେକ ଦୂର ଚାଲିଗଲା । ଶେଷରେ ଯାଇ ଗୋଟିଏ ଜଳାଭୂମି ପାଖରେ ପହଞ୍ଚିଲା । ସେହି ଜଳାଭୂମି ପାଖରେ ନଈ ବନ୍ଧ ସହ ଗୋଟିଏ କେନାଲ ବନ୍ଧରେ ମିଳନ ହୋଇଚି । ନଈ ବନ୍ଧ ଉପରେ କେତୋଟି ଗୁଆ- ଦାନକାଣ୍ଡି ଗଛ । ସାଇକେଲ୍ ରଖି ଦେଇ ସେଇ ଗଛର ଛାଇରେ ସେ ବସି ପଡ଼ିଲା । କେତେବେଳକେ ସେ ଦେଖିଲା, କିଛି ଦୂରରେ ଦୁଇ ତିନୋଟି ବାଳିକା ଜଳାଭୂମିରୁ ଖାଦ୍ୟ ଆହରଣ କରୁଛନ୍ତି । ଜଳାଭୂମିର କୂଳେ କୂଳେ ଚୁନୁଚୁନିଆ ଆଉ ମଦରଙ୍ଗା ଶାଗର ବଣ । ସେଇ ଶାଗ ତୋଳୁଚନ୍ତି ସେମାନେ ।

ହୁଏତ ସେମାନେ ନୀଚ ଜାତିର ବାଳିକା । କିନ୍ତୁ ଯୌବନଦେବତାର ସାମ୍ୟବାଦ ଅକ୍ଷୁର୍ଣ୍ଣ ରହିଛି, ସେମାନଙ୍କ ଦେହରେ ଦେହରେ ଛିଣ୍ଡା ଲୁଗା ଗୁଡେଇହେଇ

ରହିଛି, କିନ୍ତୁ ମୁହଁରେ ତାଙ୍କର ଉଛୁଳି ଉଠୁଛି ହସ । ସେମାନଙ୍କୁ ନିରୀକ୍ଷଣ କଲା ଅତନୁ ଏମାନେ ଏଇ ଦୁନିଆର ଲୋକ । ଯେଉଁ ଅଗୁରୁ ଚନ୍ଦନର ଦୁନିଆରୁ ଏଇମାତ୍ର ସେ ପଳେଇ ଆସିଛି, ଏମାନେ ତା'ଠାରୁ ବେଶୀ ଦୂରରେ ନାହାନ୍ତି କିମ୍ବା ଦୂରର ମଧ୍ୟ ନୁହନ୍ତି । କ୍ଷଣକ ଭିତରେ ମନଟା ତାର ଯେମିତି ସାମ୍ୟବାଦୀ ହୋଇଗଲା । ପ୍ରେମରେ ଅତିଷ୍ଠ ହେଇଥିବା ଲୋକ ହଠାତ୍ ଯେମିତି ରାଜନୀତି ଓ ସମାଜନୀତିର ହାତ ମୁଠା ଭିତରେ ଆସି ପହଞ୍ଚିଲା ।

ଏହି ସମୟରେ ସେ ପାଖରେ ଆଉ ଗୋଟିଏ ବାଳିକା ମୂର୍ତ୍ତି ଦେଖିଲା ! ନିକଟରେ କଆବୁଦା ତଳେ ତଳେ ତାର ଖାଦ୍ୟ ସନ୍ଧାନ ଚାଲିଛି । ବାଳିକାଟି ଦା' ଖଣ୍ଡିଏ ଧରି କଆ ମୂଳର ଶୁଖିଲା ମାଟିକି ଉଖାରି ଉଖାରି ତା' ଭିତରୁ ଗେଣ୍ଡା ଆବି-ଷ୍କାର କରୁଛି । ଏସବୁ ସେମାନଙ୍କର ଖାଦ୍ୟ—ଚୁନୁଚୁନିଆ, ମଦରଙ୍ଗା ଶାଗ ଆଉ ଗେଣ୍ଡା-ଶାମୁକା । ଅତନୁ ଧୈର୍ଯ୍ୟର ସହ ସେ ସବୁ ଦେଖିବାକୁ ଚେଷ୍ଟା କଲା । ବାସ୍ତବ ଦୁନିଆକୁ ସେ ଆଜି ଯେମିତି ସ୍ପର୍ଶ କରୁଛି । ସମ୍ଭୋଗ ଓ ସୁଖ ସମ୍ଭାର ଭିତରୁ ଦୂରକୁ ଯାଇ ଦିନେ ସେ ଦେଖିଥିଲା ସେହି ପାହାଡ ବାବାଜୀଙ୍କଠାରେ ତ୍ୟାଗ ଓ ଅନାସକ୍ତିର ରୂପ । କିନ୍ତୁ ଆଜି ଦେଖିଲା ବାସ୍ତବ ଦୁନିଆର ତିନୋଟି ବାଳିକାଙ୍କୁ । ସେମାନେ ଏଇ ଦୁନିଆର ଲୋକ । ସେମାନଙ୍କର ଜୀବନ ଅଛି, ମାତ୍ର ସଂସ୍ଥାନ ନାହିଁ । ଗେଣ୍ଡା, ଶାମୁକା ଆଉ ସଭ୍ୟ ମାନବ ବର୍ଜିତ ଶାଗ ପତର ଭିତରେ ରହିଛି ସେମାନଙ୍କ ଜୀବନ । ବୈଶା-ଖର ଖରା ଭିତରେ ତିଆରି ହୋଇଛି ସେମାନଙ୍କ ଜୀବନର ପଥ । ପାହାଡ଼ ତଳର ଯେଉଁ ବାବାଜୀ ଯେଉଁ ଗେଣ୍ଡା-ଶାମୁକା ଛୁଇଁବାକୁ ଜୀବନରେ ସବୁଠାରୁ ଅଶୁଭ ମୁହୂର୍ତ୍ତ ମନେ କରିବ, ତାହାକୁ ଚରମ ଶୁଭକ୍ଷଣ ମନେ କରିବେ ହୁଏତ ଏଇ ବାଳିକାମାନେ । ଏଇ ବାଳିକା ତିନୋଟି ଆଜି ତାର ନିକଟରେ, ତାର ଆଖି ଆଗରେ । କିନ୍ତୁ ଏଇ ବାୟୁମଣ୍ଡଳ ଭିତରେ ଏଇ ଭଳି ଶତସହସ୍ର ବାଳିକାର ଆତ୍ମା ଆଜି ଘୂରି ବୁଲୁଛି, ଜୀବ-ନର ତାଡ଼ନା ଧରି ଖାଦ୍ୟର ସନ୍ଧାନରେ । ଯେଉଁ ବାୟୁମଣ୍ଡଳକୁ ଅସ୍ୱୀକାର କରି ପାହାଡ଼ ତଳ ସାତଭାୟା ମଠରେ ବସିଛି ବାବାଜୀ ତା ସାଙ୍ଗରେ ଏଇ ତଳିଆ ଜୀବମାନଙ୍କର ସମ୍ପର୍କ କଣ ? ଗେଣ୍ଡା-ଶାମୁକା, ପରୁ ମାଟିର ମଦରଙ୍ଗା ଶାଗ ଅଭାବରେ ଯେଉଁ ବୈରାଗ୍ୟର ଜନ୍ମ ହେବ ସେଠାରେ ତା ପାଇଁ ସ୍ୱତନ୍ତ୍ର ମଠ ବା ଅନୁଷ୍ଠାନ ସୃଷ୍ଟିର ଆବଶ୍ୟକତା କଣ ?

ଏପରି ନାନା କଥା ଭାବି ଗଲା ଅତନୁ । ଶେଷକୁ ନିଜର ନାଁ ଉପରେ ତାର ବିଦ୍ୱେଷ ଜାତ ହେଲା । ତା ବିରୁଦ୍ଧରେ ଚାଲିଲା ଆକ୍ରମଣ । ଏ କିଭଳି ନାଁ । ନାଁ ଟା ହୁଏତ ବାପା ଦେଇଛନ୍ତି । କିନ୍ତୁ ଅର୍ଥ କଣ ! ଯେଉଁ ତନୁ ପାଇଁ ଦୁଇଟି ବାଳିକାର ଅଭିଯାନ, ତାକୁ ପୁଣି ଅତନୁ ବୋଲି ବୁଝାଯିବ ! ନାମଟିର ଅର୍ଥ ପୁଣି କଣ, କଣ ବୁଝାଏ ପୁଣି ଛନ୍ଦା କହିଲେ । ···ଭାବି ଭାବି ସେ ଚାଲିଗଲା ପାଖ ବାଳିକାଟିର ପାଖକୁ । ହଠାତ୍ ତାକୁ ସେ ତାର ନାଁ ପଚାରିଲା । ବାଳିକାଟି ହସି ହସି କହିଲା, 'ବତାସୀ' ।

ଅତନୁ ମନେ ମନେ ସ୍ଥିର କରିନେଲା, ଝିଙ୍କ ବତାସ ଭିତରେ ହୁଏତ ବାଳକାଟି ଜନ୍ମ ହୋଇଛି । ସେଥିଲାଗି ତାର ମା ନାଁ ରଖିଛି ବତାସୀ । ବାସ୍ତବ ଦୁନିଆର ଲୋକ ଏମାନେ । ସେଥିଲାଗି ପ୍ରତ୍ୟେକ ବିଷୟରେ ସେମାନଙ୍କ ବାସ୍ତବତାର ସ୍ପର୍ଶ । ଆଉ ଗୋଟା କୃତ୍ରିମ ଦୁନିଆ ଅନେଇ ରହିଚ ଆକାଶକୁ । ସେଥି ପାଇଁ ପୁଣି ତାର ଗର୍ବ !

ମନଟା ତାର ସମ୍ପୂର୍ଣ୍ଣ ବିଦ୍ରୋହୀ ହୋଇ ଉଠିଲା । କିନ୍ତୁ ଏ ବିଦ୍ରୋହର ହେତୁ ସେ କିଛି ବୁଝି ପାରିଲାନି । କା' ବିରୁଦ୍ଧରେ ତାର ବିଦ୍ରୋହ ତା ମଧ ଭାବି ପାରିଲାନି ।

## ॥ ବାର ॥

ସେଦିନ ଅତନୁ ଘରେ ଆସି ପ୍ରାୟ ଦଶଟା ବେଳେ ପହଞ୍ଚିଲା । ତାର ଏପରି ଆକସ୍ମିକ ଓ ଦୀର୍ଘ ଅନୁପସ୍ଥିତିରେ ସମସ୍ତଙ୍କ ମନରେ ଉଦ୍‌ବେଗ ସୀମାଅତିକ୍ରମ କରି ଯାଇଥିଲା । ତାର ଏପରି ବେହେଡ଼ା ଆଚରଣରେ ସବୁଠାରୁ ସବିତା ବେଶି ମର୍ମାହତ ହୋଇଛି । ଛନ୍ଦା ଆଉ ନଳମାର ଅବସ୍ଥା ଆହୁରି କାହିଲ୍ । ଯେମିତି ତାଙ୍କର କୌଣସି ତ୍ରୁଟି ଯୋଗୁ ଅତୁଭାଇର ଅବସ୍ଥା ଏପରି ଘଟିଛି ବୋଲି ଭାବି ସେମାନେ ଆତଙ୍କଗ୍ରସ୍ତ ହୋଇ ରହିଛନ୍ତି । କିଏ ଛାତ ଉପରକୁ ଯାଇ ପଚିଶ ଥର ବୁଲି ଘରି ଆଡ଼କୁ ନିରୀକ୍ଷଣ କରି ଫେରିଲାଣି । କିଏ ଦୋମହଲା ଝରକା ଧାରରେ ଛିଡ଼ା ହୋଇ ରାସ୍ତାର ସବୁ ପଥୁକୀଙ୍କୁ ଗଣି ଗଣି ହାଲିଆ ହୋଇ ଗଲାଣି । ଦୀର୍ଘ ସମୟ ଧରି ସମସ୍ତଙ୍କ ଆଶା କେବଳ ଆଶଙ୍କାରେ ପରିଣତ ହେଉଚି ।

ଅତନୁ ଯେଉଁ କୋଠରିଟିରେ ବସା ଉଠା କରେ ସବିତାର ମା ସେଠିକି ପ୍ରାୟ କୋଡ଼ିଏ ଥର ଯାଇ ଆଖିରୁ ଲୁହ ଗଡ଼େଇ ଫେରିଛନ୍ତି । ଅତନୁର ବ୍ୟବହାର୍ଯ୍ୟ ଲୁଗା ଓ ଜାମାପଟାଗୁଡ଼ିକୁ ଗୋଟି ଗୋଟି କରି ବହୁଥର ଗଣିଛନ୍ତି । ସବୁ ଠିକ୍ ଅଛି । ଖଣ୍ଡେ ଧୋତି ଆଉ ଚଉଲିଆ ଛଡ଼ା ଅତନୁ ଦେହରେ ଆଉ କିଛି ନେଇ ନାହିଁ । ତାହାହେଲେ ସେ କୁଆଡ଼େ ଚାଲି ଯାଇନି । କୋଉଠି କା' ସାଙ୍ଗରେ ବସି ଗପରେ ମାତି ଯାଇଚି । ଦାଣ୍ଡ ପିଣ୍ଡାରେ ପାଣି ଢାଳ ଦାନ୍ତକାଠି ସେମିତି ଅକ୍ଷତ ଅବସ୍ଥାରେ ଥୁଆ ହୋଇଚି । ତାକୁ ମଧ ବହୁ ଥର ସେ ଦେଖିଲେଣି । ସବୁ ଭିତରେ ସେ କେବଳ ଅଶ୍ରୁର ଆବେଦନ ପାଇଛନ୍ତି । ଅତୁ ତ ଏପରି ପିଲା ନୁହେଁ, କଣ ହେଲା ଆଜି ତାର । କୋଉଠି ଏମିତି ଗପରେ ମାତି ଗଲା ଆଜି ? ପାଖଆଖ ଜାଗାଗୁଡ଼ାକ ମଧୁଆ ଚାକର ଯାଇ ବୁଲି ଆସିଲାଣି । କେଉଁଠାରେ ଅତନୁର ସନ୍ଧାନ ମିଳିନି ।

ଶେଷକୁ ପୁଣିଥରେ ଆସି ସେ ଅତନୁର କୋଠରୀରେ ପହଞ୍ଚିଲେ ! ଗୋଟିଏ ଷ୍ଟେଟ ଟେବୁଲ ଉପରେ ଆଖିଟା ତାଙ୍କର ନିବଦ୍ଧ ହୋଇ ରହିଗଲା । ଟେବୁଲ ଉପରେ ଥୁଆହୋଇଛି ସାତଭଉଣୀ ମଠ ବାବାଜୀଙ୍କ ସେହି ପିତଳ ଗଡୁଟି । ସେଇ ନିର୍ଜୀବ ବସ୍ତୁଟି ଉପରେ ତାଙ୍କର ଅହେତୁକ ଆକ୍ରୋଶ ଜନ୍ମିଲା ଯେମିତି । ତାହା ଯେପରି ଏଠି ଏକ ଛନ୍ଦପତନର ଘଟଣା । ତାହାପରେ ପଦାକୁ ବାହାରି ଆସିଲେ ସବିତା ବୋଉ । ଛନ୍ଦା ଆଉ ସବିତାର ମୁହଁକୁ ଚାହିଁ ଅନେଇ ଗଲେ । କେହି ସେ ପର୍ଯ୍ୟନ୍ତ ସକାଳର ଖାଇବା ମଧ୍ୟ ଖାଇନାହାନ୍ତି । ଛନ୍ଦାକୁ ଅନ୍ତରାଳକୁ ଡାକି ନେଇ ପଚାରିଲେ···

'ତୁ କଣ ପୁଅକୁ ଆଉ କିଛି କହିଚୁ କି ?'

ଛନ୍ଦା ଅବାକ୍ ହେଇ ବୋଉର ମୁହଁକୁ ଚାହିଁଲା । ତାର ମନେ ପଡୁଥାଏ ସେ କହନ୍ତି, ସେ ମତେ ସ୍ୱପ୍ନରେ ଦେଖା ଦେଖେଇଲାବେଳେ ମୁଁ ତାଙ୍କ ଗଳାରେ ନିବିଡ଼ ଆଲିଙ୍ଗନ ଦେଇଚ । ଆଉ କହିଲ କେତେବେଳେ କ'ଣ । ପାହାନ୍ତାରେ ଆତୁର ତାଙ୍କ ଦେହରେ ଚନ୍ଦନ ବୋଳିଦେଇ ଅଗୁରୁ ଡାଳ ଦେଇଛି । ତାହାହେଲେ ସେହି କଣ ମୋର ଦୋଷ ହେଲା ? ସତେ ତା ହେଲେ ଅଭୁଭାଇ କଣ ରାଗିକରି ଏଠୁ କୁଆଡ଼େ ଯାଇଛନ୍ତି ? କିନ୍ତୁ ବୋଉକୁ ଏସବୁ କିଛି ସେ କହି ପାରିଲା ନି । ଶେଷରେ ତାକୁ କାନ୍ଦ ଲାଗିଲା । ସେଠୁ ଚାଲିଗଲା ନିଜର କୋଠରୀକି । ଅଭୁଭାଇ ଉଦ୍ଦେଶ୍ୟରେ ଖଣ୍ଡେ ଚିଠି ଲେଖି ବସିଲା । କିନ୍ତୁ କଣ ଲେଖିବ କିଛି ଠିକ୍ କରି ନ ପାରି କଲମଟାକୁ କାମୁଡ଼ି କାମୁଡ଼ି ବସି ରହିଲା ।

କେତେବେଳକେ ସେଠି ଆସି ନଳିନୀ ପହଞ୍ଚିଲା । ତାକୁ ଦେଖି ଲୁହ ଛଳ ଛଳ ଆଖିରେ କହିଲା ଛନ୍ଦା···

'ଅଭୁଭାଇ କାଲେ ଏଠୁ ରାଗିକରି କୁଆଡ଼େ ଚାଲି ଯାଇଛନ୍ତି ?'

ନଳିନୀ ସାହସର ସହ କହିଲା···

'ଯିବେ କୁଆଡ଼େ ? ଚାଲିଯିବାଟା କଣ ଏଡ଼େ ସହଜ ! ଆସନ୍ତୁ, ତାଙ୍କୁ ଆଜି ପାନେ ଚଟେଇ ଦେଉଚି । ଆମକୁ କେତେ ହଇରାଣ କଲେଣି ସେ ଆଜି !'

ଏ ସାହସିକ କଥାର ହେତୁ ଛନ୍ଦା କିଛି ବୁଝିପାରିଲା ନି । ସେ ବଲ ବଲ କରି କେବଳ ନଳିନୀକି ଚାହିଁଲା । ସତେ କଣ ଆଉ ନଳିନୀ ବାନ୍ଧି ରଖିଛି ଅଭୁ ଭାଇଙ୍କି ।

ଦାଣ୍ଡ ଦୁଆର ମୁହଁରେ ଏହି ସମୟରେ ମଧୁଆ ଚାକରର ପାଟି ଶୁଣା ଗଲା, ସେ ବଡ଼ ପାଟିରେ ଡାକ ଛାଡ଼ି କହୁଛି···

'ମା, ମା, ଅଭୁବାବୁ ଆସିଲେଣି । କୁଆଡ଼େ ଖରାରେ ବୁଲି ବୁଲି କଳାକାଠ ହୋଇ ଫେରିଛନ୍ତି···'

ଏ କଥା ଶୁଣି ନଳିନୀ ଝଟ୍ କରି ବାହାରି ଆସିଲା ପଦାକୁ । ବାହାରି ଆସିଲେ ସବିତା ବୋଉ । କିନ୍ତୁ ସ୍ଥାନ ଛାଡ଼ି ଆସିଲେ ନାହିଁ ଛନ୍ଦା ଆଉ ସବିତା । ସେଦିନ ଭୋଜିବାସ ସାରି ସବିତା ବସି ରହିଚି ତଳ ଖଞ୍ଜାରେ । ତାକୁ ମଧ୍ୟ ଏ କଥା

ଶୁଣିଛି, କିନ୍ତୁ ସେ ଅତନୁ ପାଖକୁ ବର୍ତ୍ତମାନ ଆସିବାକୁ ମନର ସମର୍ଥନ ପାଇଲାନି । ବଡ଼ ଦୁଷ୍ଟ ହୋଇଚନ୍ତି ଅତନୁ । ତାଙ୍କୁ ଆଜି କିଛି ଶାସ୍ତି ଦେବାକୁ ହେବ ।

ଅତନୁ ଖଞ୍ଜା ଭିତରକୁ ପଶି ଆସିବା ପରେ ମଧ୍ୟ ସବିତାବୋଉ କିମ୍ବା ନଳିନୀ ତାକୁ କେହି କିଛି କହିଲେ ନି । ସେଥିରେ ସେ ନିଜକୁ ଆହୁରି ଅପରାଧୀ ମନେ କଲା । ଯେମିତି ସେ ଆଜି କାହାର ସମ୍ବୋଧନ କି ସମ୍ବର୍ଦ୍ଧନା ପାଇବାର ଅଯୋଗ୍ୟ । ସେ ମଧ୍ୟ କାହାକୁ କିଛି କହି ପାରିଲା ନି । ମୁହଁରେ ଅପରାଧର ହସ ଟାଣି ସିଧା ସିଧା ଚାଲିଗଲା ତଳ ଖଞ୍ଜାକୁ । ନୀରବରେ ନୂଆବୋଉ ପାଖରେ ଯାଇ ସୁବୋଧ ବାଳକଟି ଭଳି ଛିଡ଼ା ହେଲା । ଅତି ଆଦରର ଦିଅର ଏଇ ଅତନୁ । ଚିରଦିନ ନୂଆବୋଉର ଅନୁଗତ । ନୂଆବୋଉ ପାଖରେ ଶିକ୍ଷା କି ସଂସ୍କୃତିର ଅଭିମାନ କୌଣସି ଦିନ ତାର ନ ଥାଏ । ସବିତା ମଧ୍ୟ ତାକୁ ଅନ୍ତର ଦେଇ ସ୍ନେହ କରେ । ସେହି ଅତନୁ ଆଜି ଖରାରେ ବୁଲି ବୁଲି ଆସି ଅଖିଆ ଆଉ ଅଗାଧୁଆ ଅବସ୍ଥାରେ ତାର ପାଖରେ ଛିଡ଼ା ହେଇଚନ୍ତି । ହୁଏତ ଉପର ଖଞ୍ଜାରେ ତାଙ୍କୁ କେହି କିଛି କହି ନାହାନ୍ତି । ହଠାତ୍ ହସି ପକେଇ ସବିତା କହି ଉଠିଲା···

'କି'ଣ ଏତେବେଳଯାଏ ଭୋକ ହେଇନି । ଆମ ସମସ୍ତଙ୍କ କଥା ଭୁଲି ଗଲ, ନିଜର ପେଟକୁ ଭୁଲିଯାଇ କୁଆଡ଼େ ଏତେ ବେଳଯାକେ ରହିଥିଲ···'

କହି କହି ଅତନୁ ମୁହଁରୁ ଝାଳ ପୋଛିଦେଲା ସବିତା ।

ଗାଧୋଇ ସାରିଲା ପରେ ଅତନୁକୁ ଖାଇବାକୁ ଦେଲା—ନଳିନୀ । ସବିତାର ନିର୍ଦେଶରେ ଛନ୍ଦାର କୋଠରୀରେ ଖାଇବାର ଜାଗା ହେଇଥାଏ । ଖାଇଲାବେଳେ ସବିତା ପାଖରେ ପଙ୍ଖା ଧରି ବସି ଅତନୁକୁ ବିଞ୍ଚି ଦେବାକୁ ଲାଗିଲା । ଗୋଟିଏ ପଟକୁ ଖଟ ଉପରେ ଶୋଇଛି ଛନ୍ଦା । ସେ ନିଦରେ ଶୋଇ ପଡ଼ିଛି । କାନ୍ଥରେ ଗୋଟିଏ ବଡ଼ ଦର୍ପଣ । ସେହି ଆଡ଼କୁ ମୁହଁକରି ଶୋଇବା ଫଳରେ ଦର୍ପଣ ବାଡ଼ରେ ଛନ୍ଦାର ସୁଷମାଯାକ ବିମ୍ବିତ ହେଇ ଯାଇଛି । ବାହାରକୁ ରହିଚି କେବଳ ତାର ପିଠିପାଖ । ଲୁଗାରେ ତାଙ୍କି ରହିଥିଲେ ବି ସେଥିରୁ ପ୍ରଚ୍ଛନ୍ନ ସମ୍ପଦର ଆଭାସ ପରିପୂର୍ଣ୍ଣ ଭାବରେ ମିଳିଯାଏ । ସେହି ଦିଗକୁ ମୁହଁକରି ଖାଇବାରେ ଲାଗିଛି ଅତନୁ । ଦର୍ପଣ ବାଡ଼ର ପ୍ରତିବିମ୍ବରେ ବେଳେ ବେଳେ ତାର ଆଖି ଅଟକି ଯାଏ । କିନ୍ତୁ ପାଖରେ ବସିଛି ନୂଆବୋଉ । ସେ ସବୁ ଭୁଲି ନିବିଷ୍ଟ ଭାବରେ ଖାଇବାରେ ଲାଗିଯାଏ ଅତନୁ । ଏଣେ ନଳିନୀର ଉତ୍ପୀଡ଼ନ ମଧ୍ୟ ଚାଲିଛି । ଶିର କମ୍ପନର ସମସ୍ତ ନାସ୍ତିବାଚକ ନିର୍ଦେଶକୁ ବେଆଇନ ଘୋଷଣା କରି ସେ ଥରକୁ ଥର ବ୍ୟଞ୍ଜନ ପରଶି ଦେଇ ଯାଉଚି । ସବିତା ମୁରୁକି ମୁରୁକି ହସୁଥିଲେ ମଧ୍ୟ କିଛି କହୁ ନାହିଁ । ଦ୍ୱାର ମୁହଁରେ ଶାଶୂ ମଧ୍ୟ ସାନ ଜଇଁଙ୍କର ଆହାର ଠାଣି ଥରେ ଥରେ ଆସି ଦେଖି ଦେଇ ଯାଉଚନ୍ତି !

ଅତନୁର ଖାଇବା ଶେଷ ହେବା ଉପରେ । ଏତିକିବେଳେ ନଳିନୀର ସବା ସାନଭାଇ ନିମା 'କୁଣିଆ ସାଙ୍ଗରେ ଖାଇବି' 'କୁଣିଆ ସାଙ୍ଗରେ ଖାଇବି' ପାଟି କରି କରି ଆସି ପହଞ୍ଚିଲା । ଚାରିବର୍ଷର ପିଲା । ମୁଣ୍ଡର ବାଳଗୁଡ଼ାକ କୁଞ୍ଚ କୁଞ୍ଚିଆ, ନଳିନୀଠାରୁ

ଦେହର ରଙ୍ଗ ଟିକେ ଫର୍ଶା । ହାପ୍ ପ୍ୟାଣ୍ଟ ଖଣ୍ଡକ ନାହି ତଳକୁ ଖସି ପଡ଼ୁଛି । କହି କହି ଆସି ଅତନୁର ଥାଳପାଖରେ ବସି ପଡ଼ିଲା ।

ନଳମା ପାଟିକରି ଉଠିଲା······

'ଘରି ପେଟୁ ଟୋକା । ଏଇକ୍ଷଣି ଘଣ୍ଟାଏ ବସି ଖାଇବ । ତୋ ଲାଗି ଅଭୁଭାଇ ଏବେ ସକ୍କୁଡ଼ ପାଖରେ ଘଣ୍ଟାଏ କାଳ ବସି ରହିବେନା ! ଚାଲ, ଆମ ସାଙ୍ଗରେ ବସି ଖାଇବୁ ଚାଲ୍ । ସବତା ଅପା, ଛନ୍ଦା ଅପା, ବଡ଼ମା କେହି ଖାଇ ନାହାନ୍ତି । ଚାଲ୍ ଆମ ସାଙ୍ଗରେ ବସି ଖାଇବୁ ଚାଲ୍ ।'

କୌଣସି କଥା ନଶୁଣି ନିମା ଥାଳ ପାଖରେ ନିଠେଇ ହୋଇ ବସି ରହିଲା । ଅତନୁର କଥା ରଖି ନଳମା ଗୁଡ଼ଏ ଭାତ, ଡାଲି, ତରକାରୀ ଆଣି ଥାଳରେ ଜମା କରିଦେଲା । ନିମା ଆନନ୍ଦରେ ଖାଇବାକୁ ଲାଗିଲା । ଅତନୁ ଉଠିଯାଇ ହାତ ଧୋଇ ଆସି ପାଖରେ ବୁଲିବାକୁ ଲାଗିଲା । ସବତା ପ୍ରଭୃତି ନିଜ ନିଜର ଆହାର ପାଇଁ ଚାଲିଗଲେ । କିଛିକ୍ଷଣ ପରେ ନଳମା ଖଣ୍ଡେ ଥାଳରେ ଚାରି ଖଣ୍ଡି ସାଧା ପାନ ଆଣି ରଖି ଦେଇ ହସି ହସି କହିଲା···

'ଆଜି ଯାହାତ କଲି କଲି । କିନ୍ତୁ ଛନ୍ଦା ଅପା ସକାଳୁ ଏତେବେଳ ଯାଏ କିଛି ଖାଇ ନେଇଁ, ତାକୁ ଉଠେଇ ଦେବ ଏକା···'

କହି କହି ସେ ଦୁଲ୍ ଦୁଲ୍ ହୋଇ ଚାଲିଗଲା ।

ଦର୍ପଣ ବାଡ଼୍‌ରେ ସେ ପର୍ଯ୍ୟନ୍ତ ଛନ୍ଦାର ରୂପ ଫୁଟି ରହିଛି । ନିଘୋର ନିଦରେ ଆଖି ତାର ନିବୁଜ ହୋଇ ଲାଗିଯାଇଚ । କଏ ଯେମିତି ଅଠା ମାରି ଯୋଡ଼ି ଦେଇଛି ଆଖିପତା ଗୁରେଟିକି । କିନ୍ତୁ ନଳମାର କଥା ଶୁଣିବା ପରେ ଅତନୁ ଭିତରେ ସୌନ୍ଦର୍ଯ୍ୟ ଆସ୍ୱାଦନ ପାଇଁ ଆଉ ପ୍ରେରଣା ସୃଷ୍ଟି ହୋଇ ପାରିଲାନି । ଯାହାକୁ ହୁଏତ ଭୁଲିବା ପାଇଁ ଆଜିର ସାରା ସକାଳଟା ସେ ପାଗଳ ଭଳି ନଷ୍ଟ କରି ଦେଇଚ, ସେଇ ଛନ୍ଦା ତାରି ଲାଗି ଏ ପର୍ଯ୍ୟନ୍ତ ଅଖିଆ ଅପିଆ ଶୋଇଚ । ଆଜି ଦୂରକୁ ଚାଲି ଯାଇ ସେ ଏକ ବାସ୍ତବ ଦୁନିଆର ପରିଚୟ ପାଇଥିଲା ବୋଲି ଭାବିଥିଲା, କିନ୍ତୁ ଏ ହୃଦ୍ୟତାର ବାସ୍ତବ ଦୁନିଆ ସେ କେଉଁଠିକି ଗଲେ ପାଇବ ? ଭାବି ଭାବି ଛନ୍ଦାର ଖୁବ୍ ପାଖକୁ ଆସି ଠିଆ ହେଲା । ଦର୍ପଣ ବାଡ଼ରେ ଛନ୍ଦାର ଅପରୂପ ସୁଷମା ପୂର୍ବପରି ମୂର୍ଚ୍ଛିତ ହୋଇ ଲାଗି ରହିଛି । ନିଃଶ୍ୱାସ-ପ୍ରଶ୍ୱାସର ତାଳରେ ବକ୍ଷର ଉତ୍‌ଥାନ ପତନ ହେଉଚ । ଦର୍ପଣରେ ମଧ୍ୟ ତାହାର ପ୍ରଭାବ । ଧୀରେ ଧୀରେ ଫେରି ଆସିଲା ସେଠୁ ଅତନୁ । ଆସି ଚାହିଁ ରହିଲା ନିମାକୁ । ନିମା ଆକଣ୍ଠ ଭୋଜନରେ ଲାଗିଛି । ଥାଳରେ ଆହୁରି ଯଥେଷ୍ଟ ଖାଦ୍ୟ ରହିଛି ।

ଘରର ଦ୍ୱାର ବନ୍ଦ ଆଡ଼କୁ ଯାଇ ଅତନୁ ଥରେ ବାହାର ପ୍ରତି ଦୃଷ୍ଟି ଦେଲା । ହୁଏତ ତଳ ଖଞ୍ଜାରେ ସମସ୍ତେ ଯାଇ ଖାଇ ବସିଲେଣି । ସେଥିପାଇଁ ଉପର ଖଞ୍ଜାଟରେ ସ୍ୱର ଶବ୍ଦର ଅଭାବ । କିନ୍ତୁ ନଳମା କେଉଁଠି ? ଅତନୁର ମନ ଭିତରେ ସ୍ୱତଃ ଏହି ଗୋଟିକ ପ୍ରଶ୍ନ ଉଠିଲା ।

ସେ ଫେରି ଆସିଲା ପୁଣି ଘର ଭିତରକୁ । ବହୁତ ତ୍ରୁଟି କରିଛି ସେ ଆଜି କର୍ତ୍ତବ୍ୟରେ । ହୃଦୟରେ ବାର ବାର ତାହାର ଆଘାତ ସେ ଅନୁଭବ କରିବାକୁ ଲାଗିଲା । ସେଥିଲାଗି ଛନ୍ଦା ପାଖରୁ ତାକୁ ଥରେ କ୍ଷମା ମିଳିବା ଦରକାର । କିନ୍ତୁ କିଏ ଦେବ କ୍ଷମା···ଛନ୍ଦା ଶୋଇଯାଇଛି ନିଘୋର ନିଦରେ । ପୁଣି ସେ ଏପର୍ଯ୍ୟନ୍ତ ଖାଇନି, କେବଳ ତାରି ପାଇଁ । ତାକୁ ପୁଣି ଖାଇବା ପାଇଁ ଉଠେଇ ଦେବାକୁ ହେବ ।···

ଏକ ନିଃଶ୍ୱାସରେ ସେ ଯାଇ ବସି ପଡ଼ିଲା ଛନ୍ଦାର ଖଟ ଉପରେ । ନିମା ସେ ପର୍ଯ୍ୟନ୍ତ ଖାଉଛି ।

'ଛନ୍ଦା ! !'

କଣ୍ଠଟା ବିଲ୍‌କୁଲ୍ ଦରଜ ହେଇଗଲା ଅତନୁର ।

ଛନ୍ଦା ସାମାନ୍ୟ କରି ଲେଉଟାଇ ଶୋଇଲା । କିନ୍ତୁ ତାର ଡାକ ସେଠି ପହଞ୍ଚିଲା କି ନାହିଁ ଅତନୁ ଜାଣି ପାରିଲା ନାହିଁ । ଆହୁରି ପାଖକୁ ଲାଗିଯାଇ ଛନ୍ଦାର ଗୋଟିଏ ହାତ ଆଣି ନିଜ ହାତରେ ଧରିଲା । ସନ୍ଧ୍ୟାରେ ଏଇ ହାତର ନିବିଡ଼ ଆଲିଙ୍ଗନ ପାଇଥିଲା ସେ । କିନ୍ତୁ ତାକୁ ସେ ଦୂରକୁ ଫିଙ୍ଗି ଦେଇଛି । ସବୁ ଅପରାଧର ନିକାଶ କରିବା ପାଇଁ ସେ ନିବିଡ଼ ଭାବରେ ଲାଗିଯିବାକୁ ଲାଗିଲା ଛନ୍ଦା ଦେହରେ ।

ନିମା ଆକଣ୍ଠ ଭୋଜନରେ ଲାଗିଛି । ତାହାର ଖାଦ୍ୟ ଆହୁରି ବାକୀ ରହିଛି । କିନ୍ତୁ ଶେଷକୁ ନିମାର ଉପସ୍ଥିତି ବିଲ୍‌କୁଲ ଭୁଲି ଗଲା ଅତନୁ ।

'ଛନ୍ଦା, ତମେ ଏପର୍ଯ୍ୟନ୍ତ ଖାଇନା ! ଉଠ !'

ଅତନୁର ଦେହର ସ୍ପର୍ଶରେ ମୁହୂର୍ତ୍ତକ ଆଗରୁ ଛନ୍ଦାର ତନ୍ଦ୍ରା ଛୁଟି ଯାଇଛି । ସେ ଶୁଣିଛି ଦର୍ପଣବାଡ଼କୁ । ତାରି ଦେହ ଉପରେ ଲଦି ହେଇ ପଡ଼ିଛି ଆକାଂକ୍ଷିତ ଅତନୁ ଭାଇର ଦେହ । ଏଇ ଅତନୁ ଭାଇ ଆଜି ପଳେଇ ଯାଇଥିଲେ କୁଆଡ଼େ । ଦୁଇ ଧାର ଅଶ୍ରୁ ବହିଗଲା ତାର ଆଖିରୁ । ଅତନୁର ଡାକ ମଧ୍ୟ ସେ ଶୁଣିଛି । କିନ୍ତୁ ଉତ୍ତର ଦେବାର ସାହସ ନାହିଁ । ନୂତନ ଅଶ୍ରୁ ଗଡ଼ି ପଡ଼ିଲା ପୁଣି ।

'ଛନ୍ଦା···'

ହଠାତ୍ ଦର୍ପଣ ଉପରେ ଅତନୁର ଦୃଷ୍ଟି ନିବଦ୍ଧ ହେଇଗଲା । ଛନ୍ଦା ଆଖିରେ ଅଶ୍ରୁ ତାକୁ ଯେମିତି ଉନ୍ମୂଳ କରି ଦେଲା । ମୁହଁ ତାର ଲଦି ହେଇ ପଡ଼ିଲା ଛନ୍ଦାର କୋମଳ ଗଣ୍ଡ ଉପରେ । ସ୍ଥାନ କାଳ ଭୁଲିଗଲା ଅତନୁ ।

'ଭୁ ଖାଇ ସାରିନୁକରେ ନିମା ! ଛନ୍ଦା ଅପା ଉଠିଲାଣି···'

କହି କହି ଛନ୍ଦାକୁ ଡାକି ନେବା ପାଇଁ ଘର ଭିତରକୁ ପଶି ଆସିଲା ନଳିନୀ । ତାର ଏ ଅପ୍ରତ୍ୟାଶିତ ପ୍ରବେଶରେ କେହି ସତର୍କ ହେଇ ପାରିଲେନି । ସେ ନିଜେ ଧରି ପଡ଼ିଲା ଫେରି ଯିବାକୁ ।

## ॥ ତେର ॥

ସେ ଦିନ ଉପର ଓଳଟା ଯାକ ବନ୍ଦିଗଲା । କିନ୍ତୁ ଛନ୍ଦା ଘରେ ନଳିନୀର ଆଉ ଦେଖା ମିଳିଲାନି । ଅତନୁ ମଧ୍ୟ ସେ ଦିନ ଆଉ କୁଆଡ଼େ ଗଲାନି । ଦୋମହଲାର ତଳ ଘରେ ବସି ଖରାବେଳ ଯାକ ଏଣୁ ତେଣୁ ବହି ପଢ଼ିବାରେ କଟେଇ ଦେଲା । ବହିର ପ୍ରତ୍ୟେକ ପୃଷ୍ଠାରେ ଦୁଇଟି ଯୁବତୀର ମୁହଁ ଫୁଟି ଉଠୁଥାଏ ଯେମିତି । ଛନ୍ଦା ଆଉ ନଳିନୀ କିମ୍ବା ନଳିନୀ ଆଉ ଛନ୍ଦା, ତାହା ସେ ଠିକ କରି ପାରୁ ନଥାଏ । ଏକାବେଳକେ ଦୁଇଟି ମୁହଁର ଭିଡ଼ । କେଉଁଟି ଆଗ କେଉଁଟି ପଛ ତାହା ଠିକ କରିବା ଯେମିତି ତା ପକ୍ଷରେ ମୁସ୍କିଲ । ସେହି ଘରେ ଛନ୍ଦାର ଗୋଟିଏ ବଡ଼ ଫଟୋ ଟଙ୍ଗା ହୋଇଥାଏ । ବହି ବନ୍ଦକରି ତାହାକୁ ସେ ଚାହିଁ ରହିଲା ଅନେକ ବେଳଯାଏ । ଏଇ ଛନ୍ଦା ମୁହଁରେ ଆଜି ତା ଯୋଗୁ ଅଶ୍ରୁ ଫୁଟି ଉଠିଥିଲା । ହସ ଫୁଟିବା ପରେ ସେ ତା ପାଖରୁ ଅନ୍ତର ହୋଇ ଯାଇଛି । କିନ୍ତୁ ତା' ଭିତରେ ହୁଏତ ଆଉ ଜଣକ ଅନ୍ତର ଅଶ୍ରୁରେ ଭରି ଯାଇଛି । ଛନ୍ଦାର ଫଟୋ ଉପରେ ହଠାତ୍ ନଳିନୀର ରୂପ ଆଧିପତ୍ୟ ବିସ୍ତାର କଲା । କ୍ରମେ ସମଗ୍ର କକ୍ଷଟି ଯେମିତି ନଳିନୀମୟ ହୋଇଗଲା । କଣ କରିବ ଅତନୁ କିଛି ଭାବି ପାରିଲାନି । ଥରେ ପ୍ରତ୍ୟକ୍ଷରେ ନଳିନୀକି ଦେଖିବା ପାଇଁ ତାର ପ୍ରବଳ ଇଚ୍ଛା ହେଲା । ଥରେ ଏକାନ୍ତରେ ପାଇଲେ ସେ ତାକୁ କହନ୍ତା, ମୁଁ ତମକୁ ଅନାଦର କରେନା ନଳିନୀ । ତମ ମନର ପରିଚୟ ମୁଁ ପାଇଛି । କିନ୍ତୁ ଆକସ୍ମିକତାରେ ହେଉ କିମ୍ବା ଘଟଣାକ୍ରମେ ହେଉ ମୁଁ ଏବେ ବନ୍ଧାପଡ଼ି ଯାଇଛି ଛନ୍ଦା ପାଖରେ । ସେଥିପାଇଁ ତମେ ମଧ୍ୟ ଦାୟୀ । ଛନ୍ଦାର ତ୍ୟାଗର ସୂଚନା ତମେହିଁ ମତେ ଦେଲ । ତମେ କହିଦେଇ ଗଲ ମତେ ତାହାର ଉପବାସର କାହାଣୀ—ଛନ୍ଦାର ଏକନିଷ୍ଠତାର ଇତିହାସ । କିନ୍ତୁ ମୋ ପ୍ରତି ତମମାନଙ୍କର ଏ ଅନୁରାଗ କାହିଁକି ? ହୁଏତ ମୋର ଏଠି ଆଉ ଅଧିକ ଦିନ ରହିବା ଉଚିତ ନୁହେଁ । କିନ୍ତୁ ଯିବାର ଉପାୟ କାହିଁ ? ଯାଇଥିଲି ଆଜି ସକାଳେ ; ଖୁବ ଦୂରକୁ ଯାଇଥିଲି । ଏକ ବାସ୍ତବ ଦୁନିଆର ସ୍ପର୍ଶ ମଧ୍ୟ ପାଇଥିଲି । ସେଠି ତମେ ସମସ୍ତେ ମଳିନ ହୋଇ ଯାଇଥିଲ । ତମର ଏଇ ଐଶ୍ୱର୍ଯ୍ୟ ଅତି ନିଷ୍ପ୍ରଭ, ଅତି ତୁଚ୍ଛ ହୋଇ ଯାଇଥିଲା । କିନ୍ତୁ ପୁଣି ଫେରି ଆସିଛି । ସେଇ ଫେରି ଆସିବା ମୂଳରେ ଅଛି ତମ ଦୁଇଟି ହୃଦୟର ଆକର୍ଷଣ । ଏ ଏକ ବାସ୍ତବତା । ହୃଦୟର ଏ ବାସ୍ତବତା ପାଖରେ ଦୁଃଖ ଦୈନ୍ୟର ବାସ୍ତବତା ଶେଷରେ ନିଷ୍ପ୍ରଭ ହୋଇ ଯାଇଛି । ତା ପରେ ଆକସ୍ମିକଭାବରେ ଆରମ୍ଭ ହୋଇଯାଇଛି ହୃଦୟର ବନ୍ଧନ । କିନ୍ତୁ ଏ କଣ ସ୍ଥାୟୀ ? ଏ ବନ୍ଧନର ହେତୁ କଣ, ପରିଣତି ବା କଣ ? ମୋର ପରିକ୍ରମଣର ସୀମା ଖୁବ୍ ଦୂରରେ । ଏକ୍ କକ୍ଷଚ୍ୟୁତ ଗ୍ରହପରି ମୁଁ ଏଠି ଅସ୍ଥାୟୀ ଭାବରେ ନେଇଛି ଆଶ୍ରୟ । ସେହି ଆଶ୍ରୟସ୍ଥଳ ଆଜି ଦୁଇଟି ଯୁବତୀ ବାଳିକାର ସହୃଦୟତା ଭିତରେ ମନୋଜ୍ଞ ଓ ସୁରଭିତ ହୋଇ ଉଠିଛି । ଏଥିପାଇଁ ମୁଁ କୃତଜ୍ଞ•••କିନ୍ତୁ ଏହାର ପରିଣତି କଣ ?

ଭାବ ଭାବ ଶୋଇ ପଡ଼ିଲା ଅତନୁ । ଅନେକ ସମୟ ଯାଏ ଶୋଇପଡ଼ିଲା । ଛାଦା ଆସି ଥରେ ଦିଥର ଉଙ୍କି ମାରି ଯାଇଛି । ସବିତା ମଧ୍ୟ ଖୁହିଁ ଖୁହିଁ ଫେରିଛି । କିନ୍ତୁ ସେ ଉଠିନି ।

ଅତନୁ ପ୍ରାୟ ସୂର୍ଯ୍ୟାସ୍ତ ବେଳକୁ ଉଠିଲା । ଉଠି କରି ସିଧା ସଳଖେ ଖୁଲିଗଲା ଛାତ ଉପରକୁ । ଏକ ଦୃଷ୍ଟିରେ ଖୁହିଁ ରହିଲା ନଳିମା ଘର ଆଡ଼େ । କିନ୍ତୁ କେଉଁଠି ହେଲେ ନଳିମାକୁ ଥରେ ହେଲେ ଦେଖିବାକୁ ପାଇଲାନି । ଠିଆ ହେଇ ହେଇ ସେ ଖୁଲି ଆସିଲା ତଳକୁ । ସେଠି ତାହାରି ଚର୍ଚ୍ଚା ପାଇଁ ଲାଗିଛି ଆୟୋଜନ । ଯେମିତି ଏହା ଆଗରୁ ଚର୍ଚ୍ଚାରେ କେଉଁଠି କିଛି ତ୍ରୁଟି ହେଇ ଯାଇଥିଲା । ସେଥିପାଇଁ ଆୟୋଜନ ଏବେ ମାତ୍ରା ଟପିବାକୁ ଲାଗିଛି । ଅତନୁ ଜାଣିଲା ଛାଦା ଉପର ଖଞ୍ଜାରେ ନାହିଁ । ତଳ ଖଞ୍ଜାରେ ତା' ଅପା ପାଖରେ ବସି ବୋଧହୁଏ ଜଳଖିଆ ତିଆରରେ ଲାଗିଛି । ସାହାର ଗୋଟିଏ ବୋଲକରା ଝିଅ ଉପର ଖଞ୍ଜାରୁ ତଳ ଖଞ୍ଜାକୁ ସେମାନଙ୍କ ବରାଦ ମତେ କିଛି ସବୁ ନିଆ ଅଣା କରୁଛି । ଏଇ ସବୁ କାର୍ଯ୍ୟରେ ନଳିମାର ଭାଗ ବେଶି ଥାଏ । କିନ୍ତୁ ତାର ଦେଖା କୋଉଠି ହେଲେ ମିଳୁନି । ଦେହରେ ଖଣ୍ଡେ ଜାମା ଗଳେଇ ଅତନୁ ନଳିମା ଘର ଖଞ୍ଜାକୁ ଯିବାକୁ ଇଚ୍ଛା କଲା ! ନିଜ ଘରେ ନ ଥାଇ ନଳିମା ଆଉ ଯିବ କୁଆଡ଼େ ?

ତଳ ମହଲର ମଝି ଘର ଭିତରକୁ ଖଣ୍ଡେ ଜାମା ଆଣିବା ପାଇଁ ସେ ପଶିଗଲା । ଘର ଭିତରେ ପଶି ଅବାକ୍ ହେଇଗଲା ସେ ନଳିମାକୁ ଦେଖି । ନଳିମା ହାତରେ ଅତନୁର ଖଣ୍ଡେ ଜାମା । ସେଥିରୁ କିଛି ସେ ଦାନ୍ତରେ ଛିଣ୍ଡାଇବାର ଚେଷ୍ଟା କରୁଛି । କିନ୍ତୁ ଅତନୁକୁ ଦେଖି ସେ ଜଡ଼ ପରି ଠିଆ ହେଇ ରହିଲା ।

କ୍ଷଣକ ଭିତରେ ନିଜ ଭିତରେ ଯଥେଷ୍ଟ ଉତ୍ସାହ ସୃଷ୍ଟି କରି ଅତନୁ କହିଲା...

'ତମ ଘରକୁ ବୁଲିଯିବା ଲାଗି ଦେହରେ ଖଣ୍ଡେ ଜାମା ଲଗେଇବାକୁ ଭାବୁଥିଲି । ଦେଖୁଚି, ତମେ ସେଇକଥା ଆଗରୁ ଜାଣି ସାରିଚ । ଧନ୍ୟ ତମର ଅନ୍ତର ।'

ଏତିକି କହି ସେ ନଳିମାର ପାଖରେ ଯାଇ ଛିଡ଼ା ହେଲା । କିନ୍ତୁ ନଳିମା ମୁହଁରେ ପଦେ ହେଲେ କଥା ନାହିଁ । ଆଖିରେ କେବଳ ଶୂନ୍ୟତାର ଖୁହାଁଣି । ହାତରୁ ଜାମା ଖଣ୍ଡିକ ତାର ଖସି ପଡ଼ିଲା । ଜାମାଟାକୁ ତଳୁ ଗୋଟେଇ ଆଣି ଅତନୁ ଦେଖିବାକୁ ଲାଗିଲା । ଏ ଘଟଣା ପଛରେ କିଛି ଗୋଟା କାରଣ ରହିଚି ବୋଲି ସେତେବେଳକୁ ତାର ଧାରଣା ହେଲାଣି । ଜାମାଟାକୁ ଦେଖୁ ଦେଖୁ ବୋତାମ ଘରା ତଳେ ତାର ଆଖି ନିବଦ୍ଧ ହେଇ ରହିଗଲା । ସେଠି ଲେଖା ହେଇଚି 'ନଳିମା' । ସେଥିରୁ ଖିଏ ଦି'ଖିଏ ସୂତା ଉଲୁରି ପଡ଼ିଛି । ହୁଏତ ନଳିମା ଏହାକୁ ଛିଣ୍ଡେଇ ଦେବାକୁ ଚେଷ୍ଟା କରୁଥିଲା ।

ଘଟଣାର ହେତୁ ଜାଣିବାକୁ ଅତନୁ ପକ୍ଷରେ ଆଉ କିଛି ବାକି ରହିଲା ନି । ଯେଉଁ ସ୍ମୃତିଟି ନଳିମା ହିନେ ରଚନା କରିଥିଲା ତାରି ପାଇଁ, ଆଜି ସେ ତାକୁ ଲୋପ କରି ଦେବାକୁ ବସିଚି । ଯେପରି ଏଣିକି ସମ୍ପୂର୍ଣ୍ଣ ଅଜ୍ଞାତ, ଅପରିଚିତ ହେଇ ରହିବ ସେ ଅତନୁ ପାଖରେ ।

ଅତନୁଂ ହାତରୁ ମଧ୍ୟ ଜାମା ଖଣ୍ଡକ ଖସି ପଡ଼ିଲା ।

ଅତନୁ ଚାହିଁଲା ନଳିନୀକୁ । ନଳିନୀ ସେପର୍ଯ୍ୟନ୍ତ ତାଙ୍କୁ ଶୂନ୍ୟ ଚାହାଁଣିରେ ଚାହିଁଛି ।

'ନଳିନୀ !'

ନଳିନୀର ଦୁଇ ହାତକୁ ଧରି ଅତନୁ କହିବାକୁ ଲାଗିଲା···

'ଏ ଜାମାଟା ନିଶ୍ଚୟ ଦିନେ ଚିରିଯିବ । କିନ୍ତୁ ମୋର ଗୁପ୍ତ ତଳେ ଯେଉଁ ଗଭୀର ରେଖାରେ ତମର ନାଁ ଲେଖା ହୋଇଛି, ତା ଏ ଜନ୍ମ ପାଇଁ ଲିଭି ପାରିବନି । କିନ୍ତୁ ତମ ସମସ୍ତଙ୍କୁ ମୋର ଗୋଟିଏ କଥା କହିବାକୁ ଅଛି···ତମ ଦୁଇ ଭଉଣୀଙ୍କର ପରମ ବନ୍ଧୁତା ଆଜି କେବଳ ମୋର ପାଇଁ ଲୋପ ପାଇବାକୁ ବସିଛି । ମୁଁ ମଧ୍ୟ କାହାର ନୁହେଁ । ମୁଁ ଜଣେ ପଥିକ । ନୂଆବୋଉଙ୍କ ସ୍ନେହରେ ପଡ଼ି ମୁଁ ଏଠିକି ଆସିଥିଲି । ଏଠି ଦୁଇଟି ଅଧିକ ଦିନ ମୁଁ ଆଉ ରହିବନି । ମୋର ଅସ୍ଥାୟୀ ଉପସ୍ଥିତିକି ତମେ ମଧୁର କରିଛ ସେଥିପାଇଁ ମୁଁ କୃତଜ୍ଞ । କିନ୍ତୁ ସେଇ ଅସ୍ଥାୟିତା ଭିତରେ ସ୍ଥାୟୀ ଭାବର ବିସ୍ତାର କରିବାକୁ ଯାଇ ତମେ ଉଭୟେ ଭୁଲ କରିଛ ।'

ଏତିକି କହି ତାର ଧାରଣା ହେଲା ସେ ନିଜେ ବି ଯେମିତି ଭୁଲ୍ କରୁଛି । କିଏ କହିବ, ସେ ସତ୍ୟ କଥାରି ସେ ହୁଏତ ପରିଚୟ ପାଉନି । ଦମ୍ ଟିକେ ନେଇ ସେ ପୁଣି କହିଲା···

'ନଳିନୀ, ତମେ ବାସ୍ତବିକ ଗୋଟିଏ ପଦ୍ମ । ତମର ସୌରଭରେ ମୁଁ ମୁଗ୍ଧ ।'

କଥାତକ କହି ସାରିବା ପରେ ଅତନୁ ସେଠୁ ଦ୍ରୁତ ଗତିରେ ଚାଲିଗଲା । ପଛକୁ ମଧ୍ୟ ଥରେ ଚାହିଁଲାନି ।

ନଳିନୀ ସେହିପରି ଚାହିଁ ରହିଥାଏ । ତାର ପ୍ରଗଲ୍‌ଭତା କୁଆଡ଼େ ଯେମିତି ଲୋପ ପାଇ ଯାଇଛି । ଅତନୁର ଏତେ କଥା ପରେ ବି ସେ ପଦେ ହେଲେ କଥା କହି ପାରିନି ।

ସେ ଚାହିଁରହିଲା ଅତନୁକୁ । ଅତନୁର ଶେଷ କଥାଗୁଡ଼ିକ ତା କାନ ପାଖରେ ଥରି ଥରି କରି ଯେପରି ଘୋଷଣା ପ୍ରଚାର କରୁଥାଏ । ଅତନୁର ନିଷ୍କ୍ରାନ୍ତି ତା ଆଖିରେ ଯେମିତି ଆଗମନୀର ବୀଜ ବୁଣି ଦେଇ ଯାଉଥାଏ ।

କିଛି ସମୟ ପରେ ପାଦରେ ତାର ଗତି ଫୁଟି ଉଠିଲା । ସେପର୍ଯ୍ୟନ୍ତ ସେ ଘରକୁ ଆଉ କେହି ଆସି ନାହାନ୍ତି । ଅତନୁର ସେଇ ଜାମା ଖଣ୍ଡକ ତଳେ ସେମିତି ପଡ଼ିଥାଏ । ତାକୁ ଉଠେଇ ନେଇ ନିଜର ଶାଢ଼ୀ ତଳେ ଲୁଚେଇ ଦେଲା ନଳିନୀ । ଚିରିଯିବ ଏଇ ଜାମା ! ନା ! ଚିରିବନି !

ଛନ୍ଦା ଅପା, ତୁ ଲେଖି ଦେଇଥିଲୁ ମୋ ନାଁଟା ଏଥିରେ । ସେଥିଯୋଗୁ ଅତୁଭାଇଙ୍କ ମନରେ କେଡ଼େ ଉଚ୍ଚସ୍ଥାନ ମୁଁ ପାଇଛି ।

ଛନ୍ଦା ପ୍ରତି କୃତଜ୍ଞତା ଭରିଗଲା ନଳିନୀର ମନରେ । ଝାପ୍‌ସା ଅନ୍ଧାର ଭିତରେ ସେ ଧୀରେ ଧୀରେ ଚାଲିଗଲା ଦୂରକୁ ଦୂରକୁ ।

## ॥ ଚଉଦ ॥

ଦୁଇଦିନ ପରେ । ସେ ଦିନ ନଳିମା ଘରେ କିଏ ଜଣେ କୁଣିଆ ଆସି ପହଞ୍ଚି ଥାନ୍ତି । ନଳିମାର ବା’ଘର ପ୍ରସ୍ତାବ ଧରି ସେ ଆସିଛନ୍ତି ବୋଲି ଶୁଣାଗଲା । ପିଲାଟି କଲେଜ ପଢ଼ା ଶେଷକରି ବର୍ତ୍ତମାନ ଚାକିରି ଯୋଗାଡ଼ରେ ଅଛି । ଭଲ ଘର । ପିଲାଟି ଦେଖିବାକୁ ଭାରି ସୁନ୍ଦର । ତାର ଫଟୋ ଖଣ୍ଡିଏ ମଧ୍ୟ ଭଦ୍ରଲୋକ ଆଣିଛନ୍ତି ।

ଛନ୍ଦା ଘର ପରି ନ ହେଲେ ମଧ୍ୟ ନଳିମାର ବାପା ତାଲବର ଶ୍ରେଣୀରେ ଗଣ୍ୟ । ବିଶେଷତଃ ବଡ଼ଭାଇ ଶ୍ରୀକାନ୍ତ ରାୟଙ୍କ ସମ୍ପତ୍ତିର ସମସ୍ତ ତତ୍ତ୍ୱାବଧାନ ଗ୍ରହଣ କରି ଏବେ ଗାଁରେ ଶ୍ରୀମନ୍ତ ରାୟହିଁ ଧନାଢ଼୍ୟ ବ୍ୟକ୍ତି ରୂପେ ଗଣ୍ୟ ହେଉଛନ୍ତି । ବର୍ତ୍ତମାନ ତାଙ୍କରି ନାଁ ଡାକ । ସୁତରାଂ ତାଙ୍କଘରେ ବନ୍ଧୁ ବାନ୍ଧବା ଏକ ସୌଭାଗ୍ୟର କଥା । ସେଥିପାଇଁ ଭଦ୍ରଲୋକ ଆଗଭୁରି କରି ବରପାତ୍ରର ଫଟୋଖଣ୍ଡିଏ ଧରି ଆସିଛନ୍ତି । ଭଦ୍ରଲୋକ ନାନା କଥା ପରେ ଶେଷକୁ ଫଟୋ ଖଣ୍ଡିକ ବାହାର କରି ନଳିମା ବୋଉକୁ ଦେଉଛନ୍ତି । ନଳିମା ବୋଉର ସେ କାଳେ ଭାଇ ହିସାବ ହେବେ । ତେଣୁ ନଳିମାର ମାମୁ । ଫଟୋ ଖଣ୍ଡିକ ପାଇ ନଳିମାବୋଉ ଝଟକରି ଚାଲିଗଲେ—ବଡ଼ ଯା’ ସବିତା ବୋଉଙ୍କ ପାଖକୁ । ସବିତା ବୋଉଙ୍କ ହାତରୁ ସବିତା ପାଖରେ ଏବଂ ଶେଷକୁ ସବିତା ହାତରୁ ଯାଇ ଫଟୋଖଣ୍ଡିକ ପହଞ୍ଚିଲା ଛନ୍ଦା ପାଖରେ । ସମସ୍ତେ ଥର ଥର କରି ଦେଖିବାକୁ ଲାଗିଲେ । ପିଲାଟି ମନ୍ଦ ନୁହେଁ । ସେମାନଙ୍କ ଭିତରେ ପ୍ରାୟ ଏହିଭଳି ମତପ୍ରକାଶ ପାଇବାକୁ ଲାଗିଲା ।

ଫଟୋଖଣ୍ଡକୁ ଧରି ଛନ୍ଦା ଅନେକ ବେଳଯାଏ ଦେଖିଲା । ଦେଖି ଦେଖି ନିଜ କୋଠାରୀକି ଚାଲିଗଲା । ଫଟୋକୁ ଗୋଟିଏ ଟେବୁଲ ଉପରେ ଥୋଇ ନିରୀକ୍ଷଣ କରି ରହିଲା । ତା ପରେ ଫଟୋଖଣ୍ଡକୁ ଧରି ଚାଲିଗଲା ନଳିମାଘର ଖଞ୍ଜାକୁ । କୁଣିଆଙ୍କ ଚର୍ଚ୍ଚା ପାଇଁ ନଳିମା ବସି କଣ ସବୁ କରୁଥାଏ । ଛନ୍ଦା ତାରି ପାଖରେ ଯାଇ ବସି ପଡ଼ିଲା । ଗତ ଦୁଇଦିନ ଭିତରେ ଦୁଇ ଜଣଙ୍କ କଥା ଭାଷା ତ ଦୂରର କଥା ଯେପରି ଦେଖାସାକ୍ଷାତ ହୋଇନାହିଁ କହିଲେ ଚଳେ । ଛନ୍ଦାକୁ ଚାହିଁ ଆଗେ ହସିଦେଲା ନଳିମା । ଛନ୍ଦା ପ୍ରତି ଆଗ ଘଟଣାରୁ ମନରେ ତାର କୃତଜ୍ଞତା ଭରି ରହିଥିଲା । ତାହା ଯେମିତି ଏଇ ହସରେ ପ୍ରଥମ ପ୍ରକାଶ ପାଇଲା । କିନ୍ତୁ ଛନ୍ଦା ମନେ କଲା ଓଲଟା । ପୂର୍ବକଥା ସେ କିଛି ଜାଣିନି । ସେ ମନେକଲା ବା’ଘର ପ୍ରସ୍ତାବରେ ନଳିମାର ଏଇ ହସ । ଫିକ୍ କରି ହସି ଦେଇ ସେ କହିଲା······

‘ଏ ଫଟ ଖଣ୍ଡକୁ ତୁ ଦେଖିଲୁଣି ନା···ତୁ ଆଉରି କେତେ ହସିବୁ !’

ଫଟ, ବିସ୍ମିତ ହୋଇ ଛନ୍ଦା ମୁହଁକୁ ଚାହିଁଲା ନଳିମା । ପ୍ରକୃତରେ କୌଣସି ଫଟ କଥା ସେ ଜାଣିନି । ତା ବୋଉ କଣ ଆଉ ତାକୁ ଭାବୀ ଜଇଁର ଫଟ ଦେଖେଇ ଥାନ୍ତା ।

ଏହି ସମୟରେ ନଳମାର ବସ୍ତ୍ରସ୍ତୁପକୁ ଖଣ୍ଡନ କରି ଛନ୍ଦା ତା ଆଖିଆଗରେ ସେଇ ଫଟଖଣ୍ଡକୁ କାଢ଼ି ଧରିଲା । ହଁ ଗୋଟିଏ ତରୁଣ ଯୁବକର ଫଟୋ । ଥରେ ଚାହିଁଦେଇ ନଳମା ହାତ ଲଗେଇଥିବା କାମରେ ମନ ଦେଲା ।

ତାର ଚିବୁକକୁ ନିଜ ହାତରେ ଟେକି ଧରି କହିଲା ଛନ୍ଦା···

'ଆଲୋ, ତୋ ବରର ଫଟ । ଏମିତି ନ ଚାହିଁଲେ କିଏ କଣ ଛାଡ଼ିଦେବ ।' କହି ଠୋ ଠୋ ହେଇ ସେ ହସି ଉଠିଲା ।

ପୁଣି ଥରେ ମୁହଁ ଟେକି ନଳମା ଅନେଇଲା ଛନ୍ଦାକୁ । ଅତ୍ରୁଭାଇ ତା ହେଲେ ଗୋଟିପଣେ ହୋଇଗଲେଣି ଛନ୍ଦା ଅପାର । ସେଥିଯୋଗୁ ତାର ଏକଥା । ମନରେ ଭିତରେ ତାର ଗୋଟା ବିଦ୍ରୋହ ଖେଳିଗଲା ଯେମିତି । ଚିରଦିନର କ୍ଷୀର-ନୀର ସମ୍ପର୍କ ସେଠି ଭୁଚ୍ଛ ହେଇ ପଡ଼ିଲା ଯେମିତି କ୍ଷଣକ ଭିତରେ । ତାର ମନ ହେଲା, ଛନ୍ଦା ହାତରୁ ଫଟୋ ଖଣ୍ଡିକ ଆଣି ସେ ଚିକି ଚିକି କରି ଚିରି ଦିଅନ୍ତା । କିନ୍ତୁ କିଛି ନକରି ଗୁମମାରି ବସି ରହିଲା । କେତେବେଳକେ ପୁଣି ଚାହିଁଲା ଛନ୍ଦା ମୁହଁକୁ । ସେତେବେଳକୁ ଆଖିରେ ତାର ଅଶ୍ରୁ ଜମି ଯାଇଚି । ଦୁଇଦିନ ଭିତରେ ଦୁହିଙ୍କ ଅନ୍ତରରମିଳନ ଖୁବ୍ ଦୂରେଇ ଯାଇଛି । ସେଥିରେ ଆଜ ନଳମା ଆଖିରେ ଅଶ୍ରୁ । ଛନ୍ଦା ଅତି ବ୍ୟଥିତ ହୋଇ ପଡ଼ିଲା । ନଳମା ହାତକୁ ଧରି ପକେଇ କହିଲା···

'ନଳମା !'

କିନ୍ତୁ ଆଉ କିଛି କହି ପାରିଲାନି । ଫଟୋ ଖଣ୍ଡିକ ଧରି ତାକୁ ଯେଉଁ ଖୁସି ଖବର ଦେବାକୁ ସେ ଆସିଥିଲା ତା' ମଧ୍ୟ ହେଇ ପାରିଲାନି । ଶେଷକୁ ବହୁ କଷ୍ଟରେ ସେ କହିଲା···

'ଆମ ଦାହିଙ୍କ ହାତରେ ଅତ୍ରୁଭାଇଙ୍କର ଫଟ । ସେଥି ଯୋଗୁ ଆମର ଏ ଦଶା ।'

ନଳମାର ଅନ୍ତର ଭିତରେ ଏ କଥାରେ ସୌରଭର ଆମୋଦ ଭରିଗଲା । ଛନ୍ଦା ହାତରୁ ହଠାତ୍ ଫଟୋ ଖଣ୍ଡିକ ଟାଣି ନେଇ ସେ କହି ଉଠିଲା···

'ସୁନ୍ଦର ଫଟଟିଏ···ଆଙ୍କର ନାଁ କଣ ?'

ନଳମାର ଏ ପରିବର୍ତ୍ତନକୁ ଛନ୍ଦା ଲକ୍ଷ୍ୟ କଲା । କିନ୍ତୁ କିଛି କହି ପାରିଲାନି । ତାର ମନେ ହେଲା, ସେ ଯେମିତି ଗୋଟିଏ ତୀର୍ଥକ୍ଷେତ୍ରରେ ଆସି ବସିଛି । ସେଠି ଏକ ଦେବତାର ଆରାଧନା ଛଡ଼ା ଅନ୍ୟ ଗତି ନାହିଁ । ଆଉ ସେହି ଦେବତାର ଶ୍ରେଷ୍ଠ ପୂଜାରଣୀ ନଳମା । ସେ ନୀରବରେ ବସି ନଳମାର କାର୍ଯ୍ୟରେ ସହଯୋଗ କଲା, ନଳମା ତିଆରି କରୁଥିବା ଖାଦ୍ୟ ସାମଗ୍ରୀ ଗଢ଼ି ବସିଲା ।

ଛନ୍ଦା ଘରକାମରେ ସହଯୋଗ କରିବା, ବିଶେଷତଃ ନଳମା ଘରେ; ଏକ ଅପୂର୍ବ ଘଟଣା । ନଳମାଙ୍କ ଏସବୁ କୋଟିନିଧି ପରି ଲାଗିଲା । ସେ ମନେ ମନେ ଭାବିଲା, ଏକା ଅତ୍ରୁଭାଇଙ୍କ ପେଇଁ । ଆଜ ଛନ୍ଦା ଅପାର ତ୍ୟାଗ କେବଳ ଅତ୍ରୁଭାଇଙ୍କ ପେଇଁ । ଯେମିତି ଛନ୍ଦା ଅପା ତାର ଏଇ କାର୍ଯ୍ୟ ଭିତରେ କହୁଚି, ମୁଁ ତୋର ସବୁ ବଶ୍ୟତା ସ୍ୱୀକାର କରିବି ନଳମା । ଖାଲି ତୁ ମୋ ବାଟରୁ ଅପସରି ଯାଆ ।

କେତେବେଳେ ନଳିନୀ ସେଠୁ ଉଠିଗଲା ତେଣିକି ଛନ୍ଦାର ଲକ୍ଷ୍ୟ ନାହିଁ । ଉଠିଗଲା ବେଳେ ତଳେ ଥୁଆ ହୋଇଥିବା ସେଇ ଫଟୋ ଖଣ୍ଡିକ ନଳିନୀ ନେଇ ଯାଇଛି ।

ପ୍ରାୟ ପାଞ୍ଚ ମିନିଟ ପରେ ନଳିନୀର ବୋଉ ଆସି ସେଠି ପହଞ୍ଚିଲେ । ଛନ୍ଦାକୁ କାମ କରୁଥିବା ଦେଖି ସେ ଆଶ୍ଚର୍ଯ୍ୟ ହୋଇ ପାଟି କରି ଉଠିଲେ···

'ଆଲୋ ମୋ ଝିଅ କୋଉ କାଳେ କାମ କରୁଥିଲା ! ଆଲୋ ନଳିନୀ··· ତୋର ତ ଭାରି ସାହସ ହେଲାଣି···ଆଲୋ କଣ କରୁଚୁ ତୁ କୋଉଠି···?'

ବୋଉର ଏ ଚିତ୍କାର କିନ୍ତୁ ନଳିନୀ କାନରେ ପହଞ୍ଚିଲାନି । ଖଟ ଉପରେ ପଡ଼ି ସେ ନିବିଷ୍ଟ ମନରେ ତାର ଭାବୀ ସ୍ୱାମୀର ଫଟୋ ଖଣ୍ଡକୁ ଦେଖିବାରେ ଲାଗିଥିଲା । ସେ ସେଇପରି ଦେଖିବାରେ ଲାଗିଲା ।

ବୋଉ ତାର ତମ ତମ ହୋଇ ଯାଇ ଘରେ ପହଞ୍ଚିଲେ । ନଳିନୀ ଫଟୋ ଖଣ୍ଡକୁ ଚାହିଁ ରହି ଦୁଇ ଆଖିରୁ ଦ'ଧାର ଲୁହ ଗଡ଼େଇ ଦେଇଛି । ସେ ଭାବିଲେ, ଭାବୀ ବିବାହ ଓ ପିତୃଗୃହ ତ୍ୟାଗର ଦୁଃଖ ସ୍ମରଣ କରି ଝିଅର ଏ ଅବସ୍ଥା ଘଟିଛି । ସେ ନୀରବରେ ଫେରି ଆସି ଛନ୍ଦାକୁ କହିଲେ···

'ଯା ମା, ମୁଁ ସବୁ କରି ଦେଉଛି । ଯା, ତମେ ନଳିନୀ ପାଖରେ ବସି ଗପ କରିବ ।'

ଖୁଡ଼ୀର କଥା ରକ୍ଷା କରି ଛନ୍ଦା ଥତ ମତ ହୋଇ ଉଠି ଠିଆହେଲା । ନଳିନୀ ପାଖକୁ ଯିବ କିମ୍ବା ତାଙ୍କ ନିଜ ଖଞ୍ଜାକୁ ଫେରିଯିବ ସେ ହଠାତ୍ କିଛି ଭାବି ପାରିଲାନି । ଏହି ସମୟରେ ସେ ଦେଖିଲା, ଖଞ୍ଜା ଭିତରକୁ ଅତନୁଭାଇ ପଶି ଆସୁଚନ୍ତି । ସେ ଆଉ କିଛି ନ ବିଚାରି ନଳିନୀ ରହିଥିବା ଘର ଭିତରକୁ ପଶିଗଲା ।

ଅତନୁକୁ ଦେଖି ନଳିନୀ ବୋଉ ଖଣ୍ଡେ ଆସନ ନେଇ ବିଛେଇ ଦେଲେ । ଅତନୁ ପିଣ୍ଡା ଉପରେ ବସିପଡ଼ି କହିଲା···

'ନଳିନୀର କୁଆଡ଼େ ବା' ଘର ପ୍ରସ୍ତାବ ଆସିଛି ଖୁଡ଼ୀ ?'

ନଳିନୀ ବୋଉ କଥାର ସଳଖ ଉତ୍ତର ନ ଦେଇ କହିଲେ···

'ଆସିଲେ କଣ ହେବ ପୁଅ ! ବଡ଼ ଝିଅର ବା'ଘର ହେଇନି, ତା ଆଗରୁ ନଳିନୀର କେମିତି ହେବ ।'

ଏ କଥାର ଅର୍ଥ ଅତନୁ ବୁଝି ପାରିଲାନି । ନଳିନୀ ବୋଉ ପୁଣି କହିବାର ସେ ଶୁଣିଲା···

'ଅତୁଳ ସମ୍ପଦ । ଗୋଟିଏ ମନଲାଖି ପିଲା ଦରକାର । ଆଉ କିଏ ଅଛି, ସେଇ ଆମର ଝିଅ ଆଉ ପୁଅ । ଆଉ ନଳିନୀ କଥା କହୁଚ ପୁଅ···ତା କଥା ଏଇଖିଣି ହିସାବରେ ଆସିଲାଣି···'

ଅତନୁ ବୁଝିଲା ନଳିନୀ ବୋଉ ଖୁଡ଼ୀ ଛନ୍ଦା କଥା କହୁଚନ୍ତି । କିନ୍ତୁ ଛନ୍ଦା ଯେ ପୁଅ ଆଉ ଝିଅ ଏହାର ଅର୍ଥ ତା' ପାଖରେ ଦୁର୍ବୋଧ ହେଲା । ସେ ପଚାରି ବସିଲା···

'କଣ ଛନ୍ଦା ପାଇଁ ମନଲାଖି ପାନଟିଏ ମିଳୁନି ?'

ନଳିନୀ ବୋଉ ହସି ହସି କହିଲେ...

'ମିଳିବେ ନାହିଁ କାହିଁକି ? କିନ୍ତୁ ଆସି ମଦନପୁରେ ରହିବା କଥା ।......'

ଏତେବେଳକେ ଅତନୁ ସବୁ କଥା ବୁଝି ପାରିଲା । ନଳିନୀ ବୋଉ ମଧ୍ୟ ଆଉ କିଛି କହିବା ଉଚିତ ମନେ କଲେନି । ଅତନୁକୁ ପାନ ଆଣି ଦେବା ପାଇଁ ସେ ନଳିନୀକୁ ଡାକି ଗୁଡ଼ିଲେ । କିନ୍ତୁ ପର ମୁହୂର୍ତ୍ତରେ ସେ ଝିଅର କଥା ସ୍ମରଣ କରି ନିଜେ ଯାଇ ପାନ ଭାଙ୍ଗି ଆଣି ଦେଲେ ।

ନଳିନୀ ଓ ଛନ୍ଦା ଘର ଭିତରେ ରହି ସବୁ କଥା ଶୁଣୁଛନ୍ତି । ସେଥିରୁ ସବୁଗୁଡ଼ିକ ତାଙ୍କ ପାଖରେ ନୈରାଶ୍ୟର ବାର୍ତ୍ତା ଶୁଣାଇଛି । କିଛି ସମୟ ପାଇଁ ପରସ୍ପର ଭିତରେ ସବୁ କଥା ଭାଷା ଆପେ ବନ୍ଦ ହୋଇଗଲା । ଯେମିତି ଗୋଟା କୁହୁଡ଼ି ସ୍ରୋତ ଭିତରେ ସେମାନେ ଭାସି ଯାଇଚନ୍ତି ଅନେକ ଦୂରଯାଏ ।

ବର୍ତ୍ତମାନ ଅତନୁ ମଧ୍ୟ କେତେକ ଭାବରେ ନିଜର ଅବସ୍ଥା ବୁଝିପାରିଲା । କେବଳ ତରୁଣୀ-କାୟାର ମାୟାରେ ସେ ଯେମିତି ଏହା ଭିତରେ ପଥଭ୍ରଷ୍ଟ ହୋଇ ପଡ଼ିଚି । ପାହାଡ଼ ତଳର ବାବାଜୀ, ସେହି ଜଳାଭୂମି କୂଳର ଦରିଦ୍ର ଝିଅଗୁଡ଼ିକ ତାର ମନେ ପଡ଼ିବାକୁ ଲାଗିଲେ । ଯେଉଁ ହୃଦ୍ୟତାର ବାସ୍ତବତାକୁ ସେ ସବୁଠାରୁ ଉଚ୍ଚ ସ୍ଥାନ ଦେବାକୁ ବସିଥିଲା, ସାମାଜିକ ବିଧି ବ୍ୟବସ୍ଥାର ନିଗଡ଼ ଭିତରେ ତାହା କ୍ରମେ ମ୍ଳାନ ହୋଇଯିବାକୁ ଲାଗିଲା । ଗୋଟାଏ ବିରାଟ ହତାଶା ଭିତରେ ସେ ଉଠି ଛିଡ଼ା ହୋଇ ପଡ଼ିଲା । ଧୀରେ ଧୀରେ ଛନ୍ଦା ଘର ଖଞ୍ଜାକୁ ଯାଇ ନିଜର କୋଠରୀ ଭିତରକୁ ଗଲା । ଟେବୁଲ ଉପରେ ବାବାଜୀର ସେଇ ଗଣ୍ଠିଟି ସେମିତି ଥୁଆ ହୋଇଚି । ତାକୁ ହାତରେ ଧରି ଆସି ସବିତା ପାଖରେ ପହଞ୍ଚି କହିଲା...

'ବାବାଜୀଙ୍କର ଏଇ ଗଣ୍ଠିଟା ଆଜିଯାଏ ପଠାଯାଇ ପାରିଲାନି ନୂଆବୋଉ ! ସେ କଣ ଭାବୁଥିବେ ।'

ଦୂରରେ ସବିତା ବୋଉ ବସିଥିଲେ । ଅତନୁର କଥାଶୁଣି ସେ କହିଲେ...

'କାଲି ମଧୁଆ ହାତରେ ପଠେଇ ଦେବା । ବ'ସ୍ତରଗୋଣୀ ଅରୁଆ ଚାଉଳ ଆଉ କିଛି ପରିବାପତ୍ର ଦେଇ କାଲି ପଠେଇ ଦେବା । ଆଉ, ସେ ଜିନିଷଟା ଏଠି ରହିବା ମଧ୍ୟ ଖରାପ...'

ଏ କଥାରେ ଅତନୁ ଆଶ୍ୱସ୍ତି ବୋଧ କଲା । ଯେମିତି ଏଠୁ ବିଦାୟ ନେଇଯିବା ପୂର୍ବରୁ ଏଇ ବଡ଼ କର୍ତ୍ତବ୍ୟଟା ତାର ବାକି ରହି ଯାଉଥିଲା । ତା ଏବେ ସମ୍ପନ୍ନ ହେବାର ନିର୍ଦ୍ଦିଷ୍ଟ ରୂପରେଖ ପାଇଲା । ଆଶ୍ୱସ୍ତି...ଆଉ କଣ...ଆଉ ତାର ଏଠି କି ବନ୍ଧନ ଅଛି...

ଭାବି ଭାବି ଦୂରକୁ ଦୂରକୁ ଅତନୁ ଘୁଞ୍ଚିଗଲା । ପୁଣି ଭାବିଲା, ସେଇ ପାହାଡ଼ ତଳର ବାବାଜୀ ଖୁବ୍ ଶାନ୍ତିରେ ଅଛି । ଗେଣ୍ଡାଶାମୁକା ଖାଇ ସେଇ ଦରିଦ୍ର ଝିଅଗୁଡ଼ାକ ମଧ୍ୟ ଶାନ୍ତିରେ ଅଛନ୍ତି । ପ୍ରେମବିହୀନ ଜୀବନରେହିଁ ଶାନ୍ତି । କିନ୍ତୁ କିଏ ପ୍ରେମରେ ପଡ଼ିଛି ? ନିଜର ହୃଦୟକୁ ଅସ୍ୱୀକାର କରିବାକୁ ଅତନୁ ଚେଷ୍ଟାକଲା ।

ଯେଉଁ ବାଟରେ ଅତନୁ ପଦାକୁ ବାହାରଯିବାକୁ ବସିଥିଲା, ସେହିବାଟ ଦେଇ ନଳମା ଘର ଖଞ୍ଜାରୁ ଘରକୁ ଫେରି ଆସୁଥିଲା ଛନ୍ଦା । ଉଭୟେ-ଉଭୟଙ୍କୁ ଦେଖି ଚମକି ଉଠିଲେ । କିନ୍ତୁ ଉଭୟେ ନୀରବ ।

ପଛଆଡ଼ୁ ସବିତା ଡାକ ଦେଲା···

'ଅଭୁ, ଅଭୁ ! ପୁଣି ଯାଉଚ କୁଆଡ଼େ ? ଜଳଖିଆ ଖାଇବ ଆସ ।'

ଅତନୁର ମୁହଁ ଦେଖି ସବିତାର ଭାବାନ୍ତର ହୋଇଚି । ମାତ୍ର ଏପର୍ଯ୍ୟନ୍ତ ସେ ତାକୁ କିଛି କହିବାକୁ ସାହସ କରିପାରି ନାହିଁ । ଯେଉଁ ପ୍ରିୟ ବଂଶଧରର ବିଷଣ୍ଣତା ଦେଖିଲେ ସବିତା ଅତି ଅସହିଷ୍ଣୁ ହୋଇ ଉଠେ, ଏପର୍ଯ୍ୟନ୍ତ ସେ ସବୁ ଭାବକୁ ସେ ନୀରବରେ ସହ୍ୟ କରିଯାଇଚି । କଣ ହୋଇଚି ଅଭୁଙ୍କର···

'ଅଭୁ···'

ନୂଆବୋଉର ଡାକରେ ଅତନୁ ଫେରି ଆସିଚି । ନୂଆବୋଉ ଡାକକୁ ଏଡ଼ିଦେଇ ଚାଲିଯିବା ଏବେମଧ୍ୟ ଅତନୁ ପକ୍ଷରେ ଅସମ୍ଭବ ହୋଇ ରହିଚି । ଶେଷ ଥର ଡାକ ଶୁଣି ନୀରବରେ ସେ ଠିଆ ହୋଇ ରହିଲା କେବଳ ।

'ବସ, ଏଇ ପିଣ୍ଡାରେ ବସ । ଆଲୋ ଛନ୍ଦୁ, ତୁ ଆ, ଆଜି ଅଭୁଭାଇ ସାଙ୍ଗରେ ଖାଇବୁ ।'

ଦୂରରେ ସବିତା ବୋଉ ହସି ଉଠିଲେ । ଧାଇଁ ଆସି କହିଲେ···

'ତମେ ସମସ୍ତେ ବସ । ମୁଁ ଜଳଖିଆ ବାଢ଼ି ଦଉଚି । ତମେ ସମସ୍ତେ ଆଜି ହସି ଏକାଠି ଖା' ।···ସତେ ଏଡ଼େ ଭାଗ୍ୟ ହବ···'

ସେ ଆଉ କିଛି କହି ପାରିଲେନି । ପଣତ କାନିରେ ମୁହଁଟାକୁ କେବଳ ପୋଛିଦେଲେ ।

## ॥ ପନ୍ଦର ॥

ତିନଦିନ ପରେ ଅତନୁ ଘରକୁ ଫେରିଗଲା । ଶତ ଚେଷ୍ଟା କରି ସବିତା ତାର ମନର ପ୍ରସନ୍ନତା ଆଉ ଫେରାଇ ପାରି ନ ଥିଲା । ଯେଉଁ ରସଘନ ଆନନ୍ଦ ଭିତରେ ଦୁଇଟି ତରୁଣୀ ଓ ଗୋଟିଏ ତରୁଣର ଦିନଗୁଡ଼ିକ ଫୁଲର ପରାଗ ପରି ଉଡ଼ି ଚାଲି ଯାଉଥିଲା, ଶେଷକୁ ତାହା ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ ହୋଇପଡ଼ିଲା । ଦିନର ପ୍ରତ୍ୟେକ ମୁହୂର୍ତ୍ତ ତିନୋଟି ତରୁଣ ପ୍ରାଣକୁ କେବଳ ଶରବିଦ୍ଧ କରିବାକୁ ଲାଗିଲା । କିନ୍ତୁ ସେହି ବେଦନା ଭିତରେ ଯେମିତି ଗୋଟା ଅବ୍ୟକ୍ତ ଆସକ୍ତି ଭରି ରହିଥାଏ । ଅତନୁ ଦୂରକୁ ଚାଲି ଯାଉ, ଏହା କାହାରି କଳ୍ପନାରେ ମଧ୍ୟ ଆସୁନଥାଏ । ମାତ୍ର ଅତନୁ ନିର୍ଭୁଲ ଭାବରେ ବୁଝିଲା, ତାହାରି ଉପସ୍ଥିତିହିଁ ସବୁ ଅଶାନ୍ତିର ମୂଳ । ସେ ନିଜେ ମଧ୍ୟ ସେଥିରେ ପୀଡ଼ିତ ହୋଇ ପଡ଼ିଚି । ଦୁଦ୍ୱାର ଗତିରେ ଗଭୀର ପ୍ରସ୍ଥାନ ରେଖା ଗୋଟିଏ

ଟାଣି ସେବା ଛଡ଼ା ତା ପକ୍ଷରେ ଅନ୍ୟ ପନ୍ଥା ଆଉ ନଥିଲା । ଯେଉଁ ପ୍ରେମ-ଚକ୍ର ତାକୁହିଁ କେନ୍ଦ୍ରକରି ଗଢ଼ି ଉଠିଥିଲା ଏବଂ ଯେଉଁଥିରେ ସେ ହିଁ ପ୍ରଧାନ ନିମିତ୍ତ ଥିଲା, ଶେଷରେ ସେ ନିଜେ ସେଥିରେ ଲୋଷ୍ଟ୍ର ନିକ୍ଷେପ କରି ଚାଲିଗଲା ।

ତିନୋଟି ହୃଦୟର ଏହି ଗଭୀର ପ୍ରେମ କାହାଣୀ ବାହାର ଜଗତରେ ସମ୍ପୂର୍ଣ୍ଣ ଅଜ୍ଞାତ ହୋଇ ରହିଲା କହିଲେ ଚଳେ । ଛନ୍ଦା ଓ ନଳମା ଭିତରେ ପୂର୍ବର ସେହି କ୍ଷୀର-ନୀର ସମ୍ପର୍କ ଆଉ ଫେରି ଆସିବାର ଦେଖା ଗଲାନି । ଅଳନୁ ଚାଲିଯିବା ଦିନଠୁଁ ସମାଜ-ଜୀବନରୁ ଛନ୍ଦା ବିଚ୍ଛିନ୍ନ ହୋଇ ପଡ଼ିଛି । ବେଳେ ବେଳେ ନଳମା ସାଙ୍ଗରେ ତାର ଭେଟ ହୁଏ । କିନ୍ତୁ କିଏ କାହାକୁ କଣ କହିବ କେହି କିଛି ଠିକ୍ କରି ପାରନ୍ତି ନାହିଁ । ଯେମିତି ବହୁ ସାଧନାରେ ମିଳିଥିବା ବହୁମୂଲ୍ୟ ମଣିଟିକୁ ଉଭୟେ ମିଶି ନଷ୍ଟ କରି ଦେଇଛନ୍ତି ; ଫିଙ୍ଗି ଦେଇଛନ୍ତି ଖୁବ୍ ଦୂରକୁ, ଆଉ ଫେରି ପାଇବାର ଆଶା ନାହିଁ । ଦୁହେଁ ଦୁହିଁଙ୍କୁ ଅନାଇ ନିଷ୍ଫଳ ଦୃଷ୍ଟିରେ ଠିଆ ହୁଅନ୍ତି । କାହିଁକି ସେମାନେ ଅଳୁଭାଇଙ୍କି ଛାଡ଼ି ଦେଲେ । ଜଣକର ସ୍ୱାର୍ଥ ତ୍ୟାଗରେ ସେ ହୁଏତ ଅଟକି ଯାଇ ପାରି ଥାନ୍ତେ । କିନ୍ତୁ ତା ହେଲାନି । ଆଉ ଏ କ୍ଷୀର-ନୀର ସମ୍ପର୍କର ମୂଲ୍ୟ କଣ ? ଭାଙ୍ଗି ପଡନ୍ତି ଉଭୟେ । ଉଭୟଙ୍କର ଭୁଲ୍ । କିନ୍ତୁ କିଏ ସ୍ୱାର୍ଥତ୍ୟାଗ କରିଥାନ୍ତା କେହି ଭାବନ୍ତି ନାହିଁ । ଅହେତୁକ ପ୍ରେମ ହେତୁକ ବିଚ୍ଛେଦରେ ଶେଷକୁ ପରିଣତ ହୋଇଛି ।

କିନ୍ତୁ ସେ ଦିନ କଣ କହିଲେ ଖୁଡ଼ୀ, କଣ କହିଲା ବୋଉ ? ଏ ମହନପୁରେ ଆସି ରହିବ କିଏ ? ବଡ଼ ଝିଅରି ବା'ଘର ହେଇନି···ତା ଆଗରୁ ନଳରି କେମିତି ହବ···

ଯଦି ଅଳୁଭାଇ ଆସି ରହନ୍ତି ?

ଛନ୍ଦା ଅପା ପାଇଁ କଣ ନକରି ପାରିବେ ଅଳୁଭାଇ ?

ହଁ, ଯଦି ମହନପୁରେ ଆଉ କିଏ ଆସି ରୁହେ···ତା'ହେଲେ···

ନିଜ ଭିତରେ ନିଜେ ନୀରବ ହେଲା ନଳମା । କିଏ ଯେମିତି ଆଘାତ କଲା ତା' ଛାତିରେ । ଛନ୍ଦା ଅପାର ଅଳୁଭାଇ । ନଳ, ତୁ କଣ ଭାବୁଚୁ । ସେଦିନ ଛନ୍ଦା ଯାଇ ତୋ ପାଖରେ ଶରଣ ପଶିଲା । ତଥାପି ତୋର ଚେତନା ହେଇନି ।

ଘରଆଡ଼କୁ ଅନେଇଲା ନଳମା । ନାହିଁ, କେହି କୁଆଡ଼େ ନାହାନ୍ତି ।

ଛନ୍ଦା ଅନେକ ସମୟରେ ଭାବେ, ଖୁଡ଼ୀ କହିଲେ, ଏ ମହନପୁରେ ଆସି ରହିବ କିଏ ? କାହିଁକି, ଅଳୁଭାଇ ଯେଉଁଠି ରହିବେ ମୁଁ ସେଇଠି ଯାଇଁ ରହିବି । ସବିତା ଅପା ପୁଣି କେମିତି ଅଛି । ସାଉଣ୍ଟା ହୋଇ ଯିଏ ଆସିବ ସିଏ କଣ ଅଳୁଭାଇଙ୍କ ଭଲ ହେବ । ନାଁ, ମୁଁ ଏଠି ରହିବିନି । ମୁଁ ସବିତା ଅପାକୁ କହିବି ସେ ବୋଉକୁ କହି ଦବ···। ସବିତା ଅପା···

ହୃଦୟର କଥା ତୁଣ୍ଡରେ ଫୁଟେନା । ନୀରବ ହୋଇଯାଏ ଛନ୍ଦା । ଆଖି ଫାଟି ଅଶ୍ରୁ ଗଡ଼ି ପଡେ । ଗୋଟିଏ ଜାଗାରେ ବସି ବସି ସନ୍ଧ୍ୟା ହୋଇଯାଏ । କିଏ କେତେବେଳେ ଆସି ଖୋଜିଯାଏ ସେ ଜାଣି ପାରେନା ।

ସନ୍ଧ୍ୟା । ଏଇ ସନ୍ଧ୍ୟାରେ ବି ସୁନ୍ଦର ଲାଗୁଥିଲା ଏଇ ଘର । ଅତନୁଭାଇ ଫେରି ଆସୁଥିଲେ ଘର ହସି ଉଠୁଥିଲା । ସିଏ ଚାଲିଗଲା ଦିନୁ ସବୁ ଶ୍ମଶାନ ହୋଇଯାଇଛି । ସେଦିନ ସେ ଏଇଠି ଶୋଇ ପଡ଼ିଥିଲା । ଅତନୁଭାଇ ତା ଦେହରେ ଆଉଜି ପଡ଼ି ତାକୁ ଉଠଉଥିଲେ । ଅତନୁଭାଇ, ମୁଁ ତମକୁ ରୁଷି ଶୋଇଛି···ମତେ ଆଉ କିଏ ଉଠେଇବ !!

କାନ୍ଦି ଉଠିଲା ଛନ୍ଦା । ଏତେ ନିଷ୍ଠୁର, ଥରେ ହେଲେ ପଛକୁ ଅନେଇଲେନି । ଫୁଲଟାକୁ ହାତରେ ଧରି ତାକୁ ଶେଷକୁ ପାଦରେ ଦଳି ଦେଇ ଚାଲିଗଲା । ଅତନୁଭାଇ, ସେଦିନ କୁଆଡ଼େ ଚାଲି ଯାଇଥିଲ ତମେ । ମତେ ଭୁଲି ଯିବା ପାଇଁ ? ଏବେ ତ ଭଲ ରୂପେ ଭୁଲି ଯାଇ ପାରିବ ! ସତେ ତମେ ଭୁଲି ଯାଇ ପାରିବ ଅତନୁଭାଇ ?

ଏହିପରି କିଛିଦିନ ବିତି ଗଲା । ଛନ୍ଦାର ସୁଫଳିତ ତନୁଲତା କ୍ରମେ କ୍ଷୀଣ ହେବାକୁ ଲାଗିଲା । ତାର ଏ ବେଗ ପ୍ରଥମେ ସବିତା ଲକ୍ଷ୍ୟ କଲା । ନିଜର ଅବସ୍ଥା ଲୁଚେଇବାକୁ ଛନ୍ଦା ଯେତେ ଚେଷ୍ଟା କଲେ ମଧ୍ୟ ତା ଆଉ ସବିତା ଆଖିରୁ ଛପି ରହି ପାରିଲାନି । ଦିନେ ଏକାନ୍ତରେ ସବିତା ଛନ୍ଦାକୁ ଧରି ପଚାରିଲା···

'କଣ ହୋଇଛି ତୋର । ସବୁବେଳେ ତୁ ଏମିତି ନୀରସ ହୋଇ ପଡ଼ୁଚୁ କାହିଁକି ? ଶୁଖି ଯାଉଚୁ କାହିଁକି ? ଅତନୁ ଗଲାଦିନୁ ତୋର ଏଇ ଢଙ୍ଗ ମୁଁ ଲକ୍ଷ୍ୟ କରୁଚି । କଣ ସତ କଥା କହିବନି ମତେ ?'

ପ୍ରଥମେ ସବିତାର କଥା ଶୁଣି ଛନ୍ଦା ହସି ଉଠିଲା । ପରେ କଥା ବାଆଁରେଇ କହିଲା···

'ଲୁଡ଼ୁ ଖେଳରେ ନଳି ସାଙ୍ଗରେ ମୋର ଅପଡ଼ ହୋଇଛି । ଭଲ ଲାଗୁନି । ଆପେ ଚାଲିଯିବ ଯେ । ପୁଣି ଆମେ ଖେଳିବୁ ଯେ ।'

ସତକଥା । ସବିତା ମନେ ମନେ ଭାବିଲା, ଦିଜଣଙ୍କ ଭିତରେ ଆଉ ଖେଳ କୌତୁକ ତ ନାହିଁ । କିନ୍ତୁ ସେଥିଯୋଗୁ ଯେ ଛନ୍ଦା କ୍ଷୀଣ ହୋଇ ପଡ଼ୁଚି ଏହା ତାର ଆଦୌ ବିଶ୍ୱାସ ହେଲାନି । ଅତନୁ ସାଙ୍ଗରେ ସେମାନଙ୍କର ହାସ-ପରିହାସର ଗଭୀରତା ବଢ଼ୁଥିବାର ସେ ଜାଣିଚି । ଆଉ ଅତନୁ ମଧ୍ୟ ଏଠୁ ଯେମିତି ଖାପଛଡ଼ା ମନ ଧରି ଫେରି ଯାଇଚି, ତାଙ୍କର ଏତେ ଚଞ୍ଚଳ ଫେରି ଯିବାର ମଧ୍ୟ ନଥିଲା । ସବୁ ଘଟଣା ଯାକ ସବିତା ମନରେ ଏକ ଗଭୀର ଆଲୋଡ଼ନ ସୃଷ୍ଟି କଲା ।

ସବିତା ସବୁ କଥା ବୁଝି ପାରିଲେ ମଧ୍ୟ କିଛି ପ୍ରତିକାର କରି ପାରିଲା ନି । ବୋଉକୁ ମଧ୍ୟ ଏ କଥା କହିପାରିଲାନି । କଣ କହିବ ସିଏ ବୋଉକୁ । ଘର ଜୁଆଁଇ କରି ଏକ ବିରାଟ ନୂଆ ସଂସାର ଗଢ଼ିବ ବୋଲି ସିଏ କଳ୍ପନା କରି ବସିଚି । ବାପା ଚାଲିଯାଇଛନ୍ତି ତାକୁ ପୁତ୍ରହୀନା କରି । ସେଇ ପୁତ୍ର ଲାଭ ଆକାଂକ୍ଷା ସେ ପୂରଣ କରିବ ଛନ୍ଦାକୁ ଧରି । ମାତ୍ର ସେ ଘର ଜୁଆଁଇ କଣ ଅତନୁ ! କିଏ କରିବ ଏ ପ୍ରସ୍ତାବ ।

ନିଜ ସ୍ୱାମୀଙ୍କ କଥା ତାର ମନେ ପଡ଼ିଲା । ବଡ଼ ସରକାରୀ ଚାକିରିଆ । ଭାଇକି ବିଲାତ ଆମେରିକା ପଠେଇବାକୁ ଇଚ୍ଛା । କାହିଁ ବିଲାତ, ଆଉ କାହିଁ ଏ

ମଫସଲର ମହନଂପୁର । ତାଙ୍କର ସ୍ତ୍ରୀ ହେଇ 'ମୁଁ' ତାଙ୍କ ଆଗରେ କେମିତି ଏକଥା ଉଠେଇବ । ହେଲେ ଏବେ ଅଚ୍ଛୁ ଅତୁଳ ସମ୍ପଦ ପାଇବେ । କିନ୍ତୁ ତାଙ୍କର କିଣ ଧନ ନାହିଁ । କାହିଁକି ସେ ଏଠିକି ଆସିଲେ ? ଅନ୍ତ ବମୂଢ଼ ହେଇ ପଡ଼ି ସେ ମନେ ମନେ କହିଲ...

କାହିଁକି ତୁ ଏଥିରେ ପଶିଲୁ ଛନ୍ଦା !

କଥା ଆଉ ଅଛପା ରହିଲନି । କେବଳ ସବତା ବୋଉ ନୁହେଁ, ଶେଷକୁ ଶ୍ରୀମନ୍ତ ରାୟ ମଧ ସବୁ ଜାଣିଲେ । ତାଙ୍କୁ କହିଲେ ନିଜେ ସବତା ବୋଉ । କିନ୍ତୁ କିଣ ଉପାୟ । ଶ୍ରୀମନ୍ତ ରାୟ ଏ କଥା ଭବ ଉପାୟ ସ୍ଥିର କରବାକୁ କିଛି ଦନ ସମୟ ନେଲେ ।

ଶ୍ରୀମନ୍ତ ରାୟ ତେଜସ୍ୱୀ ଲୋକ । ଦେହରେ ମଧ ଶକ୍ତି ଅଛି । ବୟସ ପଚିଶ ହେବ । ଏବେ ମଧ ସାଇକେଲ ଚଢ଼ି କୋଡ଼ିଏ ତିରଶ ମାଇଲ ବାଟ କାମ ପଡ଼ିଲେ ଚାଲି ଯାନ୍ତି । ସେ ମନେ ମନେ ସ୍ଥିର କଲେ, ଆମ ହାତରେ କଥା ନାହିଁ । କଥା ଯାଇ ସୁନ୍ଦରପଦାରେ—ଅତନୁର ବାପା ସମରସିଂହଙ୍କ ପାଖରେ । ସେଠିକି ନିଜେ ନ ଗଲେ ନ ହୁଏ । ଅନ୍ୟହାତରେ କାମ ହେବା ଅସମ୍ଭବ । କିନ୍ତୁ ତାଙ୍କର ଏ ଚିନ୍ତା ସେ ଅନ୍ୟ କାହା ଆଗରେ ପ୍ରକାଶ କଲେ ନାହିଁ । କାମରେ ଯିବା ପାଇଁ ନିଜ ଭିତରେ ଅଧିକ ତାଡ଼ନା ସୃଷ୍ଟି କରି ଗୋଟିଏ ଶୁଭଦିନ ପ୍ରତୀକ୍ଷାରେ ରହିଲେ ।

ଅତନୁ ଫେରିଯାଇ ଅଶାନ୍ତ ଓ ହୃଦୟର ଦ୍ୱନ୍ଦ୍ୱମୂଳକ ଅବସ୍ଥାରୁ ମୁକ୍ତି ପାଇବବୋଲି ଯେଉଁ ଆଶା କରିଥିଲ ତାହା ନିଷ୍ଠୁର ଭାବରେ ବିଫଳ ହୋଇଛି । ଘରେ ପହଞ୍ଚି ସେ ଯେମିତି ବାଳିକା ଦୁଇଟିଙ୍କର ଗଭୀର ସାନ୍ନିଧ ଲଭ କରିବାକୁ ଲଗିଲ । ପ୍ରତିଦିନର ପ୍ରତ୍ୟେକ ଘଣ୍ଟା ପ୍ରତି ମୁହୂର୍ତ୍ତରେ ତା ଆଖି ଆଗରେ ଫୁଟି ଉଠିଲ । ଶୋଇ ଶୋଇ ସେ ଚିତ୍କାର କରି ଉଠେ, ବସି ବସି ଜାଗ୍ରତ ସ୍ୱପ୍ନରେ ବିଭୋର ହୋଇଯାଏ । ହାତ ବଢ଼ାଇ ଦିଏ ଆଗକୁ । ଯେମିତି ଛନ୍ଦାକୁ ଧରିବାକୁ ଯାଇ ସେ ଧରି ବସେ ନଳିନୀକି । ଆଶ୍ଚର୍ଯ୍ୟ, ନଳିନୀ କିଏ ? ନଳିନୀର ବିବାହ ପ୍ରସ୍ତାବ ଆସିଛି, ଭବୀ ସ୍ୱାମୀର ଫଟୋ ମଧ ଆସିଛି । ସେ ହୁଏତ ବାଗ୍‌ଦତ୍ତା । ଏହା ଭିତରେ ଅଧିକ ଅଗ୍ରଗତି ହୁଏତ ହେବଣି । ସେଇ ନଳିନୀ ସାଙ୍ଗରେ ତାର ପୁଣି ସମ୍ପର୍କ କିଣ ? ମୋର ସେଇ କାମିଜ ଖଣ୍ଡକ ମତେ ଆଉ ତମେ ଫେରାଇ ଦେଇନା ନଳିନୀ ? ସେଥିରେ କେତେ ଶରଧାରେ ନାଁ ଲେଖି ତାକୁ ପୁଣି ଛୁଣ୍ଡେଇ ଦେବାକୁ ବସିଥିଲ !

ଛନ୍ଦା ସାଙ୍ଗରେ ମୋର ନିବିଡ଼ତାର କଥା ଜାଣି ମଧ ତୁମେ ଦୁଃସାହସ କରିବାକୁ ଯାଇଚ । ନଳିନୀ, ତମ ଭବୀସ୍ୱାମୀର ଫଟୋଟି ନିଶ୍ଚୟ ସୁନ୍ଦର ହୋଇଥିବ ।

ମୋର ଅନୁପସ୍ଥିତିରେ ସେଇଟି ଆହୁରି ସୁନ୍ଦର ଦିଶୁଥିବ । ବାସ୍ତବତାଠାରୁ ତାକୁ ଅଧିକ ସୁନ୍ଦର ବୋଲି ମନେକରି । ସେଇଥିରେହିଁ ତମେ ଶାନ୍ତି ପାଇବ । ତାହାହିଁ ତମରି ସାର୍ଥକତା । ଛନ୍ଦାର ପଥରେ 'ଠିଆହୋଇ ତମେ ଆଉ ସୁଯୋଗ ନଷ୍ଟ କରନା । ମୋର ପ୍ରସ୍ଥାନ ପରେ ତମର ଉତ୍ଥାନ ହେଉଥିବ ବୋଲି ଆଶା ।

ଏହିପରି ଅନେକ କଥା ଭାବନ୍ତି ଅତନୁ । କିନ୍ତୁ କଣ ଭାବିବ ଛନ୍ଦା ବିଷୟରେ ସେ ଠିକ୍ କରି ପାରନ୍ତିନି । ଛନ୍ଦାର କଥା ମନେ ପଡ଼ିବା କ୍ଷଣି ସେ ସ୍ତବ୍ଧ ହୋଇ ପଡ଼େ କିଛିକ୍ଷଣ ପାଏ । ଯେମିତି ଛନ୍ଦା ତାହାର ହୃଦୟର ଏକ ଅଂଶ । ତାର ନିଜ ହୃଦୟଟା ଏବେ ଯେମିତି ଏକ ଭଗ୍ନାଂଶରେ ପରିଣତ ହୋଇଛି ।

···ତମର ବିଭାଘର ହେବନି ? କେବେ ହେବ ତମର ସ୍ୱୟମ୍ବର ସଭା ? କେଉଁ ଭାଗ୍ୟବାନ ତମର ହୃଦୟ ଜୟ କରିବ ଛନ୍ଦା ! କିନ୍ତୁ ତମେ ଯେ ମୋର ହୃଦୟ ଜୟ କରି ବସିଲ ତାହାର ପ୍ରତିକାର କଣ ହେବ ? ତମେ ସ୍ୱାମୀ ଘରକୁ ଯିବନି, ସ୍ୱାମୀ ତମ ଘରକୁ ଯିବ । ଏହାହିଁ ତମର ପଣ । ତମପରି ସୁନ୍ଦରୀ ପକ୍ଷରେ ଏ ପଣ ହିଁ ସଙ୍ଗତ । କିନ୍ତୁ ସେ ଭାଗ୍ୟବାନ କିଏହିଁ, ତମ ପରି ସୁନ୍ଦରୀର ପଣ ପୂରଣ ପାଇଁ ଦୁନିଆର ସମସ୍ତ ଆକର୍ଷଣ ତ୍ୟାଗ କରିବ ?···ମୁଁ ? ତମେ କହୁଚ ଛନ୍ଦା···ମୁଁ ସେଇ ଭାଗ୍ୟବାନ ?

ଭାବି ଭାବି ଗଭୀର ଦୁଃଖ ଭିତରେ ମଧ୍ୟ ହସି ଉଠିଲା ଅତନୁ । ପକେଟ ବହିରୁ ଗ୍ରୁପ ଫଟ ଖଣ୍ଡିଏ ବାହାର କରି ଆଗରେ ଥୋଇଲା । ସେ ଛନ୍ଦାର ଫଟ । ତାକୁ ଚାହିଁ ଛଳ ଛଳ ଆଖିରେ କହିଲା···

ତମେ ଅଭିଜାତର କନ୍ୟା ଛନ୍ଦା । ତମର ଖାନଦାନିକ ତମେ ସ୍ୱୀକାର କରି ନେଇଛ । କିନ୍ତୁ ମୋ କଥା କଣ ଥରେ ଭାବିଚ ? ଆଭିଜାତ୍ୟର ମାନଦଣ୍ଡ ଧରି ବାବା ଏବେ ମଧ୍ୟ ବସିଛନ୍ତି । ଆଉ କିଛି ନାହିଁ······ଏଇ ଗ୍ରୁପ ଖାନଦାନି ଟିକକହିଁ ଆମର ଶେଷ ସମ୍ବଳ । ହୁଏତ ତାହାରି ଯୂପକାଠ ତଳେ ଆମକୁ ଚିରଦିନ ବଳିପଡ଼ି ରହିବାକୁ ହେବ । କି ଦୁର୍ଯୋଗରେ ଦେଖା ହେଲି ଛନ୍ଦା, ତମେ ବି ନଷ୍ଟ ହେଲ, ମୁଁ ବି······

ଅତନୁର ଏହି ଚିନ୍ତା ଦିନେ ନୁହେଁ, ଥରେ ନୁହେଁ, ଦିନ ଦିନ, ରାତି ରାତି ଥର ଥର କରି ଅବିରାମ ଗତିରେ ଚାଲେ । ପୁରୁଷ ହୋଇ ମଧ୍ୟ ସେ ଅତି ଅସହାୟ ହୋଇ ପଡ଼େ । ପ୍ରେମର ବିଜୟ ଲୁଣ୍ଠନ ନୁହେଁ, ପରସ୍ୱାପହରଣ ନୁହେଁ । ପୁଣି ପ୍ରେମ ପରେ ଏଠି ମୁଣ୍ଡ ଟେକିଛି ସମାଜର ସଂସ୍ଥା । ତାହା ଲୁଣ୍ଠନ କିମ୍ବା ହୃଦୟ ଦାନଦ୍ୱାରା ମଧ୍ୟ ସମ୍ଭବ ନୁହେଁ । ଆଭିଜାତ୍ୟର ନିଗଡ଼ ପୁଣି ତା ଉପରେ କୋରଡ଼ା ବସେଇ ଚାଲିଛି । ସବୁ କଥା ଭାବି ଅତନୁ ଅତି ଅସହାୟ ହୋଇ ପଡ଼େ । ମନେହୁଏ ତାର ବୋଉ ପାଖକୁ ଧାଇଁଯାଇଁ ତାର ଦୁଃଖର କାହାଣୀ ସବୁ କହିଦିଅନ୍ତା ! କିନ୍ତୁ ସାହସ ପାଏନା । ସବୁକଥା ନୂଆବୋଉଙ୍କ ପାଖକୁ ଲେଖିଲେ ସେ କଣ କିଛି ବ୍ୟବସ୍ଥା କରନ୍ତେ ନାଇଁ ? କିନ୍ତୁ ନିଜ ବିଅରକୁ ମହନପୁରେ ଘରଜୁଆଇଁ କରିବାପାଇଁ ସେ କାହାକୁ ଲେଖିବେ ? ନିଜେ ନିଜର ପ୍ରସ୍ତାବ କାଟିଦେଇ ଅତନୁ ତୁନି ହୋଇ ବସି ରହେ ।

ଏହିପରି ଦିନ ପରେ ଦିନ ଗଡ଼ିଯାଏ । କିନ୍ତୁ ଅତନୁର ଚିନ୍ତା ସରେନା । ସେଇ ଚିନ୍ତା ସ୍ରୋତ ଭିତରେ ଦୁଇଟି ବାଳିକାକୁ ଉଦେଇ ଝୁଡେଇ ହେଉଥିବାର ସେ ବାରବାର ଦେଖେ । ସେ ଦେଖେ ଛନ୍ଦା ଆଉ ନଳିମାର ଅଶ୍ରୁମୁଖା ମୁହଁ । ଦୁଇଜଣ ଯାକ ଗ୍ରହିଁ ରହିଛନ୍ତି ଅତନୁ ଆଡ଼େ । ସେ ଚିତ୍କାର କରି ହସି ଉଠେ ।

ବଡ଼ ଭଉଣୀର ବାହାଘର ନହେଲେ ସାନ ଭଉଣୀର ହବନି । ପୁଣି ବଡ଼ ଭଉଣୀର ହବ ସ୍ୱୟମ୍ବର । ଯେମିତି ହୃଦୟ ସାଙ୍ଗରେ ଦୁନିଆର କୌଣସି ସମ୍ପର୍କ ନାହିଁ ।

ସେହି ଚିତ୍କାର ମିଶା ହସଭିତରେ କହି ଉଠେ ଅତନୁ କ୍ଷିପ୍ତ ହୋଇ-ପଡ଼େ ।

## ॥ ଷୋହଳ ॥

ପାଞ୍ଚ ଗ୍ଡ଼ିମାସ କଟି ଗଲଣି । ଏହା ଭିତରେ ଶ୍ରୀମନ୍ତରାୟଙ୍କ ସବୁ ଚେଷ୍ଟା ବିଫଳ ହୋଇଛି । ସେ ଏ ପର୍ଯ୍ୟନ୍ତ ସୁନ୍ଦରପଦା ଯାଇ ନିଜେ ଅତନୁର ବାପା ସମର ସିଂହଙ୍କୁ ଭେଟି ନ ଥିଲେ ମଧ୍ୟ ଲୋକଦ୍ୱାରା ପ୍ରସ୍ତାବ ପଠେଇ ସେ ଯେଉଁ ଉତ୍ତର ପାଇଛନ୍ତି ତାହା ଯଥେଷ୍ଟ । ଯୋଗକୁ ସେ ଏ ପର୍ଯ୍ୟନ୍ତ ଘର ଜୁଆଇଁ ପ୍ରସ୍ତାବ ତାଙ୍କୁ ଦେଇ ନାହାନ୍ତି, ନ ହେଲେ ପରିଣାମ ଯେ କିଭଳି ଭୟାବହ ହେଇଥାନ୍ତା ତାହା ଆଜି କଳ୍ପନା କରି ହୁଅନ୍ତା ନି ।

ଛନ୍ଦାର ଅବସ୍ଥା କ୍ରମେ ଅତି ଖରାପ ଆଡ଼କୁ ଗତି କରୁଛି । ସେଥିଯୋଗୁ ଥରେ ନୁହେଁ, ଦିଥର ନୁହେଁ, ଥର ଥର କରି ବହୁ ଥର ନାନା ଭାବରେ ସମର ସିଂହଙ୍କ ପାଖରେ ଅତନୁ ସହ ଛନ୍ଦାର ବିବାହ ପ୍ରସ୍ତାବ ଆଗତ କରାଯାଇଛି । ସବୁ ବିଫଳ ପ୍ରୟାସରେ ପରିଣତ ହୋଇଛି ଶେଷରେ । ସମର ସିଂ ଶେଷବାଣୀ ଶୁଣାଇ କହି ଦେଇଛନ୍ତି ଏ ପ୍ରସ୍ତାବ ଆଉଥରେ ଯେମିତି ନ ଆସେ । ଧନ ଅଛି ତ ସେ ଅନ୍ୟ ସ୍ଥାନରେ ପାତ୍ରର ସନ୍ଧାନ କରନ୍ତୁ । ଶ୍ରୀମନ୍ତ ରାୟ ଏ ଚରମ ଅପମାନ କେବଳ ଭ୍ରାତୃ-କନ୍ୟା ଛନ୍ଦା ସକାଶେ ସହ୍ୟ କରି ଯାଇଛନ୍ତି । କିଛି ଉପାୟ ନାହିଁ, ନିଜ ଘରର କୁମାରୀ କନ୍ୟା ନିଜ ଇଚ୍ଛାରେ ପତି ବରଣକରି ବଂଶର ସମସ୍ତ ଗୌରବ ଓ ଆଭିଜାତ୍ୟ ଉପରେ ଆଜି ଚରମ ଅପମାନ ଢାଳି ଦେଇଛି ।

ସମର ସିଂ ନାସ୍ତିବାଣୀ ଉଠାଇବାର ଅନ୍ୟ କିଛି କାରଣ ନାହିଁ । ବଡ଼ପୁଅ ଅନୁପମ ଗ୍ରିଶବର୍ଷ ହେଲି ବିଭା ହେଲଣି । ତାର ଏ ପର୍ଯ୍ୟନ୍ତ କୌଣସି ସନ୍ତାନ ଲାଭ ହୋଇ ନି । ସେଥିଯୋଗୁ ବୃଦ୍ଧ ସମର ସିଂଙ୍କର ସବୁ ଆକ୍ରୋଶ ବଡ଼ବୋଉ ସଞ୍ଜିତା ଉପରେ ଠୁଳ ହୋଇଛି । ଛନ୍ଦା ସଞ୍ଜିତାର ଭଉଣୀ, ସଞ୍ଜିତା ଏ ପର୍ଯ୍ୟନ୍ତ ସନ୍ତାନ-ପ୍ରସବା ନୁହେଁ, ସୁତରାଂ ଛନ୍ଦା ଓ ଅତନୁର ହୃଦୟର ବାୟୁବ୍ୟ ଆକର୍ଷଣକୁ ସମ୍ମାନ

କରିବାକୁ ଯାଇ ସେ ନିଜ ବଂଶର ଭବିଷ୍ୟତ ନଷ୍ଟ କରି ପାରିବେ ନି । ଏହାହିଁ ସମର ସିଂହଙ୍କ ଶେଷ ଆଉ ଚୂଡ଼ାନ୍ତ ଉତ୍ତର । ଏଭଳି ଅପ୍ରତ୍ୟାଶିତ ଉତ୍ତର ପାଇବା ପାଇଁ କେହି ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ । ସେଥିଯୋଗୁ ମଦନପୁରର ରାୟ ପରିବାର ବଜ୍ରାହତ ହୋଇପଡ଼ିଚନ୍ତି ।

ପ୍ରାୟେ ମାସେ ହେବ ସବିତା ଶାଶୁଘରକୁ ଫେରି ଗଲାଣି । ଏଭଳି ଚରମ ଅବସ୍ଥାର ସୃଷ୍ଟି ପରେ ଗଭୀର ବେଦନାକ୍ତ ହୃଦୟରେ ସେ ପିତ୍ରାଳୟରୁ ଫେରି ଯାଇଛି । ତାର ଫେରିବା ଭିତରେ ମଧ୍ୟ ସମର ସିଂହଙ୍କ ନିର୍ଦ୍ଦେଶ କାର୍ଯ୍ୟ କରିଛି । ବଡ଼ବୋହୂ ବାପଘରେ ରହିବାଦ୍ୱାରା କାଳେ ଅତନୁକୁ ପଥଭ୍ରଷ୍ଟ କରିବାର ସୁବିଧା ରହିବ, ସେଥିଯୋଗୁ ସେ ତାକୁ ଶୀଘ୍ର ଘରକୁ ଫେରାଇ ନେଇଛନ୍ତି । ସବିତା ଏବେ ଶାଶୁଘରେ ମଧ୍ୟ ନାହିଁ । ସେଠାରୁ ସେ ସ୍ୱାମୀଙ୍କ ପାଖକୁ କଟକ ଚାଲି ଯାଇଛି । ଏପରି ଅବସ୍ଥାରେ ସମର ସିଂଙ୍କ ମନର ଅବସ୍ଥା ପରିବର୍ତ୍ତନ ପାଇଁ କାହାରି ଉଦ୍ୟମ ଆଗଭର ହୋଇ ଆସିବାର ସମ୍ଭାବନା ମଧ୍ୟ ନାହିଁ ।

ପାଗଳ ଅବସ୍ଥାରେ ଅତନୁ ରହିଛି କଟକରେ । ତାକୁ ସାନ୍ତ୍ୱନା ଦେବାକୁ ସବିତା ପାଖରେ ଆଉ କୌଣସି ସମ୍ବଳ ନାହିଁ । ଆଖି ଆଗରେ ସେ ନିଜର ପ୍ରିୟ ଦିଅରର ସବୁ ଅବସ୍ଥା ଦେଖୁଛି । ଭଉଣୀର ସବୁ ଅବସ୍ଥା ମଧ୍ୟ ନିଜ ଆଖିରେ ଦେଖି ଆସିଛି । କିନ୍ତୁ ନିରୁପାୟ । ଯେପରି ବଜ୍ର ହସ୍ତରେ ବସିଛନ୍ତି ସମର ସିଂ । ସବିତା ବିରୁଦ୍ଧରେ ସେ ଯେଉଁ ଅଭିଯୋଗର ବାଣୀ ଶୁଣାଇଛନ୍ତି ସେଥିରେ ସବିତା ଏପରି ମ୍ରିୟମାଣ ହୋଇ ପଡ଼ିଛି ଯେ ସେଠି ଅତନୁକୁ ରକ୍ଷା କରିବା ତା ପକ୍ଷରେ ଏକାନ୍ତ ଦୁଃସାଧ୍ୟ । ଏଥିଯୋଗୁ ସେ ନିଜ ସ୍ୱାମୀଙ୍କୁ ମଧ୍ୟ କୌଣସି କଥା କହିବାର ସାହସ ହରାଇ ବସିଛି । ଦିନେ ଏପରି ମାନସିକ ଯନ୍ତ୍ରଣାରେ ପଡ଼ିବ ବୋଲି ସବିତା କଳ୍ପନା କରି ନ ଥିଲା । ବେଳେ ବେଳେ ସେଥିପାଇଁ ସେ ମନଭିତରେ ଛନ୍ଦାକୁ ସମ୍ବୋଧନ କରି କୁହେ, ଅଭାଗି, ଏହି ପ୍ରେମ ପଥରେ ତୁ ପୁଣି ପାଦ ଦେଲୁ କାହିଁକି ? ବିବାହ ତ ଦିନେ ହୋଇ ଥାନ୍ତା, କିନ୍ତୁ ଅଧବାଟରେ ଏ ଦୁର୍ଘଟଣା ଘଟାଇ ବସିଲୁ କାହିଁକି ? କିଏ ତୋତେ ଏ ବିପଦରୁ ଉଦ୍ଧାର କରିବ ? ଅତ୍ତୁ ?

ହସି ଉଠିଲା ସବିତା । ପାଠ ଶାଠ ପଢ଼ି ମଧ୍ୟ ପୁରୁଷ ପିଲାଗୁଡ଼ାକ କି ଖିରୁ । ଏହି ଅତ୍ତୁ । ପାଗଳ ହେଇ ପାରୁଛନ୍ତି । କାହିଁ ପ୍ରତିକାର ତ କରି ପାରୁ ନାହାନ୍ତି ? ଗୋଲାପକୁ ଦେଖି ଗୀତ ଗାଇବା ଆଜି କଣ୍ଟା ବଣରେ ପଶି ତାକୁ ତୋଳି-ଆଣିବା ସମାନ କଥାନୁହେଁ । ମନେ ମନେ ସେ ପୁଣି କହେ—ଅତ୍ତୁ, ଆଉ କେତେ ଦିନ ଗୀତ ଗାଇବ । ତମର ଏଇ ପାଗଳାମି କେବଳ ପ୍ରେମର ଗୀତ ଗାଇବା ଛଡ଼ା ଆଉ କିଛି ନୁହେଁ ।

ବେଳେ ବେଳେ ଅତନୁ ଆସି ସବିତା ପାଖରେ ବସେ । କଣ କହିବାକୁ ଇଚ୍ଛାକରେ । କିନ୍ତୁ କିଛି କହିପାରେ ନା । ସେ ହୁଏତ ମନେକରେ ତା ମନର ସବୁ କଥା ନୂଆବୋଉ ନିଶ୍ଚୟ ଜାଣୁଛନ୍ତି । ସେ କଣ କିଛି ପ୍ରତିକାର କରିବେନି!

ନୂଆବୋଉଙ୍କ ବିରୁଦ୍ଧରେ ନିଜ ବାପାଙ୍କର ସେ ଯେଉଁ ଅଭିଯୋଗ ସବୁ ଶୁଣିଛି, ତାକୁ ସେ ହସରେ ଉଡ଼େଇ ଦିଏ । କହେ, ବୃଦ୍ଧ ବୟସର ପ୍ରଳାପ । କିନ୍ତୁ ସବିତା ସେ ବ୍ୟଥାରେ ଗୁରୁତ୍ୱ ଦିଏନା । ବାପାଙ୍କର କଗିମତି କେତେ ସେ ତାହା ଭଲରୂପେ ଜାଣେ ।

ଦିନେ ଦିନେ ପାଗଳ ପରି ଧାଇଁ ଆସି ଅତନୁ ପହଞ୍ଚି ଯାଏ ସବିତା ପାଖରେ । ବସି ପଡ଼ି ଉତ୍ତେଜିତ ହୋଇ କୁହେ—

'ନୂଆବୋଉ, ତମେ ଠିକ୍ ଛନ୍ଦା ପରି ଦିଶୁଚ...'

ସବିତା ଲଜରେ ରଙ୍ଗା ପଡ଼ିଯାଏ । ଅତନୁ ଯେମିତି ଆଉ ପାଗଳ ନହୁଏ, ସେଥିଲାଗି ଠାକୁରଙ୍କୁ ପ୍ରାର୍ଥନା କରେ ।

ସେ ଦିନ ଛନ୍ଦା ପାଖରେ ବସିଥାଏ ନଳିନୀ । ଖରା ପରେ ବର୍ଷା ଯାଇ ଶୀତ ଆସିଛି । ତା ମଧ୍ୟ ଅଧାଅଧି ଭୋଗ ହୋଇ ଗଲାଣି । ବସନ୍ତର ଆଗମନ ପାଇଁ କୋଇଲି ହୁଏତ କେଉଁଠି ତନ୍ଦ୍ରା ଭାଙ୍ଗୁଥିବ । କିନ୍ତୁ ପୃଥିବୀକୁ ତାହାର ବାର୍ତ୍ତା ଏ ପର୍ଯ୍ୟନ୍ତ ଜଣା ଯାଇନି । ଶୀତହିଁ ବର୍ତ୍ତମାନ ପୃଥିବୀର ଭୋଗ୍ୟ ହୋଇ ରହିଛି । ସେଥିପାଇଁ ଖଣ୍ଡେ ରେଜେଇ ଘୋଡ଼ି ହୋଇ ଶୋଇଚି ଛନ୍ଦା । ତକିଆ ଉପରେ ମୁହଁଟି ତାର ଗୋଟିଏ ବାସିଫୁଟା ଫୁଲ ପରି ଦିଶୁଚି । ପୂର୍ବର ଅସୁସ୍ଥତା ତାର ଭଲ ହୋଇ ଗଲାଣି, କେବଳ ଦୁର୍ବଳତା ରହିଚି ଦେହରେ । ତା ବୋଉଙ୍କ ସତର୍କ ଦୃଷ୍ଟି ଏବେ ମଧ୍ୟ ତା ଉପରୁ ଊଣା ପଡ଼ିନି । ଝିଅର ଯେମିତି ଗୋଟା ବଡ଼ ଦଶା ପଡ଼ିଥିଲା, ତାହା ଏବେ କଟି କଟି ଯାଉଚି । ଆଜି ମଧ୍ୟ ଦିଅଁ ଦେବତାଙ୍କ ପାଖରେ ତାଙ୍କର ନାନା ମନାସି ଚାଲିଚି । କିନ୍ତୁ ଅସଲ ଦୁଃଖ କାହାର ମନରୁ ସେମିତି ଯାଇନି । ତାକୁ ଦୂର କରିବା ଯେମିତି ସମସ୍ତଙ୍କର ଅସାଧ୍ୟ । ମାତ୍ର ସେ ସବୁ କଥା ଛନ୍ଦା ଯେମିତି ଆଉ ଭାବୁନି । ତାର ଭାବ ଭଙ୍ଗୀରୁ ସେହିପରି ଜଣା ଯାଉଚି ।

କଥା ଭିତରେ ନଳିନୀ ପଚାରି ବସିଲା......

'ତୁ କାହିଁକି ହଠାତ୍ ଏମିତି ବେମାର ପଡ଼ିଗଲୁ ଛନ୍ଦା ଅପା ! କାହିଁ ମୋର ତ କିଛି ହେଲାନି ?'

ଛନ୍ଦା କେବଳ ହସି ଦେଲା । ପ୍ରଶ୍ନର କିଛି ଉତ୍ତର ଦେଲାନି । କେତେ-ବେଳକେ ହାତ ବଢ଼େଇ ନଳିନୀର କାନ ମୋଡ଼ି ଦେଇ କହିଲା......

'ତୁ ବରବର ଦୁଷ୍ଟାମି କରୁଚୁ । ସେ ସବୁ ବାଜେ କଥା ଆଉ ତୁମୋ ପାଖରେ ଗପିବୁନି । ଦେହ କଣ ଖରାପ ହୁଏନା । କିନ୍ତୁ ମୋ ଦେହ ଲାଗି ବୋଉ ଯେତେ ଚିନ୍ତା କଲା ସେ ସବୁ ଦେଖି ମତେ ଭାରି ଲାଜ ମାଡ଼ିଲା । ଯେମିତି ସେମାନେ ଆଉ କଣ କଥା ବୋଲି ଭାବିଲେ । ସେ ବର୍ଷ ତୁ ପୁଣି ଜରରେ ପଡ଼ିଥିଲୁ, କେହି ତ କିଛି ଭାବୁ ନଥିଲେ...

କହୁ କହୁ ଛନ୍ଦା ଆପେ ନୀରବ ହୋଇଗଲା । ସତେ ଯେ କଣ ତାର ଆଉ କହୁ ଘଟିଥିଲା । ଭାବ ଭାବ କେତେବେଳେ ପୁଣି କହିଲା···

'ସବତା ଅପା ଏବର୍ଷ ଆଉ ଆସିବନି ?'

ଏ କଥା ଶୁଣି ହସରେ ଫାଟି ପଡ଼ିଲା ନଳମା । ପାଟିରେ ଲୁଗାମେଞ୍ଚା ମାଡ଼ି ଦେଇ ଛନ୍ଦା ପାଖରେ ଶେଷକୁ ଶୋଇ ପଡ଼ିଲା । ଛନ୍ଦା ମଧ୍ୟ କାଇଲ ହୋଇଗଲାଣି । ଯେମିତି ସେ ଭୁଲରେ କଣ କହିଦେଇଛି । ନା, ସବତା ଅପା ଆଉ ଏଠିକି ଆସିବ କାହିଁକି ? ଗତ ବର୍ଷ ଆସିଥିଲା, ତାର ସେଇ ସ୍ମୃତି ଯଥେଷ୍ଟ । ଗୋଟା ଓଲଟ ପାଲଟ କରି ଦେଇ ଯାଇଛି । ନା, ସେ କଣ କଲା, କିଛି କରିନି । ତାକୁ ଜର ହୋଇଥିଲା, ସେଥିରେ ସେ ଦୁର୍ବଳ ହୋଇ ପଡ଼ିଛି । କିନ୍ତୁ ସବତା ଅପା ଆଜଯାଏ ଚିଠି ଖଣ୍ଡେ ଦେଲାନି ! ଏହିପରି ଭାବ ଭାବ ସେ ବଡ଼ ପାଟିରେ କହି ଉଠିଲା···

'ଆସିବ, ବୋଉ କହୁଥିଲା ସେ ମୋ ବା'ଘରକୁ ନିଶ୍ଚେ ଆସିବ ।'

ପୁଣି ଯେମିତି ତାର ଭୁଲ ହୋଇଗଲା । ନଳମା ଆଉକୁ ଅନେଇ ଚୁପ୍ ହୋଇଗଲା ଛନ୍ଦା । ନଳମା ହୁଏତ ପୁଣି ହସିବ । ଏତେ ହସୁଛି କାହିଁକି ନଳମା ! ଥରେ ଜରରେ ପଡ଼ନ୍ତୁ ସିଏ । ମୁଁ ଯାଇ ତା ପାଖରେ ଆହୁରି ଜୋର୍‌ରେ ହସନ୍ତି ।

ସତକୁ ସତ ଛନ୍ଦାର ଆଶଙ୍କାକୁ ରୂପ ଦେଇ ନଳମା ପୁଣି ହସି ଉଠିଲା । ହସି ହସି ସେ କହିଲା···

'ହଁ, ତୋର ବା'ଘର ହବ ଲୋ ଅପା ! ଏଇ ଫଗୁଣରେ ହବ ବୋଲି ଘର ଯୋଗାଡ଼ ଚାଲିଛି ।'

କଥା ଶୁଣି ଯେମିତି ଏକ ଆଶ୍ୱସ୍ତିର ପବନ ବହିଗଲା ଛନ୍ଦାର ଦେହକୁ ଛୁଇଁ । ସବୁ ଲାଜ ସଙ୍କୋଚ ସେ ଭୁଲିଗଲା । ଉତ୍ତେଜିତ ହୋଇ କହି ଉଠିଲା···

'କଣ ସବତା ଅପା ଚିଠି ଦେଇଛି ?'

କବାଟ ଠେଲି ଏହି ସମୟରେ ଘର ଭିତରକୁ ପଶି ଆସିଲେ ସବତା ବୋଉ । ଆନନ୍ଦରେ ଅସମ୍ଭାଳ ହୋଇ କହିଲେ···

'ହଁ, ହଁ ସବତା ଚିଠି ଦେଇଛିଲୋ ଛନ୍ଦା, ସବତା ଚିଠି ଦେଇଛି । ହବ-ନେଇ, ମୋ ଗରଭରୁ ପଡ଼ି ସେ ନିଃସନ୍ତାନ ହବ । ତାର ପିଲାପିଲି ହବ ଲୋ ଛନ୍ଦା, ସବତା ଚିଠି ଦେଇଛି ।'

କହିବା ସଙ୍ଗେ ସଙ୍ଗେ ହାତର ଚିଠି ଖଣ୍ଡିକ ଧରି ସେ ଦେଖିବାକୁ ଲାଗିଲେ ।

ତାଙ୍କ ହାତରୁ ଚିଠି ଖଣ୍ଡିକ ଛଡ଼େଇନେଲା ନଳମା । ଛନ୍ଦା ଉଠିବସି ଚିଠିଟାକୁ ପଢ଼ିବାରେ ଲାଗିଗଲା । ହଁ, ପିଲା ହବ ସବତା ଅପାର । କିନ୍ତୁ ଆଉ କିଛି ତ ଲେଖି ନେଇ । ସେ କଣ କଟକରେ ଏକା ଅଛି ? ସେଠି ଆଉ କେହି ନାହାନ୍ତି ?

ଛନ୍ଦାର ଭାବନାକୁ ଖଣ୍ଡିତ କରି ନଳମା ପାଟିକରି କହିଲା, 'ଆମକୁ ମିଠେଇ ଦବ ଆଜି ବଡ଼ ମା, ସବତା ଅପାର ପୁଅ ହବ·········ଆମକୁ ମିଠେଇ ଦବ ଏକା······'

ନଳମୀଙ୍କ କୁଣ୍ଢେଇ ପକେଇଲେ ସବିତା ବୋଉ । 'ତୋ ପାଟିରୁ ସତ ବାହାରିଚି ଝିଅ, ସବିତାର ମୋର ନିଶ୍ଚେ ପୁଅ ହବ······ଆମେ ମିଠେଇ ଖାଇବି କଣ, ଆଉ କଣ ମାଗ ; ମୋର ନାତି ହବ । ଖାଲି ମିଠେଇ ମାଗୁଚ ମତେ ?'

ଛନ୍ଦା ଆଶ୍ଚର୍ଯ୍ୟ ହେଇ ଅନେଇ ରହିଲି ତାର ବୋଉକୁ । ବୋଉ ଏତେ ଖୁସି ହଉଚି ସବିତା ଅପା ଲାଗି ? ତାର କଣ ଏବେ ପୁଅ ହେଇ ନ ଥାନ୍ତା ? ଆଉ କଣ କାର କିଛି ହବନି ? ସେହି ନୀରବ ଭାବନା ଭିତରୁ ସେ ଡାକି ଉଠିଲି, 'ବୋଉ ! ସବିତା ଅପା କଣ ଏଇ ଖଣ୍ଡିକ ଚିଠି ଦେଇଚି ?'

ଝିଅକୁ ଥମ ଥମ କରି ଅନେଇ ରହିଲେ ଜନନୀ । ପର ମୁହୂର୍ତ୍ତରେ ସେ ଛନ୍ଦାକୁ କୋଳକୁ ଟାଣିନେଇ କହିଲେ······

'ଆହୁରି ଚିଠି ଅଛିଲେ, ଆହୁରି ଚିଠି ଅଛି । ଆମେ ତା ଶାଶୁ ଶଶୁର ସମସ୍ତେ ଚିଠି ଦେଇଚନ୍ତି । ସମସ୍ତେ ଦୋଷ କ୍ଷମା ମାଗି ଚିଠି ଦେଇଚନ୍ତି । ଫଗୁଣ ମାସକୁ ଦିନ ଧରି ତା ଶାଶୁ ଶଶୁର ସମସ୍ତେ ଚିଠି ଦେଇଚନ୍ତି । ଅଉ ଆଉ କଣ ଅଛି ? ଅଉ ମୋର ପାଗଳ ହେଇଯାଉଚି···'

କହି ଆନନ୍ଦରେ ଗୃଳିଗଲେ ସବିତା ବୋଉ । ବୋଉକୁ ପଛରୁ ଅନେଇ ଅନେଇ ଦୁଇଧାର ଲୁହ ଗଡ଼ି ପଡ଼ିଲା ଛନ୍ଦାର ଆଖିରୁ । ତାହାପରେ ସେ ଅସ୍ପଷ୍ଟ ସ୍ୱରରେ କହିଲା···

'ତମେ ପାଗଳ ହେଇଚ ସତେ ?'

ଛନ୍ଦାର ସ୍ୱରରେ କେବଳ କାରୁଣ୍ୟର ନିର୍ଯାସ । ସେଥିରେ ନଳମୀର ସବୁ ଅହଙ୍କାର ହଜି ହଜି ଗଲା ଯେମିତି ।

ରଚନାକାଳ
୧୯୫୪,

ମଟର ସାଇକେଲ୍‌ଟା ସଦର ଫାଟକ ପାର ହୋଇ ଭିତରକୁ ପଶି ଆସିଲା । ଏହି ସାଇକେଲ୍‌କୁ ସଦର ଫାଟକର ଗୁର୍ଖା ଦରଓ୍ୟାନ୍‌ଟା ଯେମିତି ଅପେକ୍ଷା କରି ରହିଥିଲା । ମଟର ସାଇକେଲର ଆରୋହୀ ଦୁଇଜଣଙ୍କୁ ଗୋଟାଏ ଲମ୍ବା ସଲାମ୍ ବଜେଇ ଦରଓ୍ୟାନ୍‌ଟା ଖୁସିରେ ନିଶ୍ୱାସ ମାରିବାକୁ ଚେଷ୍ଟା କଲା । ତାହାପରେ ମଟର ସାଇକେଲ୍ ପହଞ୍ଚିଲା ଭିତର ଫାଟକ ପାଖରେ । ଆରୋହୀ ଦୁଇ ଜଣ ସେଇଠାରେ ଓହ୍ଲେଇ ପଡ଼ିଲେ ସାଇକେଲ୍‌ରୁ । ଜଣେ ସ୍ତ୍ରୀ ଓ ଜଣେ ପୁରୁଷ । ଉଭୟେ ଖୁବ୍ ଫୁର୍ତ୍ତିରେ ଆଗର କୋଠା ଘର ଭିତରକୁ ଚାଲି ଗଲେ, ଯେମିତି ସେମାନଙ୍କ ପଛରେ ଆଉ ଗୋଟିଏ ମଟରସାଇକେଲ୍‌ରେ ସେମାନଙ୍କୁ କିଏ ଗୋଡ଼ଉଛି । ଭିତର ଦରଓ୍ୟାନଟା ସଦର ଫାଟକ ର ଦରଓ୍ୟାନଠାରୁ ଆହୁରି କଞ୍ଚା, ଅହୁରି ଚଙ୍ଗା । ଆରୋହୀଙ୍କଠାରୁ ସାଇକେଲ୍‌ଟା ଧରି ନେଇ ପାଖର ଗ୍ୟାରେଜ୍ ଭିତରକୁ ଚାଲିଯାଇ ସାଇକେଲ୍‌ର ନମ୍ବର ବଦଳେଇ ଦେଇ ସାଇକେଲ୍‌ଟାକୁ ସେ ସେଇଠାରେ ଡେରି ଦେଲା ।

ଘରଟି ପ୍ରକାଣ୍ଡ ଏବଂ ଦୋମହଲା । ତଳ ମହଲାରେ ଅନେକଗୁଡ଼ିଏ ଛୋଟ ଛୋଟ କୋଠରୀ । କେବଳ ଆଗର ବୈଠକଖାନା ଟିକେ ପ୍ରଶସ୍ତ । କେତେକ କୋଠରୀ ଅତିକ୍ରମ କରି ମଟର ସାଇକେଲ୍‌ର ପୁରୁଷ ଆରୋହୀଟି ଛୋଟ ଗୋଟିଏ ଗୁପ୍ତ କୋଠରୀ ଆଗରେ ଛିଡ଼ା ହେବା କ୍ଷଣି ସେଇ କୋଠରୀଟିର ଦରଜା ମନକୁ ଖୋଲି ଗଲା । ଆଗ କୋଠରୀରେ ଅଣ୍ଟାର କମରପଟୀରୁ ରିଭଲ୍‌ଭର୍ ଖୋଲି ରଖି ଦେଇ ଗୁପ୍ତ କୋଠରୀ ଭିତରକୁ ପଶି ଯିବା ପରେ କୋଠରୀର ଦରଜା ଆପଣା ଛାଏଁ ବନ୍ଦ ହୋଇଗଲା ଏବଂ କୋଠରୀ ଭିତରେ ଜଳି ଉଠିଲା ଫିକା ନୀଳବର୍ଣ୍ଣର ଆଲୁଅ ।

ଆଖିର କଳା ଚଷମା ଖୋଲି ଦେଲା ଆରୋହୀ, ତାହା ପରେ ମୁଣ୍ଡର ଟୋପିଟା । ମୁହଁରେ ଆଉ ଆଗର ପୁରୁଷ ଚେହେରା ରହିଲା ନାହିଁ । କାନ୍ଥରେ ଟଙ୍ଗା ହୋଇଥିବା ଗୋଟିଏ ବଡ଼ ଦର୍ପଣ ଆଗରେ ଛିଡ଼ା ହୋଇ ସେହି ଆରୋହୀଟି ନିଜ ଦେହର ମିଲିଟାରି ପୋଷାକ ଖୋଲିଲା । ଏହି ସମୟରେ ସେହି ଆରୋହୀଟି ଗୁଣୁ ଗୁଣୁ ହୋଇ ମୁହଁରେ ହିପହପ ଗୀତ ଗାଇ ଉଠିଲା । ସେତେବେଳକୁ ଦର୍ପଣ ଭିତରେ ଗୋଟିଏ ସୁନ୍ଦରୀ ଯୁବତୀର ଉଲଗ୍ନ ଦେହ ଫୁଟି ଉଠି ସାରିଛି । ମୁହଁରେ ଛୋଟ ଟିକିଏ ହସ, ଆଖିରେ ପ୍ରଶ୍ନ ।

"କାହାକୁ ଖୋଜୁଛନ୍ତି ଆପଣ ?"

"କୁମାରୀ ମୃଦୁଳା ଉତ୍ତର ସିଂ !"

"ମାତ୍ର ୩ ମିନିଟ୍ ଅପେକ୍ଷା କରନ୍ତୁ", କହି କହି ନିଜେ ଠୋ ଠୋ ହୋଇ ହସି ଉଠିଲା ସେହି ଯୁବତୀ । ମଟର ସାଇକେଲ୍‌ର ସେହି ପୁରୁଷ ଆରୋହୀ ଏଇ କୋଠରୀ ଭିତରେ କୁଆଡ଼େ ହଜି ଗଲା ଯେମିତି ।

ସେହି ଗୁପ୍ତ କୋଠରୀ ଭିତରୁ ଗୋଟିଏ ସୁସଜ୍ଜିତା ସୁନ୍ଦରୀ ଯୁବତୀ ଭାବରେ ବାହାରିବା ପୂର୍ବରୁ ଯୁବତୀଟି ଦର୍ପଣ ଆଗରେ ଛିଡ଼ାହୋଇ ନିଜକୁ ଭଲ ଭାବରେ ଥରେ ଦେଖି ନେଲା । ସେହି ଛଦ୍ମବେଶୀ ପୁରୁଷର ଚେହେରା ତା' ଦେହରେ ବର୍ତ୍ତମାନ ତିଳେ ହେଲେ ନାହିଁ । ତାହା ପରେ ଗୋଟିଏ ସରୁ କପିଂ ପେନସିଲ ପାଟିରେ ମାରି ବାଁ ପାଖ ଗାଲରେ ଆଙ୍କି ଦେଲା ସୌନ୍ଦର୍ଯ୍ୟର ତିଳ ବିନ୍ଦୁ । ତାହା ପରେ ନିଜର ସୁଗଠିତ ଦେହର ଲାଲ ଜର୍ଜେଟ୍ ଶାଢ଼ୀର ଝିଗ ପଣତକୁ ଡାହାଣ ହାତରେ ଝୁଲାଇ ଝୁଲାଇ ଯୁବତୀଟି ଚାଲିଗଲା ସେହି ଘରୁ । କୋଠରୀର କବାଟ ଖୋଲିଗଲା ଆଉ ବନ୍ଦ ହୋଇଗଲା ଧୁଏଁ ଧୁଏଁ ।

॥ ୨ ॥

କଅଁଳ ମୁହଁରେ ଛନ ଛନ ହସ, ଆଖିରେ ତୀକ୍ଷ୍ଣ ଚାହାଣି ଧରି ବୈଠକଖାନାରେ ବସିଛନ୍ତି କୁମାରୀ ମୃଦୁଳା ଉତ୍ତରସିଂ । ପାଖରେ ଆଉ ଗୋଟିଏ ଯୁବତୀ । ଦୁହିଁଙ୍କ ଭିତରେ ଆଳାପ ଚାଲିଛି ଅନେକ ବିଷୟରେ । ସେହି ଆଳାପ ଆଲୋଚନା ଭିତରେ ଦୁହେଁ ଯେମିତି ଆଉ ଜଣକର ଆସିବାକୁ ଅପେକ୍ଷା କରି ରହିଛନ୍ତି । ଆଲୋଚନା ବନ୍ଦ କରି ହଠାତ୍ ଟିକେ ଅନ୍ୟମନସ୍କା ହୋଇଉଠିଲେ କୁମାରୀ ଉତ୍ତରସିଂ । ଟେବୁଲ ଉପରେ ପଡ଼ିଥିବା ଗୋଟାଏ ନକ୍‌ସାକୁ ଅନେଇ ଅନେଇ ଓଠରେ ପେନସିଲ ପିଟି ପିଟି ଟିକେ ଗମ୍ଭୀର ହୋଇ କହି ଉଠିଲେ ସେ ପାଖରେ ଯୁବତୀଟିକି :—

"ଆଜି ଠାରୁ କେହି ଯେମିତି କାମ ହାସଲ ନ କରି ଏଠିକି ନ ଫେରେ । କାମିନୀ, ତମର ମନେ ଅଛି, ରଙ୍ଗପୁର ରାଜବାଟୀର ଗୋଟା ନିଖୁଣ ନକ୍‌ସା ଆଣି ଦବାକୁ ଜଣେ ଯୁବକ ଭାର ନେଇଥିଲା । ତାର ନାଁ କଣଟି ?"

କଥାଟା ଜଭ ଅଗରେ ଥିଲା ପରି କାମିନୀ ଚଟାପଟ୍ ଉତ୍ତର କଲା—"ଅଭିରାମ ।"

"କଣ ହେଲା ସେଇ ନକ୍‌ସା କଥା ?"

"ନକ୍‌ସା ଆସି ଯାଇଚି । ସେଇ ଯୁବକଟି ଆଉ ଗୋଟିଏ ସନ୍ଧାନର ଭାର ନେଇ ଯାଇଚି ଆଜକି ପନ୍ଦର ଦିନ ହେବ କୁମାରୀ ସାହେବ !"

"ଏଁ, ଆଉ ଗୋଟିଏ ସନ୍ଧାନର ଭାର ? କାର ଅନୁମତିରେ ?"

"ମତେ ଆପଣ ଯେତିକି ଅଧିକାର ଦେଇଛନ୍ତି, ତାରି ଉପରେ ନିର୍ଭର କରି ମୁଁ ଏ ଅନୁମତି ଦେଇଛି କୁମାରୀ ସାହେବ !"

କାମିନୀର ଉତ୍ତର ଶୁଣି ଉଚ୍ଚ ହାସ୍ୟରେ ଫାଟିପଡ଼ିଲେ ମିସ୍ ଉତ୍ତରସିଂ । ତାହାପରେ ଆଖିବୁଜି ଓଠରେ ପେନ୍‌ସିଲଟାକୁ ଜୋରରେ ପିଟି ପିଟି ଧୀରେ ଧୀରେ କହିବାକୁ ଲାଗିଲେ—

"ସେହି ଯୁବକକୁ ତମେ କପରି ବିଶ୍ୱାସ କର କାମିନୀ ?

"ବିଶ୍ୱାସ, ହୁଏତ ଭଲ ଭାବରେ କରେ ।"

"କାରଣ ?"

"ଥରେ ବିଶ୍ୱାସର ସହିତ କାମ ତୁଲେଇ ପାରିଥିବାରୁ - "

"ବିଶ୍ୱାସର ସହିତ ? – କଣ ସେହି ନକ୍‌ସା ଯୋଗେଇବାହାରି ?"

କୁମାରୀ ଉତ୍ତର ସିଂଙ୍କ ଠାରୁ ଏପରି ପ୍ରଶ୍ନର ଆଶା କରିନଥିଲି କାମିନୀ । ଏଠାରେ କେହି କର୍ତ୍ତବ୍ୟରେ ହେଳା କରି ପାରେ, କିନ୍ତୁ କର୍ତ୍ତବ୍ୟରେ ଭୁଲ କଲେ କୁମାରୀ ଉତ୍ତର ସିଂଙ୍କ ପାଖରେ ତାହାର କ୍ଷମା ନାହିଁ । ଏହି ସୁଦୃଶ୍ୟ ଅଟ୍ଟାଳିକା ଭିତରେ ତାହାର ଦଣ୍ଡ ପାଇଁ ଯଥେଷ୍ଟ ବ୍ୟବସ୍ଥା କରିଛନ୍ତି ଏହି ମୃଦୁଳା । ଓଃ, ଯିଏଙ୍କ ନାଁ ମୃଦୁଳା ରଖିଲି କିଏ ? ମୃଦୁଳାକୁ ଥରେ ଆଉ ଆଖିରେ ଚୁହାଁନେଲି କାମିନୀ । ସକାଳେ ଏଇ ପୁରୁଷବେଶୀ ମୃଦୁଳାଙ୍କ ସହିତ ସେ ସ୍ତ୍ରୀ ରୂପେ ମଟରେ ସାଇକେଲ୍‌ରେ ଟାଉନ୍ ବୁଲି ଆସିଛି । ବାଟ ଯାକ ନିଜର ସ୍ତ୍ରୀ ଭଳି ସେ ତାକୁ ସ୍ନେହସୋହାଗ ଦେଖାଇଛନ୍ତି ଯେମିତି । ସେଥିରେ ବର୍ତ୍ତମାନ ଏଇପରି ପ୍ରଶ୍ନ ? କାମିନୀର ଛାତି ଥରି ଥରି ଉଠୁଥାଏ । ଏଠାର ସର୍ବମୟ କର୍ତ୍ତ୍ରୀ କୁମାରୀ ମୃଦୁଳା ଉତ୍ତରସିଂଙ୍କୁ ଉଦ୍ଦେଶ୍ୟ କରି ସେ ଥରି ଥରି କହିଲି –

"ଅନ୍ତତଃ..."

"ରଙ୍ଗପୁର ରାଜବାଟୀର ସେହି ନକ୍‌ସାଟା ଭୁଲ୍ – ଗୋଟାଏ ଜାଲ ନକ୍‌ସା ! କେତେ ଟଙ୍କା ଦେଇ ପଠେଇଛ ସେଇ ଯୁବକକୁ କାମ ହାସଲ୍ ପାଇଁ ?"

କାମିନୀର ପିଣ୍ଡରେ ଯେମିତି ଆଉ ଜୀବନ ନାହିଁ । ହୁଏତ ଟେବୁଲ ଥାକରେ ଥିବା ରିଭଲ୍‌ଭର୍‌ଟା ଖୋଜିବେ ମୃଦୁଳା ଦେବୀ – ତାର ଶାସ୍ତିପାଇଁ । ତଥାପି ପ୍ରଶ୍ନର ଯେକୌଣସିମତେ ଉତ୍ତର ଦେବା ଏଠାକାର ନିୟମ, ତାରି ଉପରେ ନିର୍ଭର କରି କହିଲି କାମିନୀ—

"ଏକ ହଜାର – "

"ନିଅ ତମର ସେଇ ହଜାର ଟଙ୍କା ନିଅ, ତମର ନମ୍ବରଟା ମିଳେଇ ନିବ । ହଁ, ମୁଁ ରଙ୍ଗପୁରର ନିର୍ଭୁଲ ନକ୍‌ସା ସଂଗ୍ରହ କରି ନେଇଛି, ହେଇ ଦେଖ ।"

ଏହା କହି ଟେବୁଲ ଡ୍ରୟର ଭିତରୁ ଗୋଟାଏ ନକ୍‌ସା ଓ ଖଣ୍ଡେ ହଜାର ଟଙ୍କିଆ ନୋଟ୍ ବାହାର କରି ଟେବୁଲ ଉପରେ ଥୋଇଲେ ମୃଦୁଳା ଦେବୀ । କାମିନୀ ଆଉ କିଛି ଭାବି ପାରୁ ନଥାଏ । ହୁଏତ ତାର ମୁଣ୍ଡକାଟ ହେବ୍ ବର୍ତ୍ତମାନ ।

"କିନ୍ତୁ ତମର ସେହି ପ୍ରିୟ ଅଭିରାମ ଆଉ ନାହିଁ—"

ଚମକି ଉଠିଲା କାମିନୀ । ପ୍ରିୟ ଅଭିରାମ । ଏହାର ଅର୍ଥ କଣ, କମିତି ସବୁ କଥା ଜାଣିଲେ ମୃଦୁଳା ଦେବୀ । କଣ ଅନ୍ତର୍ଯାମିନୀ ଏ । ଅଭିରାମ ଆଉ ନାହିଁ ବୋଲି କଣ କହିଲେ ମୃଦୁଳା ଦେବୀ । ମୁଣ୍ଡ ଭିତରେ ଝଡ଼ ବହିଲା କାମିନୀର । କୌଣସି କଥାକୁ ସେ ଭଲରୂପେ ଭାବି ପାରିଲା ନାହିଁ । ତାର ଏତେ ଗୁଡ଼ାଏ ଭୁଲ ହେଲା କମିତି ? ତାକୁ କଣ ଏତେ ଗୁଡ଼ାଏ ଅଧିକାର ମୃଦୁଳା ଦେବୀ ଦେଇଥିଲେ ପରୀକ୍ଷା କରିବା ଲାଗି । ତାର ଦଶା ତେବେ କଣ ହେବ ବର୍ତ୍ତମାନ ?

କାମିନୀର ଅବସ୍ଥାକୁ ତଳତଳାନ୍ତ କରି ମୃଦୁଳା ଦେବୀ ପୁଣି କହିଲେ—

"ହେଇ ନିଅ ତମର ଅଭିରାମକୁ । ବଦମାସ୍ ପୁଲିସର ଗୋଇନ୍ଦା ହୋଇ ପଶିଥିଲା ଆମ ଭିତରେ । ଏଇ ବିଶ୍ୱାସଘାତକକୁ ତମେ ପୁଣି ବିବାହ କରିଥାନ୍ତ କାମିନୀ ? କିନ୍ତୁ ତା ଆଗରୁ ମତେ ସବୁ ଫଇସଲା କରିଦେବାକୁ ହେଇଚି ।"

ଏହି କଥା କହି ଟେବୁଲ ଉପରେ ଗ୍ଲେଜ ଫଟୋ ଖଣ୍ଡିଏ ପକେଇ ଦେଲେ ମୃଦୁଳା ଦେବୀ । ଥରି ଥରି କାମିନୀ ଦେଖିଲା । ଅଭିରାମର ଛାତିରେ ରିଭଲ୍‌ଭର୍‌ର ଗୁଳି ବାଜିଛି । ପ୍ରାଣ ହରାଇ ଗୋଟିଏ କେଉଁ ଅଜଣା ପଡ଼ିଆ ଭିତରେ ପଡ଼ିଛି ସେ । ଆଉ କିଛି ଭାବି ନ ପାରି ନିଜର ଚୌକିରୁ ଖସି ପଡ଼ି କୁମାରୀ ଉତ୍ତରସିଂଙ୍କ ଗୋଡ଼ ଧରି ପଡ଼ି ରହିଲା କାମିନୀ । ଏଥିରେ ବିଚଳିତା ନ ହୋଇ କରି କରି ହେଇ ହସି ଉଠିଲେ ମୃଦୁଳା ଦେବୀ ।

କୁମାରୀ ମୃଦୁଳା ଉତ୍ତରସିଂଙ୍କ ହାତ ବାଜି ଟେବୁଲ ଉପରେ ଥିବା ଡାକିବା ଘଣ୍ଟି ଟାଂ ଟାଂ ହୋଇ ବାଜି ଉଠିଲା । ଘଣ୍ଟିର ଶବ୍ଦ ଶୁଣି ସେଠାରେ ଜଣେ ବୟସ୍କା ସ୍ତ୍ରୀ ଲୋକ ଆସି ପହଞ୍ଚିଲା । ସ୍ତ୍ରୀ ଲୋକଟିକୁ ଉଦ୍ଦେଶ୍ୟ କରି କୁମାରୀ ମୃଦୁଳା କହିଲେ, "ସୁପ୍ରୀତିକି ଡାକି ଦିଅ । ଆଉ ହେଇ, ଏଇ କାମିନୀ ଦେବୀଙ୍କୁ ଏଠୁ ନେଇ ଯାଅ । ତାଙ୍କର ବିଶ୍ରାମ ପାଇଁ ଭଲ ଭାବରେ ସୁବିଧା କରି ଦେବ ।"

ବୟସ କୋଡ଼ିଏ ଭିତରେ ଜଣେ ସୁନ୍ଦରୀ ଯୁବତୀ ଆସି ବୈଠକଖାନାରେ ପହଞ୍ଚିଲା । କାମିନୀକୁ ଟେବୁଲ ତଳୁ ସେହି ବୟସ୍କା ସ୍ତ୍ରୀ ଲୋକଟି ଉଠାଇ ନେବା ପାଇଁ ଚେଷ୍ଟା କରୁଛି । ମୃଦୁଳା ଦେବୀ ହାତ ଦେଖାଇ ଦେଇ ପାଖ ଚେୟାର୍‌ରେ ସୁପ୍ରୀତିକି ବସିବା ପାଇଁ ନିର୍ଦ୍ଦେଶ ଦେଲେ ।

"ଆଉ ମୋଟେ ପାଞ୍ଚ ମିନିଟ୍ ସୁପ୍ରୀତି । ସେଇ ମାରୁଆଡ଼ି ଟୋକା କେଶୋରିମଲ ଠିକ୍ ୯ଟାରେ ଆସି ପହଞ୍ଚିବ । ତା'ଠୁ କୋଡ଼ିଏ ହଜାର ଟଙ୍କାର ଗୋଟାଏ ମୋଟା ଚେକ୍ ଲେଖାଇ ନେବା ମୋର କାମ । ଆଉ ତମେ କଣ କରିବ କହିଲ ?"

"ଯାହା ଆଦେଶ ହେବ !"

"ପାରିବ ତ ?"

"ନ ପାରିବାର ପ୍ରଶ୍ନ ଉଠୁଛି କାହିଁକି !"

ସୁପ୍ରୀତିର ଏଇ କଥାରେ ଖୁସି ହୋଇ ତାର ହାତକୁ ଜୋରରେ ହଲାଇ ଦେଲେ ମୃଦୁଳା ଦେବୀ । ତାହାପରେ ଆଗର କାଚ୍ଛ ଘଡ଼ିକୁ ଚାହିଁ ଚାହିଁ ଗୋଟି ଗୋଟି କରି କହିଲେ—

"ମିଷ୍ଟର କେଦାରଡ଼ମଲ ହାତରେ ଗୋଟାଏ ଦାମିକା ହୀରା ମୁଦି ଅଛି, ସେଇଟା; ହଁ ସବୁଠାରୁ ବଡ଼ କଥା ତାର ହାତଘଡ଼ିଟା । ଘଡ଼ିଟା ହୁଏତ ସାଧାରଣ, କିନ୍ତୁ ତାର ପଛ କଭରରେ ମୋତି ବେଗମ୍‌ର ଫଟୋ ଅଛି । ସେଥିଲାଗି ସେଇ ଘଡ଼ିଟା ନିହାତି ଦରକାର, ବୁଝିଲ !"

"ମୋତି ବେଗମ୍ ?"

ସୁପ୍ରୀତିର ଏ ପ୍ରଶ୍ନ ଶୁଣି ତାର ମୁହଁକୁ ଚାହିଁଲେ କୁମାରୀ ଉତ୍ତରସିଂ । ଅପୂର୍ବ ଖଣ୍ଡେ ହସ ଖେଳେଇ ଦେଲେ ମୁହଁରେ । ହସି ହସି ସେ କହିଲେ—

"କଲିକତା ମୋତି ମଞ୍ଜିଲର ମାଲିକନ୍ । ଅତି ବିଶାଳ ସଂପତ୍ତିର ମାଲିକ । ସେହି ମୋତି ବେଗମ୍ ପ୍ରେମରେ ପଡ଼ିଛି ଏହି କେଦାରଡ଼ମଲ ସାଙ୍ଗରେ । କଲିକତାର ବଡ଼ ବାରିଷ୍ଟର ଉସମାନ ଇମାମ୍‌ଙ୍କୁ ବିଧିପୂର୍ବ ପତି ରୂପେ ବରଣ କରିବା ପରେ ମୋତି ବେଗମ୍ ଜାଣି ପାରିଲା ଯେ, ବାରିଷ୍ଟର ଇମାମ୍ ପ୍ରାଣ ବିକିଛନ୍ତି, ଚିତ୍ପୁର ରୋଡ଼ର ଗୋଟିଏ ବେଶ୍ୟା ନୟନତାରା ପାଖରେ । ମୋତି ମଞ୍ଜିଲ୍‌ର ଫାଟକ ଖୋଲିଛି କେଦାରଡ଼ମଲ ପାଇଁ । କିନ୍ତୁ ଏପର୍ଯ୍ୟନ୍ତ ମୋତି ବେଗମ୍ ଉପରେ ଉସ୍‌ମାନ ଇମାମ୍‌ଙ୍କର ସ୍ତ୍ରୀର ଦାବୀ ପୂରାପୂରି ରହିଛି ।" ଏତିକ କହି ହସି ଉଠିଲେ କୁମାରୀ ମୃଦୁଳା । ଥରେ ସୁପ୍ରୀତି ଉପରେ ଆଖି ପକେଇ ପ୍ରଶ୍ନ କରିବା ଭଙ୍ଗିରେ ପୁଣି କହିଲେ —

"କହିଲ ଦେଖି, ମୋତି ବେଗମ୍ ନା ଏହି କେଦାରଡ଼ମଲଙ୍କୁ ଜବତ କଲେ ଆମର ଉଦ୍ଦେଶ୍ୟ ହାସଲ ହେବ ।"

"ଆମର ଉଦ୍ଦେଶ୍ୟ ?"

"ଗୋଟେ ଫିଲମ୍ କମ୍ପାନୀ ଗଢ଼ିବା ପାଇଁ ଏଇ କେଦାରଡ଼ମଲର ଝୁଙ୍କ ଉଠିଛି ବର୍ତ୍ତମାନ । ତା ବାଦ ଗୋଟେ ଚଟକଳ ବସାଇବା ପାଇଁ ସେ ମୋର ଆଶ୍ରା ଧରିଛି । ଏଇ କେଦାରଡ଼ମଲ ପ୍ରାୟ କୋଟିଏ ଟଙ୍କାର ଅଧିକାରୀ । ବାଡ଼ରେ ଗଛ ଲଗେଇଥିଲି ପରି ଏଇ ଟଙ୍କାଗୁଡ଼ା ବଢ଼ି ଉଠିଛି ତା' ଘରେ । ତା' ଠଉଁ କେତେ ଆଦାୟ କଲେ ଆମର ଉଦ୍ଦେଶ୍ୟ ହାସଲ ହେବ—"

କହି କହି ମୃଦୁଳା ଦେବୀ କଣ ଭାବିବାରେ ମନ ଦେଲେ । ଏତିକବେଳେ ଧୀର ସ୍ୱରରେ ସୁପ୍ରୀତି ପୁଣି କହିଲା—

"ଆମର ଉଦ୍ଦେଶ୍ୟ ?"

ସୁପ୍ରୀତିର ଏ କଥାରେ କାନ ନ ଦେଇ, କୁମାରୀ ଉତ୍ତରସିଂ ଆପେ ଆପେ କହି ଉଠିଲେ—

"ନଗଦ ଦଶଲକ୍ଷ ଟଙ୍କା ଆମର ଦରକାର । ଚଟକଳ ପାଇଁ କେଦାରଡ଼ମଲର ହୁଏତ ତିନିଲକ୍ଷରୁ ଚାରିଲକ୍ଷ ଟଙ୍କା ଲାଗିବ । ଆଉ ଫିଲ୍‌ମ କଂପାନୀ ପାଇଁ ହୁଏତ ଦଶଲକ୍ଷ । ଏଥିଲାଗି ମତେ ଦଶଲକ୍ଷ ଟଙ୍କା କଳାପୋତା ଦେବ କେଦାରଡ଼ମଲ୍ !"

ଆପେ ଆପେ ହସି ଉଠିଲେ ମୃଦୁଳା ଦେବୀ । ତାର ଭିତରେ ସୁପ୍ରୀତ ପୁଣି ପ୍ରଶ୍ନ କଲା "ଆମର ଉଦ୍ଦେଶ୍ୟ କଣ କୁମାରୀ ସାହେବ ?"

ସୁପ୍ରୀତର କୌଣସି କଥା ନ ଶୁଣି ଖୁବ୍ ଉଚ୍ଚ ସ୍ୱରରେ କହି ଉଠିଲେ ମୃଦୁଳା—

"ମୋତିବେଗମ୍ ସୁପ୍ରୀତ, ମୋତିବେଗମ୍ । ମୋତିବେଗମ୍‌ର କେଶଟା ହାତକୁ ନେବାକୁ ହେବ । ଜାଣିଲ ସୁପ୍ରୀତ, ସେଇ ହୀରାମୁଦି କଥାଟା ଛାଡ଼ି ଦିଅ, କେରୋଡ଼ିମଲର ହାତଘଡ଼ିଟା ତମକୁ ଆଜ ହାତ କରିବାକୁ ହେବ ଯେ କୌଣସି ମତେ ।"

"ତାହେଲେ ମ୍ୟୁଜିକ୍ କ୍ଲାସ ଆରମ୍ଭ କରି ଦେଉଛ ?"

"ହଁ, ଖୁବ୍ ଜମକରେ । ଯେମିତି କେରୋଡ଼ିମଲ ଆଜ ଅଟକି ରହିବ ସେଠି ।"

ନ'ଟା ବାଜିବାକୁ ଆଉ ପ୍ରାୟ ତିନିମିନଟ୍ ବାକି । ଏତିକିବେଳେ ଉପର ମହଲରେ ତରୁଣୀ କଣ୍ଠର କଳନାଦ ସହିତ ସଙ୍ଗୀତର ମୃଦୁ ହିଲ୍ଲୋଳ ପବନରେ ଘୂରି ବୁଲିବାକୁ ଲାଗିଲା ।

॥ ୩ ॥

ଠିକ୍ ନ'ଟା ବେଳେ "କୁମାରୀ ଭିଲ୍ଲା"ର ବାହାର ହତା ଭିତରେ ଗୋଟିଏ ମଟର ଆସି ପହଞ୍ଚିଲା । ଭିତର ଫାଟକର ଦରୱାନ ଗୁର୍ଖା ଟୋକା ବୈଠକଖାନାର ଟେବୁଲ ଉପରେ ଖଣ୍ଡେ କାର୍ଡ଼ ଥୋଇ ଗୋଟିଏ ସଲାମ୍ ବଜାଇ ଛିଡ଼ା ହେଲା । କୁମାରୀ ଉତ୍ତରସିଂଙ୍କ ଟେବୁଲ ଉପର କଲ ବେଲଟା ବାଜି ଉଠିଲା ଟିଂ ଟିଂ ହେଇ । ସେହି ଶବ୍ଦ ପବନରେ ମିଳେଇ ଯିବା ଆଗରୁ ଅତି ସୁସଜ୍ଜିତା ବେଶରେ ସେଠାରେ ପହଞ୍ଚିଲା ଆସି କାମିନୀ । କାମିନୀକୁ ଦେଖି ଚମକି ପଡ଼ିଲେ ମୃଦୁଳାଦେବୀ । କଣ୍ଠରୁ ତାଙ୍କର ଆପେ ଆପେ ବାହାରି ପଡ଼ିଲା—

"ତୁମେ !"

"ହଁ, କୁମାରୀ ସାହେବ, ଆଜ କେରୋଡ଼ିମଲଙ୍କ ଅଭ୍ୟର୍ଥନା କରିବା ଭାର ଥିଲା ମୋ ଉପରେ—"

ମୃଦୁଳା ଦେବୀ ଖୁବ୍ ରାଗି ଯାଇ କହିଲେ –

"ସେ ପ୍ରୋଗ୍ରାମ ବଦଳି ଯାଇଛି ପାଞ୍ଚ ମିନଟ୍ ଆଗରୁ । ତମେ ଚାଲିଯାଅ କାମିନୀ, ମତେ ତାହାର ବଦଳର ପାଇଁ ସୁବିଧା ଦିଅ । ଅବାଧ ହୋଇ କିଛି କରିବାକୁ ଚେଷ୍ଟାକଲେ ତମକୁ ଶାସ୍ତି ଭୋଗ କରିବାକୁ ହେବ ।"

ଚମକି ଉଠିଲା କାମିମା । ଶାସ୍ତି କଥାରେ ତା ଆଗରେ ଭାସି ଉଠିଲା ଭୂଇଁତଳର ସେଇ ଅନ୍ଧକାର କୋଠରୀଟା । ସେ ଶିହରି ଉଠିଲା । ତାହା ପରେ ବୁଲିପଡ଼ି ସେ ଚିତ୍କାର କରି କହିଲା—

"ମତେ ଶାସ୍ତି ଦେବେ କୁମାରୀ ଉତ୍ତରସିଂ ?"

ଏହା କହି ସେ ଟେବୁଲ ଉପରେ ସନ୍ତୃଷ୍ଟ ଚାହାଣି ବୁଲେଇ ନେଲା । ସେତେବେଳକୁ ଟେବୁଲ ଉପରୁ ଆଗର ସମସ୍ତ ଜିନିଷ ଅନ୍ତର୍ଦ୍ଧାନ ହୋଇ ସାରିଛି । କାମିମାର ଚାହାଣିର ସେହି ସନ୍ତୃଷ୍ଟତା ଲକ୍ଷ୍ୟ କରି ମୃଦୁଲା ଦେବୀ ହସି ହସି କହିଲେ, "ଲଭଲଭର ଖୋଜୁଚି କାମିମା, ମତେ ଶାସ୍ତି ଦେବ ଅଭିରାମର ମୃତ୍ୟୁ ପାଇଁ ?"

ପାଖକୁ ଲାଗି ଆସି ଖୁବ ନରମ ସ୍ୱରରେ କହିଲା କାମିମା—

"ମତେ ଭୁଲ ବୁଝନା କୁମାରୀ ସାହେବ । ଆପଣଙ୍କଠାରୁ ମୁଁ ଅଗ୍ନିମନ୍ତ୍ରର ଦୀକ୍ଷା ନେଇଛି । ସେହି ବିଶ୍ୱାସଘାତକ ଯୁବକଟା ସକାଶେ ହୁଏତ ମୁଁ ଦାୟୀ । କିନ୍ତୁ ସେ ସବୁ ପରର କଥା; ବର୍ତ୍ତମାନ ସୁପ୍ରୀତି ବିଶ୍ୱାସଘାତକତା କରିବାକୁ ଚେଷ୍ଟା କରୁଛି, ସେଥିଲାଗି ମୁଁ ମୋର ପୂର୍ବ ଅଧିକାର ଓ କ୍ଷମତାରେ ସୁପ୍ରୀତିର ଏନ୍‌ଗେଜ୍‌ମେଣ୍ଟକୁ ରଦ୍ଦ କରି ଦେଇ ନିଜେ ଆସିଛି କେରୋଡ଼ିମଲଙ୍କର ଅଭ୍ୟର୍ଥନା କରିବା ପାଇଁ । ଆଗର ସେଇ କାଗଜପତ୍ର ଗୁଡ଼ାକ କାଲେ ଟେବୁଲ ଉପରେ ପଡ଼ି ରହିଥିବ ସେଥିପାଇଁ ଟେବୁଲ ଉପରେ ଥରେ ମୁଁ ଆଖି ବୁଲେଇ ନଉଥିଲି । ମୁଁ ଯାଏଁ, କେରୋଡ଼ିମଲଙ୍କ ଆସିବାରେ ଡେରି ହେଇ ଯାଉଚି କୁମାରୀ ସାହେବ !"

ହଠାତ୍ ଚଉକିରୁ ଉଠି ପଡ଼ି କାମମାର ଯିବାରେ ବାଧା ଦେଇ କୁମାରୀ ଉତ୍ତରସିଂ ଛିଡ଼ା ହେଲେ ଆଗରେ । କାମିମା ନୀରବରେ ଭିତରକୁ ଫେରିଗଲା । ପର ମୁହୂର୍ତ୍ତରେ ହସି ହସି ବୈଠକଖାନାରେ ସୁପ୍ରୀତି ପହଞ୍ଚିଲା । ଭିତରକୁ ଫେରିଗଲାବେଳେ କାମିମା ମୃଦୁଲାଦେବୀଙ୍କ କଥା ଶୁଣିବାକୁ ପାଇଲା – "ମୋତେ ମଧ ଭୁଲ ବୁଝନା କାମିମା ! ସୁପ୍ରୀତିର ସବୁ କଥା ମୁଁ ଜାଣେ ।"

କେରୋଡ଼ିମଲ ଆସିଲେ । ଆସିବାରେ ଯେଉଁ ଦୁଇମିନିଟ ସମୟ ଡେରି କରାଇ ଦିଆଗଲା ତାହାର କ୍ଷତିପୂରଣ ଦେଇ ସୁପ୍ରୀତି ତାହାର ଲୋଭନୀୟ କୋଳରେ କେରୋଡ଼ିମଲଙ୍କୁ ବନ୍ଦୀ କରି ଘେନି ଆସିଛି । ଏହି ମାରୁଆଡ଼ୀ ଯୁବକର ବୟସ ତିରିଶ ବର୍ଷରୁ ବେଶି ହେବନି । ଦେହଟି ପୃଥୁଳ ହେଲେ ମଧ ଚେହେରାରେ କମନୀୟତା ଅଛି । ବେଶଭୂଷାରେ ଖାନଦାନି ଫୁଟି ଉଠିଛି । ସୁପ୍ରୀତିର କୋଳ ଭିତରେ ଯୁବକଟି ସେମିତି ବେଶ୍ ଆରାମ ଅନୁଭବ କରି ପାରୁଛି । ହସ ହସ ହୋଇ ସେ ଦୂରରୁ ମିସ୍ ଉତ୍ତରସିଂଙ୍କ ଉଦ୍ଦେଶ୍ୟରେ ସଶବ୍ଦରେ ନମସ୍କାର କରି ଉଠିଲେ । ମିସ୍ ଉତ୍ତରସିଂ ମଧ ଆଗକୁ ଚାଲିଯାଇ କେରୋଡ଼ିମଲଙ୍କ କରମର୍ଦ୍ଦନ ପାଇଁ ନିଜର ହାତ ବଢ଼ାଇଦେଲେ । ଉଭୟଙ୍କର ହାତ ସୁନ୍ଦର ଆଉ କଅଁଳ । ଦୁଇଟି କଅଁଳ ହାତର ପୀଡ଼ନ ସୁଖକର ହୁଏ କି ନାହିଁ ତାହା ସେହି କେରୋଡ଼ିମଲ ଓ ମୃଦୁଲା ଉତ୍ତରସିଂ ଜାଣିଥିବେ ।

ବୈଠକଖାନାରେ କେଗ୍ରେଡ଼ମଲଙ୍କ ପାଇଁ ଗୋଟିଏ ଅଲଗା ଚୌକି ବନ୍ଦୋବସ୍ତ କରାଯାଇଥିଲା । ସେହି ଚୌକିରେ କେଗ୍ରେଡ଼ମଲଙ୍କୁ ବସାଇ ଦେଇ ଦେଇ ସୁପ୍ରୀତି ସେହି ଭଦ୍ରଲୋକଟିର ପୃଥୁଳ ପେଟ ଉପରେ ଝୁଲି ପଡ଼ିଲା । ସୁନ୍ଦରୀ ସୁପ୍ରୀତିର ଗୁଣ୍ଡ ଆଉ କେଗ୍ରେଡ଼ମଲର ଉଦରାଂଶ ଭିତରେ ବ୍ୟବଧାନର କୌଣସି ସୀମା ନ ଥିଲା ପରି ଜଣାଯାଉଥାଏ । ହୁଏତ ସୁପ୍ରୀତିର ମୁହଁଟା ଲାଗିଯାଇଛି ଯୁବକର ଗୁଣ୍ଡରେ । କେଗ୍ରେଡ଼ମଲ ଆନନ୍ଦରେ ନିର୍ବାକ୍ । ଗୁଣ୍ଡଟା ତାଙ୍କର ଉଠୁଛି ପଡ଼ୁଛି ଯେମିତି ।

କିଛି ସମୟ ପରେ ନିଜକୁ ସମ୍ଭାଳି ନେଇ କେଗ୍ରେଡ଼ମଲ ଆସ୍ତେ ଆସ୍ତେ କହିଲେ, "ଖୁବ୍ ଆଚ୍ଛା ଜାଏଗା ।" ଉପରମହଲରୁ ସଙ୍ଗୀତର ସ୍ୱର ଝଙ୍କାର ଭାସି ଆସୁଛି । କେଗ୍ରେଡ଼ମଲ ଟିକେ ଅନ୍ୟମନସ୍କ ହେଲେ । ସୁପ୍ରୀତି ସେତେବେଳକୁ କେଗ୍ରେଡ଼ମଲଙ୍କ ସ୍ଥୂଳକାୟ ଦେହ ଉପରୁ ନିଜକୁ ଉଠେଇ ସାରିଚି । ତାହାର ମୁହଁ ଉପରେ କେଗ୍ରେଡ଼-ମଲଙ୍କ ଆଖି ହଜି ଯାଇଛି । ନିଜର ସୌନ୍ଦର୍ଯ୍ୟ ଆହାର କରିବା ପାଇଁ ମାରୁଆଡ଼ୀଟିକୁ ବେଶି ସମୟ ସୁବିଧା ନ ଦେଇ ଦେହର ଝିଲ୍‌ମିଲ ସବୁଜ ଶାଢ଼ୀର ପଣତ ଉଡ଼ାଇ ସୁପ୍ରୀତି ଚାଲିଗଲା ଭିତରକୁ । କଠୋର ଗମ୍ଭୀରତା ଫୁଟି ଉଠୁଛି କୁମାରୀ ଉତ୍ତରସିଂଙ୍କ ମୁହଁରେ । ଯେମିତି ସେ ଜଣେ ବାଦଶାହାର କନ୍ୟା । ସେ ସେତେବେଳକୁ ଭଲ ଭାବରେ ଜାଣିଲେଣି, ହାବ ମୁଦ୍ରର କାମ ହାସଲ କରି ନେଇଚି ସୁପ୍ରୀତି । କାମିନୀ ଏହି ସମୟ ଭିତରେ ଏତକ କରି ପାରିଥାନ୍ତା କି ନାହିଁ ସେଇ କଥାକୁ ସେ ମନେ ମନେ ତୁଳନା କରିନେଲେ ।

ଗୋଟିଏ ରୂପାର ସୁନାଝଲେଇ ଥାଳିଆରେ ପାନ ଆଉ ସିଗାରେଟ୍ ଥୋଇ ଦେଇଗଲା ପରିଚାରିକା, ପୂର୍ବର ସେହି ବୟସ୍କା ସ୍ତ୍ରୀ ଲୋକଟି । ଥାଳିଆରୁ ଖଣ୍ଡେ ପାନ ଉଠେଇ ତାହାର ସୁନେଲି ତବକ ଗୃପୁ ଗୃପୁ ମିଷ୍ଟିର କେଗ୍ରେଡ଼ମଲ କହିଲେ—

"ଆପଣଙ୍କର ଟଙ୍କା ଦରକାର ଥିଲା ବୋଲି କହୁଥିଲେ ଅନେକ ଦିନୁ । ଯା'ଭିତରେ ମୁଁ ଗୋଟାଏ କାମରେ ଲକ୍ଷ୍ନୌ ଚାଲି ଯାଇଥିବାରୁ ସେଥିରେ ଡେରି ହୋଇ ଯାଇଛି । ଆଚ୍ଛା, ଆପଣଙ୍କ ଇଚ୍ଛା ଅନୁସାରେ କେତେ ଟଙ୍କା ନେଇ ନିଅନ୍ତୁ ଆଜ ।...ହଁ, ଫିଲ୍‌ମ କମ୍ପାନୀର ନାଁ' କଣ ଦେବାକୁ ହବ ଜାଣିଛନ୍ତି ନା ?"

କହୁ କହୁ ସେରଓ୍ୱାନିର ଭିତର ପକେଟରୁ ଚେକ୍ ବହିଟା କାଢ଼ି କେଗ୍ରେଡ଼ମଲ ଟେବୁଲ ଉପରେ ରଖିଲେ । ତା'ପରେ ବହିର ମଲାଟ ନେଉଟେଇ ଖଣ୍ଡେ ଚେକ୍‌ରେ ନିଜର ଦସ୍ତଖତ କରି ସେ ଅନେଇଲେ ମୃଦୁଳାଙ୍କ ମୁହଁକୁ । ସେ ମୁହଁରେ ଲୋଭ କିମ୍ବା ଆସକ୍ତିର ଚିହ୍ନ ଯେମିତି ନାହିଁ । ମାରବତା ଭାଙ୍ଗି ଧୀରେ ଧୀରେ ମୃଦୁଳା ଦେବୀ କହିଲେ—

"ଅନେକ ଗୁଡ଼ଏ ଝିଅ ମୁଁ ଆପଣଙ୍କ କମ୍ପାନୀ ପାଇଁ ଯୋଗାଡ଼ କରି ସାରିଛି—ଆଜ ସେମାନଙ୍କ ଭିତରୁ କେତେକଙ୍କୁ ଆପଣ ଏଠି ଦେଖି ପାରିବେ । ସେମାନଙ୍କୁ ମୁଁ ବର୍ତ୍ତମାନ ଏଠି ସଙ୍ଗୀତ ଆଉ ଅଭିନୟର ପ୍ରାଥମିକ ଶିକ୍ଷା ଦେଉଛି ।"

କେଶୋରିମଲ ଉତ୍ସାହିତ ହୋଇ କହିଲେ—

"ଏତେଦୂର ଗଲେଣି ଆପଣ ? ଆରେ, ଆପଣ ମୋର କମ୍ପାନୀ ବୋଲି କଣ କହିଲେ ଯେ ! ମୁଁ ଠିକ୍ କରିଛି ଫିଲ୍ମ କମ୍ପାନୀର ନାଁ ରହିବ 'ମୃଦୁଳା ମୋଶନ୍‌ଟୋନ୍,' ଖାସ୍ ଆପଣଙ୍କର କମ୍ପାନୀ ଏଇଟା । ମୁଁ ଆପଣଙ୍କୁ କେତେ ପସନ୍ଦ କରେ ଆପଣ ବୋଧହୁଏ ଜାଣନ୍ତି ନି ମିସ୍ ସାହେବ ! ଏଇ ଓଡ଼ିଶାରେ ଆପଣ ଜଣେ ଅଦ୍ୱିତୀୟା ନାରୀ ।"

ମାରୁଆଡ଼ୀ ଭଦ୍ରଲୋକର ଏତେଗୁଡ଼ାଏ କଥା ଶୁଣି କୁମାରୀ ଶ୍ରୀମତୀ ମୃଦୁଳା ଉତ୍ତରସିଂ ଖୁସି ହେବାକୁ ଯାଇ ମୁହଁରେ ହସ ଫୁଟାଇବାକୁ ଚେଷ୍ଟା କଲେ । ଗୋଟାଏ ଅର୍ଥଲୋଭୀ ରକ୍ତଶୋଷକ ମାରୁଆଡ଼ୀ ଯୁବକ ମୁହଁରେ ତାଙ୍କର ପ୍ରଶଂସା, ଯାହାର ଲୋଭମୟ ହାତମୁଠା ଭିତରେ ପ୍ରଦେଶର ବଡ଼ ବଡ଼ ଅଫିସର ବନ୍ଧା । କୌଣସି ଗୋଟାଏ ଗୁରୁତର ଫାଇଲ୍ ଉପରେ ଇଚ୍ଛା କଲେ ଯିଏ ବିନା ଆୟାସରେ କଲମ ଖଟାଇ ପାରିବ, ତାର ଲାଗି ଏଇ କେଶୋରିମଲ ମୁହଁରୁ ପ୍ରଶଂସା ପାଇବା ଅତି ସାମାନ୍ୟ କଥା । ହଠାତ୍ ଠୋ ଠୋ ହୋଇ ହସିଉଠିଲେ ମୃଦୁଳାଦେବୀ ।

"କିନ୍ତୁ ମୋର ନାଁର ଇଜ୍ଜତ୍ କେତେ ଜାଣନ୍ତି ଶେଠ ସାହେବ୍ !" ହସ ଶେଷରେ କହି ବସିଲେ ମୃଦୁଳା ଦେବୀ । ମୁହଁରେ ଅନାବିଳ ହସ ଲାଗି ରହିଛି । ନେଲ୍ ପଲିଶ ଦିଆ ନାଲି ଟକ୍ ଟକ୍ ନଖ ଆଉ ଚମ୍ପାକଢ଼ୀ ଭଳି ଆଙ୍ଗୁଠି କେତୋଟି ଓଠରେ ବଜେଇବାକୁ ସେ ମଧ୍ୟ ଚେଷ୍ଟାକଲେ । ଗୋଟିଏ ଗ୍ଲେଟ ହୀରା ମୁଦି ଝକ୍ ଝକ୍ କରୁଥାଏ ସେହି ଆଙ୍ଗୁଠି ଭିତରେ ।

ଏହି ଦୃଶ୍ୟରେ ଧନଲୋଭୀ ମାରୁଆଡ଼ୀ ଯୁବକ ଆଖିରେ ରୂପର ନିଶା ଘାରି ଉଠିଲା । ସେ ଅଧୀର ହୋଇ କହି ପକେଇଲା, "ପାଞ୍ଚ ଲାଖ୍ ଟଙ୍କା ।"

"ଜ୍ୟାଦା ଭି ତୋ ହୋଗା" କହି ଖୁବ୍ ଜୋରରେ ହସିବାକୁ ଲାଗିଲେ କୁମାରୀ ଉତ୍ତରସିଂ । କେଶୋରିମଲ୍ ପୁଣି କହିବାକୁ ଲାଗିଲା, "ଜ୍ୟାଦା ନ ହେବାର କାରଣ କିଛି ନାହିଁ । କମ୍ପାନୀଟା ତ ଆପଣଙ୍କର ବୋଲି ମୁଁ ଆଗରୁ କହିଛି । ଆପଣ କମ୍ପାନୀଟା ଆଗେ ଚାଲୁ କରି ଦିଅନ୍ତୁ, ତାପରେ ଦେଖିବେ ।"

ଆହୁରି ତାନେ ହସି ଉଠିଲେ ମୃଦୁଳା ଦେବୀ । ସେ ମନେ ମନେ ଭାବିଲେ, ମାରୁଆଡ଼ୀ ମତେ ବୁଦ୍ଧି ଶିଖେଉଛି ଆସି ।

ଏହି ସମୟରେ ଯୁବତୀ କଣ୍ଠର ମଧୁର ସଙ୍ଗୀତ ଉପର ମହଲରୁ ଝରି ପଡ଼ିବାକୁ ଲାଗିଲା । ସବୁ କଥା ଭୁଲି କେଶୋରିମଲ ସେହି ଆଡକୁ କାନ ଡେରି ରହିଲେ । ଅଳ୍ପ ସମୟ ପରେ ମୃଦୁଳା ଦେବୀଙ୍କ ହାତର ସ୍ପର୍ଶ ବାଜିଲା ତାଙ୍କ ଦେହରେ । ମୃଦୁଳ ଦେବୀ ଠିଆ ହୋଇପଡ଼ି କହିଲେ—

"ଆସନ୍ତୁ ଉପରକୁ ଯିବା ଶେଠ୍ ସାହେବ !"

ଚେକ୍‌ଟା ଦସ୍ତଖତ୍ ହୋଇ ଟେବୁଲ ଉପରେ ପଡ଼ିରହିଛି । ସେ କଥା ଭୁଲିଯାଇ କୁମାରୀ ଉତ୍ତରସିଂହଙ୍କ କୁହୁକ ଆକର୍ଷଣରେ ତାଙ୍କ ପଛେ ପଛେ ଉପରମହଲା ଆଡ଼କୁ ଚାଲିଗଲେ କେଶୋରିମଲ୍ ।

ଉପରମହଲରେ ପହଞ୍ଚି କେରୋଡ଼ିମଲ ବିସ୍ମୟସାଗରରେ ବୁଡ଼ିଗଲେ । ଘରଆଡ଼େ ସୁନ୍ଦରୀ ଯୁବତୀର ଗୁଡ଼ାଏ ଚନ୍ଦ୍ରମୁଖ ଘରଟିକୁ ଉଜ୍ଜ୍ୱଳ କରି ଦେଇଛି । ସେମାନଙ୍କ କଣ୍ଠର ବୀଣାଜିଣା ସ୍ୱର ମନରେ ମହକ ଲଗାଇ ଦେଉଛି । ଏହି ସବୁ ଦେଖିଶୁଣି, ଆନନ୍ଦରେ ଗଦଗଦ ହୋଇ ନିଜର ମୋଟା ବୁଦ୍ଧିରେ କେରୋଡ଼ିମଲ ବତିପାଟି କରି କହି ଉଠିଲେ, "ଜୟ ମୃଦୁଳା ମୋଭିଟନ୍ କି ଜୟ ।"

କେରୋଡ଼ିମଲଙ୍କ ଏହିପରି ଢଙ୍ଗ ଦେଖି ଚପଳ ଯୁବତୀ ଗୁଡ଼ିକ ଏକ ସଙ୍ଗରେ ଉଚ୍ଚସ୍ୱରରେ କଳ କଳ ହୋଇ ହସି ଉଠିଲେ । ଏଥିରେ କେରୋଡ଼ିମଲ ଆହୁରି ବିଚଳିତ ହୋଇ ନାଥୁକିନି ଗୋଟିଏ ଉଚ୍ଚ ଗଦିଅଣ୍ଟା ସୋଫାରେ ବସି ପଡ଼ିଲେ । ପାଖରେ ବସିଲେ ମୃଦୁଳା ଦେବୀ ।

ସଙ୍ଗୀତ ଓ ନୃତ୍ୟ ଲୀଳାର ମଝିରେ ସୁପ୍ରୀତ କେରୋଡ଼ିମଲଙ୍କ ଦେହରେ ଅତର ଢାଳି ଦେଇଗଲି । ନାକରେ ନିକେ ଭଲ କରି ମାରି ଦେଲି ଅଡ଼କଟୁ ବାସନାର ଅତର । କେରୋଡ଼ିମଲ କିଛି ବୁଝିପାରିଲେ ନାହିଁ । ଅତରର ବାସନା ଅନୁଭବ କରୁଥିଲେ ମଧ୍ୟ ସେ ଦେଖିଲେ ତାଙ୍କର ଚେତା ହଜି ହଜି ଯାଉଚି । କିଛି ସମୟ ପରେ ସେ ସେଇ ସୋଫାରେ ଆଖିବୁଜି ଚେତା ହଜାଇ ଦେଇ ଶୋଇ ପଡ଼ିଲେ । ମୃଦୁଳା ଦେବୀଙ୍କ ଆଖିର ସଙ୍କେତରେ କିଛି ସମୟପରେ ନୃତ୍ୟ ଗୀତ ବନ୍ଦ ହେଲା । ଘରଟିକୁ ସଂପୂର୍ଣ୍ଣରୂପେ ଖାଲିକରି ଯୁବତୀଗୁଡ଼ିକ ସେଠାରୁ ଗୋଟି ଗୋଟି ହୋଇ ବାହାରିଗଲେ ।

ପ୍ରାୟ ଘଣ୍ଟାକ ପରେ କେରୋଡ଼ିମଲଙ୍କ ଆଖି ଫିଟିଲା । ମୃଦୁଳା ଦେବୀଙ୍କ ସହିତ ତଳ ମହଲାର ବୈଠକଖାନାରେ ପହଞ୍ଚି ସେ ଦେଖିଲେ ଟେବୁଲ ଉପରେ ଚେକ୍ ବହିଟା ସେମିତି ପଡ଼ିରହିଛି । ତିରିଶ ହଜାରର ମୋଟା ଗୋଟାଏ ଅଙ୍କ ଲେଖି ଦେଇ ସେ ମୃଦୁଳା ଦେବୀଙ୍କି କହିଲେ –

"ଆଜି ଏତିକି ଗ୍ରହଣ କରନ୍ତୁ ମିସ୍ ସାହେବ !"

ସେହି ଚେକ୍‌ଟା ଯେ ଆଗର ଚେକ୍ ନୁହେଁ ସେକଥା ଆଉ କେରୋଡ଼ିମଲ ଜାଣି ପାରିଲେନାହିଁ । ଚେକ୍‌ର ଦସ୍ତଖତଟା ଯେ ତାଙ୍କର ଖାଣ୍ଟି ଦସ୍ତଖତ ନୁହେଁ ତାହା ମଧ୍ୟ ତାଙ୍କୁ ଜଣା ପଡ଼ିଲା ନାହିଁ । ଆଗରୁ ସେ ଯେଉଁ ଚେକ୍‌ରେ ଦସ୍ତଖତ କରିଥିଲେ ତାହା ଯେ ଏହା ଭିତରେ ପଚିଶ ହଜାର ଟଙ୍କାରେ ପୂରଣ ହୋଇ ବ୍ୟାଙ୍କରୁ ଟଙ୍କା ଅଣା ସରିଛି ତାହା ବି ସେ ଜାଣିବାକୁ ପାଇଲେ ନାହିଁ ।

ଚେକ୍‌ଟା ମୃଦୁଳା ଦେବୀଙ୍କ ହାତକୁ ବଢ଼ାଇ ଦେଇ କେରୋଡ଼ିମଲ ଘରକୁ ଯିବା ପାଇଁ ଚୌକିରୁ ଉଠୁ ଉଠୁ ହେଉଛନ୍ତି ଏ ସମୟରେ ମୃଦୁଳା ଦେବୀ କହିଲେ—

"ଆପଣ ସେତେବେଳେ ଏମିତି ଶୋଇ ପଡ଼ିଲେ ! ଆପଣ କିଛି ଜାଣି ପାରିବେ କି ନାହିଁ ସେ କଥା ପରୀକ୍ଷା କରିବା ଲାଗି ମୁଁ ଆପଣଙ୍କ ହାତ ଘଡ଼ିଟା ଫିଟେଇ ରଖିଥିଲି ।······ଆଚ୍ଛା, ଆପଣ ଏତେ ବଡ଼ ଘଡ଼ିଟା ହାତରେ ବାନ୍ଧନ୍ତି କାହିଁକି ?"

କୁମାରୀ ଉତ୍ତରସିଂହଙ୍କ ଏହି କଥାରେ ଆଗେ ନିଜର ହାତକୁ ଅନେଇଲେ କେରୋଡ଼ମଲ । ହାମିଲା ହାମିଲ୍‌ଟନ ଘଡ଼ିଟା ତାଙ୍କ ହାତରେ ନାହିଁ । ତାହାପରେ ନିଜର ଆଶ୍ଚର୍ଯ୍ୟ ହେବାର ଭାବକୁ ଗୋପନ କରି ସେ କହିଲେ,

"ଘଡ଼ିଟା ତ ସେମିତି ବଡ଼ ନୁହେଁ ମିସ୍ ସାହେବ ! ତେବେ, ବେଶି ଘ୍ରୋଟ ଘଣ୍ଟା ମତେ ଭଲ ଲାଗେନା ।"

ଘଡ଼ିଟା କେମିତି ନିଜ ହାତରେ ଫେରି ପାଇବେ ସେଥିଲାଗି କେରୋଡ଼ମଲ ଭିତରେ ଭିତରେ ବ୍ୟସ୍ତ ହୋଇ ଉଠିଲେଣି । ସେତେବେଳକୁ ମୃଦୁଳା ଦେବୀ ଘଡ଼ିର ପଛ ପଟ ବୁଲାଇ ଦେଖିଲେଣି, ଖୋଲା ଅକ୍ଷରରେ ଲେଖା ଯାଇଛି 'ପାନ୍ନାଲାଲ କେରୋଡ଼ମଲ ।' ତାପରେ ଘଡ଼ିଟା ଅଜାଣତରେ ଫିଟାଇଲା ପରି ସେ ଖୋଲି ଦେଲେ, ପଛ ପଟ କଭର ଭିତରେ ଗୋଟିଏ ପରମା ସୁନ୍ଦରୀ ଯୁବତୀର ଫଟୋ ଅତି ଯତ୍ନର ସହିତ ଛପା ହୋଇଛି । ମୁହଁରୁ ହଠାତ୍ ତାଙ୍କର ବାହାରି ପଡ଼ିଲା—"ମୋତି ବେଗମ୍ ।"

ଅତି ବିଚଳିତ ହୋଇ ନିଜର ଚୌକିରେ କେରୋଡ଼ମଲ ବସି ପଡ଼ିଲେ । ଭିକାରୀ ପରି ହାତ ପତାଇ ସେ ମୃଦୁଳା ଦେବୀଙ୍କୁ କହିଲେ—

"ଅନୁଗ୍ରହ କରି ଘଡ଼ିଟା ମତେ ଫେରେଇ ଦିଅନ୍ତୁ, ମିସ୍ ସାହେବ ! ମୁଁ ଆପଣଙ୍କୁ ଗୋଟେ ଭଲ ଘଡ଼ି ଉପହାର ଦେବି ।"

କ୍ରୋଧରେ ଶତଖଣ୍ଡ ହୋଇ ଗର୍ଜି ଉଠିଲେ ମୃଦୁଳା ଦେବୀ ।

"ମିସ୍‌ସାହେବ କାହାର ଦୟାର ଭିକାରୀ ନୁହେଁ, ମିଷ୍ଟର୍ କେରୋଡ଼ମଲ !"

ଟେବୁଲ ଉପରେ ପଡ଼ିଥିବା ତିରିଶ ହଜାର ଟଙ୍କାର ଚେକଟାକୁ ଚିରି ଚିରି କରି ଫିଙ୍ଗି ଦେଇ ସେ ପୁଣି କହିଲେ—

"କିଛି ଦାନ ଦେଇ ମୃଦୁଳା ଉତ୍ତରସିଂହଙ୍କୁ କିଣି ନେବା ଖୁବ୍ କଷ୍ଟ କେରୋଡ଼ମଲ । ଗୋଟାଏ ଦେଶକୁ ତମେ ଲୁଟ୍ କରି ଲକ୍ଷ ଲକ୍ଷ ନାରୀ ପୁରୁଷଙ୍କୁ ଉଲଗ୍ନ କରିଛ—ସେମାନଙ୍କ ମୁହଁରୁ ଦାନା ଛଡ଼େଇ ନେଇଛ କେରୋଡ଼ମଲ । ବର୍ତ୍ତମାନ ଇଜ୍ଜତ ଲୁଟ୍ କରିବାକୁ ଆରମ୍ଭ କରିଛ ?"

ଏ କଥାରେ ଲକ୍ଷପତି କେରୋଡ଼ମଲ ଅତି ଉତ୍ତେଜିତ ହୋଇ ପଡ଼ିଲେ । ନିଶରେ ହାତ ମାରି ମାରି ସେ କହିଲେ—

"ଦରଜା ଖୋଲା ରଖିଲେ ଲୁଟ୍ ନ କରିବ କିଏ ?"

କ୍ରୁଦ୍ଧ ଉଠି ଛିଡ଼ା ହୋଇ ପଡ଼ିଲେ କୁମାରୀ ଉତ୍ତରସିଂ । ଟେବୁଲ୍‌ର ଡ୍ରୟର ଭିତରୁ ପିସ୍ତଲଟା ବାହାର କରି କେରୋଡ଼ମଲଙ୍କୁ ଲକ୍ଷ୍ୟ କରି ସେ ଗର୍ଜି ଉଠି କହିଲେ—

"ତୁମର ଦରଜା ବର୍ତ୍ତମାନ ମୋ ପାଖରେ ଖୋଲା ହୋଇଛି, କେରୋଡ଼ମଲ ! ସାଫ୍ ସାଫ୍ ବତାଅ, ମୋତି ବେଗମ୍ ସାଙ୍ଗରେ ତମର ସଂପର୍କ କଣ ? ବର୍ତ୍ତମାନ ମୁଁ ତମକୁ ଲୁଟ୍ କରିବ – କେରୋଡ଼ମଲ !"

କେଶୋରୀମଲଙ୍କ ଆଖିରେ ଗୁରୁଦଗ ଅନ୍ଧାର ଦେଖା ଗଲା । ସେ ଆଜ କେଉଁଠି ଆସି ପଡ଼ିଛନ୍ତି କିଛି ଭାବି ପାରିଲେ ନାହିଁ । ଶେଷକୁ ଅତି ନିରୁପାୟ ହୋଇ ତଳର ଗାଲିଚା ଉପରେ ଲମ୍ବ ହୋଇ ପଡ଼ିଯାଇ କରୁଣ କଣ୍ଠରେ କହିଲେ—

"ମତେ ଛାଡ଼ି ଦିଅନ୍ତୁ ମିସ୍ ସାହେବ ! ମୋର ମୋଭିଟୋନ ଦରକାର ନାହିଁ, ଜୁଟ୍ ମିଲ୍ ଦରକାର ନାହିଁ, ମୋର ଜୀବନ ରକ୍ଷା କରନ୍ତୁ ମିସ୍ ସାହେବ, ମୁଁ ଆପଣଙ୍କର ବହୁତ ଉପକାର କରିବି ।"

"ମୋର ଉପକାର କରିବ ତମେ ! ପୁଣି ଦସ୍ୟୁର ଛଳନା ! କାଲିଠାରୁ ତମେ ହେବ ମୋର ପ୍ରଧାନ ଶତ୍ରୁ ।"

ଶେଷକୁ ହସି ଉଠି ମୃଦୁଳା ଦେବୀ କହିଲେ, "ମୋ ସାଙ୍ଗରେ ଶତ୍ରୁତା କରି ତମେ ତମର ଜୀବନ ବରବାଦ୍ କରନା କେଶୋରୀମଲ ! ଆଜ ଉଷମାନ ଇମାମ୍‌ଙ୍କୁ ମୁଁ ଚିଠି ଲେଖି ସବୁ କଥା ଜଣାଇ ଦେବି ଜାଣିଥା ।"

ସେହିପରି ତଳେ ପଡ଼ି କେଶୋରୀମଲ କହିଲେ,

"ମୁଁ ନଗଦ ପାଞ୍ଚଲକ୍ଷ ଟଙ୍କା ଆପଣଙ୍କୁ ଦେବି ମିସ୍ ସାହେବ ! ମତେ ନଷ୍ଟ କରି ଆପଣ ଲକ୍ଷେ ଟଙ୍କା ମଧ୍ୟ ପାଇ ପାରିବେ ନାହିଁ ।

ହୋ ହୋ ହୋଇ ହସି ଉଠିଲେ କୁମାରୀ । ହାତର ପିସ୍ତଲଟା ଦୂରକୁ ଫିଙ୍ଗି ଦେଇ କେଶୋରୀମଲଙ୍କୁ ତଳୁ ଉଠାଇବାର ଚେଷ୍ଟା କଲେ । କେଶୋରୀମଲଙ୍କୁ ଉଠାଉ ଉଠାଉ ସେ କହିଲେ—

"ଜୀବନ ପ୍ରତି ଆପଣଙ୍କର ଏତେ ଭୟ ବୋଲି ମୁଁ ଜାଣି ନ ଥିଲି ଶେଠ ସାହେବ ! ଉଠନ୍ତୁ ଉଠନ୍ତୁ, 'ମୃଦୁଳା ମୋଭିଟୋନ୍' ର ଏଇଟା ପ୍ରଥମ ଅଭିନୟ । କିନ୍ତୁ ଆପଣଙ୍କୁ ଟଙ୍କା ଦେଇ ଦେବାକୁ ହେବ ଆଜ ସନ୍ଧ୍ୟାରେ ।"

କେଶୋରୀମଲ ଉଠି ଥରି ଥରି କହିଲେ—"ଘଡ଼ିଟା ?"

ମୃଦୁଳା ଦେବୀ ଖୁବ୍ ଜୋରେ ହସି ଶେଷରେ କହିଲେ—

"ଅଭିନୟରେ ମୁଁ କେବେଁ ବୋକାର ପାର୍ଟ ନେବି ନାହିଁ, ମିଷ୍ଟର କେଶୋରୀମଲ !"

॥ ୪ ॥

ସତକୁ ସତ, ଦୁଇଦିନ ପରେ କେଶୋରୀମଲ କୁମାରୀ ଉତ୍ତରସିଂଙ୍କର ପ୍ରଧାନ ଶତ୍ରୁ ହୋଇ ଛିଡ଼ା ହେଲେ । ସେ ଦିନର ସନ୍ଧ୍ୟା ଗଡ଼ିଲା, ତାପରେ ଆଉ ଦୁଇଟି ସନ୍ଧ୍ୟା ମଧ୍ୟ ଗଡ଼ିଲା, କିନ୍ତୁ 'କୁମାରୀ ଭିଲ୍ଲା'ରେ କେଶୋରୀମଲଙ୍କ ଦର୍ଶନ ଆଉ ମିଳିଲାନି । ପାଞ୍ଚଲକ୍ଷ ଟଙ୍କା ତ ଦୂରର କଥା, ପାଞ୍ଚହଜାର କି ପାଞ୍ଚଶହ ଟଙ୍କା ମଧ୍ୟ କେଶୋରୀମଲ କୁମାରୀ ଉତ୍ତରସିଂଙ୍କ ପାଖକୁ ପଠାଇଲେ ନାହିଁ ।

ସେଦିନ ପ୍ରାୟ ଦିନ ବାରଟା ସମୟରେ କୁମାରୀ ଉତ୍ତରସିଂ ଦୋମହଲାର ଗୋଟିଏ ଗୁପ୍ତ କୋଠରୀରେ ବସି କାମିନୀ ସାଙ୍ଗରେ ରଙ୍ଗପୁର ରାଜବାଟୀର ନକ୍‌ସା ବିଷୟରେ ମସୁଧା ଚଳାଉଛନ୍ତି । ଆଜି ସନ୍ଧ୍ୟା ୭ଟା ବେଳେ ରଙ୍ଗପୁର ରାଣୀ କୁମାରୀ ଭିଲ୍ଲାକୁ ବୁଲି ଆସିବାର କଥା । କୁମାରୀ ଭିଲ୍ଲାର ନୃତ୍ୟଗୀତ ଦେଖି ଏହି ସଂସ୍କୃତି ପ୍ରଚାର କେନ୍ଦ୍ରପାଇଁ ସେ କିଛି ଅର୍ଥ ସାହାଯ୍ୟ ଦେବାର କଥା ମଧ୍ୟ ସ୍ଥିର ହୋଇଛି । ଆଉ ମଧ୍ୟ ରାଜବାଟୀରେ ନିଜର କନ୍ୟାମାନଙ୍କୁ ସଙ୍ଗୀତ ଓ ନୃତ୍ୟ ଶିକ୍ଷା ଦେବାପାଇଁ ଏଠାରୁ ଜଣେ ଶିକ୍ଷୟିତ୍ରୀ ନେବାର କଥା ଠିକ୍ ହୋଇଛି । ଉପର ମହଲାର ସଙ୍ଗୀତ ବିଭାଗର କୋଠରୀଟା ଆଜି ଅପୂର୍ବ ଆଡ଼ମ୍ବରପୂର୍ଣ୍ଣ ଭାବରେ ସାଜସଜ୍ଜା କରାଯାଇଛି । ନାନା ପ୍ରକାର ସୁବାସ ଅତରରେ ଘରଟା ଏତିକି ବେଳୁ ମଧ୍ୟ ମହକି ଉଠୁଛି । ଚାରିଆଡ଼େ ନୃତ୍ୟକୁଶଳା ସଙ୍ଗୀତନିପୁଣା ଯୁବତୀମାନଙ୍କର ଚଲ ଫେରରେ ମହଲାଟା ରଣଝଣ ହୋଇ ଉଠୁଛି । ନିଜେ ଉତ୍ତରସିଂ ରଙ୍ଗପୁର ରାଜବାଟୀ ପାଇଁ ସୁପ୍ରୀତିକୁ ଶିକ୍ଷୟିତ୍ରୀ ମନୋନୀତ କରିଛନ୍ତି ।

ରଙ୍ଗପୁର ରାଜବାଟୀ ବିଷୟରେ ଏହିପରି ବିଚାର ଚାଲିଥିବା ସମୟରେ ଷ୍ଟେସନ ବଜାର ଛକ ଉପରେ ଜ୍ୟୋତିଷ ବ୍ୟବସାୟ ଚଳାଉଥିବା ଲୋକଟିକୁ କୁମାରୀ-ଭିଲ୍ଲାରେ ପଶିବାର ଦେଖାଗଲା । ବୟସ୍କ ଲୋକର ନିଶ, ଦାଢ଼ୀ ଓ ବଡ଼ବଡ଼ ବାଳର ଆବରଣ ଭିତରେ ମୁହଁରେ ବିରସକ୍ତି ଫୁଟି ଉଠୁଥିଲେ ମଧ୍ୟ ଆଖିରେ ଗଭୀର ଚିନ୍ତା ଖେଳୁ ଥିବାର ଦେଖା ଯାଉଛି । ମଇଳା ଲୁଗା ଉପରେ ଚାଳପକା ଖଣ୍ଡେ ମଇଳା କାମିଜ । କାମିଜ ଉପରେ ଖଣ୍ଡେ ମୋଟଚାଦର ଅସାବଧାନ ଭାବରେ ପଡ଼ିଛି । ହାତରେ ବିଡ଼ାଏ କାଗଜପତ୍ର । କାଗଜପତ୍ର ଭିତରେ ଖଡ଼ିରନ୍ଧ ପଞ୍ଜିକା ଖଣ୍ଡେ ରହିଛି । ବାହାର ଓ ଭିତର ଫାଟକ ସେତେବେଳକୁ ବନ୍ଦ ଥିଲା । ବାହାର ପାଚେରୀ ଉପରେ ଠିକ୍ ଦକ୍ଷିଣ ପାଖକୁ ବଡ଼ ଗୋଟିଏ ମାଳତୀ ଲତାର କୁଞ୍ଜ ଗ୍ଲେଟ ଅରମା ସୃଷ୍ଟି କରିଛି । ନିର୍ଜନ ଖରାବେଳେ ସେହି ବୟସ୍କ ଜ୍ୟୋତିଷଟି କୁଞ୍ଜ ଭିତରକୁ ପଶିଯାଇ ପାଚେରୀ ମୂଳରେ ଗୋଟିଏ ସ୍ଥାନକୁ ଗୋଡ଼ରେ ଜୋର ସହିତ ମାଡ଼ ଦେବାକ୍ଷଣି ପାଚରୀ ଭିତରେ ଗ୍ଲେଟ ବାଟଟିଏ ଖୋଲିଗଲା । ତାହାପରେ ନିର୍ଭୀକ ଭାବରେ ସେହି ଲୋକଟି ଚାଲିଗଲା ମହଲ ଭିତରକୁ ।

ଲୋକଟି ମହଲ ଭିତରେ ପାଦ ଦେଲାକ୍ଷଣି ଚାରିଆଡ଼େ 'ଗୁରୁସାହେବ' 'ଗୁରୁସାହେବ' ବୋଲି ଚହଳ ପଡ଼ିଗଲା । ପ୍ରତ୍ୟେକ ଯୁବତୀ ସେହି ଲୋକଟିର ଆବିର୍ଭାବରେ ସନ୍ତ୍ରସ୍ତ ହୋଇ ଉଠିଲେ । କାହାକୁ କିଛି ନ କହି ଗୁରୁସାହେବ ସିଧାସଳଖ ଉଠିଗଲେ ଉପର ମହଲାକୁ । ଉପର ମହଲାରେ ପହଞ୍ଚି ତାହାପରେ ସଳଖେ ସଳଖେ ଚାଲିଗଲେ ଗୁପ୍ତ ବୈଠକ ଘରକୁ । ସବୁଠାରେ ଯେପରି ଗୁରୁସାହେବଙ୍କର ଅବାରିତ ଗତି । ଯେପରି ସେ ଏହି କୁମାରୀ ଦଳ ଓ କୁମାରୀ ଭିଲ୍ଲାର ମାଲିକ । ଗୁରୁସାହେବଙ୍କର ଆବିର୍ଭାବରେ ହଠାତ୍ କୁମାରୀ ମୃଦୁଲା ଦେବୀ ଓ କାମିନୀ ନିଜ

ନିଜର ଚୌକିରୁ ଉଠି ଛିଡ଼ା ହୋଇ ପଡ଼ିଲେ ଓ ଗୁରୁସାହେବଙ୍କୁ ଭୂମିଷ୍ଠ ପ୍ରଣାମ କଲେ । ମୃଦୁଲା ଦେବୀଙ୍କ ମୁଣ୍ଡରେ ହାତ ବୁଲାଇ ଦେଇ ତାଙ୍କୁ ଆଶୀର୍ବାଦ କଲେ ଗୁରୁସାହେବ । ଗୁରୁସାହେବ ସେଠାରେ ବସିପଡ଼ିବାକ୍ଷଣି କୌଣସି ଗୁରୁତର ମନ୍ତ୍ରଣାର ସଙ୍କେତ ପାଇ କାମିନୀ ସେଠାରୁ ବାହାରି ଗଲା । ଟେବୁଲ ଉପରେ ରଙ୍ଗପୁର ରାଜବାଟୀର ନକ୍ସାଟି ପଡ଼ିଥାଏ । ଗୁରୁ ସାହେବ ନକ୍ସାଟିକୁ ଥରେ ଅନେଇ ଦେଇ ପାଖରେ ପଡ଼ିଥିବା ଗୋଟିଏ ନାଲି ନେଳ ପେନ୍‌ସିଲ ଧରି କେତେକ ଜାଗାରେ ଲାଲ୍ ଦାଗ ଦେଇ ଦେଲେ । କୁମାରୀ ଉତ୍ତରସିଂ ଖୁସି ହୋଇ କହି ଉଠିଲେ—

"ଆପଣ ମୋର ସନ୍ଦେହଟା ଭାଙ୍ଗିଦେଲେ ଗୁରୁସାହେବ । ନକ୍ସାର ସେହି ଜାଗାଟା ଏପର୍ଯ୍ୟନ୍ତ ମୋର ସିଦ୍ଧାନ୍ତର ବାହାରେ ପଡ଼ିରହିଥିଲା ।"

ଏତିକି କହି ଗୁରୁସାହେବଙ୍କ ମୁହଁକୁ ଅନେଇ ରହିଲେ ମୃଦୁଲା ଦେବୀ । ସେ ଜାଣନ୍ତି ଯେ ଗୁରୁସାହେବ ନକ୍ସାରେ ଏଇ ଲାଲ୍‌ଦାଗ ଦେବାଲାଗି ଆଜି ଏଠିକି ଆସି ନାହାଁନ୍ତି । ନିଶ୍ଚୟ ଗୁରୁତର କଥା କିଛି ରହିଛି । ହୁଏତ କୌଣସି ବିପଦର ଆଶଙ୍କା ମଧ୍ୟ ।

କୁମାରୀ ମୃଦୁଲା ଦେବୀଙ୍କର ମୁହଁକୁ ଚାହିଁ ଚାହିଁ ହସି ଉଠିଲେ ଗୁରୁସାହେବ । ତାହାପରେ ଧୀରେ ଧୀରେ ସେହିପରି ହସି ହସି କହିଲେ—

"କେଶରୀମଲ ସାଙ୍ଗରେ ଲାଗି ତୁ କଣ ଭଲ କରିଚୁ କୁମାରୀ ?"

କୁମାରୀ ମୃଦୁଲା ଦେବୀ ମଧ୍ୟ ସେହିପରି ହସି ହସି କହିଲେ—

"ସେହି ମୋଟା ଲୋକଟା ସାଙ୍ଗରେ ଲାଗିବାକୁ ମୋର କାହିଁକି ଭାରି ଇଚ୍ଛା ହେଲା । ପ୍ରାୟ ବର୍ଷେ ଖଣ୍ଡେ ତାଙ୍କୁ ଖେଳେଇଲିଣି । ମନହେଲା ଏଇଥର ତାଙ୍କୁ ଟିକେ ଝିଙ୍କି ଦେବି ।

ସେହିପରି ହସି ହସି ଗୁରୁସାହେବ କହିଲେ—

"ଝିଙ୍କାଟା ସମାନ ନବୁ ତ ?"

ଏଥିରେ ମୃଦୁଲା ଦେବୀଙ୍କ ମୁହଁର ଚପଳତା ଲିଭିଗଲା । କିନ୍ତୁ ନିର୍ଭୀକ ଭାବରେ ସେ କହିଲେ—

"ଆପଣ ଯାର ଗୁରୁ, ତା ପକ୍ଷରେ ଅସମ୍ଭବ କଣ ଅଛି !"

ଏ କଥାରେ ନିଜର ହାତ ବଢ଼ାଇ କୁମାରୀ ସାହେବଙ୍କର ମୁଣ୍ଡରେ ଆଉ ଥରେ ହାତ ବୁଲାଇ ଦେଲେ ଗୁରୁସାହେବ । ମୃଦୁଲା ଦେବୀଙ୍କ ଅନିନ୍ଦ୍ୟ ମୁଖମଣ୍ଡଳରେ ନିର୍ଭୀକତାର ଭାବ ଦୃଢ଼ ହୋଇ ଉଠିଲା ।

ଘରଆଡ଼େ ଥରେ ନିଜର ତୀକ୍ଷ୍ଣ ଦୃଷ୍ଟି ବୁଲେଇ ନେଇ ମୃଦୁଲା ଦେବୀଙ୍କର ଆଉ ଟିକେ ପାଖକୁ ଘୁଞ୍ଚି ଆସି ଗୁରୁସାହେବ ଧୀରେ ଧୀରେ କହିଲେ—

"ଆଜି ରାତି ନ'ଟାରେ ନଗର ଡାକବଙ୍ଗଳାରେ ଗୋଟାଏ ଉଦ୍ୟାନ ଭୋଜି ହେଉଚି । ଏଇ ଉଦ୍ୟାନ ଭୋଜିର ଆୟୋଜନ କରିଚି କେଶରୀମଲ୍ । ସେଠିକି ପୁଲିଶ ଆଉ ଗୋଇନ୍ଦା ବିଭାଗର ବଡ଼ ବଡ଼ ହାକିମ କେତେ ଜଣ ଯାଉଛନ୍ତି ।

କେତେ ଜଣ ହାକିମଙ୍କର ସ୍ତ୍ରୀ ମଧ୍ୟ ତାଙ୍କ ସାଙ୍ଗରେ ଯିବେ । ତୋ ବିରୁଦ୍ଧରେ ଠିଆ ହେବାର କୌଣସି ଉପାୟ ନପାଇ ପୁଲିସ ଆଜି ଗୋଇନ୍ଦା ହାକିମଙ୍କୁ ହାତ କରିବ । ସାରି 'କୁମାରୀ ଭଲ୍ଲା' ବିରୁଦ୍ଧରେ କେରୋଡ଼ିମଲ ଷଡ଼ଯନ୍ତ୍ର କରିବାକୁ, ଏଇ ବାଟ ଧରିଛି ବର୍ତ୍ତମାନ । ଆଉ ଶୁଣ ତ, ପାଞ୍ଚ ପାଞ୍ଚ ହଜାର ଟଙ୍କାର ଯୋଡ଼ିଏ ହାର ପୁଲିଶ ସାହେବ ଓ ମାଜିଷ୍ଟ୍ରେଟ୍‌ଙ୍କ ମେମସାହେବଙ୍କୁ ଉପହାର ଦେବାକୁ କେରୋଡ଼ିମଲ ଠିକ୍ କରିଛି । ଅନ୍ତତଃ, ଏଥିରୁ କୁମାରୀ ଭଲ୍ଲାର କିଛି ଭାଗ ରହିବା ଉଚିତ । ତାପରେ ଭୋଜିଟାକୁ ଯେମିତି ପଣ୍ଡ କରିପିବ ତାର ବିରୋଧ କରିବାକୁ ପଡ଼ିବ ।...ହଁ, ରଙ୍ଗପୁର ରାଣୀ ମଧ୍ୟ ସେଠିକି ଯିବେ । ତମର ଏଠିକି ସେଠି କେତେବେଳେ ଆସୁଚନ୍ତି ?

"ସାତଟା ।"

"କେତେ ସମୟ ରହି ପାରିବ ଏଠି ?"

"ଅନ୍ତତଃ ଘଣ୍ଟାଏ ।"

"ଆଚ୍ଛା" । ଅଳ୍ପ ଚିନ୍ତା କରି ଗୁରୁ ସାହେବ କହିଲେ—

"ରାଣୀଙ୍କ ସାଙ୍ଗରେ ଏଠି ଆମର କିଛି କାମ ନାହିଁ । ସାଢ଼େ ସାତଟା ଭିତରେ ତମେ ରାଣୀଙ୍କୁ ଏଠୁ ବିଦା କରିଦିଅ । ପୁଲିଶ ସାହେବଙ୍କର ମଟର ନମ୍ବରଟା ରଖ । ମୁଁ ଠିକ୍ ଆଠଟାରେ ଆସି ତତେ ଭେଟିବି । ମୋର ପୋଷାକଟା ସଫା କରି ରଖିଥିବୁ, ଆଉ ତୁ ବି ପ୍ରସ୍ତୁତ ହୋଇ ଯାଇଥିବୁ, ମା !"

॥ ୫ ॥

ଠିକ୍ ସାଢ଼େ ଆଠଟାରେ ନଗର ଡାକ ବଙ୍ଗଳାରେ ପୁଲିଶ ସାହେବଙ୍କର ମଟରେ ପହଞ୍ଚିଲା । ସବୁ ଆୟୋଜନ ସେତେବେଳକୁ ପ୍ରାୟ ସରି ଯାଇଚି । ବଙ୍ଗଳା ଆଗରେ ଦୁଇପାଖରେ ଦୁଇଟା ପେଟ୍ରୋମାକ୍ସ ଝୁଲାଇ କେରୋଡ଼ିମଲ ଅତିଥିମାନଙ୍କୁ ଅପେକ୍ଷା କରି କେତେକ ବନ୍ଧୁଙ୍କ ସଙ୍ଗରେ ଆଳାପ କରୁଛନ୍ତି । ମଟର ଶବ୍ଦରେ ସମସ୍ତେ ଛିଡ଼ା ହୋଇ ପଡ଼ିଲେ । ହୁଏତ ମାଜିଷ୍ଟ୍ରେଟ୍ ନ ହେଲେ ପୁଲିଶସାହେବ । ସମ୍ମାନରେ ଉଭୟେ ବଡ଼ । ବସିଥିବା ଭଦ୍ରଲୋକମାନଙ୍କଠାରୁ ସମ୍ମାନ ପାଇବା ପାଇଁ ଉଭୟେ ହକ୍‌ଦାର ।

ମଟରରୁ ଓହ୍ଲାଇଁ ପଡ଼ି ହଠାତ୍ ପୁଲିଶ ସାହେବ ଇଂରେଜିରେ କହିଲେ—

"ମିଷ୍ଟର କେରୋଡ଼ିମଲ୍ କିଏ ?"

ସଲାମ୍ ଉପରେ ସଲାମ୍ ବଜେଇ ମିଷ୍ଟର କେରୋଡ଼ିମଲ ଯାଇ ଆଗରେ ଛିଡ଼ା ହେଲେ । କେରୋଡ଼ିମଲଙ୍କ ଥତମତଭାବ ଦେଖି ପୁଲିଶ ସାହେବ କହିଲେ—

"ମୁଁ ପୁଲିଶ ସାହେବ । ପୁଲିଶ ଅଫିସରଙ୍କୁ ଭୋଜିକି ନିମନ୍ତ୍ରଣ କରିବାକୁ ତମକୁ କିଏ କହିଲା ?"

ଯୋଡ଼ହାତ କରି କେଦାରମଲ କହିଲେ —

"ହଜୁର କସୁର ହୋ ଗୟା..."

"କସୁର ନେହି, କସୁର ନେହି, ମଗର ଫିର ଏସା ମତ୍ କର୍‌ନା । ଜାଣିଲ, ଆମେ ହେଲୁ ପୁଲିଶ ଅଫିସର । ସମସ୍ତଙ୍କୁ ବାନ୍ଧି ନବାର କ୍ଷମତା ଆମର । ଆମକୁ ତମେ ହାତରେ ରଖିବାକୁ ଚେଷ୍ଟା କରୁଚ ବୋଲି ଜଣାଗଲେ ତମ ଉପରେ ଗୁରୁତର ଦୋଷ ଆସିବ ।"

ଅଳ୍ପ ସମୟ ପରେ ପୁଣି ପୁଲିଶ୍ ସାହେବ କହିଲେ —

"ଜାଣିଲେ ମିଷ୍ଟର୍ କେଦାରମଲ, ମଟର୍‌ରେ ମେମ୍‌ସାହେବ ଅଛନ୍ତି । ଖାଣ୍ଟି ହିନ୍ଦୁ ଘରର ସ୍ତ୍ରୀ । ତମର ମାଜିଷ୍ଟ୍ରେଟସାହେବଙ୍କ ସ୍ତ୍ରୀ ଭଳି ବୁଟ୍‌ମଡ଼ା ମେମ୍ ନୁହନ୍ତି । ହଁ, ଆମ ପାଇଁ ଅଲଗା ଗୋଟାଏ ପାଖ ବନ୍ଦୋବସ୍ତ କରିଦିଅ । ଏତେ ଲୋକଙ୍କ ଭିତରେ ସେ ବସାଉଠା କରିବା ମୁସ୍କିଲ । ହୁଁ --- ବୁଝିଲ ।"

ସଂକ୍ଷେପରେ କେଦାରମଲ କହିଲେ — "ହଜୁର" ।

ଗୋଟିଏ ନିକାଞ୍ଜନ ପାଖରେ ବସିଲେ ପୁଲିଶ ସାହେବ ଓ କେଦାରମଲ । ନିକଟରେ ଗୋଟିଏ ଚୌକିରେ ପୁଲିଶ ସାହେବଙ୍କ ଓଡ଼ିଆଣୀ ମେମ୍ ଓଢ଼ଣାଟାଣି ବସିଛନ୍ତି । ଦୂରରେ ଜଳୁଥିବା ଲମ୍ପର ଆଲୁଅ ସମସ୍ତଙ୍କ ଦେହରେ ଆସି ପଡ଼ୁଚି । କାଠଯୋଡ଼ିର ଥଣ୍ଡା ପବନ ଘର ଭିତରେ ନାନା ପ୍ରକାର ଖେଳ ଖେଳି ଛୁଟାଛୁଟି କରି ଚାଲିଯାଉଚି ।

ପାଟିରେ ଗୋଟିଏ ଚୁରୁଟ୍ ପୁରେଇ ପୁଲିଶ ସାହେବ କହିଲେ —

"ମୋର ଖୁବ୍ ଜରୁରି କାମ ଅଛି ମିଷ୍ଟର କେଦାରମଲ, ମାଜିଷ୍ଟ୍ରେଟ ସାହେବ ଆସିବା ଯାଏ ମୁଁ ଅପେକ୍ଷା କରି ପାରିବି ନି । ଖୁବ୍ ଜରୁରି କାମ, କଲିକତାରୁ କାଲି ରାତିରେ ମୋତିବେଗମ୍ ବୋଲି କିଏ ଗୋଟାଏ ବଡ଼ ଲୋକର ମାଇକିନା କିଏ ପଳେଇ ଆସିଛି । ତାର ସନ୍ଧାନ ନେବା ପାଇଁ କଲିକତାର ପୁଲିଶ କମିଶନର ଲେଖିଛି । ତାର ପତା ଏପର୍ଯ୍ୟନ୍ତ କିଛି ମିଳିଲା ନି ।...ହୁଁ...ଆଚ୍ଛା ମିଷ୍ଟର କେଦାରମଲ୍, କଟକରେ ଦୋସରା ଲକ୍ଷପତି—କେଦାରମଲ କେହି ଅଛି ?"

"ହଜୁର ନାହିଁ ତ ।"

"ଆଇ ସି ! ୟୁ ଆର ଦି କଲ୍‌ପ୍ରିଟ୍ । ତମେ କେଦାରମଲ, ତମେ ପୁଣି ମତେ ଭୋଜି ଖାଇବାକୁ ନିମନ୍ତ୍ରଣ କରିଚ ! ତମକୁ ବର୍ତ୍ତମାନ ମୋର ଆରେଷ୍ଟ କରିବାର କଥା ।"

"ହଜୁର—"କେଦାରମଲଙ୍କ ଆଖିରେ ଅଶ୍ରୁର ଧାରା । "ଆପଣ ମା ବାପ ହଜୁର, ମୁଁ ବେକସୁର ହଜୁର ।"

ହୀରାବସା ଦୁଇଟି ଦାମିକା ହାର ଟେବୁଲ ଉପରେ ଧୀରେ ଧୀରେ ପକେଟରୁ ବାହାର କରି ଥୋଇଲେ କେଦାରମଲ । ପୁଲିସ ସାହେବ ଦୁଇଟିଯାକୁ ମେମ ସାହେବଙ୍କ ହାତକୁ ବଢ଼େଇ ଦେଲେ । ତାହାପରେ ବାହାର ବାରଣ୍ଡାକୁ

କେରୋଡ଼ମଲ୍‌ଙ୍କୁ ଧରି ପୁଲିଶ୍ ସାହେବ ଉଠିଗଲେ । ଗମ୍ଭୀର କଣ୍ଠରେ ଆସ୍ତେ ଆସ୍ତେ ପୁଲିଶ ସାହେବ କହିଲେ—

"କେତେ ସର୍ଗେନ୍ କେଶରେ ତମେ ବର୍ତ୍ତମାନ ପଡ଼ିବ ଜାଣ କେରୋଡ଼ମଲ ?"

"ହଜୁର୍ ମା ବାପ !"

"ସେ ସବୁ କଥା ଛାଡ଼, ସାଫ୍ ସାଫ୍ କଣ କୁହ ।"

"ହଜୁର୍ ଯା କହିବେ ।"

"ଶୀଘ୍ର କୁହ କେରୋଡ଼ମଲ, ମାଜିଷ୍ଟ୍ରେଟ୍ ଆସିଯିବେ, ଏଠି ମୋର ରହିବା ଅନୁଚିତ ହେବ । ମୋ ଗୃହକୁ ଯିବ ଶେଷରେ କେରୋଡ଼ମଲ୍ ।"

"ହଜୁର୍ ଲକ୍ଷ୍ ରୂପେୟା ।"

"ମତେ କଣ କରି ପାଇଲ କେରୋଡ଼ମଲ ? ଏଇଟା ଶେୟାର୍ ମାର୍କେଟ ନୁହେଁ । ମୁଁ ଚାହିଁଲି କେରୋଡ଼ମଲ ?"

"ହଜୁର୍ ପାଞ୍ଚ ଲକ୍ଷ"

"ସଚ୍ ?"

"ସଚ୍ ହଜୁର୍ !"

"ଆଚ୍ଛା ଚାଲ ଆମ ମଟର୍‌ରେ !"

ହଠାତ୍ ଆକାଶରୁ ପଡ଼ି ଯାଇଛନ୍ତି କେରୋଡ଼ମଲ । ପୁଲିଶସାହେବଙ୍କଠାରୁ ମୋତିବେଗମ୍‌ର ଘଟଣା ଶୁଣିବା କ୍ଷଣି ତାଙ୍କର ଧାରଣା ହୋଇଗଲା ଯେ, ସେହି ମିସ୍ ସାହେବର ଚକ୍ରାନ୍ତରେ ବର୍ତ୍ତମାନ ଏତେ ଗଣ୍ଡଗୋଳ ଘଟିବାକୁ ବସିଚି । ପାଞ୍ଚଲକ୍ଷ ଟଙ୍କା ସେଦିନ ମିସ୍ ସାହେବଙ୍କୁ ଦେଇ ଦେଇଥିଲେ ଆଜି ଆଉ ଏ କେଲେଙ୍କାରି ଘଟି ନ ଥାନ୍ତା । ମୋତି ବେଗମ୍‌ର ଏହି ଜଘନ୍ୟ ଘଟଣା ଯେମିତି ଆଜି କଲିକତାଠାରୁ କଟକ ହୁଲସ୍ଥୁଲ ହେବାକୁ ବସିଲାଣି । ନିଜର ଏହି କଳଙ୍କ ଅନ୍ୟମାନେ ଯେପରି ନ ଜାଣି ପାରିବେ ସେଥିପାଇଁ କାହାକୁ କିଛି ନ କହି ତରବରରେ ଶେଠ୍ କେରୋଡ଼ମଲ ଯାଇ ପୁଲିଶସାହେବଙ୍କ ମଟରରେ ବସିଲେ । ମଟର ଛାଡ଼ିବା ପୂର୍ବରୁ ନିଜର ମୁନିବଙ୍କୁ ଡାକି ସେ ଖାଲି କହିଦେଇ ଗଲେ—

"ସାହେବଙ୍କର ବାରଙ୍ଗରେ ଜରୁରି କାମ ଅଛି । ତାଙ୍କୁ ସେଠାରେ ଛାଡ଼ିଦେଇ ମୁଁ ଅଧଘଣ୍ଟା ଭିତରେ ଆସି ପହଞ୍ଚୁଚି । ମାଜିଷ୍ଟ୍ରେଟ ସାହେବ ଆସିଗଲେ ତାଙ୍କର ସବୁ ସୁବିଧା କରିଥିବ । ମୁଁ ଖୁବ ଶୀଘ୍ର ଆସି ପହଞ୍ଚିବ ।"

ନ'ଟା ବାଜିବାର ଦଶମିନିଟ୍ ପରେ ଆଗପଛ ହୋଇ ଦୁଇଖଣ୍ଡ ମଟର ନଗ୍ରଜ ଡାକବଙ୍ଗଳା ସାମନାରେ ପହଞ୍ଚିଲା । ଖଣ୍ଡିଏ ମଟରରୁ ପୁଲିଶ ସାହେବ ଓ ତାଙ୍କର ସ୍ତ୍ରୀ ଏବଂ ଅନ୍ୟ ଖଣ୍ଡିଏ ମଟରରୁ ସସ୍ତ୍ରୀକ ମାଜିଷ୍ଟ୍ରେଟ ସାହେବ ଓହ୍ଲେଇଲେ । ଜଣେ ସାହେବଙ୍କୁ ଅପେକ୍ଷା କରି ରହିଥିବା ସମୟରେ ଦୁଇଜଣ ସାହେବଙ୍କୁ ଦେଖି କେରୋଡ଼ମଲଙ୍କର ମୁନିବ ଅତି ଆଶ୍ଚର୍ଯ୍ୟ ହୋଇଗଲେ ମଧ୍ୟ ମାନ୍ୟାସ୍ପଦ ଅତିଥି ଦୁଇଜଣଙ୍କୁ ଯୋଡ଼ହସ୍ତରେ ବିନମ୍ର ନମସ୍କାର କରି ବଙ୍ଗଳା ଭିତରକୁ ପାଛୋଟି ନେଲେ

ଆସିଲେ । ଅନ୍ୟାନ୍ୟ ଭଦ୍ରଲୋକ କେତେଜଣ ମାଜିଷ୍ଟ୍ରେଟ୍ ଓ ପୁଲିଶସାହେବଙ୍କୁ ସମ୍ମାନ ଜଣାଇ ନମସ୍କାର କରି ଛିଡ଼ା ହୋଇ ପଡ଼ିଲେ ।

ନିଜର ଆସନ ଗ୍ରହଣ କରିବାର କିଛି ସମୟ ପରେ ଗୋଟାଏ ସିଗାରେଟ୍ ଟାଣି ଟାଣି ମାଜିଷ୍ଟ୍ରେଟ୍ ସାହେବ କେଶୋରିମଲଙ୍କୁ ଖୋଜିଲେ । ଆଜି ଶନିବାର ରାତି । କାଲି ରବିବାର ଅଫିସ ବନ୍ଦ । ସେଥିପାଇଁ ବାଟରେ ଆସିଲାବେଳେ ମାଜିଷ୍ଟ୍ରେଟ୍ ଓ ପୁଲିସ ସାହେବ ଉଭୟ ଠିକ୍ କରିଥିଲେ ଯେ, ସେମାନେ ସସ୍ତ୍ରୀକ ଆଜି ରାତିରେ ଚନ୍ଦକା ଜଙ୍ଗଲରେ ଶିକାର କରି ପାହାନ୍ତାରେ କଟକ ଫେରିବେ । ସୁତରାଂ ଭୋଜି ଶେଷ କରି କଟକ ଫେରି ଯାଇ ଘରେ ଶୋଇବାର ପ୍ରୋଗ୍ରାମ ନଥିବାରୁ କାହାରି ମନରେ ଉଦ୍‌ବେଗ ନ ଥାଏ । ବିଶେଷ କଥା, ମାଜିଷ୍ଟ୍ରେଟ୍ ସାହେବ ଓ ପୁଲିଶସାହେବଙ୍କର ସ୍ତ୍ରୀ ବିଶେଷ ଆଧୁନିକା, ପୁଣି, ସେ ଉଭୟଙ୍କ ଭିତରେ ପ୍ରଗାଢ଼ ବନ୍ଧୁତା ମଧ୍ୟ ରହିଛି । ଆଜି କେଶୋରିମଲଙ୍କ ଉଦ୍ୟାନଭୋଜି ଯୋଗୁଁ ସେମାନେ ଏକାଠି ହୋଇଥିବାରୁ, ଆଉ ମଧ୍ୟ ଆଜି ଏଠିକି ରଙ୍ଗପୁର ରାଣୀ ଆସିବାର ଥିବାରୁ ସେମାନେ ଖୁବ୍ ଉତ୍ସାହରସହ ବସି ଖୁସିଗପ ଆରମ୍ଭ କରି ଦେଇଛନ୍ତି । ତାହାପରେ ରଙ୍ଗପୁରର ରାଣୀ ଖୁବ୍ ଶିକାରୀ । ଆଜି ରାତିରେ ଶିକାରର ବିରାଦ ଥିବାରୁ ଏବଂ ବହୁଦିନର ଶିକାର ଦେଖିବା ଆକାଂକ୍ଷା ଚରିତାର୍ଥ ହେବାର ସମ୍ଭାବନା ଥିବାରୁ ଆଜିର ନିର୍ଜନ ଡାକବଙ୍ଗଳାର ଏହି ରାତିଟା ସେମାନଙ୍କ ପକ୍ଷରେ ଖୁବ୍ ସୁଖକର ହୋଇ ଉଠିଛି ।

ମାଜିଷ୍ଟ୍ରେଟ୍‌ଙ୍କୁ ଉତ୍ତର ଦେଇ କେଶୋରିମଲଙ୍କ ମୁନିବ କହିଲେ —

"ହଜୁର, ପ୍ରାୟ ଅଧଘଣ୍ଟାଏ ତଳେ ପୁଲିସ ସାହେବ ଓ ତାଙ୍କର ସ୍ତ୍ରୀ ଆସିଥିଲେ । କିଣ ଜରୁରି କାମ ଥିବାରୁ ସେ ବାରଙ୍ଗ ଯାଇଛନ୍ତି । ଶେଠଜୀ ମଧ୍ୟ ତାଙ୍କ ସାଙ୍ଗରେ ଯାଇଛନ୍ତି । ହୁଏତ ଏଇକ୍ଷଣି ଆସି ପହଞ୍ଚିବେ ।"

ମୁନିବ୍‌ର ଏ କଥାରେ ଆଶ୍ଚର୍ଯ୍ୟ ହୋଇ ମାଜିଷ୍ଟ୍ରେଟ ପୁଲିସ ସାହେବଙ୍କର ମୁହଁକୁ ଅନେଇଲେ । ପୁଲିସସାହେବଙ୍କର ମୁହଁକୁ ଆଶ୍ଚର୍ଯ୍ୟତା ଗ୍ରାସ କରିଯାଇଛି । ଜୋରରେ ଥରେ ସିଗାରେଟ୍ ଶୋଷି ନେଇ ସେ ଟେବୁଲରେ ହାତ ବାଡେଇ କମ୍ପି ଉଠି କହିଲେ—

"ବ୍ଲଡ଼ି ଫୁଲ୍. ଅଧଘଣ୍ଟା ତଳେ ମୁଁ ଆସିଥିଲି ଏଠିକି ? ହେଇ ମୋର ସ୍ତ୍ରୀ, ସିଏ ଆସିଥିଲେ ମୋ ସାଙ୍ଗରେ ? ହେଇ ମୋର ମଟର, ସେ ମଟର ଆସିଥିଲା ଏଠିକି ? କିଣ କହୁଚ ତୁମେ ?"

ପୁଲିଶ ସାହେବଙ୍କର ଏ କଥାରେ ସମସ୍ତେ ଚମକି ଉଠିଲେ । ତାହେଲେ ଆସିଥିଲା କିଏ ? ଆଉ କିଣ ଏବେ ଦୁ' ଜଣ ପୁଲିଶ ସାହେବ ଅଛନ୍ତି କଟକରେ !

ପୁଲିସ ସାହେବଙ୍କର ଗର୍ଜ୍ଜନରେ ଥରି ଥରି ମୁନିବ ବିଚରା କହିଲା —

"ଆଜ୍ଞା, ଏ ସାହାବସୁବାଙ୍କ ମାମଲା ମୁଁ କିଛି ବୁଝି ପାରୁନାହିଁ । ଠିକ୍ ଆପଣଙ୍କ ଭଳି ଜଣେ ସାହେବ, ଆଉ ଇକମର ଜଣେ ମେମ୍‌ସାହେବ ଧରି ଠିକ୍

ଏଇଭଳି ଗୋଟିଏ ମଟରରେ ଆସିଥିଲେ ପୁଲିଶ ସାହେବ । ସେଇ୍ଥ ପଟେ ଟେବୁଲ ପାଖରେ ବସିଥିଲେ ପୁଲିଶ୍ ସାହେବ । ମାଜିଷ୍ଟ୍ରେଟ ଆଉ ପୁଲିଶ୍ ସାହେବଙ୍କର ମେମ୍ ସାହେବଙ୍କୁ ଦେବାକୁ କଲିକତାରୁ ଦଶ ହଜାର ଟଙ୍କା ଦେଇ ଦୁଇଟି ହୀରାବସା ହାର ଆଣିଥିଲେ ଶେଠଜୀ । ପୁଲିଶ ସାହେବଙ୍କୁ ସେଇ୍ଥ ହାରକୁ ଶେଠଜୀ ବସି ଦେଖଉଥିଲେ । ତାହାପରେ ସେମାନେ ସାଙ୍ଗ ହୋଇ ବୁଲି ଗଲେ ବାରଙ୍ଗ—ମୁଁ କିଛି ଭୁଲ କହୁନାହିଁ ଆଜ୍ଞା —"

କୁଦା ମାରି ଆଗକୁ ଚମକି ଆସି ଅଣ୍ଟାରୁ ପିସ୍ତଲଟା କାଢ଼ି ପୁଲିସସାହେବ ଭୀଷଣଭାବରେ ଗର୍ଜି ଉଠି କହିଲେ —

"ଶଟ୍ ଅପ୍ ପାଜି ଜ୍ୱାଗ୍ଲେର, ପୁଲିଶ୍ ସାହେବ ଆଉ ମାଜିଷ୍ଟ୍ରେଟଙ୍କୁ ଘୁଷ୍ ଦେବାକୁ ଡାକିଛ ଏଠିକି । ଆହୁରି ଗ୍ଲେଭ୍ ବଜାର କରିବାର ଫିକିର ! ମିଷ୍ଟର ମାଜିଷ୍ଟ୍ରେଟ, ଏମାନଙ୍କର ଚାଲବାଜି ବୁଝି ପାରୁଛନ୍ତି ଆପଣ ? ଆମେମାନେ ଘୁଷ ନେଉ ବୋଲି ଏଇ ଭଦ୍ରଲୋକମାନଙ୍କ ସାମନାରେ ଏମାନେ ପ୍ରମାଣ କରିବାକୁ ବସିଚନ୍ତି । ଆପଣ ଆଦେଶ ଦେଲେ ମୁଁ ଏଇ୍ଥ ବଦ୍‌ମାସ୍‌ଟାକୁ ଆରେଷ୍ଟ କରି ନେବି ବର୍ତ୍ତମାନ । ସେଇ କେରୋଡ଼ମଲକୁ ମଧ୍ୟ ଦେଖି ନେବି ।"

ଏତିକି କହି ବିଶେଷ ରାଗ ହେତୁ ପୁଲିଶ୍ ସାହେବଙ୍କର କଥା ବନ୍ଦ ହୋଇ ଆସିଲା । ଚୌକିରେ ବସି ପଡ଼ି ସେ ମୁଣ୍ଡରୁ ଝାଳ ପୋଛିବାକୁ ଲାଗିଲେ । ମାଜିଷ୍ଟ୍ରେଟ ମଧ୍ୟ ଲାଲ ଆଖିରେ ଅନେଇ ରହିଛନ୍ତି ସେଇ୍ଥ ଲୋକଟି ଆଡ଼କୁ । ମେମ୍ ସାହେବ ଦୁଇ ଜଣଙ୍କର ଆଳାପର ସୁଖ ଭଙ୍ଗି ଚୁରମାର ହୋଇ ଯାଇଛି । କଣ କହିବେ ମାଜିଷ୍ଟ୍ରେଟ୍ ? ସେ କିଛି ଭାବି ପାରୁ ନ ଥାନ୍ତି । ଶେଷକୁ ସେ ପଦେ ମାତ୍ର କଥା କହି ଉଠି ପଡ଼ିଲେ ଚୌକିରୁ —"ଅସଲ ଲୋକଟାକୁ ମୁଁ ଚାହେଁ ମିଷ୍ଟର ଏସ୍ . ପି. ।"

ବାରଣ୍ଡାରେ ପାଗଳ ଭଳି ବସିଥିବା ଗୋଟାଏ ଲୋକ ହଠାତ୍ ଭିତରକୁ ପଶି ଆସି କହିଗଲା—

ଗ୍ଲେଭ୍ ବଜାର ଆଉ ଘୁଷ, ଏଇ ଥିରେ ଏଇକ୍ଷଣି ଦେଶ ଚାଲିଚ । ପୁଲିଶ ସାହେବଙ୍କ ଲାଗି କେରୋଡ଼ମଲ ଘୁଷ ଆଣିଥିଲେ, ତାକୁ ଏବେ ଇନ୍‌ସ୍‌ପେକ୍‌ଟର ଆସି ନେଇଗଲେ, ଏଥିରେ ରାଗିବାର କ'ଣ ଅଛି, ସାହେବ ? ଆପଣମାନେ କେରୋଡ଼-ମଲର ଭୋଜି ଖାଇବେ ଦୋଷ ହେଲାନି, ଆଉ ହୀରା ମାଳ ନେଲେ ହବ ଦୋଷ—ହା —ହା—ହା —

କହି କହି ଲୋକଟା ବାହାରକୁ ବାହାରି ଗଲା । ତାପରେ ଦୂରକୁ ଯାଇ ଅନ୍ଧାରରେ ମିଶିଗଲା କୁଆଡ଼େ ।

ମାଜିଷ୍ଟ୍ରେଟ୍ ଆଉ ପୁଲିଶ୍ ସାହେବଙ୍କ ମୁହଁରେ ଯେପରି ଚୂନ କାଳି କିଏ ବୋଳି ଦେଲା । ଧଡ଼ାଧଡ଼ ଉଠି ସେମାନେ ନିଜ ନିଜ ମଟରରେ ଯାଇ ବସିଲେ । କଣ ଭାବି ପୁଲିସ ସାହେବ ମଟରରୁ ବାହାରି ଆସି ନିମନ୍ତ୍ରିତ ଭଦ୍ରଲୋକମାନଙ୍କ ପାଖରେ ପହଞ୍ଚିଲେ ; ପ୍ରତ୍ୟେକଙ୍କୁ ସେମାନଙ୍କର ପରିଚୟ ପଚାରି ବୁଝିଲେ, ଘଟଣାଟା

ଖବରକାଗଜରେ ଛପିବା ଭଳି ଏମାନଙ୍କ ଭିତରେ ସାଂଘାତିକ ଲୋକ କେହି ଅଛି କି ନାହିଁ । ଏହି ସମୟରେ ଜଣେ ଭଦ୍ରଲୋକ ପୁଲିଶ୍ ସାହେବଙ୍କୁ ଧରି ଇଂରେଜୀରେ ଦୁଇ ପଦ କହିଲେ—

"ମୁଁ ଭାବେ, ମିଷ୍ଟର କେରୋଡ଼ିମଲ ଆଜି ଖୁବ ବିପଦରେ ପଡ଼ି ଯାଇଛି ।"

"ଆଇ କ୍ୟାଣ୍ଟ ହେଲପ୍, ମୁଁ କିଛି କରି ପାରିବି ନି, ହୁଏତ ତାଙ୍କୁ ଠିକ ଅକଲ ଭଗବାନ ଦେଇ ଦେବ" କହି କହି ପୋଲିଶ୍ ସାହେବ ମଟର ଭିତରେ ଯାଇ ବସିଲେ । ଦୁଇଟି ମଟର କଟକ ଅଭିମୁଖରେ ଫେରିଲା ।

॥ ୭ ॥

ନଦୀ ଡାକବଙ୍ଗଳାରୁ ମାଜିଷ୍ଟ୍ରେଟ ଆଉ ପୁଲିଶ୍ ସାହେବଙ୍କର ମଟର ଫେରି ଯାଉଥିବା ବେଳେ ଏଣେ ଡାକବଙ୍ଗଳା ତଳ ଆନିକଟ ଉପରେ ଗୋଟିଏ ମଟର ଲଞ୍ଚ ଆସି ଲାଗିଲା । ଲଞ୍ଚ୍‌ରେ ଆସିଛନ୍ତି ରଙ୍ଗପୁରର ରାଣୀସାହେବ, ତାଙ୍କ ସଙ୍ଗରେ କୁମାରୀ-ଭିଲ୍ଲାର ବିଚକ୍ଷଣା ଗୋଇନ୍ଦା ଓ ନୃତ୍ୟକୁଶଳା କାମିନୀ । ନୃତ୍ୟ ଓ ସଙ୍ଗୀତ ଛଡ଼ା ରାଣୀସାହେବ କାମିନୀର ଅନ୍ୟ କୌଣସି ବିଦ୍ୟାରେ ବାହାଦୁରି ଅଛି ବୋଲି ଜାଣନ୍ତି ନାହିଁ । କୁମାରୀ ଭିଲ୍ଲାର ନୃତ୍ୟ-ଗୀତରେ ରଙ୍ଗପୁରର ରାଣୀସାହେବ ଏତେଦୂର ମୁଗଧ ହୋଇଯିବେ ବୋଲି କୁମାରୀ ଉତ୍ତରସିଂ ଆଦୌ ଆଶା କରି ନଥିଲେ । ରାଜବାଟୀର ନୃତ୍ୟ-ଶିକ୍ଷୟିତ୍ରୀ ରୂପେ ସୁପ୍ରୀତି ମନୋନୀତ ହୋଇଥିଲେ ମଧ୍ୟ ରାଣୀସାହେବଙ୍କ ଅନୁରୋଧରେ ଆଜି ରାତିରେ ଦୁଇଘଣ୍ଟା ପାଇଁ କାମିନୀକୁ କୁମାରୀ ଉତ୍ତରସିଂ ଛାଡ଼ି ଦେଇଛନ୍ତି । ମାଜିଷ୍ଟ୍ରେଟ ଓ ପୁଲିଶ୍ ସାହେବ ଏବଂ ସେମାନଙ୍କ ସ୍ତ୍ରୀଙ୍କ ସଙ୍ଗରେ ଆଜି ଗୋଟିଏ ଆନନ୍ଦମୁଖର ରାତି କାଟିବାର କାମନା କରି ସେହି ମଜଲିସରେ ନୃତ୍ୟ ଗୀତର ସଂଯୋଗ କରିବା ପାଇଁ ରାଣୀସାହେବ କାମିନୀକୁ ଆଣିବାର ବିବାଦ କରିଛନ୍ତି । ସଙ୍ଗରେ ବାଦ୍ୟଯନ୍ତ୍ର ଆସିଛି, ନିଜ ଯୋଗାଡରେ ରାଣୀସାହେବ ଦୁଇଜଣ ବାଦକ ମଧ୍ୟ ଆଣିଛନ୍ତି ।

ବଙ୍ଗଳାରେ ପହଞ୍ଚି ମାଜିଷ୍ଟ୍ରେଟ ଓ ପୁଲିଶ୍ ସାହେବ ଏବଂ ସେମାନଙ୍କ ମେମ୍ ସାହେବଙ୍କର ଦେଖା ନପାଇ ରାଣୀସାହେବ ବଡ଼ ନିରାଶ ହୋଇ ପଡ଼ିଲେ । ତାହାପରେ ସେଠାରୁ ଗତ ଅଧଘଣ୍ଟା ଭିତରର ଘଟଣା ଶୁଣି ସେଠାରେ ସଙ୍ଗୀତ ଆସର ଜମାଇବା ପାଇଁ ରାଣୀ ସାହେବଙ୍କର ଆଉ ଇଚ୍ଛା ହେଲା ନାହିଁ । ପ୍ରାୟ ପାଞ୍ଚ ମିନିଟ ଅପେକ୍ଷା କରି ଶେଠ କେରୋଡ଼ିମଲଙ୍କ ଫେରିବାରେ ଡେରି ହେବାର ଦେଖି ରାଣୀ ସାହେବ ଲଞ୍ଚ୍‌କୁ ଫେରିଗଲେ । ସେତେବେଳକୁ କୃଷ୍ଣ ପକ୍ଷର ପଞ୍ଚମୀ ଜହ୍ନ ଉଠି ସାରିଛି । ଜହ୍ନ ଆଲୁଅ-ତଳା ମହାନଦୀର ତରଙ୍ଗ ଉପରେ ସଙ୍ଗୀତର ମହକ ଛୁଟାଇ ଛୁଟାଇ ମଟର ଲଞ୍ଚ୍‌ଟି ମହାନଦୀକୂଳର 'ରଙ୍ଗପୁର ହାଉସ' ଉଦ୍ଦେଶ୍ୟରେ କଟକ ଫେରିଗଲା ।

ପ୍ରାୟ ଦଶଟାବେଳେ ଶେଠ କେରୋଡ଼ମଲ ଫେରିଲେ । ମନ ତାଙ୍କର ଖୁବ ହାଲ୍‌କା ହୋଇଯାଇଚି, ଯେମିତି ପାଞ୍ଚ ଲକ୍ଷଟଙ୍କା କିଛି ନୁହେଁ । ଗୋଟେ ମସ୍ତବଡ଼ ବିପଦରୁ ସେ ଆଜ ଉଦ୍ଧାର ପାଇଛନ୍ତି । ଧନ୍ୟ ପୁଲିସ ସାହେବଙ୍କର ଦୟା । କେଉଁ ସୁଯୋଗକୁ ସେ ସିନା କହି ପକେଇଲେ ବୋଲି । ନ ହେଲେ ଫଟରୁ ଆଉ ଉଦ୍ଧାର ପାଇବାର ଉପାୟ ମିଳି ନ ଥାନ୍ତା । ଏଥର ଆଉ ସେ ସିଂ ସାହେବ କଣ କରିବ ତାର ? ରଖିଥାଉ ସେ ଘଡ଼ିକ ! ହଁ, ଏତେ ଡେରି ଦେଖି ମାଜିଷ୍ଟ୍ରେଟ ସାହେବ କଣ ମନେ କରୁଥିବେ ?

ଏହିପରି ଭାବ ମଟରରୁ ଓହ୍ଲାଇଲେ କେରୋଡ଼ମଲ । ଡାକ ବଙ୍ଗଳାର ବାରଣ୍ଡାରେ ଗୋଡ଼ ଦେଉଁ ଦେଉଁ ସମସ୍ତେ ଘଟଣାର କିଛି କିଛି କହିବାକୁ ଚେଷ୍ଟାକଲେ । ମୁନିବ୍ ଚିତ୍କାର କରି କହି ଉଠିଲା—

"ସାହେବଲୋକଙ୍କ ଆଡାରେ ପଡ଼ିବାକୁ ତମକୁ କିଏ କହିଲା, ଶେଠଜୀ ? ବ ବ ଜଣ ସାହେବ, ବ ବ ଜଣ ମେମ୍ ଆସିଥିଲେ, ଶେଠଜୀ ! ରାଣୀସାହେବ ବି ଆସିଥିଲେ । ସମସ୍ତେ ରାଗିକରି ଚାଲିଗଲେ ।"

ଆଶ୍ଚର୍ଯ୍ୟ ହୋଇ କେରୋଡ଼ମଲ କହିଲେ—

"ରାଣୀ ସାହେବ ଆସିଥିଲେ ?"

ମୁନିବ୍ ଉତ୍ତେଜିତ ହୋଇ କହିଲା—

"ରାମ ସାହେବ କ୍ୟା ? ଜିସ୍ କା ହାତ୍‌ମେ ପାଓ୍ୱାର ହେ ଓହିତୋ ଚଲେଗେ, ଔର ରାମ ସାହେବ କ୍ୟା ? ମେଜେଷ୍ଟର ଚଲେ ଗେ, ପୁଲିଶ୍ ସାହାବ ଚଲେ ଗେ—ବାବା ମୁଝେ ମାରନେକୋ ପିସ୍ତଲ ଛୁଟା ଥା··· ବାବା······ତୁମ କାହାଁ ଔର୍ କୋନ୍ ସାହେବକା ସାଥ ତୁମ ଗୟେଥେ ?"

କେରୋଡ଼ମଲ ରାଗି ଉଠି କହିଲେ—

"କ୍ୟା ବକ୍ ବକ୍ କର ରହେହୋ ବେକୁବ୍ । ପୁଲିସ ସାହେବ ଫିର୍ କାହାଁ ଆଏଗା ! ଅଭିତୋ ପୁଲିସ ସାହେବକୋ ଛୋଡ଼୍‌କେ ଆୟା ଉନ୍‌କା କୋଠିମେ ?"

ହୋ ହୋ ହୋଇ ହସି ଉଠିଲା ମୁନିବ୍—"ପୁଲିଶ ସାହେବ, ପୁଲିଶ ସାହେବ; ଅବ ମତେ ପିସ୍ତଲ ଉଠେଇଥିଲା ମାରିବାକୁ ଏଠି, ଆଉ ତମେ ତାକୁ କଟକରେ ଛାଡ଼ି ଆଇଲ ତା କୋଠିରେ । ହୋ—ହୋ ।"

ସମସ୍ତେ ମୁନିବ୍‌ର କଥାକୁ ସମର୍ଥନ କରିବାରୁ କେରୋଡ଼ମଲ ଚୁପ୍ ରହିଲେ । କିନ୍ତୁ ଚୁପ୍ ରହିବାର ଅଳ୍ପ ସମୟ ପରେ ଯେତେବେଳେ ଜଣେ ଭଦ୍ରଲୋକଙ୍କଠାରୁ ଭଲ ଭାବରେ ସବୁକଥା ଶୁଣିବାକୁ ପାଇଲେ, ସେତେବେଳେ ଚିତ୍କାର କରି କେରୋଡ଼ମଲ୍ କହିଲେ—

"ଯିଏ ମତେ ଅସ୍‌ଲି ପୁଲିଶ ସାହେବ କିଏ ବତେଇ ଦେବ, ମୁଁ ତାକୁ ପାଞ୍ଚ ହଜାର ଟଙ୍କା ଇନାମ୍ ଦେବି । ମେରା ପାଞ୍ଚ୍‌ଲାଖ ରୁପେୟା ବରବାଦ ହୋଗୟା—ମେଁ ଡାକୁକା ପାଲ୍ଲେମେ ଗିର୍ ଚୁକା ହୁଁ······

ହୋ ହୋ ହୋଇ ହସି ଉଠିଲା ମୁନାବ୍—"ମୁଲାଶ୍ ସାହେବ ମତେ ପିସ୍ତଲ ଉଠେଇ ଥେଲା ମାରିବାକୁ ଶେଠଜୀ..."

ଏଥିରେ ଉତ୍ତେଜିତ ହୋଇ କେଶରୋଡ଼ିମଲ କହିଲେ—

"କ୍ୟା, ପିସ୍ତଲ, ଡାକୁ ଲୋକ୍ ପିସ୍ତଲ ରଖିତେ ହେଁ । ପଚ୍ଛର ସେଇ ପୁଲଶ ସାହେବ ଡାକୁ, ମୁଁ ଅସଲ ପୁଲଶ ସାହେବ ସାଙ୍ଗରେ ଯାଇଥେଲ । ପୁଲଶ୍ ନେହିଁ, ଡାକୁଲୋକ ସବ୍ ପିସ୍ତଲ ରଖତେଁ ହେ । ପୁଲଶ୍ ରଖତେଁ ହେ ବନ୍ଧୁକ୍ !"

ଏତିକବେଳେ ପୂର୍ବର ସେହି ପାଗଲ ଲୋକଟା ଅନ୍ଧାର ଭିତରୁ ଆଗକୁ ବାହାରି ଆସି ତାଙ୍କଠାରୁ ହସ ହସି କହିଲା—

"ଆମେ ମାଗିଲେ ତମେ ପାଞ୍ଚଟା ଟଙ୍କା ଦବ ନେଇଁ, ଶେଠ ! ଅବ ତମେ ପାଞ୍ଚଲାଖ ଟଙ୍କା ଦଣ୍ଡ ଦେଇ ଆଇଚ ।...ତମେ ଠିକ୍ ଯାଇଥେଲ ଶେଠ୍, ଆଗାଡ଼ି ପୁଲଶ୍ ସାହେବ ଆସ୍ଥାଥା ମୋତି ବେଗମ୍‌କେ ଲିଏ । ଆଉ୍ ପିଛ୍ କା ପୁଲସ ସାହେବ ଆସ୍ଥାଥା ଗ୍ରେବିବଜାର ଔର୍ କଳାପୋତା କ ଲିଏ...କିନ୍ତୁ ଅବସ୍ଥା ଖରାପ ହୋଇ ଯାଉଚ ଶେଠ୍ ଜ ..."

କେଶରୋଡ଼ିମଲଙ୍କ ମୁଣ୍ଡରେ ଚେତା ପଶିଲା । ଆଖିରୁ ନିଆଁ ଗୁଣ୍ଡା ଛୁଆଡି ସିଏ କହିଲେ—"ତୁମ୍ ହୋ ଅସଲ ଡାକୁ !"

"ମୁଁ ?"

"ହିଁ—ତୁ !"

"ହା-ହା—ହା-ଆଉ ତମେ ହଉଚ ସାଧୁ, ସାଧୁ ମହାରାଜ କେଶରୋଡିମଲ, ଗ୍ରେବିବଜାରର ରାଜା ।"

"ମୁନାବ୍, ମୁନାବ୍, ପକଡ଼ୋ ଉନ୍‌କୁ, ଓଇ ହେ ଡାକୁ, ଓଇ ହେ ଆଗାଡ଼ି ପୁଲସ ସାହେବ, ମୁଝେ ବରବାଦ କରିଦିଆ, ପାଞ୍ଚଲାଖ ରୁପେୟା ଲେଗୟା ମୁଝ୍‌ସେ । ପକଡ଼ୋ, ଧର ସେଇ ଲୋକକୁ ମୁନାବ୍ ।"

କେଶରୋଡିମଲଙ୍କ ଚତ୍କାରରେ ମୁନାବ୍ ଏବଂ ଆଉ କେତେ ଜଣ ଲୋକ ଆଗେଇ ଗଲେ ସେଇ ପାଗଳଟା ପାଖକୁ । ପାଗଳଟାର ଅଦ୍ଭୁତ ସାହସ, ଠୋ ଠୋ ହସି ଉଠି ନିଜ ଦେହର ଛିଣ୍ଡା ଜାମା ଭିତରୁ ଗୋଟାଏ ରିଭଲ୍‌ଭର୍ ବାହାର କରି ଆକାଶକୁ ଲକ୍ଷ୍ୟ କରି ଦିଟା ଫାଙ୍କା ଆବାଜ କଲା । ତାହାପରେ ଧୀରେ ଧୀରେ ଚାଲିଗଲା ଅନ୍ଧାର ଭିତରକୁ । ସମସ୍ତେ ତଟସ୍ଥ ହୋଇ ଅନାଇ ରହିଲେ ସେହି ପାଗଳଟାକୁ ।

"ଡାକୁ !" "ଡାକୁ !" କ୍ଷୀଣ ଚିତ୍କାର କରି କେଶରୋଡିମଲ୍ ମୂର୍ଚ୍ଛିତ ହୋଇ ଡାକବଙ୍ଗଳାର ସିମେଣ୍ଟ୍ ଚଟାଣ ଉପରେ ପଡ଼ିଗଲେ । କେଶରୋଡିମଲଙ୍କ ଉଦ୍ୟାନଭୋଜି ଦକ୍ଷଯଜ୍ଞରେ ପରିଣତ ହେଲା ।

॥ ୬ ॥

ଶେଠ କେଶୋରୀମଲ୍‌ଙ୍କଠାରୁ ପାଞ୍ଚଲକ୍ଷ ଟଙ୍କା ଠକି ନେଲା କିଏ ? ଏହି କଥା ସାରା ସହରଟାରେ ବଡ଼ ଆଲୋଚନାର ବିଷୟ ହୋଇଛି । କଥାଟା ପ୍ରକଟ ନ ହେବା ପାଇଁ କେଶୋରୀ ଯେତେ ଯତ୍ନ କଲେ ତାହା ଆଉ ଲୁଚି ପାରିଲା ନାହିଁ । ଏତେଗୁଡ଼ିଏ ଲୋକଙ୍କ ସାମନାରେ ନରଜ ଡାକବଙ୍ଗଳାଠାରେ ସେଦିନ ସେହି ପାଗଳଟା ସବୁ ଗୁମର କଥା ପ୍ରକାଶ କରି ଦେଇଛି । ମୋତି ବେଗମ୍ ପୁଣି କିଏ ? କେଶୋରୀମଲ ସାଙ୍ଗରେ ତାର ସଂପର୍କ କଣ ? ଏହି ସବୁ କଥା ବର୍ତ୍ତମାନ ସହରରେ ଘୋଷଣ ଭାବରେ ଆଲୋଚନା ହେବାରେ ଲାଗିଛି । ଲକ୍ଷପତି କେଶୋରୀମଲ ସେଥିପାଇଁ ବଡ଼ ବିବ୍ରତ ହୋଇ ପଡିଛନ୍ତି । ତାଙ୍କର କ୍ଷତି ସକାଶେ ଲୋକଙ୍କର ଏତେ ମୁଣ୍ଡ ବିଥାଉଛି କାହିଁକି ? ମୋତି ବେଗମ୍ କଥାରେ ସେମାନଙ୍କର ଫାଇଦା କଣ ? ଏସବୁ କଥା ଛଡ଼ା ମଧ୍ୟ ବର୍ତ୍ତମାନ କେଶୋରୀମଲଙ୍କର ବରାବର ଧାରଣା ହୋଇଛି ଯେ, ସେ ଡାକୁ ଦଳଙ୍କ ଭିତରେ ପଡି ଦିନ କାଟୁଛନ୍ତି । ତାଙ୍କର ଆଗରେ ଆଉ ପଛରେ ଡାକୁମାନେ ଘୂରି ବୁଲୁଛନ୍ତି । ଯୋଗୀ, ଭିକାରୀଟିଏ ଭେଟିଲେ ସେମାନଙ୍କୁ ଡାକୁ ମନେ କରି "ଭାଗୋ, ଭାଗୋ" ବୋଲି ଚିତ୍କାର କରୁଛନ୍ତି । ମଟରରେ ବସି ମାଲଗୋଦାମକୁ ଗଲେ ତାଙ୍କ ପାଖରେ ବସିଥିବା ବିଶ୍ୱାସୀ ମୁନିବ୍‌କୁ ବାରବାର କରି ଅନଉଛନ୍ତି । ମଟରରୁ ଓହ୍ଲାଇ ଥକ୍‌କାମାରି ଛିଡ଼ା ହୋଇ ପଡ଼ି ବଲ ବଲ କରି ନିଜର ଡ୍ରାଇଭରକୁ ଚାହୁଁଛନ୍ତି—ଏମାନେ ସେହି ଡାକୁ ଦଳର ଲୋକ ନୁହନ୍ତି ତ ? ଏମାନଙ୍କ ପାଖରେ ପିସ୍ତଲ ନାହିଁ ତ ? କେଉଁଠି ଠକ୍ କରି ଶବ୍ଦ ହେଲେ ସେ ଚମକି ପଡ଼ୁଛନ୍ତି, ହୁଏତ ତାଙ୍କ ପଛରେ ପିସ୍ତଲ ଫୁଟେଇଲା କିଏ !

ଆଗରେ ଜଣେ ପୁଲିଶ୍ ଅଫିସର୍ ସାଇକଲ୍ ଚଢ଼ି ଚାଲିଗଲା । କେଶୋରୀମଲ୍‌ଙ୍କର ମନେ ହେଲା ଏଇ ପୁଲିଶ ଅଫିସରକୁ ସେ ଅଟକେଇ ଦେଇ କୁହନ୍ତେ, ସେ ପୁଲିଶ ସାହେବଙ୍କୁ ଜଣେଇ ଦିଅନ୍ତେ, କେଶୋରୀମଲ ବେକସୁର ; ସେଦିନ ଡାକୁମାନେ ତାଙ୍କୁ ଧରି ହଇରାଣ କରି ଦେଲେ । ଜାଣି ଶୁଣି ସେ ସାହେବଙ୍କୁ କିଛି ଅପମାନ ଦେଇ ନାହାଁନ୍ତି । ସାହେବଙ୍କୁ ସେ ଘୁଷ୍ ଦେବାକୁ ଡାକି ନ ଥିଲା ସେଠିକି, ଉପହାର ଦେବା ପାଇଁ ; ନା ନା, ଭୁଲ୍‌ରେ ତାର ମୁନିବ ସେଇ ହୀରାମାଳ କଥା କହି ଦେଇଚି···

ପୁଲିଶ ଅଫିସରର ସାଇକେଲକୁ ଟପି ମଟର ଆଗକୁ ଚାଲିଗଲା । ହଠାତ୍ ମୁନିବକୁ ଡାକି ଉଠିଲେ କେଶୋରୀମଲ । ମୁନିବ କେଶୋରୀମଲଙ୍କୁ ଅନେଇଲା । କେଶୋରୀମଲ ଆସ୍ତେ ଆସ୍ତେ ପଚାରିଲେ—

"ତମକୁ ପିସ୍ତଲ ଦେଖେଇଲା ପୁଲିଶ ସାହେବ ?"

"ହଜୁର ଭାରି ଜୋର୍‌ରେ ରାଗି ଗଲେ ଏକା···"

"ଆମକୁତ କେହି କଳାପୋଡ଼ା ଦେବାକୁ କହିଲେ ଆମେ ରାଗ କରୁନା ମୁନାବ । ବରଂ କଳାପୋଡା ନ ଦେଲେ ଆମେ ରାଗୁ ।...ତା ହେଲେ ପୁଲିଶ ସାହେବ ଘରେ କଣ ଆମଠାରୁ ବେଶି ଟଙ୍କା ଅଛି ?"

"ନା ସରକାର୍ ।"

"ତେବେ ? ତା ହେଲେ ଆମର ଗୋଟାଏ ପୁଲିଶ ସାହେବ ରଖ, ଏଥର ଆମେ ତା'ଉପରେ ରାଗିବା । କଣ କହୁଚ ମୁନାବ ?"

"ଆଜ୍ଞା, ଏ ପୁଲିଶ ସାହେବର ଆପଣଙ୍କୁ ବାନ୍ଧି ନେବାର କ୍ଷମତା ଅଛି..."

କେରୋଡ଼ିମଲ କିଛି ନ ଭାବି ପୂର୍ବପର କହିଲେ—

"ଆମେ ଆମ ପୁଲିଶ ସାହେବକୁ ବାନ୍ଧିବା..."

"ଆଜ୍ଞା, ତା ଆଗରୁ ସରକାରୀ ପୁଲିଶ ସାହେବ ଆପଣଙ୍କୁ ବାନ୍ଧି ନେଇ ଯାଇଥିବେ ଯେ..."

କେରୋଡ଼ିମଲ ଅତି ଆଶ୍ଚର୍ଯ୍ୟ ହୋଇ ପଚାରିଲେ—

"ତମେ ସତ କହୁଚ ମୁନାବ୍ ?"

"ଜି ସରକାର୍ ।"

ମଟର ବନ୍ଦ କରିବାକୁ ହଠାତ୍ ଡ୍ରାଇଭରକୁ ଡାକ ଦେଲେ କେରୋଡ଼ିମଲ । ମଟର ବନ୍ଦ ହେଲାରୁ ସେ ମୁନିବକୁ କହିଲେ—

"ତମେ ଏଇଠୁ ଓହ୍ଲାଇ ଯା ମୁନବ୍, ମୁଁ ଆଜି ମାଲଗୋଦାମକୁ ଯିବନି । ଡ୍ରାଇଭର, ମଟର ଚଲାଓ, ରଙ୍ଗପୁର ହାଉସ, ମହାନଦୀ କନାର ।"

ମୁନବ ଚାଲିଗଲା । କିଛି ସମୟ ପରେ ରଙ୍ଗପୁର ହାଉସ ପାଖରେ କେରୋଡ଼ିମଲଙ୍କ ମଟର ପହଞ୍ଚିଲା । ଗୋଟିଏ ପ୍ରକାଣ୍ଡ ତିନିମହଲା ଘର । ଆଗର ଝଙ୍ଗମଲମଲ ପଥର ବସ୍ତା ବାରଣ୍ଡାରେ ରାଣୀ ସାହେବ ନିଜେ ବୁଲୁଥାଆନ୍ତି, ତାଙ୍କ ସାଙ୍ଗରେ ବୁଲି ବୁଲି ଗପ କରୁଥାଆନ୍ତି ମିସ୍ ମୃଦୁଲା ଉତ୍ତରସିଂ । ଦୁହିଁଙ୍କର ଚେହେରା ଅତି ସୁନ୍ଦର । ସାଧାସିଧା ହେଲେ ମଧ୍ୟ ପୋଷାକର ଦାମିକା କପଡ଼ାରୁ ରୁଚି ଓ ଖାନଦାନ ଫୁଟି ପଡୁଛି । ମିସ୍ ଉତ୍ତରସିଂଙ୍କ ଅପେକ୍ଷା ରାଣୀ ସାହେବଙ୍କର ବୟସ ଦଶ ପନ୍ଦର ବର୍ଷ ଅଧିକ ହୋଇ ଥିଲେ ମଧ୍ୟ ପୂର୍ବର ରୂପ ଧୋଇ ଯାଇ ବର୍ତ୍ତମାନ ଯାହା ରହିଛି ସେଥିରେ ଅନେକ ଦିନ କାମ ଚଳିବ । ଉଭୟଙ୍କର ଦୃଷ୍ଟି ଅନେକ ଆଗରୁ ଶେଠ କେରୋଡ଼ିମଲଙ୍କ ଉପରେ ପଡ଼ିଚି, କିନ୍ତୁ କେରୋଡ଼ିମଲ କୁମାରୀ ଉତ୍ତରସିଂଙ୍କୁ ଦେଖିପାରି ନଥାନ୍ତି ।

କେରୋଡ଼ିମଲ ପାହାଚରେ ଉଠୁ ଉଠୁ ମୃଦୁଲା ଦେବୀ ବଡ଼ ପାଟିରେ ଡାକଦେଲେ—"ହ୍ୟାଲୋ, ହ୍ୟାଲୋ ମିଷ୍ଟର୍ କେରୋଡ଼ିମଲ, ଆପଣଙ୍କର ଆଉ ଜମା ଦେଖା ନାହିଁ ଯେ......"

ଏ ଶବ୍ଦରେ କେରୋଡ଼ିମଲ ମୁଣ୍ଡ ଟେକି ଦେଖିଲେ ଆଗରେ ସେହି ମାୟାବିନୀ ମିସ ସାହେବ । ଏ ଦୃଶ୍ୟରେ କେରୋଡ଼ିମଲଙ୍କର ଗୋଡ଼ ଅଚଳ ଅବସ୍ଥାରେ

ରହିଲା । ଏକଥା ଜାଣିପାରି ମୃଦୁଳା ଦେବୀ ଝଟ୍ ବୁଲିଆସି କେଶରଡ଼ମଲଙ୍କର ହାତ ଧରି ଆଗକୁ ବାଟ କଢ଼ାଇ ନେଲେ । ଦୃଶ୍ୟଟା ଏକାବେଳକେ ଭଲ ମାନୁଥାଏ । କେଶରଡ଼ମଲ ମୃଦୁଳା ଦେବୀଙ୍କ ଅପେକ୍ଷା ବୟସରେ ପ୍ରାୟ ଦଶବର୍ଷ ବଡ଼ ହେବେ । ତାଙ୍କୁ ତିରିଶ ବର୍ଷ ହେଲେ ମୃଦୁଳା ଦେବୀଙ୍କୁ ହେବ କୋଡ଼ିଏ ବର୍ଷ । ଏହି ଦୃଶ୍ୟ ଦେଖି ରାଣୀସାହେବ ମୁରୁକି ମୁରୁକି ହସୁଥାନ୍ତି ।

କେତେ କଥା ଭାବି କେଶରଡ଼ମଲ ଆଜି ରାଣୀସାହେବଙ୍କ ପାଖକୁ ଆସିଥିଲେ । ସେ ଭାବିଥିଲେ ଯେ, ଭଲ କରିବାକୁ ଯାଇ ଯେଉଁ ମନ୍ଦ ଘଟି ଯାଇଛି ଆଜି ଯାହା ଯୋଗୁ ଯେ କୌଣସି ଲୋକଙ୍କୁ ବାନ୍ଧି ପାରିବାର କ୍ଷମତା ବହିଥିବା ପୁଲିସ ସାହେବ ତାଙ୍କ ଉପରେ ବିଗିଡ଼ି ଯାଇଛନ୍ତି ରାଣୀସାହେବଙ୍କୁ ଧରି ତାର ଗୋଟାଏ ସମାଧାନ କରିବାର ଚେଷ୍ଟା କରିବେ । ସେହିଭଳି ମାଜିଷ୍ଟ୍ରେଟ ସାହେବ ମଧ୍ୟ ଯେମିତି ସନ୍ତୁଷ୍ଟ ହେବେ ତାର ବାଟ ବି କରିବାକୁ ହେବ । କିନ୍ତୁ ରାଣୀସାହେବଙ୍କ ପାଖରେ କୁମାରୀ ଜୱରସିଂଙ୍କୁ ଦେଖି କେଶରଡ଼ମଲଙ୍କ ମନ ଏକବାର ଦବି ଯାଇଛି । ଆଜିମଧ୍ୟ ସେଦିନ ଏହି ମିସ୍‌ସାହେବଙ୍କୁ ପାଞ୍ଚଲକ୍ଷ ଟଙ୍କା ଦେବାର ଜବାବ ଦେଇ ତାହା ସେ ଫାଙ୍କି ଦେଇଛନ୍ତି । ପୁଣି ଏହା ଭିତରେ ଆଜି ପାଞ୍ଚଲକ୍ଷ ଟଙ୍କା ତାଙ୍କୁ କିଏ ଠକି ନେଇ ଯାଇଛି । ବର୍ତ୍ତମାନ ଏକଥା ମଧ୍ୟ ମିସ୍ ସାହେବ ଜାଣି ସାରିଥିବେ । ଆହୁରି, ରାଣୀସାହେବ ଯେ ସେଦିନ ନଗର ଡାକ ବଙ୍ଗଳାର ଉଦ୍ୟାନ ଭୋଜିକି ଯାଇ ବିନା ଅଭ୍ୟର୍ଥନାରେ ଫେରି ଆସିଛନ୍ତି ସେ କଥା ରାଣୀସାହେବଙ୍କଠାରୁ ମିସ୍ ସାହେବ ଜାଣିଥିବା ଅସମ୍ଭବ ନୁହେଁ । ଦଣ୍ଡକ ଭିତରେ ସବୁକଥା ମନେ ପଡ଼ିଯିବାରୁ ଶେଠ୍ କେଶରଡ଼ମଲଙ୍କ ମନର ଜୋର ଖୁବ୍ ଭାଙ୍ଗି ପଡ଼ିବାକୁ ଲାଗିଲା । ଏଣେ ତାଙ୍କର ହାତ ଧରି ତାଙ୍କୁ ପାଛୋଟି ନେଉଛନ୍ତି ପରମାସୁନ୍ଦରୀ ମିସ୍‌ସାହେବ । ସେଦିନ କୁମାରୀ ଭିଲ୍ଲାରେ ସେ ପହିଲୁ କରି ଏହି ସୁନ୍ଦରୀ ଓ ଶିକ୍ଷିତା ଯୁବତୀ ହାତରେ ମଣିଷ ହତ୍ୟାର ଯନ୍ତ୍ର ପିସ୍ତଲ ଦେଖିଥିଲେ । ଏହିସବୁ ଭାବି ସେ ହଠାତ୍ ଥରେ ମିସ୍ ସାହେବଙ୍କ ମୁହଁ ଉପରେ ନିଜର ଦୃଷ୍ଟି ପକାଇଲେ । ଅତି ସୁନ୍ଦର ମୁହଁଟିଏ ! କେଶରଡ଼ମଲ ମନେ ମନେ ଭାବି ନେଲେ, ସେଦିନ ସେ ବୋଧହୁଏ ତାଙ୍କୁ ଥଟାକରି ପିସ୍ତଲ ଦେଖାଇ ଥିଲେ । ନ ହେଲେ ସେହି ପାଞ୍ଚଲକ୍ଷ ଟଙ୍କା ସକାଶ ତ ଆଜଯାଏ ମିସ୍ ସାହେବ କୌଣସି ତାଗିଦା କରି ନାହାନ୍ତି !

ଏହି ଶେଷ ଭାବନାରେ କେଶରଡ଼ମଲଙ୍କ ମନର ଟିକେ ପରିବର୍ତ୍ତନ ହେଲା । ତାଙ୍କ ହାତରେ ଲାଗିଥିବା ସୁନ୍ଦରୀ ଯୁବତୀର ସ୍ପର୍ଶ ମଧ୍ୟ ତାଙ୍କ ମନକୁ କଅଁଳ କରିବାରେ ଲାଗିଛି । କେଶରଡ଼ମଲ ପୂର୍ବର ଅବସ୍ଥା ଭୁଲି ହଠାତ୍ ମିସ୍ ସାହେବଙ୍କୁ ପଚାରିଲେ —

"ଆପଣଙ୍କର ଏଡ଼େ ସୁନ୍ଦର ହାତ, ଏ ହାତରେ ଆପଣ ସେଦିନ ପିସ୍ତଲ ଧରିଲେ କାହିଁକି ମିସ୍ ସାହେବ ? ମୁଁ ଆପଣଙ୍କୁ କେତେ ଭଲ ପାଉ ନ ଥିଲି, କିନ୍ତୁ ସେହିଦିନଠାରୁ ମୁଁ କୁମାରୀ ଭିଲ୍ଲାକୁ ଖୁବ୍ ଡରି ଯାଇଛି । ମୋଭିଟୋନ ବାବଦରେ ଆପଣଙ୍କର ସେହି ପାଞ୍ଚଲକ୍ଷ ଟଙ୍କା ଦେବାପାଇଁ ମଧ୍ୟ ମୁଁ ଯାଇ ପାରିନି ।"

"ଆମକୁଚ କେହି କଳାପୋଡ଼ା ଦବାକୁ କହିଲେ ଆମେ ରାଗ କରୁନା ମୁନିବ । ବରଂ କଳାପୋଡ଼ା ନ ଦେଲେ ଆମେ ରାଗୁ ।...ତା ହେଲେ ପୁଲିଶ ସାହେବ ଘରେ କଣ ଆମଠାରୁ ବେଶି ଟଙ୍କା ଅଛି ?"

"ନା ସରକାର୍ ।"

"ତେବେ ? ତା ହେଲେ ଆମର ଗୋଟାଏ ପୁଲିଶ ସାହେବ ରଖ, ଏଥର ଆମେ ତା'ଉପରେ ରାଗିବା । କଣ କହୁଚ ମୁନିବ ?"

"ଆଜ୍ଞା, ଏ ପୁଲିଶ ସାହେବର ଆପଣଙ୍କୁ ବାନ୍ଧି ନେବାର କ୍ଷମତା ଅଛି..."

କେରୋଡ଼ିମଲ କିଛି ନ ଭାବି ପୂର୍ବପର କହିଲେ—

"ଆମେ ଆମ ପୁଲିଶ ସାହେବକୁ ବାନ୍ଧିବା..."

"ଆଜ୍ଞା, ତା ଆଗରୁ ସରକାରୀ ପୁଲିଶ ସାହେବ ଆପଣଙ୍କୁ ବାନ୍ଧି ନେଇ ଯାଇଥିବେ ଯେ..."

କେରୋଡ଼ିମଲ ଅତି ଆଶ୍ଚର୍ଯ୍ୟ ହୋଇ ପଚାରିଲେ—

"ତମେ ସତ କହୁଚ ମୁନିବ୍ ?"

"ଜି ସରକାର୍ ।"

ମଟର ବନ୍ଦ କରିବାକୁ ହଠାତ୍ ଡ୍ରାଇଭରକୁ ଡାକ ଦେଲେ କେରୋଡ଼ିମଲ । ମଟର ବନ୍ଦ ହେଲାରୁ ସେ ମୁନିବକୁ କହିଲେ—

"ତମେ ଏଇଠୁ ଓହ୍ଲାଇ ଯା ମୁନିବ୍, ମୁଁ ଆଜି ମାଲଗୋଦାମକୁ ଯିବିନି । ଡ୍ରାଇଭର, ମଟର ଚଲାଓ, ରଙ୍ଗପୁର ହାଉସ, ମହାନଦୀ କିନାରା ।"

ମୁନିବ ଚାଲିଗଲା । କିଛି ସମୟ ପରେ ରଙ୍ଗପୁର ହାଉସ ପାଖରେ କେରୋଡ଼ିମଲଙ୍କ ମଟର ପହଞ୍ଚିଲା । ଗୋଟିଏ ପ୍ରକାଣ୍ଡ ତିନିମହଲା ଘର । ଆଗର ଝଙ୍ଗମଲମଲ ପଥର ବସା ବାରଣ୍ଡାରେ ରାଣୀ ସାହେବ ନିଜେ ବୁଲୁଥାଆନ୍ତି, ତାଙ୍କ ସାଙ୍ଗରେ ବୁଲି ବୁଲି ଗପ କରୁଥାନ୍ତି ମିସ୍ ମୃଦୁଲା ଉତ୍ତରସିଂ । ଦୁହିଁଙ୍କର ଚେହେରା ଅତି ସୁନ୍ଦର । ସାଧାସିଧା ହେଲେ ମଧ୍ୟ ପୋଷାକର ଦାମିକା କପଡ଼ାରୁ ରୁଚି ଓ ଖାନଦାନି ଫୁଟି ପଡୁଛି । ମିସ୍ ଉତ୍ତରସିଂଙ୍କ ଅପେକ୍ଷା ରାଣୀ ସାହେବଙ୍କର ବୟସ ଦଶ ପନ୍ଦର ବର୍ଷ ଅଧିକ ହୋଇ ଥିଲେ ମଧ୍ୟ ପୂର୍ବର ରୂପ ଧୋଇ ଯାଇ ବର୍ତ୍ତମାନ ଯାହା ରହିଛି ସେଥିରେ ଅନେକ ଧନୀ କାମ ଚଳିବ । ଉଭୟଙ୍କର ଦୃଷ୍ଟି ଅନେକ ଆଗରୁ ଶେଠ କେରୋଡ଼ିମଲଙ୍କ ଉପରେ ପଡ଼ିଛି, କିନ୍ତୁ କେରୋଡ଼ିମଲ କୁମାରୀ ଉତ୍ତରସିଂଙ୍କୁ ଦେଖିପାରି ନଥାନ୍ତି ।

କେରୋଡ଼ିମଲ ପାହାଚରେ ଉଠୁ ଉଠୁ ମୃଦୁଲା ଦେବୀ ବଡ଼ ପାଟିରେ ଡାକଦେଲେ—"ହ୍ୟାଲୋ, ହ୍ୟାଲୋ ମିଷ୍ଟର୍ କେରୋଡ଼ିମଲ, ଆପଣଙ୍କର ଆଉ ଜମା ଦେଖା ନାହିଁ ଯେ......"

ଏ ଶବ୍ଦରେ କେରୋଡ଼ିମଲ ମୁଣ୍ଡ ଟେକି ଦେଖିଲେ ଆଗରେ ସେହି ମାୟାବିନୀ ମିସ ସାହେବ । ଏ ଦୃଶ୍ୟରେ କେରୋଡ଼ିମଲଙ୍କର ଗୋଡ଼ ଅଚଳ ଅବସ୍ଥାରେ

ରହିଲା । ଏକଥା ଜାଣିପାରି ମୃଦୁଲା ଦେବୀ ଝଟ ଚାଲିଆସି କେଶୋରିମଲଙ୍କର ହାତ ଧରି ଆଗକୁ ବାଟ କଢ଼ାଇ ନେଲେ । ଦୃଶ୍ୟଟା ଏତିକି ବେଳେ ଭଲ ମାନୁଥାଏ । କେଶୋରିମଲ ମୃଦୁଲା ଦେବୀଙ୍କ ଅପେକ୍ଷା ବୟସରେ ପ୍ରାୟ ଦଶବର୍ଷ ବଡ଼ ହେବେ । ତାଙ୍କୁ ତିରିଶ ବର୍ଷ ହେଲେ ମୃଦୁଲା ଦେବୀଙ୍କୁ ହେବ କୋଡ଼ିଏ ବର୍ଷ । ଏହି ଦୃଶ୍ୟ ଦେଖି ରାଣୀସାହେବ ମୁରୁକି ମୁରୁକି ହସୁଥାନ୍ତି ।

କେତେ କଥା ଭାବି କେଶୋରିମଲ ଆଜି ରାଣୀସାହେବଙ୍କ ପାଖକୁ ଆସିଥିଲେ । ସେ ଭାବି ଥିଲେ ଯେ, ଭଲ କରିବାକୁ ଯାଇ ଯେଉଁ ମନ୍ଦ ଘଟି ଯାଇଛି ଆଉ ଯାହା ଯୋଗୁ ଯେ କୌଣସି ଲୋକଙ୍କୁ ବାନ୍ଧି ପାରିବାର କ୍ଷମତା ବହିଥିବା ପୁଲିସ ସାହେବ ତାଙ୍କ ଉପରେ ଚଗିଡ଼ି ଯାଇଛନ୍ତି ରାଣୀସାହେବଙ୍କୁ ଧରି ତାର ଗୋଟାଏ ସମାଧାନ କରିବାର ଚେଷ୍ଟା କରିବେ । ସେହିଭଳି ମାଜିଷ୍ଟ୍ରେଟ ସାହେବ ମଧ୍ୟ ଯେମିତି ସନ୍ତୁଷ୍ଟ ହେବେ ତାର ବାଟ ବି କରିବାକୁ ହେବ । କିନ୍ତୁ ରାଣୀସାହେବଙ୍କ ପାଖରେ କୁମାରୀ ଉତ୍ତରସିଂଙ୍କୁ ଦେଖି କେଶୋରିମଲଙ୍କ ମନ ଏକବାରେ ଦବି ଯାଇଛି । ଆଉମଧ୍ୟ ସେଦିନ ଏହି ମିସ୍‌ସାହେବଙ୍କୁ ପାଞ୍ଚଲକ୍ଷ ଟଙ୍କା ଦେବାର ଜବାବ ଦେଇ ତାହା ସେ ଫାଙ୍କି ଦେଇଛନ୍ତି । ପୁଣି ଏହା ଭିତରେ ଆଉ ପାଞ୍ଚଲକ୍ଷ ଟଙ୍କା ତାଙ୍କୁ କିଏ ଠକି ନେଇ ଯାଇଛି । ବର୍ତ୍ତମାନ ଏକଥା ମଧ୍ୟ ମିସ୍ ସାହେବ ଜାଣି ସାରିଥିବେ । ଆହୁରି, ରାଣୀସାହେବ ଯେ, ସେଦିନ ନଗଜ ଡାକ ବଙ୍ଗଳାର ଉଦ୍ୟାନ ଭୋଜିକି ଯାଇ ବିନା ଅଭ୍ୟର୍ଥନାରେ ଫେରି ଆସିଛନ୍ତି ସେ କଥା ରାଣୀସାହେବଙ୍କଠାରୁ ମିସ୍ ସାହେବ ଜାଣିଥିବା ଅସମ୍ଭବ ନୁହେଁ । ଦଣ୍ଡକ ଭିତରେ ସବୁକଥା ମନେ ପଡ଼ିଯିବାରୁ ଶେଠ୍ କେଶୋରିମଲଙ୍କ ମନର ଜୋର ଖୁବ୍ ଭାଙ୍ଗି ପଡ଼ିବାକୁ ଲାଗିଲା । ଏଣେ ତାଙ୍କର ହାତ ଧରି ତାଙ୍କୁ ପାଗ୍ଲେଟି ନେଉଛନ୍ତି ପରମାସୁନ୍ଦରୀ ମିସ୍‌ସାହେବ । ସେଦିନ କୁମାରୀ ଭିଲ୍ଲାରେ ସେ ପର୍ହିଲୁ କରି ଏହି ସୁନ୍ଦରୀ ଓ ଶିକ୍ଷିତା ଯୁବତୀ ହାତରେ ମଣିଷ ହତ୍ୟାର ଯନ୍ତ୍ର ପିସ୍ତଲ ଦେଖିଥିଲେ । ଏହିସବୁ ଭାବି ସେ ହଠାତ୍ ଥରେ ମିସ୍ ସାହେବଙ୍କ ମୁହଁ ଉପରେ ନଜର ଦୃଷ୍ଟି ପକାଇଲେ । ଅତି ସୁନ୍ଦର ମୁହଁଟିଏ ! କେଶୋରିମଲ ମନେ ମନେ ଭାବି ନେଲେ, ସେଦିନ ସେ ବୋଧହୁଏ ତାଙ୍କୁ ଅଟାକରି ପିସ୍ତଲ ଦେଖାଇ ଥିଲେ । ନ ହେଲେ ସେହି ପାଞ୍ଚଲକ୍ଷ ଟଙ୍କା ସକାଶ ତ ଆଜିଯାଏ ମିସ୍ ସାହେବ କୌଣସି ତାଗିଦା କରି ନାହାନ୍ତି !

ଏହି ଶେଷ ଭାବନାରେ କେଶୋରିମଲଙ୍କ ମନର ଟିକେ ପରିବର୍ତ୍ତନ ହେଲା । ତାଙ୍କ ହାତରେ ଲାଗିଥିବା ସୁନ୍ଦରୀ ଯୁବତୀର ସ୍ପର୍ଶ ମଧ୍ୟ ତାଙ୍କ ମନକୁ ଚଞ୍ଚଳ କରିବାରେ ଲାଗିଛି । କେଶୋରିମଲ ପୂର୍ବର ଅବସ୍ଥା ଭୁଲି ହଠାତ୍ ମିସ୍ ସାହେବଙ୍କୁ ପଚାରିଲେ —

"ଆପଣଙ୍କର ଏଡ଼େ ସୁନ୍ଦର ହାତ, ଏ ହାତରେ ଆପଣ ସେଦିନ ପିସ୍ତଲ ଧରିଲେ କାହିଁକି ମିସ୍ ସାହେବ ? ମୁଁ ଆପଣଙ୍କୁ କେତେ ଭଲ ପାଉ ନ ଥିଲି, କିନ୍ତୁ ସେହିଦିନଠାରୁ ମୁଁ କୁମାରୀ ଭିଲ୍ଲାକୁ ଖୁବ୍ ଡରି ଯାଇଛି । ମୋଭଟୋନ ବାବଦରେ ଆପଣଙ୍କର ସେହି ପାଞ୍ଚଲକ୍ଷ ଟଙ୍କା ଦେବାପାଇଁ ମଧ୍ୟ ମୁଁ ଯାଇ ପାରିନି ।"

କେଶୋରିମଲଙ୍କର ଏ କଥାରେ କୁମାରୀ ମୃଦୁଲା ଦେବୀଙ୍କର ଉଚ୍ଚ ହାସ୍ୟ କରିବାର ଇଚ୍ଛା ହେଉଥାଏ । କିନ୍ତୁ ହସ ବନ୍ଦ କରି ସେ ଧୀରେ ଧୀରେ କହିଲେ—

"ଆପଣ ଭୁଲ୍ ବୁଝିଲେ ଶେଠ୍ ସାହେବ । ପିଲାଙ୍କୁ ସିନେମାର ଅଭିନୟ ଶିଖେଇବାଲାଗି ଗୋଟାଏ ଖେଳନା ପିସ୍ତଲ ଆଣି ରଖିଥିଲି । ସେଥିରେ ଜନ୍ଦା ପିମ୍ପୁଡ଼ିଟାଏ ମରିବା ମଧ୍ୟ କଷ୍ଟ, ଆପଣଙ୍କୁ ପରିହାସ କରି ସେ ପିସ୍ତଲଟା ମୁଁ ଦେଖେଇଥିଲି । ଆପଣ ଏମିତି ଡରିଗଲେ—ସତେ । କିନ୍ତୁ ଖବର ଦେଇଥିଲେ ତ ମୁଁ ନିଜେ ଯାଇ ଆପଣଙ୍କ ପାଖରୁ ଟଙ୍କା ନେଇ ଆସିଥାନ୍ତି । ଏତେ ଅସୁବିଧାରେ ଆପଣ ପକେଇ ଦେଇଛନ୍ତି ଯେ, ସେଥିଲାଗି ମୋଭିଟୋନର ଘର ନେବା ସକାଶେ ମୁଁ ରାଣୀ ସାହେବଙ୍କୁ ଅନୁରୋଧ କରିଛି ।"

ରାଣୀ ସାହେବ ସେମାନଙ୍କ ପାଖ ହୋଇ ଆସିଲେଣି । ଶେଠ କେଶୋରିମଲ ଓ କୁମାରୀ ମୃଦୁଲା ଉତ୍ତରସିଂ ଦେଖିବାକୁ ପାଇଲେ ଯେ କଥାଭାଷାର ଆଦାନ ପ୍ରଦାନ ଭିତରେ ଉଭୟେ ନିଜ ନିଜର ସ୍ୱାର୍ଥଲାଗି ଖୁବ ଆଗେଇ ଯାଇଛନ୍ତି । ସେଥିପାଇଁ ନିଜେ ନିଜର ସ୍ୱାର୍ଥ ରକ୍ଷା ଦୃଷ୍ଟିରୁ କଥା ଭାଷା ବନ୍ଦ କରି ରାଣୀସାହେବଙ୍କ ନିକଟକୁ ଉଭୟେ ପ୍ରଫୁଲ୍ଲମନରେ ଚାଲିଆସିବାକୁ ଲାଗିଲେ । ରାଣୀସାହେବଙ୍କର ଅଳ୍ପ ନିକଟରେ କୁମାରୀ ସାହେବ କେଶୋରିମଲଙ୍କଠାଉଁ ନିଜ ହାତ ଛଡ଼ାଇ ନେଲେ । ଏଥିରେ ରାଣୀସାହେବ ପରିହାସ କରି କହି ଉଠିଲେ—

"ମୁଁ ପୁରୁଷଲୋକ ହୋଇଥିଲେ ମିସ ଉତ୍ତରସିଂଙ୍କର ଏହି ଅଯାଚିତ ସ୍ପର୍ଶ ସକାଶେ ମୋର ରାଜ୍ୟରୁ ଅଧେ ଦାନ କରିଦେଇଥାନ୍ତି ; ଆଉ ଏଥିଲାଗି ଆପଣ କ'ଣ ଦେବେ ମିଷ୍ଟର କେଶୋରିମଲ ?"

ରାଣୀ ସାହେବଙ୍କଠାରୁ ପଦେ କଥା ଶୁଣିବା ସହଜେ ସୌଭାଗ୍ୟର କଥା । ତା ଉପରେ ଏପରି ରସରସିଆ କଥା ଶୁଣି କେଶୋରିମଲଙ୍କ ମନ ଆନନ୍ଦରେ ମଶଗୁଲ ହୋଇ ଉଠିଲା । ସେ ହସ ହସ ହୋଇ କହିଲେ —

"କିନ୍ତୁ ଆପଣ ଏଇ ମିସ୍ ମୃଦୁଲା ଉତ୍ତରସିଂଙ୍କୁ ଜାଣି ନାହାନ୍ତି ରାଣୀ ସାହେବ । ବଡ ଅଭିମାନିନୀ ସେ । କାହାଠାରୁ କୌଣସି ଦାନ ନେବା ଲାଗି ସେ ମୋଟେ ଇଚ୍ଛା କରନ୍ତି ନି । ଦିନେ ତାଙ୍କର ଅନୁଷ୍ଠାନ ଲାଗି ଗରିବ ଭାବରେ ମୁଁ ୩୦ ହଜାରଟଙ୍କାର ଚେକ୍ ଖଣ୍ଡେ ଲେଖିଦେଲି । ମାତ୍ର ମିସ୍ ସାହେବ ତାହାକୁ ଖଣ୍ଡ ଖଣ୍ଡ କରି ଚିରି ଦେଲେ । ଆଉ ମଧ୍ୟ ମୋ ପକ୍ଷରୁ ସେ ଗୋଟିଏ ମୋଭିଟୋନ୍ କମ୍ପାନୀ ଆରମ୍ଭ କରିଛନ୍ତି—ତାର କେତେକ ଖର୍ଚ୍ଚ ସକାଶେ ପାଞ୍ଚଲକ୍ଷ ଟଙ୍କା ଦେବା ପାଇଁ ମୁଁ ଜବାବ ଦେଇଥିଲି । ସେତକ ଯାଇ ମଧ୍ୟ ସେ ମୋ ପାଖରୁ ଆଣିଲେ ନାହିଁ କି ମତେ ଆସି ତାଙ୍କ ପାଖରେ ଦେଇ ଯିବାକୁ ସୁବିଧା ଦେଲେ ନି । ସିନେମାର ଅଭିନୟ ଶିଖେଇବା ଲାଗି ଖରିଦ କରିଥିବା ଗୋଟାଏ ପିସ୍ତଲ ଧରି ମତେ ସେ ଏମିତି ଡରେଇଲେ ଯେ, ସେଇଦିନଠାଉଁ ମୁଁ କି ଆଉ କୁମାରୀ ଭିକ୍ଷା ମାଗେ ।...ସତ ମଣିବେ ହର୍ ହାଇନେସ୍, ସେଇଟା ଅସଲି କି ନକଲି ହେଉ ମଣିଷମରା ଯନ୍ତ୍ର ଦେଖିଲେ ମତେ ଭାରି ଡର ଲାଗେ ।"

ଅନେକ ଗୁଡ଼ାଏ କଥା କେରୋଡ଼ିମଲ କହିଗଲେ । କୁମାରୀ ଉତ୍ତରସିଂ ମଧ୍ୟ ଭାବ ପାରି ନ ଥିଲେ କେରୋଡ଼ିମଲଙ୍କୁ ନାକେର ହାଲ୍ କରିବା ପରେ ବି ସେ ତାଙ୍କର ସଦ୍‌ଗୁଣ ବଢ଼ାଇ ଏତେ ଗୁଡ଼ାଏ କଞ୍ଚା ମିଛ କଥା କହି ଦେଇ ପାରିବେ । କେରୋଡ଼ିମଲଙ୍କ ଏହି କଥାରେ କୁମାରୀ ମୃଦୁଳା ଦେବୀ ଦେଖିଲେ ରାଣୀସାହେବଙ୍କ ପାଖରେ ତାଙ୍କର ମର୍ଯ୍ୟାଦା ଢେର ବଢ଼ିଯାଇଛି । କେରୋଡ଼ିମଲଙ୍କ କଥାରେ ରାଣୀସାହେବ ଖୁବ ଖୁସି ହୋଇ ମୃଦୁଳା ଦେବୀଙ୍କର ହାତକୁ ଜୋରରେ ହଲାଇ ଦେଇ କହିଲେ—

"ଆପଣଙ୍କ ଚେହେରା ଦେଖିଲେ ଆପଣ ମହତ୍ ବୋଲି ମନେ ହୁଏ । ଆପଣ ବାସ୍ତବିକ ଖୁବ୍ ମହତ । ···ଆପଣ କେରୋଡ଼ିମଲଙ୍କର ପାଞ୍ଚଲକ୍ଷ ଟଙ୍କା ଗ୍ରହଣ କଲେ ନାହିଁ···?"

ଏଇଠାରେ ରାଣୀ ସାହେବ କଣ ଟିକେ ଭାବି ହଠାତ୍ କହି ପକେଇଲେ—

"ଆଚ୍ଛା ମିଷ୍ଟର କେରୋଡ଼ିମଲ, ସେଦିନ ରାତିରେ ଆପଣଙ୍କର ଏମିତି ବିପଦ ଘଟିଲା କଣ ?···ଏଇ କଟକ ସହରରେ ଆପଣ ଏମିତି କୋଉ ଡକାଏତ ହାବୁଡ଼ରେ ପଡ଼ିଲେ ମ···ଆପଣଙ୍କ ଠଉଁ କଏ କାଲେ ପାଞ୍ଚଲକ୍ଷ ଟଙ୍କା ଠକି ନେଇ ଗଲା···ସତ ?"

ଖୁବ୍ ଚେଷ୍ଟା କରି କେରୋଡ଼ିମଲ ଖୁବ ଉଚ୍ଚ ପାଟିରେ ହସି ଉଠିଲେ—

"ଭୁଲ, ଭୁଲ, ଆଜ୍ଞା ମୋ ଠଉଁ ଡକାଏତ ନେବ ଟଙ୍କା — ମାସକୁ ଦଶ-ଥର ମୁଁ ବମ୍ବେ କଲିକତା ବୁଲୁଚି, ଆଉ ଏଇ କଟକ ସହରରେ ମୁଁ ଡାକୁ ହାବୁଡ଼ରେ ପଡ଼ିବି ? ଜାଣିଲେନା ହିଜ ହାଇନେସ, ସେ ଦିନ ପ୍ରାୟ ଦଶପନ୍ଦର ଲକ୍ଷ ଟଙ୍କାର ହିସାବ ମତେ ଠିକ୍ କରିବାକୁ ପଡ଼ିଥିଲା । କ୍ୟାସ୍ ବି ମିଳେଇବାକୁ ହୋଇଥିଲା । ପହିଲି ନମ୍ବର ବାକ୍‌ସର ଟଙ୍କା ଦୁଇନମ୍ବର ବାକ୍‌ସରେ ରଖି ଦେଇ ମୁଁ ତ ମୁଣ୍ଡ ବିଗାଡ଼ି ବସିଚି···ଏଇ ହେଲା କଥା, ଟଙ୍କା ମୋର କିଛି ବରବାଦ ହୋଇନି । ମୋ ଟଙ୍କା ହବ ଚୋରି··ମୁଁ ଡାକୁ ହାବୁଡ଼ରେ ପଡ଼ିବି··ହା—ହା—ହା—"

ରାଣୀ ସାହେବ ଆଶ୍ଚର୍ଯ୍ୟ ହୋଇ କହିଲେ —

"ହଁତେ, ତେବେ ଭୋକଟା ସେଦିନ ଭଣ୍ଡୁର କରିଦେଲେ କାହିଁକି···?"

ଯୋଡ଼ହାତ କରି କହି ଉଠିଲେ କେରୋଡ଼ିମଲ—

"ବଡ଼ କସୁର ହୋଇ ଯାଇଚି ହିଜ ହାଇନେସ୍, ପୁଲିସ ସାହେବ ଆଉ କଲେଟର ବି ମୋ ଉପରେ ବଡ଼ ଗୋସା ହେଇ ଯାଇଚନ୍ତି । କଣ କରିବି ମୁଣ୍ଡ ତ ବିଗିଡ଼ି ଗଲା ସେଇଥିରେ—ତାପରେ ମୋର ବେକୁବ ମୁନିବଟା ସବୁ ମାଟି କରି ଦେଲା··· । ଆଚ୍ଛା, ସେ କଥା ତ ଗଲାଣି, ଆଉ ଦିନେ ଗୋଟାଏ ଦାଉତ କରିଦେଲେ ହବ··କଲେକ୍ଟର ମାଜିଷ୍ଟ୍ରେଟ ଆଉ ପୁଲିସ ସାହେବଙ୍କୁ କେମିତି ଖୁସ୍ କରାଯିବ ତାର ଗୋଟାଏ ବାଟ ବତେଇ ଦବାକୁ ହବ ଆପଣଙ୍କୁ···।"

ରାଣୀ ସାହେବ ନିଜର ଗୋଲାପ ଫୁଲପରି ଓଠରେ ଚମ୍ପାକଢ଼ି ପରି ହାତ ଆଙ୍ଗୁଠି ମାରି କହିଲେ···

"ଆଇ ସିଁ,...ମୋର ମନେ ପଡ଼ୁଚି ବର୍ତ୍ତମାନ...ହଁ—ହଁ, ଆପଣ କୁଆଡ଼େ ସେଦିନ ବିଜଣ ପୁଲିସ ସାହେବଙ୍କୁ ଭେଟିଥିଲେ...?"

ଚଡ଼ ଉଠି କେରୋଡ଼ିମଲ କହିବାକୁ ଲଗିଲେ—

"ଝୁଟ୍, ଝୁଟ୍, କଞ୍ଚା ମିଛ କଥା, ସବୁ କଥା ମୋର ଶତ୍ରୁମାନେ ଲଗେଇଛନ୍ତି। ଏଁ, ପୁଲିସ ସାହେବ ବିଜଣ...ବିଟା ଚନ୍ଦ୍ର, ବିଟା ସୂର୍ଯ୍ୟ କେହି ଦେଖିଛି ହିଜୁର୍? ଝୁଟ୍ ଝୁଟ୍ ସବୁ ମୋର ଶତ୍ରୁଙ୍କର କାଣ୍ଡ। ...କାହିଁକି କେରୋଡ଼ିମଲର ଭୋଜିକି ରାଣୀସାହେବ ଆସୁଛନ୍ତି, ସାହେବ ସୁବା, ଲାଟ ମନ୍ତ୍ରୀ ଆସୁଛନ୍ତି, ଏଇ ହେଲା ସେମାନଙ୍କର ଈର୍ଷାର କାରଣ।"

ଆଉ କିଛି ପଚାରିବା ପାଇଁ ରାଣୀସାହେବ ଉଚିତ ମନେ କଲେ ନାହିଁ। କେରୋଡ଼ିମଲଙ୍କ କଥାରୁ ଜାଣିଲେ ସବୁ ସେ ଭୁଲ ଶୁଣିଛନ୍ତି। ସେତେବେଳକୁ କୁମାରୀ ମୃଦୁଲା ଦେବୀଙ୍କ ମୁହଁରେ ଅଖଣ୍ଡ ଗାମ୍ଭୀର୍ଯ୍ୟ ଖେଳା କରୁଛି। ହୃଦ ଭିତରର ଅସୀମ ଆନନ୍ଦକୁ ସେ ମୁହଁର କଠିନତାର ଅଭଙ୍ଗା ଆବରଣରେ ବିଲକୁଲ ଘୋଡ଼େଇ ରଖି ଦେଇଛନ୍ତି, ଆଉ ମନେ ମନେ ଭାବୁଛନ୍ତି, ଆମର କଳ୍ପନାଶକ୍ତି ଅପେକ୍ଷା କେରୋଡ଼ିମଲର କଳ୍ପନା ଶକ୍ତି ନିଶ୍ଚୟ ବଡ଼, ତା ନ ହେଲେ ସେ ଲକ୍ଷପତି ଆଉ ଶେୟାରବଜାରର ରାଜା ହୋଇ ପାରି ନ ଥାନ୍ତା।

॥ ୮ ॥

ଅଦ୍ଭୁତ କଥା ଘଟିଲା। ଶେଷକୁ କେରୋଡ଼ିମଲଙ୍କ କଥାବାର୍ତ୍ତା ସରିବା ପରେ କୁମାରୀ ମୃଦୁଲା ଉତ୍ତରସିଂ କେରୋଡ଼ିମଲଙ୍କ ମଟରରେ କୁମାରୀ ଭିଲ୍ଲା ଫେରିଲେ।

ପଛ ସିଟ୍‌ରେ ବସିଥାନ୍ତି କୁମାରୀ ମୃଦୁଲା ଦେବୀ ଓ କେରୋଡ଼ିମଲ। ଆଗରେ ବସିଥାଏ ଡ୍ରାଇଭର। ମଟର ଝାଙ୍କୁଣିର ସୁବିଧା ନେଇ କେରୋଡ଼ିମଲ କୁମାରୀ ଉତ୍ତରସିଂ ପାଖକୁ ଲାଗି ବସିବାର ଚେଷ୍ଟା କରୁଥାନ୍ତି। ପାଇଜାମା ଆଉ ପଞ୍ଜାବୀ ପିନ୍ଧି ଉପରେ ଆଶମାନି ରଙ୍ଗର ଖଣ୍ଡେ ଦୋପଟା ପକେଇଥାନ୍ତି ମୃଦୁଲା ଦେବୀ। ପବନର ହିଲ୍ଲୋଳରେ ଅତି ସରୁ ଦୋପଟାର କାନି କେରୋଡ଼ିମଲଙ୍କ ଦେହରେ ପିଟିହୋଇ ଯାଉଥାଏ। ଆଖିର କଳା ଚଷମା ଭିତରେ ମୃଦୁଲା ଦେବୀ ଥରେ ଥରେ କେରୋଡ଼ିମଲଙ୍କୁ ଚାହିଁ ନେଉଥାନ୍ତି। ରଙ୍ଗବୋଳା ନାଲି ଓଠରେ ବେଳେ ବେଳେ ସ୍ନେହ ହସର ବୁଦ୍‌ବୁଦ ଉବୁକି ଉଠୁଥାଏ। ମୃଦୁଲା ଦେବୀ ଦେଖୁଥାନ୍ତି ଏଥିରେ ଶେଠ କେରୋଡ଼ିମଲ ବେଶ୍ ସୁଖ ଅନୁଭବ କରୁଛନ୍ତି। ଏହା ଦେଖି କୁମାରୀ ମୃଦୁଲା ଦେବୀ ଟିକେ ଘୁଞ୍ଚି ବସିଲେ ପଛକୁ। ସେଇ ଘୁଞ୍ଚି ବସିବା ଭିତରେ ସାଧା ସାଟିନ୍ କପଡ଼ାରେ ଢାଙ୍କି ହୋଇଥିବା ମୃଦୁଲା ଦେବୀଙ୍କ କଅଁଳ ଜଙ୍ଘଟା କେରୋଡ଼ିମଲଙ୍କ ଦେହରେ ଘଷି ହୋଇଗଲା। ମୃଦୁଲାଦେବୀ ଭାବିଲେ, ନିଶ୍ଚୟ କେରୋଡ଼ିମଲ ଏଥିରେ ଅଧିକ ସୁଖ

ଅନୁଭବ କରିଥିବେ । ମୃଦୁଳା ଦେବୀଙ୍କର ଏହି ଭାବନା ନ ସରୁଣୁ ସେ ଚମକି ଉଠି ଦେଖିଲେ କେଦୋରମଲ ନିଜର ହାତମୁଠା ଭିତରେ ଗୋଟିଏ କୁମାରୀ ହାତର ସ୍ପର୍ଶ ଅନୁଭବ କରୁଛନ୍ତି । ହଠାତ୍ ଉଭୟଙ୍କର ଆଖି ଏକ ହୋଇଗଲା । କିନ୍ତୁ ମୃଦୁଳା ଦେବୀଙ୍କର ଆଖିର ଭାଷା ତାଙ୍କ କଳାଚଷମା ଭିତରେ ଅଟକି ରହିଲା—ତାହାର କୌଣସି କଥା କେଦୋରମଲ ଜାଣି ପାରିଲେ ନାହିଁ । ମୁହଁରେ ହସ ଟାଣି ମୃଦୁଳା ଦେବୀ ଅତି କଅଁଳ ଭାଷାରେ କହିଲେ —

"ଶେଠ୍ ସାହେବ..."

ଏ କଥାରେ ମୃଦୁଳା ଦେବୀଙ୍କ ମାଉଁସିଆ ହାତ କେଦୋରମଲଙ୍କ ହାତ ମୁଠା ଭିତରେ ଆଉ ଟିକେ ଚପି ହୋଇଗଲା । କେଦୋରମଲଙ୍କ କାନରେ ଆଜି ଅନେକ ଦିନ ତଳର ସେହି ପରିଚିତ ମଧୁର ଶବ୍ଦ ପଡ଼ୁଛି । ସେ ଆଉ ଟିକେ ଘୁଞ୍ଚି ବସିଲେ । ମୃଦୁଳା ଦେବୀ ଫିକ୍ କରି ଟିକେ ହସି ଦେଇ କହିଲେ —

"ଆଉ କିଛି ଉଦ୍ଦେଶ୍ୟ ନାହିଁ ତ ?"

ମୃଦୁଳା ଦେବୀଙ୍କ ଦୁଇ ହାତକୁ ନିଜ ହାତରେ ଧରି କେଦୋରମଲ କରୁଣ ଭାବରେ କହିଲେ—

"ଆପଣ ମୋ ଉପରେ ଏତେ ବିଗିଡ଼ି ଯାଇଛନ୍ତି କାହିଁକି ମିସ୍ ସାହେବ ?"

"ନାହିଁ ତ !"

"କିନ୍ତୁ ମୋତି ବେଗମ୍ କଥାଟା ସହରରେ ପ୍ରଘଟ କଲା କିଏ ? ମୋର ଇଜ୍ଜତ ଆଜି ନଷ୍ଟ ହୋଇଯିବାକୁ ବସିଚି । ଟଙ୍କା ସଜିଲ କରିସାରି ମୁଁ ନିଶ୍ଚେ ଆପଣଙ୍କ ପାଖକୁ ଯାଇଥାନ୍ତି—କିନ୍ତୁ ତା ଆଗରୁ ଆପଣ ସେ କଥାଟା ପ୍ରଘଟ କରିଦେବାଟା କଣ ଭଲ ହେଲା ମିସ୍ ସାହେବ ?"

କୌଣସି ପ୍ରକାର ଅସହଣୀ ନ ହୋଇ ମୃଦୁଳା ଦେବୀ ଆସ୍ତେ ଆସ୍ତେ କହିଲେ —

"ମୁଁ ପ୍ରଘଟ କରିଚି ବୋଲି ଆପଣ ପ୍ରମାଣ ଦେଇ ପାରିବେ ?"

"ନା, ନା, ଆପଣ କଣ ବୁଲି ବୁଲି ନାଗରା ପିଟିଚନ୍ତି ବୋଲି ମୁଁ କହୁଚି । ମୁଁ ମନେ କରୁଚି ଆପଣ କଥାଛଳରେ କୋଉଠି କିଛି ଗପି ଦେଇଛନ୍ତି, ଫଳରେ ଡାକୁମାନେ ସେ କଥା ଜାଣିବାକୁ ପାଇଛନ୍ତି । ଡାକୁମାନେ ମତେ ଆଜି ଜବତ୍ କରିବା ଉପରେ । ସେମାନେ ଏହା ଭିତରେ ମୋର ପାଞ୍ଚଲକ୍ଷ ଟଙ୍କା ବରବାଦ କରି ଦେଇଛନ୍ତି...।"

କେଦୋରମଲଙ୍କ ଆଜିର ମିଳାମିଶାର ଅର୍ଥ ଏତେବେଳକେ ମୃଦୁଳା ଦେବୀ ଜାଣିବାକୁ ପାଇଲେ । ମୁହଁରେ ଯଥେଷ୍ଟ ବିସ୍ମୟ ପ୍ରକାଶ କରି ସେ କହିଲେ—

"ତା ହେଲେ ସେଇ ଡକାଏତି କଥାଟା ସତ ? ଆଉ ଆପଣ ରାଣୀ ସାହେବଙ୍କ ଆଗରେ ଭୁକ୍କା ମିଛ କଥା ବୋଲି କହିଲେ କାହିଁକି ?"

କିଛି ସମୟ ଭୁନ ରହି କେଦୋରମଲ କହିଲେ—

"ଆଉ କଣ କରନ୍ତୁ ! ଏଇ କଟକ ସହରରେ ମୁଁ ଡାକୁ ହାବୁଡ଼ରେ ପଡ଼ିଚ ବୋଲି ସମସ୍ତେ ଜାଣିଲେ ମୋର କଣ ଗୌରବ ବଢ଼ିବ ମିସ୍ ସାହେବ ! ମୋର ଟଙ୍କା ତ ଆଉ ଫେରିବ ନାହିଁ—ତା ଛଡ଼ା ବଜାରରେ ମୁଁ ଓଲୁ ବୋଲି ପ୍ରମାଣିତ ହୋଇଯିବି । ସେଥିରେ ମୋର ଆହୁରି ଲୋକସାନ—ଆପଣ ଭାବି ଦେଖନ୍ତୁ ମିସ୍ ସାହେବ !"

ଏଇଟା ମାରୁଆଡ଼ିମାନଙ୍କର ବ୍ୟବସାୟ ନୀତି ବୋଲି କୁମାରୀ ଉତ୍ତରସିଂ ଜାଣି ନେଲେ ବି ମୁହଁରେ ଦୁଃଖ ପ୍ରକାଶ କରି କହିଲେ --

"ତା ବୋଲି···"

"ମୁଁ ଠିକ କରିଛି । ଦୁନିଆରେ ହାରି ଜିତିରି ବ୍ୟବସାୟ ଲାଗିଚି ମିସ୍ ସାହେବ ।"

କୁମାରୀ ଭିଲ୍ଲାର ବାହାର ଫାଟକ ପାଖରେ କେଡ଼ୋଡ଼ମଲଙ୍କ ମଟର ଆସି ଲାଗିଲା । ଡ୍ରାଇଭରକୁ ସେ ଭିତରକୁ ମଟର ଚଳାଇବା ଲାଗି ହୁକୁମ ଦେଲେ । ଭିତର ଫାଟକ ଆଗରେ ମଟର ବନ୍ଦ ହେଲା ।

ବୈଠକଖାନାରେ ମୃଦୁଳା ଉତ୍ତରସିଂ ଓ ପାନ୍ନାଲାଲ କେଡ଼ୋଡ଼ମଲ ଗୋଟିଏ ଗୋଟିଏ ଚେୟାର ଦଖଲ କରି ବସିଲେ । କିଛି ସମୟ ପରେ ପରିଚାରିକା ସୁନା ଥାଳିଆରେ ସୁନେଲି ତବକ ଦିଆ ପାନ ଓ ସିଗାରେଟ ଥୋଇ ଦେଇ ଚାଲିଗଲା । ଗୋଟାଏ ସିଗାରେଟ୍ ଧରିଲେ କେଡ଼ୋଡ଼ମଲ ।

କିଛି ସମୟ ବିଶ୍ରାମ ନେଲା ପରେ କେଡ଼ୋଡ଼ମଲ ହସି ହସି କହିଲେ—

"ସେଦିନ ଆପଣ ମତେ ଏଇଟି ପିସ୍ତଲ ଦେଖେଇଥିଲେ ମିସ୍ ସାହେବ···"

ହସି ଉଠି ମୃଦୁଳା ଉତ୍ତରସିଂ କହିଲେ—

"ସେଇଟା ସେଇ ଖେଳନା ଶେଠ ସାହେବ, ପିସ୍ତଲ ନୁହେଁ—"

ଖୁବ୍ ଚାଲାଖ ଲୋକ ପରି ଝଟ୍ ପଚାରିଲେ କେଡ଼ୋଡ଼ମଲ—

"ସେଇଟା ଅଛି ବର୍ତ୍ତମାନ ଆପଣଙ୍କ ପାଖରେ ?"

ହସି ହସି କୁମାରୀ ଉତ୍ତରସିଂ କହିଲେ—

"ମୋ ପାଖରେ ତ ଆଉ ରହିବାର କଥା ନୁହେଁ—ସେ ଦିନ ମୁଁ ତାକୁ ମୋତିବେଗମ୍‌ଙ୍କ ପାଇଁ ଧରିଥିଲି—ସାରା ନାରୀଜାତିର ଇଜ୍ଜତ ରକ୍ଷା ପାଇଁ ।"

କୁମାରୀ ଉତ୍ତର ସିଂଙ୍କ ଏହି କଥାକୁ ବିଶେଷ ଭଲ ଭାବରେ କେଡ଼ୋଡ଼ମଲ୍ ଗ୍ରହଣ କରି ପାରିଲେ ନାହିଁ । ଟିକେ ଗମ୍ଭୀର ହୋଇ ସେ କହିଲେ—

"ସେ ଦିନ ରାତିରେ ନଗର ଡାକ ବଙ୍ଗଳାରେ ଗୋଟାଏ ପାଗଳା ମଧ ପିସ୍ତଲ ଧରିଥିଲା । ସେ କଣ ଆପଣଙ୍କର ନାରୀ ଜାତି ଆଉ କଲିକତାର ମୋତି ବେଗମ୍‌ର ଇଜ୍ଜତ ରକ୍ଷା ପାଇଁ ପିସ୍ତଲ ଧରିଥିଲା ?"

"ନିଶ୍ଚୟ—" କହି ଆସି ହଠାତ୍ ନିଜର ଭୁଲ୍ ସଂଶୋଧନ କରି ମୃଦୁଳା ଦେବୀ କହିଲେ—

"ସେହି ମୋତି ବେଗମ୍ ସକାଶେ ଆପଣ ବଡ଼ ବିଚଳିତ ହୋଇ ପଡ଼ିଚନ୍ତି ଶେଠ ସାହେବ—କିନ୍ତୁ ବାହାର ଲୋକ କେମିତି ଜାଣିଲେ ଏସବୁ କଥା ମୁଁ ଭାବି ପାରୁ ନି ।"

ଏହା କହି ଟେବୁଲର ଡ୍ରୟରରୁ ସେ ଦିନର ସେଇ ପକେଟ ଘଡ଼ିଟା ବାହାର କରି କେଶରୀମଲଙ୍କୁ ଦେଇ ସେ କହିଲେ—

"ମୋତି ବେଗମ୍ ଏଥର ନିଜକୁ ନିଜେ ରକ୍ଷା କରୁ । ତା କଥା ଏଥର ମୋ ପାଖରୁ ନିକାଶ ପାଉ । ଆପଣ ମତେ ବୃଥାରେ ସନ୍ଦେହ କରିଚନ୍ତି ସେଥିଲାଗି ।"

କେଶରୀମଲ ମନର ଭାବ ଚାପି ଖୁସି ମନରେ କହିବାକୁ ଲାଗିଲେ—

"ମୁଁ ସେଥିଲାଗି ହୁଏତ ଆପଣଙ୍କୁ ସନ୍ଦେହ କରୁ ନି । କିନ୍ତୁ ମୋର ସନ୍ଦେହ ହେଉଚି—ମୋତି ବେଗମଙ୍କୁ ଆପଣ ଜାଣିଲେ କେମିତି ।"

ମୃଦୁଲା ଦେବୀ ହସ ହସ ହୋଇ କହିଲେ—

"ମୋର ଅନେକ ଦିନର ଚିହ୍ନା, ମୋର ଭଉଣୀ ପରି, କଲିକତାରେ ସେ ମୋ ସଙ୍ଗରେ କଲେଜରେ ପଢୁଥିଲେ ।"

ମୃଦୁଲା ଦେବୀଙ୍କ କଥାଟା ଶୁଣୁଥିଲା ସମୟରେ ଘଣ୍ଟାଟାକୁ ଭଲ କରି ଦେଖି ନେଇ ତାକୁ ଖୁବ ଖୁସି ମନରେ ହାତରେ ବାନ୍ଧିଲେ କେଶରୀମଲ । ଏଇ ଘଡ଼ି ଲାଗି ସେ ଆଜି ପାଞ୍ଚ ଲକ୍ଷ ଟଙ୍କା ଋଣରେ ପଡ଼ିଛନ୍ତି । ଏଇ ଘଡ଼ି ଭିତରେ ଅଛି ପ୍ରେୟସୀ ମୋତିବେଗମ୍ । ଅନେକ ଦିନ ପରେ ଘଡ଼ିଟା ହାତକୁ ଆସିଥିବାରୁ କେଶରୀମଲ ବାସ୍ତବିକ ଖୁସି ହେଲେ ।

କୁମାରୀ ମୃଦୁଲା ଦେବୀ ଘର ଭିତରକୁ ଯାଇ ଅଳ୍ପ ସମୟ ପରେ ଫେରି ଆସି କେଶରୀମଲଙ୍କୁ କହିଲେ—

"ଆପଣଙ୍କର ଏଇ ମୁଦିଟା ମଧ୍ୟ ନିଅନ୍ତୁ । ସେ ଦିନ ଆପଣ ଏଇଟିକୁ ଏଠି କେମିତି ଖସେଇ ପକେଇ ଯାଇଥିଲେ ।"

"ନା, ନା, ନା, ଏ ମୁଦିଟାକୁ ତ ମୁଁ ସୁପ୍ରୀତି ଦେବୀଙ୍କି ଦେଇଥିଲି ।"

କେଶରୀମଲଙ୍କର ଏହି କଥା ଶୁଣି ମୃଦୁଲା ଦେବୀ ଖୁବ୍ ଆଶ୍ଚର୍ଯ୍ୟ ହୋଇ ପଡ଼ିଲେ । ସେ ମନେ ମନେ ଭାବିଲେ, ସେ ଦିନ ସୁପ୍ରୀତିର ସେଇ ଅଭିନୟ କଣ ଶୁଧୁ ମିଛ ! ଖୁବ୍ ଚେଷ୍ଟା କରି ମନର ଉତ୍ତେଜନାକୁ ଆୟତ୍ତରେ ଆଣି ଏକ ନିଃଶ୍ୱାସରେ ସେ କହିଲେ—

"ଏହି ପ୍ରକାର ଦାନର ମୁଁ କେତେ ବିରୋଧୀ ଆପଣ ତାହା ଜାଣନ୍ତି ଶେଠସାହେବ ! ତା ପରେ ମୋର ଅଜାଣତରେ କୁମାରୀ ଭିଲ୍ଲାର ଗୋଟିଏ ବାଳିକାକୁ ଏପରି ଗୋଟିଏ ମୂଲ୍ୟବାନ୍ ଉପହାର ଦେବା ଆପଣଙ୍କ ପକ୍ଷରେ ଅନୁଚିତ ହୋଇଛି ।"

ଏତିକି କହିସାରି କୁମାରୀ ଉତ୍ତରପିଂ ନିଃଶ୍ୱାସ ମାରିବାକୁ ଲାଗିଲେ । ସେ ମନେକଲେ, ଘରତର ପ୍ରତ୍ୟେକ ଲୋକ ପାଖରେ ଏହି ମାରୁଆଡ଼ି ପୁଞ୍ଜିପତି ହୁଏତ ଦୋଷୀ; କିନ୍ତୁ ବ୍ୟକ୍ତିଗତ ଭାବରେ ସୁପ୍ରୀତି ଯେତେ ଅନ୍ୟାୟ କରିଛି କେଶରୀମଲ ତ

ସେପରି କିଛି କୁହନ୍ତି ନାହିଁ । ମନରେ ତାଙ୍କର ସନ୍ଦେହ ଉଠିଲା । ସେ ଭାବିଲେ, ଏହି କୁମାରୀ ଭଲ୍ଲାର କିଛି ରହସ୍ୟ ଭେଦ କରିବା ପାଇଁ କେଶୋରୀମଲ ଚେଷ୍ଟା କରି ସୁପ୍ରୀତିକୁ ଏହି ହୀରାମୁଦିଟା ଲାଞ୍ଚସ୍ଵରୂପ ଦେଇଥିଲା । ସୁପ୍ରୀତି ଆଜି ଯାଇ ଦୂର ରଙ୍ଗପୁର ରାଜବାଟୀରେ । ପାଖରେ କେଶୋରୀମଲ ଏକା । କୁମାରୀ କେଶୋରୀମଲଙ୍କୁ ପ୍ରଶ୍ନ କଲେ—

"ସୁପ୍ରୀତିକୁ ଏପରି ଗୋଟିଏ ଦାମିକା ମୁଦି ଉପହାର ଦେବାର କାରଣ କଣ ?"

କଥାଟାକୁ ହାଲକା କରିଦେବା ଉଦ୍ଦେଶ୍ୟରେ କେଶୋରୀମଲ ଖୁସି ମିଜାଜରେ କହିଲେ—

"ସେମିତି ଗୁରୁତର କାରଣ କିଛି ନାହିଁ । ଏହି କୁମାରୀ ଭଲ୍ଲାକୁ ମୁଁ ମୋର ସର୍ବସ୍ଵ ଦେଇ ଦେବାକୁ ବେଳେ ବେଳେ ଭାବେ । ଏଠାକାର ନୃତ୍ୟ, ଏଠାକାର ସଙ୍ଗୀତ, ଏଠାର ଯୁବତୀମାନଙ୍କର ଉଜ୍ଜ୍ୱଳ ରୂପର ତରଙ୍ଗ ମତେ ଖୁବ୍ ମୋହିତ କରି ରଖିଛି । ମୁଁ ଭାବିଥିଲି ମୃଦୁଲା ମୋଭିଟାନ୍‌ର ସୁପ୍ରୀତି ଦେବୀ ହିଁନେ ହେବେ ଜଣେ ପ୍ରଧାନ ନାୟିକା । ସେଥିଲାଗି ତାଙ୍କୁ ମୁଁ ଗୋଟାଏ ଅଗାମୀ ଉପହାର ଦେଇଥିଲି । କିଛି ଭୁଲ ହୋଇଥିଲେ ମତେ ଆପଣ କ୍ଷମା ଦେବେ ମିସ୍-ସାହେବ !"

କୁମାରୀ ମୃଦୁଲା ଦେବୀ ଦେଖିଲେ, କେଶୋରୀମଲ ଏହା ଭିତରେ ଖୁବ୍ ଖୋଲାଖେଲି କଥାଭାଷା କରିବା ଆରମ୍ଭ କରି ଦେଇଛନ୍ତି । କେଶୋରୀମଲଙ୍କ କଥାରେ ମୃଦୁଲା ଦେବୀ ଖୁବ୍ ଖୁସି ହୋଇଥିବାର ଭାବ ପ୍ରକାଶ କରି ନରମ ସ୍ୱରରେ କହିଲେ—

"କୁମାରୀ ଭଲ୍ଲାକୁ ଆପଣ ଏତେ ଭଲ ପାଉଥିବା ସ୍ଥଳେ ସେହିଠିକୁ ଆପଣ ଏଆଡ଼େ ଟିକେ ପାଦ ପକାଉ ନ ଥିଲେ କାହିଁକି ଶେଠ୍‌ସାହେବ ?"

"ଆଉ ପଚାରୁଛନ୍ତି ସେ କଥା—ଆପଣଙ୍କର ସେଇ ପିସ୍ତଲ ଆଉ ମୋର ସେଇ ପାଞ୍ଚଲକ୍ଷ ଟଙ୍କା ଦେବାର ଜବାବ—ଦୁଇଟି ଯାକରୁ ଗୋଟିଏ ହେଲେ ମୋର ମାରୁଆଡ଼ି ରକ୍ତରେ ସହିଲା ନାହିଁ । କେତେ କଷ୍ଟରେ ଆମେ ରୋଜଗାର କରୁ ଆପଣ ସେ କଥା ଭାବି ପାରିବେ ନାହିଁ ମିସ୍ ସାହେବ !"

"ବଡ଼ କଷ୍ଟ···ହା—ହା—ହା—"

ଉଚ୍ଚ ହାସ୍ୟରେ ଘରଟା କମ୍ପି ଉଠିଲା ହଠାତ୍ । ଟେବୁଲ ଉପରୁ ମୁହଁ ଟେକିଲେ ମୃଦୁଲାଦେବୀ, ଚମକି ଉଠି କେଶୋରୀମଲ ଅନେଇଲେ ପଛକୁ । ତାଙ୍କ ପଛରେ ଜଣେ ପୁଲିସ ଇନ୍‌ସ୍‌ପେକ୍‌ଟର, ତାଙ୍କର ଆହୁରି ପଛକୁ ଦୁଇଜଣ କନେଷ୍ଟବଲ । କାହା ଉଦ୍ଦେଶ୍ୟରେ ଏମାନେ ?

॥ ୯ ॥

ପୁଲିସ ଇନ୍ସପେକ୍ଟର ଗୋଟିଏ ଚୌକିରେ ବସି ପଡ଼ି ମୃଦୁଲା ଦେବୀଙ୍କୁ ପଚାରିଲେ – "ଆପଣଙ୍କର କଥାଭାଷା ଶେଷ ହେଲାଣି ମିସ୍ ଉତ୍ତରସିଂ ।"

"ଆମ ସାଙ୍ଗରେ କିଛି କାମ ଅଛି ?" ମୃଦୁଲା ଦେବୀ ପ୍ରଶ୍ନ କଲେ ।

ଟିକେ ଗମ୍ଭୀର ହୋଇ ଇନ୍ସପେକ୍ଟର କହିଲେ—.

"ଗୋଟାଏ ଏକ୍ସଟ୍ରାଡ଼ିସନାଲ ୱାରେଣ୍ଟ, ମାନେ ଅନ୍ତରକ୍ତ ଗିରଫଦାରୀ ପରୱାନା ଅଛି ।" କେରୋଡ଼ିମଲ ବଡ଼ ପାଟିରେ କହିଉଠିଲେ –

"ୱାରେଣ୍ଟ, ଏଥିରେ ନାରୀ ଜାତିର ଇଜ୍ଜତ ରକ୍ଷା କରିବେ ଆପଣ ମିସ୍ ସାହେବ ? ସେଇ ପିସ୍ତଲ୍‌ଟା ଆପଣଙ୍କୁ ନିଶ୍ଚୟ ଅଡୁଆରେ ପକେଇ ଦେଇଛି ?"

ଏତିକ କହି କେରୋଡ଼ିମଲ ଉଠିଯାଇ ପଙ୍ଖାଟାର ବେଗ ବଢ଼ାଇ ଦେଇ ଠିଆ ହେଲେ । ତାହାପରେ ରହି ରହି ମୃଦୁଲା ଦେବୀଙ୍କୁ ପଚାରିଲେ—

"ମୋ ସାଙ୍ଗରେ ଆଉ କାମ ଅଛି କଣ ମିସ୍‌ସାହେବ ?"

"ଅନ୍ତତଃ ଜାମିନ ଦରକାର ହୋଇପାରେ –"

ମୃଦୁଲା ଦେବୀଙ୍କ ପାଟିରୁ କଥା ଶେଷ ନ ହେଉଣୁ କେରୋଡ଼ିମଲଙ୍କୁ ଧରି ପକେଇ ପୁଲିସ ଇନ୍‌ସ୍‌ପେକ୍‌ଟର କହିଲେ—

"ତମେ ଯାଇ ପାରିବ ନାହିଁ କେରୋଡିମଲ । ତମ ନାଁରେ ଏକ୍ସଟ୍ରାଡିସନାଲ ୱାରେଣ୍ଟ । ମୁଁ ତମକୁ ଆରେଷ୍ଟ କଲି ବର୍ତ୍ତମାନ ।"

"ମତେ ! !" କେରୋଡ଼ିମଲ ଆଉ କିଛି କହି ପାରିଲେ ନାହିଁ । ଧୀରେ ଚୌକିରେ ବସି ପଡି କିଛିକ୍ଷଣ ପରେ ସାହସର ସହିତ କହିଲେ—

"ଖାଲି ମତେ ଜବତ କରିବାକୁ ପୁଲିସ ରହିଛି । କାହିଁ, ସେ ଧନ ମୋର ପାଞ୍ଚଲକ୍ଷ ଟଙ୍କା ଡକାଏତି ହୋଇଗଲା, ତାର ତ ପୁଲିଶ ଆଉ କିଛି କଲାନି,—ଆଉ କେରୋଡ଼ିମଲ କୋଉଠି କଣ କରୁଚି ସେଇଟିକି ଅନେଇ ବସିଚି ପୁଲିଶ···"

"ରାତି ଅଧରେ ତମର କଣ ଘଟିଲା ସେ କଥା ପୁଲିଶ କେମିତି ଜାଣିବ ? ତାର କିଛି ପ୍ରମାଣ ମଧ୍ୟ ନାହିଁ । କିନ୍ତୁ ତମର ଯେ ଧନ ଧପହତ୍ରେ ଡକାଏତି ! ତମର ଭୁଇଁ ତଳ ଗୋଦାମରୁ ପଚାଶ ଗାଣ୍ଠି ଲୁଗା ଜବତ ହୋଇଛି । ଏହା ଆଗରୁ ତମକୁ ଅନେକଥର ଗୁଡ ଦିଆହୋଇଛି, ତମେ ମଧ୍ୟ ଅନେକଥର ଆମକୁ ଠକିଛ । ଏଥର ଆଉ ଛାଡ଼ ନାହିଁ । ବର୍ ରାସ୍ତାରେ ହାତକଡ଼ି ପକେଇ ନେବାକୁ ମାଜିଷ୍ଟ୍ରେଟଙ୍କର ଅର୍ଡ଼ର ଅଛି ।"

ଏହା କହି ୱାରେଣ୍ଟଟା କେରୋଡ଼ିମଲଙ୍କୁ ଦେଖାଇଲା ପୁଲିଶ । କୁମାରୀ ଉତ୍ତରସିଂ ମଧ୍ୟ ପରୱାନା ପଢ଼ିଲେ । ପଢ଼ିସାରି ସେ କହିଲେ –

"ଜାମିନ ମିଳିବ ତ ?"

"ନା"

ଏତିକ କହି ପୁଲିଶ ଇନ୍‌ସ୍‌ପେକ୍‌ଟର ଚୁପ୍ ହୋଇ ରହିଲେ । ତାଙ୍କର ହାତକୁ ଧରି ପକେଇ କେଦାରମଲ କହିବାକୁ ଲାଗିଲେ—

"ଦେଖନ୍ତୁ ସାହେବ, ସେଇ ମାଟିତଳ ଗୋଦାମଟା ଶଙ୍କରଆର । ଆପଣଙ୍କ ତଦାରଖ ଭୁଲ ହୋଇଚି । ଯା ହେଉ, ଆପଣଙ୍କ ସାଙ୍ଗରେ ତାର ତ ଆଉ କଥା ନାହିଁ । ଏଇଠି ମିସ୍ ସାହେବ ଅଛନ୍ତି, ଦଶ ଲକ୍ଷ ଟଙ୍କାର ମାଲିକ ସିଏ, ଏଇ କୁମାରୀ ଭଲ୍ଲାଟା ତାଙ୍କର ଖାସ ନୌକର । ତାଙ୍କୁ ଧରି କିଛି ଗୋଟାଏ ଠିକ କରି ଦିଅନ୍ତୁ । ବର୍ତ୍ତମାନ ମାଜିଷ୍ଟ୍ରେଟ ସାହେବ ଆଉ ପୁଲିଶସାହେବ ମୋ ଉପରେ ଖୁବ ବିଗିଡ଼ି ଯାଇଛନ୍ତି, ସେଥିଯୋଗୁ ସେ ଏମିତି କଡ଼ା ଅର୍ଡ଼ର ଦେଇଛନ୍ତି କିନ୍ତୁ ଆପଣ ଇଚ୍ଛାକଲେ ସବୁ ହୋଇ ପାରିବ ଇନ୍‌ସ୍‌ପେକଟର ବାବୁ..."

କେଦାରମଲଙ୍କ ହାତ ଛାଡ଼ିଦେଇ ଖୁବ୍ ରାଗି ଯାଇ ଇନ୍‌ସ୍‌ପେକ୍‌ଟର କହିଲେ—

"ଓଡ଼ିଶାରେ ତମର ପାଞ୍ଚଟା ଗୋଦାମ ଅଛି କେଦାରମଲ, ଗୋଟାଏ ଗୋଦାମରୁ ଯଦି ପଚିଶ ଗାଣ୍ଠି ଲୁଗା ଜବତ ହୁଏ ତାହେଲେ ତମେ କେତେ ଚୋରା ଲୁଗା ଜମେଇ ରଖିଚ ଭାବି ପାରୁଚ ? ଗୋଟାଏ ଜିଲାର ଲୋକଙ୍କୁ ତମେ ଲଙ୍ଗଳା କରି ରଖିଚ । ତମର ବଜାର କରି ବିଚ ରାସ୍ତାରେ ତମକୁ ଗୁଳି କରିବା ଉଚିତ ।"

କଣ କରିବେ କିଛି ଭାବି ନ ପାରି କେଦାରମଲ ମୃଦୁଳା ଦେବୀଙ୍କୁ କିଛି ଗୋଟାଏ ନିଷ୍ପତ୍ତି କରିଦେବା ଲାଗି ଅନୁରୋଧ କଲେ । ମୃଦୁଳାଦେବୀ ଭାବି ଚିନ୍ତି ଦେଖିଲେ କେଦାରମଲ ଗିରଫ ହେବେ ଏଥିରେ ସନ୍ଦେହ କଣ ଅଛି, କିନ୍ତୁ ତାଙ୍କ ଦେହରେ ଯେମିତି ହାତକଡ଼ା ନ ଲାଗେ ଆଉ ପୁଲିସ ହାଜତକୁ ମଟରରେ ବସାଇ ନିଆଯାଏ ସେଥିଲାଗି ଚେଷ୍ଟା କରିବାକୁ ହେବ । ଦୂରରେ ପଡ଼ିଥିବା ଆଉ ଗୋଟିଏ ଟେବୁଲ ପାଖକୁ ପୁଲିସ ଇନ୍‌ସ୍‌ପେକଟରଙ୍କୁ ଡାକିନେଇ ମୃଦୁଳାଦେବୀ ତାଙ୍କ ସହିତ ପରାମର୍ଶ କଲେ । ସେଠୁ ଫେରିଆସି କେଦାରମଲଙ୍କୁ ଦୂରକୁ ଡାକି ନେଇ କହିଲେ—

"ମୁଁ ପାରିବିନି ଶେଠ ସାହେବ; ପୁଲିସ ଅସମ୍ଭବ ରକମର ଦାବୀ କରୁଚି ।"

"କେତେ ?" ଅତି ଉଦ୍‌ବେଗର ସହ ପଚାରିଲେ କେଦାରମଲ ।

"ସିଏ କହୁଛି, ଅଢ଼େଇଲକ୍ଷ ଟଙ୍କାର ଲୁଗା ସିଜ ହୋଇଚି—"

"ତା ହେଲେ ସେମାନେ ମୋର ପାଞ୍ଚ, ସାତ ଲକ୍ଷ ଟଙ୍କା ନୋକସାନ କରି ଦେଇଛନ୍ତି, ଆଉ କଣ, ମୋର ଆଉ କଣ କ୍ଷତି କରିବାକୁ ଚାହାନ୍ତି ସେମାନେ ?"

ଏ କଥାରେ ମୃଦୁଳାଦେବୀ ଛିଡ଼ା ଉଠି କହିଲେ—

"ତା ହେଲେ ଆପଣ ତାଙ୍କ ସାଙ୍ଗରେ କଥାବାର୍ତ୍ତା କରନ୍ତୁ । ମୋର ଦରକାର ନାହିଁ ସେଠି ।"

"ନା ନା, ଆପଣ ଭୁଲିଯାଇ ଦିଅନ୍ତୁ ମିସ ସାହେବ—ଓଃ ! ସ୍ପେସ୍ ବଜାର କି ଭୟଙ୍କର, କିଏ ପଙ୍କଜରୁ କମ୍‌ରେ ଛାଡ଼ିବ ବର୍ତ୍ତମାନ ?"

"ସେ କହୁଚି ପୂର୍ବ ।"

ଚମକି ଉଠି କେଶରୀଡ଼ମଲ କହିଲେ "ଲକ୍ଷେ ! ଅସମ୍ଭବ ମିସ ସାହେବ, ଅସମ୍ଭବ । ଆମେ କି କଷ୍ଟରେ ଟଙ୍କା ରୋଜଗାର କରୁ ତାମେ ଭାବି ପାରିବ ନାହିଁ । ନିକଟରେ ପାଞ୍ଚଲକ୍ଷ ଟଙ୍କା ବରବାଦ ହୋଇଯାଇଛି, ପୁଣି ଦୁଇ ଲକ୍ଷ ଟଙ୍କାର ମାଲ ଜବତ ହେଲା । ମୁଁ ପାରିବି ନାହିଁ ମିସ୍ ସାହେବ ।"

ଏତିକି କହି ବିଚଳିତ ହୋଇ ପଡ଼ିଲେ କେଶରୀଡ଼ମଲ । ତାହା ପରେ ପୁଲିଶ ଇନସପେକ୍ଟର ସାମନାରେ ମୃଦୁଳାଦେବୀଙ୍କର ଦୁଇହାତକୁ ଧରି ସେ ଗଦଗଦ ହୋଇ କହିଲେ—

"ଆପଣଙ୍କର ମାଜିଷ୍ଟ୍ରେଟଙ୍କ ସାଙ୍ଗରେ ଭଲ ପଡ଼େ, ଆପଣ ଏହାର ଗୋଟାଏ କିଛି ସୁବିଧା କରି ଦିଅନ୍ତେ ନାହିଁ ମିସ ସାହେବ ? ମୋ ଭଳି ଲୋକ, ମତେ ହାତକଡ଼ା ପକେଇ ଏମାନେ ରାସ୍ତାରେ ଦୌଡ଼େଇବେ ।"

ମୃଦୁଳା ଦେବୀ କେଶରୀଡ଼ମଲଙ୍କୁ ସାହସ ଦେଇ କହିଲେ

"ନିଶ୍ଚୟ କରିବ – ମୁଁ ଆପଣଙ୍କୁ ଖଲାସ କରିଦେବି ଶେଠସାହେବ, କିନ୍ତୁ ଆପଣ ବର୍ତ୍ତମାନ ଏହି ଓ୍ୱାରେଣ୍ଟ ପାଖରୁ ଉଦ୍ଧାର ହୋଇ ଯାଆନ୍ତୁ ।"

ମୃଦୁଳା ଦେବୀଙ୍କର ଜବାବ ପାଇ ଟେବୁଲ ପାଖରେ ବସି ପଡ଼ି କେଶରୀଡ଼ମଲ ଫୋନ ଧରି ମୁନିବ୍‌କୁ ଡାକିଲେ ।

କୁମାରୀ ମୃଦୁଳା ଦେବୀଙ୍କ ଜାମିନରେ ଶେଠ କେଶରୀଡ଼ମଲଙ୍କୁ ପୁଲିସ ଛାଡ଼ିଦେଇ ଯିବା ପରେ ଗୋଟାଏ ସ୍ୱସ୍ତିର ଦୀର୍ଘ ନିଃଶ୍ୱାସ ମାରି ମୃଦୁଳା ଦେବୀଙ୍କୁ କେଶରୀଡ଼ମଲ କହିଲେ –

"ଆପଣ ଆଜି ସନ୍ଧ୍ୟାରେ ଯେମିତି ମାଜିଷ୍ଟ୍ରେଟଙ୍କୁ ଦେଖା କରନ୍ତୁ । ଆଉ ଡେରି କଲେ ଚଳିବ ନି । ସେମାନେ ମୋ ଉପରେ ରାଗି ଯାଇଛନ୍ତି, ତା ଉପରେ ଏଇ କାଣ୍ଡ ଘଟିଛି..."

ମୃଦୁଳା ଦେବୀ ଗମ୍ଭୀର ଭାବରେ କହିଲେ --

"ଏ କାଣ୍ଡ ତ ଆଉ ମାଜିଷ୍ଟ୍ରେଟ କରିନାହାନ୍ତି । ନିଜର ଦୋଷ, ଆପଣ ମାଜିଷ୍ଟ୍ରେଟଙ୍କ ଉପରେ ରୁଷିଲେ କିଣ କିଛି ଲାଭ ପାଇବେ ? ମୋର କଥା ରଖିବେ ମିଷ୍ଟର କେଶରୀଡ଼ମଲ, ଆପଣ ଏଇ ସ୍ପେସ୍‌ବଜାର ଛାଡ଼ି ଦିଅନ୍ତୁ । ଆପଣ ଅନେକ ଟଙ୍କା ରଖିଚନ୍ତି । ସେଥିରେ କିଛି ଦେହ ଖଟାଇବାର କାମ କରି ଆପଣ ଖୁସିରେ ଚଳିଯାଇ ପାରିବେ । ତା' ନ କଲେ ସ୍ପେସ୍‌ବଜାର ଧରିଥିବାଯାଏ ପୁଲିସ ଆଉ ଡାକୁ ଆପଣଙ୍କ ପିଛୁ ଧରି ରହିଥିବେ ।"

ମୃଦୁଳା ଦେବୀଙ୍କର କଥାରେ କେରୋଡ଼ିମଲ ହସି ଉଠିଲେ । ଘରକୁ ଫେରିବା ଉଦ୍ଦେଶ୍ୟରେ ଜାମାପଟା ସଜାଡି ନେଉ ନେଉ କହିଲେ—

"ଶେୟର ବଜାର ଗ୍ଲୁଡ଼ ହେବ ନାହିଁ ମିସ ସାହେବ । ମାଛ ତେଲରେ ମାଛ ଭଜା ହେଉଛି, ଏଥିରେ କ୍ଷତି ମୋର କଣ, କେବଳ ଏଇ ଯା ହଇରାଣଟା । ତାହା ବି ଆସ୍ତେ ଆସ୍ତେ ହହସୁହା ହୋଇ ଯାଉଚି—ଜାଣିଲେ ମିସ ସାହେବ, ଶହେ ଯୋଡା ସୁପର ଫାଇନ ଧୋତି ମାଜିଷ୍ଟ୍ରେଟଙ୍କୁ ଦେବେ ବୋଲି କହିବେ ।"

ମିସ ଉତ୍ତରସିଂ କପାଳକୁ ଆଖି ଉଠେଇ ବଡ଼ ପାଟିରେ କହିଲେ –

"ପଚିଶ ଗାଣ୍ଠି ଲୁଗା ସିଜ ହେବା ପରେ ବି—"

ହା ହା ହା ହୋଇ ହସି ଉଠି କେରୋଡ଼ିମଲ ମଟରରେ ଯାଇ ବସିଲେ ।

ଉତ୍ତେଜିତ କଣ୍ଠରେ ନିଜେ ନିଜେ କହି ହେଲେ କୁମାରୀ ମୃଦୁଳା ଦେବୀ, "ମୋ ପରେ ମଧ୍ୟ ତମର ଶତ୍ରୁ କେହି ରହିବ--ତମର ଶେଷ ଶତ୍ରୁ ଏ ପର୍ଯ୍ୟନ୍ତ ଜନ୍ମ ହୋଇନି—କେରୋଡ଼ିମଲ ।"

ସେତେବେଳକୁ କେରୋଡ଼ିମଲଙ୍କର ମଟର ହତା ପାର ହୋଇ ଯାଉଛି । ଟେବୁଲର ତଳ ଦରାଜ ଭିତରୁ ପିସ୍ତଲ କାଢ଼ି ସେହି ମଟରକୁ ଲକ୍ଷ୍ୟ କରି ଅଭିନୟର ଭଙ୍ଗୀରେ ଛିଡ଼ା ହୋଇ ମୃଦୁଳା ଦେବୀ କହିଲେ –

"ତମର ସବୁ ଧନ ମୁଁ କାଢ଼ିନେବି କେରୋଡ଼ିମଲ । ଦେଶର ଶହ ଶହ ଲୋକଙ୍କ ପାଟି ମୋ ହାତକୁ ଅନେଇଚି – ତମେ ଯେଉଁମାନଙ୍କୁ ଲଙ୍ଗଳା କରିଚ, ତମେ ଯେଉଁମାନଙ୍କୁ ଉପାସ ରଖିଚ, ତମର ଧନ ନେଇ ମୁଁ ସେଇମାନଙ୍କର ମୁହଁରେ ପକେଇବି କେରୋଡ଼ିମଲ ।"

॥ ୧୦ ॥

ମୁନିବ୍ ମାଲଗୋଦାମରୁ ଟଙ୍କା ନେଇ ଆସିଲା କୁମାରୀ ଭିଲ୍ଲାକୁ । ମୁନିବ ମାଲଗୋଦାମରେ ଥାଇ ଜାଣିଥିଲା ଯେ, ସହରରେ ଥିବା କେରୋଡ଼ିମଲଙ୍କ ଭୂଇଁତଳ ଗୋଦାମରୁ ପୁଲିସ ପଚିଶ ଗାଣ୍ଠି ଲୁଗା ଜବତ କରିଛି । ସେଇଥିପାଇଁ ସେ ଆତଙ୍କରେ ଶିହରି ଶିହରି ରହିଥିଲା, ପ୍ରାୟ ୧୧ଟାବେଳେ କେରୋଡ଼ିମଲଙ୍କଠାରୁ ଫୋନପାଇ ଦେହରେ ତାର ଟିକେ ସାହସ ପଶିଥିଲା । ଫୋନ୍ ପାଇ ସେ ମନେକଲା ତାର ଶେଠ ସାହେବ ପୁଲିଶ ହାତରୁ ଏପର୍ଯ୍ୟନ୍ତ ବାହାରେ ରହିଛନ୍ତି । ତାହା ପରେ ମାଲିକଙ୍କଠାରୁ ଏତେଗୁଡ଼ାଏ ଟଙ୍କା ଗଣିବା ଶୁଣି ସେ ବିଲକୁଲ କାଠ ହୋଇଯାଇଥିଲା । କୁମାରୀ ଭିଲ୍ଲାରେ ପୁଲିଶକୁ ଦେଖି ସେ ଘଟଣାଟା ଅନୁମାନ କରିନେବା ପରେ ସେଠାରୁ ସେ ଆଶ୍ୱସ୍ତ ହୋଇ ନୟାସଡ଼କର ଗଦିକୁ ଫେରିଲା । କିନ୍ତୁ ଗଦିରେ ପହଞ୍ଚି ମୁନିବର ମୁଣ୍ଡ

ବିଗିଡ଼ ଯାଇଚ । ଶେଠଙ୍କ ଘରେ ଆତଙ୍କର କାଳିମା ଘୁଞ୍ଚ ଯାଇଚ । କିନ୍ତୁ ବଜାରଟା ଲୋକଙ୍କର ଆନନ୍ଦଧ୍ୱନିରେ ଫାଟି ପଡ଼ୁଛି । ଗୃହଆଡ଼େ ପୁଲିଶ । ଗଦି ଭିତରେ ପୁଲିଶ ଅଫିସର କେତେଟା ଶେଠଙ୍କ ଅପେକ୍ଷାରେ ବସିଛନ୍ତି । ଦୋକାନ ଆଗରେ ପୁଲିଶର ଗୋଟାଏ ଜିପ୍ ଗାଡ଼ି ଥୁଆ ହୋଇଛି ।

ଗଦିରେ ମୁନିବ ପହଞ୍ଚିବା କ୍ଷଣି ପୁଲିଶର ଜେରାରେ ତାଙ୍କୁ ଅନେକ କଥା କହିବାକୁ ପଡ଼ିଥିଲା । କିନ୍ତୁ ଶେଠ କେଉଁଠାରେ ଅଛନ୍ତି ତାହା ସେ କଦାପି ପ୍ରକାଶ କରି ନ ଥିଲା । ସେ ଖାଲି ମନେ ମନେ ଭାବୁଥାଏ, କୁମାରୀ ଭଲ୍ଲାରେ ତ ପୁଲିଶ ଲକ୍ଷେ ଟଙ୍କାର ବସ୍ତାଏ ନୋଟ ଗଣିନେଲା, ଏ ପୁଣି କେଉଁ ପୁଲିଶ ? ସେଦିନ ରାତିର ଘଟଣା ଆଖିରେ ତାର ନାଚଗଲା । ସେ ବାକ୍‌ଶୂନ୍ୟ ହୋଇ ଶେଠଙ୍କ ମଟରକୁ ଅପେକ୍ଷା କରି ଗଦିରେ ବସିରହିଲା ।

ପ୍ରାୟ ଅଧଘଣ୍ଟାକ ପରେ ଲୋକାରଣ୍ୟ ଭେଦ କରି ଶେଠ କେରୋଡ଼ିମଲଙ୍କ ମଟର ପହଞ୍ଚିଲା ନୟାସଡ଼କରେ । କେରୋଡ଼ିମଲଙ୍କ ମଟର ଦେଖି ଲୋକମାନେ ଆନନ୍ଦରେ ନାଚ ଉଠିଲେ । କିଏ କେତେ ରକମର ଟିପ୍‌ପଣୀ କାଟିଲା କେରୋଡ଼ିମଲଙ୍କୁ ଦେଖି । ଏ ଦୃଶ୍ୟରେ କେରୋଡ଼ିମଲ ଅତି ଆଶ୍ଚର୍ଯ୍ୟ ହୋଇ ଉଠିଥିଲେ ମଧ୍ୟ ନୀରବରେ ଯାଇ ଗଦିରେ ଜାଗା ମାଡ଼ି ବସିଲେ ।

ପୁଲିଶ ହାତରୁ ଓ୍ୱାରଣ୍ଟ ପାଇ କେରୋଡ଼ିମଲ କର୍ଜି ଉଠିଲେ ଗଦିରେ—

"ଆଜି ଦିନସାରା ମୁଁ ଆରେଷ୍ଟ ହେଉଥିବି ନା କଣ ? ତମେମାନେ ପୁଲିସ୍ ନା ଡାକୁ ? ମତେ ଏଇକ୍ଷଣି ବାଟରେ ଜାମିନ୍‌ରେ ଛାଡ଼ ଦେଇ ପୁଣି ଆସିଚ ଓ୍ୱାରଣ୍ଟ ପରଓ୍ୱାନା ଧରି ।"

ଉତ୍ତେଜିତ ହୋଇ ଜଣେ ପୁଲିଶ ଅଫିସର କହିଲେ—

"ବକାବକ ବନ୍ଦ କର କେରୋଡ଼ିମଲ । ଭଲ ଗତି ଅଛି ତ ଚୁପ୍ ହୋଇ ସେହି ଜିପ୍ ଗାଡ଼ିରେ ବସ । ନହେଲେ ହାତକଡ଼ି ଲଗିବ ସାଙ୍ଗେ ସାଙ୍ଗେ ।"

ଅନ୍ୟାନ୍ୟ ଲକ୍ଷପତି ବ୍ୟବସାୟୀମାନେ ଜମା ହୋଇଛନ୍ତି । ସମସ୍ତେ ଏକ ଦୃଷ୍ଟିରେ ଅନେଇଛନ୍ତି କେରୋଡ଼ିମଲଙ୍କ ମୁହଁକୁ । କେରୋଡ଼ିମଲଙ୍କ ମୁହଁରେ ସାରା ଦୁନିଆର ବିସ୍ମୟ ଓ ଲଜ୍ଜା ଆସି ଠୁଳ ହୋଇଛି । ପୁଲିଶର ଉତ୍ତର ଶୁଣି ସେ ବେପରୁଆ ଭାବରେ କହିଲେ —

"ମୁଁ ବି ସେଇଆ ଚାହେଁ । ନ ହେଲେ ମୁଁ ତମକୁ ସନ୍ତୁଷ୍ଟ କରି ପାରିବି ନି, ପୁଲିଶ ବାବୁମାନେ ! ଚାଲ, ତମେମାନେ ମତେ କେଉଁଠିକି ନେଉଛ ନିଅ । ମତେ ଆଉ ଜୋକପରି ଶୋଷିବାକୁ ଚେଷ୍ଟା କରନା ।"

କାହାରି କଥା, ବାରଣ ନ ମାନି କେରୋଡ଼ିମଲ ଯାଇ ପୁଲିଶର ଜିପ୍ ଗାଡ଼ିରେ ବସିଲେ । ଯେମିତି ସୁଧୁ ଗୋଟିଏ ନୂଆ ମଣିଷ ସେ ପାଲଟି ଯାଇଛନ୍ତି । ମଟର ଛାଡ଼ିଲା ପରେ ତାଙ୍କର ମନେ ପଡ଼ିଲା କୁମାରୀ ଭଲ୍ଲାର ମିସ ଉତ୍ତରସିଂଙ୍କ କଥା— ଆପଣ ଚୋରବଜାର ଛାଡ଼ ଦିଅନ୍ତୁ ଶେଠ ସାହେବ—ଆପଣ ଯେତେଦିନ ଯାଏ

ଗ୍ରେଫବଜାର ଧରଥିବେ ପୁଲିଶ ଆଉ ତାକୁ ଆପଣଙ୍କର ପଛରେ ବରାବର ଲାଗି ରହିଥିବେ ।

ଟାଉନ ଥାନାରେ ପହଞ୍ଚି କେରୋଡ଼ିମଲ ନିର୍ଭୁଲ ଖବରରେ ଜାଣି ପାରିଲେ ଯେ, ସେ ପ୍ରକୃତରେ ଗିରଫ ହୋଇଛନ୍ତି । ହାଜତକୁ ଯିବାକ୍ଷଣି ସେ ଚିତ୍କାର କରି ଉଠିଲେ – "କୁମାରୀ ଭଲ୍ଲାର ସେଇ ପୁଲିଶ ତା ହେଲେ କିଏ ?"

କେରୋଡ଼ିମଲ ଆଉ କିଛି ଭାବି ପାରିଲେ ନାହିଁ । ତାଙ୍କର ଖାଇବା ବେଳ ମଧ୍ୟ ସେତେବେଳକୁ ଡେରି ଗଡ଼ି ଯାଇଛି । ମୁଣ୍ଡଟା ତାଙ୍କର ଘୁରିଗଲା । ହାଜତରେ ଲୁହା ରେଲିଂ ଧରି ସେ ତଳେ ବସି ପଡ଼ିଲେ ।

କିଛି ସମୟ ପରେ କେରୋଡ଼ିମଲଙ୍କ ଚେତା ଫେରି ଆସିଲା । ସେ ଦେଖିଲେ ତାଙ୍କ ପାଖରେ ଅନିନ୍ଦ୍ୟ ସୁନ୍ଦରୀ କୁମାରୀ ମୃଦୁଳା ଉତ୍ତରସିଂ ବସି ତାଙ୍କ ଦେହରେ ହାତ ବୁଲାଇ ଦେଉଛନ୍ତି । ପାଖରେ ମୁନିବ ଖାନା ଧରି ଠିଆ ହୋଇଛି । ବାରଣ୍ଡାରେ ପରିଚିତ ଧନକୁବେରମାନେ ତାଙ୍କୁ ଜାମିନରେ ମୁକୁଳାଇ ନେବା ଉଦ୍ଦେଶ୍ୟରେ ବସି ରହିଛନ୍ତି । ଗୋଟିଏ ସରବତ ଗ୍ଲାସ କେରୋଡ଼ିମଲଙ୍କ ମୁହଁ ପାଖରେ ଧରି ମୃଦୁଳାଦେବୀ କହିଲେ –

"ବ୍ୟସ୍ତ ହୁଅନ୍ତୁନି, ଆଗେ ଖାଇ ନିଅନ୍ତୁ ଶେଠ ସାହେବ !...ମୁଁ ସବୁ ସୁବିଧା କରି ଦେଇଛି । ଆପଣଙ୍କ ଓ୍ୱାରେଣ୍ଟରେ ଜାମିନ ଦେବାପାଇଁ ଆଦେଶ ନ ଥିଲେ ମଧ୍ୟ ମୁଁ ମାଜିଷ୍ଟ୍ରେଟଙ୍କଠାରୁ ତାର ବନ୍ଦୋବସ୍ତ କରି ଆଣିଚି ।"

ସହରର ମାରୁଆଡ଼ି ମହଲରେ କୁମାରୀ ଉତ୍ତରସିଂଙ୍କର ଖୁବ୍ ଖାତିର ରହିଛି । କୁମାରୀ ଭଲ୍ଲାରେ କେତେ ସାଂସ୍କୃତିକସମ୍ମିଳନୀ ବସି ଯାଇଛି । ସେଥି ସକାଶେ ଏହି ଧନକୁବେରମାନେ ମୃଦୁଳା ଦେବୀଙ୍କର ଚନ୍ଦ୍ରମୁଖକୁ ଅନାଇ ଅର୍ଥର ମାହାର କଣା ଅକାତରରେ ବାଣ୍ଟି ଦେଇଛନ୍ତି । ତା ଛଡ଼ା ମୃଦୁଳା ଦେବୀଙ୍କୁ ସେମାନେ ବିଶାଳ ସମ୍ପତ୍ତିର ଉତ୍ତରାଧିକାରଣୀ ବୋଲି ଭାବନ୍ତି । ଆଜିର ଏହି ବିପଦ ସମୟରେ ସହରର ଜଣେ ଉଚ୍ଚ ଖ୍ୟାତିସମ୍ପନ୍ନା ସୁନ୍ଦରୀ ଯୁବତୀଙ୍କୁ ସେମାନଙ୍କ ଭିତରେ ଦେଖି ମାରୁଆଡ଼ି ଧନପତିମାନେ କୃତକୃତ୍ୟ ହୋଇ ଉଠିଛନ୍ତି । କୁମାରୀ ସାହେବଙ୍କର ଉପସ୍ଥିତି ସେମାନଙ୍କ ମନରେ ଉତ୍ସାହ ଓ ସାହସ ଭରି ଦେଇଛି ।

ମୃଦୁଳା ଦେବୀଙ୍କ କଥା ଶୁଣି କେରୋଡ଼ିମଲଙ୍କର ଦୁଃଖ କୁଆଡ଼େ ହଜି ଗଲା ଯେମିତି । ମୃଦୁଳା ଦେବୀଙ୍କ ହାତରୁ ସରବତ୍ ଗ୍ଲାସ ନେଇ ନେଇ ସେ କହିଲେ—

"ତା ହେଲେ ମତେ ଜାମିନ ମିଳିବ ମିସ୍ ସାହେବ ?"

ଟିକେ ଉତ୍ତେଜିତ ହୋଇ ସେ ପୁଣି କହିଲେ –

"ଜାଣନ୍ତି ମିସ୍ ସାହେବ, ଥରେ ମୋର ପୁତୁରା ଧାପନଲାଲ ଗୋଟାଏ ମର୍ଡର କେଶରେ ପଡ଼ିଥିଲା । କେଶଟାକୁ ତ ବିଲକୁଲ ଉଡ଼େଇ ଦେଲି, ତା ବାଦ ଧାପନଲାଲ ଯେମିତି ହାତକଡ଼ା ନ ପିନ୍ଧିବ ସେଥିଲାଗି ଦୁଲକ୍ଷ ଟଙ୍କା ଖର୍ଚ୍ଚ କଲି । ଏସ୍. ଡି. ଓ. ସେଥିରେ ଏକାକୀ ୮୦ହଜାର ଟଙ୍କା ନେଇଥିଲେ । ସେତେବେଳକୁ ଏବର ଏଇ

ମହଙ୍ଗା କି ଶସ୍ତା ବଜାର ଗୃଲ ନ ଥାଏ । ସେତେବେଳେ ହଜାର ଉପରେ ସବୁ କାରବାର ଗୃଲଥାଏ । ଆଉ—ଆପଣ ଆଜ ବିନା ସଲମିରେ ଜାମିନ ଅଡ଼ର କରି ଆଣିଲେ ?"

ଗ୍ଲାସଟା ତଳେ ଥୋଇ କୁମାରୀ ସାହେବଙ୍କ ହାତ ଧରି ପକେଇଲେ କେଦାରମଲ । ଆଖି ତାଙ୍କର ଛଳ ଛଳ ହୋଇ ଉଠିଛି, ସେହି ଆଖି ମିଳିଛି ମୃଦୁଳା ଦେବୀଙ୍କ ଆଖିରେ । ଆଖିରେ ପ୍ରଶ୍ନ ଫୁଟୁଛି—କିଏ ତମେ ଦେବୀ, ମୋର ଏ ଦୁର୍ଦ୍ଦିନରେ ଆସି ଉଦ୍ଧାର କଲ ମତେ । ନହେଲେ ଲକ୍ଷପତି କେଦାରମଲ ଆଜି ଏଇ ହାଜତରେ ପଡ଼ି ରହିଥାନ୍ତା ।

କୁମାରୀ ଉତ୍ତରସିଂଙ୍କ ଆଖି ମଧ୍ୟ କେଦାରମଲଙ୍କ ଆଖିରେ ମିଶିଛି । ଆଖିର ପ୍ରଶ୍ନକୁ ସେ ମୁହଁରେ ପ୍ରକାଶ କରି କହିଲେ –

"ମାଛ ତେଲରେ ଆପଣ କେତେ ମାଛ ଭାଜି ପାରିବେ ଶେଠ ସାହେବ ?"

ଗଳାର ସ୍ୱର କମାଇ ଦେଇ କେଦାରମଲ କହି ବସିଲେ –

"ଗତବର୍ଷ ମୁନାଫା ହୋଇଥିଲା ପଚିଶଲକ୍ଷ ମିସ୍ ସାହେବ । ପୁଲିସକୁ ଘୋଷ ଦେବାରେ ପାଞ୍ଚଲକ୍ଷ ଯାଇଥିଲା ଆଉ ପଇଁଚାଳିଶ ଲକ୍ଷ ଆସିଥିଲା ମୋର ତହବିଲକୁ । ଏବର୍ଷ ହିସାବ ହୋଇନି, ହୁଏତ କ୍ଷତିଟା ଦଶଲକ୍ଷ ଯାଏ ଯିବ । ଏବର୍ଷ କିନ୍ତୁ କାରବାର ହୋଇଛି, ଖୁବ୍... । ଯଦି ଆପଣ ମୋ ସାଙ୍ଗରେ ରୁହନ୍ତେ ମିସ୍ ସାହେବ ! ବଡ଼ ବଡ଼ ହାକମ୍ ଯିମିତି ଆପଣଙ୍କ ବୋଲରେ ଅଛନ୍ତି ..ଦେଶଟାକୁ ମୁଁ ଲୁଟିକରି ନିଅନ୍ତି ମିସ୍ ସାହେବ... ।"

ମୃଦୁଳା ଦେବୀଙ୍କର ଭାବିବାର ଶକ୍ତି ଲୋପ ପାଇଲା । କେବଳ ପିସ୍ତଲ ଗୁଳିରେ ଏ ଲୋକଟାକୁ ଶାସ୍ତି ଦେବା ଛଡ଼ା ଆଉ କିଛି ଉପାୟ ନାହିଁ ବୋଲି ମନେ କଲେ । ପରମୁହୂର୍ତ୍ତରେ ସେ ହସି ଦେଇ କହିଲେ—

"ସରବତଟା ପିଇ ନିଅନ୍ତୁ ଆଗେ । ଗୃଲନ୍ତୁ ଘରେ ଖାନା ଖାଇବେ, ଆପଣଙ୍କ ବାଈ ଅପେକ୍ଷା କରି ବସିଛନ୍ତି......"

ସରବତ ଗ୍ଲାସକୁ ଶେଷ କରି କେଦାରମଲ ଦରଦୀ ଭାବରେ କହିଲେ—

"ଆପଣ ଆସି ଚେଷ୍ଟା କରି ନ ଥିଲେ, କିଏ ଘରକୁ ଫେରିଥାନ୍ତା, ବାଈଜୀ ସାଙ୍ଗରେ ଖାନା ଖାଇଥାନ୍ତା ଆଜ କିଏ ?

କେଦାରମଲଙ୍କ ଏଇ ଦରଦମିଶା କଥାରେ ମୃଦୁଳା ଦେବୀ ମନେ ମନେ ତାଙ୍କର ରସିକତାକୁ ତାରିଫ କରି ଅଫିସ ଘରକୁ ଉଠି ଆସିଲେ ।

ଶୃଙ୍ଖିଳ ପୁଲିସ ଥାନାଟା ମୃଦୁଳା ଦେବୀଙ୍କ ଉପସ୍ଥିତିରେ ଖୁବ ସତେଜ ହୋଇ ଉଠୁଛି । କେଦାରମଲଙ୍କ ଅବସ୍ଥା ଦେଖିବା ପାଇଁ ଯେତେ ଲୋକ ଜମିଥିଲେ ସେମାନେ ବର୍ତ୍ତମାନ ମିସ୍ ଉତ୍ତରସିଂଙ୍କ ରୂପରେ ନିଜର ଆସିବାକୁ ସାର୍ଥକ କରି ନେଉଛନ୍ତି । ତାଙ୍କର ଅନିନ୍ଦ୍ୟ ରୂପ ଯୋଗୁ ମଧ୍ୟ ଅନେକ ନୂତନ ଦର୍ଶକ ଜମିବାରେ ଲାଗିଛନ୍ତି । କେତେକ ସମୟ ପରେ ଲୋକମାନଙ୍କର ଭିଡ ଠେଲି ସୁନ୍ଦରୀ ମୃଦୁଳାଦେବୀ

ଓ ଧନକୁବେର ଚୂକେରୋଡ଼ମଲ ଥାନାର ବାରଣ୍ଡାରେ ଆସି ଛିଡ଼ା ହେଲେ । ଅନ୍ୟାନ୍ୟ ଧନପତିମାନେ ମୃଦୁଳା ଦେବୀଙ୍କୁ କେନ୍ଦ୍ର କରି ବାହାରେ ନିଜ ନିଜର ସତ୍ତ୍ୱ ପ୍ରକାଶ କରିବାକୁ ଲାଗିଲେ । ସେମାନେ ଦେଖାଇବାକୁ ଚାହୁଁଛନ୍ତି, ଯେମିତି ସାରା ବଣିକଜାତି ଉପରେ ପୁଲିସର ଚାବୁକ ବାଜୁଛି, ଆଉ, ତାର ପ୍ରତିରୋଧ ପାଇଁ ସେମାନେ ଏକଜୁଟ ହୋଇ ଉଠିଛନ୍ତି ଆଜି ।

ମଟରରେ କେରୋଡ଼ମଲ ଘରକୁ ଫେରିଲେ । ସେହି ମଟରରେ ମୃଦୁଳା ଦେବୀ ମଧ୍ୟ ଆସିଲେ । କୋରୋଡ଼ମଲ ଭାବୁଥାନ୍ତି ଆଜି ଘଟଣା ଭିତରେ ଅନେକ ଝଡ଼ଝଞ୍ଜା ବହିଗଲା । ମୃଦୁଳା ଦେବୀ ପାଖରେ ରହିଥିବା ଯୋଗୁଁ ଆଜି ଅନେକ ସୁଖ ମଧ୍ୟ ମିଳୁଛି । ମୃଦୁଳା ଦେବୀ ବର୍ତ୍ତମାନ ଯେମିତି ତାଙ୍କର ଅତି ନିକଟର ଲୋକ ହୋଇ ଯାଇଚନ୍ତି । ସେ ଧୀରେ ଧୀରେ ମୃଦୁଳା ଦେବୀଙ୍କୁ କହିଲେ—

"ସକାଳେ ସେଇ ଲୋକଗୁଡ଼ା କିଏ ଆମକୁ ଏମିତି ଠକିଲେ ?"

ସହାନୁଭୂତି ମିଶା ଭାଷାରେ ମୃଦୁଳା ଦେବୀ କହିଲେ—

"ମୁଁ ତ ସେୟା ଭାବୁଚି । ମୋର ମନେ ହେଉଚି, ଏଇ ପୁଲିସମାନେ ସେମିତି କରିଚନ୍ତି । ଓ୍ୟାରଣ୍ଟ ବାହାରିବା କ୍ଷଣି ଆଗରୁ ଦଳେ ଗୋଟାଏ ଜାଲ ଓ୍ୟାରଣ୍ଟ ଧରି ବାହାରି ଯାଇ ପଇସା ଖାଇବାରେ ଲାଗି ଯାଇଛନ୍ତି ।···ଏମାନଙ୍କୁ ଚିହ୍ନିବା ମୁସ୍କିଲ । ମୁଁ ଶୁଣେ, କଲିକତାର ଅଧିକାଂଶ ଡକାଏତି ପୁଲିସମାନଙ୍କ ଦ୍ୱାରା ହିଁ ହୁଏ ।"

କେରୋଡ଼ମଲଙ୍କର କଲିକତାରେ ମଧ୍ୟ କାରବାର ଅଛି । ସେଠି ମଧ୍ୟ ତାଙ୍କ ଭୂଇଁତଳ ଗୋଦାମ ରହିଛି । ମୃଦୁଳା ଦେବୀ କହିବା ମତେ କଲିକତାର ହାଲ ହକିକତ୍ ତାଙ୍କୁ ଅଜଣା ନାହିଁ । ସେ କୁମାରୀ ସାହେବଙ୍କ କଥାକୁ ସମର୍ଥନ କରି ମୁଣ୍ଡ ହଲାଇ କହିଲେ—

"ସବୁ ଏଇ ପୁଲିସଙ୍କର କାଣ୍ଡ···ଅସଲ ଚୋରବଜାର ଯେମିତି ବିନା ମାରୁଆଡ଼ରେ ସମ୍ଭବ ନୁହେଁ, ସେମିତି ଏଇ ଧପ୍‌ପାବାଜି ପୁଲିସ ବିନା ହେବା ଅସମ୍ଭବ ।"

ଏଥିରେ ମୃଦୁଳା ଦେବୀ ଯତ୍‌ପରୋନାସ୍ତି ଆଶ୍ୱସ୍ତ ହେଲେ । ଏହି ସମୟରେ ତାଙ୍କର ହାତ ଧରି ପକେଇ କେରୋଡ଼ମଲ ଖୁବ ଖୁସି ମନରେ କହିଲେ—

"ମୋଭଟୋନ ନିଶ୍ଚୟ ଭଲୁ ହେବ ମିସ୍ ସାହେବ । ସେଥିଲାଗି ଆପଣ ବୋଧହୁଏ ମୋ ଉପରେ ଭାରି ଘୋଷା ହୋଇଛନ୍ତି, ଆଉ, ଆପଣଙ୍କୁ ଜବାବ ଦେଇ ସେଇ ଟଙ୍କାଟା ମୁଁ ଆଜି ଯାଏ ଦେଇନି···"

ରହସ୍ୟ କରି ମୃଦୁଳା ଦେବୀ କହିଲେ—

"ଆପଣଙ୍କର ଟଙ୍କା ପଇସାର ଯେମିତି ଅଭାବ—ହୁଏତ ଆଜିଯାଏ ଯୋଗାଡ଼ ହୋଇ ପାରି ନ ଥିବ । କିନ୍ତୁ ପୁଲିସକୁ ଦେଲା ବେଳକୁ ତ—"

ହଠାତ୍ ମୃଦୁଳା ଦେବୀଙ୍କ କଥାରେ ବାଧା ଦେଇ କେରୋଡ଼ମଲ ତାଙ୍କର ହାତ ଧରି ପକେଇ କହିଲେ—

"ଆଉ ଅପମାନ ଦିଅନ୍ତୁ ନା ମିସ୍‌ସାହେବ । ଆପଣ ମୋର ଜାନ୍ ରକ୍ଷା କରିଛନ୍ତି । ଆଜ ଆପଣ ସେଇ ଟଙ୍କାଟା ପାଇବେ । ଆଜ ଆପଣ ମୋର ଗେଷ୍ଟ ହେବେ । ବାଈଜୀ ମଧ ଅନେକଥର ଆପଣଙ୍କ କଥା କହିଲେଣି···"

କେରୋଡ଼ିମଲଙ୍କ ଗନ୍ଧ ଆଗରେ ମଟର ଆସି ଲଗିଲା ।

॥ ୧୧ ॥

ସେଦିନ କୁମାରୀ ଭିଲ୍ଲାରେ ଗୁରୁସାହେବଙ୍କର ପାଦ ପଡ଼ିଥାଏ । ଓଡ଼ିଶାର କୌଣସି ସୁଦୂର ଅଞ୍ଚଳରେ କୁମାରୀ ଉତ୍ତରସିଂଙ୍କ କଳ୍ପନା ଅନୁସାରେ ଯେଉଁ 'ଗୁରୁସାହେବ ପଲ୍ଲୀ' ସ୍ଥାପନ କରାଯାଉଛି ସେ ବିଷୟରେ କେତେକ ଗୁରୁତର ପରାମର୍ଶ କରିବାର ଉଦ୍ଦେଶ୍ୟ ଘେନି ଗୁରୁସାହେବ ଆସିଥାନ୍ତି । ପ୍ରାୟ ଦଶ ଲକ୍ଷ ଟଙ୍କା ଭିତରେ ସେହି ପଲ୍ଲୀ ଗଢ଼ିବା ପାଇଁ କୁମାରୀ ଉତ୍ତର ସିଂହଙ୍କର ଇଚ୍ଛା ଥିଲା । ସେଠି ଲୋକମାନଙ୍କୁ ସୁଖ ଶାନ୍ତିରେ ରହି ଜୀବନ କଟାଇବାର ସୁଯୋଗ ଦେବା ସେମାନଙ୍କର ଇଚ୍ଛା ନୁହେଁ । ଶିକ୍ଷିତ ଓ ସୁସଭ୍ୟ ନାଗରିକ ଗଢ଼ିବାର କଳ୍ପନା ସେମାନେ ମୋଟେ କରି ନାହାନ୍ତି । ଦୁର୍ନୀତି ଓ ଅନ୍ୟାୟ ଦୂର କରିବା ପାଇଁ ଯେପରି ଖୁବ୍ ଟାଣୁଆ ଗଣ-ବାହିନୀ ଗଢାଯାଇ ପାରିବ ସେଥିପାଇଁ ସେମାନେ ଚରମ ଲକ୍ଷ୍ୟ ରଖିଛନ୍ତି । ଅସଭ୍ୟତା ଦୂର କରିବାଦ୍ୱାରା ହିଁ ସଭ୍ୟତାର ଜନ୍ମ ହେବ, ସେହିପରି ଅଶିକ୍ଷାର ବିନାଶରେ ଶିକ୍ଷାର ଜାଗରଣ ହେବ ବୋଲି ସେମାନେ ବିଶ୍ୱାସ ପୋଷିଛନ୍ତି । ସେମାନେ ଭାବିଛନ୍ତି, ଜଙ୍ଗଲ କାଟି ପଦା ଜମି ତିଆରି ପରେ ଆପଣାଛାଏଁ ଉଦ୍ୟାନ ଆଉ ଶସ୍ୟ କେଦାର ପ୍ରସ୍ତୁତ ହୋଇଯିବ କିମ୍ବା ତାହା ତିଆରି କରିବା ଲାଗି ନୂଆ ଲୋକ ଆସି ଜୁଟିବେ । କେବଳ ଜଙ୍ଗଲ କାଟିବା ସେମାନଙ୍କର କର୍ତ୍ତବ୍ୟ ।

ଏହି ଉଦ୍ଦେଶ୍ୟ ପୂରଣ କରିବା ଲାଗି ଯେଉଁ ପ୍ରଚୁର ଧନ ଦରକାର ହେବ ସେଥିପାଇଁ ଭିକ ମାଗିବାର ବାଟ ସେମାନେ ଛାଡ଼ି ଦେଇଛନ୍ତି । ଦେଶରେ ଅନେକ ଭିକ ମଗା ହେଉଛି, ଅନେକ ଚାନ୍ଦା ମଧ ସଂଗ୍ରହ କରାଯାଉଛି । କିନ୍ତୁ ତାଙ୍କର ଏହି ଉଦ୍ଦେଶ୍ୟ ପାଇଁ ତାଙ୍କ ଥାଳରେ ଚାନ୍ଦା ପକାଇବ କିଏ । ସମସ୍ତେ ମୁହଁରେ କହିଲେ ମଧ ଦୁର୍ନୀତି ଲୋପ ପାଇଁ କେହି କିଛି କରିବା ପରିବର୍ତ୍ତେ ଦୁର୍ନୀତି କିପରି ଏ ଦେଶରେ ଚିରସ୍ଥାୟୀ ହୋଇ ରହିବ ସେଥିପାଇଁ ସମସ୍ତେ କାମ କରିବାରେ ଲାଗିଛନ୍ତି । ଦେଶର ଶାସନ କଳ ଆଉ ତାହାର ଆଇନ୍ ମଧ ଦୁର୍ନୀତି ଲୋପ ପାଇଁ ଯେପରି ଶକ୍ତିଶାଳୀ ହୋଇଥିବାର ଦେଖାଯାଇ ନାହିଁ । ସେଥିଲାଗି ସେମାନେ ଠିକ କରିଥିଲେ, ଲୁଟ୍, ଧପ୍‌ପାବାଜି ବିରୁଦ୍ଧରେ ଧପ୍‌ପାବାଜି ଚଳେଇବାକୁ ହେବ । ଲୁଟ୍ ଓ ଧପ୍‌ପାବାଜୀକୁ

ଯେଉଁ ସମାଜ ଘୃଣା କରେ ଲୁଟ ଓ ଧପ୍ପାବାଜି ଦ୍ୱାରା ଧନକୁବେର ପାଲଟିଥିବା ଲୋକଙ୍କୁ ସେହି ସମାଜ ପୂଜା କରୁଥିବ । ସମୟରେ ସେହି ସମାଜ ପାଖରୁ ସେମାନେ ଯେ ସେହି ରକ୍ତ-ଶୋଷକ ଧନକୁବେରମାନଙ୍କୁ ଲୋପ କରିବା ପାଇଁ ଭିକ ମୁଠେ ପାଇବେ, ଅନେକ ଦିନରୁ ସେମାନଙ୍କର ସେ ଆଶା ଦୂର ହୋଇଛି । ଶେଷକୁ ସେମାନେ ମରଣ ପଣ କରି 'ଅଗ୍ନିମନ୍ତ୍ର'ର ଦୀକ୍ଷା ନେଇଛନ୍ତି । ସେହି ଦୀକ୍ଷା ଦେଇଛନ୍ତି ଗୁରୁସାହେବ । ସେହି ଅଗ୍ନି ମନ୍ତ୍ରର ଦୀକ୍ଷା ଯେ କେତେ ଲୋକ ନେଇଛନ୍ତି ତାହା କେହି କଳନା କରି କହି ପାରିବ ନାହିଁ । କର୍ମକ୍ଷେତ୍ର ଉପରେ ଯେଉଁମାନଙ୍କର ପରିଚୟ ମିଳିଥାଏ କେବଳ ସେହିମାନଙ୍କୁ କେତେକ ଭାବରେ ଜାଣି ହୋଇଥାଏ ।

ଦୂର ଜଙ୍ଗଲ ଭିତରେ ବର୍ତ୍ତମାନ 'ଗୁରୁସାହେବ ପଲ୍ଲୀ' ତିଆରି ଚାଲିଛି । ସେହି ପଲ୍ଲୀର ପ୍ରତିଷ୍ଠା ସକାଶେ ଯେତେ ଟଙ୍କାର ଯୋଜନା କରାଯାଇଥିଲା ବର୍ତ୍ତମାନ ତାହାର ପ୍ରାୟ ଦଶଗୁଣ ଅର୍ଥ ସଂଗ୍ରହ କରାଯାଇ ପାରିଥିବାରୁ ପୂର୍ବ ଯୋଜନାର ରୂପ ମଧ୍ୟ ବଦଳି ଯିବାରେ ଲାଗିଛି । ସେହି ସବୁ ଯୋଜନାର ନାନାପ୍ରକାର ଚିତ୍ର ଗୁରୁସାହେବ ତିଆରି କରାଇ ଆଣିଛନ୍ତି । କୁମାରୀ ଉତ୍ତରସିଂଙ୍କୁ ଗୋଟିଏ ଚିତ୍ର ଦେଖାଉ ଦେଖାଉ ଗୁରୁସାହେବଙ୍କ ଆଖି ଲୁହଛଳ ଛଳ ହୋଇଗଲା । ଅଶ୍ରୁକଣାର ପରଶରେ ଭାଷା ଯେମିତି ଓଦା ହୋଇଯାଇଛି । ସେ କହିଲେ—

"ଅର୍ଦ୍ଧ ଉଲଗ୍ନ ଏଇ ତିନୋଟି ନାରୀ । ସମସ୍ତେ ପ୍ରାୟ ଯୁବତୀ । ଦେହରେ ସେମାନେ ଯେଉଁ ସାମାନ୍ୟ ଲୁଗା ପିନ୍ଧିଛନ୍ତି, ତାହା ପିନ୍ଧି କେବଳ ମୃତ୍ୟୁ-ଦେବତା ଆଗରେ ଠିଆହୋଇ ହୁଏ । ସମାଜରେ ରହି ତାହାଦ୍ୱାରା କୌଣସି ମତେ ଲଜ୍ଜା ଢାଙ୍କି ହୋଇପାରିବ ନାହିଁ । ହୁଏତ ଆଜକ ଛଡ଼ା କାଲକ ସେହି ଲୁଗାର ଅବସ୍ଥା ଶେଷ ପାଇଯିବ । ସେଥିପାଇଁ ଏହି ଯୁବତୀ ତିନିଜଣ ଆଜି ଇ ସେମାନଙ୍କର ଶେଷଦିନ ଠିକ କରି ନେଇଛନ୍ତି ।"

ଆଉ କହି ପାରିଲେ ନାହିଁ ଗୁରୁସାହେବ । ଟିକେ ଦମ୍ ନେବା ପରେ କୁମାରୀ ମୃଦୁଳା ଦେବୀଙ୍କ ମୁହଁକୁ ଅନେଇ ସେ ଗମ୍ଭୀର ଭାବରେ ପ୍ରଶ୍ନ କଲେ—

"କୁମାରୀ, ଏମାନଙ୍କର ଏ ଅବସ୍ଥା ହେଇଚି କାହିଁକି ? କରିଚି କିଏ ?"

ହସି ହସି କୁମାରୀ ଉତ୍ତରସିଂ ଉତ୍ତର ଦେଲେ—

"ମୁଁ ଜାଣେ ଗୁରୁସାହେବ !"

ଆହୁରି ନିର୍ଭୀକ, ଆହୁରି ଗମ୍ଭୀର ଭାବରେ ଗୁରୁସାହେବ କହିଲେ—

"ଏଇଟା ଅଗ୍ନିମନ୍ତ୍ରର ମୂଳକଥା । ତତେ ଆଜି ଭଲ କରି ଶୁଣିବାକୁ ହେବ କୁମାରୀ !···ଏମାନଙ୍କୁ ଏ ଅବସ୍ଥା କରିଛି—ଏମାନଙ୍କଠାରୁ ଲଜ୍ଜା ନିବାରକ ଦଶହାତି ଲୁଗା ଖଣ୍ଡିକ ଛଡ଼େଇ ନେଇଚି ସ୍ୱୈରବଜାରର ପୁଞ୍ଜି ପତି । ଏମାନଙ୍କ ଲୁଗାରେ ପୁଞ୍ଜି-ପତିର ପାଦତଳେ ମଖମଲ ବିଛା ହୋଇଚି, ଦରଜାରେ ରେଶମ କନା ଝୁଲିଚି, ଆଉ ଏମାନଙ୍କୁ ଖଣ୍ଡେ ମୋଟ ଖଦୀ ଦିଆ ହୋଇନି କୁମାରୀ ! ଶେଷରେ ଏମାନେ ଜଣ ଜଣ କରି କୂଅକୁ ଡେଇଁ ସେମାନଙ୍କର ଲଜ୍ଜା ନିବାରଣ କରିଛନ୍ତି । ଆଉ, ବିନା କାରଣରେ

ଏଇପରି ଶହ ଶହ, ଲକ୍ଷ ଲକ୍ଷ ଯୁବତୀଙ୍କ ହତ୍ୟା କରିଥିବା ପୁଞ୍ଜିପତିଙ୍କୁ ସମାଜ ଆଜି ଫୁଲ ଚନ୍ଦନରେ ପୂଜା କରୁଛି କୁମାରୀ !

ଏଇଟା ହେଲା ଆମର ପ୍ରଥମ ଶପଥ । ଅଗ୍ନିମନ୍ତ୍ରର ପ୍ରଥମ ଉଦ୍‌ବୋଧନ । ଗୁରୁ-ସାହେବ ପର୍ଣ୍ଣରେ ଏହାର ଗୋଟାଏ ମନ୍ତ୍ରବଦ୍ଧ ପଥର ମୂର୍ତ୍ତି ତିଆରି କରିଯିବ କୁମାରୀ । — ଆଉ କଣ ଜାଣିଚୁ ?"

ହସି ହସି କୁମାରୀ ଉତ୍ତରସିଂ କହିଲେ —

"ମୁଁ ସବୁ ଜାଣିଚି ଗୁରୁସାହେବ !"

"ଶୁଣ୍ ! !"

ଆରବରେ ମୁଣ୍ଡ ନଇଁ ଦେଲେ କୁମାରୀ ମୃଦୁଳା ଦେବୀ । ଗମ୍ଭୀର ହୋଇ ଗୁରୁସାହେବ ପୁଣି କହିବାକୁ ଲାଗିଲେ –

"୧୯୪୯ ମସିହାରେ ଫ୍ରେରିବଜାରର ଏଇ ପୁଞ୍ଜିପତିମାନେ ଫ୍ରେରି-ବଜାରର ଲୁଗା ବିକି ସାରା ଭାରତରୁ ୧୦୦ କୋଟି ଟଙ୍କା ଲାଭ କରିଥିଲେ । ଆମର ସରକାର ଆଜି ଦେଶ ଦେଶରେ ଭିକ ମାଗି ବୁଲୁଚି । ଆମ ଦେଶର ଲୋକସଂଖ୍ୟା ମୋଟେ ୩୪କୋଟି, ଫ୍ରେରିବଜାରରେ ରହିଲା ଏକଶହ କୋଟି । ଆମର ଲୋକମାନେ ଖୁବ ଗରିବ, ସେମାନେ ବର୍ଷକରେ ଗୁରିମାସ ଖାଇବାକୁ ପାଆନ୍ତି ନି, ତୁ ଜାଣୁ । ଏଇ ଅଧାମରା ଗରିବ ଲୋକଗୁଡ଼ାଙ୍କ ପାଇଁ ଏହି ଶହେ କୋଟି ଟଙ୍କାରେ ଅନେକ କାମ ହୋଇ ପାରିଥାନ୍ତା ।"

କିଛିକ୍ଷଣ ପରେ ଗୁରୁସାହେବ କହିଲେ—

"ତୁ ପାରିବୁ ତ କୁମାରୀ ?"

"କଣ ?"

"ଶହେ କୋଟି ଟଙ୍କା ଲୁଟ କରି ପାରିବୁ ?'

"ଅସମ୍ଭବ, ଏଇ ବର୍ଷକ ଭିତରେ ଆମେ ମୋଟେ କୋଟିଏ ଟଙ୍କା କରି ପାରିଚୁ । ହୁଏତ ଏଇ ପନ୍ଦର ଦିନ ଭିତରେ ଆଉ କୋଡ଼ିଏ ଲକ୍ଷ ହେବ । ହୁଏତ ଆମର ସଂଖ୍ୟା ବଢ଼ିଲେ ଆଉ କୋଟିଏ ଟଙ୍କା ହେବ । କିନ୍ତୁ ସେଥିପାଇଁ ଆମକୁ ପଚିଶବର୍ଷ ସମୟ ଦରକାର । ତା ଭିତରେ ସେମାନଙ୍କର ସଂଖ୍ୟା ମଧ୍ୟ ବଢ଼ିଥିବ । ସେମାନଙ୍କର ଆୟ ମଧ୍ୟ ବଢ଼ିଥିବ ଢେର । ଅସମ୍ଭବ ଗୁରୁ ସାହେବ !"

ହସି ଉଠି ଗୁରୁସାହେବ କହିଲେ—

"ତା ହେଲେ — ଠିକ ଚିନ୍ତା କରି କହିବୁ କୁମାରୀ ?"

ଆର ବରେ ଟେବୁଲର ଦରାଜରୁ ପିସ୍ତଲଟି ବାହାର କରି ଟେବୁଲ ଉପରେ ରଖି ଦେଲେ କୁମାରୀ ମୃଦୁଳା ଉତ୍ତରସିଂ ।

ନିଜର ଚେହେରାକୁ ଅସ୍ୱାଭାବିକ ରକମର ଗମ୍ଭୀର କରି ଦୂର ଭବିଷ୍ୟତ ଉପରେ ନିଜର ଦୃଷ୍ଟି ରଖି କୁମାରୀ ମୃଦୁଳା ଦେବୀଙ୍କୁ ଲକ୍ଷ୍ୟ କରି ଗୁରୁସାହେବ କହିଲେ –

"ଆଁମର ଶେଷ ଦିନ ନିକଟ ହେବାକୁ ଆଉ ବେଶି ଦିନ ଅଛି ବୋଲି ତୁ ମନେ କରୁ କୁମାଶ୍ୱ ?"

କୁମାଶ୍ୱ ଉତ୍ତରସିଂ ପ୍ରସନ୍ନ ଭାବରେ କହିଲେ—

"ସେକଥା ଆପଣ ଠିକ ଭାବରେ ଜାଣିଥିବେ, ମତେ ପଚାରିବାରେ ଲାଭ କଣ ?

ଟିକେ ଚିନ୍ତାକରି ପୁଣି ଗୁରୁସାହେବ କହିଲେ—

"ତୋର ହାତଟା ଦେଖେଁ କୁମାଶ୍ୱ, ବାଁ ହାତ !"

କୁମାଶ୍ୱ ଉତ୍ତରସିଂଙ୍କର ହାତ ଦେଖି ଦେଖି ଗୁରୁସାହେବ ଧୀରେ କହିଲେ—

"ତୁ ଫାଶୀ କାଠରେ ଝୁଲିପାରିବୁ କୁମାଶ୍ୱ ?"

ହସି ଉଠି କୁମାଶ୍ୱ ଉତ୍ତରସିଂ ଉତ୍ତର କଲେ—

"କଣ ଦରକାର ପଡ଼ୁଚି ?"

ପୂର୍ବ ପରି ଧୀର ଭାବରେ ଗୁରୁସାହେବ କହିବାକୁ ଲାଗିଲେ—

"ତୋର ଯୋଜନାରେ ଟିକେ ଗୋଳମାଳ ହୋଇ ଯାଉଚି କୁମାଶ୍ୱ : ସେଥି ଯୋଗୁଁ ଗୋଟାଏ ଭୀଷଣ ବିପଦର ଦିନ ଘନେଇ ଆସୁଚି । ମୁଁ ଭାବୁଚି ସମସ୍ତଙ୍କୁ ବଞ୍ଚେଇ ଦେବା ପାଇଁ ତତେ ଫାଶୀ କାଠରେ ଚଢାଇ ଦେଲେ ଚଳିବ । ଆଉ ପନ୍ଦର ଦିନ ମୋଟେ ସମୟ, ତାରି ଭିତରେ ଦି'ଟାଯାକ କାମ ଶେଷକରି ଦିଅ ।"

ଗୁରୁ ସାହେବଙ୍କର କଥା ଶୁଣି ଅତି ନିର୍ଭୀକ ଭାବରେ କୁମାଶ୍ୱ ଉତ୍ତରସିଂ କହିଲେ—

"ମୋର ମୃତ୍ୟୁରେ ଯେମିତି ଗୁରୁସାହେବଙ୍କ କାମ ବାଧା ନ ପାଏ । ଆପଣ ମଧ୍ୟ ଆନନ୍ଦରେ ମତେ ଯେମିତି ଛାଡ଼ି ଦେଇ ପାରିବେ ଆପଣଙ୍କୁ ମତେ ତାହାର ପ୍ରତିଶ୍ରୁତି ଦେବାକୁ ପଡ଼ିବ ।—ସୁପ୍ରୀତିକି ରଙ୍ଗପୁର ପଠେଇବା ଦ୍ୱାରା ମୋର ଯୋଜନାରେ ଯାହା କିଛି ଭୁଲ ହୋଇଛି ବୋଲି ଆପଣ କହି ପାରନ୍ତି । କିନ୍ତୁ ଏଠି ମଧ୍ୟ ସୁପ୍ରୀତିକି ରଖିବାରେ ବିପଦ ଥିଲା । ଆଉ କାମିନୀକି ମୋଟେ ଛାଡ଼ି ହୋଇ ନ ଥାନ୍ତା । ମୁଁ ଭଲ ଭାବରେ ଜାଣି ପାରିଚି, ଆମ ବିରୁଦ୍ଧରେ ଗୋଇନ୍ଦା ବିଭାଗ ବିଶେଷ ତତ୍ପର ହୋଇ ଉଠିଛି । ଅଭିରାମର ମୃତ୍ୟୁ ବିଷୟରେ ସେମାନେ ଆଜଯାଏ କିଛି କିନାରା କରି ପାରି ନାହାନ୍ତି । କେଦାରେଡ଼ମଲ ପୁଲିସରେ ଡାଇରି ନ ଦେଲେ ମଧ୍ୟ ଗୋଇନ୍ଦାମାନେ ଆପେ ଆପେ ତାର ତଥ୍ୟ ନେବାରେ ବାହାରିଛନ୍ତି ।"

କୁମାଶ୍ୱ ଉତ୍ତରସିଂଙ୍କର ଏତେଗୁଡ଼ାଏ କଥା ଶୁଣି ଗୁରୁସାହେବ ସଂକ୍ଷେପରେ କହିଲେ—

"ଏଇଟା ତ ଆଉ ବିରୁଦ୍ଧରେ ଷଡ଼ଯନ୍ତ୍ର ନୁହେଁ । ମୁଁ ଯେଉଁ ବିପଦର କଥା କହୁଚି ତାହା ସ୍ୱତନ୍ତ୍ର ।"

ଏଥିରେ କୁମାଶ୍ୱ ଉତ୍ତରସିଂ ଖୁବ୍ ଆଶ୍ଚର୍ଯ୍ୟ ହେଲେ, କହିଲେ—

"ସେ ବିପଦ କଣ ?"

ଗୁରୁସାହେବ ଗମ୍ଭୀର ଭାବରେ କହିଲେ—

"ଠିକବେଳେ ମୁଁ କହିବ । ତାର ପ୍ରତିକାର ମୋର ହାତରେ ।"

ଏହା କହି ତଳେ ରଖିଥିବା ଥଳରୁ ଗୋଟିଏ ବାକ୍ସ ଆଣି ଥୋଇଲେ ଟେବୁଲ ଉପରେ ।

ବାଳକାର ସରଳତା ଧରି ଚପଳ ଭାବରେ ପଚାରିଲେ କୁମାରୀ ଉତ୍ତରସିଂ—

"ଏ କଣ ଗୁରୁଦେବ ?"

ଗୁରୁସାହେବ ଖୁବ ଗମ୍ଭୀର ହୋଇଯାଇ କହିଲେ—

"ଡ-ନା-ମା-ଇଟ—"

ଗୁରୁସାହେବଙ୍କର ଏହିପରି ଉଚ୍ଚାରଣରୁ କୁମାରୀ ଉତ୍ତରସିଂ ଜାଣି ପାରିଲେ ଯେ, ତାଙ୍କର ଆଉ କିଛି ପଚାରିବାର ଅଧିକାର ନାହିଁ ।

ପରିସ୍ଥିତିକ ସରସ ଓ ହାଲକା କରିବାର ଇଚ୍ଛା କରି କିଛିକ୍ଷଣ ପରେ ଗୁରୁସାହେବ ହସି ହସି କହିଲେ—

"ଗୁରୁସାହେବ ପଲ୍ଲୀରେ ରହି ତମ ସମସ୍ତଙ୍କୁ ବିବାହ କରିବାକୁ ପଡ଼ିବ ।"

ଏଥିରେ ଠୋ ଠୋ ହୋଇ ହସି ଉଠିଲେ କୁମାରୀ ଉତ୍ତରସିଂ । ସେମିତି ହସି ହସି ସେ କହିଲେ—

"ମତେ ଯେ ଫାଶୀ ହୁକୁମ ଦେଇଛନ୍ତି ଗୁରୁସାହେବ ?"

ଗୁରୁସାହେବ ବିଷଣ୍ଣ ହୋଇ ଚାହିଁଲେ ଆକାଶ ଆଡ଼କୁ । ଆକାଶରେ ଗୁଡ଼ାଏ କଳାମେଘ ଭାସି ଯାଉଚି, ଦୂରର ଜିନିଷ ସେ କିଛି ଦେଖିବାକୁ ପାଉ ନାହାନ୍ତି । ତରତର ହୋଇ ଥଳ ଭିତରୁ ଗୁରୁସାହେବ ଗୋଟାଏ ଦୂର୍ବୀଣ ବାହାର କରି ତାରି ଭିତର ଦେଇ ନିରିଖି ସେହି କଳାମେଘକୁ ଅନେଇ ରହିଲେ ।

ଅନେଇ ଅନେଇ ସେ ପାଟିକରି ଉଠିଲେ—

"କୁମାରୀ, କୁମାରୀ, ସେହି କଳାମେଘ ଭିତରେ ଗୋଟାଏ ଚିଲ ଉଡ଼ୁଚି ।"

କୁମାରୀ ଉତ୍ତରସିଂ ହସି ଦେଇ କହିଲେ—

"ଭୟ ଆଉ କଣ ଗୁରୁସାହେବ, ମୁଁ ତ ମରିବା ପାଇଁ ତିଆରି ରହିଛି, କାମିନୀ ମଧ୍ୟ ତିଆରି । ପୁଣି ମହେନ୍ଦ୍ର, ପ୍ରତାପ, ବିଜୟ ଆଉ ଅନନ୍ତରାମ, ତା ପରେ ଜୟନ୍ତୀ, ସୁକୃତି ଆଉ କରୁଣା ମଧ୍ୟ ପ୍ରସ୍ତୁତ । ମରିବା ପରେ ଆଉ ଭୟର କଥା କଣ ଅଛି ? କଳା ମେଘରେ ଚିଲ ଉଡ଼ୁ, ସେଥିରେ ଆମର ଯାଏ ଆସେ କେତେ, ଗୁରୁସାହେବ ?"

ବିକଟ ହସ ହସି ଉଠିଲେ ଗୁରୁସାହେବ । ଶେଷକୁ ଉନ୍ମତ୍ତ ଭାବରେ ହସି ହସି ଟେବୁଲ ଉପରେ ନିଜ ମୁହଁର ନିଶ ଦାଢ଼ୀ ଓ ମୁଣ୍ଡର ବାଳ କାଢ଼ି ଜମା କରି ଦେଲେ । ଗୋଟିଏ ସୁନ୍ଦର ଯୁବା ପୁରୁଷ ଶୋଭା ପାଇଲା ଗୁରୁସାହେବଙ୍କ ଦେହରେ ।

କୁମାରୀ ଉତ୍ତରସିଂ ଚିତ୍କାର କରି ଉଠିଲେ—

"ଆପଣ କଣ କରୁଛନ୍ତି, ଆପଣ କଣ କରୁଛନ୍ତି ଗୁରୁସାହେବ, ଘରଆଡ଼େ ଦରଜା ମୁକୁଳା ଅଛି—ଆପଣ କାହିଁକି ଏପରି କରୁଛନ୍ତି, ଗୁରୁସାହେବ ?"

ଗୁରୁସାହେବ ଖୁବ୍ କୋମଳ ସ୍ୱରରେ ଡାକଲେ—
"ମୃଦୁଳା !"
କୁମାରୀ ଉତ୍ତର ସିଂ ପାଗଳ ପରି ଉଠିଯାଇ ପଲକ ଭିତରେ କୋଠରୀର— ସବୁ ଦରଜା ବନ୍ଦ କରିଦେଲେ । ତାପରେ ନିଜ ଆସନକୁ ଫେରି ଆସି ସ୍ନେହଭରା କଣ୍ଠରେ କହିଲେ—
"ସବୁ କଣ ଭୁଲିଗଲେ, ଗୁରୁସାହେବ ?"
"ଗୁରୁସାହେବ କିଏ ମୃଦୁଳା ?"
ରୁଦ୍ଧ କୋଠରୀ ଭିତରେ କୁମାରୀ ଉତ୍ତର ସିଂ ଚିତ୍କାର କରିବାକୁ ଲାଗିଲେ—
"ମୁଁ ଆଉ କିଛି ଡାକି ପାରିବି ନି । ଆପଣ କାହିଁକି ପଥଭ୍ରଷ୍ଟ ହେଉଛନ୍ତି, ଗୁରୁସାହେବ ? ଅନ୍ତତଃ ଆଉ ପନ୍ଦରଦିନ ଆପଣଙ୍କୁ ଗୁରୁସାହେବ ହୋଇ ରହିବାକୁ ହେବ । ନହେଲେ ମୁଁ ପିସ୍ତଲ ମାରିଦେଇ ଏଇଠି ଆପଣଙ୍କ ଆଗରେ ମରିବି ଏଇକ୍ଷିଣି ।"
କୁମାରୀ ଉତ୍ତରସିଂଙ୍କ ଅନିନ୍ଦ୍ୟ ମୁଖକୁ ଚୁହିଁ ଚାହିଁ ବିହ୍ୱଳ ହୋଇ ଗୁରୁସାହେବ କହିଲେ—
"ମୃଦୁଳା, ଆଉ ପନ୍ଦର ଦିନ ମାତ୍ର ସମୟ । ଚୁରିଆଡ଼ ଅନ୍ଧକାର ହୋଇ ଆସିଲାଣି । ଏଇ ପନ୍ଦର ଦିନଯାକ ତୁ ମତେ ଭଲ ଭାବରେ ଦେଖିନେ । ଆଉ ମୁଁ ତତେ ଦେଖିନିଏଁ ଚିରଜନ୍ମ ପାଇଁ ।"
ମୁଣ୍ଡ ହଲାଇ କୁମାରୀ ଉତ୍ତରସିଂ କହି ଉଠିଲେ—
"ମୁଁ ଅଗ୍ନିମନ୍ତ୍ରର ଅମର୍ଯାଦା ଘଟାଇ ଦେବି ନାହିଁ । ରଙ୍ଗପୁର, କେଦାରେଡ଼ମଲ, କାଶନଗ୍ରନ୍ଦ ସବୁ ଯୋଜନା ମୁଁ ହୁଏତ ରଦ୍ଦ କରି ଦେବି, କିନ୍ତୁ ଅଗ୍ନିମନ୍ତ୍ରର ଦୀକ୍ଷା ନଷ୍ଟ କରିବି ନାହିଁ । ଆପଣଙ୍କୁ କଦାପି ପ୍ରକାଶ ପାଇବାକୁ ଦେବି ନାହିଁ । ମୋ ପରେ ହୁଏତ କେତେ ମୃଦୁଳା ବାହାରିବେ, କିନ୍ତୁ ସେମାନଙ୍କୁ ଅଗ୍ନିମନ୍ତ୍ର ଦେବ କିଏ, ଗୁରୁସାହେବ ? କୁହୁଡ଼ିରେ ପଡ଼ି ନିଜର ସୂର୍ଯ୍ୟ ପ୍ରଭାକୁ ହଜାଇ ଦିଅନ୍ତୁନି ଗୁରୁସାହେବ ।"
ଗୁରୁସାହେବ ସେହିପରି ବିହ୍ୱଳ କଣ୍ଠରେ କହିଲେ—
"ଗୁରୁସାହେବ କିଏ ମୃଦୁଳା ?"
ଅତି ଦରଦୀ ଭାଷାରେ କହିଲେ କୁମାରୀ ଉତ୍ତର ସିଂ—
"ନିଃଶଙ୍କ ! !···ତମେ ମୋର ଅମର୍ଯ୍ୟାଦା କରିବ, ନିଃଶଙ୍କ ?"
ଗୁରୁସାହେବ ଗଦ୍‌ଗଦ ସ୍ୱରରେ କହିଲେ—
"ଠିକ୍ ବର୍ଷକ ପରେ ମୁଁ ଆଜି ନିଜକୁ ଫେରି ପାଇଚି ମୃଦୁଳା !"
ତାହାପରେ ପୂର୍ବର ବେଶ ଧରି ସେ ଗମ୍ଭୀର ହୋଇ କହିଲେ—

"ମୁଁ ଆଉ ବେଶିଦିନ ସମୟ ଦେଇ ପାରିବ ନାହିଁ । ମୁଁ ଚାଲିଲି କୁମାରୀ ! ଆଜି ରାତିରେ ମୁଁ ଗୁରୁସାହେବ ଯିବି । ଠିକ୍ ପାଞ୍ଚ ଦିନ ପରେ ଫେରିବି । ଏହା ଭିତରେ ତମେ ଶେଷ ଦିନ ପାଇଁ ପ୍ରସ୍ତୁତ ହୋଇଯାଅ ।"

॥ ୧୬ ॥

ଗୁରୁସାହେବ ଚାଲିଯିବାର ପରଦିନ ଠାରୁ କୁମାରୀଭିଲ୍ଲା ଖୁବ୍ ସରଗରମ ହୋଇ ଉଠିଛି । ଭିଲ୍ଲା ଭିତରେ ଗୋଟାଏ ସାଜସାଜ ରବ ଖେଳି ଯାଇଛି ଯେମିତି । ଗୁରୁସାହେବ ବିଦାୟ ନେବାର ରାତିରେ କୁମାରୀ ଉତ୍ତରସିଂ ସିଦ୍ଧାନ୍ତ କରି ନେଇଛନ୍ତି ଯେ, ତାଙ୍କୁ କର୍ତ୍ତବ୍ୟରୁ ପଥଭ୍ରଷ୍ଟ କରିବାପାଇଁ କିମ୍ବା ଆଗର ଗୁରଦାୟିତ୍ୱ ସକାଶେ ପରୀକ୍ଷା କରିବା ପାଇଁ ତାଙ୍କ ଆଗରେ ଗୁରୁସାହେବ ନିଜର ପଥଭ୍ରଷ୍ଟତାର ପରିଚୟ ଦେଇଛନ୍ତି । କିନ୍ତୁ ଗୁରୁସାହେବଙ୍କର ମାନସିକ ଶକ୍ତି ଯେ କେତେ ପ୍ରଖର ତାହା କୁମାରୀ ଉତ୍ତରସିଂ ଭଲଭାବରେ ଜାଣନ୍ତି । ସେଥିପାଇଁ ସେ ଉଦ୍‌ବେଗଶୂନ୍ୟ ଭାବରେ ଘଟଣାର ପରିଣାମ ବିଷୟରେ ବିଶେଷ ଚିନ୍ତା କରିବା ଛାଡ଼ି ଦେଇଛନ୍ତି । କେତେକ ଭାବିବା ଚିନ୍ତିବା ପରେ କୁମାରୀଭିଲ୍ଲାର କାର୍ଯ୍ୟସୂଚୀ ସେ ବଦଳାଇ ଦେଇଛନ୍ତି । କାମିନୀକୁ ସେ କୁମାରୀଭିଲ୍ଲାର ଗୋଇନ୍ଦାମାନଙ୍କର ସର୍ବମୟକର୍ତ୍ତ୍ରୀ କରି ଦେଇଛନ୍ତି । ନୃତ୍ୟଦଳର ଶ୍ରେଷ୍ଠ ଗାୟିକା ସୁକୃତିକୁ ସଙ୍ଗୀତ ଓ ନୃତ୍ୟ ବିଭାଗର ଅଧ୍ୟକ୍ଷା କରି ଦେଇଛନ୍ତି । କୁମାରୀ ଭିଲ୍ଲାର ସଙ୍ଗୀତ ଓ ନୃତ୍ୟ ଶ୍ରେଣୀରେ ଯୋଗ ଦେଇ ବିଦ୍ୟାଶିକ୍ଷା ପାଇଁ ସହରର ଯେଉଁ ଝିଅମାନେ ସନ୍ଧ୍ୟାରେ ଆସୁଥିଲେ ସେମାନଙ୍କ ପାଇଁ ଦିନବେଳେ ମଧ୍ୟ ସଙ୍ଗୀତ ଓ ନୃତ୍ୟ ଶିକ୍ଷାପାଇଁ ବ୍ୟବସ୍ଥା କରି ଦେଇଛନ୍ତି । କୁମାରୀଭିଲ୍ଲା ବର୍ତ୍ତମାନ ଯେମିତି ଦିନର ଅଧିକାଂଶ ସମୟ ସଙ୍ଗୀତମୁଖର ହୋଇ ରହିବ ଏବଂ ଏଠାରେ ଯେ କୌଣସି ପ୍ରକାର କଠିନ ବା ବାସ୍ତବ ବିଷୟର ସ୍ପର୍ଶ ନାହିଁ, ଲୋକଚକ୍ଷୁରେ ତାହାର ପ୍ରତ୍ୟୟ ଜନ୍ମାଇବା ପାଇଁ କୁମାରୀ ଉତ୍ତରସିଂ ସମସ୍ତ ଯୋଗାଡ଼ କରିଛନ୍ତି ।

କୁମାରୀଭିଲ୍ଲାର କୋଠରୀ ଗୁଡ଼ିକର ପରିପାଟୀ ଆଗ ଅପେକ୍ଷା ଅଧିକର ମନୋରମ ହୋଇଛି । ବର୍ତ୍ତମାନ କୁମାରୀଭିଲ୍ଲା ଗୋଟିଏ ସ୍ୱପ୍ନପୁରୀରେ ପରିଣତ ହୋଇଛି । ସହରର ଧନୀ ଯୁବକମାନେ ବର୍ତ୍ତମାନ କୁମାରୀଭିଲ୍ଲାକୁ ଗୋଟିଏ ତୀର୍ଥକ୍ଷେତ୍ର ଭଳି ମନେ କରିଛନ୍ତି । ଭିତରଟା ବର୍ତ୍ତମାନ ଏତେ ସୁଦୃଢ଼ କରାଯାଇଛି ଯେ ସେଥିଲାଗି ଆଗର କାଇଦା କଟକଣାକୁ ଯଥେଷ୍ଟ କୋହଳ କରି ଦେଇ କୁମାରୀ ଉତ୍ତରସିଂ କୁମାରୀଭିଲ୍ଲାର ଦ୍ୱାର ଆଗନ୍ତୁକମାନଙ୍କ ପାଇଁ ଖୁବ ମସୃଣ କରି ଦେଇଛନ୍ତି । ବର୍ତ୍ତମାନ କୁମାରୀଭିଲ୍ଲାଟା ସହର ଭିତରେ ଗୋଟାଏ ପ୍ରଧାନ ଲୋଭନୀୟ ସ୍ଥାନ ହୋଇଛି । ଭିଲ୍ଲା-ନିବାସିନୀ ସୁନ୍ଦରୀ ଯୁବତୀମାନେ ସ୍ୱର୍ଣ୍ଣମୃଗରେ ପରିଣତ ହୋଇଛନ୍ତି । କୁମାରୀଭିଲ୍ଲା ବର୍ତ୍ତମାନ ସହରର ସବୁଠାରୁ ବଡ଼ ଜାତୀୟ ସଂପଦ ହୋଇଛି । କୁମାରୀ

ଭିଲ୍ଲାର ପତନ ହେଲେ ସହର ହୁଏତ ଅନ୍ଧକାର ହୋଇ ଯିବ । ତରୁଣ ଦଳର ପ୍ରାଣରେ ସେଦିନ ବିରାଟ ଶୋକର ଛାୟା ଘୋଟିଯିବ ।

କୁମାରୀ ଭିଲ୍ଲାର ଚାରୋଟି ଗୁପ୍ତ ଦ୍ୱାର ରହିଛି । ଗୋଟିଏ ଗୁପ୍ତ ଦ୍ୱାର ଗୋଟିଏ ମାଲତୀ କୁଞ୍ଜ ଭିତରେ । ଗୋଟିଏ ଗୁପ୍ତ ଦ୍ୱାର ଭିଲ୍ଲାର ଠିକ୍ ପଛପଟ ଗୋଟିଏ ଛୋଟ ଜଙ୍ଗଲ ଭିତରେ—ଏହି ଗୁପ୍ତ ଦ୍ୱାରଟି ଗୋଟିଏ ସୁଡ଼ଙ୍ଗ । ସୁଡ଼ଙ୍ଗଟି ଜଙ୍ଗଲ ଭିତରୁ ଆସି କୁମାରୀ ଉତ୍ତରସିଂଙ୍କ ଶୋଇବା ଘର ତଳେ ଶେଷ ହୋଇଛି । ତୃତୀୟ ଗୁପ୍ତ ଦ୍ୱାରଟି କୁମାରୀଭିଲ୍ଲାର ଉତ୍ତର ପାଖ ପାଚେରୀ ଦେହରେ ଥିବା ଗୋଟିଏ ସିଂହ ମୂର୍ତ୍ତି । ଏହି ସିଂହମୂର୍ତ୍ତିଟି ଏପରି ଭାବରେ ତିଆରି ଯେ ତାହାର ଆଖି ଭିତର ଦେଇ ବାହାରର ଲୋକ ଚଳାଚଳ ଭଲ ଭାବରେ ଦେଖି ହୁଏ ଏବଂ ତାହା ସାହାଯ୍ୟରେ ବାହାରର ଅବସ୍ଥା ଜାଣି ନେବା ପରେ, ସିଂହର ପେଟ ତଳେ ଥିବା ଗହ୍ୱର ଭିତର ଦେଇ ପଦାକୁ ବାହାରି ଆସି ହୁଏ । ଚତୁର୍ଥ ଗୁପ୍ତ ଦ୍ୱାରଟି ସବୁ ଠାରୁ ବଡ଼ । ତା ଭିତର ଦେଇ ଭିଲ୍ଲାଭିତରୁ ବଡ ବଡ ମଟର ମଧ୍ୟ ଚଳାଇ ନେଇହୁଏ । ପାଚେରୀର ସେହି ସ୍ଥାନଟି କାଠରେ ତିଆରି ହୋଇ ତାହାର ଚେହେରାକୁ ପଥର ପାଚେରୀ ସହିତ ସମାନ କରି ଦିଆଯାଇଛି । ପାଚେରୀ ପାଖରେ ଓଜନଦାର ଯେ କୌଣସି ଯାନ ବାହନ ପହଞ୍ଚିଲା କ୍ଷଣି ତାହା ଚାପରେ ପାଚେରୀର ସେହି ଅଂଶଟି ଆପଣା ଛାଏଁ ଖୋଲି ଯାଏ ଏବଂ ଯାନ ବାହନ ପାଚେରୀ ବାହାରକୁ ଚାଲିଗଲା କ୍ଷଣି ସ୍ଥାନଟି ଛାଏଁ ଛାଏଁ ନିବୁଜ ହୋଇ ବନ୍ଦ ହୋଇ ଯାଏ । ଏହି ସବୁ ଗୁପ୍ତ ଦ୍ୱାରର ଭେଦ କୁମାରୀ ଭିଲ୍ଲାର ସମସ୍ତଙ୍କ ଗୋଚର ନୁହେଁ । ଆଗରୁ ଗୁରୁସାହେବ ଓ କୁମାରୀ ଉତ୍ତରସିଂ ଏବଂ ଅଭିଯାନକାରୀ ଦଳର ସର୍ଦ୍ଦାର ଅନନ୍ତ ରାମ କେବଳ ଜାଣିଥିଲେ । ବର୍ତ୍ତମାନ ଭିଲ୍ଲାର ଗୋଇନ୍ଦା ବିଭାଗର ସର୍ବୋଚ୍ଚ ପାହ୍ୟାକୁ କାମିନୀ ଆସି ଯାଇଥିବାରୁ ତାହାକୁ ଗୁପ୍ତ ଦ୍ୱାରର ଭେଦ ଜଣାଇ ଦିଆ ଯାଇଛି ।

"ଆଉ ମୋଟେ ଦଶ ଦିନ ସମୟ । ଆଜ ହୁଏତ ଗୁରୁସାହେବ ଫେରିବେ ।" ନିଜର ଶୋଇବା ଘର ପଲଙ୍କ ଉପରେ ପଡ଼ି ଏହିପରି ଭାବୁଚନ୍ତି କୁମାରୀ ଉତ୍ତର ସିଂ । ଆଉ ଦଶଦିନ ପରେ ହୁଏତ ସେମାନଙ୍କୁ ନିରୁଦ୍ଦିଷ୍ଟ ହୋଇଯିବାକୁ ପଡ଼ିବ । ଏହି ଦଶଦିନ ଭିତରେ ରଙ୍ଗପୁର ରାଜବାଟୀ, କେରୋଡ଼ମଲଙ୍କ ସୁନାଭଣ୍ଡାର ଏବଂ ଝାରସୁଗୁଡ଼ାର କୃଷନଗୃନ୍ଦ ତହବିଲ ଲୁଟ ହେବ । ଏସବୁ ଭାବିବାରେ ଟିକେ ହେଲେ ଦୟାମାୟା ନାହିଁ କୁମାରୀ ଉତ୍ତର ସିଂଙ୍କ ମନରେ । ତାହାପରେ ତାଙ୍କର ମନେ ପଡ଼ିଲା ଗୁରୁ ସାହେବଙ୍କର ସେହି ଫାଶୀକାଠରେ ଝୁଲିବାର କଥା । ସତେ କଣ ଫାଶୀ କାଠରେ ଝୁଲିବାକୁ ହେବ । କୁମାରୀ ଉତ୍ତରସିଂଙ୍କ ଅନିନ୍ଦ୍ୟ ମୁଖମଣ୍ଡଳରେ ବିଷାଦର ଆଭା ଦେଖାଦେଲା । ମୃତ୍ୟୁଭୟ କାହାର ନାହିଁ ? ଗଳିତ କୁଷ୍ଠ ରୋଗୀ ମଧ୍ୟ ଦୁନିଆରେ ବଞ୍ଚିବାକୁ ଚାହେଁ । କିନ୍ତୁ କୁମାରୀ ଉତ୍ତର ସିଂ ପରମା ସୁନ୍ଦରୀ, ଶିକ୍ଷିତା ପୁଣି ବୁଦ୍ଧିମତୀ । ଦେହସାରା ତାଙ୍କର ଅବ୍ୟୟ ଯୌବନର ଉଚ୍ଛଳ ତରଙ୍ଗ ଖେଳି ବୁଲୁଛି । କେବଳ ଆଦର୍ଶ ତାଙ୍କୁ ତ୍ୟାଗର ପଥକୁ ଘେନି ଯାଇଛି । କିନ୍ତୁ ଯେତେ ବଡ଼ ତ୍ୟାଗୀ ହେଲେ ମଧ୍ୟ ଯଦି ତାଙ୍କୁ ଜୀବନ ତ୍ୟାଗ କରିବାକୁ ପଡେ, ତାଙ୍କୁ ନିଶ୍ଚୟ ଥରେ

ହେଲେ ବିଚଳିତ ହେବାକୁ ପଡିବ । ସେହି ଅବସ୍ଥା ପହଞ୍ଚିଛି ବର୍ତ୍ତମାନ କୁମାର ଉତ୍ତର ସିଂଙ୍କ ପାଖରେ । ସେ ଆଦର୍ଶର ଖଣ୍ଡାମୁନରେ ମୁନରେ ଚାଲିଛନ୍ତି । ବୁଦ୍ଧି ବଳରେ ଅନେକ କାର୍ଯ୍ୟ ହାସଲ କରିଛନ୍ତି । ନିଜର ଯେଉଁ ଅନିନ୍ଦ୍ୟ ରୂପ ଓ ଲୋଭନୀୟ ଚଳ୍-ଲିତା ଧରି ସାରା ସହରକୁ ସେ ଭୁଲାଇ ଦେଇଛନ୍ତି ତାହାକୁ ସେ ଉପଭୋଗ କରିଛନ୍ତି କେତେ ? ସେଦିନ ଗୁରୁସାହେବ ତାଙ୍କୁ ନିଜର ଅସଲ ରୂପ ଦେଖାଇଦେଲେ । ପୁଣି ସେ ଜଣାଇ ଦେଇ ଗଲେ, ସେ ଗୁରୁସାହେବ ନୁହନ୍ତି, ସେ ତମର ପ୍ରାଣପ୍ରିୟ ନିଃଶଙ୍କ । ତମପାଇଁ ତାଙ୍କ ଦେହରେ ସେ ପ୍ରଚୁର ଉପଭୋଗର ଖାଦ୍ୟ ସଞ୍ଚୟ କରି ରଖିଛନ୍ତି । ଆଦର୍ଶକୁ ଚୂରମାରି କରି ତମେ ସେହି ଖାଦ୍ୟ ନିଜ ହାତରେ ଧରି ଆହାର କରିପାର, ନଚେତ ଆଦର୍ଶ ପାଇଁ ଜୀବନର ଦୀପଶିଖା ଲିଭାଇ ଦେବା ଆଗରୁ ଭଗ୍ନବାଟରେ ଯାଇ ଥିଲେ ତମ ପାଇଁ ଯେ ସୁଖ ରହିଥିଲା ତାର ସ୍ମୃତି ସାଙ୍ଗରେ ନେଇଯାଅ ।··· ଏହିପରି ଭାବୁ ଭାବୁ ମନ ଖୁବ ଦୂରକୁ ଚାଲିଗଲା କୁମାର ଉତ୍ତର ସିଂଙ୍କର । ତାହାପରେ ସେ ନିର୍ଭୀକ ହୋଇ ନିଜକୁ ପ୍ରଶ୍ନ କଲେ, ମୃତ୍ୟୁ ଆଉ ଯିବ କେତେଦୂର, ଖୁବ ବେଶି ଫାଶୀ କାଠଯାଏ । ଆଗରେ ଫାଶୀକାଠଟା ଯେମିତି ଦେଖାଦେଲା । ସେ ଦେଖିଲେ,ସେଥିରେ ଖୁଦିରାମ ଝୁଲୁଛି, ରୁଷିଆର ଗରିଲା ଯୋଦ୍ଧା ଯୁବତୀ ଟ୍ୟାନ୍ୟା ଝୁଲୁଛି । ସେମାନଙ୍କର କାହାର ସ୍ୱାସ୍ଥ୍ୟ ତ ମନ୍ଦ ନୁହେଁ । ନିଜର ବାହୁକୁ ସେ ଥରେ ଅନେଇ ନେଲେ । ଉଠିପଡ଼ି ଆଗର ଦର୍ପଣରେ ନିଜକୁ ଚାହିଁ ରହିଲେ । ନିଜର ପ୍ରତିବିମ୍ବକୁ ନମସ୍କାରକରି ସେ କହିଲେ "ବିଦାୟ କୁମାରୀ ମୃଦୁଳା ।" ଦୁଇ ବିନ୍ଦୁ ଲୁହ ଗଡ଼ି ପଡ଼ିଲା ଆଖିରୁ ।

ଖଟ୍—ଖଟ୍—ଖଟ୍

ଆଖିରୁ ଲୁହ ପୋଛି ନେଲେ କୁମାର ଉତ୍ତର ସିଂ ।

ସୁଡଙ୍ଗର ଗୁପ୍ତଦ୍ୱାର ଦେଇ ବାହାରି ଆସିଲା କାମିନୀ । ଦେହରେ ତାର ଫେରିବାଲାର ବେଶ । ପାଦରେ ହଳେ ଛିଣ୍ଡା ଚଟି । ଦେହର ରଙ୍ଗ ଖରାରେ ତମ୍ବା-ଟିଆ ପଡ଼ିଯାଇଛି । ସେ ଆଜ ସହର ଭିତରକୁ ମହୁ ବିକ୍ରୀ କରିବାକୁ ଯାଇଥିଲା । କଲପଙ୍ଖାକୁ ଜୋରରେ ଚଳେଇ ଦେଇ ଗୋଟିଏ ଚୌକିରେ ସେ ବସି ପଡ଼ିଲା । ତାପରେ ଧୀରେ ଧୀରେ କହିଲା—

"ସୁପ୍ରୀତି ଆସିଚି କୁମାରୀ ସାହେବ ।"

ଆଶ୍ଚର୍ଯ୍ୟ ହୋଇ କୁମାର ଉତ୍ତରସିଂ ପଚାରିଲେ—

"ସୁପ୍ରୀତି ଆସିଚି ? କୋଉଠି ଅଛି ?"

"ବାଟରେ ମୁଁ ତାକୁ ରଙ୍ଗପୁର ରାଣୀଙ୍କ ମଟରରେ ଦେଖିଲି । ତାର ଘଣ୍ଟାକ ପରେ ମହୁ ବିକିବା ପାଇଁ ମୁଁ ଗଲି ରଙ୍ଗପୁର କୋଠିକି । ତାକୁ ସେଠି ଭଲ ଭାବରେ ଦେଖିଲି ।

କାମିନୀର କଥା ଶୁଣି କୁମାର ଉତ୍ତରସିଂ ତରତର ହୋଇ ପଚାରିଲେ—

"ସୁପ୍ରୀତି କଟକ ଆସିଚି, ଅଥଚ ଏଠିକି ଆସିନି ଏତେବେଳଯାଏ । ସେ କୋଉଦିନ କଟକ ଆସିଚି ?"

କାମିନୀ ପୁଣି କହିଲା—

"ହୁଏତ ଏଠିକି ସେ ଆସିବନି କୁମାର ସାହେବ । ଇସାରା ଦେଇ ମୁଁ ତାକୁ ପାଖକୁ ଡାକିଲି । ପାଖକୁ ଆସି ମତେ ସେ ଚାହିଁପାରି କହିଲା, ତମେ ପଳା ଏଠୁ କାମିନୀ, ନହେଲେ ତମେ ବିପଦରେ ପଡ଼ିବ ।"

ଆଶ୍ଚର୍ଯ୍ୟ ହୋଇ କୁମାର ଉତ୍ତରସିଂ କହିଲେ—

"ସୁପ୍ରୀତି ଏକଥା କହିଲା କାମିନୀ ?...ତାପରେ ତମେ ସେଠୁ ଚାଲିଆସିଲ, ନା ?"

"ହଁ, ଆଉ କଣ କରନ୍ତି ମୁଁ କୁମାର ସାହେବ !"

ଗର୍ଜିଉଠି କୁମାର ଉତ୍ତରସିଂ କହିଲେ—

"ସୁପ୍ରୀତିକୁ ଏଠିକି ଆଣିବାକୁ ହବ କାମିନୀ—"

ତାପରେ ଅନ୍ୟ କଥା କହିଲା କାମିନୀ—

"ସହରର ମୁଁ ଆଜ ସମସ୍ତଙ୍କୁ ଭେଟିଛି । କାମ ହୁଏତ କାଲି ଶେଷ ପାଇଯିବ..."

ଯା ପରେ ଖୁବ ଦୃଢ଼ ଭାବରେ କହିଲେ କୁମାର ଉତ୍ତରସିଂ

"ତା ପୂର୍ବରୁ ସୁପ୍ରୀତିକି ଆମର ଦରକାର, ତା ପୂର୍ବରୁ ସୁପ୍ରୀତିକି କଣ୍ଟକରୁ ନିକାଳିବାକୁ ହବ, ନ ହେଲେ ହତ୍ୟା କରିଦେବାକୁ ହବ ।"

କାମିନୀ ଚମକି ପଡ଼ି କହିଲା—

"ହତ୍ୟା ?"

"ହଁ, କାମିନୀ ! ଆଉ ଉପାୟ କିଛି ନାହିଁ । ଏ ଭାର ମୁଁ ନେଉଛି କାମିନୀ । ହଁ—ଆଜ ସନ୍ଧ୍ୟାରେ ତମେ ସିନେମା ଯିବ କାମିନୀ । ସେଇ ସି. ଆଇ. ଡି. ଭଦ୍ରଲୋକଠାରୁ ଆଜ ସବୁ କଥା ତମକୁ ସଂଗ୍ରହ କରିବାକୁ ହବ କାମିନୀ । ମୋର ଏଇ ମୁଦିଟା ତମେ ଲଗେଇ ଯାଅ କାମିନୀ—ମୁଦି ବଦଳ ଆଜ କରିନବ—ବିବାହ ପାଇଁ ପକ୍‌କା କଥା ଦେଇ ଦବ, ବୁଝିଲ ।"

କୁମାର ଉତ୍ତରସିଂଙ୍କଠାରୁ ମୁଦିଟା ନେଇ ଖୁବ୍ ସନ୍ତର୍ପଣରେ କହିଲା କାମିନୀ—

"ପାଞ୍ଚ ହଜାର ଟଙ୍କାର ମୁଦିଟା ପଚିଶ ଟଙ୍କାର ମୁଦି ବଦଳରେ ଦେଇ ଦେବି..."

ଖୁବ୍ ଅସନ୍ତୁଷ୍ଟ ହୋଇ କୁମାର ଉତ୍ତରସିଂ କହିଲେ—

"ଦରକାର ପଡ଼ିଲେ ଆହୁରି କିଛି... । ଆମ ବିରୁଦ୍ଧରେ ଥିବା ତାଙ୍କ ପାଖରୁ ସେଇ ଫାଇଲଟା ନେଇ ଆସିବ, ନ ହେଲେ ଏସିଡ଼ ଢାଳି ଦେଇ ଆସିବ କାମିନୀ ।"

ଏତିକି କହି ବେଶ ଭୂଷା ଠିକେ ସଜାଡ଼ି ଗାରେଜକୁ ଚାଲିଗଲେ କୁମାର ଉତ୍ତରସିଂ । ତାପରେ ମଟରରେ ବସି ବାହାରି ଗଲେ ରଙ୍ଗପୁର ହାଉସକୁ ।

ପ୍ରାୟ ପନ୍ଦର ମିନିଟ ଭିତରେ କୁମାର ଉତ୍ତରସିଂ ଫେରି ଆସିଲେ, ସାଙ୍ଗରେ ସୁପ୍ରୀତି । ଗୁପ୍ତ କୋଠରୀ ଭିତରେ ସୁପ୍ରୀତିକି ଧରି ପଶିଲେ କୁମାର ଉତ୍ତରସିଂ ।

ସୁପ୍ରୀତି କୁମାରୀ ଉତ୍ତରସିଂଙ୍କ ସାଙ୍ଗରେ ଆସିଲା ବେଳୁ ଜାଣି ନେଇଥିଲା, ତାକୁ ଆଜ ଏଇ ଗୁପ୍ତ କୋଠରୀକି ଆସିବାକୁ ପଡ଼ିବ । ସେଥିପାଇଁ ସେ ଦୃଢ଼ ଏକ ପ୍ରସ୍ତୁତ ହୋଇ ଆସିଥିଲା । କିନ୍ତୁ ତାର ସେହି ଆତ୍ମ-ରକ୍ଷାର ପ୍ରସ୍ତୁତି ପାଇଁ କୁମାରୀ ଉତ୍ତରସିଂ ମୋଟେ ସୁବିଧା ଦେଲେ ନାହିଁ । ରୁଦ୍ଧ ଗୁପ୍ତ କୋଠରୀର ମଝିରେ ସୁପ୍ରୀତିକି ଛିଡ଼ା କରି ଦେଇ ହାତରେ ଗୋଟିଏ ହଣ୍ଟର୍ ଧରି ଗୋଟିଏ ଷ୍ଟୁଲ୍ ଉପରେ ସେ ବସି ପଡ଼ିଲେ । ତାପରେ ସୁପ୍ରୀତିକି ଉଲଗ୍ନ ହେବା ପାଇଁ ଆଦେଶ ଦେଲେ । ସୁପ୍ରୀତି ଆସ୍ତେ ଆସ୍ତେ ଦେହର ଲୁଗା ପଟା ଖୋଲିଲା । ଅଣ୍ଟାର ପିନ୍ଧା କାନିରେ ଖୁବ୍ ସାବଧାନରେ ଲୁଚେଇ ଥିବା ଗୋଟିଏ ଗ୍ଲେଟ ଓଜନିଆ କାଗଜକୁ ସେ ମଧ୍ୟ ଲୁଗା ସ୍ତୂପ ତଳକୁ ଖସାଇ ଦେଲା । ବର୍ତ୍ତମାନ ଖଣ୍ଡେ ଶାୟା ଓ ବଡ଼ିଶ ଦେହରେ ଅର୍ଦ୍ଧ-ଉଲଗ୍ନ ଅବସ୍ଥାରେ ଆଗରେ ଛିଡ଼ାହୋଇ ରହିଲା ସୁପ୍ରୀତି । ତାର ସୁଗଠିତ ଦେହ ଏହା ଭିତରେ ଆହୁରି ସୁନ୍ଦର ହୋଇ ଯାଇଛି । ରାଜନଅରର ବିଳାସ ପରିଚର୍ଯ୍ୟାରେ ଓଠ ତାର ଆହୁରି ଲାଲ, ଆଖି ତାର ଆହୁରି କଳା, ଚିବୁକ ଓ ଗଣ୍ଡ ଦେଶ ଆହୁରି ନିଟୋଳ ହୋଇ ଯାଇଛି ।

ତାର ରୂପକୁ ଥରେ ଚାହିଁ ନେଇ କୁମାରୀ ଉତ୍ତରସିଂ ଗମ୍ଭୀର ଭାବରେ କହିଲେ—

"ତମ ଉପରେ ଅନେକ ଅଭିଯୋଗ ଅଛି, ସୁପ୍ରୀତି !

"ପ୍ରଥମେ, ତମେ ଅଗ୍ନି-ମନ୍ତ୍ରର ଅବମାନନା କରିଛ ।

"ଦ୍ୱିତୀୟରେ, ତମେ ଦଳର ଶୃଙ୍ଖଳା ଭଙ୍ଗ କରିଛ ।

"ତୃତୀୟରେ, ତମେ ଆମର ବ୍ୟକ୍ତିଗତ ବିଶ୍ୱାସ ହରାଇଛ ।

"ଏହାର ଶାସ୍ତି ତମକୁ ଗ୍ରହଣ କରିବାକୁ ହେବ, ସୁପ୍ରୀତି !"

ସୁପ୍ରୀତି ନିର୍ଭୀକ ଭାବରେ ଉତ୍ତର ଦେଲା—

"ମୁଁ କୋଣସି ଦୋଷ କରିନି, ସୁତରାଂ ମୁଁ କୌଣସି ଶାସ୍ତି ପାଇ ନ ପାରେ । ମୁଁ ଆପଣଙ୍କ ଆଦେଶ ଅନୁସାରେ କାର୍ଯ୍ୟ କରିଛି ।"

କୁମାରୀ ଉତ୍ତରସିଂ ଗର୍ଜି ଉଠି କହିଲେ—

"ତୁମେ କେଦାରେଡ଼ମଲଙ୍କଠାରୁ ଗୋଟିଏ ହୀରା ମୁଦି ଉପହାର ଆଣିଛ କି ନା ?"

ସୁପ୍ରୀତି ନୀରବ ।

"କୋଦାରେଡ଼ମଲଙ୍କଠାରୁ ତମେ ଅନେକ ଆଗରୁ ହୀରା ମୁଦିଟି ନେଇ ତାହାକୁ କେଦାରେଡ଼ମଲଙ୍କ ଅଜାଣତରେ କାଇଦା ମୁତାବକ ନେଇଛି ବୋଲି ମୋ ଆଗରେ ମିଥ୍ୟା ପ୍ରତ୍ୟୟ ଜନ୍ମାଇବାର ଚେଷ୍ଟା କରିଛ ।"

ସୁପ୍ରୀତି ମଧ୍ୟ ପୁଣି ନୀରବ ରହିଲା ।

"ତାପରେ ତମେ ଆମର ଦଳ ଓ ଲକ୍ଷ୍ୟ ବିରୁଦ୍ଧରେ କାମ କରୁଛ ବୋଲି ଆମର ଯଥେଷ୍ଟ ସନ୍ଦେହ ହୋଇଛି । ଏହା ତମ ପ୍ରତି ଅତି ଗୁରୁତର ଅଭିଯୋଗ ।"

ସୁପ୍ରୀତି ଶୀଘ୍ର ଉତ୍ତର ଦେଲା—

"ଏହାର କୌଣସି ପ୍ରମାଣ ଆପଣ ଦେଇ ପାରିବେ ନାହିଁ ।"

କୁମାରୀ ପୁଣି ଗମ୍ଭୀର ଭାବରେ କହିଲେ—

"ଆଜ ଖରାବେଳେ କାମିନୀ ତମଠାରୁ କୌଣସି ସମ୍ବାଦ ପାଇବା ପାଇଁ ରଙ୍ଗପୁର କୋଠିକି ଯାଇ ତମକୁ ଭେଟିଥିଲା । କିନ୍ତୁ ତମେ ତାକୁ କୌଣସି ସମ୍ବାଦ ଦେବା ପରିବର୍ତ୍ତେ ଓଲଟି ତାକୁ ବିପଦର ଧମକ ଦେଇ କୋଠିରୁ ବାହାରି ଯିବାପାଇଁ କହିଥିଲ । ଏହା ତାର ଯଥେଷ୍ଟ ପ୍ରମାଣ ।"

ସୁପ୍ରୀତି ତଥାପି ନିର୍ଭୀକ ଭାବରେ କହିଲା—

"ମୁଁ ଭିନ୍ନ ଉଦ୍ଦେଶ୍ୟରେ..."

ସୁପ୍ରୀତିର କଥା ସରିବା ଆଗରୁ କୁମାରୀ ଉତ୍ତରସିଂ ହଣ୍ଟରଟାକୁ ହଲାଇ ହଲାଇ ଗର୍ଜି ଉଠି କହିଲେ—

"କଣ, ତମର ଉଦ୍ଦେଶ୍ୟ ? ତମର ଉଦ୍ଦେଶ୍ୟ, ଆମ ସମସ୍ତଙ୍କୁ ଫାଶୀ କାଠରେ ଝୁଲାଇ ଆମର ଲକ୍ଷ୍ୟ ଉପରେ ପଦାଘାତ କରି ଶେଠ କେଦାରମଲକୁ ବ୍ୟଭିଚାରର ଖାଦ୍ୟ ଯୋଗାଇ ନିଜର ବିଳାସପୁରୀ ଗଠନ କରିବା, ଏଥି ତ ?"

କୁମାରୀ ଉତ୍ତରସିଂ ଛିଡ଼ା ହୋଇ ପଡ଼ିଲେ । ହଣ୍ଟରର ପ୍ରଥମ ଆଘାତ ବାଜିଲା ସୁପ୍ରୀତିର ପୃଥୁଳ ଜଘନ ଉପରେ ।

ସୁପ୍ରୀତି ଅଟଳ ହୋଇ ଛିଡ଼ା ହେଲା । ଯଥେଷ୍ଟ ଅସହିଷ୍ଣୁତାର ସହ କମ୍ପି ଉଠି କହିଲେ କୁମାରୀ ଉତ୍ତରସିଂ—

"ତମର ଅବିଶ୍ୱାସିତାର ଆହୁରି ପ୍ରମାଣ ଲୋଡ଼ା, ସୁପ୍ରୀତି ?"

ପାଟିରୁ କଥା ନ ସରିବା ଆଗରୁ ପଲକ ଭିତରେ ସୁପ୍ରୀତିର ବେକର ଚେନଟାକୁ ଛିଣ୍ଡେଇ ଆଣି ତାର ଲକେଟ୍‌ଟା ଖୋଲି କହିଲେ –

"ଏ କାହାର ଛବି ସୁପ୍ରୀତି ?"

ସୁପ୍ରୀତି ପଥର ପରି ନୀରବ ହୋଇ ରହିଲା ! କୁମାରୀ ଗର୍ଜି ଗର୍ଜି କହିଲେ –

"ପୁଞ୍ଜିପତି କେଦାରମଲର ଛବି ତମ ହୃଦୟରେ । ଅଥଚ ତମେ ଶୋଷଣ ଆଉ ଦୁର୍ନୀତିର ଉଚ୍ଛେଦ ପାଇଁ ଅଗ୍ନିମନ୍ତ୍ରର ଦୀକ୍ଷା ନେଇଥିଲ । ଖୋଲ, ଦେହରେ ତମର କନା ଟିକେ ମଧ୍ୟ ମୁଁ ରଖି ଦେବି ନାହିଁ । ଯେଉଁ ଦେହର ଲୋଭରେ ତମେ ନୀତି ଭ୍ରଷ୍ଟା ହୋଇଚ, ଦଳର ବିଶ୍ୱାସଘାତକତା କରି ଆମ ସମସ୍ତଙ୍କୁ ମୃତ୍ୟୁ ମୁହଁକୁ ଠେଲି ଦେବାକୁ ଯାଉଚ, ସେହି ଦେହକୁ ମୁଁ ଆଜ ଖଣ୍ଡ ଖଣ୍ଡ କରି ଦେବି ।"

ନୀରବ ଓ ଅଟଳ ହୋଇ ସେହିପରି ଛିଡ଼ା ହୋଇ ରହିଲା ସୁପ୍ରୀତି । ଆଖିରେ ତାର ପ୍ରତିହିଂସାର ନିଶା ଲାଲ ହୋଇ ଉଠୁଛି । କୌଣସି ସୁବିଧାର ଅପେକ୍ଷା କରୁଚି ସେ ଯେମିତି ।

ତଳେ ପଡ଼ିଥିବା ସୁପ୍ରୀତିର ଶାଢ଼ୀକୁ କୁମାରୀ ଉତ୍ତରସିଂ ହଠାତ୍ ଗୋଡ଼ରେ ଘୁଞ୍ଚି ଆଣିଲେ ।

ଗୋଟିଏ ଷ୍ଟେନ ରିଭଲ୍‌ଭର ଛିଟିକି ଆସିଲା ସେହି ଶାଢ଼ୀ ଭିତରୁ । ଚମକି ଉଠିଲେ କୁମାରୀ ଉତ୍ତରସିଂ ।

"ଖୋଲ, ଖୋଲ; କପଡ଼ା ଖୋଲ" କହି ପୁଣି ଦୁଇ ତିନି ଚାବୁକ୍ ସେ ସୁପ୍ରୀତି ଦେହରେ ବସାଇଦେଲେ । ଉଭଲଭରଟିକୁ ନିମିଷକ ଭିତରେ ତଳୁ ଉଠେଇ ନେଇ ସୁପ୍ରୀତିକୁ ଲକ୍ଷ୍ୟ କରି କହିଲେ—

"ଆଉ ଦୟା ନାହିଁ--ଅପେକ୍ଷା ମଧ କରି ପାରିବି ନି !"

ବଡ଼ିଶ ଓ ଶାୟା ଖସାଇ ଦେଇ ତଳେ ବସି ପଡ଼ିଲା ସୁପ୍ରୀତି । ହଠାତ୍ ଆଉ ଗୋଟାଏ ପାହାର ବଜେଇଲେ କୁମାରୀ ଉତ୍ତରସିଂ, ଯେମିତି ଦୁର୍ଗା ଓ ଚଣ୍ଡୀର ଉତ୍ତରାଧିକାର ସେ ପାଇଛନ୍ତି ଆଜି । ଆଘାତରେ ଅଧୀର ହୋଇ ଆଦେଶ ପାଳି ସୁପ୍ରୀତି ଉଠି ଠିଆ ହେଲା । ପୃଥୁଳ ଜଘନର ଶୁଭ୍ର ମାଂସ ଉଲ୍ଲରେ ଫାଟି ପଡ଼ିବା ଉପରେ । କୁମାରୀ ଉତ୍ତରସିଂ ଥରେ ସୁପ୍ରୀତିର ଦେହ ଓ ମୁହଁକୁ ଅନେଇ ନେଲେ । ଶିହରି ଉଠି ସେ ଅତି ମର୍ମାହତ ଭାବରେ ଷ୍ଟୁଲ ଉପରେ ବସି ପଡ଼ି ଦାରୁଣ ବେଦନାଭରା ଭାଷାରେ କହିଲେ—

"ତମେ ଗର୍ଭବତୀ···?"

ତଳକୁ ମୁହଁ ପୋତି ସୁପ୍ରୀତି କହିଲା –

"ହଁ ।"

"ତମ ଗର୍ଭରେ ଥିବା ସନ୍ତାନର ପିତା କିଏ, ସୁପ୍ରୀତି ?"

ସୁପ୍ରୀତି ମୁହଁରେ କୌଣସି କଥା ନାହିଁ । କୁମାରୀ ଉତ୍ତରସିଂ ଦୃଢ ଓ ଘୃଣାବ୍ୟଞ୍ଜକ ସ୍ୱରରେ କହିଲେ –

"କେରୋଡ଼ିମଲ ନିଶ୍ଚୟ···।"

କିଛିକ୍ଷଣ ପରେ ପ୍ରଚଣ୍ଡ କ୍ରୋଧରେ ଥରି ଥରି ସେ କହିଲେ –

"ତମର ଗର୍ଭରେ ପିଶାଚର ଭ୍ରୂଣ ! ମଣିଷ-ଜାତିର ଶତ୍ରୁର ରକ୍ତ ତମ ଗର୍ଭରେ ! ତମେ ଦଣ୍ଡର ଅଯୋଗ୍ୟ । ତମକୁ ଦଣ୍ଡ ଦେଇ ମୁଁ ମୋର ହାତ କଳୁଷିତ କରି ପାରିବିନି । ତମେ ମୁକ୍ତ । ଚାଲିଯାଅ ସୁପ୍ରୀତି, ମୋ ଆଗରୁ । ମୋ ବିରୁଦ୍ଧରେ ତମେ ଯେ କୌଣସି ସମ୍ବାଦ ଦେଇପାର, ଯେ କୌଣସି ଷଡ଼ଯନ୍ତ୍ର କରିପାର···।"

॥ ୧୩ ॥

ହତ୍ୟା କରିବା ତ ଦୂରର କଥା, କୁମାରୀ ଉତ୍ତରଂସି ସୁପ୍ରୀତିକୁ କଠିନ ଶାସ୍ତି ମଧ ଦେଇ ପାରିଲେ ନାହିଁ । କୁମାରୀ ଉତ୍ତରସିଂଙ୍କ ପ୍ରତ୍ୟକ୍ଷ ଶତ୍ରୁ ପୁଞ୍ଜିପତିର ସନ୍ତାନ ଗର୍ଭରେ ଧରି ସୁପ୍ରୀତି ନିଜର ଆତ୍ମରକ୍ଷା ସହ କୁମାରୀ ଉତ୍ତରସିଂଙ୍କୁ ନିରସ୍ତ୍ର ମଧ କରି ପାରିଲା । ଶେଷରେ ଜଣେ ଗର୍ଭବତୀ ନାରୀକୁ ହତ୍ୟା ନ କରିବାର ଦୁର୍ବଳତା ଭିତର ଦେଇ କୁମାରୀ ଉତ୍ତରସିଂ ଓ ତାଙ୍କ ଦଳର ଧ୍ୱଂସ ଖୁବ୍ ପ୍ରଶସ୍ତ ହୋଇପଡ଼ିଲା ।

ସୁପ୍ରୀତିକୁ ପୁଣି ନିଜ ସାଙ୍ଗରେ ମଟରରେ ବସାଇ କୁମାରୀ ଉତ୍ତରସିଂ ରଙ୍ଗପୁର କୋଠି ଉଦ୍ଦେଶ୍ୟରେ ଚାଲିଲେ । ପାଖରେ ସୁପ୍ରୀତି ନୀରବ ହୋଇ ବସି

ରହିଥାଏ । ସୁପ୍ରୀତିଙ୍କ କିଛି କହିବାପାଇଁ ମଧ୍ୟ କୁମାରୀଉତ୍ତରସିଂଙ୍କ ଭିତରେ କୌଣସି ସାହସ ନ ଥାଏ । କେତେବେଳ ପରେ ସୁପ୍ରୀତିର ମୁହଁ ଉପରେ ସେ ଆଖି ପକେଇଲେ । ସୁପ୍ରୀତିର ମୁହଁ ଆଗର ସନ୍ଧ୍ୟାର ଝାପସା ଅନ୍ଧାରରେ ମଧ୍ୟ ଲାଲ ଥମ୍ ଥମ୍ ହୋଇ ଉଠିଥିବାର ଜଣାଯାଉଛି । ହିଂସ୍ର ବାଘୁଣୀ ପରି ଆଖି ଦିଟା ଲାଲ ଆଉ ଉଜ୍ଜ୍ୱଳ ହୋଇ ଉଠିଛି । ଜଣା ଯାଉଛି, କୁମାରୀ ଉତ୍ତରସିଂଙ୍କ ପ୍ରତି କୌଣସି ପ୍ରକାର ଦୟା ମାୟା ନ ରଖି ସୁପ୍ରୀତି ତାଙ୍କୁ ଯେମିତି ଶେଷ କରି ଦେବାକୁ ଚାହୁଁଛି । ଟିକେ ଦମ୍ ରେକ ନେଇ କୁମାରୀ ଉତ୍ତରସିଂ କହିଲେ—

"ମୋର ଫାଶୀ କାଠରେ ଝୁଲିବାରେ ଗୌରବ ଅଛି ସୁପ୍ରୀତି !"

ସୁପ୍ରୀତି କଣ ଭାବି ଧୀରେ ଧୀରେ କହିଲା—

"ଆପଣ କଣ ନିଶ୍ଚୟ ଫାସୀ ପାଇବେ କୁମାରୀ ସାହେବ ?"

ଟିକେ ହସିଦେଇ କୁମାରୀ ଉତ୍ତରସିଂ ଉତ୍ତର ଦେଲେ—

"ଏଥିରେ ଆଉ ସନ୍ଦେହ କଣ ଅଛି ? ଆମେ କେଦ୍ରୋଡ଼ମଲଙ୍କୁ ଧ୍ୱଂସ କରିବାକୁ ଛିଡ଼ା ହୋଇଥିଲୁ । କିନ୍ତୁ ବର୍ତ୍ତମାନ ତମ ପେଟରେ ଥିବା କେଦ୍ରୋଡ଼ମଲ ଆମ ସମସ୍ତଙ୍କର ଶତ୍ରୁ ହୋଇ ଛିଡ଼ା ହୋଇଛି । ଆଜି ତମେ କଣ କରିଛ ସୁପ୍ରୀତି ଜାଣ ? ତମେ ମଣିଷ ଜାତିର ଶତ୍ରୁ ସୃଷ୍ଟି କରି ସାରା ନାରୀ ଜାତିକୁ କଳଙ୍କ ଭିତରେ ବୁଡାଇ ଦେଇଛ । ସେଥିଯୋଗୁଁ ଆଜି ସମଗ୍ର ନାରୀ ଜାତିକୁ ଧ୍ୱଂସ କରି ଦେବାର ବାସନା ମୋ ଭିତରେ ଦେଖା ଦେଇଛି । ନାରୀର ଅନ୍ଧ ପ୍ରେମକୁ ମୁଁ ଆଉ ବରଦାସ୍ତ କରିବାକୁ ପ୍ରସ୍ତୁତ ନୁହେଁ । ତାରି ଯୋଗୁଁ ମିଛ ଗର୍ଭ ଧାରଣ କରି ସେ ମଣିଷ ଜାତିର ଶତ୍ରୁ ତିଆରି କରି ବସୁଛି......"

କିଛି ସମୟ ପରେ ପୁଣି ସେ କହିଲେ—

"କିନ୍ତୁ ଆଉ ବୋଧହୁଏ କମ୍ ସମୟ ମତେ ପୃଥିବୀରେ ବଞ୍ଚି ରହିବାକୁ ପଡ଼ିବ । ତମେ ମୋର କୌଣସି କାମନା ଆଉ ଶେଷ କରିବାକୁ ଦେବନି ସୁପ୍ରୀତି !"

ଏହା କହି ମନେ ମନେ ହସି ଉଠିଲେ କୁମାରୀ ଉତ୍ତରସିଂ ।

ସୁପ୍ରୀତି କିଛି କହୁ ନଥାଏ । ଅନେକ ଦିନୁ ସେ ଅନ୍ଧ ପ୍ରେମର କବଳରେ ପଡ଼ି ଅଗ୍ନିମନ୍ତ୍ର ଭୁଲି ଯାଇଚି । ତା ଭିତରେ ହୀରା, ମୋତି ଆଉ ସୁନା, ରୁପାର ସ୍ୱପ୍ନ ଦେଖିଛି ସେ । ସେହି ସ୍ୱପ୍ନ ଶେଷରେ ଅତିଥିର ରୂପ ଧରିଛି । ତାକୁ ହୁଏତ କେହି ଆଶା କରି ନଥିଲେ, କିନ୍ତୁ ତାର ଆସିବା ପାଇଁ ଉଭୟେ ବାଟ ସଫା କରି ରଖିଥିଲେ । ସୁପ୍ରୀତି କିଛି ବାଟ ପାଉନି ବର୍ତ୍ତମାନ । ବେଳେ ବେଳେ ସେ ଭାବୁଚି, କୁମାରୀ ସାହେବ ତାକୁ ମାରି ଦେଇଥିଲେ ଖୁବ ଭଲ ହୋଇଥାନ୍ତା । ମାତ୍ର ତା ଭିତରେ ଆଜି ଦୁଇଟି ଜୀବନର ଡାକ । ସେଥିରେ ଅନେକ ସମୟରେ ବଞ୍ଚିବାର ଇଚ୍ଛା ଖୁବ ପ୍ରବଳ ହୋଇ ଉଠୁଛି । ସେହି ବଞ୍ଚିବାର ସ୍ଥାନ ଆଉ ରାଜମହଲରେ ନାହିଁ । ପର ଘରର ପୁଅ ତାର ପେଟରେ, ସେଥିପାଇଁ ରାଜବାଟୀରେ ବଞ୍ଚିବା ପାଇଁ କଣ ରାଣୀ ସାହେବ ସୁବିଧା ଦେଇ ପାରିବେ ? ତାକୁ ବଞ୍ଚିବାକୁ ହେଲେ କେଦ୍ରୋଡ଼ମଲଙ୍କର ହୋଇ ବଞ୍ଚିବାକୁ ହେବ ।

କେଦାରେଶ୍ୱରମଲଙ୍କୁ ପୂରାପୂରି ନିଜର କରିବାକୁ ହେଲେ କୁମାରୀ ସାହେବଙ୍କର ପୂର୍ବ ଶତ୍ରୁ ପାଲଟିବାକୁ ହେବ । ସେଥିରେ ନିଶ୍ଚୟ କୁମାରୀ ସାହେବ ଫାଶୀକାଠରେ ଝୁଲିବେ । ଝୁଲନ୍ତୁ, ଆଜି ତାର ଗର୍ଭବତୀ ଦେହରେ ସେ ନୃଶଂସ ଭାବରେ ତାଙ୍କର ହଣ୍ଟର ନଚେଇ ଦେଇଛନ୍ତି ! କେଦାରେଶ୍ୱରମଲଙ୍କୁ ଥରକୁ ଥର ଦୟାମାୟା ଛଡ଼େଇ ଠକିବା ଭିତରେ କୁମାରୀ ସାହେବ କି ଭଲ କାମ କରିଛନ୍ତି ?

ମଟର ଆସି ରଙ୍ଗପୁର କୋଠିର ଫାଟକ ପାଖରେ ପହଞ୍ଚିଲା । ମଟର ହତା ଭିତରକୁ ନ ନେଇ, ଅଧିକ ବିପଦ ଏଡ଼େଇବା ଆଶାରେ କୁମାରୀ ଉତ୍ତରସିଂ ଫାଟକ ପାଖରେ ମଟର ରୋକିଲେ । ଆଦେଶ ଦେଲାପରି ସେ କହିଲେ —

"ଓହ୍ଲେଇ ଯା' ସୁପ୍ରୀତି !"

ମଟର ଫେରାଇ ନେଇ ଚାଲିଗଲେ କୁମାରୀ ଉତ୍ତରସିଂ । ସେ ଚାଲିଗଲା ପରେ ସୁପ୍ରୀତି ଆଉ ରାଜମହଲ ଭିତରକୁ ଗଲାନି । ମନର ଦ୍ୱିଧା ତାର ଦୂର ହୋଇଯାଇଛି । ସେ ସିଧା ସଳଖେ କେଦାରେଶ୍ୱରମଲଙ୍କ ସନ୍ଧାନରେ ବାହାରିଗଲା ।

କୁମାରୀ ଭିଲ୍ଲାରେ ପହଞ୍ଚି କୁମାରୀ ଉତ୍ତରସିଂଙ୍କର ଦୃଢ଼ ଭାବରେ ଧାରଣା ହେଲା ନୟ ଶେଷ ଦିନର ଆଉ ଡେରି ନାହିଁ । ହୁଏତ ଆଜି ରାତିରେ ଏଠାର କାମ ଶେଷ କରିଦେଲେ ଖୁବ୍ ଭଲ ହେବ । ଏହି କଥା ଭାବି ଆଜି ରାତିରେ ସଙ୍ଗୀତ କ୍ଲାସଟା ଟିକିଏ ବେଶୀ ସମୟ ଯାଏ ଚଳାଇବା ପାଇଁ ସୁକୃତିଙ୍କୁ ଖବର ଦେଲେ । ସେତେବେଳକୁ ଜଣେ ସି.ଆଇ.ଡି. ଭଦ୍ରଲୋକଙ୍କ ସନ୍ଧାନରେ କାମିନୀ ସିନେମା ଯାଇଛି । କୁମାରୀ ଉତ୍ତରସିଂ ଭାବିଲେ, ଗୋଇନ୍ଦା ରିପୋର୍ଟରେ ଆଉ କି ଲାଭ ? ସବୁଠାରୁ ବଡ଼ ଗୋଇନ୍ଦା ବର୍ତ୍ତମାନ ସୁପ୍ରୀତି । କେଦାରେଶ୍ୱରମଲଙ୍କ ଆଗରେ ସେ କୌଣସି ଗୁପ୍ତ କଥାର ଆଉ ବାକି ରଖିବ ନାହିଁ । ଏତିକି ଭାବି ସେ ଗୁପ୍ତ ବେଶରେ ଗୋଟିଏ ଗୁପ୍ତ ଦ୍ୱାର ଦେଇ ବାହାରି ପଡ଼ିଲେ ।

କେଦାରେଶ୍ୱରମଲଙ୍କୁ ଜାମିନରେ ମୁକୁଳେଇ ନେବା ପରେ କୁମାରୀ ଉତ୍ତରସିଂ କେଦାରେଶ୍ୱରମଲଙ୍କର ହୃଦୟ ଜୟ କରି ନେଇଛନ୍ତି । ସେ ଦିନ କେଦାରେଶ୍ୱରମଲଙ୍କ ଘରେ ଅତିଥି ହୋଇ ନିଜର ବ୍ୟବହାରଦ୍ୱାରା ସେ କେଦାରେଶ୍ୱରମଲଙ୍କର ଆହୁରି ନିକଟତର ହୋଇ ଉଠିଛନ୍ତି । କୁମାରୀ ଉତ୍ତର ସିଂଙ୍କ ଉପରେ ଯେପରି ମାରାତ୍ମକ ଅବିଶ୍ୱାସ ତ କେଦାରେଶ୍ୱରମଲ ପୋଷଣ କରି ପାରି ନ ଥିଲେ, ତାହା ପରେ ଉତ୍ତରସିଂ ତାଙ୍କର ଯେଉଁ ଉପକାର କଲେ ସେଥିରେ କେଦାରେଶ୍ୱରମଲ କୁମାରୀ ଉତ୍ତରସିଂଙ୍କ ଉପରୁ ସବୁ ସନ୍ଦେହ ପୋଛି ସଫା କରି ଦେଇଛନ୍ତି । ସେହି ଉପକାରର ଚିହ୍ନ ସ୍ୱରୂପ ନିଜର ଜବାବ ରକ୍ଷା କରି ପାଞ୍ଚ ଲକ୍ଷ ଟଙ୍କା ମଧ୍ୟ କେଦାରେଶ୍ୱରମଲ କୁମାରୀ ଉତ୍ତରସିଂଙ୍କୁ ଦେଇ ଦେଇଥିଲେ । କେଦାରେଶ୍ୱରମଲଙ୍କ ଠାରୁ ନିଜ କାନରେ କୁମାରୀ ଉତ୍ତରସିଂ ତ ତାଙ୍କର ଚୋରାବଜାରର ଅସଲ କଥା ଶୁଣିଥିଲେ । କିନ୍ତୁ ନିଜ ଘରେ କେଦାରେଶ୍ୱରମଲ ଯେତେବେଳେ କୁମାରୀ ଉତ୍ତର

ସିଂଙ୍କୁ ନଜର ଗନ୍ତା ଘର ଖୋଲି ଦେଖେଇଲେ ସେଥିରେ ତାଙ୍କର ଚକ୍ଷୁ ସ୍ଥିର ହୋଇ ଯାଇଥିଲା । କେବଳ ସୁନାର ଗୋଟିଏ କୋଠରୀ । ଏତେ ସୁନାକୁ ତ କେହି କେବେ ଲୁଟି ନେଇ ପାରିବନି । କିନ୍ତୁ କେହି ଲୁଟିବାର ଲୋଭ ଛାଡ଼ି ପାରିବନି ମଧ୍ୟ । ପୁଣି ଏହି ସୁନାରେ ଯେ ମୃତ, ଜାଗ୍ରତ ଏବଂ ନିଦ୍ରିତ ପ୍ରତ୍ୟେକ ଲୋକର ଭାଗ ଅଛି ଏହା ଜାଣିଥିବା ଯେ କୌଣସି ଲୋକ ଏତେ ସୁନା ଭୋଗ କରିବା ପାଇଁ କେବଳ କେଶରୀମଲଙ୍କୁ ସୁବିଧା ଦେଇ ନ ପାରେ । କୁମାରୀ ଉତ୍ତରସିଂ ଭାବିଲେ, ପ୍ରତ୍ୟେକ ଲୋକର ଇଜ୍ଜତ ଆଉ ରକ୍ତରେ ଏହି ସୁନାର ଇଟା ଗୁଡ଼ିକ ତିଆରି । କୁମାରୀ ଉତ୍ତରସିଂ ମନେ କଲେ, ସେହି ସବୁ ପ୍ରତ୍ୟେକ ଲୋକ ଯଦି ଏହି ସୁନାର କିଛି କିଛି ଭାଗ ପାଇ ପାରନ୍ତେ ତାହାହେଲେ ତାଙ୍କର ଉଦ୍ୟମ ସାର୍ଥକ ହୁଅନ୍ତା ଯେମିତି । ସେଥିପାଇଁ ସେ କେଶରୀମଲଙ୍କ ସ୍ତ୍ରୀ ସହିତ ଅତି ଘନିଷ୍ଠ ଭାବରେ ମିଶିଯାଇ ଗନ୍ତାଘରର ଅନେକ ଗୁପ୍ତ ବିଷୟ ଜାଣି ଫେରିଥିଲେ । ସେହି ଅନୁସାରେ କାମ କରିବା ପାଇଁ କୁମାରୀ ଉତ୍ତରସିଂ ବନ୍ଦୋବସ୍ତ କରି ସାରିଛନ୍ତି । ଅଭିଯାନକାରୀ ଦଳ ହାତରେ ସେ ସବୁ ଗୁପ୍ତ ଖବର ନିଜେ କୁମାରୀ ଉତ୍ତରସିଂ ଭଲ ଭାବରେ ଦେଇଛନ୍ତି । ହୁଏତ ଅଭିଯାନକାରୀ ଦଳ ଏଇ ଦିନେ ଦିଦିନ ଭିତରେ କାମଟି ପୂରା ହାସଲ କରି ଦେବେ । କିନ୍ତୁ ଆଜିର ଆକସ୍ମିକ ଘଟଣାରେ ସେ ଯୋଜନା ବଦଳି ଯାଇଛି । କୁମାରୀ ଉତ୍ତରସିଂ ସ୍ଥିର କଲେ ସୁପ୍ରୀତି ନିଶ୍ଚୟ ଆଜି ରାତିରେ କେଶରୀମଲଙ୍କ ପାଖକୁ ଯିବ । କେଶରୀମଲ ଅବଶ୍ୟ ପ୍ରଥମେ ସୁପ୍ରୀତିର କଥା ବିଶ୍ୱାସ କରି ପାରିବେ ନାହିଁ । କିନ୍ତୁ ସେଥିଲାଗି ବେଶି ଆଉ ଡେରି ହୋଇ ପାରିବନି । କେଶରୀମଲ ଗର୍ଜି ଉଠିବ ଶେଷରେ, ସେଥିରେ କୁମାରୀ ଭିକ୍ଷାର ମୂଳଦୁଆ ହୁଏତ ଥରିଯିବ । ଖୁବ୍ ତରବର ହୋଇ ମନ ଭିତରେ କୁମାରୀ ଉତ୍ତରସିଂ କହି ଉଠିଲେ— ଆଜି ରାତିରେ କେଶରୀମଲଙ୍କୁ ମଧ୍ୟ –

ଭାବନାର ଉତ୍ତେଜନାରେ କୁମାରୀ ଉତ୍ତରସିଂଙ୍କର ପାଦ ଅଚଳ ହୋଇ ଉଠିଲା । କେଶରପୁର ଭିତରେ ଗୋଟିଏ ଅନ୍ଧାରିଆ ଗଳି ଭିତରେ ଯାଉଁ ଯାଉଁ ସେ ଛିଡ଼ା ହୋଇ ପଡ଼ିଲେ । ଏତିକିବେଳେ ପଛରେ କାହାର ପାଦ ଶବ୍ଦ ଶୁଣାଗଲା । ଫେରି ପଡି କୁମାରୀ ଉତ୍ତରସିଂ ବଡ଼ ପାଟିରେ କହିଲେ –

"କିଏ ?"

ପାଦ ଶବ୍ଦ ଆହୁରି ପାଖକୁ ଆସିଲା । କୁମାରୀ ଉତ୍ତରସିଂ ପୁଣି ପଚାରିଲେ—

"କିଏ ?"

"କୁମାରୀ ?"

ନିଜର ପୁରୁଷ ବେଶ ଭିତରେ କୁମାରୀ ଉତ୍ତରସିଂ ଶିହରି ଉଠିଲେ । ପର ମୁହୂର୍ତ୍ତରେ ତାଙ୍କର ସାହସ ଦ୍ୱିଗୁଣ ହୋଇ ଉଠିଲା । ସେ ଉତ୍ସାହ ଧରି କହିଲେ—

"ଗୁରୁସାହେବ !"

ତାପରେ ସେମାନେ ଆଗକୁ ଚାଲିଲେ । ଚାଲୁ ଚାଲୁ କୁମାରୀ ଉତ୍ତରସିଂ କହିଲେ—

"ଆବସ୍ଥା ଖୁବ୍ ସାଙ୍ଘାତିକ ହୋଇ ଯାଇଚି ଗୁରୁସାହେବ ! ଆଜି ରାତିରେ ସବୁ କାମ ଶେଷ କରିବାକୁ ହେବ । ନ ହେଲେ କାଲିକି..."

ହସି ଉଠିଲେ ଗୁରୁସାହେବ ।

"ନ ହେଲେ କାଲିକି ତମେ ସମସ୍ତେ ଗିରଫ ହୋଇ ଯିବ । ଏଇସ୍ପା ତ ? ସୁପ୍ରୀତିକୁ ଖତମ୍ କରିଦେଇ ପାରିଲୁନି କୁମାରୀ । ଗୋଟାଏ ମସ୍ତବଡ଼ ବିପଦ..."

"ସୁପ୍ରୀତି ଦଣ୍ଡର ଅଯୋଗ୍ୟା ହୋଇ ପଡ଼ିଛି । ଗର୍ଭବତୀ ନାରୀ ପ୍ରତି କି ଦଣ୍ଡ ଦେବାକୁ ହେବ ଆପଣ ତ କିଛି କହି ନାହାନ୍ତି ଗୁରୁସାହେବ ? ସେଥିପାଇଁ ମୁଁ ଘବେ ।"

"ହଁ, କେଉରେଡ଼ମଲର ନାଁ ତ ଆମର ଶିକାର ତାଲିକାରେ ଉଠିଛି କୁମାରୀ । କିନ୍ତୁ ଆଜି ନୁହେଁ...ଆହୁରି ଅନେକ ଦିନ ପରେ...।"

ଗୁରୁ ସାହେବଙ୍କର ଏ କଥାରେ କୁମାରୀ ଉତ୍ତରସିଂ ଆଶ୍ଚର୍ଯ୍ୟ ହୋଇ କହିଲେ—

"ତାହେଲେ ମୃତ୍ୟୁ ପରେ ମଧ୍ୟ ଆପଣ ଜୀବନର ସନ୍ଧାନ ପାଉଛନ୍ତି ଗୁରୁ ସାହେବ ?"

ଗୁରୁସାହେବ ପୁଣି ହସି ଉଠିଲେ ।

"ହୁଏତ ତମେ ମରିଯିବ କୁମାରୀ । କିନ୍ତୁ ତମ ପରେ ମଧ୍ୟ ଲୋକ ଆସିବେ । ଉଜ୍ଜ୍ୱଳ ଲାଲ୍ ଟକ୍ ଟକ୍ ପୋଷାକ ପିନ୍ଧି ଅନେକ ଯୁବକ ଯୁବତୀ ବାହାରିବେ କୁମାରୀ ! ତାଲିକାଟା ମୁଁ ସେଇମାନଙ୍କ ଲାଗି ରଖି ଦେଇ ଯାଉଛି !"

ଘରଆଡ଼େ ଦେବଦାରୁ ଆଉ ନଡ଼ିଆ ଗଛର ବଣ । ତାରି ଭିତରେ ଗୋଟିଏ ଗ୍ରେଟ ବଡ଼ କାରଖାନା । ମଝିରେ ଦୁଇ ତିନୋଟି ଲଣ୍ଠନ ଜଳୁଛି, ଆଉ ଗୋଟିଏ ଗ୍ରାମୋଫୋନରେ ଫଟା ରେକର୍ଡ ବାଜି ଚାଲିଛି । ଆଲୁଅ ଆଉ ଗ୍ରାମୋଫୋନ୍‌ର ଚାରିପଟେ କେତେକ ଲୋକ ବସି ବଡ଼ ବକିବାରେ ଲାଗିଛନ୍ତି । ଘରର ପଛ ପଟକୁ ବୁଲିଗଲେ ଗୁରୁସାହେବ, ତାଙ୍କ ପଛରେ କୁମାରୀ ଉତ୍ତରସିଂ । ଗୁରୁସାହେବ ଭଙ୍ଗା ଟିଣ କବାଟରେ ତିନିଥର ଟିପା ମାରି ଧୀରେ ଡାକିଲେ—

"ଅନନ୍ତରାମ !"

ପଞ୍ଚମୀ ଜହ୍ନର ଝାପ୍‌ସା ଆଲୁଅରେ ଟିଣ କବାଟ ଖୋଲି ଗୋଟିଏ ଯୁବକ ଠିଆ ହେଲା ଆସି ଆଗରେ । ସମ୍ଭ୍ରମ ସହ ଗୁରୁସାହେବଙ୍କୁ ନମସ୍କାର କରି ଚାହିଁଲା ତାଙ୍କର ପଛକୁ । ପଛରେ ପୁରୁଷ ବେଶରେ କୁମାରୀ ଉତ୍ତରସିଂ । ଗୁରୁସାହେବ କହିଲେ—

"କୁମାରୀ ସାହେବ ଆସିଛନ୍ତି ଅନନ୍ତରାମ ! ଏଇଥିରୁ ତମେ ଜାଣି ପାରିବ ଯେ, ଆଉ ଡେରି କରିବାର ମୋଟେ ସମୟ ନାହିଁ ।"

କୁମାରୀ ଉତ୍ତରସିଂଙ୍କୁ ଅନନ୍ତରାମ ବିନମ୍ର ସହିତ ନମସ୍କାର କଲା । ଗୁରୁସାହେବ ପୁଣି କହିଲେ—

"ଆମେ ଯାଉଛୁ ଅନନ୍ତରାମ, ସମୟ ଖୁବ୍ ଅଳ୍ପ । ହଁ, ଆଜି ରାତିରେ ତମର ଡେରା ମଧ୍ୟ ଏଠୁ ଉଠିବ ।...ନଈ ଆରପାରି ବାଙ୍କୀ ରାସ୍ତାରେ ତମ ପାଇଁ ଦିଟା ଜିପ୍ ଆଉ ଗୋଟାଏ ଟ୍ରକ ପହଞ୍ଚିବ ।...ତମର ଆଉ କଣ ଦରକାର ?"

ଅନନ୍ତରାମ ଧୀରେ ଧୀରେ କହିଲା—

"ଆଜ ଦ'ଟା ପିସ୍ତଲ ଦରକାର ହେଉଥିଲା···"

କାନ୍ଧରେ ପଡ଼ିଥିବା ଥଳି ଭିତରୁ ଗୋଟାଏ ପିସ୍ତଲ ବାହାର କରି ଗୁରୁସାହେବ କହିଲେ—

"ତମେ ଗୋଟାଏ ନେଇଥା । ଗୋଟାଏ ମୋ ପାଖରେ ଥାଉ···କୁମାରୀ ଭିଲ୍ଲା ଯାଏ ମଧ୍ୟ ଖାଲିହାତରେ ଯାଇ ହବନି ।···ଖୁବ୍ ସାବଧାନ ରହିବ ଅନନ୍ତରାମ !'

ଅନନ୍ତରାମ ମୁଣ୍ଡ ନୁଆଇଁ ସ୍ୱୀକୃତି ଜଣାଇଲା । ଗୁରୁସାହେବ ଓ କୁମାରୀ ଉତ୍ତରସିଂ କୁମାରୀ ଭିଲ୍ଲା ଉଦ୍ଦେଶ୍ୟରେ ଫେରିଲେ ।

ରାତି ଦଶଟା ବେଳେ କାମିନୀ ଫେରିଲା । ତାର ମନର ଅବସ୍ଥା ଅତି ସାଂଘାତିକ ହୋଇ ପଡ଼ିଛି । ପାଗଳ ପରି ସେ ଭିଲ୍ଲାର ଚାରିଆଡ଼େ ବୁଲି ଆସି ଶେଷକୁ ନିରୂପାୟ ଭାବରେ ଗୋଟିଏ ଚେୟାର ଉପରେ ବସି ପଡ଼ି ଉଦ୍‌ବେଗିତ ହୃଦୟରେ କୁମାରୀ ସାହେବଙ୍କୁ ଅପେକ୍ଷା କରିବାକୁ ଲାଗିଲା । ତାର ମନେ ହେଉଥାଏ, ଆଉ ହୁଏତ ଉଦ୍ଧାର ପାଇ ହେବନି । ଆଉ ତିନି ଘଣ୍ଟାପରେ ଏହି ଭିଲ୍ଲାର ଚାରିଆଡ଼ ଲାଲପଗଡ଼ି-ଧାରୀ ପୁଲିସର ତାଣ୍ଡବଲୀଳା ଭରି ଉଠିବ । ସି· ଆଇ· ଡି· ଅଫିସରଙ୍କଠାରୁ କୌଶଳ କରି ନେଇ ଆସିଥିବା ଫାଇଲଟାକୁ ଚାହିଁ ଚାହିଁ ସେ ମନେ ମନେ କହିଲା, ଏଇ କୁମାରୀ ଭିଲ୍ଲାର ସବୁ ରହସ୍ୟ ଆଜି ପଦାରେ ପଡ଼ିଯାଇଛି । ଅଭିରାମର ହତ୍ୟା, ବ୍ୟାଙ୍କ୍ ଲୁଟି, କେରୋଡ଼ିମଲର ଚୋରି ସବୁ ଆଜି ଧରାପଡ଼ି ଯାଇଛି । ଆଜି ରାତିରେ କୁମାରୀ ଭିଲ୍ଲା ପୁଣି ଶେଷ ଅଭିଯାନ ଚଳାଇବ । ତାହାର ପରିଣାମ ଫେରି କ'ଣ ହେବ ? ସୁପ୍ରୀତିକୁ ଛାଡ଼ି ଦେଲେ କାହିଁକି କୁମାରୀ ସାହେବ, କେବଳ ଅଭିରାମକୁ ହତ୍ୟା କରି ଦେଲେ ଅକ୍ଲେଶରେ···

ଅତ୍ୟଧିକ ଉତ୍ତେଜନାରେ କାମିନୀ ଆଉ ଚେୟାରରେ ବସିପାରିଲା ନାହିଁ । ସେତେବେଳକୁ ସଙ୍ଗୀତ କ୍ଳାସ ନୀରବ ହୋଇ ଯାଇଛି । କାମିନୀ ଉପର ମହଲାକୁ ଉଠି ଯାଉଁ ଯାଉଁ ତାର ଆଖି ପଡ଼ିଲା ପାହାଚ ଉପରର ଆଗ କାନ୍ଥରେ, ବଡ଼ ବଡ଼ ଇଂରେଜୀ ଅକ୍ଷରରେ ଲେଖା ହୋଇଛି, "ରାତି ୧୧ଟା ଭିତରେ ଭିଲ୍ଲା ଛାଡ଼ିଯାଅ ।" ତା'ତଳକୁ "ଗୁରୁସାହେବ" । 'ଗୁରୁସାହେବ', ତାହେଲେ ଗୁରୁସାହେବ ଆସିଛନ୍ତି ।

ଆନନ୍ଦରେ ନାଚି ଉଠିଲା କାମିନୀ । ତାପରେ ହାତର ହୀରା ମୁଦିଟାକୁ ଚୁମ୍ବନ ଦେଇ କହିଲା – "ଗୁରୁସାହେବ ଆସିଛନ୍ତି କୁମାରୀ ସାହେବ —ଆଉ ଚିନ୍ତା କଣ ?" କହି କହି ପାହାଚରେ ଡେଇଁ ଡେଇଁ ଉପରକୁ ଚାଲିଗଲା । ଉପରେ ପହଞ୍ଚି ସେ ଦେଖିଲା ସୁନ୍ଦର ଗୋଟିଏ ଯୁବା ପୁରୁଷ ସାଙ୍ଗରେ କୁମାରୀ ସାହେବ ବସି ଆନନ୍ଦରେ ଆଳାପ କରୁଛନ୍ତି । ସେ ଏହି ଦୃଶ୍ୟରେ ଖୁବ୍ ଆଶ୍ଚର୍ଯ୍ୟ ହେଲା । ପାଖରେ ପହଞ୍ଚି ଚିତ୍କାର କରି କହିଲା—

"ଏଇ ଲୋକଟା ସି: ଆଇ : ଡ : । ଆପଣ ତାଙ୍କ ସାଙ୍ଗରେ ଆଳାପ କରୁଚନ୍ତି କଣ କୁମାଶ୍ୱ ସାହେବ ? ମୁଁ ଏଇ ଲୋକକୁ ଆଜ ସଂଧ୍ୟାବେଳେ ସି· ଆଇ. ଡ. ଅଫିସରେ ଦେଖିଚ —ଆଜ ରାତ୍ତି ୩ଟା ବେଳକୁ ସେମାନେ ଭିଲ୍ଲା ଘେରାଉ କରିବାଲାଗି ପୁଲିସକୁ ଖବର ଦେଇଛନ୍ତି, ସେଥିଲାଗି କିଛି କୌଶଳ କରି ଏ ଆମକୁ ଅଟକେଇ ଦେବାକୁ ଆସିଛନ୍ତି । ଆପଣ ତାଙ୍କ ସାଙ୍ଗରେ ମୋଟେ କଥା ହୁଅନ୍ତୁନି କୁମାରୀ ସାହେବ ।"

ଠୋ ଠୋ ହୋଇ ସେହି ଯୁବକଟି ହସି ଉଠି କହିଲେ—"ତମେ କଣ କୁଆଡ଼େ ପଳେଇ ଯିବ ବୋଲି ଭାବୁଚ ?"

କାମିନୀ ହଠାତ୍ କହି ଉଠିଲା—

"ନିଶ୍ଚୟ, ଗୁରୁସାହେବ ଆସିଛନ୍ତି, ସେ ସବୁ କରି ପାରିବେ । ନ ହେଲେ ଆମେ ଯୁଦ୍ଧ କରିବୁ, ଖାଲି ଖାଲି ଧରା ଦେବୁ କାହିଁକି ?"

ଯୁବକଟି ଠିଆ ହୋଇ ପଡ଼ି କହିଲେ—

"ଯୁଦ୍ଧ, ତମ ପିସ୍ତଲରେ ଗୁଳି ଅଛି ବାଳିକା ?"

ନିଜର ଭ୍ୟାନିଟି ବ୍ୟାଗରୁ ପଲକରେ ପିସ୍ତଲଟା ବାହାର କରି କାମିନୀ କହିଲା—

"ଖୁବ୍ ।"

କୁମାଶ୍ୱ ସାହେବଙ୍କ ସାଙ୍ଗରେ ସେହି ଯୁବକଟି ମଧ୍ୟ ନିର୍ମମ ଭାବରେ ହସି-ବାକୁ ଲାଗିଲେ । କାମିନୀ ଖୁବ ବିମର୍ଷ ହୋଇ କହିଲା—

"ତେଣେ ପୁଲିସର ଅଭିଯାନ ଆରମ୍ଭ ହେଲାଣି, ଏଣେ ଆପଣ ହାସ୍ୟ ପରିହାସରେ ବ୍ୟସ୍ତ । ତା ହେଲେ ଆପଣ ଉଦ୍ଧାରର ଆଶା ଛାଡ଼ ଦେଇଛନ୍ତି କୁମାଶ୍ୱ ସାହେବ ?"

କୁମାଶ୍ୱ ଉତ୍ତରସିଂ ହସି ହସି କହିଲେ—

"କଣ ଘଟିଛି କାମିନୀ ? ସି· ଆଇ· ଡ଼· ଅଫିସ୍‌ର ଖବର କଣ ?"

ଆଗର ଟେବୁଲ ଉପରକୁ ହାତର ଫାଇଲ ପକେଇ ଦେଇ କାମିନୀ କହିଲା—

"ତା ହେଲେ ଏ ଭଦ୍ରଲୋକ ଆମର ବନ୍ଧୁ ?"

କୁମାଶ୍ୱ ସାହେବ ହସି ଦେଇ କହିଲେ—

"ଏ ଗୁରୁସାହେବ କାମିନୀ । ତମେ ତାଙ୍କୁ ନମସ୍କାର କର ।"

କାମିନୀ ସ୍ତବ୍ଧ । ଛଳ ଛଳ ଆଖିରେ ଗୁରୁସାହେବଙ୍କର ବୀରତ୍ୱବ୍ୟଞ୍ଜକ ଯୌବନମୟ ମୁଖମଣ୍ଡଳକୁ ଅନେଇ ରହି ସେ ଯେମିତି ଆତ୍ମହରା ହେବାକୁ ଲାଗିଲା ।

କାମିନୀ ପିଠିରେ ହାତ ବୁଲାଇ ଗୁରୁସାହେବ କହିଲେ—

"ଗୁରୁସାହେବ ଅଛନ୍ତି । ତମର ଆଉ ଭୟ କଣ କାମିନୀ । ପ୍ରାୟ ଘଣ୍ଟାଏ ହେଲା କୋରୋଡ଼ମଲ ସୁପ୍ରୀତକ ଧରି ଯାଇ ସି· ଆଇ. ଡ଼· ଅଫିସରେ ସବୁ ଖବର ପ୍ରକାଶ

କରୁଛନ୍ତି, ଏପ୍ରା ତୀଂ?···ହଁ, ତମେ ସେଇ ସି· ଆଇ· ଡ଼ି· ଭଦ୍ରଲୋକଙ୍କୁ ବନ୍ଧୀ ହେବା ପାଇଁ କଥା ଦେଇଥିଲ – ଆଜ ଆଉ କିଛି ଦେଇ ନାଁ ତ ?"

କଲ୍ କଲ୍ ହୋଇ କାମିନୀ ସେଠୁ ପଳେଇ ଗଲା ତଳକୁ । କୁମାରୀ ଉତ୍ତର ସିଂ ଓ ଗୁରୁ ସାହେବ କର୍ କର୍ ହୋଇ ହସି ଉଠିଲେ ।

ରାତି ଛଟାଟା ସମୟରେ ଅତି ବିକଟ ଶବ୍ଦରେ କଟକ ସହର କଂପି ଉଠିଲା । ପୁଲିସବାହିନୀର ସିଟି ଶବ୍ଦରେ ଗୁରଆଡ଼େ ଆତଙ୍କ ଖେଳି ଯାଇଛି । କୁମାରୀ ଭିଲ୍ଲାର ଗୁରପଟେ ଶହ ଶହ ପୁଲିସ ଘେରି ରହିଛନ୍ତି । ଏହିପରି ସମୟରେ କୁମାରୀଭିଲ୍ଲାର ପ୍ରକାଣ୍ଡ ଦୋମହଲା କୋଠାଟା ଶହେଟି ବଜ୍ରପାତର ଶବ୍ଦ କରି ଖଣ୍ଡ ଖଣ୍ଡ ହୋଇ ମାଟି ଉପରେ ଭୁଷୁଡ଼ି ପଡ଼ିଲା । ଆକାଶର ଅନେକ ଉଚ୍ଚକୁ ଧୂଳି ପଟଳ ଉଠିଯାଇ ଗୁରଆଡ଼କୁ କିଛି ସମୟ ପାଇଁ ଗଭୀର ଅନ୍ଧକାର କରିଦେଲା । ପୁଲିସ ବାହିନୀର ବୁଦ୍ଧି ହଜି ଯାଇଛି । ଏହି ଆକସ୍ମିକ କାଣ୍ଡରେ ସେମାନେ ସ୍ତବ୍ଧ ହୋଇ ଗୁହିଁ ରହିଛନ୍ତି ସେହି ରମଣୀୟ ଅଟ୍ଟାଳିକାର ଭଗ୍ନ ସ୍ତୂପ ଆଡ଼କୁ । ସେହି ଅଟ୍ଟାଳିକା ଭିତରେ ଥିବା ସୁନ୍ଦରୀ ଯୁବତୀମାନଙ୍କର ଦଶା କଣ ହେଲା ତା'ହେଲେ ? ସମସ୍ତଙ୍କୁ ସତର୍କ କରି ରଖିବାପାଇଁ ପୁଲିସ ବାହିନୀର ଘନ ଘନ ସିଟି ବାଜି ଉଠିବାକୁ ଲଗିଲା ।

ଖବର ପାଇ କିଛି ସମୟ ପରେ ମାଜିଷ୍ଟ୍ରେଟ ଓ ପୁଲିଶ ସାହେବ ଘଟଣା ସ୍ଥଳରେ ଆସି ପହଞ୍ଚିଲେ । ଗୁରଆଡ଼େ ଲୋକାରଣ୍ୟ । ସମସ୍ତଙ୍କ ମୁଖରେ ହାହାକାର । କିଏ କୁମାରୀ ଉତ୍ତରସିଂଙ୍କର ରୂପ ବର୍ଣ୍ଣନା କରିବାରେ ଲଗିଛି, କିଏ ଭିଲ୍ଲାରେ ରହୁ-ଥିବା ସୁନ୍ଦରୀ ଯୁବତୀମାନଙ୍କ ଉଦ୍ଦେଶ୍ୟରେ ଅଧୀର ହୋଇ ଦୁଃଖରେ ଅଶ୍ରୁ ଢାଳି ଦେଉଛି । ଦଳେ ଯୁବକ କଟକ ସହର ଏବଂ ତାହାର ସଂସ୍କୃତିର ଅପୂରଣୀୟ କ୍ଷତି ହେଲା ବୋଲି ଚିତ୍କାର କରୁଛନ୍ତି । ଭିଲ୍ଲାର ଯୁବତୀମାନଙ୍କର ଶୋଚନୀୟ ମୃତ୍ୟୁ ବିଷୟ ଭାବି ସମସ୍ତେ ଅଧୀର ହୋଇ ଉଠିଛନ୍ତି ।

ରାତି ସେତେବେଳକୁ ପାହି ଯାଇଛି । ପୁଲିସ ସାହେବଙ୍କୁ ଲକ୍ଷ୍ୟକରି ମାଜିଷ୍ଟ୍ରେଟ କହିଲେ –

"ମୁଁ ଭାବେ, କୌଣସି ଦୁଷ୍ଟ ଲୋକର ଷଡ଼ଯନ୍ତ୍ରରେ କୁମାରୀଭିଲ୍ଲା ଧ୍ୱଂସ ପାଇ ଯାଇଚି ।"

ପୁଲିସ ସାହେବ ହଠାତ୍ କହିଲେ—

"କିଏ ଆଉ ସେହି ଦୁଷ୍ଟ ଲୋକ···କେଶୋରଡ଼ମଲ ନିଶ୍ଚୟ । ସେ ଆମକୁ ଏହି ଭିଲ୍ଲା ବିଷୟରେ ଅନେକ ଆପତ୍ତିକର ସମ୍ବାଦ ଦେଇଛି, ସେଥିଲାଗି ଭିଲ୍ଲା ଘେରିବା ପାଇଁ ମୁଁ ଆପଣଙ୍କର ଆଦେଶ ମାଗିଥିଲି । ହୁଏତ ଆଉ କୌଣସି ଗୁପ୍ତ ରହସ୍ୟ କେଶୋରଡ଼ମଲ ବିଷୟରେ ପ୍ରକାଶ ପାଇବାର ସମ୍ଭାବନା ଥିଲା, ସେଥିଯୋଗୁଁ ସେ ଏଇ କାଣ୍ଡ କରି ଦେଇଛି । ସବୁ ଏଇ କ୍ୟାପିଟାଲିଷ୍ଟମାନେ କରି ପାରନ୍ତି···ବୋଧହୁଏ

ଆମକୁ ସେ ମିଛ ସମ୍ବାଦ ସବୁ ଦେଇଛନ୍ତି । ମୁଁ କୁମାରୀ ଉତ୍ତରସିଂଙ୍କୁ ଜାଣେ, ଅତି ଚମତ୍କାର ମହିଳା – ସଂସ୍କୃତି ଆଉ ସୌନ୍ଦର୍ଯ୍ୟର ଅବତାର !”

ମାଜିଷ୍ଟ୍ରେଟ କଣ ଭାବି ଭାବି କହି ଉଠିଲେ –

“ମୁଁ କାଲି ମିସ୍ ଉତ୍ତରସିଂଙ୍କଠାରୁ ଗୋଟାଏ ଲମ୍ବା ଷ୍ଟେଟମେଣ୍ଟ ପାଇଛି । ସେଥିରେ ସେ ମତେ ଜଣେଇ ଦେଇଛନ୍ତି, କୁମାରୀ ଭିଲ୍ଲାର ଜଣେ ବାଳିକାର ଚରିତ୍ର ନଷ୍ଟ କରି ଧନର ଲୋଭ ଦେଖାଇ ଶେଷରେ କେଦାରମଲ ତାକୁ ଗର୍ଭବତୀ କରିଛନ୍ତି । ବାଳିକାଟିକୁ ବର୍ତ୍ତମାନ ଭିଲ୍ଲାରୁ ତଡ଼ି ଦିଆ ହୋଇଛି ଏବଂ ଏ ସମ୍ବନ୍ଧରେ କେଦାରମଲଙ୍କ ସାଙ୍ଗରେ ମିସ୍ ଉତ୍ତରସିଂହଙ୍କର ଖୁବ ଗଣ୍ଡଗୋଳ ଘଟି ଯାଇଛି । କ୍ଷତିର ଆଶଙ୍କା କରି ମିସ୍ ଉତ୍ତରସିଂ ମତେ ସେ ସବୁ ଲେଖିଥିଲେ । କିନ୍ତୁ ଆଜି ସେଇ ମିସ୍ ଉତ୍ତରସିଂ କାହାନ୍ତି ?”

ଏହି ସମୟରେ ପୁଲିସ ସାହେବ ଜୋର ଦେଇ କହିଲେ—

“ନିଶ୍ଚୟ ଏ କେଦାରମଲର କାଣ୍ଡ । ସେ ବାଳିକାଟାକୁ ସେଦିନ କାଲି ମେ ମୋ ପାଖକୁ ମଧ୍ୟ ଯାଇଥିଲି । କିନ୍ତୁ ସେ ଏପରି ଚକ୍ରାନ୍ତ କରିଛି ବୋଲି କିଏ ଜାଣିଥିଲି··· ?”

ଖୁବ୍ ବ୍ୟସ୍ତବ୍ୟସ୍ତ ଭାବରେ ଏତିକବେଳେ ସେଠାରେ ଖଣ୍ଡେ ଟ୍ୟାକ୍‌ସିରେ ପହଞ୍ଚିଲେ ଶେଠ କେଦାରମଲ । ଟ୍ୟାକ୍‌ସିରୁ ଓହ୍ଲାଇ ପଡ଼ି ମାଜିଷ୍ଟ୍ରେଟ ଆଉ ପୁଲିସ ସାହେବଙ୍କ ପାଖରେ ଯୋଡ଼ହାତ ହୋଇ କହିଲେ—

“ମୋର ସର୍ବନାଶ ହୋଇ ଯାଇଛି ହଜୁର, କୁମାରୀ ଭିଲ୍ଲାର ଚୋରମାନେ ମୋର ସର୍ବସ୍ୱ ଲୁଟ୍ କରି ନେଇଛନ୍ତି···”

ମାଜିଷ୍ଟ୍ରେଟ୍ ଗର୍ଜିଉଠି କହିଲେ –

“ଚୁପ୍ କର ! ରାତିରେ କୁମାରୀ ଭିଲ୍ଲାକୁ ଧ୍ୱଂସ କରି, ପୁଣି ସକାଳେ କୁମାରୀ ଭିଲ୍ଲା ନାଁରେ ଅଭିଯୋଗ !”

ଏତେବେଳକେ କୁମାରୀ ଭିଲ୍ଲା ଆଡ଼େ କେଦାରମଲଙ୍କର ଦୃଷ୍ଟି ପଡ଼ିଲା । ସେ ନିଜ ଆଖିରେ ଦେଖିଲେ ରମଣୀୟ କୁମାରୀ ଭିଲ୍ଲା ଆଉ ତାର ଉଦ୍ୟାନ ଓ ଲତାକୁଞ୍ଜ ଧ୍ୱଂସର ସ୍ତୂପ ଭିତରେ ଲୁଚି ଯାଇଛି । ଏ ଦୃଶ୍ୟରେ ସେ ପଥର ପାଲଟି ଗଲେ ।

ମାଜିଷ୍ଟ୍ରେଟ ପୁଣି ଗର୍ଜି ଗର୍ଜି କହିଲେ—

“କୁମାରୀଭିଲ୍ଲାର ଗୋଟିଏ ବାଳିକାକୁ ତମେ ରଖିଛ କେଦାରମଲ ?”

କେଦାରମଲ ଯଥାସମ୍ଭବ ସ୍ଥିର ହେବାପାଇଁ ଚେଷ୍ଟା କରି କହିଲେ –

“ହଜୁର !”

“ତମେ ତାର ଚରିତ୍ର ନଷ୍ଟ କରିଛ ?”

“ମୁଁ ତାକୁ ଆଶ୍ରୟ ଦେଇଛି ହଜୁର···।”

ଗୋଡ଼ର ଓଜନଦାର ବୁଟ୍ ଯୋତାକୁ ଟିକେ ବାଡ଼େଇ ପୁଲିସ ସାହେବ କହିଲେ –

"ତମେ ଏକମାତ୍ର ଦୋଷୀ କେରୋଡ଼ମଲ। ତମ ଛଡ଼ା ଏ କାମ ଆଉ କେହି କରି ପାରିବେନି। କୁମାରୀ ଭଲ୍ଲା ଆଉ ତାର ଯୁବତୀମାନଙ୍କୁ ନଜର ରକ୍ଷା ସକାଶେ ତମେ ଡିନାମାଇଟ୍ ବସେଇ ଧ୍ୱଂସ କରି ଦେଇଛ।"

ମୁଣ୍ଡରେ ହାତ ଦେଇ କେରୋଡ଼ମଲ ଭୂଇଁ ଉପରେ ବସି ପଡ଼ିଲେ। ଦଳେ ଫସ୍କୃତ-ପାଗଳ ଯୁବକ ଉଚ୍ଛୃଙ୍ଖଳ ଭାବରେ ଛୁଟି ଆସିଲେ କେରୋଡ଼ମଲଙ୍କ ଆଡ଼କୁ।

ରଚନାକାଳ
୧୯୫୧ ମାର୍ଚ୍ଚ

॥ ୧ ॥

ଦୀର୍ଘ ସାତବର୍ଷର କାହାଣୀ । ଆଜ ଗୋଟିଏ ମୂହୂର୍ତ୍ତରେ ଅଞ୍ଜଳର ଗୋଟି ଗୋଟି ହୋଇ ସବୁ ମନେ ପଡ଼ଯାଉଛି । ବିବାହ ପରେ ସ୍ୱାମୀ ସହ ମୋଟେ ସାତଟି ଦିନର ସାକ୍ଷାତ । ତା'ପରେ ଦୀର୍ଘ ପନ୍ଦରଦିନ ପରେ ଯେଉଁ ସାକ୍ଷାତ ଘଟିଲା ତାହା ସମ୍ପୂର୍ଣ୍ଣ ଅପେକ୍ଷା । ଚିଠି ଦେଇ ସେ ସ୍ୱାମୀଠାରୁ ଯେଉଁ ଉତ୍ତର ପାଇଥିଲା ସେଇ ତା'ପକ୍ଷରେ ଦ୍ୱିତୀୟ ଥରର ସାକ୍ଷାତ କହିଲେ ଚଳେ । କେତେଥର ଯେ ଅଞ୍ଜଳ ସେଇ ଚିଠିଖଣ୍ଡିକୁ ପଢ଼ିଛି ତା'ର ସୀମା ନାହିଁ । ସେସବୁ ଆଜ ତା ଆଖିରେ ସ୍ପଷ୍ଟ ହୋଇ ଖେଳଯାଉଛି । ଅଉ ପ୍ରାୟ ପନ୍ଦରଦିନ ପରେ ସ୍ୱାମୀ ତା'ର ପହଞ୍ଚିଲେ ଯାଇଁ ଗାଁରେ । ସେଦିନର ସନ୍ଧ୍ୟା, ସେଦିନର ରାତି, ସବୁ ଭାବ ଭାବ ଅଞ୍ଜଳ ସମ୍ପୂର୍ଣ୍ଣ ରୂପେ ଦୂର ଅଜ୍ଞାତ ଭିତରେ ବୁଡ଼ଗଲା ।

"ଜାଣିଲ ଅଞ୍ଜଳ, ତମର ସେଇ ପହିଲ୍ ଚିଠିଟା କି ସୁନ୍ଦର ! ସେସବୁ କଥା ତମର ମନେ ଅଛି ? କ'ଣ ଗୋଟାଏ କବିତା ମଧ୍ୟ ସେଥିରେ ତମେ ଲେଖିଥିଲ !"

ଦୁଇଦିନର ମନାନ୍ତର ପରେ ହଠାତ୍ ସ୍ୱାମୀଙ୍କର କଥା ଶୁଣି ଅଞ୍ଜଳ ଚମକି ପଡ଼ିଲା । ଗାଁରେ ତାର ଚଳବାର ଅସୁବିଧା ଯୋଗୁଁ ବହୁଦିନ ହେଲା ସେ ଆସି ସ୍ୱାମୀ ପାଖରେ କଟକରେ ରହିଛି । ଦାମ୍ପତ୍ୟ ଜୀବନ କେବଳ ମଧୁ ନୁହେଁ, ସେଥିରେ ଅମ୍ଳର ମୂର୍ଚ୍ଛନା ମଧ୍ୟ ସଞ୍ଚାରିତ ହୁଏ, ସ୍ୱାମୀ ସହ ଏହି ଦୀର୍ଘକାଳ ରହିବା ଭିତରେ ସେତକ ଅଭିଜ୍ଞତା ଅଞ୍ଜଳର ହୋଇଯାଇଛି । କିନ୍ତୁ ସେଇ ଅମ୍ଳର ମୂର୍ଚ୍ଛନାଟା ଏତେ ତୀବ୍ର ହୋଇ ମନାନ୍ତରରେ ପରିଣତ ହେବ ବୋଲି ସେ କେବେହେଲେ କଳ୍ପନା କରି ନ ଥିଲା । ଅତି ସାମାନ୍ୟ କାରଣରୁ କଥାର ଧାରା ବୁଲିଯାଇ ଏତେ ବଡ଼ ଅଶାନ୍ତି ଯେ ସୃଷ୍ଟି ହୋଇଯିବ, ତାହା ସେ ଭାବି ପାରି ନ ଥିଲା । କଥା ହେବା ଭିତରେ ସେ ରାଗି ଯାଇଥିଲା ବେଶୀ । କିନ୍ତୁ ସ୍ୱାମୀ ତାକୁ ଆଗେ କଥା କହିବାର ଦେଖି ସେ ଆଶ୍ଚର୍ଯ୍ୟ ହୋଇ ଅନେଇ ରହିଲା । ହଁ, କଣ ସେ ପଚାରୁଛନ୍ତି ତାକୁ, ପ୍ରଥମ ଚିଠି କଥା ? କଣ ଲେଖିଥିଲା ସେ ସେଥିରେ ?

"ତମର ହୁଏତ ମନେ ନାହିଁ ସେସବୁ ଅଞ୍ଜଳ ?"

ସ୍ୱାମୀ ପୁଣି ଥରେ ପଚାରିବା ପରେ ମଧ୍ୟ ଅଞ୍ଜଳ ପୂର୍ବପରି ନିରୁତ୍ତର ରହିଲା । ହଁ, ସ୍ୱାମୀ ତାକୁ ସେଇ ବିବାହ କାଳର ପ୍ରଥମ ଚିଠି କଥା ପଚାରୁଛନ୍ତି ! ସେଥିରେ ସେ ମଧ୍ୟ ସତେ ଗୋଟିଏ କବିତା ଲେଖିଥିଲା । କିନ୍ତୁ ସେ ପ୍ରଶ୍ନ ଆଜ କାହିଁକି ? କବିତା, ପୁଣି ସେ କବିତାର ଆଜ ଆଉ ପ୍ରୟୋଜନ କଣ ? ବିବାହଟା

ଗୋଟାଏ କବିତା, ଆଉ ଦାମ୍ପତ୍ୟ ଜୀବନ ସେଇ କବିତାର ଅଶେଷ ଛନ୍ଦ ବୋଲି ତାର ସେତେବେଳେ କେତେଥର ଧାରଣା ହୋଇଥିଲା । କିନ୍ତୁ ସେ ଛନ୍ଦ ଆଜି କାହିଁ ? ବର୍ତ୍ତ-ମାନର ଏଇ ଦାମ୍ପତ୍ୟ ଜୀବନକୁ କଣ ଆଉ କବିତାର ଛନ୍ଦ ବୋଲି କୁହାଯିବ ?

"ଅଞ୍ଜଳି, ତମେ ହୁଏତ ଏପର୍ଯ୍ୟନ୍ତ ମୋ ଉପରେ ରାଗ କରି ରହିଚ । ସେଥିଯୋଗୁ କିଛି ଉତ୍ତର ଦେଇପାରୁନ । କିନ୍ତୁ ମୁଁ ଦୋଷ ସ୍ୱୀକାର କରୁଛି । ଆଜିର ଏ ଅଶାନ୍ତି ପାଇଁ ମୁଁ ସଂପୂର୍ଣ୍ଣ ଦାୟୀ ।"

କହି କହି ଅଞ୍ଜଳିର ହାତ ଧରି ପକେଇଲା ନିରଞ୍ଜନ । ଚମକି ପଡ଼ିଲା ଅଞ୍ଜଳି । ଏପର୍ଯ୍ୟନ୍ତ ସେ ସ୍ୱାମୀ ଆଡକୁ ମଧ୍ୟ ଅନେଇ ନ ଥିଲା । ମୁହଁ ବୁଲେଇ ବସି କଣ ଗୋଟିଏ ବହି ଖେଳେଇବାରେ ଲାଗିଥିଲା । ସେ ବହିଟିକୁ ତା ହାତରୁ ଛଡେଇ ନେଇ ପାଖ ଟେବୁଲ ଉପରେ ରଖି ନିରଞ୍ଜନ ନିଜର କୋଳ ଭିତରକୁ ଟାଣିନେଲା ଅଞ୍ଜଳିକି ।

"ଜାଣିଲ ଅଞ୍ଜଳି, ଏଇଟା ଜୀବନର ଛନ୍ଦ । ଖଟା ଆଉ ମିଠା ଦୁଇଟିଯାକ ମିଶି ଜୀବନର ଛନ୍ଦ ତିଆରି ହୋଇଚି । ଏହାକୁ ହୁଏତ କବିଙ୍କ ଭାଷାରେ କୁହାଯାଇପାରେ ମଧୁ-ଅମ୍ଳର ଛନ୍ଦ । ସେଥିରୁ ଆମେ ଆଜି ବାଦ୍ ପଡ଼ିପାରିଲେନି, ଏଥିରେ ବିଚିତ୍ରତା ଆଉ କଣ ? ମୋଠାରୁ ତମେ ଯେଉଁ ପ୍ରେମ ପାଉଥିଲ, ତା ହୁଏତ ସୃଷ୍ଟିରେ ଦୁର୍ଲ୍ଲଭ ବୋଲି ତମେ ଥରେ ଥରେ ଭାବିଥିବ । କିନ୍ତୁ ସେସବୁ ଆଜି ପୋଡ଼ି ପାଉଁଶ ହୋଇଯାଇଚି । ବାସ୍ତବିକ୍ ମୁଁ ତମକୁ ଏଡ଼େ କଡ଼ା କଥା କହିଲି କେମିତି, ଭାବି ଆଶ୍ଚର୍ଯ୍ୟ ଲାଗୁଚି । ମତେ ସେଥିପାଇଁ କ୍ଷମା ଦେଇପାରିବନି ଅଞ୍ଜଳି ?"

ଏତେ କଥା ପରେ ମଧ୍ୟ ଅଞ୍ଜଳିର ଓଠରେ ପଦେ ହେଲେ ଭାଷା ନାହିଁ । ହଠାତ୍ ତାର ଆଖିକୋଣରୁ ଅଶ୍ରୁ ପଡ଼ିବାକୁ ଲାଗିଲା । ସେତେବେଳକୁ ବଳିଷ୍ଠ ହାତ ଦୁଇଟିରେ ଅଞ୍ଜଳିର ପାତଳ ଦେହଟିକୁ ସମ୍ପୂର୍ଣ୍ଣରୂପେ ଟେକି ତୋଳି ଧରିଛି ନିରଞ୍ଜନ । ସତର ବର୍ଷରେ ଅଞ୍ଜଳି ବିଭା ହୋଇଥିଲା, ସାତ ବର୍ଷ ବିବାହିତ ଜୀବନ ପରେ ଆଜି ତାକୁ ତେଇଶ ବର୍ଷର ବୟସ ଅତିକ୍ରମ କରିବାକୁ ପଡ଼ିଛି । ଏ ପର୍ଯ୍ୟନ୍ତ ଅପ୍ରସବା । ଦେହଯଷ୍ଟିର କେତେକ ଅଂଶ ସେଥିଯୋଗୁ ଆହୁରି ପରିପୁଷ୍ଟ ହୋଇଉଠିଛି । କିନ୍ତୁ କ୍ଷୀଣ କଟୀର କୌଣସି ପରିବର୍ତ୍ତନ ଏବେ ମଧ୍ୟ ହୋଇନି । ନିରଞ୍ଜନର ହାତ ଭିତରେ ଗୋଟିଏ ଅର୍ଦ୍ଧକୁଣ୍ଡଳୀ ହୋଇ ରହିଛି ଅଞ୍ଜଳି । ତାର ଆଖି ଉପରେ ଦୃଷ୍ଟି ପଡିଲାକ୍ଷଣି ନିରଞ୍ଜନ ଅତି ବିବ୍ରତ ହୋଇପଡ଼ିଲା ।

"ତମେ କାନ୍ଦିଲ ଅଞ୍ଜଳି ?"

ଏ ପ୍ରଶ୍ନରେ ଅଞ୍ଜଳି ଆହୁରି କାନ୍ଦିଲା । ନୀରବ ଅଶ୍ରୁ ଓଠରେ କେତୋଟି ଅସ୍ପଷ୍ଟ ଶବ୍ଦ ଫୁଟେଇ ଦେହଟାକୁ ତାର ଦୋହଲାଇ ଦେଲା । ବିମୂଢ଼ ହୋଇ, ଅଞ୍ଜଳିକି ଆଣି ଖଟ ଉପର ବିଛଣାରେ ଶୋଇ ଦେଇ ନିରଞ୍ଜନ ଠିଆ ହେଲା । କିଛିକ୍ଷଣ ସେ ଅବାକ ହୋଇ ଚାହିଁ ରହିଲା ଅଞ୍ଜଳିକି ।

"ତମେ ପୁଣି କାନ୍ଦିଲ କାହିଁକି କହିଲ ?"

କରି ବୁଲେଇ ତକିଆରେ ମୁହଁ ମାଡ଼ିଦେଲା ଅଞ୍ଜଳି । ସୁନ୍ଦର ଗୋଟିଏ ଦୃଶ୍ୟ ଫୁଟିଉଠିଲା ନିରଞ୍ଜନର ଆଖିରେ । କିନ୍ତୁ ତାକୁ ଅନୁଭବ କରିବା ନିରଞ୍ଜନ ପକ୍ଷରେ ବର୍ତ୍ତମାନ ଏକ ବିଡ଼ମ୍ବନା । ଯେଉଁ ନାୟିକାର ସୌନ୍ଦର୍ଯ୍ୟ ତାର ଆଖିରେ, ସେଇ ନାୟିକା ଆଖିରେ ବର୍ତ୍ତମାନ କେବଳ ଅଶ୍ରୁର ଝରଣା । ସେଠାରେ ସ୍ୱାମୀର ସୌନ୍ଦର୍ଯ୍ୟାନୁଭବ ଏକ ପୈଶାଚିକ ବ୍ୟବସାୟ । ନିରଞ୍ଜନ କେବଳ ନୀରବରେ ଠିଆ ହୋଇ ରହିଲା ।

"ମୋର ଭୁଲ୍ ମୁଁ ସ୍ୱୀକାର କରୁଚି ଅଞ୍ଜଳି, ତମେ ଆଉ କାନ୍ଦନା ।"

ହଠାତ୍ ବୁଲିପଡ଼ିଲା ଅଞ୍ଜଳି। ସ୍ୱାମୀର ହାତକୁ ଟାଣି ଧରି ତାକୁ ଖଟ ଉପରେ ବସେଇଦେଲା । ତକିଆ ଉପରୁ ଜୁକ୍ରୁ ଜୁକ୍ରୁ କରି ଷ୍ଟହିଁରହିଲା ।

"ଜୀବନର ଛନ୍ଦ ପରି ତମେ ବ୍ୟାଖ୍ୟା କରି ବୁଝେଇଦେଲ ? ସେଠି କଣ ଅଶ୍ରୁ ନାହିଁ ?"

କଥାଗୁଡ଼ିକରେ ଯେମିତି ଲୁହର ହାତ ବାଜିଚି । ସେଥିଯୋଗୁ ସେ ସବୁ ନିରଞ୍ଜନ ପକ୍ଷରେ ଅଧିକ ଉପଭୋଗ୍ୟ ହୋଇପଡ଼ିଲା ।

"ହଁ, ଜୀବନର ଛନ୍ଦରେ ଅଶ୍ରୁ ଅଛି ଅଞ୍ଜଳି ! କିନ୍ତୁ ତାହା କାମ୍ୟ ନୁହେଁ । ଆମେ କେବଳ ଜୀବନରେ ହସର ଛନ୍ଦ କାମନା କରୁଥିଲେ । ଦୁର୍ଭାଗ୍ୟକୁ ଆଜି ସେଠି ଅଶ୍ରୁର ଉଚ୍ଛ୍ୱାସ ଉଠିଛି । ଏ ଛନ୍ଦଟାକୁ ଭୁଲିଯିବାକୁ ହେବ । ଯେଉଁଟାକୁ ନ ଖୋଜିଲେ ମଧ୍ୟ ସେ ଆପେ ଆସି ଧରି ଦିଏ, ତାହାର ଆବାହନ ପାଇଁ ଆମ ଭିତରୁ କେହିହେଲେ ଚେଷ୍ଟା କରିବା ଉଚିତ ନୁହେଁ । ବିଶେଷତଃ ଦୁନିଆରେ ଅଶ୍ରୁ ଭରପୂର ହୋଇ ରହିଚି, କାନ୍ଦିବାକୁ ବହୁତ ଆଖି ରହିଛି । ଶତକଡ଼ା ଅନେଶୋତ ଅଧେ ଲୋକଙ୍କ ଆଖିରେ ଅଶ୍ରୁ । ଅଶ୍ରୁଟା ସାରା ପୃଥିବୀରେ ଗଣତାନ୍ତ୍ରିକ ପ୍ରାଧାନ୍ୟ ଲାଭ କରିଚି । ସେଠି ଅଧିକ ଅଶ୍ରୁ ଆଉ ଅନାବଶ୍ୟକ । ତମେ ସବୁ ପରିସ୍ଥିତିରେ ଯଦି ହସିପାରନ୍ତ କିମ୍ବା ସବୁ ପରିସ୍ଥିତିକୁ ହର୍ଷମୁଖର କରିବାର ଅବସ୍ଥା ସୃଷ୍ଟି କରନ୍ତ, ତା ହେଲେ ତମେ ବୈଜୟନ୍ତୀ ଉଡ଼ାଇ ଦିଅନ୍ତ..."

"ଆଉ ତମେ ?"

"ମୁଁ ! ତମେ ହସିଲେ ମୁଁ ତାଳି ମାରିବି ।"

ଠୋ ଠୋ ହୋଇ ହସିଉଠିଲା ଅଞ୍ଜଳି ।

॥ ୨ ॥

ସେଦିନ ରାତି ପ୍ରାୟ ଦୁଇଟାବେଳକୁ ଅଞ୍ଜଳିର ନିଦ ଭାଙ୍ଗିଗଲା । କେତେ-ବେଳେ ସେ ଶୋଇ ପଡ଼ିଥିଲା ତାର ଆଉ ମନେ ନାହିଁ । ଏତିକି ମନେ ଅଛି, ସ୍ୱାମୀ ତାର ସେତେବେଳ ପର୍ଯ୍ୟନ୍ତ ଶୋଇ ନ ଥିଲେ, ଆଉ ସବୁ ଦିନ ଭଳି ସେ ସ୍ୱାମୀଙ୍କ

ସହ ଏକାଠି ଶୋଇ ନ ଥିଲା । ସ୍ୱାମୀ ତାର ଟେବୁଲ ଉପରେ ଆଲୁଅ ଜାଳି କଣ ଖଣ୍ଡେ ବହି ପଢ଼ିବାରେ ଲାଗିଥିଲେ ।

ବର୍ତ୍ତମାନ ନିଦ ଭାଙ୍ଗିଯିବାରୁ ଅଞ୍ଜଳି ଦେଖିଲା, ଘର ସାରା ପୂର୍ବପରି ସେମିତି ଆଲୁଅ ବାଁଛାଡ଼ ହୋଇ ପଡ଼ୁଛି । ସ୍ୱାମୀ ଦୀର୍ଘ ତିନି ଘଣ୍ଟା ତଳର ଅବସ୍ଥାଟା ଧରି ସେହିଭଳି ବହି ପଢ଼ିବାରେ ଲାଗିଛନ୍ତି । ଆଉ କିଛି ନ ଭାବି ଅଞ୍ଜଳି, ପାଖକୁ ଘୁଞ୍ଚିଯାଇ ନିରଞ୍ଜନ ପଢ଼ୁଥିବା ବହି ଖଣ୍ଡିକୁ ବନ୍ଦ କରିଦେଲା ।

"କାଲି କଣ କିଛି ପରୀକ୍ଷା ଦେବାକୁ ଅଛି ନା କଣ ?"

ନିରଞ୍ଜନ କେବଳ ନୀରବରେ ଥରେ ହସିଦେଲା । ତାହାର କିଛିକ୍ଷଣ ପରେ କହିଲା—

"ପରୀକ୍ଷା ନୁହେ ଯେ, ତମେ ପଢ଼ୁଥିଲେ ବହିଟାକୁ ମଧ୍ୟ ଛାଡ଼ି ପାରି ନ ଥାନ୍ତି । ଗୋଟାଏ ଚରମ ସୀମାରେ ପହଞ୍ଚିଲା ପୂର୍ବରୁ ତମେ ବହିଟାକୁ ବନ୍ଦ କରିଦେଲ । ଭାରି ଦୁଷ୍ଟ..."

ଏଥିରେ ଉତ୍ତେଜିତ ହୋଇ ଅଞ୍ଜଳି ସରସ କଣ୍ଠରେ କହିଲା, "କଣ ସେଇ ଚରମ ସୀମାଟା କହିଲ ? ବିରହ ନା ମିଳନର ଚରମ, ନା ଆଉ କିଛି ଟ୍ରାଜେଡ଼ି ?"

ନିରଞ୍ଜନ ହସି ହସି କହିଲା, "ମୁଁ ଆଉ ସେ ସୀମାଟା ପାରି ହେଲି କୋଉଠି ? ଦୀର୍ଘ ପାଞ୍ଚ ବର୍ଷର ବିଚ୍ଛେଦ ପରେ ମିଳନର ସୂତ୍ରପାତ ହେଉଥିଲା । ତା ପରେ ହଠାତ୍ ଆରମ୍ଭ ହୋଇଗଲା ତମର ଦୁଷ୍ଟାମୀ । ଭାବିଥିଲି ତମେ ଆହୁରି କିଛି ଅଧିକ ସମୟ ଶୋଇପଡ଼ିବ, ଆଉ ତା ଭିତରେ ମୁଁ ସେଇ ଚରମ ସୀମାଟା ପାରି ହୋଇଯିବି, କିନ୍ତୁ ତା ଆଉ ହେଲାନି । କିନ୍ତୁ ଚରମର ଆୟୋଜନଟା ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇଚି..."

"ସତେ କଣ ହୋଇଚି ଟିକେ କହିଲ ?"

"ବାସ୍ତବିକ୍ ଅଞ୍ଜଳି, ଏ ଉପନ୍ୟାସର ନାୟିକା ସରସୀ ଅତି ଦୁର୍ଭାଗିନୀ । ଇଂଲଣ୍ଡରେ ପ୍ରଥମ-ଶ୍ରେଣୀରେ ଏମ୍. ଏ. ପାସ୍ କରି ସରକାରୀ କଲେଜରେ ଲେକ୍‌ଚରର ହୋଇପାରିଚି, କିନ୍ତୁ ଜୀବନରେ ସ୍ୱାଧୀନତା ଲାଭ କରିପାରିନି । ସାଧାରଣତଃ କୁହାଯାଏ, ଅର୍ଥନୈତିକ ପରାଧୀନତା ଯୋଗୁ ନାରୀ ଜୀବନରେ ସ୍ୱାଧୀନତା ଲାଭ ନ କରି ପୁରୁଷର ଦାସୀ ହୋଇଯାଇଛି; ମାତ୍ର ଏ ସରସୀର ଜୀବନରୁ ତ କୌଣସି ପ୍ରମାଣ ମିଳୁନି ।"

"ସରସୀ ଅପାର କଣ ହୋଇଚି କହିଲ ?"

"ସରସୀ ଅପା ? କହୋ ଏ ଉପନ୍ୟାସର ନାୟିକା ତମର ଅପା ହେଲା କେମିତି ? କଣ ସବୁ ଦୁଃଖିନୀ ନାରୀଯାକ ତମର ଅପା ହୁଅନ୍ତି କି ?"

"ହଁ ମ, ସିଏ ମୋର ଅପା । ତମେ କଣ ପଢ଼ିଚ ଆଗେ କୁହ । ମୁଁ ପଛେ ସରସୀ ଅପା କଥା କହିବ !"

ନିରଞ୍ଜନ ଏ କଥାରେ ଅତି ବିସ୍ମିତ ହୋଇ ଅନେଇ ରହିଲା ଅଞ୍ଜଳିର ମୁହଁକୁ ।

"କଣ କହୁଚ ଅଞ୍ଜଳି, ତାହେଲେ ଏ ଉପନ୍ୟାସଟା କାଳ୍ପନିକ ନୁହେଁ, ଗୋଟାଏ ଜୀବନ୍ତ ଘଟଣା । ଆଉ ସେ ଘଟଣା ସହ ପୁଣି ତମର ସମ୍ପର୍କ ରହିଛି ?"

ଅଞ୍ଜଳି ଦରଦମିଶା ସ୍ୱରରେ କହିଲା, "ତମ କଥାରୁ ମତେ ସେଇପରି ଜଣାପଡୁଛି । ତା'ପରେ ଆଉ କ'ଣ ଘଟିଲା କହିଲ ?"

"ନା, ତମେ ଆଗେ ତମ ସରସୀ ଅପା କଥା କୁହ । ତମ କଥା ମୋ ପାଖରେ ଅଧିକ ଆଗ୍ରହ ସୃଷ୍ଟି କରୁଛି । କୁହ, କିଏ ସେଇ ସରସୀ ଅପା ?"

"ମୋର ମାଉସୀଝିଅ ଭଉଣୀ ନାଁ ସରସୀ । ସେ ମୋଠାରୁ ପାଞ୍ଚବର୍ଷ ବଡ଼ ହବ । ଖୁବ୍ ପାଠ ମଧ୍ୟ ପଢ଼ିଛି । ବଡ଼ ଗୃହକର୍ତ୍ତ୍ରୀ ମଧ୍ୟ କହୁଚ । କିନ୍ତୁ ଗୋଟିଏ ଅସୁନ୍ଦର ପୁରୁଷ ସାଙ୍ଗରେ ତାର ବା'ଘର ହୋଇଥିଲା । ସେଇ ଅସୁନ୍ଦର ପୁରୁଷ ପୁଣି ତାକୁ ମାଡ଼ ଦିଏ ବୋଲି ମୁଁ ଶୁଣିଥିଲି । ସେ ବହିରେ ସେଇକଥା ସବୁ ଲେଖା ହୋଇଚି ନା !"

ଉଲ୍ଲସିତ ହୋଇ ନିରଞ୍ଜନ କହିଉଠିଲା, "ତମ କଥା ବିଲକୁଲ ସତ ଅଞ୍ଜଳି, ଏ ଉପନ୍ୟାସର ନାୟିକା ତମର ସରସୀ ଅପା । କିନ୍ତୁ ସରସୀ ନିଜେ ଏପରି ପରାଧୀନତା ବରଣ କଲା କାହିଁକି ?"

ଅଞ୍ଜଳି ପ୍ରଶ୍ନ କଲା, "ଆଉ କଣ ବା' ହୋଇ ନ ଥାନ୍ତା ?"

ନିରଞ୍ଜନ ଉତ୍ତର ଦେବାକୁ ଯାଇଁ ପ୍ରଶ୍ନ କରି କହିଲା, "ତମେ କାହିଁକି ବା' ହୋଇଚ କହିଲ ଅଞ୍ଜଳି ?"

"ଆଲୋ, ସବୁ ଝିଅ ତ ବା' ହୁଅନ୍ତି । ବାହା ନ ହୋଇ ଝିଏ ଆଉ କରିବେ କଣ ?...ଆଉ ମୋ କଥା ପଚାରୁଚ, ମୁଁ ବା' ହୋଇଥିଲି..."

ଅଞ୍ଜଳିର ଶେଷ କଥାଟକ ଶୁଣି ଅନେଇ ରହିଲା ଉତ୍ସୁକ ଆଖିରେ ନିରଞ୍ଜନ । ଅଞ୍ଜଳି ହସି ଉଠି କହିଲା, "ମୁଁ କିଛି ଜାଣିନି । ହେଲେ ତମେ ଜାଣିଥିବ ଯେ..."

ନିରଞ୍ଜନ ହସିଉଠିଲା । ଅଳ୍ପ ସମୟ ବ୍ୟବଧାନ ପରେ ଗମ୍ଭୀର ହୋଇ କହିଲା, "କେବଳ ସେହି ଆଦିମ ପିପାସା ଲାଗି ଅଞ୍ଜଳି ? ଆଉ କିଛି ଲକ୍ଷ୍ୟ ନାହିଁ ?"

ଅଞ୍ଜଳି ନିଃସଙ୍କୋଚରେ କହିଲା, "ଆଉ କଣ, ଛୁଆପିଲା କରି ସଂସାର ଗଢ଼ିବା..."

"କିନ୍ତୁ ଆମ ଜୀବନରେ ସେ ଆଶା ପ୍ରାୟ ବ୍ୟର୍ଥ ହୋଇଚି, ତମେ ଜାଣ !"

ଚକିତା ହୋଇ ଅଞ୍ଜଳି କହି ଉଠିଲା, "ବ୍ୟର୍ଥ ? ମୋଟେ ସାତ ବର୍ଷର ସଂଗ୍ରାମ ଭିତରେ ତମେ ବ୍ୟର୍ଥତା ସଂଗ୍ରହ କରି ବସିଲଣି ! ତମ ଭୁଣ୍ଡ ଘର ଖରାପ... ନା, ତମ ସାଙ୍ଗରେ ମୁଁ ଆଉ କଥା ହେବିନି..."

ନିରଞ୍ଜନ ଟିକେ ଅପ୍ରତିଭ ହେଲା ଅଞ୍ଜଳିର ଏ ଅଭିମାନରେ । କଥା କହୁ କହୁ ନିଜର ଭୁଲ ହୋଇଚି ବୋଲି ସେ ବର୍ତ୍ତମାନ ଅନୁଭବ କଲା । ତାହାପରେ କଥାର ଗତି ବଦଳେଇ ସେ ପୁଣି କହିଲା—

"ଜାଣିଲ ଅଞ୍ଜଳ, ଆମେ ଆଲୋଚନା କରୁଥିଲେ ସରସୀ କଥା, ଆମ ଜୀବନର କଥା ସେଠି ଆସି ପ୍ରକ୍ଷିପ୍ତ ଭାବରେ ପଡ଼ଯାଇଚ । ଆମେ ପୁଣି ମୂଳକଥା ପାଖକୁ ଫେରିଯିବା ଚାଲ । କିନ୍ତୁ ତମେ ଯେ ସମ୍ଭୋଗକୁ ସଂଗ୍ରାମର ଆଖ୍ୟା ଦେଲ, ମୁଁ ତାକୁ ସମର୍ଥନ କରିପାରୁନି···"

ହଠାତ୍ ପ୍ରତ୍ୟୁତ୍ତର ଦେଇ ଅଞ୍ଜଳ କହିଲା, "ସଂଗ୍ରାମ ନୁହେଁ, ତପସ୍ୟା ବା ସାଧନା କହିବାକୁ ହେବ; କିନ୍ତୁ ମୁଁ ତାକୁ ସମ୍ଭୋଗ କହିବନି···"

"ତାହେଲେ ତମର ସରସୀ ଅପା ତପସ୍ୟା କରିବାକୁ ସେହି ଅସୁନ୍ଦର ପୁରୁଷ ସାଙ୍ଗରେ ଆସି ଜୁଟିଛନ୍ତି ?···ଚମତ୍କାର, ଶିକ୍ଷାର ସାଧନାରେ ସିଦ୍ଧିଲାଭ କରି ତମର ଅପା ଯେଉଁ ତପସ୍ୟା ଆରମ୍ଭ କରିଛନ୍ତି ସେଥିରେ ଦୁଃଖ କଷ୍ଟ ଭୋଗ କରିବା ତ ସ୍ୱାଭାବିକ, ଆମର ସେଥିରେ ଚିନ୍ତା କରିବାର କଣ ଅଛି ?"

"କିନ୍ତୁ ତାର ଏ ତପସ୍ୟାରେ ଯେ ସିଦ୍ଧିଲାଭ ହେଉଚି । ଗୋଟିଏ ପୁଅ ଆଉ ଗୋଟିଏ ଝିଅ ହୋଇଚି ତାର ।"

ଅଞ୍ଜଳର କଥା ଶୁଣି ନିରଞ୍ଜନ ଠୋ ଠୋ ହସିଉଠିଲା । ହସ ଶେଷରେ ତା ମୁହଁରୁ ହଠାତ୍ ବାହାରି ପଡ଼ିଲା, "ଧନ୍ୟରେ ନାରୀ, ପୁରୁଷ ହାତରୁ ମାଡ଼ ଖାଇ ତମେ ପୁଣି ତାକୁ ତପସ୍ୟା କହୁଚ ! ସେହି ପୁରୁଷର ସନ୍ତାନକୁ ଗର୍ଭରେ ଧରି ତମେ ପୁଣି ତାର ବଂଶ ରକ୍ଷା କରି ଦେଇ ଯାଉଚ···? ବିଚିତ୍ର !"

ଆଦରମିଶା ଅସହିଷ୍ଣୁତା ସହ ଅଞ୍ଜଳ କହିଲା, "ଥାଉ ଥାଉ, ଏତେ ଅର୍ଥ ଆଉ ତମେ କରନା । ସବୁ କଥା ଜାଣି କରି ପୁଣି ଚତୁର ହେଉଚ । ସରସୀ ଅପା ବା' ନ ହେଇ ରହିଥାନ୍ତା କେମିତି ମ ?"

"ଆଉ ତପସ୍ୟା, ସାଧନା ଏସବୁ କଥା କାହିଁକି କହୁଚ ?" ଏ ମନ୍ତବ୍ୟ ପରେ ନିରଞ୍ଜନ ଅଞ୍ଜଳକୁ ପଚାରିଲା, "ସରସୀର ସ୍ୱାମୀ କଣ କରେ ତମେ ଜାଣିଚ ?"

'ନା ।'

"ସ୍ୱାମୀ ତାର ଜଣେ ଓକିଲ । ଦେଶରେ ନ୍ୟାୟ ପ୍ରତିଷ୍ଠା ପାଇଁ ଯେଉଁସବୁ ନିୟମ ଆଉ ଆଇନକାନୁନ୍ ତିଆରିଯାଇଛି, ତାକୁ ରକ୍ଷା କରିବା ପାଇଁ ଲଢ଼େଇ କରିବା ଓକିଲମାନଙ୍କର କାମ । ଏହିଭଳି ଜଣେ ଓକିଲ ହେଉଚି ସରସୀର ସ୍ୱାମୀ । ଆଉ ଏହିଭଳି ସ୍ୱାମୀର ସ୍ତ୍ରୀ ହେଉଚି ଜଣେ ଅଧ୍ୟାପିକା । ପୁଣି ଏହିଭଳି ସ୍ତ୍ରୀ ତାହାର ସ୍ୱାମୀ ହାତରୁ ପାଏ ନିଷ୍ଠୁର ପ୍ରହାର । ଆଉ ତମେ ପୁଣି ତପସ୍ୟା କହିବ ଅଞ୍ଜଳ ? ଆଉ ତମେ ପୁଣି ମୋ ଉପରେ ଅଭିଯୋଗ କରିଚ—ମୁଁ ଜାଣିକରି ଚତୁର ହେଉଚି··· ଏଥିରେ ନ ଜାଣିବାର ଆଉ କଣ ଅଛି ? ସେହି ଯୌନ ମିଳନଟାକୁ ତମେ ଲକ୍ଷ୍ୟ କରି ଏକଥା କହିଚ । ମୁଁ ଶିଷ୍ଟତା ରକ୍ଷା କରି ଆଗରୁ କହିଚି 'ଆଦିମ ପିପାସା' । ସେ ଯା' ହେଉ, ସେତକ ପାଇବା ପାଇଁ କଣ ସରସୀର ଅନ୍ୟ ଗତି ନ ଥିଲା ?"

ଏକାଥରକେ ନିରଞ୍ଜନ ବହୁତଗୁଡ଼ାଏ କଥା କହି ଅଞ୍ଜଳ ମୁହଁକୁ ଅନେଇ ରହିଲା । ନିଜର ସ୍ତ୍ରୀଠାରୁ ଏସବୁ ଦୁରୂହ ପ୍ରଶ୍ନ ଉପରେ ସେ ଉତ୍ତର ପାଇବ ବୋଲି ଆଶା କଲା । ମାତ୍ର ସମ୍ପୂର୍ଣ୍ଣ ନିରୁତ୍ତର ହୋଇ ଅଞ୍ଜଳ ଚାହିଁ ରହିଲା ସ୍ୱାମୀର ମୁହଁକୁ । କି

ଉତ୍ତର ସେ ଦେବ ! ସତେ ଏ ବିବାହର ଉଦ୍ଦେଶ୍ୟ କଣ ? ମାଡ଼, ପ୍ରହାର, ନିର୍ଯାତନ—ଏସବୁ କଣ ଜୀବନର ସୁନ୍ଦର ଏକ ଏକ ଉପାଦାନ ?

କିଛି ସମୟ ପରେ କଥାର ମୋଡ଼ ଘୁରେଇ ନିରଞ୍ଜନ ପୁଣି କହିଲା, "ଯଦି ଆମର ସନ୍ତାନ ନ ହୁଏ ତାହେଲେ କଣ ଆମର ବିବାହ ବ୍ୟର୍ଥ ହୋଇଚି ବୋଲି ତମେ କହିବ ?"

ଅଞ୍ଜଳି ହଠାତ୍ ଉତ୍ତର ଦେଇ କହିଲା, "ବ୍ୟର୍ଥ ହେଇଚି ସରସୀ ଅପାର ବିବାହ । ଆମର କାହିଁକି ହବ ? ତମ ଭଳି ସ୍ୱାମୀ..."

ପ୍ରତିବାଦ କରି ସେପରି କହିଲା ନିରଞ୍ଜନ, "ଆଉ ଆଉ, ସ୍ୱାମୀର ପ୍ରଶଂସା ଆଉ ତମେ ଗାଅନା, ଏହି ସ୍ୱାମୀ ଲାଗି ତମେ ଆଜି କାନ୍ଦୁଥିଲ, ସେ ପୁଣି...ସେହି ଲୋକକୁ ପୁଣି ପ୍ରଶଂସା..."

"ସେଇଟା ମୋର ଭୁଲ, ତମେ ଅଧିକ ଭଲ ପାଇ ମତେ ସେପରି କରି-ଦେଇଚ । ନ ହେଲେ ସରସୀ ଅପାଠାରୁ ମୁଁ କୋଉ ଗୁଣରେ ବଡ଼ ? ସେ ପୁଣି ସ୍ୱାମୀ ହାତରୁ ମାଡ ଖାଉଚି...ଆଁ...ସତ କହିଲ, ସରସୀ ଅପା କେତେ କାନ୍ଦୁ ନ ଥିବ... ଆଉ ସେତେବେଳେ ତା' ଛୁଆଗୁଡ଼ାକ ପୁଣି କେତେ ବିକଳ ହଉ ନ ଥିବେ..."

ନିରଞ୍ଜନ ଅନେଇ ଦେଖିଲା ଅଞ୍ଜଳିର ଆଖି ଲୁହ ଛଳ ଛଳ ହେଇଯାଇଚି । ନିଜର ଦୁଃଖ ଭୁଲିଯାଇ ଅନ୍ୟର ଗୁରୁତର ଦୁଃଖର ଚିନ୍ତାରେ ବିଲକୁଲ କାତର ହୋଇପଡ଼ିଛି ସେମିତି । ସେ ପ୍ରବୋଧନା ଦେଇ କହିଲା, "ଆଉ ଅଞ୍ଜଳି, ସେଥିପାଇଁ ଯେତେ ଚିନ୍ତା କଲେ ବି ଆମେ ହୁଏତ କିଛି କରିପାରିବାନି । ଏଇଟା ଅନ୍ୟର ବ୍ୟକ୍ତି-ଗତ ଆଉ ପାରିବାରିକ ସମସ୍ୟା । ଯେତେ ଭାବିଲେ ବି ଆମେ ସେଥିରେ ହସ୍ତକ୍ଷେପ କରିପାରିବାନି । କିନ୍ତୁ..."

ଅଞ୍ଜଳି ସଚକିତ ହୋଇ କହିଲା, "ଆଉ କଣ ତମେ କହୁଚ ?"

ନିରଞ୍ଜନ ରହି ରହି ଧୀରେ ଧୀରେ କହିଲା, "ମନଟା ଏସବୁ ସାଧାରଣ ସ୍ତର କଟେଇ ବଡ଼ ଯୁକ୍ତିବାଦୀ ହେଇପଡ଼ିଚି... ପୁଣି ସେ ଦିଗରେ ନିଜର ଦୁର୍ବଳତା ଅଛି ନା..."

"ଦୁର୍ବଳତା ଆଉ କଣ ?"

"ନା ଅଞ୍ଜଳି, ସେ କିଛି ନୁହେଁ । ମୁଁ କହୁଥିଲି କି, ତମେ ତମ କଥାରେ ପ୍ରମାଣ କରିଦେଇଛ ଯେ, ସନ୍ତାନଲାଭ ବିବାହର ସାର୍ଥକତା ନୁହେଁ । ବିବାହ କିମ୍ବା ଦୈହିକ ମିଳନର ଆନନ୍ଦ ସାଙ୍ଗରେ ସନ୍ତାନଲାଭର ସମ୍ପର୍କ ହୁଏତ ମୁଖ୍ୟ ନୁହେଁ..."

ଅଞ୍ଜଳି ଚମକି ଉଠି କହିଲା, "ସତେ, ମୋ କଥାର ଏଇ ଅର୍ଥ ବାହା-ରିଲା ? ହଁ, ହୁଏତ ବାହାରିଥିବ, ସରସୀ ଅପାର କଥା ମତେ କେମିତି ଅସୁଖୀ କରି-ଦେଇଚି । କେତେ ପାଠ ପଢ଼ିଲା, କେତେ ବଡ଼ ଚାକିରି କଲା, ଶେଷକୁ ଏଇପରି ହେଲା, ଯେଉଁ ଅସହାୟା ନାରୀଙ୍କ ସେଇ ଅସହାୟ୍ୟା.........ଏଥିରେ ସନ୍ତାନଲାଭକୁ ବିବାହର ସାର୍ଥକତା ବୋଲି ମୁଁ ଆଉ କେମିତି କହିବ ?"

"ଇଏ କଣ ? କିଏ ଏମିତି ଚିତ୍କାର କରି କାନ୍ଦୁଚି ?"

ଅଞ୍ଜଳିର ସବୁ ଚିନ୍ତା ଥପ୍ କରି ବନ୍ଦ ହୋଇଗଲା । ନିରଞ୍ଜନର କଥାରେ ସେ କାନ ଡେରି ଶୁଣିଲା, ସତକୁ ସତ ନାରୀକଣ୍ଠର କରୁଣ ବିଳାପ ପବନକୁ ମନ୍ଥି ଚକଟି ଭାସି ଆସିବାରେ ଲାଗିଚି । ସେ ଥରି ଥରି କହିଲା, "ଶୁଣିଲଣି, ଆହୁରି କେତେ ଲୋକ କାନ୍ଦିଲେଣି···କିଏ ମରିଗଲା ନା କଣ ? କାନ୍ଦଣା ଯେମିତି ସେ ଆର ସାହିରୁ ଭାସିଆସୁଚି···ସେ ସାହିରେ କିଏ ବେମାର ପଡ଼ିଥିଲା କି ?"

ନିରଞ୍ଜନ ବିଚଳିତ ହୋଇପଡ଼ି ପାଟି କରି କହିଲା, "ଆରେ···ଦଧିଆ ତ ମରିଗଲା ! ବିଚରା ମାସେ ହବ ବେମାର ପଡ଼ିଥିଲା···ଆଜି ସକାଳେ ମୁଁ ତାକୁ ଦେଖି ଆସିଥିଲି···"

"ଦଧିଆ, ଯିଏ ଭଲ ବାଜା ବଜାଏ ? ଆମ ଏଠିକି ଯିଏ ଆସି ଥରେ ତବଲା ନା କଣ ବଜଉଥିଲା ?"

"ହଁ, ଅଞ୍ଜଳି, ସେଇ ଦଧିଆ, ଜୀବନର ଛନ୍ଦର ଏକ ଉତ୍କୃଷ୍ଟ ବିକାଶ । ସଙ୍ଗୀତର ଛନ୍ଦକୁ ଆଙ୍ଗୁଠିରେ ଟିପ ଛୁଇଁ ଯିଏ ଅଧିକ ରସମୟ କରୁଥିଲା, ସେଇ···ସେଇ ଦଧିଆ ମରିଗଲା···ତମେ ଥା, ମୁଁ ଆସେ ଅଞ୍ଜଳି—ଦଧିଆ ମୋର ଭାରି ସାଙ୍ଗ—ମୁଁ ଏଇକ୍ଷଣି ସଙ୍ଗୀତଚର୍ଚ୍ଚା ଛାଡ଼ିଦେଇଚି ସିନା, ଆଗେ ମୁଁ ସେଥିରେ ପାଗଳ ରହିଥିଲି । ମୁଁ ଗୀତ ଗାଇଲେ ଦଧିଆ ବାଜା ବଜାଏ—ଆଉ ଦଧିଆ ତବଲା ନ ଧରିଲେ ମୁଁ ଗୀତ ଗାଉ ନ ଥିଲି—ତାକୁ ଥରେ ଶେଷ ଦେଖା ଦେଖି ଆସେ—"

"କିନ୍ତୁ ଶୀଘ୍ର ଆସିବ ନା ?"—ଅନ୍ତଃଶୟ ଭୟମିଶା ସ୍ୱରରେ କହିଲା ଅଞ୍ଜଳି । ତାର ସେ କଥା ଶୁଣି ନିରଞ୍ଜନ ଠୋ ଠୋ ହସି ଉଠିଲା ।

"ମୃତ୍ୟୁର ଏ ଅଭିଯାନ ଭିତରେ ତମେ ପୁଣି ଏକୁଟିଆ ରହିବାକୁ ଡରୁଚ ଅଞ୍ଜଳି ? ହଉ, ହଉ, ମୁଁ ଆର ଖଞ୍ଜାରୁ ନୂଆବୋଉକୁ ଡାକି ଦେଇ ଯାଉଚି" କହି ନିରଞ୍ଜନ ଚାଲିଗଲା ।

॥ ୩ ॥

ନିରଞ୍ଜନର ନୂଆବୋଉ ବିଧବା । ବୟସ ତିରିଶ ଭିତରେ ହେବ । ଗତ ଛ'ମାସ ହେଲା ସେ ଆସି ନିରଞ୍ଜନ ପାଖରେ ରହିଚୁ । ପ୍ରାୟ ଚାରି ବର୍ଷ ତଳେ ସ୍ୱାମୀ ତାର ମରିଯାଇଛି ବୋଲି ଶୁଣା ଯାଇଥିଲା । କିନ୍ତୁ ଏପର୍ଯ୍ୟନ୍ତ ସେ ସମ୍ବାଦ ରହସ୍ୟାବୃତ ହୋଇ ରହିଥିଲେ ବି ସ୍ୱାମୀ ଆଉ ଫେରି ନାହିଁ । ପୂର୍ବ ବଙ୍ଗଳାର ଦୂର ଗ୍ରାମପୁର କଥା । ସେଠି କ'ଣ ଗୋଟିଏ ଭଲ ଫାଇଦା ସେ କରୁଥିଲା । ଗ୍ରାମପୁର ପାକିସ୍ଥାନର ଅନ୍ତର୍ଗତ ହେଲେ ମଧ୍ୟ ନିଜର ପ୍ରତିପତ୍ତି ଯୋଗୁଁ ସେ ସେଠାରେ ଭଲରେ ତିଷ୍ଠି ରହିଥିଲା ବୋଲି ଶୁଣା ଯାଉଥିଲା । କିନ୍ତୁ ପ୍ରାୟ ଚାରିବର୍ଷ ତଳେ ଦିନେ ଡାକଯୋଗେ ହଠାତ୍ ତାର ମୃତ୍ୟୁ ସମ୍ବାଦ ଆସି ପହଞ୍ଚିଲା । ପରେ ସେଠାରୁ ଅନ୍ୟାନ୍ୟ କେତେକ ଓଡ଼ିଆ ପ୍ରବାସୀ ଫେରିବାରୁ ସେମାନଙ୍କଠାରୁ ତା' ବିଷୟରେ ଅନ୍ୟ ପ୍ରକାର ଘଟଣା ଶୁଣାଯାଇ-

ଥିଲା । ସେମାନେ ପ୍ରକାଶ କଲେ ଯେ, ଥରେ ଶୁଦ୍ଧପୁର ବଜାରରେ ହିନ୍ଦୁ-ମୁସଲମାନଙ୍କ ଭିତରେ ଗଣ୍ଡଗୋଳ ଲାଗିଲା ଓ ସେଥିରେ ନିରଞ୍ଜନର ଭାଇ ନିତ୍ୟାନନ୍ଦର ସମସ୍ତ ସମ୍ପତ୍ତି ଲୁଟ ହୋଇଗଲା । ଘଟଣାକ୍ରମରେ ନିତ୍ୟାନନ୍ଦ ନିଜର ସମସ୍ତ ପ୍ରତିପତ୍ତି ହରାଇ ମୁସଲମାନମାନଙ୍କ ବିଷଚକ୍ଷୁରେ ପଡ଼ିଲା ଏବଂ ସେଥିରୁ ଉଦ୍ଧାର ପାଇବାର ଉପାୟ ନଦେଖି ଶେଷକୁ ନିରୁଦ୍ଦିଷ୍ଟ ପଥର ଯାତ୍ରୀ ହେଲା । ଆଉ କେହି କେହି କହନ୍ତି ଯେ, ମୁସଲମାନମାନେ ତାକୁ ଗୁପ୍ତରେ ହରଣଚାଳ କରିନେଇ ହତ୍ୟା କରିଛନ୍ତି । ଯେଉଁମାନେ ଏହି ଶେଷ ଘଟଣାରେ ବିଶ୍ୱାସ କରନ୍ତି ସେହିମାନେ ତାଙ୍କୁ ନିତ୍ୟାନନ୍ଦର ମୃତ୍ୟୁ ସମ୍ବାଦ ଦେଇଥିଲେ ଓ ସେହି ଅନୁସାରେ ତାହାର ଅନ୍ତ୍ୟେଷ୍ଟିକ୍ରିୟା ସମ୍ପନ୍ନ କରାଯାଇଛି ଏବଂ ସ୍ତ୍ରୀର ବୈଧବ୍ୟଦଶା ମଧ୍ୟ ଘଟିଛି ।

ଏହିପରି ଏକ ରହସ୍ୟାବୃତ ପରିସ୍ଥିତି ଭିତରେ ବୈଧବ୍ୟ ଦଶା ଲାଭ କରିଥିବା ନୂଆବୋଉର କଥା ଅନେକ ସମୟରେ ନିରଞ୍ଜନ୍ ପକ୍ଷରେ ଗମ୍ଭୀର ଚିନ୍ତାର ବିଷୟ ହୋଇଛି । କୋଳରେ ତାର ଗୋଟିଏ ବୋଲି ପୁଅ । ବାପ ମରିବାର ବର୍ଷକ ଆଗରୁ ତାର ଜନ୍ମ ହୋଇଥିଲା । ଅଞ୍ଜଳି ୨ଧ ଯାଆର ଦଶାରେ ବେଳେବେଳେ ଅତିଶୟ ଅଧୀର ହୁଏ । ଯାଆର ରୂପଯୌବନ ଏପର୍ଯ୍ୟନ୍ତ ସେମିତି ଅବକୃତ ରହିଛି । ସେହି ରୂପକୁ ବିକୃତ ଆଉ ମଳନ କରିବା ପାଇଁ ଅବଶ୍ୟ ତାହାର ଅଧିକାରିଣୀ ପକ୍ଷରୁ ବହୁ ଉଦ୍ୟମ ଚାଲିଛି । କିନ୍ତୁ ମାଂସରେ କି ଜୀବନୀଶକ୍ତି ଅଛି କେଜାଣି, ସବୁ ଅବହେଳାକୁ ବେଖାତିର କରି ସେ ଯେମିତି ରୂପ ଓ ଯୌବନର ବୈଜୟନ୍ତୀ ଟେକାଳିବାକୁ ବଦ୍ଧପରିକର । ବିଧବାର ସେହି ନିରମାଖୀ ଜୀବନ ଭିତରୁ ଅଞ୍ଜଳି ଯେମିତି ଗୋଟିଏ ବିଷୟରେ ଯଥେଷ୍ଟ ସାହସ ପାଏ । ଯାଆ ତାର ଚାଲି ଯାଉଥିଲାବେଳେ ସେ ପଛରୁ ଅନେଇ ଅନେଇ ଭାବେ—ଅପାଙ୍କୁ ଆସି ତିରିଶ ବର୍ଷ ହେଲାଣି, ଆଉ ପୁଅକୁ ପାଞ୍ଚବର୍ଷ—ଅର୍ଥାତ୍ ପଚିଶ ବର୍ଷ ବେଳେ ଅପାଙ୍କର ପୁଅ ହୋଇଥିଲା··· । ଏହାପରେ ଅଞ୍ଜଳି ଆଉ କିଛି ଭାବିପାରେନା । ନିଜର ବୈଧବ୍ୟ ବିଧୁରା ଯାଆଠାରୁ ସେ ଯେମିତି ସାହସର ପ୍ରେରଣା ପାଇ ଆତ୍ମସନ୍ତୋଷରେ ମସଗୁଲ୍ ହୋଇଉଠେ ।

ତେଣେ ପୁଅ ଏକୁଟିଆ ଶୋଇଛି । ସେଥିଲାଗି ନୂଆବୋଉ ରତ୍ନମଣି ଅଞ୍ଜଳି ପାଖରେ ନ ରହି ତାକୁ ନିଜର ଶୋଇବାଘରକୁ ଡାକି ନେଇଗଲେ ।

ତିନୋଟି ଲେଖାଏଁ ବଖରାରେ ଦୁଇଟି ଖଂଜା । ବଖରାଗୁଡ଼ିକ ବିଭକ୍ତ କରି ଘର ଗଢ଼ା ଗଢ଼ା ଦୁଇଟି ଖଂଜାର ଉତ୍ପତ୍ତି ହୋଇପଡ଼ିଛି । ତା'ଛଡ଼ା ସ୍ୱତନ୍ତ୍ର ଖଞ୍ଜା କହିବାର ଆଉ କୌଣସି ମୂଲ୍ୟ ନାହିଁ । ନିରଞ୍ଜନ ରହୁଥିବା ଖଞ୍ଜାରେ ଅଛି ଖଣ୍ଡିଏ ବୈଠକଘର ଓ ଅନ୍ୟ ଖଞ୍ଜାଟିରେ ଖଣ୍ଡିଏ ରୋଷେଇଘର । ରୋଷେଇଘର ଓ ଗାଧୁଆ ସ୍ଥାନ ମଝିରେ ଥିବା ଖାଲି ସ୍ଥାନରେ ଖଣ୍ଡିଏ ଚାଳ ଛାଉଣି କରାଯାଇ ତାକୁ ଗାଈ ଗୁହାଳରେ ପରିଣତ କରାଯାଇଛି । ଅଗଣା ମଝିରେ କୂଅ ।

ରତ୍ନମଣିଙ୍କ ସାଙ୍ଗରେ ସେହି ତଳ ଖଂଜାକୁ ଗଲା ଅଞ୍ଜଳି । ଯିବାବେଳେ ସ୍ୱାମୀ ପଢୁଥିବା ସେହି ବହିଖଣ୍ଡିକ ସେ ହାତରେ ଧରି ଚାଲିଗଲା । ଦୁଇ ଯାଆଙ୍କ

ଭିତରେ କିଛି ସମୟ କଥାବାର୍ତ୍ତା ହେବା ପରେ ଅଞ୍ଜଳି କହିଲା, "ଜାଣିଲ ଅପା, ଏ ବହିଟି ମୋର ମାଉସୀଝିଅ ଭଉଣୀ ବିଷୟରେ ଲେଖା ହୋଇଚି । ଆଉ ପଢ଼ିଲେ ତମେ ନ କାନ୍ଦି ରହିପାରିବନି । କେତେ ପାଠ ପଢ଼ିଛି···ବଡ଼ ଚାକିରି କରିଚି···କିନ୍ତୁ ସ୍ୱାମୀ-ଠାରୁ ସୁଖ ପାଇନି···ଘର ହତଭାଗୀ···"

ରତ୍ନମଣି ଜିଜ୍ଞାସୁ ହୋଇ କହିଲା, "କିଣ ସେ ବିଧବା ? ବୟସ କେତେ ?"

ଅଞ୍ଜଳି କଣ୍ଠରେ ଉତ୍ତେଜନା ଧରି କହିଲା, "ନାଇଁ ମ, ବିଧବା କାହିଁକି ହବ, ମୋଟେ ଚବିଶ କି ପଚିଶ ହବ ବୟସ, ସ୍ୱାମୀ ପୁଣି ଗୋଟାଏ ଓକିଲ···ପୋଡ଼-ଯାଉ ତା ଓକିଲାତି । ଶୁଣୁଚ ଅପା, ଏତେ ବଡ଼ ପାଠପଢ଼ା ସ୍ତ୍ରୀଟାକୁ ସେ ପୁଣି ହାତ ଫୁଟେଇ ମାଡ଼ ମାରେ···"

ରତ୍ନମଣି ଆଖିରୁ ସେତେବେଳକୁ ଦୁଇ ଧାର ଅଶ୍ରୁ ବହିଗଲାଣି । ସେ ଧୀର କଣ୍ଠରେ ସଂକ୍ଷେପରେ କହିଲା, "ଯା ହେଉ, ସ୍ୱାମୀ ତ ଅଛି·····ସେଇ ଢେର୍·····"

"ତମେ କଣ କହୁଚ ଅପା, ଏମିତି ସ୍ୱାମୀ ନ ଥିବା ଆହୁରି ଢେର୍ ଭଲ । ତାର ଦୁଇଆ ପିଲା ହୋଇଛନ୍ତି···ପୁଣି ନିଜେ ଟଙ୍କା ରୋଜଗାର କରୁଚି । କୁହନି ଅପା, ସେ ପ୍ରଫେସର ଚାକିରି କରୁଚି, କେତେ ଲୋକଙ୍କ ସାଙ୍ଗରେ ତାର କାରବାର, ସେଥିରେ ପୁଣି ସେ ଆଉ କାହାରି ସାଙ୍ଗରେ କଥାଭାଷା ହବନି ! ଏଥିରେ ତୁ ଶିକ୍ଷିତ ଲୋକଟା ତାକୁ ହାତ ଫୁଟେଇ ମାଡ଼ ମାରିବୁ ! ସେ ମରିଗଲେ ଆହୁରି ସରସୀ ଅପା ଢେର୍ ଭଲରେ ରହନ୍ତା ।"

ଅଞ୍ଜଳିର ଏଭଳି କଥା ଶୁଣି ରତ୍ନମଣି ଚିତ୍କାର କରିଉଠିଲା, "ଅଂଜୁ ?"

ସ୍ୱରରେ କଣ ଥିଲା କେଜାଣି, ସେଥିରେ ଚମକି ଉଠିଲା ଅଞ୍ଜଳି । ସେ ଆଖି ଉଠେଇ ଦେଖିଲା, ତାର ବିଧବା ଯାଆ ରତ୍ନମଣିର ଆଖିରେ ଦୁଇ ଧାର ଅଶ୍ରୁ । ସେ ଆଉ କିଛି କହି ପାରିଲାନି । କେତେବେଳକେ ରତ୍ନମଣି କହିଲା, "ଯେତେହେଲେ ସ୍ୱାମୀ ତ ! ସେ ଆପେ ଦିନେ ନିଜ ଭୁଲ ବୁଝିପାରିବ । ଆଉ···"

ଏହା ପରେ ଯାଆ ତାର କଣ କହିବାକୁ ଚାହୁଁଛନ୍ତି ଅଂଜଳି ବୁଝିପାରିଲା । ତାର ମନେ ହେଉଥାଏ, ସେ କୁହନ୍ତା, ଆଉ ସ୍ୱାମୀ ତାର ଭୁଲ ବୁଝି ନ ପାରିଲେ ବି ସ୍ତ୍ରୀ କି କଣ ମାଡ଼ ଖାଇ ଖାଇ ରହିବାକୁ ପଡ଼ିବ ! ସେ କେବେ ଭୁଲ ବୁଝିବ କିଏ କହିବ ? ତାହାର କି ନିଶ୍ଚୟତା ଅଛି ? କିନ୍ତୁ ଏତେ କଥା ଭାବିଲେ ବି ସେ ମୁହଁ ଖୋଲି କିଛି କହିଲାନି । ସେ ବୁଝିପାରିଲା ବୈଧବ୍ୟ ଦଶାରେ ଅପା ତାର ଯେଉଁ ଦୁଃଖ ଭୋଗୁଛନ୍ତି ତାର ସେହି କଥା କେଉଁ ପଦରେ ତାହା ଅଧିକ ଘାରି ହୋଇଉଠିଛି । ହଁ, ଅପା ଆଉ କିଛି କଥା ପକାନ୍ତେ କି ? ସେ କେତେବେଳେ ଯାଇ ଫେରିବେ···।

ଏତିକିବେଳେ ପୁଅ କଡ଼ ଲେଉଟେଇ ନିଦରେ ବୋଉର କୋଳ ଖୋଜି-ବାକୁ ଲାଗିଲା । ପିଠିରେ ତାର ହାତ ଥାପୁଡ଼େଇ ଥାପୁଡ଼େଇ ରତ୍ନମଣି କହିଲା, "ଗୋବିନ୍ଦକୁ ଆସି ପାଞ୍ଚବର୍ଷ ପୂରିଲା । ଏବର୍ଷ ତାର କାନଫୋଡ଼ା ଆଉ ଝଡ଼ୁଛୁଆଁ

ହିବାର କଥା । ନିରଞ୍ଜନଙ୍କୁ ଭୁ କହିବୁଛି ଲେ ଅଞ୍ଜଳି, ଦିନ ଧରି ଏ ସନ ଗାଁକୁ ଯାଇ ସେ କାମ ବଢ଼େଇ ଆସିବା । ତାର ଆଉ କଏ ଅଛୁ ?"

ଏତକ କହିବା ସଙ୍ଗେ ସଙ୍ଗେ ରତ୍ନମଣିର ଆଖିରେ ଅଶ୍ରୁ ଆଉ ବାଧା ମାନିଲାନି । ସେ ପିଲାଟି ପରି ଯେମିତି କହିଁ କହିଁ ହୋଇ କାନ୍ଦଉଠିଲା । ସେହି କାନ୍ଦବା ଭିତରେ ସେ କହିବାକୁ ଲଗିଲା —

"ଗୋବିନ୍ଦ ବର୍ଷକର ହେଲା ପରେ ସେ ଥରେ ଆଇଥିଲେ । ପୁଅର କାନ-ଫୋଡ଼ା ଠଉଁ ପାଠ ପଢ଼ାଯାଏ ଦିନେ ଶୋଇ ଶୋଇ କେତେ କଥା ଗପିଗଲେ । ପୁଣି ପୁଅର ବା'ଘର କେମିତି କରିବେ ସେ କଥା ବି କହୁଥିଲେ । କିନ୍ତୁ ଶେଷକୁ କିଛି ଦେଖିବାକୁ ରହିଲେନି ।"

ଶେଷ କଥାତକ କହି ଅତି ଅଧୀର ହୋଇପଡ଼ିଲା ରତ୍ନମଣି । ଅଞ୍ଜଳି ଏ ଘଟଣାରେ ବିଶେଷ ଭାବରେ ବିମୂଢ଼ା ହୋଇପଡ଼ିଲା । ସବୁ ଦୋଷ ତା'ର । ସେ ସରସୀ ଅପା କଥା ପକେଇ ଏତେ କଥା ବାହାର କଲା । ସେ ଅତି କଷ୍ଟରେ ସାହସ ବାନ୍ଧି କହିଲା — "ଗୋବିନ୍ଦ ଛଡ଼ା ଆମର ଆଉ କଏ ଅଛୁ, ଅପା ! ସେ ଆମର ସବୁ । ସିଏ ହି ମତେ ସବୁଦିନେ ସେଇକଥା କହନ୍ତି । ପୁଅର କାନଫୋଡ଼ା ଆଉ ଖଡ଼ିଛୁଆଁ ପେଇଁ ତେର ଟଙ୍କା ଖର୍ଚ୍ଚ କରିବା । କଅଣ ହବ ଆମର ଟଙ୍କା ? ଦିଅର ତମର ମାସକୁ ପାଁ ଶ'...ସାତ ଶ'କମଉଛନ୍ତି...ଗାଁରେ ପୁଣି ଏତେ ସମ୍ପତ୍ତିବାଡ଼...ଗୋବିନ୍ଦ ପେଇଁ ଖର୍ଚ୍ଚ ହିବନିତ ସେସବୁ ଆଉ କ'ଣ ହବ ? ସେସବୁ ଲଗି କିଛି ଭାବନା ଅପା ! ଗୋବିନ୍ଦ ପାଠପଢାରେ ଯେତେ ଟଙ୍କା ଲଗିବ ସବୁ ଖର୍ଚ୍ଚ କରାଯିବ ।"

ଏତକ କହିସାରିଲା ପରେ ଅଞ୍ଜଳିର ପୁଞ୍ଜି ଶେଷ ହୋଇଗଲା । ଲୁହ ପୋଛି ତା ମୁହଁକୁ ଅନେଇ ରହିଲା ରତ୍ନମଣି । ଯେମିତି ଅଞ୍ଜଳି ତାର ଏକ ମା' ପେଟର ଭଉଣୀ । ସେ ଭାବିଲା, ଅଞ୍ଜଳି ଏମିତି ତେର ତେର କଥା କୁହନ୍ତି କି, କିଛି ଦୁଃଖ ସେ ଆଉ ଯେମିତି ଅନୁଭବ କରନ୍ତିନି । କିନ୍ତୁ ..କିନ୍ତୁ...ଅଞ୍ଜଳି ଆଉ କଣ କହିବ...କହିପାରିବ ଯମପୁରର କଥା...ସେ ମରିଚନ୍ତି କି ନାହିଁ କହିପାରିବ...

ଅଞ୍ଜଳି...

ରତ୍ନମଣି ଆଶ୍ଚର୍ଯ୍ୟ ହୋଇ ଶୁଣିଲା ତାର ପାଟିରୁ ଅଜାଣତରେ ଏ କଥା ବାହାରି ପଡ଼ିଛି, ଆଉ ଅଞ୍ଜଳି ଉତ୍ସୁକ ଆଖିରେ ତା ମୁହଁକୁ ଗୁହିଁରହିଛି । ସେ ଆଉ କଣ କହିବ ? କିଛି ଭାବିପାରିଲାନି ରତ୍ନମଣି । କଥା ଖୋଜି ଖୋଜି କହିଲା—

"ହଁ...ମୁଁ କହୁଥିଲି କି ନିରଞ୍ଜନ କଟକରେ ଖଣ୍ଡେ ଘର କରନ୍ତେନି । ସବୁ ଦିନେ କଣ ଏମିତି ଭଡ଼ା ଘରେ ରହିଥିବେ..."

ମନେ ମନେ ନିଜକୁ ଖୁବ ଧନ୍ୟବାଦ ଦେଲା ରତ୍ନମଣି । ସେ ଆଉ କ'ଣ କହି ପାରିଥାନ୍ତା...ଆଉ ମନ୍ଦ କଥା ତ କିଛି କହିନି ।

ରତ୍ନମଣି ଯେ ଗୋଟିଏ ସମସ୍ୟାରେ ପଡ଼ି ଏସବୁ କହିଛି, ସେ କଥା ଅଞ୍ଜଳି ଆଦୌ ବୁଝି ପାରିଲାନି । ବରଂ ଏ କଥାର ଆଲୋଚନାର ଗତିଟା ଘୂରି ଯାଇଥିବାରୁ

ସେ ଯତ୍‌ପରୋନାସ୍ତି ଖୁସି ହେଲ । ଉତ୍ତର ଦେବାକୁ ଯାଇ ସେ ଉତ୍ସାହିତ ହୋଇ କହିଲ, "ଏ ସହରରେ ତମେ ଘର ତିଆରି କରିବା କଥା କହୁଚନା ଅପା···ଝିକ ମାରି କାମ···ଘର ଜଂଜାଳ···ଆଙ୍କର ପୁଣି ସେଥିକ ବେଳ କାହିଁ···ଆଜି ଜାଣିଛ ଅପା, ଏ ଘରଟା ଆମର ନିଜର ହୋଇଗଲଣି । କଣ୍ଟ କବଲା କରି ଘରମାଲିକ ତମ ଦେଅରଙ୍କଠୁଁ ତିନି ହଜାର ଟଙ୍କା ନେଇଥିଲ । ଛ'ମାସ ହେଲା ମିଆଦ ତାର ପୂରିଗଲଣି । ଏବେ ଏ ଘର ଖ୍ୱାସ ଆମର ହୋଇଛି···ମାନେ, ଏ ଘରର ମାଲିକ ହୋଇଚ ଆମର ଗୋବନ୍ଧ·····"

ଗୋଟିଏ ଫାଙ୍କା କଥା ଭିତରୁ ଏତେଗୁଡ଼ିଏ ସନ୍ତୋଷ ମିଳିଯିବ ବୋଲି ରତ୍ନମଣି ଆଶା କରି ନ'ଥିଲ । ଅପାର ଦୁଃଖ ଭୁଲେଇ ତାକୁ ଭିନ୍ନ ଦିଗକୁ ନେଇ ପାରିଥିବାରୁ ଅଂଜଳି ମଧ୍ଯ ଯଥେଷ୍ଟ ଆଶ୍ୱସ୍ତ ହୋଇଚ ।

ପୁଣି ମାରିବଟା ଭଙ୍ଗ କରି କହିଲ ରତ୍ନମଣି, "ଆଲେ କଏ ମଲା କ, ତାକୁ ଦେଖିବାକୁ ଏତେ ଗଡ଼ରେ ନିରଞ୍ଜନ ବାହାରକୁ ବାହାରିଗଲେ ! ଏସବୁରେ ଭୁଟିକେ ତାଙ୍କୁ ଆକଟ କରିବୁ ଲେ ଅଞ୍ଜୁ, ଏସବୁ କ କଥା···"

"ହଁ···ହଁ···ଠିକ୍ କହିଲା । ମୁଁ ଆକଟ କରିବ ଅପା···କିନ୍ତୁ ସେ ଦଧିଆ ମରିଗଲା ପରା···"

ହଠାତ୍ ଭୁଲ ବୁଝିପାରି ଭାବ ବଦଳେଇ ଦେଇ ଅଞ୍ଜଳି କହିଲା—"ମୁଁ କଣ ସେ କଥା ଜାଣିଚ ନା ଶୁଣିଚ···ସେଇ ତ ସବୁ କହୁଥିଲେ, କୁଆଡ଼େ ସେ ଭଲ ବାଜା ବଜାଉଥିଲ···କହିଲ ଅପା, ଆମକୁ ସେବାଜା ବଜେଇବାରୁ କ'ଣ ମିଳିବ ? ଆପେ ଭଲ ତ ଜଗତ ଭଲ । ହଁ ଅପା, ମୁଁ ଏଥର ତାଙ୍କୁ ଆକଟ କରିବ ।" କହି ଭିତରେ ଭିତରେ ହସି ଉଠିଲା ଅଞ୍ଜଳି ।

॥ ୪ ॥

ଦଧିଆର ଆଉ କେହି ସେମିତି ନ ଥିଲେ । କେବଳ ଆଠବର୍ଷର ପୁଅଟିଏ, ଆଉ ସ୍ତ୍ରୀ । ଚାଳିଶ ବର୍ଷରେ ଦଧିଆର ମୃତ୍ୟୁ ହୋଇଗଲା । ପ୍ରତିଭାଶାଳୀ ଦଧିଆର ଅକାଳମୃତ୍ୟୁ ପଛରେ ଯେ ଖାଦ୍ୟାଭାବ ପ୍ରଧାନ କାରଣ, ତାହା ନିରଞ୍ଜନ ଭଲରୂପେ ବୁଝିପାରିଛି । ପୁଅକୁ ଆଠବର୍ଷ ହେଲେ ମଧ୍ଯ ସାରହୀନ ସ୍ୱାସ୍ଥ୍ୟ ଧରି ସେ ଚାରିବର୍ଷର ଶିଶୁ ଭଳି ଦିଶୁଛି, ଯେମିତି ମୁମୂର୍ଷୁ ଲତାର ଗୋଟିଏ କରମା ଫଳ । ସ୍ତ୍ରୀର ଅବସ୍ଥା ମଧ୍ଯ ତଦ୍ରୂପ । ଅଭାବ ଅସୁବିଧାରେ ପଡ଼ି ଅନେକ ଡେରିରେ ଦଧିଆ ବିବାହ କରିଥିଲା ପ୍ରାୟ ତିରିଶ ବର୍ଷରେ । ସେତେବେଳକୁ ସ୍ତ୍ରୀକୁ ମୋଟେ ପନ୍ଦରବର୍ଷ । ବହୁ କଷ୍ଟରେ ଦୁ' କୋଡ଼ି ଟଙ୍କା ସଂଗ୍ରହ କରି ସହରତଳି ଅଞ୍ଚଳର ଗୋଟିଏ ରାଣ୍ଡି ସ୍ତ୍ରୀଲୋକର ଝିଅକୁ ଖରିଦ କରି ଆଣିଥିଲା । ସେହି ଚାଳିଶଟି ଟଙ୍କା ରାଣ୍ଡି ସ୍ତ୍ରୀଲୋକଟିର ଭାଗ୍ୟ ପରିବର୍ତ୍ତନ କରିଦେଇଚ । ଗାଁର ଜଣେ ତାଲିବର ଲୋକ ନିଜର ବୁଢ଼ୀ ଗାଈଟିଏ କାଂସେଇକୁ ବିକି

ଡେିବାକୁ ସ୍ଥିର କରଥିଲେ । ମାତ୍ର ପାଞ୍ଚଟି ଟଙ୍କାରେ ଦଧିଆର ଶାଶୁ ବୃଦ୍ଧା ଗୋମାତାର ଜୀବନ ରକ୍ଷା କରି ସେଥି ସହ ନିଜର ଜୀବନ ମଧ୍ୟ ରକ୍ଷା କରିପାରିଛି । ସଯତ୍ନ ପାଳନ ଓ ନିୟମିତ ଖାଦ୍ୟପାନୀୟର ବ୍ୟବସ୍ଥା ଫଳରେ ବୂଢ଼ୀ ଗାଈ କଅଁଳେଇ ଗୋଟିଏ ଅଣ୍ଡିରା ବାଛୁରୀ ଜନ୍ମ କଲା । ଦୁଧ ଦନ୍ତ୍ୱ ବିକ ବୂଢ଼ୀ କିଛିକାଳ ବଞ୍ଚିବା ପରେ ଅଣ୍ଡିରା-ଟିକୁ ଉଚ୍ଚ ଦରରେ ବିକ ବୂଢ଼ୀ ଆଜ ଘର ଆଗରେ ଯୋଡ଼ିଏ ଦୁଧିଆଳୀ ଗାଈ ବାନ୍ଧିଛି । ଅବଶ୍ୟ କଂସେଇ ହାତରୁ ଉଦ୍ଧାର ପାଇଥିବା ସେହି ବୂଢ଼ୀ ଗାଈଟି ଅଜ ଆଉ ନାହିଁ । ଦୁଇ ବର୍ଷ ହେଲା ସେ ଯମ ହାତରେ ପଡ଼ିଛି । କିନ୍ତୁ ସେହି ଗତାସୁ ବୃଦ୍ଧା ଗୋମାତାର ପ୍ରସାଦରୁ ବୂଢ଼ୀର ହାତ ଭଲ ଡେଲନ୍ତିଆ ହୋଇଛି ବୋଲି ଗାଁରେ କଥା-ଭାଷା ହୁଅନ୍ତି ।

ଦଧିଆର ଜାତି କଣ ତାହା କେହି ସଠିକ ଜାଣନ୍ତିନି । କିଏ କହେ ମସ୍ତାନ କିଏ କହେ ନାହାକ, କିଏ କହେ ବଇଷ୍ଣିମ । ସେଥିଯୋଗୁଁ ତା'ର ଶବସତ୍କାରରେ ବଡ଼ ଅସୁବିଧା ଦେଖାଦେଲା । ତାକୁ ପଞ୍ଚରେ ଦେଇ ମଶାଣିରେ ନେଇ ପକେଇ-ଦେବାକୁ ସାହିର ଲୋକେ ପ୍ରସ୍ତାବ କଲେ । ସେହିପରି ଏକ କରୁଣ ପରିସ୍ଥିତି ଭିତରେ ଦଧିଆର ବିଧବା ସ୍ତ୍ରୀଠାରୁ ତାର ଘର ଖଣ୍ଡିକ କେମିତି ଖରିଦ କରାଯାଇପାରିବ, କେତେକ ତାହାର ମସୁଧା କରିବାରେ ମଧ୍ୟ ଲାଗିଲେ । ନିରଞ୍ଜନ ପହଞ୍ଚିବା ଯୋଗୁଁ ଅବସ୍ଥା ସମ୍ଭାଳା ପଡ଼ିଗଲା ।

ସେ ଚିତ୍କାର କରି କହିଉଠିଲା, "ଦଧିଆ କାହାକୁ ଆନନ୍ଦ ନ ଦେଇଛି ? କୋଉ ପଡ଼ାର ଲୋକେ ଦଧିଆ ବାଜାରେ ହାତ ଦେଲେ ତା'ର ତାନମାନରେ ମୁଗ୍‌ଧ ନ ହୋଇଚନ୍ତି କୁହ ? ସେତେବେଳେ ତାର ଜାତି ଖୋଜୁ ନ ଥିଲେ କେହି । ଏତେ-ବଡ ପ୍ରତିଭାର ପୁଣି ଜାତି ଖୋଜୁଚ ତମେ ? ଆଉ ତା'ର ଶବକୁ ପଞ୍ଚରେ ଦେଇ ମଶାଣିରେ ଫୋପାଡ଼ିଦବାକୁ ଭାବୁଚ ତମେ ?"

ଶେଷକୁ ଶବସତ୍କାରର ସବୁ ଖର୍ଚ୍ଚର ଭାର ବହନ କଲା ନିରଞ୍ଜନ । ପୁରୁଖା ଲୋକମାନେ ଫୁସ୍‌ଫାସ୍ ହେଲେ, ରାଣ୍ଡୀର ଛିଅ ଖଣ୍ଡିକୁ ହାତ କରିବା ପାଇଁ ବାବୁଙ୍କର ଏସବୁ ଯୋଗାଡ଼ । ଶେଷରେ ସେମାନଙ୍କର ସେ ଫୁସ୍‌ଫାସ୍ ନିରର୍ଥକ ହେଲା । କେତେ-ଜଣ ଯୁବକ ନିରଞ୍ଜନ ପାଖରେ ଆସି ଠିଆହେଲେ । ଫ୍ଲାଟ୍ ଆସିଲା । ବାଜା ମଧ୍ୟ ବାଜିଲା । ଆଡ଼ମ୍ବର ଭିତରେ ବାଦକ ଦଧିଆର ଶବ ପଟୁଆର ବାହାରିଲା, ଆଉ ସତ୍କାର ମଧ୍ୟ ହେଲା ।

ସେତେବେଳକୁ ରାତି ଆସି ପାହିଗଲାଣି । ରତ୍ନମଣି ଆଉ ଅଞ୍ଜଳି ଅଧିକ ଗଳ୍ପରଚନାର ଆଉ କିଛି ସୂତ୍ର ନ ପାଇ ଶେଷକୁ ତନ୍ଦ୍ରାଚ୍ଛନ୍ନ ହୋଇ ପଡ଼ିଲେଣି । ଏତିକି ବେଳେ ଦରଜାର କଡ଼ା ଖଡ଼ ଖଡ଼ ସହ ଦାଣ୍ଡ ଦୁଆରେ ନିରଞ୍ଜନର ପାଟି ଶୁଭିଲା । ଉଠିପଡ଼ି କବାଟ ଖୋଲିବାକୁ ଗଲା ରତ୍ନମଣି । ଅଞ୍ଜଳି ସେପର୍ଯ୍ୟନ୍ତ ଢୋଳଉଚି ।

"ମତେ ଖଣ୍ଡେ ଶୁଖିଲା ଲୁଗା ଦିଅ ନୂଆବୋଉ !"

ନିରଞ୍ଜନର କଥା ଶୁଣି ଚମକି ପଡ଼ିଲା ରତ୍ନମଣୀ । ସେ ଆଖି ଉଠେଇ ଦେଖିଲା—ନିରଞ୍ଜନର ଲୁଗାପଟା ସବୁ ଓଦା ସରସର । ବାହାରକୁ ସେ ଏବେ କୁହାଟୁ

କିଛି କହେ। କିନ୍ତୁ ଏ ଦୃଶ୍ୟ ଦେଖି ସେ ଚିତ୍କାର କରିଉଠିଲା, "ତମେ କଣ କଲ ନିର? କିଏ ବୋଲି କିଏ—ତମେ ତା' ଲାଗି ମଶାଣିକି ଯାଇ ମୁର୍ଦ୍ଦାର ପୋଡ଼ିଆସିଲ ନା କ'ଣ? ଅଂଜୁ! ଅଂଜୁ! ଲୋ ଅଂଜୁ······!"

କହି କହି ସେ ଘର ଭିତରକୁ ଚାଲିଗଲା। ଫେରିଆସି ନିରଞ୍ଜନ ହାତକୁ ଖଣ୍ଡେ ଗାମୁଛା ପକେଇଦେଲା। "ଗାମୁଛା ବଦଳି ଲୁଗାପଟା ପିଣ୍ଡାରେ ପକେଇ ଦେଇ ଆସ—ଧୋବଣୀ ଅସି ନବ—ହବନେଇଁ—ହବନେଇଁ—କେମିତି ତମ ସାଙ୍ଗରେ ଏଠି ଅଞ୍ଜୁ ରହିଚି କେଜାଣି—ବାର ଅନ୍ୟାଚାର, ସେଥିରେ ଅଞ୍ଜୁକୁ ଦୋଷ ଦଉଚନ୍ତି ଗାଁରେ—"

ସେତେବେଳକୁ ଅଞ୍ଜଳି ଆସି ସେଠାରେ ପହଞ୍ଚିଗଲାଣି। ତା ବିରୁଦ୍ଧରେ ଅପା ମୁହଁଁରେ ଅଭିଯୋଗର ସ୍ୱର ଶୁଣି ସେ ହସି ହସି ପଚାରିଲା—"କ'ଣ ଅପା! ଗାଁରେ ମୋ ଦୋଷ କ'ଣ ଦଉଚନ୍ତି? ମୁଁ କ'ଣ କଲି କି?"

ନିରଞ୍ଜନ ମୁହଁରେ ହସ। ସେ ଯେମିତି ନୂଆବୋଉଙ୍କ କଥାର ରହସ୍ୟ ଧରି ପାରିଲାଣି। ଅଞ୍ଜଳିର ପ୍ରଶ୍ନ ଶୁଣି ରତ୍ନମଣି କର୍ମିଉଠି କହିଲା, "ତୁ ଗୋଟାଏ ଦୁଧଖିଆ ପିଲା—କିଛି ସତିକା ଜାଣିନଉଁ—ସହରରେ ଖାଲି ରୂପଯୌବନ ଖେଳେଇ ବୁଲୁଥା—କୋଠାରେ ଗୋଟାଏ ଛୁଆପିଲା ତ କାନ୍ଦିଲା ନେଇଁ—ସ୍ୱାମୀଟାକୁ ଟିକେ···"

ଥପ୍ କରି ବନ୍ଦ ହୋଇଗଲା ରତ୍ନମଣିର କଥା। କାହିଁକି, ହଠାତ୍ ଏମିତି କ'ଣ ହେଲା ତା'ର କେହି ବୁଝିପାରିଲେ ନାହିଁ। ରତ୍ନମଣି ନିଜେ ଭିତରେ ଭାବିଲା, ଅଞ୍ଜଳି ସ୍ୱାମୀଙ୍କି ଅକଟ କରୁନେଇଁ ବୋଲି ସେ ତ ତାକୁ କହିବାକୁ ଯାଉଥିଲା ପଦେ କଥା! ସେଥିରେ ଓଲଟି ଯେ କାହିଁକି ବଖେଇଗଲା! ଓଃ—ଏଇ ସ୍ୱାମୀ ଶବ୍ଦଟା ତା' ପକ୍ଷରେ ବଡ଼ ସାଙ୍ଘାତିକ, ମର୍ମନ୍ତୁଦ। କିଛି ନ କହି ସେମିତି ଛିଡ଼ା ହୋଇ ରହିଲା ରତ୍ନମଣି।

ହଠାତ୍ ସେଠୁ ଚାଲିଯାଇ ଶେଯରୁ ଗୋବିନ୍ଦକୁ ଧରି ଫେରିଆସିଲା ଅଞ୍ଜଳି। ତାକୁ ଦି'ଥର ଉଚ୍ଚରେ ଉଚ୍ଚାଇଦେଇ କହିଲା, "କାନ୍ଦ୍‌ରେ ଗୋବିନ୍ଦ କାନ୍ଦ୍—ଏ କୋଠାରେ ପଟା ପିଲା କାନ୍ଦୁନେଇଁ ବୋଲି ତୋ ବୋଉ କହୁଚି—ତୁ ନିତି ଏଥର ସକାଳୁ ଉଠି କାନ୍ଦିବୁ—"

ଗାମୁଛା ବଦଳି ଘର ଭିତରକୁ ପଶିଆସିଲା ନିରଞ୍ଜନ। ଅଞ୍ଜଳିର ଏ ଅଭିନୟକୁ ସେ ଖୁବ୍ ଅନୁମୋଦନ କଲା ଯେମିତି ମନେ ମନେ। ଅଳିନ୍ଦରେ ଟିକେ ଠିଆ ହୋଇପଡ଼ି ସେ କହିଲା, "ନାଇଁ ରେ ଗୋବିନ୍ଦ, ସକାଳୁ ଉଠି ତୁ ଖୁବ୍ ହସିବୁ। ତୋ'ରି ହସରେ ଆମରି ନିଦ ଭାଙ୍ଗିବ। ବୋଉ ତୋର କେତେ ସୁନ୍ଦର ଦେଖିନା—ତୁ ପୁଣି କାନ୍ଦିବୁ କାଇଁକି—ସତେ ନୂଆବୋଉ, ଗୋବିନ୍ଦ ବିଲ୍‌କୁଲ୍ ତମରି ଚେହେରା ନେଇଚି।"

କହି କହି ଭିତରକୁ ଚାଲିଗଲେ ନିରଞ୍ଜନ।

ରତ୍ନମଣିର ଦେହ ସାରା ଲଜ୍ଜାରେ ଲାଲ୍ ହୋଇଗଲା ଯେମିତି । ସବୁ ଅଙ୍ଗକୁ ଥରେଇ ଗୋଟାଏ ଶିହରଣ ଖେଳିଗଲା । ଉଷାର କନକ ଆଭାରେ ଝଟକି ଉଠୁଚି ରତ୍ନମଣିର ରୂପ । ତାକୁ ଏକ ଆଖିରେ ଅନେଇ ରହିଲା ଅଞ୍ଜଳି । ଗୋବିନ୍ଦକୁ କୋଳକୁ ଟେକି ନେଇ କହିଲା, "ତୋର ବୋଉ ଭଲ ନା ଖୁଡ଼ୀ ଭଲ, କହିଲୁ ? ସକାଳୁ ସତ କହିବୁ !"

ଗୋବିନ୍ଦ ହସି ହସି କହିଲା, "ତୁ ।"

ଏତେବେଳେ କ୍ଷୀଣ ହସଟିଏ ହସି ରତ୍ନମଣି ଚାଲିଗଲା ତଳ ଗଂଜାକୁ ।

॥ ୫ ॥

ଖାଇବେଳେ ବିଛଣାରେ ପଡ଼ି ପଡ଼ି ନିରଞ୍ଜନ କେତେ କଥା ଭାବୁଥାଏ । ପ୍ରଥମେ ଚାକିରି ଜୀବନ କଥା ତା'ର ମନେପଡ଼ିଲା । ଗୋଟିଏ ସରକାରୀ ଅଫିସ୍‌ରେ କିରାଣି ଚାକିରି ସେ କରୁଥିଲା । ଷାଠିଏ ଟଙ୍କା ଦରମା । ଦୀର୍ଘ ପାଞ୍ଚବର୍ଷ ହେଲା ସେଇ କିରାଣି ଚାକିରି ସେ ଛାଡ଼ିଦେଇଛି । ଏଇ ପାଞ୍ଚବର୍ଷ ଭିତରେ ତାର ନିଜର ଅବସ୍ଥା ଯଥେଷ୍ଟ ବଦଳି ଯାଇଥିଲେ ମଧ୍ୟ ସେହି ଚାକିରି ଅବସ୍ଥାର କିଛି ପରିବର୍ତ୍ତନ ହୋଇନି । ଆଜି ଶହ ଶହ ଲୋକ ସେହିଭଳି ଷାଠିଏ ଟଙ୍କାର ଖଣ୍ଡେ ଚାକିରିକି ସତୃଷ୍ଣ ଆଖିରେ ଅନେଇ ରହିଛନ୍ତି । ବଜାରର ସଦର ରାସ୍ତା ଉପରେ ତାର ନିଜର ଖଣ୍ଡେ ଅଫିସ ଅଛି । ସ୍ୱାଧୀନତା ପାଇବା ପରେ ଭାରତ ଭୂମିରେ ଯାନ୍ତ୍ରିକ ଯୁଗ ପାଦ ସ୍ପର୍ଶ କରୁଛି । ସେଥିଯୋଗୁ କଳକବ୍‌ଜା ବିକିବାର ଏଜେନ୍‌ସି ନେଇ ନିରଞ୍ଜନ ଏହା ଭିତରେ ନିଜର ଭାଗ୍ୟ ପରିବର୍ତ୍ତନ କରିପାରିଛି ।

କିନ୍ତୁ ଯେତେବେଳେ ବ୍ୟବସାୟରେ ପ୍ରତିଷ୍ଠା ଜମାଇବା ପରେ ବଜାରରେ ଅଫିସ ଖଣ୍ଡେ ଖୋଲିଲା, ସେହି ସମୟର କଥା ତାର ବେଶି ମନେ ପଡ଼ିଯାଉଚି । ଅଫିସର କିରାଣି ଓ ଚପରାଶିର ଦରମା ଆଉ ଅଫିସ ଘରପାଇଁ ଭଡ଼ା ସବୁ କମ୍ପାନୀ ପକ୍ଷରୁ ମିଳିବ । ସେ କେବଳ ନିଜର ସୁବିଧା ଓ ଦାୟିତ୍ୱରେ ସେସବୁର ବ୍ୟବସ୍ଥା କରିନେବ । ଘର ଠିକ୍ ହେଲା । ବଢ଼େଇକି ବରାଦ ଦେଇ ଅଫିସ ପାଇଁ ଆସବାବପତ୍ର ତିଆରି ହୋଇଗଲା । ବାକି ରହିଲା କିରାଣି ଓ ଚପରାଶି ନିଯୁକ୍ତି । ଏଥିପାଇଁ ସେ ବଡ଼ ଭୁଲ କରିବସିଲା । ତାର ପ୍ରଧାନ ଭୁଲ ହେଲା ଯେ, ଏ ଦୁଇଟି କାମ ପାଇଁ ଖବରକାଗଜରେ ସେ ବିଜ୍ଞାପନ ପ୍ରକାଶ କରିଦେଲା ।

ନିରଞ୍ଜନର ଆଜି ମନେ ପଡ଼ୁଛି, କିରାଣି ଚାକିରି ପାଇଁ ତିନିଶହ ଦରଖାସ୍ତ ଆସିଥିଲା । ଏହି କିରାଣି ଚାକିରି ଲାଗି ଦରମା ରଖିଥିଲା ଅଶୀ । ଚପରାଶି ପାଇଁ ଚାଳିଶ । ଏସବୁ ଟଙ୍କା ଯୋଗାଇବେ ବଡ଼ ବଡ଼ ଶିଳ୍ପ ଅନୁଷ୍ଠାନ । ହୁଏତ କଟକ ଛଡ଼ା ଅନ୍ୟ ସହରରେ ଏଥିପାଇଁ ସେମାନେ ଯଥେଷ୍ଟ ଅଧିକ ଟଙ୍କା ଖର୍ଚ୍ଚ କରୁଥିବେ । ସେଥିରେ ସେ କମ୍ପାନୀକି ପୋଷିବା ପାଇଁ କମ୍ ଟଙ୍କା ଦେଇ କିରାଣି

ଆଜି ଚପରାଶିର ଜୀବନ ମାଗିବ କାହିଁକି ? ସେତେବେଳେ ଜଣେ ବନ୍ଧୁଙ୍କ କଥା ତାର ମନେ ପଡ଼ିଥିଲା । ବନ୍ଧୁଟି ତାକୁ କହିଥିଲେ ତାଙ୍କ ନିଜ ଦୁର୍ଦ୍ଦଶାର କାହାଣୀ···ଗୋଟିଏ ଶ୍ରେଷ୍ଠ ଖବରକାଗଜ ଅଫିସରେ ସେ ସାମ୍ବାଦିକ କାର୍ଯ୍ୟ କରନ୍ତି । ଜଣେ ମାରୁଆଡ଼ି ଧନପତି ଘଟଣାକ୍ରମେ ସେହି ଖବରକାଗଜର ମାଲିକ ହୋଇଥାନ୍ତି । ଆଉ ଘଟଣାକ୍ରମେ ଓଡ଼ିଶାର ଜଣେ ଯୁବକ ସେହି ଖବରକାଗଜର ହେଲେ ସମ୍ପାଦକ । ମାରୁଆଡ଼ି ଧନପତିକ ଯେଉଁ ଆଖ୍ୟା ଦିଆଯାଉ ପଛକେ, ସେ ବିଚରା ସାମ୍ବାଦିକ ଗୁଡ଼ିକ ପାଇଁ ସର୍ବନିମ୍ନ ଦରମା ପଞ୍ଚସ୍ତରୀ ଟଙ୍କା ରଖିଥିଲେ । କିନ୍ତୁ ସଭାମଞ୍ଚ ଉପରେ ଯେଉଁ ଯୁବକ ନିଜକୁ ନେତା ବୋଲି ଆଖ୍ୟାତ କରି ବେତନ ବୃଦ୍ଧି ଓ ଶ୍ରମିକ ମଙ୍ଗଳ ପାଇଁ ଗଳା ଫଟେଇ ଭାଷଣ ଦେଇଥାନ୍ତି, ସେ ପୁଣି ନିଜକୁ ଚୈଲାକ୍ତି କରିବା ପାଇଁ ହଠାତ୍ ମୁଖା ବଦଳେଇ ଦେଇ ବସିଲେ···ଆଜ୍ଞା, ପଚାଶ ଟଙ୍କାରେ ଢେର୍ ସାମ୍ବାଦିକ ମିଳିବେ । ମାରୁଆଡ଼ି ଧନପତି ଚାହିଁଲେ ଯୁବକ ସମ୍ପାଦକଙ୍କ ମୁହଁକୁ । 'ଭାରତସାରା ତାଙ୍କର ଅନେକ ଅଫିସ, ଅନେକ ଶିଳ୍ପ ଅନୁଷ୍ଠାନ ଅଛି । ଏତେ ଶସ୍ତାରେ ଶିକ୍ଷିତ ଲୋକ, ପୁଣି ସାମ୍ବାଦିକ ମିଳିବା କଥା କେଉଁଠି ଶୁଣି ନାହାନ୍ତି । ପୁଣି ଥରେ ଚାହିଁଲେ ଯୁବକର ମୁହଁକୁ ।

"ହାଁ···ହାଁ···ଓଡ଼ିଆ ଲୋଗ୍ ମିଲିଜାୟେଗା । କିଟକ୍‌ମେ ତୋ ଘରକା କିରାୟାଭି ବହୁତ୍ କମ୍ ହୈ ।"

ଅଦ୍ଭୁତ ଯୁକ୍ତି । କିନ୍ତୁ କଣ କରିବେ ସେ ? ନିଜର ସମ୍ପାଦକଙ୍କ ପ୍ରସ୍ତାବକୁ ସମର୍ଥନ କରିବା ଲାଗି କିଛି ଯୁକ୍ତି ତ ଦୃଶି ଦେବେ ।

ହିଁ···ବନ୍ଧୁଟି ପୁଣି କହୁଥିଲେ, ଏତେ ଚେଷ୍ଟା ପରେ ମଧ୍ୟ ସେ ସମ୍ପାଦକଙ୍କ ଆସନ ସୁଦୃଢ଼ ହେଲାନି । ସେ ବିଦାୟ ନେବା ପରେ ସମ୍ପାଦକମଣ୍ଡଳୀର ସାମ୍ବାଦିକମାନଙ୍କୁ ମାଲିକଙ୍କ ଦୃଷ୍ଟି ଆକର୍ଷଣ ପାଇଁ ଯାଇ ସୁବିଧା ମିଳିଲା । ବହୁ କଷ୍ଟରେ ମୂଳ ଦରମା ପରିବର୍ତ୍ତନ ହୋଇପାରିଲା । କିନ୍ତୁ ସେଥିପାଇଁ ପଶ୍ଚାତ୍ ବର୍ଷରର ସୁବିଧା ରଖାଗଲା ନାହିଁ । ଅର୍ଥାତ୍ ଯେଉଁ ଦିନଠାରୁ ନୂଆ ମୂଳ ଦରମା ଧାର୍ଯ୍ୟ କରାଗଲା, କେବଳ ସେହି ଦିନଠାରୁ ସେମାନେ ତାହା ପାଇବାକୁ ହକଦାର ହୋଇପାରିଲେ ।

ପ୍ରଥମେ ସେହି ବନ୍ଧୁଟିକୁ ଆଣି ଅଫିସ କାମରେ ନିଯୁକ୍ତ କରିବ ବୋଲି ନିରଞ୍ଜନ ସ୍ଥିର କରିଥିଲା । ସେ ଯୋଗ ଦେଲେ ତାଙ୍କ ପାଇଁ ଅଶୀ ସ୍ଥଳେ ଶହେ ଟଙ୍କା ଦରମା କରିଦେବ ବୋଲି ମଧ୍ୟ ନିରଞ୍ଜନ ଭାବିଥିଲା । କିନ୍ତୁ ବନ୍ଧୁଟି ସ୍ୱଇଚ୍ଛାରେ ଆସିଲେନି । ସାମ୍ବାଦିକତା ଭିତରେ ସାହିତ୍ୟ-ସାଧନା ହୋଇପାରିବ ବୋଲି ସେ ଇଚ୍ଛା ପ୍ରକାଶ କଲେ । ଏ କଥାରେ ନିରଞ୍ଜନ ସତ୍ପରାମର୍ଶନାସ୍ତି ଚେଷ୍ଟା କରି ଥରେ ହସି ଦେଇଥିଲା ମାତ୍ର । ଦୁଃଖର କଥା ସେ ପଚାଶ ଟଙ୍କିଆ ସାମ୍ବାଦିକତାରେ ଲାଗିଥିବା ମାରୁଆଡ଼ି ମାଲିକାନାର ସମ୍ବାଦପତ୍ର ଏବେ ଆଉ ନାହିଁ । ବହୁଦିନୁ ତାର ସମାଧି ହୋଇଯାଇଛି । କିନ୍ତୁ ସେହି ସାମ୍ବାଦିକ ଓ ସାହିତ୍ୟ-ସାଧକ ବନ୍ଧୁଟିକୁ ନିରଞ୍ଜନ ଏବେ ମଧ୍ୟ କଟକର

ରାସ୍ତାରେ ଦେଖେ । ବଗଲରେ ପାଣ୍ଡୁଲିପି ଯାକି ସେ ସେତେବେଳେ ପ୍ରକାଶକଙ୍କ ଦ୍ୱାରକୁ ଛୁଟିଥାଏ । ତାଳପକା ଜାମାରେ ବୋତାମ ନାହିଁ । ଗୋଡ଼ ଚଟିର ଛୁଣ୍ଡା ଫିତା ନାଲି ଧୂଳିର ସ୍ୱାଧୀନତାକୁ ଯେମିତି ସ୍ୱାଗତ କରୁଚି ।

ଏ ଦେଶର ସାହିତ୍ୟ-ସାଧକ···! ପଛରୁ ଅନେଇ ଅନେଇ ନିରଞ୍ଜନ ବେଳେ ବେଳେ ଭାବିବାକୁ ବାଧ ହୋଇପଡ଼େ । ଆଜ ସାଙ୍ଗରେ ଜୁଟିଯାଇଚି ଦଧିଆର କଥା । ଏ ଦେଶର ସଙ୍ଗୀତକଳାର ସାଧକ ଖାଦ୍ୟାଭାବରେ ଆଜ ମୃତ । ଗତ ରାତିରେ ସେ ତାହାର ଶବସତ୍କାର କରି ଆସିଛି ।

ହାତରେ ପାନ ଦି'ଖଣ୍ଡ ଧରି ଏହି ସମୟରେ ଗୋବିନ୍ଦ ଘର ଭିତରକୁ ଠୁକୁ ଠୁକୁ ହୋଇ ପଶିଆସିଲା । ପୁଅକୁ ଦେଖି ଆନନ୍ଦରେ ଉଲ୍ଲସି ଉଠି ଆଗ କଥା ସବୁ ଭୁଲିଗଲା ନିରଞ୍ଜନ । ତକ୍ଷ ଟେକି ନେଇ ତାକୁ ନିଜର ଗୁଣ୍ଡି ଉପରେ ବସେଇ ଦେଲା । ସେ ଆଁ କଲାରୁ ତା ପାଟିରେ ଖଣ୍ଡେ ପାନ ପୂରେଇଦେଲା ଗୋବିନ୍ଦ । ତାପରେ କିଛିକ୍ଷଣ ଧରି ଗୋବିନ୍ଦକୁ ନିର୍ନିମେଷ ଆଖିରେ ଚାହିଁରହିଲା ନିରଞ୍ଜନ । ତାର ଭାଇଙ୍କର ଏକମାତ୍ର ସନ୍ତାନ । ବଂଶର ଏକମାତ୍ର ପୁତ୍ର । ତାର ପିତାଙ୍କର ବଂଶ ରକ୍ଷା କରିବ ଏହି ଗୋବିନ୍ଦ । କିଛିକ୍ଷଣ ପରେ ଯେମିତି ଶିଶୁ ଗୋବିନ୍ଦ ଭିତରେ ତାର ଭାଇଙ୍କର ରୂପ ଫୁଟିଉଠିଲା । ଗୋବିନ୍ଦ ସତେ କଣ ତା ମା'ର ଚେହେରା ଆଣିଚି ନା ତାର ଭାଇଙ୍କର ? ବର୍ତ୍ତମାନ ଏଇ ଗୋବିନ୍ଦର ମୁହଁରେ ତା ମାଆର ସତ୍ତା କାହିଁ ? ସକାଳେ ତ ସେ ଠିକ୍ ତାର ମା'ର ଚେହେରା ଆଣିଲା ଭଳି ଦିଶୁଥିଲା ? ତେବେ ଏଇକ୍ଷଣି ସେ ଚେହେରା କାହିଁ ? ସେ କଣ ତା ହେଲେ ମିଛ କହି ଭାଉଜର ଘୃଣା କଲା ସେତେବେଳେ ?

ନିଜ ଭିତରେ ଏମିତି କେତେ ପ୍ରଶ୍ନ କଲା ନିରଞ୍ଜନ । କିଛି କୂଳ କିନାରା ପାଇଲାନି । କେବଳ ଆଖି ଆଗରେ ସେ ଗୋବିନ୍ଦକୁ ଦେଖିଲା···ଆଉ ତା ଭିତରେ ଦେଖିଲା କେଉଁ ସୁଦୂର ଭୂଇଁରେ ଏକାନ୍ତ ନିରାଶ୍ରୟ ଭାବରେ ନିହତ ହୋଇଥିବା ତାର ଅଗ୍ରଜଙ୍କର ରୂପ । ଭାଇ···ତମର ସ୍ତ୍ରୀ ଅଛି, ପୁତ୍ର ଅଛି, ଭାଇ ଅଛି, ଆଉ ଗୋଟାଏ ବିରାଟ ବଂଶ ଅଛି । କିନ୍ତୁ ତମର ଅନ୍ତିମ କାଳରେ ତମ ପାଖରେ କେହି ଠିଆ ହେଲେ ନି ···କାହାର ମୁହଁ ଦେଖିଲନି ତମେ···ତମକୁ କଣ ସେମାନେ ଟିକି ଟିକି ହାଣିଦେଲେ ···କେତେ ଆକୁଳ ହେଇ ସେତେବେଳେ ତମେ ଆମକୁ ସବୁ ଖୋଜୁଥିବ···

ନିରଞ୍ଜନର ସକଳ ଅଙ୍ଗପ୍ରତ୍ୟଙ୍ଗ ଥରିଉଠିଲା । ଭିତରେ ଗର୍ଜିଉଠିଲା ଚରମ ନିରାଶ୍ରୟତାର ଚିତ୍କାର । ଆଖିକୋଣରୁ ଦୁଇଧାର ଅଶ୍ରୁ ବହିଗଲା । ସେଥିରେ ଗୋବିନ୍ଦର ରୂପ କ୍ରମେ ଅସ୍ପଷ୍ଟ ହୋଇଉଠିଲା । କିନ୍ତୁ ଗୋବିନ୍ଦର ସତ୍ତା ତା ମନରେ ଅତି ଦୃଢ ହୋଇ ରହିଛି ! ···ଏଇ ଗୋବିନ୍ଦର ନାଁ ତ ତମର ସେତେବେଳେ ମନେ ପଡ଼ୁଥିବ···ନାମହିଁ ବ୍ରହ୍ମ···ଗୋବିନ୍ଦର ନାଁ ତଳେ ତ ଅଛନ୍ତି ଭଗବାନ, କାହିଁ···କେହି ତ ଶୁଣିଲେ ନି ଆଉ···

ଭାବି ଭାବି ନିରଞ୍ଜନର ମୁଣ୍ଡଟା ଗରମ ହୋଇଗଲା ଯେମିତି । ଭୁଲ··· ଭୁଲ···ସବୁ ଭୁଲ । ଭଗବାନ ଅଛନ୍ତି କି ନା ସନ୍ଦେହ । ହିନ୍ଦୁ-ମୁସଲମାନ ହଣାକଟାରେ

କେତେ ନରଶ୍ରପୁ ଶିଶୁ ମଧ୍ୟ ନିହତ ହେଲେ । ସେମାନେ ସମସ୍ତେ କଣ ପାପ କରିଥିଲେ ? ଆଜି ଯେଉଁମାନେ ଏ ଜଘନ୍ୟ ହତ୍ୟାକାଣ୍ଡ ଭିଆଇଲେ ସେମାନେ ତ ଆନନ୍ଦରେ ବଞ୍ଚି ପାରିଛନ୍ତି···

କ୍ଷଣକ ପାଇଁ କିଛି ଭାବି ପାରିଲାନି ନିରଂଜନ । ସେହି ଅଶରୀରୀ ସତ୍ତା ବିରୁଦ୍ଧରେ ତା ଭିତରେ ନିଷ୍ଠୁର କ୍ରୋଧ ଯେମିତି ପୁଂଜୀଭୂତ ହେବାକୁ ଲାଗିଲା । ସେ ମନେ କଲା, ଭଗବାନଙ୍କ ଅସ୍ତିତ୍ୱ ଅପେକ୍ଷା ନାସ୍ତିତ୍ୱରେ ବିଶ୍ୱାସ କରିବା ଆହୁରି ଅଧିକ ଶ୍ରେୟ । ସେଥିରେ ଆଶ୍ୱସ୍ତି ଅଛି । ମଣିଷର ଶକ୍ତିର ସୀମା ଉପରେ ଦୃଢ ପ୍ରତ୍ୟୟ ଜନ୍ମିବା ଭିତରେ ଯେଉଁ ଆଶ୍ୱସ୍ତି ତାହା ଅନ୍ୟ କେଉଁଥିରୁ ମିଳିପାରିବନି···। ଅନ୍ତରରେ ତାର କିଏ ଯେମିତି ଗୋଟାଏ ବିରାଟ ଚିତ୍କାର କରି କହିଉଠିଲା ସବୁ ମିଥ୍ୟା ।

ଯେଉଁଦିନ ହିରଣାକ୍ଷର ମୃତ୍ୟୁ ସମ୍ବାଦ ପାଇଲା ହିରଣ୍ୟକଶିପୁ, ସେ ହୁଏତ ଏମିତି ଚିତ୍କାର କରି ଉଠିଥିଲା ସ୍ରଷ୍ଟାଙ୍କୁ ଅସ୍ୱୀକାର କରି । କିନ୍ତୁ ଅମିତଶକ୍ତିସମ୍ପନ୍ନ ହିରଣ୍ୟକଶିପୁ ଆଉ କଲିକତ୍ତା କମ୍ପାନୀର ଏଜେଣ୍ଟ ନିରଞ୍ଜନ ଭିତରେ ଆକାଶ ପାତାଳ ପ୍ରଭେଦ । ସ୍ରଷ୍ଟାର ମୁହାଁମୁହିଁ ଛିଡ଼ା ହେବାର ତାର ଶକ୍ତି କାହିଁ ? ଗୋବିନ୍ଦକୁ ଘୁଞ୍ଚରୁ ଉଠେଇ ଧରି ନୀରବରେ ଉଠି ଚାଲିଗଲା ଆଗର କାନ୍ଥ ପାଖକୁ । ସେଠି କୌଣସି ବଡ଼ କମ୍ପାନୀର ଗୋଟାଏ କ୍ୟାଲେଣ୍ଡର ଟଙ୍ଗା ହୋଇଛି । କ୍ୟାଲେଣ୍ଡର ଦେହରେ ଚକ୍ରଧାରୀ ଏକ ବିଷ୍ଣୁ ମୂର୍ତ୍ତିର ଛବି ।

ସେହି ଛବିଟିକୁ ଭଲ କରି ତାନେ ନିରୀକ୍ଷଣ କଲା ନିରଂଜନ । ତାପରେ କ୍ୟାଲେଣ୍ଡରକୁ ଗୋଟେଇ ଆଣି ଧରିଲା ହାତରେ । ଖେଳନାର ସାମଗ୍ରୀ କରିବା ଉଦ୍ଦେଶ୍ୟରେ ଗୋବିନ୍ଦ ହାତ ବଢ଼େଇଲା ସେଖଣ୍ଡକୁ ନେବା ପାଇଁ । ତାକୁ ନୀରବରେ କ୍ୟାଲେଣ୍ଡରଟି ଦେଇଦେଲା ନିରଂଜନ । କାଖରୁ ଖସିପଡ଼ି ଠୁକୁ ଠୁକୁ ହୋଇ ଘରୁ ବାହାରିଗଲା ଗୋବିନ୍ଦ ।

ପଛରୁ ଚାହିଁରହିଲା ନିରଂଜନ ଗୋବିନ୍ଦକୁ । ଭାଇଙ୍କର ପୁଅ ···ଏ ବଂଶର ଏକମାତ୍ର ରକ୍ଷକ ଏଇ ପିଲାଟି । କେବଳ ବଞ୍ଚିରହୁ ।

॥ ୭ ॥

ଅଞ୍ଜଳି ଓ ରତ୍ନମଣି ଗପ କରି କରି ବସି ସିଲେଇ କରୁଥାନ୍ତି । କଣ ଗୋଟିଏ ସିଲେଇ ରତ୍ନମଣି ବଢ଼େଇ ଦେଉଥାଏ ଅଞ୍ଜଳିକି । ଦୁଇଜଣଯାକ ତଥାକଥିତ ଖାନ୍‌ଦାନି ଘରୁ ଆସିଛନ୍ତି । ମଧ୍ୟବିତ୍ତ ବୁନିଆଦି ଘରର ଝିଅ । ହାତରେ କ୍ୟାଲେଣ୍ଡର ଖଣ୍ଡିକୁ ଧରି ଗୋବିନ୍ଦ 'ଠାକୁର ଠାକୁର' କହି ସେଠାରେ ଯାଇ ପହଞ୍ଚିଲା । କ୍ୟାଲେଣ୍ଡର ଖଣ୍ଡକୁ ଦେଖି ଚମକି ଉଠିଲା ଅଞ୍ଜଳି, ''ଆରେ, ରଖିଦେଇ ଆ, ରଖିଦେଇ ଆ, ଦାଦା ଗାଳିଦେବେ··· । ଗୋବିନ୍ଦ, ତତେ ମୁଁ ଗୋଟାଏ ଭଲ ଛବି ଦେବି, ଯା···ତାକୁ ରଖି ଦେଇ ଆ···''

ରକ୍ନମଣି ଅନେଇଲା ଗୋବର୍ଦ୍ଧନକୁ । ସତେ ତ ହାତରେ ତାର ନିରଞ୍ଜନଙ୍କ ଘରର ସେହି ସୁନ୍ଦର ଛବିଟି । ଠିକ ଠିକ ହୋଇ ଚିହ୍ନିବା ଛଡ଼ା ଗୋବର୍ଦ୍ଧ ହାତରେ ସେ ସୁନ୍ଦର ଛବିର ପରିଣତି ଆଉ କଣ ହେବ ? ତାକୁ କେମିତି ପାଇଲା ଇଏ ! ନିରଞ୍ଜନ ତ ନିଶ୍ଚେ ରାଗିବେ··· । ହାତରେ ସିଲେଇ ରଖିଦେଇ ଭାବି ଭାବି ଉଠିପଡ଼ିଲା ରକ୍ନମଣି ।

କିନ୍ତୁ ଏସବୁରେ ଗୋବର୍ଦ୍ଧନର କୌଣସି ପରିବର୍ତ୍ତନ ହେଲାନି । ମୁହଁରେ ତାର ନିର୍ବିକାର ଆନନ୍ଦର ହସ ସେମିତି ଲାଗିରହିଛି । ସେ ହସି ହସି କହିଲା, "ଦାଦା ତ ମତେ ଆଜୁ ଦେଲେ । କହିଲେ, ଯା ଖେଳିବୁ···"

ଆଖିକ ତାକୁ ଉପରକୁ ଟେକିଦେଇ ଚାହିଁରହିଲା ଅଞ୍ଜଳି । ତାର ଆରା-ଧନାର ଛବି ଏଇଟି···ସେ ମଧ୍ୟ ସେ କଥା ଜାଣନ୍ତି । ଆଉ ସେ ନ ଦେଇଥିଲେ ଏତେ ଉପରକୁ ପିଲାଟାର ହାତ ପାଇଥାନ୍ତା କେମିତି ?

ଉଠିପଡ଼ିଲା ଅଂଜଳି । ଡଗ୍ ଡଗ୍ କରି ଝୁଲିଗଲା ଆର ଖଂଜାକୁ । ଘର ଭିତରେ ନିରଂଜନ ସେ ପର୍ଯ୍ୟନ୍ତ ବୁଲୁଚି । ଭିତରେ ଯେପରି ସଂଗ୍ରାମଶୀଳ ମନୋଭାବ । ଛାତି ଉପରେ ଦୁଇ ହାତ ଛନ୍ଦା ହୋଇଚି । ଯେମିତି କାହା ସାଙ୍ଗରେ ମୁକାବିଲା କରି ନେଉଚି ସିଏ ।

"କାହିଁକି ଏ ଛବିଟା କଣ ହେଲା ?"

ଅଂଜଳିର ଉପସ୍ଥିତିକି ନିରଂଜନ ସେ ପର୍ଯ୍ୟନ୍ତ ଲକ୍ଷ୍ୟ କରି ନ ଥିଲା । ଠିକେ ଅପ୍ରତିଭ ହୋଇ ସେ ଚାହିଁଦେଲା ଅଂଜଳିକି । ତାପରେ ପୁଣି ବୁଲିବାକୁ ଲାଗିଲା ।

ଏଥିରେ ଅଂଜଳି ଯଥେଷ୍ଟ ଅପମାନିତ ମନେ କଲା । ସ୍ୱାମୀର ଏପରି ପରିବର୍ତ୍ତନର ହେତୁ ସେ କିଛି ଅନୁମାନ କରିପାରିଲାନି । ଆଖି ପଛରେ ତାର ଲୁହ ଜମି ଉଠିବାର ଉପକ୍ରମ ହେଲାଣି । ମୁହଁ ଥନ ଥନ କରି ସେ ପୁଣି ପ୍ରଶ୍ନ କଲା—

"ତମେ ତାକୁ ଗୋବର୍ଦ୍ଧନକୁ ଦେଇଦେଇଛ ?"

ଏଥର ଉତ୍ତର ଦେଇ ନିରଂଜନ ଏକ ନିଃଶ୍ୱାସରେ କହିଗଲା, "ଏଠି ଛବି ନ ଥିଲା, ଗୋଟାଏ କ୍ୟାଲେଣ୍ଡରରେ ଚକଧାରୀ ଗୋଟାଏ ନେଳିଆ ଲୋକର ଛବି ।"

"ତମେ କଣ କହୁଚ ?"

"ମୁଁ ଠିକ୍ କହୁଚି ଅଂଜଳି ! ଗୋଟାଏ ଲୁହାଲକଡ଼ କମ୍ପାନୀର କି ଅଧିକାର ଅଛି ଏପରି ଛବି ତିଆରି କରିବାରେ ?"

ଅଂଜଳି ଖୁବ୍ ଅସହିଷ୍ଣୁ ହୋଇପଡ଼ିଲା । ତା ଅପେକ୍ଷା ନିରଞ୍ଜନର ଏପରି ଆକସ୍ମିକ ପରିବର୍ତ୍ତନରେ ସେ ଅତିଶୟ ବିସ୍ମିତ ହେଲା । ଅବଶେଷରେ ବୀଣାର ସବୁ ତାରଗୁଡ଼ାକ ଯେମିତି ଛିଡ଼ିଗଲା, ସେ ଯେହିଭଳି ସ୍ୱରରେ ଚିତ୍କାର କରି କହିଲା—

"ସେ ଛବିକି ମୁଁ କେତେ ଭଲ ପାଏ ତମେ ତ ଜାଣ ?"

ହସିଉଠିଲା ନିରଞ୍ଜନ ।

"ତମର ଭଲ ପାଇବାର ମୁଁ କିଛୁ ଅମର୍ଯ୍ୟାଦା କରିନି ଅଞ୍ଜଳି ! ଆମର ସବୁ ସୁଖ ଆନନ୍ଦର ପାତ୍ର ଗୋବିନ୍ଦକୁ ମୁଁ ତମର ଭଲ ପାଇବା ସମର୍ପି ଦେଇଚି । ଯେଉଁ ଅଶିଖି ଠାକୁର ହାତରେ ଗୋବିନ୍ଦର ବାପା ଗୋଟିଏ ଖେଳନା ଭଳି ଖଣ୍ଡ ଖଣ୍ଡ ହୋଇଯାଇଚି, ସେହି ଅଶିଖି ଠାକୁର ଆଜି ଗୋବିନ୍ଦ ହାତରେ ହେଇଚି ଖେଳନା ।"

ଆଉ ସମ୍ଭାଳି ପାରିଲାନି ଅଞ୍ଜଳି । ଗୋଟିଏ ଅସହାୟ ଶିଶୁ ଭଳି ହେ କରି କାନ୍ଦି ଉଠିଲା । ନିରଞ୍ଜନ ନିରୁପାୟ ହୋଇ ଚାହିଁ ରହିଲା ତା ମୁହଁକୁ ।

"ଆଉ ତମେ କଣ କଲନା, ବାପା ଛେଉଣ୍ଡ ସେଇ ଗୋଟିଏ ବୋଲି ପିଲା ମୁଣ୍ଡରେ ସବୁଯାକ ଅନ୍ୟାୟ ଲଦି ଦେଲ ।"

ଏତିକି କହିସାରି ଆହୁରି ଜୋରରେ କାନ୍ଦିବାକୁ ଲାଗିଲା ଅଞ୍ଜଳି । ଆଉ କିଛି ଉପାୟ ନ ପାଇ ନିରଞ୍ଜନ ସେହି ପୁରୁଣା କଥା ପଦକ କହିଲା, "ତମେ କାନ୍ଦିଲ ଅଞ୍ଜଳି !"

"ସେଥିପାଇଁ ଏବେ ଯୋଗାଡ଼ କରି ପୁଣି ମତେ ଏକଥା ପଚାରୁଚ । ଖଟ-ବେଳଯାକ ଶୋଇ ଶୋଇ ତମେ କଣ ମୋର ଅଶାନ୍ତି ସୃଷ୍ଟି ପାଇଁ ଖାଲି ଚିନ୍ତା କରୁଥିଲ ?"

ଅତି ନିର୍ମମ ପ୍ରଶ୍ନ । ନିରଂଜନ ଅନୁଭବ କଲା, ତା ମୁଣ୍ଡରେ ବଜ୍ର ଖସି ପଡ଼ିଥିଲେ ବି ସେ ଏତେ ଆଶ୍ଚର୍ଯ୍ୟ କିମ୍ବା ବ୍ୟଥିତ ହୋଇ ନ ଥାନ୍ତା । ପଦେ ହେଲେ କଥା ନ କହି ନିରଞ୍ଜନ ବାହାରିଗଲା ପଦାକୁ । ଯାଇ ତଳ ଖଞ୍ଜାରେ ପହଞ୍ଚିଲା । ଦେଖିଲା ମା ପାଖରେ ବସି କେତୋଟି ଟଗର ଫୁଲ ଆଣି ଥୋଇଚି ସେହି ଛବି ଉପରେ ଗୋବିନ୍ଦ, ଆଉ ଖେଳନାର ଟିଣ୍ଟ ଟିଣ୍ଟ ଗିନି ହଳେ ଧରି ତା ଆଗରେ ବଜାଉଚି । ପୁଣି ନୂଆଟାବୋଉ ସିଲେଇ କରୁଚନ୍ତି ଗୋଟିଏ ଆଣୁଆ ଗୋପାଳର ଛବି ।

ନିରଞ୍ଜନକୁ କେହି ଦେଖି ନାହାନ୍ତି । ମାଆ ଆଉ ପୁଅ ଉଭୟେ ନିଜ ନିଜ କାମରେ ନିବିଷ୍ଟ । ସ୍ୱାମୀ ଆଉ ପିତାର ମୃତ୍ୟୁ ଲାଗି ସେମାନେ କେହି ଭଗବାନଙ୍କୁ ଅଭି-ଯୁକ୍ତ କରୁ ନାହାନ୍ତି । କହିବାକୁ ଗଲେ ମୃତ୍ୟୁ ହାତରୁ ରକ୍ଷା ପାଇବା ପାଇଁ ସେମାନେ ଓଲଟି ସେହି ଭଗବାନଙ୍କୁ ଯେମିତି ଆରାଧନା କରୁଛନ୍ତି ! ଅହେତୁକ ଆସ୍ତିକ ଦୁନିଆରେ ନିରଞ୍ଜନର ହେତୁବାଦ ନାସ୍ତିକତା ନିଷ୍ଠୁର ଭାବରେ ପରାଜିତ ହୋଇପଡ଼ିଲା ଯେମିତି । ସେମାନଙ୍କ ପାଖରେ ନିଜର ଅସ୍ତିତ୍ୱର କୌଣସି ସୂଚନା ନ ଦେଇ ଫେରିଆସିଲା ପୂର୍ବ ସ୍ଥାନକୁ ।

ସେ ଫେରିଆସି ଦେଖିଲା, ବିଛଣାରେ ପଡ଼ିରହିଛି ଅଞ୍ଜଳି । ହାତରେ ଗୋଟିଏ ସିଲେଇର ଫ୍ରେମ୍ ଧରା ହୋଇଚି । ସିଲେଇରେ ଲେଖା ହୋଇଛି, "ଓଁ ତତ୍‌ସତ୍ ।" ଉପରେ ଗୋଟିଏ ପ୍ରଜ୍ୱଳିତ ପ୍ରଦୀପର ଅଙ୍କନ ।

"ତା ହେଲେ ମୁଁ ଏଠି ଏକା ।"

ନିଜର ସ୍ୱରରେ ନିଜେ ଚମକି ପଡ଼ିଲା ଆଜି ନିରଞ୍ଜନ । ସେ ମନେକଲା, ସେ ଆଉ କିଛି ବିଦ୍ରୋହ କରନ୍ତା । ସତ୍ୟ ନାମରେ ବୃକ୍‌ସିଦ୍ଧ ଅସତ୍ୟର ଯେଉଁ ଶୋଭାଯାତ୍ରା ଚାଲିଛି, ତାକୁ ପୋଡ଼ି ଜାଳି ଧ୍ୱଂସ କରିଦିଅନ୍ତା ।

ଭାବନା ଭିତରେ ଗୋଟାଏ ଚୌକି ଟାଣି ନିରଞ୍ଜନ ବସି ପଡ଼ିଲା । ପ୍ରାୟ ତିରିଶ ମିନିଟ ତଳର ଅଞ୍ଜଳି ଏବେ ବଦଳି ଯାଇଚି । ତାର ସ୍ୱାମୀ ଦେବତା ନୁହେଁ, ଯେମିତି ଦୈତ୍ୟ । ତାକୁ ନ ଅନେଇ ସେ ଅନେଇ ରହିଚି ଚାଲିକୁ । ବାହାର ଦୃଷ୍ଟିକୁ ଅନୁଧାବନ କରି ନିରଞ୍ଜନ ମନରେ ଦୁଷ୍ଟ କଳ୍ପନା ଖେଳିଯିବାକୁ ଲାଗିଲା । ଚାଲରେ ନିଆଁ ଲାଗି ଯାନ୍ତା କି ଏଇକ୍ଷଣି ! ଓଠ କାମୁଡ଼ି ପକେଇଲା ନିରଞ୍ଜନ । ଚୌକିଟାକୁ ଖଟ ପାଖକୁ ଟାଣିନେଇ କରୁଣ ବାକ୍ୟରେ ଚାହିଁଲା ଥରେ ଅଞ୍ଜଳିକି । ଅଞ୍ଜଳିର ଦୃଷ୍ଟିରେ ପରିବର୍ତ୍ତନ ନାହିଁ । କୌଣସି ଦ୍ୱିଧା ନ କରି ଢଳିପଡ଼ିଲା ସେ ଅଞ୍ଜଳିର ଗୋଡ ଉପରେ । ସେହିପରି ଅବସ୍ଥାରେ ତାରି ପାଟିରୁ ପଦେ କଥା ଶୁଭିଲା—"ତମେ ଆଉ କାନ୍ଦୁଚ ଅଞ୍ଜଳି !"

॥ ୭ ॥

କିଛି ଦିନ ଗତ ହୋଇଯାଇଛି । ଏହା ଭିତରେ ନିରଞ୍ଜନ କଟକରେ ନ ଥିଲା । କେତେକ ଜାଗାରେ 'ଓପନ୍ ଡେଭଲପ୍‌ମେଣ୍ଟ' ପାଇଁ ଦାବୀ ଥିବାରୁ ସେସବୁ କାମ ଶେଷ କରିବା ଉଦ୍ଦେଶ୍ୟରେ କଟକ ବାହାରକୁ ଚାଲି ଯାଇଥିଲା । ତା ସତ୍ତ୍ୱେ କେତେକ କଲକବ୍‌ଜା ସମ୍ବନ୍ଧରେ ଜଣେ ଦି'ଜଣ ବ୍ୟବସାୟୀଙ୍କ ପକ୍ଷରୁ ଆପତ୍ତି ମଧ୍ୟ ହୋଇଛି । ସେସବୁ ଅସୁବିଧା ଦୂର କରିଦେବା ପାଇଁ ନିରଞ୍ଜନ କମ୍ପାନୀକି ଜଣେଇ ଦେଇଚି । କମ୍ପାନୀ ପକ୍ଷରୁ ମିସ୍ତ୍ରୀ ଆସିଲେ ନିରଞ୍ଜନକୁ ପୁଣି ବାହାରକୁ ଯିବାକୁ ପଡ଼ିବ ।

କଟକ ଫେରିବା ପରେ ଘରେ ପହଞ୍ଚି ହଠାତ୍ ଦାଣ୍ଡ ଦ୍ୱାର ମୁହଁରେ ଆଖି ତାର ଅଟକିଲା । ଦରଜାର ଦୁଇ ପାଖରେ 'ମୀନ ମିଥୁନ'ର ଚିତ୍ର । ଉପର ବନ୍ଧ ଉପରକୁ ନବଗ୍ରହଙ୍କ ଛବି । ସେସବୁ କଟକର ଚିତ୍ରକର ସାହିର କାରିଗର ହାତରେ ଅଙ୍କା । ଭଲ, ଭଲ, କୋଣାର୍କର ନବଗ୍ରହଫଳକ ପୃଥିବୀର ଶିଳ୍ପକଳା କ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିଛି । ବୌଦ୍ଧଯୁଗରେ ଧର୍ମକୁ ଆଶ୍ରୟ କରି ଭାରତରେ ଯେଉଁ ଶିଳ୍ପକଳାର ପ୍ରାଚୁର୍ଯ୍ୟ ଘଟିଥିଲା, ସେ ସମ୍ବାଦ ମଧ୍ୟ ନିରଂଜନ କିଛି କିଛି ରଖିଛି । କିନ୍ତୁ ଯେ କୌଣସି ଚିତ୍ର ହେଉ, ତାହା କଳାପୂର୍ଣ୍ଣ ହେବା ଉଚିତ ।

ଦ୍ୱାରବନ୍ଧ ଉପରେ ନବଗ୍ରହ ଚିତ୍ର ଦେଖି ସେ ଏତିକି କେବଳ ଭାବିଲା । ସେଥିରେ ନିଜକୁ ଅଧିକ ଆଉ ଫନ୍ଦାମିଚ କଲା ନାହିଁ ।

ତାପରେ ଅଫିସକୁ ଯାଇ କାଗଜପତ୍ର ଦେଖି ଆସିବା ପରେ ତା ଭିତରେ ଅନୁଶୋଚନା ଦେଖା ଦେଲା । ଏହାଭିତରେ ସେ ଦଧିଆ ଘର କଥା ମୋଟେ ଭାବିନି ।

କୌଣସିମତେ ଶୁଦ୍ଧ ହୋଇ ପଢ଼ିବାକୁ ସେ ମୋଟ ଦଶଟି ଟଙ୍କା ଦେଇଥିଲା । ପନ୍ଦର ଦିନ ଗତ ହୋଇଗଲାଣି । ସତେ ସେମାନେ ଚକ୍ରାନ୍ତ କେମିତି ! ଅଫିସରୁ ଫେରି ସିଧାସଳଖ ସେ ଯାଇ ଦଧିଆ ଘରେ ପହଞ୍ଚିଲା ।

ଏଇ ଘର ତ ! ଏ କଣ ! ଆଗରେ ବନ୍ଧା ଗାଈ ! କିଏ ଏଇ ବୁଢ଼ୀ ? ଏ ତିଳକଧାରୀ ମହାରାଜ ପୁଣି କିଏ ?

"ଆରେ ଦଧି, ଦଧି, ଆରେ ଦଧି ଅଛୁ ?"

ତେଲ ଜୁକୁ ଜୁକୁ ବାହାରେ ବୁଢ଼ୀ ଖଣ୍ଡେ ନେଳୀ କସ୍ତା ପିନ୍ଧିଛି । ନିରଞ୍ଜନର ଏ ଜିଜ୍ଞାସାରେ ଯେ ଅତିଷ୍ଠ ହୋଇ କହିଉଠିଲା—

"ମଲା, ଆମ୍ଭେ ତ ଏଠି ବସିଚୁ । କଣ କଥା କହୁନା, ଆଉ ଦଧି ଦଧି ହଉଚ କାହିଁକି ?"

ବୁଢ଼ୀର ଏ ସ୍ୱରରେ ଅର୍ଥନୈତିକ ଝଙ୍କାର ରହିଛି । ନିରଞ୍ଜନ ମଧ୍ୟ ସେକଥା ଅନୁଭବ କରିପାରିଲା । ବୁଏତ କେହି ଗରାଖ ଆସି ମାସ୍ଦାବୀ ରୂପରେ ଦଧିଆର କୁଡ଼ିଆ ଖଣ୍ଡିକୁ ଗ୍ରାସ କରିବାକୁ ଉପକ୍ରମ କଲେଣି । ସେସବୁର ରହସ୍ୟ ଭେଦ କରିବା ଉଦ୍ଦେଶ୍ୟରେ ବୁଢ଼ୀର କଥାକୁ ନିର୍ବିକାରରେ ହଜମ କରିନେଲା ନିରଞ୍ଜନ ।

କିନ୍ତୁ ହଠାତ୍ ଘର ଭିତରୁ ନାରୀକଣ୍ଠର ଅନର୍ଥ-ନୈତିକ ଝଙ୍କାର ଭାସି-ଆସିଲା ।

"ତୁ କାହାକୁ କଣ କହୁଚୁ ମା ! ଦଧିଆ, ରେ ଦଧିଆ, ବାବୁ ଆଇଚନ୍ତି, ମସିଣା ନେଇ ପକେଇଦବୁ ପିଣ୍ଡାରେ । ବସିବାକୁ କହ, ଆଉ କହିବୁ ମା' ଦଣ୍ଡବତ ହଉଚି..."

ନିରଞ୍ଜନ ଆଶ୍ୱସ୍ତ ହେଲା, ଏମାନେ ତା ହେଲେ ଭଲରେ ଅଛନ୍ତି । ଏ ବୁଢ଼ୀ ତା ହେଲେ ଦଧିଆର ଶାଶୁ । ଭଲ ଶାଶୁଟିଏ ତ ! ବୁଢ଼ୀର ଅଣ୍ଟି କରାଟରେ ପଇସା ବି କିଛି ଅଛି । ଭଲ, ଭଲ ।

ବୁଢ଼ୀ ଟିକେ କାଇଲ ହୋଇଗଲା । ମସିଣା ବିଛେଇ ଦେଇ ଦଧି ନିରଞ୍ଜନକୁ ନମସ୍କାର କରୁ କରୁ ଭୂଇଁରେ ତାର୍ ମୁଣ୍ଡ ବାଡ଼େଇ ହୋଇଗଲା । ତାକୁ ଉଠେଇ କୋଳକୁ ଟାଣିନେଲା ନିରଞ୍ଜନ । ମା'ର ଦଣ୍ଡବତ କଥା ଦଧିକୁ ଆଉ କହିବାକୁ ହେଲାନି । ମା' ନିଜେ ସେ କାମଟା ପ୍ରକାରାନ୍ତରେ ସାରି ଦେଇଥିଲା । ପିଣ୍ଡାରେ ବସି-ପଡ଼ିଲା ନିରଞ୍ଜନ ।

ଦଧିର ପିଠି ଥାପୁଡ଼େଇ ଥାପୁଡ଼େଇ ନିରଞ୍ଜନ କହିଲା—"ବାପାର ବାଜା ଫାଜା ସବୁ ରଖିଚ ନା ! ରଖିଥିବ, ଯତ୍ନକରି ରଖିଥିବ । ତୁ ଦିନେ ବାପା ଭଳି ବଡ଼ ବାଏକ ହବୁ । ବୁଝିଲୁ ?"

ଦଧି ମୁଣ୍ଡ ହଲେଇ ସମ୍ମତି ଜଣେଇଲା ।

"ଏକା ବଇଁଶୀଗୁଡ଼ାକ ନାଇଁ । ବାପା ବେଳେ ବେଳେ ବଜଉଥିଲା ରାତିରେ । ମତେ ଶୁଣି ଶୁଣି ନିଦ ନାଗି ଯାଉଥିଲା...ମୁଁ ଶୋଇ ପଡୁଥିଲି । ସେଗୁ-ଡ଼ାକ କ'ଣ ଆଉ ଅଛି...ମା' ତାକୁ ସେଦିନ ଜାଳିଦେଲା ପରା......"

"ଦଧିଆ ବଇଁଶୀ ବଜାଉଥିଲା ?"

"ହଁ ବାବୁ !"

"ଆଉ ମା' କାହିଁକି ପୋଡ଼ିଦେଲା ?"

"କହିଲା—'ଘର ଅଳିଆ ହଉଚି ।' ସେଦିନ ବି ଯୋଗକୁ ଚୁଲି ଜାଳିଲା ନେଇଁ···ଦୋକାନରେ ଖାଲି କଞ୍ଚା କାଠ ବିକୁଚନ୍ତି···ତମେ ଏତେ ଆଡ଼େ ଯାଉଚ··· ତାଙ୍କ ନାଗି କିଛି କରୁନା ବାବୁ !"

ନିଧିର ଏ କଥାରେ ସମସ୍ତେ ହସିଉଠିଲେ । କିନ୍ତୁ ପିଲାଟିର କହିବା ଭଙ୍ଗୀ ଓ ନିଃସଙ୍କୋଚତା ଦେଖି ନିରଞ୍ଜନ ଖୁବ୍ ଖୁସି ହେଲା । ଚେଷ୍ଟାକଲେ ଏଁକୁ ମଣିଷ କରି-ଯାଇ ପାରିବ ।

ନିରଞ୍ଜନ କହିଲା—"ସେ ତ ଯା ହେଇଚ ହେଇଗଲା । ମା'କୁ କହିବୁ ବାଜା ହେଉକା ଯେମିତି ଜାଳି ନ ଦିଏ ।"

"ତା ଆଙ୍ଗୁଠି ଭାଙ୍ଗି ଦେବନି । ତାକୁ ମୁଁ ପା' ବେଳେବେଳେ ବସି ବଜଉଚି ବାବୁ !"

ନିରଞ୍ଜନ ହସି ହସି କହିଲା—"ବାପ୍‌କା ବେଟା । ଆରେ ନିଧି ! ଆଜି କ'ଣ ଖାଇଚୁ ?"

ନିଧି ଖୁସି ହେଇ କହିଲା—"ଆଉ କିଛି ଅସୁବିଧା ହଉନି ବାବୁ ! ହେଇ, ଇଏ ମୋ ଆଈ । ସେ ଆସି ଆମ ପାଖରେ ପହଞ୍ଚିଯାଇଚି । ଆଉ ସେ ଦି'ଟା ଗାଈ ଆଣିଚି···ହେଇ ପା' ବନ୍ଧା ହେଇଛନ୍ତି ବାବୁ···ମୁଁ ଏଥର ଦୁଧ ଖାଉଚି···ଦୁଧ ତ ଦୁଧ···ଶଳା ଗାଈ ଦି'ଟା କେତେ ଗୋବର ହଗୁଚନ୍ତି ବାବୁ ! ଆମେ ତ ଘଷି କରି କେତେ ବିକାଲୁଣି···ନାଇଁ ବାବୁ, ସେ ଦୋକାନୀକି ତମେ କିଛି କହିବନି···ଘର ବଦ-ମାସ···ଆମେ କ'ଣ ଆଉ ଜାଳି କିଣୁଛୁ ଯେ ତାଠଉଁ କଞ୍ଚା କାଠ ଆଣୁଚୁ···ଆଃ··· ଗାଈ ଦି'ଟାକୁ ଆଈ ଯଦି ଆଗରୁ ଆଣିଥାନ୍ତା, ମା ଆଉ ସେ ବଇଁଶୀଗୁଡ଼ା ଜାଳି ଦେଇ ନ ଥାନ୍ତା···"

ଲଚାର କରମା କଷିଫଳ ପରି ଦିଶୁଥିବା ନିଧିଆ ଦିନେ ଏତେ କଥା କହିବ ବୋଲି ନିରଞ୍ଜନ ଆଶା କରି ନ ଥିଲା । ଦଧିଆ ପରେ ସେ ହୁଏତ ଅକାଳରେ ହଠାତ୍ ଦିନେ ଝଡ଼ିପଡ଼ିବ ବୋଲି ସେ ଆଶଙ୍କା କରି ରହିଥିଲା । କିନ୍ତୁ କେଞ୍ଚୁଡ଼ି ପିଲାଟି ଭିତରେ ଆଜି ଅପୂର୍ବ ଜୀବନୀଶକ୍ତି ଦେଖି ସେ ଖୁବ୍ ବିସ୍ମିତ ହେଲା । ନିରଞ୍ଜନ ଆହ୍ଲାଦଭରା କଣ୍ଠରେ କହିଲା—"ସାବାସ୍, ତୁ ଯେ ବାପର ନାଁ ରଖିବୁ···"

"ମୁଁ ନିଶ୍ଚେ ରଖିବି ବାବୁ ! ତମେ ଆମ ପଛରେ ଠିଆ ହେଇଚ, ଆଈ ଆଇଚି, ଆମର ଆଉ କି ଡର ।" କିଛିକ୍ଷଣ ରହି ନିଧିଆ ପୁଣି କହିଲା—"ଆଉ ଆମ ସାଙ୍ଗରେ ସବୁ ନଗେଇଛନ୍ତି, ଏ ଘର ବିକିଦେଇ ଯାଇଁ ଆଈ ଘରେ ରୁହ । ଆମେ କାହିଁକି କଟକ ସହର ଛାଡ଼ିବୁ ବାବୁ ! ଏଇ ହରିବୋଲିଆ ବୁଢା ତ ମା'କୁ ବେଶି ଶିଖଉଚି ।"

"ହୋ ଧରମ ଆରେ ଭୁ ଏତେ କଥା ଜାଣିଲୁଣି ନିଧିଆ ! ହଉଦେହୋ, ତମ ଭଲ ପେଇଁ ଆମେ ଏଠିକି ଆସିବା କଥା...ଜଣେ ଭଦରନୋକ ବସିଛନ୍ତି...ଭୁ ଓଲଟି ମୋ ହହରେ ବାଟିଆ ନଗେଇ ଦଉଚୁ..."

କହି କହି ଉଠି ପଡ଼ି ଲୁଗାରୁ ଧୂଳି ଝାଡ଼ିଲା ହରିବୋଲିଆ ବୁଢ଼ା । ଏଇ ନାଁଟା ତାକୁ ସାହିର ପିଲାମାନେ ଦେଇଛନ୍ତି । ହାତରେ ଗିନି ହଳେ ବଜେଇ 'ହରି-ବୋଲ' 'ହରିବୋଲ' କହି ଭିକ୍ଷା କରୁଥିଲା ଆଗେ । କପାଳରେ ପ୍ରଶସ୍ତ ହରିମନ୍ଦିର ଟିକା । ପଛରେ ଚୂଟି ବାଳ କେରାକରେ ତେଲ ଟିକଣା ଗୋଟିଏ ଗଣ୍ଠି ପଡ଼ିଚି । ପୁଅ ଏବେ ତାର ଧାନ୍ଦିଗଲାଣି । କଟେଗା ଆଉ ବଜାରରେ ବୁଲି ନାନାଜାତିର ମଲମ ଆଉ ଜରୁଣିମାରି ଔଷଧ ବିକ୍ରି କରେ । ବୁଢ଼ା ମଧ୍ୟ ବ୍ୟବସାୟ ବଦଳେଇ ଦେଇଚି । ଏବେ ଗୋପରେ ଗଂଜେଇ, ଅଫିମ ବିକି କରି ବେଶ୍ ଟଙ୍କା ପଇସା କମେଇ ପାରୁଛି । କଣ୍ଟ୍ରୋଲ ବଜାରରେ ମଧ୍ୟ ଭିକ୍ଷାବୃତ୍ତି ସାଙ୍ଗରେ ଆଉ କିଛି ଗୋପ ଫାଇଦା ଜମେଇ ବସିଥିଲା । ଏବେ ଗୋଟ ଆଲ୍ପ ଗୋପ ଭିତରେ ହିଁ ଲକ୍ଷ୍ମୀଙ୍କ ଆଗମନଟା ଅଧିକ ସହଜ ହୋଇଚି । ସେଥିଯୋଗୁ ହରିବୋଲିଆ ବୁଢ଼ା ଆଜି ଲକ୍ଷ୍ମୀଙ୍କ ବରପୁତ୍ର ରୂପେ ପରିଚିତ ହେବାକୁ ବସିଚି । କିନ୍ତୁ ଯେଉଁମାନେ ବୁଢ଼ାର ପଦାଙ୍କ ଅନୁସରଣ ନ କରି କଳ୍ପିତ ନ୍ୟାୟ ଆଉ ସତ୍‌ପଥର ଆଶ୍ରୟ ଗ୍ରହଣ କରିଛନ୍ତି, ସେମାନେ ଆଜି ଲକ୍ଷ୍ମୀଛଡ଼ା ଦଳର ଅନ୍ତର୍ଭୁକ୍ତ । ସେଥିଯୋଗୁଁ ସମାଜରେ ହରିବୋଲିଆ ବୁଢ଼ାର କାର୍ଯ୍ୟ ଉଦ୍‌ଯୋଗରେ ଗଣ୍ୟ ହେଉଯାଉଛି । ଏହା ପରେ ସେ ହୁଏତ 'ପୁରୁଷ ସିଂହ' ରୂପେ ଆଖ୍ୟାତ ହେବ । କାରଣ ଆମର ଋଷିବାକ୍ୟ ଅଛି—'ଉଦ୍‌ଯୋଗିନଂ ପୁରୁଷସିଂହଃ...।' ଯେଉଁ କାର୍ଯ୍ୟ ହରିବୋଲିଆ ବୁଢ଼ାକୁ ଲକ୍ଷ୍ମୀଙ୍କ ପଦଛାୟା ତଳେ ଦୃଢ଼ ଆଶ୍ରୟ ଦେଇଚି, ତାକୁ ଅର୍ଥ-ନୈତିକ ସମାଜରେ ଉଦ୍‌ଯୋଗ ବୋଲି ଅସ୍ୱୀକାର କରିପିବାର ଆଶଙ୍କା କାହିଁ ?

ହରିବୋଲିଆ ବୁଢ଼ାର ତମ୍ବିରେ ନିରଞ୍ଜନ ଆଦୌ ବିସ୍ମିତ ହେଲାନି । ଓଲଟି ଆଗ୍ରହ ପ୍ରକାଶ କରି ବୁଢ଼ାକୁ ବସିବାକୁ ଅନୁରୋଧ କଲା । ନିଧିଆର ଆଈ ବୁଢ଼ୀ ସେତେବେଳୁ ଆଉ ପଦେହେଲେ କଥା କହୁନି । ନିରଞ୍ଜନର ଅଯାଚିତ ଉଦାର-ତାର କାହାଣୀ ସେ ନିଜର ଝିଅଠାରୁ କିଛି ଶୁଣିଥିଲା । ସେହି ସଦାଶୟ ବ୍ୟକ୍ତିକୁ ଯେ ନିଜ ବ୍ୟବହାରରେ ଅବମାନନା କରିଛି ତାହା ବୁଝିପାରିଲା ପରେ ବୁଢ଼ୀର ମନ ଖୁବ ଦବି ଯାଇଥିଲା । ବର୍ତ୍ତମାନ ସେ ତାହାର କ୍ଷତିପୂରଣ କରିବାର ସୁବିଧା ପାଇଲା ଯେମିତି । କଥାରେ·ନିଜ ଚେଷ୍ଟାରେ ଯଥେଷ୍ଟ ଉତ୍ସାହ ପ୍ରକାଶ କରି ସେ କହିଲା...'ଜଇଁ ମୋର କେତେ ନାଁ କରିଥେଲା । ଏଇ ଦୁଆରେ କେଡ଼େ କେଡ଼େ ଲୋକ ପାଦ ପଡ଼ିଚି ମୋ ଜଇଁ ନାଗି । ଆଜି ବାବୁ ତ ପୁଣି ଆସି ବସିଚନ୍ତି...ଯେତେହେଲେ ଏ ଘର ଢିଅକୁ ମୋ ଝିଅ ବିକିବ ! ମୁଁ ଆଉରି ମୋ ଘରଦୁଆର ବିକିଦେଇ ଆସି ଏଇଠି ମୋ ଝିଅ ପାଖରେ...କି କଥା କହୁଚ...ଏଇ କଟକ ସହର...ଏଠି ମାଟି ବିକିଲେ ପଇସା ...ଆଲୁ ଛାଡ଼ିଦେଇ ଗାଁକୁ ଯାଇ କଣ ମୋ ନାତି ଗୋରୁ ଚରେଇବ !"

ନିରଞ୍ଜନ କେବଳ ଶୁଣୁଥାଏ, ଆଉ ଲକ୍ଷ୍ୟ କରୁଥାଏ ବୁଢ଼ାର କଥା କହି-ବାର ଛଟକ । କେତେ ଘାଟରେ ପାଣି ପିଇ ପିଇ ବୁଢ଼ାର ଓଠ ଯେମିତି ଦୋରସ୍ତ ହୋଇଯାଇଚ । କିନ୍ତୁ ହଠାତ୍ କଥା କାଟି ହରିବୋଲିଆ ବୁଢ଼ା କହିବସିଲା—

"ତମେ ଏଠି ରୁହ କି ଏଠୁ ଛିଅ ବିକି ଯାଇ ଗାଁରେ ରୁହ, ସେଥିରେ ମୋର ଯାଏ ଆସେ କେତେ ହୋ ! ଆଉ ତମେ ଯେଉଁ ଗାଈ ଚରେଇବା କଥା କହିଲ ନା ସମୁଦ୍ଧୁଣୀ, ସେ କଥା ଢେର ଢେର ଲୋକଙ୍କ ପିଲା କରୁଚନ୍ତି । ତମେ ଦୁଧ ଦହି ଘିଅ ଲହୁଣୀ ଛେନା ଆଦି ସକଳ ଦରବ ବିକିବ, ଆଉ ନିଜେ ବି ମନ କଲେ ଖାଇ-ପିବ ସେଥିରୁ, ଏବେ ହାତରେ ଗାଈ ଚରେଇବା କ'ଣ ନାକରା କଥା !···ଆଉ ଦଧିଆ ତ ତବଲା ପିଟି ପିଟି ଯାହା କଲା ଆମେ ଦେଖିଚୁ···କାଇଁ···ଦିନେ ଗଂଜେଇ କି ଅଫିମ ଦିଅଣାରେ ମୋଠଉଁ କିଣିବାର ତ ମୁଁ ଦେଖି ନେଇଁ···"

ହଠାତ୍ ମୁହଁ ଟେକି ଅନେଇଲା ନିରଞ୍ଜନ ତା' ଆଡ଼କୁ । ବୁଢ଼ା ଛେପ ଢୋକିନେଲା ।····

"ନାଇଁ ଆଜ୍ଞା, ମୁଁ କହୁଥିଲି କି ସଙ୍ଗତ କରିବା ନୋକ ଟିକେ ମନ ଖୁସି ଜିନିଷ ଖାଇବା ଭଲ । ଆଉ ସେ ମହମଦିଆବଜାର ଅବକାରି ଦୋକାନ ପାଖରେ ମୋ ଘର କିନା···ବାବୁ, ମୁଁ ବି ଖାସା ସଙ୍ଗତ କରୁଥିଲି ଆଗେ···ଆପଣ ଚୌଧୁରି-ବଜାର ଛକରେ ମୋ ପୁଅକୁ ଆଗେ ଦେଖି ନ ଥିବେ କି ! ଟୋକାଟା ବିଗିଡ଼ି ଗଲା ···ଏବେ ଯାଇ କଟକରେ ମଇଲମ ବିକୁଚି । ଆପଣ ଶୁଣିଥିବ ନେଇଁ କି ବାବୁ, ହାରମାନି ବଜେଇ ନାବକେଲି ଗୀତ ଯୋଡ଼ ବଢ଼ିଆ ଗାଉଥିଲା···"

ବୁଢ଼ାର କଥା ଶୁଣିବାକୁ ନିରଞ୍ଜନର ଧୈର୍ଯ୍ୟ ଆଉ କୁଲେଇଲା ନାହିଁ । ସେ ଉଠିବାର ଉପକ୍ରମ କରୁଚି, ଏତିକିବେଳେ ବୁଢ଼ା ପୁଣି କହିଉଠିଲା—

"କିନ୍ତୁ ଟୋକାକୁ ଆକଟ କରିଦିଅ ବାବୁ···ଘର ମୁହଁଖୋର ହୋଇ-ଯାଉଚି । ହଇହୋ ସମୁଦ୍ଧୁଣୀ, ଏ ଘର ବିକିବା କଥା ମୁଁ ତମକୁ କିଛି କହୁଚି···ଗଣ୍ଡି ନୋକୁଟା ପରି ନିଜେ ମତେ ଡକେଇଥିଲା···ଆରେ ନିଧିଆ, ମୁଁ ଛୁଡ଼ା ହୋଇ ନ ଥିଲେ ସେଦିନ ତୋ ବାପ ମଡ଼ା ଉଠିଥାଆନ୍ତା !···"

ନିଧିଆ ବଡ଼ ପାଟିରେ ହୋ ହୋ ହସିଉଠି କହିଲା, 'ହରିବୋଲ' ।

ନିରଞ୍ଜନ ମଧ୍ୟ ନ ହସି ରହି ପାରିଲା ନି । ସେଦିନ ଗହଳରେ ଏ ବୁଢ଼ା ଏଠି ଥିଲା ? ଭଲକରି ଥରେ ଅନେଇଲା ସେ ବୁଢ଼ା ମୁହଁକୁ । ଗୋଟାଏ ହୋ'ସିଆଁ ମାଠ ତାଙ୍କି ହୋଇ ମୁଣ୍ଡରେ ଗାମଛା ଗୁଡ଼େଇ ଏଇ ବୋଧେ ସେଦିନ ବସିଥିଲା । ନିରଞ୍ଜନର ମନେ ପଡ଼ିଲା । ଏଇ ବୁଢ଼ା ଦଧିଆର ଜାତିକଥା ଉଠେଇ ଶବକୁ ପଞ୍ଚରେ ଦେଇ ଫୋପାଡ଼ ଦେଇ ଆସିବାକୁ ପ୍ରସ୍ତାବ କରୁଥିଲା ।

ତାହା ପରେ ନିରଞ୍ଜନ ପଚାରିଲା, "ତମେ ସେଦିନ ଦଧିଆର ଜାତି କଥା ଉଠାଉଥିଲ ନା ?"

"ଆଜ୍ଞା, ଠିକ ଚହ୍ନି ଚନି ଆଜ୍ଞା, ମୁଁ ସେ କଥା ନ ଉଠେଇଥିଲେ ଦଧିଆ ଭଳିଆ ନୋକ ଆପଣଙ୍କ ହାତରୁ ନିଆଁ ପାଇଥାନ୍ତା !"

ସ୍ତୋତ୍ର ଗାଉଥିବାର ସେ ପିଲାଦିନେ ବରାବର ଶୁଣିଛି । କିନ୍ତୁ ତାର ବାପା କିମ୍ବା ରବୀନ୍ଦ୍ରନାଥ କେହି ଏ ମର୍ତ୍ତ୍ୟମଣ୍ଡଳରେ ଆଜି ନାହାନ୍ତି । ତେବେ ଆଜି ତାର ଘରେ ସେହି ପ୍ରାଚ୍ୟ ହିନ୍ଦୁ ସଂସ୍କୃତିର ପ୍ରତିଧ୍ୱନି କରୁଛି କିଏ ? ନୂଆବୋଉ ? ନା…ଏ ସ୍ୱରରେ ନବୀନ ବୟସର ସ୍ପର୍ଶ ଲାଗିଛି…ତେବେ କଣ ତାର ଅର୍ଦ୍ଧାଙ୍ଗିନୀ ଅଞ୍ଜଳି ? ଅଞ୍ଜଳି, କାହିଁକି ତମର ପାଗଳାମି…ଏ ସ୍ତୋତ୍ର ଗାଇ ତମେ ଜୀବନରେ କି ଛନ୍ଦ ତିଆରି କରିପାରିବ ? ହେଉ, ଗାଅ, ଗାଅ, ମୁଁ ମନ ଦେଇ ତାକୁ ଶୁଣେ…ତମ ହୃଦୟରେ ସେଥିରେ ହୁଏତ ସନ୍ତୋଷ ଆସିବ ।

ଏହାପରେ ଭାବନା ଭିତରେ ନିରଞ୍ଜନ ପୁଣି କାନ ଡେରି ବିଛଣାରେ ପଡ଼ିରହିଲା । ନବଗ୍ରହ ସ୍ତୋତ୍ର ପରେ ପବନରେ ପୁଣି ସ୍ୱର ଲହରୀ ଭାସି ଆସିଲା…

ଭବାନି ଭବାନି ଭବାନୀତି ବାଣୀଂ ଉଦାରମୁଦାରାଃ ସଦା ଯେ ଜପନ୍ତି
ନ ଦ୍ୱେଷଂ ନ ଶୋକଂ ନ ଦୁଃଖଂ…

ସୁନ୍ଦର ! କି ପରିଷ୍କାର ଉଚ୍ଚାରଣ କରି ଗାଉଛି ପୁଣି ଅଞ୍ଜଳି ଏଇ ସ୍ତୋତ୍ରଗୁଡ଼ାକ ! ଏ ତ ଦିନକର ଆୟାସ ନୁହେଁ, ନିଶ୍ଚୟ କେତେଦିନର ପ୍ରୟାସ ଫଳରେ ଅଞ୍ଜଳି ଏ ଆବୃତ୍ତିସବୁ ଆୟତ୍ତ କରିପାରିଛି । ତାର ଘର ଖଣ୍ଡିକ ଏବେ ଯେମିତି ପରିପୂର୍ଣ୍ଣ ହିନ୍ଦୁ ସଂସ୍କୃତିରେ ଭରିଉଠିଛି । ନିରଞ୍ଜନ ମନେ ମନେ ଆନନ୍ଦ ଅନୁଭବ କଲା ସେଥିପାଇଁ । ଏହା ଭିତରେ ଘରର ଆଉ ସବୁ ଯେଉଁ ପରିବର୍ତ୍ତନ ଘଟିଛି, ତାର ସେସବୁ ଗୋଟି ଗୋଟି ହୋଇ ମନେ ପଡ଼ିଲା…ଦ୍ୱାର ମୁହଁରେ 'ମୀନ ମିଥୁନ' ଆଉ ନବଗ୍ରହ ଚିତ୍ରର କଥା । ତୁଳସୀ ଚଉରାଟା ଏହା ଭିତରେ ମଧ୍ୟ ଆକାର ବଦଳେଇ ଦେଇ ସାରିଛି । ଘରୁ ଅଗଣା, ଅଳିନ୍ଦ ଏପରି କି ଛୋଟ ଉଦ୍ୟାନ ଖଣ୍ଡିକ ମଧ୍ୟ ପରିଷ୍କାର ପରିଚ୍ଛନ୍ନ । ଯେପରି କି କାହାର ଆଗମନ ଉଦ୍ଦେଶ୍ୟରେ ସମଗ୍ର ପରିସ୍ଥିତିଟା ଅପେକ୍ଷା କରି ରହିଛି । କିଏ ଆଜି ଆସିବ ? ଆସିବ ଗୋବିନ୍ଦ, ସେହି କ'ଣ ଯଥେଷ୍ଟ ନୁହେଁ । ଗଛର ପ୍ରତ୍ୟେକ ଶାଖାରେ କ'ଣ ଫଳ ନ ଧରିଲେ ହେବନି ! ତେବେ ତାକୁ ଗୋପନ ରଖି ଅଞ୍ଜଳିର ଏ ଆୟୋଜନ କାହିଁକି ? ପୁଣି ଦିନ ରାତି ଗୋବିନ୍ଦ ପଛରେ ଏତେ ନିବିଡ଼ ହୋଇ ଲାଗି ରହିବାର ଉଦ୍ଦେଶ୍ୟ ମଧ୍ୟ କଣ ?…ସେ କଣ ଅଞ୍ଜଳିର ଏଇ ସୌଭାଗ୍ୟଲାଭ ସ୍ପୃହେଁ ନା…ସେଥିପାଇଁ କ'ଣ ଏଇ ଗୋପନତା…

ଆଗର କାନ୍ଥରେ ନିରଞ୍ଜନର ଦୃଷ୍ଟି ପଡ଼ିଲା । ପୁଣି କ'ଣ ସେଠି ଟଙ୍ଗା ହୋଇଛି…ସେଦିନ ସେ ସେଇଠୁ ସେଇ ଚକ୍ରଧାରୀ ନେଳିଆ ଲୋକର ଚିତ୍ର ଥିବା ଲୁହା ଲକଡ଼ କମ୍ପାନୀର କ୍ୟାଲେଣ୍ଡରଟା କାଢ଼ି ଦେଇଥିଲା । ତାକୁ ନେଇ ଗୋବିନ୍ଦ ଚିରି ନ ଦେଇ ଓଲଟି ପୂଜା କରୁଥିବା ସେଦିନର ଦୃଶ୍ୟ ତାର ମନେ ପଡ଼ିଲା । ପୁଣି ସେଠି ଆସି କଣ ଟଙ୍ଗାହେଲା ? ତା' ଉପରେ ପୁଣି ଖଣ୍ଡେ ପାଟକନା ଢଙ୍କା ହୋଇଛି କାହିଁକି… କଣ ତା ହେଲେ ସିଏ…

ଉଠିପଡ଼ିଲା ନିରଞ୍ଜନ । ରହସ୍ୟ ଉଦ୍‌ଘାଟନ ପାଇଁ ମନରେ ଉଦ୍‌ଗ୍ରୀବତା ଧରି ସେ କାନ୍ଥ ପାଖକୁ ଯିବାକୁ ବସିଛି, ଏହି ସମୟରେ ଘର ଭିତରୁ ଅଞ୍ଜଳି

"ଆଉ ମୁଁ ନ ଥିଲେ ତମେ କିଏଣ୍ଟ ବାହାର ଥାନ୍ତ...ନୁହେଁ ?"

ବୁଢ଼ା ଦମ୍ ଖେଞ୍ଚନେଲା । କିଛି କହିବା ପାଇଁ ଆଉ କିଛି ଉପାୟ ଖୋଜିଲା ଯେମିତି । ନିରଞ୍ଜନ ଉଠିପଡ଼ିଲା ଘରକୁ ଫେରିବା ପାଇଁ । ତାଖରେ ଛୁଡ଼ା ହେଇଛି ପ୍ରତିଘର ଘୋ ସରକରାର ନିଧିଆ । ନିରଞ୍ଜନଠାରୁ ସେ କଣ ପାଇ ଖୁବ କୌଶଳରେ ହାତ ମୁଠା କରିନେଲା । ବୁଢ଼ୀ ଏତେବେଳକେ ପାଟି କରି କହିଲା, "ଆରେ ନିଧି, ବାବୁ ଏତେବେଳ ବସିଲେ, ଘରୁ ପାନ ହଖଣ୍ଡ ଆଣି ଦେଲୁ ନେଇଁ !"

ହରିବୋଲଆ ବୁଢ଼ା ଛଡ଼ା ଏ କଥା ଆଉ ଯେମିତି କାହା କାନରେ ବାଜିଲାନି । ଶେଷକୁ ଶୁଣେଇ ଶୁଣେଇ ସେ ନିରଞ୍ଜନକୁ କହିଲା, "କଣ ଆଜ୍ଞା, ନିଧିଆ ମା ପେଇଁ ପାନ ଖର୍ଚ୍ଚା ଦେଲେ କି ?"

ନିରଞ୍ଜନର ମୁହଁ ଲାଲ ପଡ଼ିଗଲା । ଗ୍ରେଞ୍ଚ ଧୂଳଆ ନାଗ ପରି ଫାଏଁ କରି ଅନେଇଲା ନିଧିଆ । ପାଟିରୁ ପାନପିକର ଥୁକ ପକେଇ ଦେଇ ଗାଈ ପିଠିରୁ ଜୋରରେ ତାଆଁ ସଟାଏ ମାରିଲା ବୁଢ଼ୀ । ଅତି ଘୃଣ୍ୟ ଲୋକ ଏଇ ବୁଢ଼ା ।

॥ ୮ ॥

ରାତି କେତେବେଳୁ ପାହିଗଲାଣି । କିନ୍ତୁ ଅନେକ ବେଳଯାଏ ବିଛଣାରେ ପଡ଼ି ସେଦିନ କଣ ଭାବୁଥାଏ ନିରଞ୍ଜନ । ତାର ଗୁଞ୍ଜନ ଭିତରେ ସେ ଶୁଣିଲା ଭାସିଆସୁଚି ନବଗ୍ରହ ସ୍ତୋତ୍ର । କିଏ ଗାଉଚି ?

କାନରେ ତାର କ୍ରମେ ସ୍ପଷ୍ଟ ହୋଇ ଶୁଭିଲା...

ଜବାକୁସୁମସଙ୍କାଶଂ କାଶ୍ୟପେୟଂ ମହାଦ୍ୟୁତିଂ
ଧ୍ୱାନ୍ତାରିଂ ସର୍ବପାପଘ୍ନଂ ପ୍ରଣତୋଽସ୍ମି ଦିବାକରଂ...

ଅନେକ ଦିନ ତଳେ ସେ ପଢ଼ିଥିଲା, କବି ରବୀନ୍ଦ୍ରନାଥ ଥରେ ବିଲାତ ଯାଉ ଥିଲାବେଳେ ଜାହାଜରେ ଏହିଭଳି ସ୍ତୋତ୍ର ଗାଇ ଉଦୟସୂର୍ଯ୍ୟର ବନ୍ଦନା କରି ବିଦେଶୀ ଜଳଯାତ୍ରୀଙ୍କ ଭିତରେ ହିନ୍ଦୁଭାରତୀୟର ମହିମା କୀର୍ତ୍ତନ କରିଥିଲେ । ଆଉ ସେହି ରବୀନ୍ଦ୍ର ନାଥ ତାରୁଣ୍ୟର ସ୍ୱପ୍ନ ଦେଖି ସବୁଜ ଓ ଅବୁଝ ନବୀନମାନଙ୍କୁ ଆହ୍ୱାନ କରି 'ଆଧ-ମରାଦେର ଘା ମେରେ ତୁଇ ବାଁଚା' ବୋଲି କହିଛନ୍ତି । କିନ୍ତୁ ଆଜି ଏଠି ଅର୍ଦ୍ଧମୃତ ହୋଇ ରହିଚି କିଏ ? ଉଦୟ ସୂର୍ଯ୍ୟର ଅଭିନନ୍ଦନ ଭିତରେ ଆଜି କାହାର ଏଠି ଜାଗୃତି ଆବଶ୍ୟକ ପଡ଼ିଚି...!

ନିରଞ୍ଜନର ଚିନ୍ତାକୁ ବ୍ୟାହତ କରି ପୁଣି ଭାସିଆସିଲା ସ୍ତୋତ୍ର । କ୍ରମେ ଚନ୍ଦ୍ର, ମଙ୍ଗଳ, ବୁଧ, ବୃହସ୍ପତି, ଭୃଗୁ, ଶନିଶ୍ଚର ମହାଗ୍ରହ ଏବଂ ତା ସାଙ୍ଗରେ ହିଂସ୍ରଖଣ୍ଡିତ ଗ୍ରହ ରାହୁ ଓ କେତୁର ମଧ୍ୟ ଆବାହନ ହୋଇଗଲା । ତାର ମନେ ପଡ଼ିଲା, ତାର ବାପା ଏହିଭଳି

ସ୍ତୋତ୍ର ଗାଉଥିବାର ସେ ପିଲାଦିନେ ବରାବର ଶୁଣିଛି । କିନ୍ତୁ ତାର ବାପା କିମ୍ବା ରବୀନ୍ଦ୍ରନାଥ କେହି ଏ ମର୍ତ୍ତ୍ୟମଣ୍ଡଳରେ ଆଜି ନାହାନ୍ତି । ତେବେ ଆଜି ତାରି ଘରେ ସେହି ପ୍ରାଚ୍ୟ ହିନ୍ଦୁ ସଂସ୍କୃତିର ପ୍ରତିଧ୍ୱନି କରୁଛି କିଏ ? ନୂଆବୋଉ ? ନା…ଏ ସ୍ୱରରେ ନବୀନ ବୟସର ସ୍ପର୍ଶ ଲାଗିଛି…ତେବେ କଣ ତାର ଅର୍ଦ୍ଧାଙ୍ଗିନୀ ଅଞ୍ଜଳି ? ଅଞ୍ଜଳି, କାହିଁକି ତମର ପାଗଳାମି…ଏ ସ୍ତୋତ୍ର ଗାଇ ତମେ ଜୀବନରେ କି ଛନ୍ଦ ଫିଆରି କରିପାରିବ ? ହେଉ, ଗାଅ, ଗାଅ, ମୁଁ ମନ ଦେଇ ତାକୁ ଶୁଣେ…ତମ ହୃଦୟରେ ସେଥିରେ ହୁଏତ ସନ୍ତୋଷ ଆସିବ ।

ଏହିପରି ଭାବନା ଭିତରେ ନିରଞ୍ଜନ ପୁଣି କାନ ଡେରି ବାଛଣାରେ ପଡ଼ିରହିଲା । ନବଗ୍ରହ ସ୍ତୋତ୍ର ପରେ ପବନରେ ପୁଣି ସ୍ୱର ଲହରୀ ଭାସି ଆସିଲା…

ଭବାନୀ ଭବାନୀ ଭବାନୀତି ବାଣୀଂ ଉଦାରମୁଦାରାଃ ସଦା ଯେ ଜପନ୍ତି
ନ ରୋଗଂ ନ ଶୋକଂ ନ ଦୁଃଖଂ…

ସୁନ୍ଦର ! କି ପରିଷ୍କାର ଉଚ୍ଚାରଣ କରି ଗାଉଛି ପୁଣି ଅଞ୍ଜଳି ଏଇ ସ୍ତୋତ୍ରଗୁଡ଼ାକ ! ଏ ତ ଦିନକର ଆୟାସ ନୁହେଁ, ନିଶ୍ଚୟ କେତେଦିନର ପ୍ରୟାସ ପରେ ଅଞ୍ଜଳି ଏ ଆବୃତ୍ତିସବୁ ଆୟତ୍ତ କରିପାରିଛି । ତାର ଘର ଖଣ୍ଡିକ ଏବେ ଯେମିତି ପରିପୂର୍ଣ୍ଣ ହିନ୍ଦୁ ସଂସ୍କୃତିରେ ଭରିଉଠିଛି । ନିରଞ୍ଜନ ମନେ ମନେ ଆନନ୍ଦ ଅନୁଭବ କଲା ସେଥିପାଇଁ । ଏହା ଭିତରେ ଘରର ଆଉ ସବୁ ଯେଉଁ ପରିବର୍ତ୍ତନ ଘଟିଛି, ତାର ସେସବୁ ଗୋଟି ଗୋଟି ହୋଇ ମନେ ପଡ଼ିଲା…ଦ୍ୱାର ମୁହଁରେ 'ମୀନ ମିଥୁନ' ଆଉ ନବଗ୍ରହ ଚିତ୍ରର କଥା । ତୁଳସୀ ଚଉରାଟା ଏହା ଭିତରେ ମଧ୍ୟ ଆକାର ବଢ଼େଇ ଦେଇ ସାରିଛି । ଘରର ଅଗଣା, ଅଳିନ୍ଦ ଏପରି କି ଗୃହୋଦ୍ୟାନ ଖଣ୍ଡିକ ମଧ୍ୟ ପରିଷ୍କାର ପରିଚ୍ଛନ୍ନ । ଯେପରି କି କାହାର ଆଗମନ ଉଦ୍ଦେଶ୍ୟରେ ସମଗ୍ର ପରିସ୍ଥିତିଟା ଅପେକ୍ଷା କରି ରହିଛି । କିଏ ଆଉ ଆସିବ ? ଆସିଛି ଗୋବିନ୍ଦ, ସେହି କ'ଣ ଯଥେଷ୍ଟ ନୁହେଁ । ଗଛର ପ୍ରତ୍ୟେକ ଶାଖାରେ କ'ଣ ଫଳ ନ ଧରିଲେ ହେବନି ! ତେବେ ତାକୁ ଗୋପନ ରଖି ଅଞ୍ଜଳିର ଏ ଆୟୋଜନ କାହିଁକି ? ପୁଣି ଦିନ ରାତି ଗୋବିନ୍ଦ ପଛରେ ଏତେ ନିବିଡ଼ ହୋଇ ଲାଗି ରହିବାର ଉଦ୍ଦେଶ୍ୟ ମଧ୍ୟ କଣ ?…ସେ କଣ ଅଞ୍ଜଳିର ଏଇ ସୌଭାଗ୍ୟଲବ୍‌ଧ ଗୃହେଁ ନା…ସେଥିଲାଗି କ'ଣ ଏଇ ଗୋପନତା…

ଆଗର କାନ୍ଥରେ ନିରଞ୍ଜନର ଦୃଷ୍ଟି ପଡ଼ିଲା । ପୁଣି କ'ଣ ସେଠି ଟଙ୍ଗା ହୋଇଛି…ସେଦିନ ସେ ସେଇଠୁ ସେଇ ରଙ୍ଗଧାଙ୍ଗି ନେଳିଆ ଲୋକର ଚିତ୍ର ଥିବା ଲୁହା ଲକଡ଼ କମ୍ପାନୀର କ୍ୟାଲେଣ୍ଡରଟା କାଢ଼ି ଦେଇଥିଲା । ତାକୁ ନେଇ ଗୋବିନ୍ଦ ଚିତ୍ର ନ ଦେଇ ଓଲଟି ପୂଜା କରୁଥିବା ସେଦିନର ଦୃଶ୍ୟ ତାର ମନେ ପଡ଼ିଲା । ପୁଣି ସେଠି ଆସି କଣ ଟଙ୍ଗା ହେଲା ? ତା' ଉପରେ ପୁଣି ଖଣ୍ଡେ ପାଟକନା ଢଙ୍କା ହୋଇଛି କାହିଁକି… କଣ ତା ହେଲେ ସିଏ…

ଉଠିପଡ଼ିଲା ନିରଞ୍ଜନ । ରହସ୍ୟ ଉଦ୍‌ଘାଟନ ପାଇଁ ମନରେ ଉତ୍ସୁକତା ଧରି ସେ କାନ୍ଥ ପାଖକୁ ଯିବାକୁ ବସିଛି, ଏହି ସମୟରେ ଘର ଭିତରକୁ ଅଞ୍ଜଳି

ପଶି ଆସିଲା । ନିରଞ୍ଜନର କାର୍ଯ୍ୟକୁ ଅଞ୍ଜଳିର ଲକ୍ଷ୍ୟ ନାହିଁ । ସେ କାଠ ପାଖକୁ ଯାଇ ପାଟକନା ଖଣ୍ଡିକ ଟେକି ଦେଇ ହାତରେ ବନ୍ଧି ଆଣିଥିବା ଧୂପଧୂନାରେ ନିରାଜନା କରିବାରେ ଲାଗିଗଲା ।

ନିରଞ୍ଜନ ପକ୍ଷରେ ଯାହା ରହସ୍ୟାବୃତ ଥିଲା, ତାହାକୁ ବର୍ତ୍ତମାନ ଅଞ୍ଜଳି ନିଜ ହାତରେ ଉନ୍ମୋଚନ କରିଦେଇଛି । ନିରଞ୍ଜନ ଦେଖିଲା, ସେଇ କ୍ୟାଲେଣ୍ଡରର ଛବିଟା ଏହା ଭିତରେ ଦାମିକା ସୁନେଲି ଫ୍ରେମରେ ବନ୍ଧା ହୋଇ ଆସି ଖୁବ ମୂଲ୍ୟବାନ ହୋଇଉଠିଛି ।

ଅଞ୍ଜଳିର ହାବଭାବ ଲକ୍ଷ୍ୟ କରି ନିରଞ୍ଜନ ସେ ପର୍ଯ୍ୟନ୍ତ ଖଟ ଧାରରେ ବସିରହିଛି । ଠାକୁରଙ୍କ ପାଖରେ ବନ୍ଦାପନା କରି ସାରି ପ୍ରସନ୍ନ ହୃଦୟରେ ନିରଞ୍ଜନ ଆଗରେ ଧୂପଧୂନା ବୁଲେଇନେଲା ଅଞ୍ଜଳି ।

ସେଥିରେ ନିରଞ୍ଜନର ଅନ୍ତରରେ ଯେମିତି ସୁବାସ ଭରି ହୋଇଗଲା । ସେ ଖୁସି ହୋଇ କହିଉଠିଲା, "ତମର ନିଷ୍ଠା ଓ କର୍ମନିପୁଣତାରେ ମୁଁ ବିଭୋର ହୋଇ-ଯାଇଛି ଅଂଜଳି ! ତମକୁ ଧରି ପକେଇବାକୁ ମୋର ଇଚ୍ଛା ହଉଛି, ତମର ପବିତ୍ରତା ମାଗି ହେଇ ଯିବନି ତ ?"

ଅଞ୍ଜଳି ଥକା ହେଇ ଚାହିଁଲା ନିରଞ୍ଜନକୁ । ବାସ୍ତବିକ ସ୍ୱାମୀର ମୁହଁ ତାର ଆନନ୍ଦରେ ଭରିଯାଇଛି । ତେବେ କଣ ଏ ତପସ୍ୟା ତାର ସାର୍ଥକ ହେଇଛି ! !

ସେ ହସି ହସି ଆନନ୍ଦରେ ବିଭୋର ହେଇ କହିଲା, "ପବିତ୍ରତା କାହିଁ, ତମରି ହୃଦୟର ସ୍ପର୍ଶ ପାଇବା ଲାଗି ଏ ଖାଲି ଆୟୋଜନ ମାତ୍ର । ତମରି ସ୍ପର୍ଶ ପାଇଲେ ଯାଇ ଏସବୁ ପବିତ୍ର ହେବ..."

"ତମେ କଣ କହୁଛ ଅଞ୍ଜଳି, ଏସବୁ କଣ ସତ ? ମୋର ଧାରଣା ଯେ ଜୀବନରେ ଯେଉଁ ଛନ୍ଦ ଆମେ ତିଆରି କରୁଥିଲେ, ତାକୁ ମୁଁ ଓଲଟ ପାଲଟ କରି-ଦେଇଛି...ଆଜି ସେଥିଯୋଗୁ ତମେ ଚାଲି ଯାଉଛ ଦୂରକୁ...ହୁଏତ ତମର ଏଇ ନୈଷ୍ଠିକତା ଭିତରେ ମୋର ସ୍ଥାନ ନାହିଁ ବୋଲି ମୁଁ ଭୟ କରେ..."

ଅଞ୍ଜଳି ସ୍ତମ୍ଭିତ ହୋଇପଡ଼ିଲା । ତାକୁ ଭୟ କରନ୍ତି ତାର ସ୍ୱାମୀ ! ଆଜି ଏଣେ କି ସାଧନା ସିଏ ବସି କରୁଛି ! ହାତରୁ ତାର ଦୀପ ଓ ଧୂପଦାନୀ ଖସିପଡ଼ିଲା । ଧୀରେ ଧୀରେ ଘୁଞ୍ଚିଗଲା ସେ ନିରଞ୍ଜନ ପାଖକୁ ।

"ମୁଁ କିଛି ଅନ୍ୟାୟ କରୁଛି ବୋଲି ତମର ଧାରଣା ହେଉଛି ତା ହେଲେ..."

"ଏ କି ପ୍ରଶ୍ନ ତମେ କଲ ଅଞ୍ଜଳି ?" ଆଶ୍ଚର୍ଯ୍ୟ ହେଇ କହିଲା ନିରଞ୍ଜନ । ତାପରେ ହାତ ବଢେଇ ଅଞ୍ଜଳିକି ଟାଣିନେଲା ଖଟ ପାଖକୁ ।

ଖାଉଥିବାବେଳେ ଗୋବିନ୍ଦକୁ ନାନା କାହାଣୀ କହି ବାଁରେଇ ବାଁରେଇ ଅଞ୍ଜଳି ଶୋଇ ପକେଇଲା । ତାପରେ ଆସ୍ତେ ଆସ୍ତେ ଆସି ପହଞ୍ଚିଲା ନିରଞ୍ଜନ ପାଖରେ । ରତ୍ନମଣି ଖାଇବାବେଳେ ବେଶି ଶୁଏନା । ଝୋଟିକୁ ରଙ୍ଗ କରି କଣ ଗୋଟିଏ ଶିଳ୍ପ ରଚନା କରିବାର ଆୟୋଜନ କରୁଥାଏ । ତାର ଏପରି ପ୍ରଚେଷ୍ଟାରେ ଅଞ୍ଜଳିର ଆଗ୍ରହ ମଧ୍ୟ ବିଶେଷ ଭାବରେ ରହିଥାଏ । କିନ୍ତୁ ଅଞ୍ଜଳିର ମନ ଆଜି କେମିତି ଖାପଛଡ଼ା ଧରିଛି । ସେହି ଖାପଛଡ଼ା ଭାବ ଭିତରେ ଅଞ୍ଜଳି ଯେ ଆନନ୍ଦର ଶିହରଣରେ ବେପଥୁମତୀ ହୋଇଉଠୁଛି, ସେ କଥା ରତ୍ନମଣି ଲକ୍ଷ କରିଛି ଓ ସେ ମଧ୍ୟ ସେଥିଲାଗି ଯେମିତି ତୃପ୍ତି ଅନୁଭବ କରୁଛି । ଗତ କେତେଦିନର ଘଟଣାରେ ସେ ଯେପରି ନିଜକୁ ଅପରାଧୀନୀ ବିଚାରୁଥିଲା । ତାହାର କପାଳ ପୋଡ଼ିଯାଇଛି । ସେହି ପୋଡ଼ା କପାଳର ହାଓ୍ୱା ବାଜି ଆଉ କାହାର ଯେମିତି ଅନିଷ୍ଟ ନ ଘଟୁ, ତାହା ସେ ଅନ୍ତର ସହ କାମନା କରେ । ଭଗବାନ କରନ୍ତୁ, ଅଞ୍ଜଳି କୋଳରେ ପିଲାଟିଏ ଧରୁ—ଏ କଥା ସେ କାୟମନୋବାକ୍ୟରେ ମଧ୍ୟ ଅଭିଳାଷ କରେ ।

ଅଞ୍ଜଳି ଆଉ ଖଞ୍ଜାକୁ ଚାଲିଯିବାବେଳେ ଥରେ ଥରେ ପଛକୁ ବୁଲି ପଡ଼ି ଚାହୁଁଥାଏ । କଣ ହେଲା କେଜାଣି ଥରେ ସେ ଅଧବାଟରୁ ଫେରିଆସି ଗୋବିନ୍ଦ ପାଖରେ ପହଞ୍ଚିଲା । ଗୋବିନ୍ଦ ବିଲ୍‌କୁଲ ଶୋଇପଡ଼ିଛି । ତାକୁ ଭଲକରି ନିରୀକ୍ଷଣ କରିନେବା ପରେ ଟ୍ରେଟ ଯେତେବେ ଖଣ୍ଡିକ ଫିଟେଇ ପାନ ଭାଙ୍ଗି ବସିଲା । ଏସବୁ କଥା ରତ୍ନମଣିକ ଭଲ ଲାଗୁ ନ ଥାଏ । କିନ୍ତୁ ସେ କିଛି ନ କହି ନିଜ କାମରେ ନିବିଷ୍ଟ ରହିଥାଏ । ଶେଷକୁ ଦି'ଖଣ୍ଡ ପାନ ରତ୍ନମଣି ପାଖରେ ଥୋଇ ହାତରେ ଆଉ ଦିଖଣ୍ଡ ଧରି ଚାଲିଗଲା । ଖଞ୍ଜା ପାର ହୋଇଯିବା ଆଗରୁ ପୂର୍ବ ଅଭ୍ୟାସ ତାର ଯେମିତି ପୁଣି ଥରେ ମନେ ପଡ଼ିଗଲା । ଫେରି ଚାହିଁଲା ସେ ପଛକୁ । ତାର ଏ ଢଙ୍ଗ ଦେଖି ରତ୍ନମଣି ସନ୍ଦିହାନ ହୋଇ ତାକୁ ପଛରୁ ଚାହିଁ ରହିଛି । ହଠାତ୍ ଦୁଇଯାଆଙ୍କର ଆଖି ଏକ ହୋଇଗଲା । ଫିକ୍ କରି ହସି ଦେଲା ଅଞ୍ଜଳି । କିନ୍ତୁ କିଛି ନ ଜାଣିଲା ପରି ରତ୍ନମଣି ନିଜ କାମରେ ମନ ଦେଲା । କ୍ରମେ ଅଦୃଶ୍ୟ ହୋଇଗଲା ଅଞ୍ଜଳି ।

॥ ୯ ॥

କ୍ରମେ ନିରଞ୍ଜନର ଟ୍ରେଟ ଘର ଖଣ୍ଡିକରେ ନାନା ପରିବର୍ତ୍ତନର ସୂତ୍ରପାତ ହେବାକୁ ଲାଗିଲା । ସେଥିପାଇଁ କାହାର ଉଦ୍ୟମ ନ ଥାଇ ଯେପରି ଏକ ସ୍ୱୟଂକ୍ରିୟ ଲତା

ପ୍ରକ୍ରିୟାରେ ସେସବୁର ସଙ୍ଘଟନ ହୋଇଯାଉଛି । ନିଜର 'ଆଗ୍ନୋଷ୍ଟିକ୍' ଭାବ ଦୂର ହୋଇଛି କି ନା, ନିରଞ୍ଜନ ତା ଆଉ ଭାବିବାକୁ ଚେଷ୍ଟା କରନ୍ତି । କିନ୍ତୁ ଘର ଖଣ୍ଡିକୁ ଏକ ବିଷ୍ଣୁଧାମ କରି ଗଢ଼ିବାରେ ସେ ଯେମିତି ପ୍ରବଳ ଉତ୍ସାହ ଅନୁଭବ କରୁଛି । ଏହା ଭିତରେ ବଜାରରୁ ସେ କେତେ ଦେବଦେବୀର ଛବି କିଣି ଆଣି ଘରଟିକୁ ସୁସଜ୍ଜିତ କରିଛି । କେବେ ବାହାରକୁ ଗଲେ ମଧ୍ୟ ସେ ସବୁଠାରୁ କେତେକ ଛବି ସଂଗ୍ରହ କରି ଆଣିଛି । ଆଉ ସବୁଠାରୁ ବଡ଼ କଥା, ବହୁ ଦିନରୁ ସେ ଯେଉଁ ସଙ୍ଗୀତ-ସାଧନାକୁ ବିଦାୟ ଦେଇଥିଲା, ତାହାର ଏବେ ପୁନର୍ଜନ୍ମ ଲାଭ ହୋଇଛି । ନୂଆ ହାରମୋନିୟମ ଖଣ୍ଡେ କିଣି ଆଣି ସନ୍ଧ୍ୟାବେଳେ ସେ ସଙ୍ଗୀତଚର୍ଚ୍ଚା ଆରମ୍ଭ କରିଦେଇଛି । ସେହି ସଙ୍ଗୀତଚର୍ଚ୍ଚା ଭିତରେ ପ୍ରାର୍ଥନା ଓ ଭଜନର ଆଧିକ୍ୟ ବେଶି । ଦିନେ ଦିନେ ଅଞ୍ଜଳି-ଠାରୁ ବହି ମାଗି 'ନବଗ୍ରହସ୍ତୋତ୍ର'କୁ ସେ ସୁରସଂଯୋଗରେ ଗାଇବାକୁ ମଧ୍ୟ ଚେଷ୍ଟା କରେ । ଥରେ ଥରେ ସେ ନିଧିଆକୁ ଯାଇ ଡାକି ଆଣେ । ତା ପାଇଁ ହଳେ ଛୋଟ ଛୋଟ ବାୟାଁ ତବଲା ମଧ୍ୟ ସେ ଖରିଦ କରିଛି । ବାଦ୍ୟକ ଦଧିଆର ପୁଅ ନିଧିଆ, ନିରଞ୍ଜନର ବିଶ୍ୱାସ ସେ ଦିନେ ପ୍ରତିଭାଶାଳୀ ବାଦ୍ୟକ ହେବ । କିନ୍ତୁ ଅପୋଗଣ୍ଡ ନିଧିଆ ପ୍ରତିଭାର କୌଣସି କଳ୍ପନା କରିପାରେନା । ନିରଞ୍ଜନ ଗୀତ ଗାଇଲେ ସେ ଆବୋଲ ତାବୋଲ ଭାବରେ ତବଲା ପିଟେ ।

ଦିନେ ଦିନେ ସନ୍ଧ୍ୟା ଗଡ଼ି ଅଧିକ ରାତି ହୋଇଯାଏ ; କିନ୍ତୁ ନିରଞ୍ଜନର ସଙ୍ଗୀତସାଧନା ବନ୍ଦ ହୁଏନା । ଗୋବିନ୍ଦ ଆସି ବେଳେବେଳେ ସେଠି ବସିଯାଏ, ଆଉ ଭଜନ ମଧ୍ୟ ଗାଇବାକୁ ଚେଷ୍ଟାକରେ । ତା' କଣ୍ଠରେ ଭଜନ ଶୁଣି ଅଞ୍ଜଳି ଆଉ ରମଣି ଯେମିତି ଅତି ସନ୍ତୋଷ ଲାଭ କରନ୍ତି । ଗୋବିନ୍ଦ ଭଜନ ଗାଇଲେ ନିଧିଆ ଭଲ କରି ତବଲା ପିଟିବାରେ ଲାଗିଯାଏ ।

କିନ୍ତୁ ନିରଞ୍ଜନ ମୁହଁରେ ସେତେବେଳେ ଅଦ୍ଭୁତ ପରିବର୍ତ୍ତନ ଦେଖାଦିଏ । ବହୁ ଚେଷ୍ଟା କରି ନିରଞ୍ଜନ ତାକୁ ଭୁଲିବାକୁ ଇଚ୍ଛା କରେ ; ମାତ୍ର ପାରେନା । ଭଗବାନ ସବୁଠାରୁ ଅଧିକ ଯାହାର କ୍ଷତି କରିଛନ୍ତି, ସେହି ପୁଣି ଗାଉଛି ତାଙ୍କର ପ୍ରଶସ୍ତି ! ନିରଞ୍ଜନର ପୁଣି ମନେ ପଡ଼ିଯାଏ ଯୀଶୁଖ୍ରୀଷ୍ଟଙ୍କ କଥା । ଯୀଶୁଖ୍ରୀଷ୍ଟ କହିଛନ୍ତି, କେହି ଗୋଟିଏ ଗାଲରେ ଥାପଡ଼ ମାରିଲେ ତାକୁ ଆର ଗାଲଟି ଦେଖାଇଦବ । ଏଇ ଗୋବିନ୍ଦ ଆଉ କଣ ସେଇ ଦୀକ୍ଷା ନେଇଛି ! ଭାବି ଭାବି ବ୍ୟଥିତ ହୋଇପଡ଼େ ନିରଞ୍ଜନ, ହାରମୋନିୟମ ଉପରୁ ହାତ ତାର ବନ୍ଦ ହୋଇଯାଏ । କଣ୍ଠ ବେସୁରା ହୋଇଉଠେ । ଖାଲି ନିଧିଆର ତବଲା ପିଟାଟା ଉତ୍କଟ ହୋଇ ଶୁଭେ ।

ଦିନେ ସନ୍ଧ୍ୟାବେଳେ ବୈଠକଖାନା ଭିତରକୁ ଅଞ୍ଜଳି ପଶି ଆସି କହିଲା, "ଗୋବିନ୍ଦ ରେ ! ଆଜି ଖରାବେଳେ ଯୋଉ ଗୀତଟା ଶିଖେଇଥିଲି ଗାଇଲୁ···ସେଇ··· ଅନୁସରିତ, ପ୍ରଭୁ କାଳିଯାକ ଗଲ ସରି ତ···"

ହଠାତ୍ ନିରଞ୍ଜନ ପାଟି କରି ଉଠିଲା, "ଭଗବାନଙ୍କର ସ୍ତୁତି କରିବାକୁ ଯାଇ ଗୋଟିଏ ନିରୀହ ପିଲା ମୁହଁରେ ତାଙ୍କର ନିନ୍ଦା ରଟାନା ଅଞ୍ଜଳି ! ଅନନ୍ତ କାଳର

ସୃଷ୍ଟି ଭିତରେ ଭଗବାନ ଗୋଟିଏ ମିରଗ, ଗୋଟିଏ ହାତୀ, ଗୋଟିଏ ଭିରଡିଆ ଚଢେଇକ ଉଦ୍ଧାର କରିଛନ୍ତି ବୋଲି କହିବା ତାଙ୍କର ନିନ୍ଦା ଛଡ଼ା ଆଉ କିଛି ନୁହେଁ······ଗୋବିନ୍ଦର ବାପା କଣ ତାଙ୍କୁ ଡାକି ନ ଥିଲା······"

ଏକ ନିଃଶ୍ୱାସରେ ଏତିକ କହି ଦେଇ ପର ମୁହୂର୍ତ୍ତରେ ଚମକି ଉଠିଲା ନିରଞ୍ଜନ । ଏଇ ଉଣ୍ଡାମୀ ଭିତରେ ଯଦି ଅଞ୍ଜଳି ସନ୍ତୋଷ ପାଉଥିବ ?

କିନ୍ତୁ ନିରଞ୍ଜନ ପର ମୁହୂର୍ତ୍ତରେ ଆଶ୍ଚର୍ଯ୍ୟ ହୋଇ ଦେଖିଲା, ଅଞ୍ଜଳି ତା କଥାରେ ଖୁବ୍ ଖୁସି ହୋଇଛି ଯେମିତି । ନିରଞ୍ଜନ ଆହୁରି ଶୁଣିଲା, ଅଞ୍ଜଳି ତାକୁ ହସି ହସି କହୁଛି······

"ତମ କଥା ଖୁବ୍ ଠିକ୍ ·····କିନ୍ତୁ ଗୀତର ସେଇ ପହିଲୁ ଧାଡ଼ିଟା ମତେ ଖୁବ୍ ଭଲ ଲାଗେ···ଆଉ ଦୁଃଖର କଥା ଯେ, ସେ ଗୋଟିକ ଧାଡ଼ିର ଠିକ୍ ଲାଗି ବାକି ଭୁଲ ଧାଡ଼ିଗୁଡ଼ାକୁ ମଧ୍ୟ ଆମକୁ ଗାଇବାକୁ ପଡ଼ିବ···"

ନିରଞ୍ଜନର ସେହି ମୁହୂର୍ତ୍ତରେ ଯେମିତି ଜନ୍ମାନ୍ତର ଘଟିଲା । ସେ ବିସ୍ମୟ ଓ ଆନନ୍ଦରେ ଅଧୀର ହୋଇ ଅନେଇ ରହିଲା ଅଞ୍ଜଳି ମୁହଁକୁ । ଏତିକି ଯଥେଷ୍ଟ । ଆଉ କିଛି ଯୁକ୍ତି ଭିତରକୁ ଅଞ୍ଜଳିକି ଟାଣିବା ଅବ୍ୟାପାର ହେବ । ନିରଞ୍ଜନ ଉତ୍‌ଫୁଲ୍ଲ ହୋଇ ଉଦାସ କଣ୍ଠରେ ଗାଇବାକୁ ଲାଗିଲା···

ଅନୁସରିତ·····,

ପ୍ରଭୁ କାଳଯାକ ଗଲା ସରି ତ···

ଅଞ୍ଜଳିର ଆଖି ଅଶ୍ରୁସଜଳ ହୋଇଉଠିଲା । ମଣିଷର ଏତେ ଆକୁଳ କ୍ରନ୍ଦନ ସତେ କିଏ ଶୁଣେ ! ନା, କେବଳ ନିଜର ବ୍ୟଥାକୁ ମହିମାମଣ୍ଡିତ କରିବାକୁ ଯୁଗ ଯୁଗ ଧରି ମଣିଷ ଏମିତି ପାଗଳ ହୋଇ ଗାଉଛି···

ପାଞ୍ଚାଳୀକି ଦୁଃଶାସନ ଲଜ୍ଜାଇଲା

କୋଟି ବସ୍ତ୍ର ଥିଲ ଦେଇ ତ······

ଅଞ୍ଜଳିର ଭାବନାକୁ ଖଣ୍ଡିତ କରି ନିରଞ୍ଜନର କଣ୍ଠସ୍ୱର ପୁଣି ଗର୍ଜିଉଠିଲା । ନା···ଏ ଅର୍ଥରେ ତା ଭାବନାର କୌଣସି ସାମଂଜସ୍ୟ ନାହିଁ ଆବଶ୍ୟକତା ବି ନାହିଁ···ବାସ୍ତବିକ ଏସବୁ ଗାଇବାକୁ କହି ତାର ସ୍ୱାମୀଙ୍କୁ ସେ ଦୁଃଖ ଦେଉଛି··· । ଭାବି ଭାବି ସେ ପାଟି କରି ଉଠି କହିଲା, "ଏଭଳି ଗୀତ ଗାଇବାକୁ ମୁଁ ତମକୁ ଆଉ କହିବନି·····ଏ ସତ୍ୟଦ୍ରଷ୍ଟାର କଥା ନୁହେଁ,··ଗୋଟାଏ କାହାଣୀ ଉପରେ ଭଗବାନଙ୍କ ମହାମହିମାର କଳ୍ପନା···"

"କିନ୍ତୁ ଉପାୟ ?"

ଅଞ୍ଜଳି ଶୁଣିଲା, ଏ ନିରଞ୍ଜନର ପ୍ରଶ୍ନ । ସେ ଭାଙ୍ଗିପଡ଼ିଲା ଯେମିତି । ଗୋବିନ୍ଦକୁ ତଳୁ ଉଠେଇ ନେଇ ସେ ଯୋରରେ କାଖେଇ ଧରିଲା । ଆଖିରେ ତାର ସଜଳତା । ଏ ଘଟଣାକୁ ଭଲ ଭାବରେ ବୁଝିପାରିଲା ନିରଞ୍ଜନ । ଗୋବିନ୍ଦ କଣ ପୁଅ ନୁହେଁ ? ତେବେ······

॥ ୧୦ ॥

ଏହିପରି ଆହୁରି କିଛିଦିନ ବିତିଗଲା । ନିରଞ୍ଜନ ସେହିପରି ଅଛି । ବ୍ୟବସାୟ କାର୍ଯ୍ୟରେ ଏଣିକି ଖୁବ୍ ମନ ଦେଇଥିଲେ ମଧ୍ୟ ସନ୍ଧ୍ୟାରେ ସଙ୍ଗୀତଚର୍ଚ୍ଚା ତାର ଅବାରିତ ଗତିରେ ଚାଲିଛି । ନିଧିଆ କ୍ରମେ ବାଜା ବଜେଇବାରେ ଉନ୍ନତି କରୁଛି ବୋଲି ମଧ୍ୟ ତାର ଧାରଣା ହୋଇଛି । ମଝିରେ ସମସ୍ତଙ୍କୁ ଧରି ସେ ଗାଁକୁ ଯାଇ ସାତଦିନ କଟେଇ ଦେଇ ଆସିଛି । ଗୋବିନ୍ଦର କାନଫୋଡ଼ା ଓ ଖଡ଼ିଛୁଆଁ ପାଇଁ କିଏ କିଏ ଜଣେ ଖଡ଼ିରନ୍ଧ ଦିନ ଧରି ଦେଇଥିଲେ । ସେ ଅନୁସାରେ ଗାଁକୁ ଯାଇ ସେ ସବୁ ସମ୍ପନ୍ନ କରି ଆସିଛି । ଗାଁରେ ଦାଦୀ, ବଡ଼ବାପା ପ୍ରଭୃତିଙ୍କ କୁଟୁମ୍ବକୁ ମିଶାଇ ଏକ ବିରାଟ ପରିବାର ଭିତରେ ସାତଟି ଦିନ ସେମାନଙ୍କର ବଡ଼ ଆମୋଦ ପ୍ରମୋଦ ମଧ୍ୟରେ କଟିଯାଇଛି । କିନ୍ତୁ ରତ୍ନମଣି ଗାଁରେ ଆନନ୍ଦ ଉପଭୋଗ ପାଇଁ ବିଶେଷ ଉତ୍ସାହ ପାଇପାରିଲା ନାହିଁ । ସବୁ କ୍ଷେତ୍ରରେ ତାର ବୈଧବ୍ୟଦଶା ଯେମିତି ଅତି ଉତ୍କଟ ଭାବରେ ସେ ଅନୁଭବ କଲା । କାନ-ଫୋଡ଼ା ଦିନ ଉତ୍ସବର ବାଜଣା ଭିତରେ ଗୋବିନ୍ଦ ଯେତେବେଳେ ତା'ଠାରୁ ଅଞ୍ଜୁଳି ଧରି ପୂଜାପୀଠ ଉପରକୁ ଗଲା, ସେତେବେଳେ ସେ ଆହୁରି ଅଧୀର ହୋଇପଡ଼ିଲା । ପୁଅକୁ ବିଦାୟ ଦେଇ ସେ ଯେମିତି ଅଶ୍ରୁସାଗରରେ ବୁଡ଼ିଗଲା । ଆଜି ଥାଆନ୍ତେ କି ଗୋବିନ୍ଦର ବାପା ! କ୍ରମେ ରତ୍ନମଣିର କଣ୍ଠ ବାଷ୍ପରୁଦ୍ଧ ଭିତରେ ଦରଜ ହୋଇଉଠିଲା । ଘରର ଗୋଟିଏ ଆଲମାରିରେ ଖଣ୍ଡେ ବଡ଼ ଧରଣର ଦର୍ପଣ ଜଡ଼ିତ କରିଥିଲେ ତାର ସ୍ୱାମୀ । ରତ୍ନମଣିର ପ୍ରତିଛବି ସେଥିରେ କେତେବେଳେ ଫୁଟି ଉଠିଛି ସେ ଜାଣେନି । ସମସ୍ତେ ପୁଅର କାନଫୋଡ଼ା ଦେଖିବାକୁ ଯାଇ ଦାଣ୍ଡରେ । ନିଜ ଘରେ ନିଜେ ଚମକି ପଡ଼ିଲା ରତ୍ନମଣି । ଦର୍ପଣ ଭିତରେ ତାରି ବିସ୍ତୃତ ଦେହର ଛବି । ଦେହର ସେହି ଚମ୍ପାଫୁଲିଆ ରଙ୍ଗ ଏବେ ବି ସତେଜ ରହିଛି । ଦେହରେ ତାର କି ମାଂସ ଇଏ !

କେତେକ ମୁହୂର୍ତ୍ତ ପାଇଁ ସବୁ ଭୁଲିଗଲା ରତ୍ନମଣି । ରହିଁ ରହିଲା କେବଳ ନିଜକୁ ଦର୍ପଣ ଭିତରେ । ନିଜ ଉପରୁ ନିଜେ ଯେମିତି ଆଖି ଫେରାଇ ପାରୁନି । ବେକ ତଳର ଚମପୁଳାକ କି ସଫା···ମାଂସ ପୁଣି ରୁନ୍ଧ ହୋଇ ରହିଛି ସେଇ ଲୁଗା ତଳେ । ତାଙ୍କର ସେ ଦିନର ଭୋଗ୍ୟ ବସ୍ତୁ ଆଜି ବି ଅବିକୃତ ରହିଛି···ଆଉ ସେ କେବଳ ନାହାନ୍ତି !

ରତ୍ନମଣିର ଇଚ୍ଛା ହେଲା ଗୋଟାଏ ଚିତ୍କାର କରି ସେ ଏଇ ସୃଷ୍ଟିଟାକୁ ବିଦୀର୍ଣ୍ଣ କରିଦିଅନ୍ତା । ନିଜକୁ ଚିକିଟିକି କରି ମିଶେଇ ଦିଅନ୍ତା ଏଇ ମାଟିରେ । ଉତ୍ତେଜନା ଓ ବିକ୍ଷୋଭର ଅନ୍ତଃସ୍ଥିତା ଭିତରେ ସେ ଅସହାୟ ଭାବରେ ବସିପଡ଼ିଲା ତଳେ । ମୁଣ୍ଡଟାକୁ ଖୁବ୍ ଜୋରରେ ଭୂଇଁରେ ପିଟିଦେବାକୁ ତାର ଇଚ୍ଛା ହେଲା । ଆଗରେ ଯେମିତି ଗୋବିନ୍ଦ ଆସି ଠିଆ ହୋଇଗଲା । ହାତରେ ଆଶିଷ-ଅଞ୍ଜଳି, ଦେହରେ ପାଟଲୁଗା ଆଉ ଚଦର । ହଳଦୀ ଲଗେଇ ଗାଧୋଇଛି । କପାଳରେ ବଡ଼ ସାଆନ୍ତଙ୍କ

ଦିଅ 'ସେବଣ ନାଇଦେଇଚ ଚନ୍ଦନପାଟିର ଚଡା ।ପୁଅ···ବାପର ଗ୍ଲୋଟିକପାକ ବଗ୍ରହ ଧଣ ଆସିଚ ଏଇ ଗୋବନ୍ଦ । ଆଖି ପୋଛୁଦେଲା ରତ୍ନମଣି । ତାର ଏ ନଜର ଦେହ କଛୁ ନୁହେଁ । ମନରେ ତାର ଭୂତ ପଶିଯାଇଚ । ତାର ସର୍ବସ୍ୱ ଏଇ ଗୋବନ୍ଦ··· ସ୍ୱାମୀ ତାର ଗହ୍ୱଛନ୍ତ ତାର ଭିତରେ । ଆଉ ନରଞ୍ଜନ କହୁଥିଲେ ଗୋବନ୍ଦ ବଲ୍‌କୁଲ ତା ବୋଉର ଚେହେରା ଆଣିଚ । ପ୍ରକୃତରେ ଏ ଦେହ ତାର କଛୁ ନୁହେଁ । ଅସଲ ଦେହ ତାର ଯାଇ ଗୋବନ୍ଦ ଭିତରେ ।

ଆଗରେ ପୁରୁଣା ଦନର ସେଇ ପଲଙ୍କଟା । ଏତେ ଅସ୍ୱୀକୃତ ପରେ ଆଖି ତାର ଓଟାରି ହେଇଗଲା ସେଠିକ । ଯେମିତ ଏ ଘରେ ଭାନୁମତୀର ନାଟ । ଉଠି ପଳେଇଗଲା ରତ୍ନମଣି ସେ ଘରୁ । ନା···ଏ ଘରେ ରହି ହବନ । ସମସ୍ତେ ଦାଣ୍ଡରେ, ଚାଲିଗଲା ସେ ସମସ୍ତଙ୍କ ଭିତରକୁ । ହେଲ ତ ମହାପାତ୍ର ଘର ବଡବୋହୂ ଆସିଚ··· ଏକ ବର୍ଷରେ ସେମାନଙ୍କର ବା'ଘର ହୋଇଥିଲା । ହାତରେ କାଚ ତାର ଦାଉ ଦାଉ ହଉଚ । ନାଲ ପୋହଳା ଭିତରେ ଗୋଟା ଗୋଟା ସୁନାର ରୁଦ୍ରାକ୍ଷ ମାଳ ହେଇ ମଣିବନ୍ଧରେ ତାର ବନ୍ଧା ହେଇଚ । ସୀମନ୍ତ ଆଉ କପାଳରେ ସିନ୍ଦୂର । ଆଲୋ··· କେତେ ସିନ୍ଦୂର ଢାଳଚ ସେ ମୁଣ୍ଡରେ !

ନା, ସେଠିକ ଯାଇ ହବନ । ଏଠି ବ ଭାନୁମତୀର ନାଟ । ମହାପାତ୍ର ଘର ବୋହୂ ଭିତରେ ବ ଗୋବନ୍ଦର ବାପା ! ନା, ଏ ଗାଁରେ ରହି ହବନ । କୁଆଡେ ଗଲା ଅଞ୍ଜଳ ? ଝଟ କଟକ ଫେରଯିବାକୁ ହେବ । ଖୁବ୍ ଭଲ ଲାଗେ ସେଠି । ଅଞ୍ଜଳ ଯେମିତ ସେଠି ଆଶ୍ରମ ତିଆରି କରଚ । ନା, ଭଲ ନୁହେଁ । ଅଞ୍ଜଳର ସେଥିରେ ଲାଭ କଣ ? ଅଞ୍ଜଳ ଏଇଠି ରହୁ···ହେଲେ ବାଦବୁଦଆ ଭିତରେ···ନା, କଟକ ଫେରଯିବା ସମସ୍ତେ··· । ଭାବ ଭାବ ଘର ଭିତରକୁ ଫେରଗଲା ରତ୍ନମଣି ।

ଫେରୁ ଫେରୁ ଅଗଣା ଭିତରେ ଅଞ୍ଜଳକ ରତ୍ନମଣି ଭେଟିଲା । ସକାଳ ନ'ଟା ବେଳ । ଉଞ୍ଚ ମଥାନ ଡେଇଁ ଦୁଆରେ ଆସ୍ତେ ଆସ୍ତେ ଖରା ମାଡୁଚ । ସେଇ ଖରାର ଧାସ ଅଞ୍ଜଳର ଗୋରା ଚମ ଉପରେ ମାଖି ହେଇଯାଇଚ । ଅଞ୍ଜଳ ଭିତରେ ଯେମିତ ପୁଣି ଅଜଣା ପୁଲକ ଖେଳ ବୁଲୁଚ । ତାର ଆଭାସ ଫୁଟିଚ ଅଞ୍ଜଳର ଓଠରେ । ତାକୁ ଅନେଇ ଅନେଇ ଖୁବ୍ ପାଖକୁ ଚାଲିଆସିଲା ରତ୍ନମଣି ।

"କୋଉଠି ଗାଲମାଡ଼ ଶୋଇପଡଥିଲୁ କ ?"

ପ୍ରଶ୍ନ ପଚାରଦେଲା ପରେ ପରେ ରତ୍ନମଣିର ଭୁଲ ଭାଙ୍ଗିଗଲା । ନା, ଗାଲରେ ମାଡ଼ ହେଇଯିବାର ଦାଗ ନାହିଁ···ଚମର ରଙ୍ଗ ଆପେ ବଦଳ ଯାଇଚ । କନ୍ତୁ ରତ୍ନ-ମଣିର ପ୍ରଶ୍ନ ଶୁଣି ଅଞ୍ଜଳ ନଜ ଗାଲକୁ ହାତରେ ଅଣ୍ଡାଳନେଲା ।

ରତ୍ନମଣି ହସି ଦେଇ କହିଲା, "ଓଲ, ଆଲୋ ଉଣ୍ଡାଳୁଚୁ କଣ···ଆର୍ସିରେ ଦେଖିବୁ ଯା ।" କହି ସେ ପୁଣି ଥରେ ହସି ଦେଇ ଟାଣି ଟାଣି ଅଞ୍ଜଳକ ସାଙ୍ଗରେ ନେଇଗଲା । ଭାରି ଲାଜ ଲାଗିଲା ଅଞ୍ଜଳକ । ଅପା କଣ ଯା' ଭାବୁଚନ୍ତ ସତ ! ଦେହରେ ତାର ସତରେ କଣ ପରିବର୍ତ୍ତନ ହେଇଚ ! ଅନ୍ତର ଭିତରେ ତାର ଆହ୍ଲାଦର ଶିହରଣ ଖେଳଗଲା ଯେମିତ ।

ଏବେ ବ୍ୟବସାୟ କାମରେ ନିରଞ୍ଜନ ଖୁବ୍ ମାତିଯାଇଛି । ଯେମିତି ଭବିଷ୍ୟତ ପାଇଁ ତାର ଆହୁରି ଟଙ୍କା କମେଇବା ଦରକାର, ଏଇଭଳି ଗୋଟିଏ ସଚେତନତା ତା ଭିତରେ ଜାଗିଉଠିଛି । ସେ ଭଲଭାବରେ ହିସାବ କରି ଦେଖିଛି ତାର ମାସିକ ଆୟ ଏଣିକି ଆଠଶହ ଟଙ୍କାରୁ କମ୍ ହେଉନି । ଏହା ଭିତରେ ତିନୋଟି କମ୍ପାନୀର ଷ୍ଟକ୍ କମିଶନ ଏଜେଣ୍ଟ ହେଇଯାଇଛି । ବେଶି ଉଦ୍‌ଯୋଗ ନ କରି ସେମିତି ଅଫିସ ଜମେଇ ବସିଲେ ବି ସେଥିଯୋଗୁ ଖର୍ଚ୍ଚରେ ପ୍ରାୟ ପାଁଶ ଟଙ୍କା ସେ ପାଇପାରିବ । ଏ ସବୁ ଭାବି ଏ ଯନ୍ତ୍ର-ଯୁଗପ୍ରତି ହୃଦୟ ତାର ଅଭିନନ୍ଦନ ଜଣେଇ ବସେ । ଓଡ଼ିଶାରେ ଏ ଯୁଗର ଅଭ୍ୟୁଦୟ ମାତ୍ର । କେଜାଣି ଆହୁରି କେତେ ସ୍ୱର୍ଣ୍ଣଦିବସ ତା ପାଇଁ ଅପେକ୍ଷା କରି ରହିଛି । ଭାବି ଭାବି ନିରଞ୍ଜନ ନିଜ ଭିତରେ, ବିଭୋର ହେଇଉଠେ । ତାର ନିଜର ସନ୍ତାନ ହୁଏତ ନିକଟଭବିଷ୍ୟତରେ ଏ ପୃଥିବୀର ଆଲୋକ ଦେଖିପାରେ ···ଆହୁରି ଗୋବିନ୍ଦ, ତାକୁ ଖୁବ ବଡ ମଣିଷ କରିବାକୁ ହବ···ତାକୁ ବିଦେଶ ପଠେଇ ବଡ଼ ଇଞ୍ଜିନିୟରଟାଏ କରି ଗଢ଼ିବାକୁ ହବ···

କ୍ରମେ ତାର କଳ୍ପନା-ଚକ୍ଷୁରେ ଭାସିଉଠେ ଚିତ୍ର—ବିଲାତ କି ଆମେରିକାରୁ ଗୋବିନ୍ଦ ମସ୍ତବଡ଼ ଇଂଜିନିୟର ହେଇ ଫେରିଛି—ନା—ନା ଆମେରିକା ନୁହେଁ, ବିଲାତ ନୁହେଁ—ରୁଷିଆ ସାଙ୍ଗରେ ଭାରତର ସମ୍ପର୍କ ଘନିଷ୍ଠ ହେଉଛି—ସେଠି ମଧ୍ୟ ଯନ୍ତ୍ର-ଦାନବ ଆଜି ସାରା ପୃଥିବୀକି ଡାକରା ଦେଇ ଛିଡ଼ା ହେଉଛି—ଗୋବିନ୍ଦ ଯିବ ରୁଷିଆ—ଆଉ ଜୀବନର ନୂଆବାର୍ତ୍ତା ସେଠି ସେ ପାଇପାରିବ । ହଁ, ଗୋବିନ୍ଦ ଫେରିବ ବଡ ଇଂଜିନିୟର ହେଇ ରୁଷିଆରୁ । ପଛରେ ତାର ଛିଡ଼ା ହୋଇଥିବେ ଅଞ୍ଜଳିର ପିଲା – କେତେ ପିଲା···ଏକ···ଦୁଇ···ତିନ୍···। ଆଉ ଗଣିପାରିଲାନି ନିରଞ୍ଜନ । ହଁ ସେତିକି ସେତିକି, ଅଂଜଳିର ହେବେ ତିନୋଟି ପିଲା । ଦୁଇଟି ପୁଅ, ଆଉ ଗୋଟିଏ ସୁନାଲକ୍ଷ୍ମୀ ଝିଅ । ତେଣୁ –

ନିରଞ୍ଜନର ସଂସ୍କାରଶୀଳ ମନ ଉପରେ ବ୍ୟବସାୟୀ ହିସାବର ପ୍ରଲେପ ନିପୁଣ ଭାବରେ ଲାଗିଛି । ଏହାପରେ ସେ ଫେରିଆସିଲା ଦୋରସ୍ତି ହିସାବ କିତାବ ଭିତରକୁ । ବୟସ ତାର ଏଇକ୍ଷଣି ପଇଁତିରିଶ ବର୍ଷ ହେବ । ଆଉ ପଚିଶ ବର୍ଷ । ହଁ, ସେଇ ପଚିଶ ବର୍ଷଯାଏ ହେବ । ଷାଠିଏରୁ ଅଧିକ ବର୍ଷ ବଞ୍ଚିବ ବୋଲି ସେ ଯେମିତି ଭାବିବାକୁ ସାହସ ପାଇପାରିଲାନି । ତେବେ ବାପା ତାର ମରିଥିଲେ ଚଉଷଠି ବର୍ଷରେ । ଥାଉ, ବାକି ଗୁଡ଼ାଏ ବର୍ଷ ହୁଏତ ବିପିଟ ବାର୍ଦ୍ଧକ୍ୟ ଭିତରେ ଯିବ । ତା ହେଲେ ସେତେବେଳକୁ ଅଞ୍ଜଳିକି ହେଇଥିବ କେତେ ? ଏବେ ତାକୁ ତେଇଶ, ପୁଣି ଆଉ ପଚିଶ—ମୋଟେ ଅଠଚାଳିଶ··ନା,ନା ସେ ଆଉ କିଛି ଅଧିକ କାଳ ବଞ୍ଚି ରହିବା ଉଚିତ—ହଁ, ହଁ, ଅଞ୍ଜଳି ପୂଜା ପାଠ କରୁଛି···ତା'ର ଈଶ୍ୱରଭକ୍ତି—

ଉଚ୍ଚହାସ୍ୟ କରିଉଠିଲି ସେ ନିଜେ, ଆଉ ନିଜେ ଚମକି ପଡ଼ିଲି ସେ ସେଥିରେ । ତାର ସ୍ୱଭାବ ବିଭାବ ଉପରେ ସଂସ୍କାରଶୀଳ ମନର ପାଞ୍ଚଣ ବାଜିଲି ଯେମିତି । ସବୁ ଭାବନା ଛାଡ଼ିଦେଇ ସେ କମ୍ପାନୀର ଚିଠି ପଢ଼ିବାକୁ ଲାଗିଲି । ପାଖ ମାରୁଆଡ଼ି ଦୋକାନରେ କିଏ ରେଡ଼ିଓ ଖୋଲିଦେଇଛି । ତାର-ଯନ୍ତ୍ର କି କଣ୍ଠର ସ୍ୱର ନାହିଁ । ଖାଲି ବାଂସୁରୀର ସୃଷ୍ଟି ଆଉ ତବଲାର ଠେକାରେ ତାଳ ବିଶ୍ଳେଷଣ ଚାଲିଛି । ବଡ଼ ସୁନ୍ଦର ବଜାଉଛି ତ କିଏ ? ମନେ ପଡ଼ିଗଲା ତାର ନିଧିଆର କଥା । ଦିନେ ଏମିତି ବଜେଇବ ନିଧିଆ । ତା ଆଖିରେ ନିଧିଆ ଆସି ଯେମିତି ଛିଡ଼ାହେଲା । ଏହା ଭିତରେ ଚେହେରାରେ ତାର ଢେର ପରିବର୍ତ୍ତନ ହୋଇଛି । ଆଉ ଗାଈ ଆଣିଛି । ଏବେ ଦୁଧ ଦହି ଟିକେ ଖାଇବାକୁ ପାଉଛି ନିଧିଆ । ଖାଦ୍ୟାଭାବରୁ ଦିନେ ଦଧିଆ ମରିଗଲା । ଭାବି ଭାବି ଅଫିସ କାଗଜ ଉପରୁ ଆଖି ଉଠେଇ ସେ ଅନେଇଲା ବାହାରକୁ । ଡାକିଉଠିଲି ବଡ଼ ପାଟିରେ...

ଧନଞ୍ଜୟ... ଧନଞ୍ଜୟ...

ଆଗର ପିଚୁ ରାସ୍ତା ଉପରେ ଚାଲିଯାଉଛି ନିରଞ୍ଜନର ସେହି ସାହିତ୍ୟ-ସାଧକ ବନ୍ଧୁ । ନିରଞ୍ଜନର କଥା ଶୁଣୁଥିଲେ ବି ତାକୁ ଯେମିତି ସେ ଶୁଣିବାକୁ ଚାହେଁନା । ଧନଞ୍ଜୟ ଆଗକୁ ଆଗକୁ ଚାଲିଲା । ବାହାରକୁ ଚାଲିଆସି ନିରଞ୍ଜନ ପୁଣି ଡାକ ଛାଡ଼ିଲା । ନିରଂଜନ ଜାଣେ ସହର ଭିତରେ ଏତେ ବଡ଼ ପାଟିରେ ଡାକିବା ମସ୍ତବଡ଼ ଅଭଦ୍ରତା । କିନ୍ତୁ ଉପାୟ ନାହିଁ । ଚପରାସି କୁଆଡ଼େ କାମରେ ଯାଇଛି । ଆଉ ଏଇ ଧନଞ୍ଜୟକୁ ତାର ଯେମିତି ଆଜି ଦରକାର ।

ଅବଶେଷରେ ଧନଞ୍ଜୟ ଫେରିଲା । ଗୋଟାଏ ଦୀର୍ଘ ନମସ୍କାର କଲା ତାକୁ ନିରଞ୍ଜନ ଅଭ୍ୟର୍ଥନା କଲି । ଧନଞ୍ଜୟର ବେଶଭୂଷାରେ ସେହିପରି ଉଦାସୀନତା ଓ ଦୈନ୍ୟ । ନିରଞ୍ଜନ ଦେହରେ ଫିନ୍ ଫିନ୍ ରେଶମ କନାର ପଞ୍ଜାବୀ । ଗଳାରେ ସୁନା ବୋତାମ । ଆଙ୍ଗୁଠିରେ ଦୁଇ ତିନିଟି ପଥରବସା ସୁନା ମୁଦି ଚକ ଚକ୍ ହେଉଛି । ଏଥିରେ ବଡ଼ ଲଜ୍ଜିତ ହେଲା ନିରଞ୍ଜନ । କଥା ଭାଷା ଭିତରେ ହାତର ମୁଦିଗୁଡ଼ାକୁ ଖୋଲି ପକେଇବାକୁ ଚେଷ୍ଟା କଲା ।

"ତୋର ପିଲାପିଲି କଣ ରେ ?"

ଧନଞ୍ଜୟ ଟିକେ ହସିଦେଲା । ନିରଞ୍ଜନ ତାକୁ ଏ ପ୍ରଶ୍ନ କରୁଛି କାହିଁକି ? ନିରଞ୍ଜନର ମୁହଁକୁ ଚାହିଁଲା ସେ । ବାଳଗୁଡ଼ାକର ପରିପାଟୀ ଅତି ସୁନ୍ଦର, ପୋଷାକ ପରିଚ୍ଛଦ ସବୁ ସୁନ୍ଦର, ଯେମିତି ସିନେମାର ବେଶ ଘରୁ ସେ ବାହାରି ଆସିଛି । ନିଜ ମୁଣ୍ଡରେ ଧନଞ୍ଜୟ ଥରେ ହାତ ମାରିଦେଲା । ଅଲରାବଲରା ବାଳ । କିଛିକ୍ଷଣ ପରେ ଉତ୍ତର ଦେଇ କହିଲା, "ଆଗେ ପୂର୍ବବର୍ତ୍ତୀ କଥାଟା ସିନା ପଚାରିବା ଦରକାର • !"

ଏହା ପରେ ଦୁଇବନ୍ଧୁଙ୍କ ଆଲୋଚନା ଭିତରେ କ୍ରମେ ପ୍ରକାଶ ପାଇଲା ଯେ, ଧନଞ୍ଜୟ ଏପର୍ଯ୍ୟନ୍ତ ବିବାହ କରିନି । ନର୍ମଦା ବୋଲି ଗୋଟିଏ ଝିଅ ସାଙ୍ଗରେ ଏ ପ୍ରସ୍ତାବ ଟିକେ ଆଗେଇଥିଲା; କିନ୍ତୁ ସେତିକିରେ ତାହା ସମାପ୍ତ ହୋଇଛି । ଅନ୍ତର-ମିଳନ ପୂର୍ବରୁ ବାହାରର ମିଳନ ପାଇଁ ଧନଞ୍ଜୟ କୌଣସି ଆବଶ୍ୟକତା ପୂରଣ

କରିପାରିଲେନି । ଅପେକ୍ଷା ପରେ ଅପେକ୍ଷା ; କିନ୍ତୁ ଅନନ୍ତକାଳର ଅପେକ୍ଷା ମଣିଷ ପକ୍ଷରେ ଅକାମ୍ୟ । ସେଠି ଜୁଆରର ଭଙ୍ଗା ଖୁବ୍ କ୍ଷିପ୍ର । ଜୁଆର ଭଙ୍ଗାର ଫେଣ୍ଡାଣ ମିଶାଣ ଭିତରେ ଆଉ କାହାର ନର୍ମଦାସ୍ୱୀମା ହୋଇ ଗଲାଗଲା ନର୍ମଦା । କିନ୍ତୁ ଧନଞ୍ଜୟର ସାହିତ୍ୟ ସାଧନାରେ ସେଥିଯୋଗୁଁ ଗୋଟିଏ ଚେଉ ଉଠିଥିଲା । ତାହାର ସଦ୍‌ବ୍ୟବହାର କରିଚି ସେ କବିତା ଗାଇ ।

"ହଁ...ଆଉ ଆଜି ଏ ଯାତ୍ରା କୁଆଡେ ?"

ଧନଞ୍ଜୟ ତରବର ହୋଇ ଉତ୍ତର ଦେଲା, "କବି ପଦ୍ମଚରଣ ମରି ଯାଇଛନ୍ତି, ତୁ ଜାଣିନୁ ?"

"ହଁ, କଣ ହେଲା ? ସେ କବି ବୋଲି ଆଉ କଣ ମରିବେନି ?"

"କିନ୍ତୁ ବଡ଼ ଦୁଃଖରେ ମଲେ ।"

ଧନଞ୍ଜୟର ଏ କଥା ଶୁଣି ତାକୁ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲା ନିରଞ୍ଜନ । ଆଉ ଏ ସାହିତ୍ୟ-ସାଧକ ବିଚରାଟି କଣ ସୁଖରେ ଅଛି ବୋଲି ବିଶ୍ୱାସ କରୁଚି !

ନିରଞ୍ଜନ ଭାବ ବଦଳେଇ ସମବେଦନା ପ୍ରକାଶ କରି କହିଲା—"ହଁ, ବଡ଼ ଦୁଃଖରେ ମଲେ । ତାଙ୍କ ଶୋକସଭା କରିବା ପାଇଁ କାଗଜରେ ତୁ ଗୋଟାଏ ନୋଟିସ୍ ଦେଇଚୁ, ମୁଁ ଦେଖିଚି । କିନ୍ତୁ ତାଙ୍କ ଦୁଃଖ ଦୂର କରିବାକୁ ତମେ ସବୁ ଆଗରୁ କଣ କରିଥିଲ ? ସାହିତ୍ୟିକ ଭିତରୁ ଯେ କେତେଜଣ ଧନ ଅର୍ଜି ପାରିଚନ୍ତି ସେମାନେ କିଛି ହେଲେ କରିଚନ୍ତି ?"

ଏଥିପାଇଁ ଧନଞ୍ଜୟର କିଛି ଉତ୍ତର ନ ଥିଲା । ସାହିତ୍ୟିକ ପୁଣି ସାହିତ୍ୟିକର ଦୁଃଖ ଦୂର କରିବେ କଣ ? ସରକାର ଆଉ ପୁଞ୍ଜିପତିମାନଙ୍କ ଉପରେ ସେମାନଙ୍କର ଅଭିଯୋଗ...ଆଉ ଏ ଦିଗଟା ତ ସେ କେବେ ଭାବିନି । ହଁ...ଆମ ଭିତରୁ କେତେଜଣ ତ ଆଜି ବେଶ ଧନ କମେଉଛନ୍ତି...ହଁ ହଁ...ସେମାନେ ନିଶ୍ଚେ ସାହାଯ୍ୟ କରିଥିବେ...ସେ କଥା କଣ ଆଉ ସେମାନେ ଅଶିଷ୍ଟ ହୋଇ ପ୍ରକାଶ କରିଥାନ୍ତେ ? ଉତ୍ସାହିତ ହୋଇ ଧନଞ୍ଜୟ କହିଲା, "ତୁ କୋଉଠୁ ଜାଣିବୁ ସେ କଥା ?"

ନିରଂଜନ ଟିକେ ତାଚ୍ଛଲ୍ୟର ହସ ହସିଦେଲା । ଯେଉଁ ଅନୁଷ୍ଠାନ ସହ ସେ ଘନିଷ୍ଠ ଭାବରେ ସଂପୃକ୍ତ, ସେ ଅନୁଷ୍ଠାନ ପକ୍ଷରୁ ଦିଆଯାଇଥିବା ସାହାଯ୍ୟର ଚାନ୍ଦାଦାତାମାନଙ୍କ ତାଲିକା ଏ ପର୍ଯ୍ୟନ୍ତ ତା ପାଖରେ ରହିଛି । କିନ୍ତୁ ତାକୁ ଧନଞ୍ଜୟକୁ ଦେଖେଇବାକୁ ସେ ଆଉ ଉଚିତ ମନେ କଲାନି ।

କିଛି ସମୟ କଥାଭାଷାରେ ସେ ଧନଂଜୟକୁ ସାଙ୍ଗରେ ଧରି ନିଜ ଘରକୁ ନେଇଗଲା । ନିରଂଜନର ସ୍ରୁନ୍ଦର ବୈଠକଖାନାଟି ଧନଂଜୟକୁ ଖୁବ ଭଲ ଲାଗିଲା । କାନ୍ଥରେ ଦେବଦେବୀଙ୍କ ଛବି ଦେଖି ସେ ଅସନ୍ତୁଷ୍ଟ ହେଉଥିଲେ ମଧ୍ୟ ମୁହଁରେ କିଛି ପ୍ରକାଶ କଲାନି । ନିରଂଜନ ଆଜି ଭାଗ୍ୟବାନ ହୋଇଚି...ତାର କାର୍ଯ୍ୟକୁ ସମାଲୋଚନା କରିବା ପାଇଁ ଧନଂଜୟ ସାହସ ସଂଗ୍ରହ କରି ପାରିଲାନି । ହୁଏତ ତାର କାର୍ଯ୍ୟକୁ ସମର୍ଥନ କରିବାକୁ ହେବ । ଏଁ...ସମର୍ଥନ ? ଧନଞ୍ଜୟର ମନରେ ବିଦ୍ରୋହ ଉଙ୍କି ମାରିଲା ।...ମାରୁଥ୍ୱାଡ଼ିପଟିରେ ଢେର୍ ଭାଗ୍ୟବାନ ଅଛି ...ତାଙ୍କୁ କଏ...

"ଗୋବିନ୍ଦ, ହେଉଛନ୍ତି ତୋର ମାଷ୍ଟ୍ରେ । ଏଥର ନୂଆ ପାଠ ପଢ଼େଇବେ । ତାଙ୍କୁ ନମସ୍କାର କର ।"

ନିଜର ଭାବନା ବ୍ୟାହତ ହେବା ଭିତରେ ଅନ୍ୟର ଭାବନାର ଧକ୍କାରେ ଧନଂଜୟ ଚହଲି ଉଠିଲା । ତାର ଆଖି ପଡ଼ିଲା ଗୋବିନ୍ଦ ଉପରେ । କାନରେ ସୁନା ଫାଶିଆ, ଗୋରା ଗୁଲୁ ଗୁଲୁ ସୁନ୍ଦର ପିଲାଟିଏ । ମୁଣ୍ଡର କଳା ଘୁମର କୁଞ୍ଚୁ କୁଞ୍ଚିଆ ବାଳ ଝୁଲି ଝୁଲି ହେଉଛି । ଅନେଇ ଅନେଇ ତାକୁ ପ୍ରତିନମସ୍କାର କଲା ଧନଞ୍ଜୟ ।

ନିରଞ୍ଜନର କଥା ପୁଣି ଧନଞ୍ଜୟ ଶୁଣିବାକୁ ପାଇଲା, "ମୋର କଥା ତୁ କେବେ ରଖିନୁ ଧନଞ୍ଜୟ, ସେତେବେଳେ ରାଜି ହୋଇଥିଲେ ତୁ ଆଜି ଦେଢ଼ ଶ' ଟଙ୍କା ପାଉଥାନ୍ତୁ । ଆଜି ତୁ କି ଅବସ୍ଥାରେ ଚଳୁ ମୁଁ ଜାଣିଛି...ତୁ ଯୋଉ ଘରେ ରହିଚୁ ମୁଁ ତାକୁ ମଧ୍ୟ ଦେଖିଛି । ଗୋବିନ୍ଦକୁ ପାଠ ପଢ଼ାଇବା ଭାର ତୋତେ ଗ୍ରହଣ କରିବାକୁ ହେବ ।"

ମନେ ମନେ ଧନଞ୍ଜୟ ଭାବିଲା, ଏ କଣ କହୁଚି ନିରଞ୍ଜନ, ଗୋଟାଏ ଲୁହା ଲକଡ଼ କମ୍ପାନୀର ଏଜେଣ୍ଟ ସେ, ମତେ କିଛି ଟଙ୍କା ଦେଇ କିଣି ନେବାକୁ ପ୍ରସ୍ତାବ କରୁଚି ? ଦେଶରେ ସାହିତ୍ୟସାଧନାର ଆଦର୍ଶ ତା ହେଲେ କଣ ରହିବ ? ଓଡ଼ିଆ ସାହିତ୍ୟର ବିକାଶ ପାଇଁ ସରକାର ମଧ୍ୟ ପାଣ୍ଠି ଖଞ୍ଜି ଦେଲେଣି । ଆଉ କଣ ଅସୁବିଧା ରହିବ । କିନ୍ତୁ ଏଇ ପିଲାଟି...ନିରଞ୍ଜନ କଣ କହିଲା ତା ନାଁ...ଗୋବିନ୍ଦ; ହଁ...ଭଲ ପିଲାଟି......ତାକୁ ପାଠ ପଢ଼େଇଲେ ଆନନ୍ଦ ଲାଗିପାରେ...ସିଏ ବାହା ହେଇଥିଲେ ତାର ମଧ୍ୟ ଏଡ଼େ ପୁଅଟିଏ ହୁଅନ୍ତାଣି ।

ଧନଞ୍ଜୟ ନୀରବ ରହିଲା ।

॥ ୧୧ ॥

ଏହା ଭିତରେ ଅନେକ ଦିନ ଗତ ହୋଇଯାଇଛି । ନିଧିଆର ବୟସ ଏହା ଭିତରେ ଦଶବର୍ଷ ପୂରିଗଲାଣି । ତାର ପୂର୍ବର ଚେହେରା ମଧ୍ୟ ଯଥେଷ୍ଟ ବଦଳି ଯାଇଚି । ପ୍ରାୟ ବର୍ଷେ ହେଲା ସଙ୍ଗୀତ ଶିକ୍ଷାନୁଷ୍ଠାନରେ ନିରଞ୍ଜନ ତାକୁ ଭର୍ତ୍ତି କରି ଦେଇଥିଲା । ସେହି ଶିକ୍ଷା ଭିତରେ ନିଧିଆ ସତକୁ ସତ ନିରଞ୍ଜନର ଆକାଂକ୍ଷାକୁ ସଫଳ କରି ପ୍ରତିଭାର ପରିଚୟ ଦେଇଚି । ତଥାପି ସେ ଶିଶୁ, କିନ୍ତୁ ତା' ଭିତରେ ଦଧିଆର ଆବିର୍ଭାବ ଘଟୁଚି ବୋଲି ନିରଞ୍ଜନର ବିଶ୍ୱାସ ହେଇଚି । ନିଧିଆର ବିଦ୍ୟାଶିକ୍ଷା ଆଉ ବାଦ୍ୟଶିକ୍ଷା ଏକ ତାଳରେ କିନ୍ତୁ ଗତି କରିପାରିନି । ପାଠ ଦିଗରେ ଦଧିଆ ନିପଟ ମୂର୍ଖ ଥିଲା । ସେଥିଯୋଗୁ ନିରଞ୍ଜନ ବେଳେ ବେଳେ ଭାବେ, ନିଧିଆ ପାଠ ଦିଗରେ ହୁଏତ ଉଧେଇ

ପାରିବନି । ସଂସ୍କୃତି ଅଭାବରୁ ସେଥିପାଇଁ ବୋଧହୁଏ ମଧ୍ୟ ଭିତରେ ଆଗ୍ରହ ଦେଖା ଦେଉନି । ହଉ ହଉ, ସେତିକ ଡେର, ଟିକିଏ ଲେଖି ପଢ଼ି ଜାଣିଥିଲା ମଧ୍ୟ...ଡେର ...ରସିଦରେ ଦସ୍ତଖତ୍ ଦେଇ ଟଙ୍କା ଆଣିପାରିବ । ତାର ମନେ ପଡ଼ିଯାଏ ରେଭ୍ରେଣ୍ଡରେ ସେଇ ଡବଲବାଦକର କଥା; ସେଠି ଯେମିତି ମଧ୍ୟ ଆଦନେ ବସିବ...ଆଉ ରେଜ୍ରେଣ୍ଡ ଘଉଚରରେ ଦସ୍ତଖତ୍ ଦେଇ ଟଙ୍କା ରୋଜଗାର କରିବ । ସେମିତି ଭାବିବା ଭିତରେ ନିରଞ୍ଜନ ଯଥେଷ୍ଟ ଆଶ୍ୱସ୍ତି ପାଏ । ଗୋଟିଏ ଅରକ୍ଷ ପିଲା ମଣିଷ ହେବା ଭିତରେ ପ୍ରତିଭାର ଉଜ୍ଜୀବନ ମଧ୍ୟ ଘଟିବ, ଆଉ ଏକ ଜୀବନ୍ତ ସ୍ମାରକ ରହିଯିବ ବଧିଆର ।

ନିଜର ଉନ୍ନତିରେ ମଧ୍ୟ ନିରଂଜନ ଆହୁରି ଆଶାନ୍ୱିତ ହୋଇଛି । ବର୍ଷେକରୁ କିଛି ଅଧିକ ହେବ ଅଞ୍ଜଳିର ପୁଅଟିଏ ହୋଇଛି । ଯେମିତି ପୃଥିବୀର ପରମ ଆଶ୍ଚର୍ଯ୍ୟ ଘଟଣା ଭିତରୁ ତାହା ଗୋଟିଏ । ନିରଞ୍ଜନର ସେ କଥା ଆଜି ଟିକେ ଦେହସହା ହୋଇ ଗଲାଣି । କିନ୍ତୁ ଏବେ ମଧ୍ୟ ପୁଅକୁ ଅନେଇ ସେ ଯଥେଷ୍ଟ ବିସ୍ମୟାବିଷ୍ଟ ହୋଇ ରହେ । ଅଂଜଳି ନିଜ କୋଳରେ ପୁଅକୁ ଧରିଥିଲା ବେଳେ ସେ ଥରେ ଥରେ ଆଖି ଫେରେଇ ପାରେନା । କୋଉଠି ଥିଲା ଏଇ ଛୁଆ...ସେ କିଛି ଭାବିପାରେନା...ଗୋବିନ୍ଦଙ୍କୁ ଯଥେଷ୍ଟ ନିରୀକ୍ଷଣ କଲେ ମଧ୍ୟ ତାର ସେ ଭ୍ରାନ୍ତି ଦୂର ହୁଏନା । ଆଶ୍ଚର୍ଯ୍ୟତା ଯେମିତି ସବୁ ଆସି ରୁଣ୍ଡ ହୋଇଛି ଅଂଜଳିର ଏଇ କୋଳର ଲାବଣ୍ୟମୟୀ ଶିଶୁଟି ଦେହରେ ।

ବାଟଘାଟରେ କେତେ ଶିଶୁ ନିରଂଜନ ଦେଖିଛି । ଛୁଆ କାଖେଇ କେତେ ଅନାଥିନୀ ଭିକ ମାଗୁଥିବା ମଧ୍ୟ ସେ ଦେଖିଛି । ସେଦିନ କାଠଯୋଡ଼ି କୂଳରେ ସୁନ୍ଦର ସଦ୍ୟଜାତ ପୁଅଟିକୁ ତାର ମା ହୁଏତ ମାରି ପକେଇ ଦେଇଥିଲା । ସକାଳେ ନଈକୂଳେ ବୁଲିବାବେଳେ ଅନ୍ୟମାନଙ୍କ ଭିତରେ ନିରଂଜନ ମଧ୍ୟ ତାକୁ ଦେଖିଛି । ହୁଏତ ସେଇଟି ଅବୈଧ ସନ୍ତାନ, ଆଉ ସେଥିଯୋଗୁଁ ତାର ଜୀବନର ପରିଣତି ଏପରି ଶୋଚନୀୟ ହେଲା । କିନ୍ତୁ ସେହି ଅବୈଧ ସନ୍ତାନର ଜନ୍ମରେ ମଧ୍ୟ ସୃଷ୍ଟିକ୍ରିୟାର ଠୁଳୀଭୂତ ଆଶ୍ଚର୍ଯ୍ୟତା ରହିଛି । ନିରଂଜନ ସେ ସବୁ କିନ୍ତୁ ବର୍ତ୍ତମାନ ସ୍ମରଣ କରିପାରେନା । ମାରୁଆଡ଼ିପଟିର ଶହ ଶହ ଟଙ୍କା ଗଣା ଆଉ ନିଜ ହାତର ଦିଶଟି ଟଙ୍କା ଭିତରେ ଯଥେଷ୍ଟ ପାର୍ଥକ୍ୟ ରହିଛି । ନିରଞ୍ଜନର ଏଇ ଆଶ୍ଚର୍ଯ୍ୟାନୁଭୂତିରୁ ତାହା ଯେମିତି ସହଜରେ ପ୍ରମାଣିତ ହୋଇଯାଏ । ବେଳେବେଳେ ଅଫିସ୍‌ର ବ୍ୟବସାୟ କାମରେ ତାର ମନ ଲାଗେନା । ଘରକୁ ପଳେଇଆସି ପୁଅକୁ ଟିକେ କୋଳରେ ଧରିପକାଏ । ଗେଲ କରିବାକୁ ଇଚ୍ଛା, କିନ୍ତୁ ଅନାଡ଼ି ହାତରେ ସେଥିପାଇଁ ସେ ସାହସ ଯେମିତି ପାଏନା । ପୁଣି ନେଇ ଝୁଲାରେ ଶୋଇଦିଏ । ଅଂଜଳି ଶିଶୁକୁ କୋଳରେ ଧରିଥିଲା ବେଳେ ସେ ଯେମିତି ଖୁବ ସାହସ ପାଏ । ଆନନ୍ଦରେ ମନ ତାର ପୂର୍ଣ୍ଣ ହୋଇଯାଏ । ତାକୁ ନିର୍ନିମେଷ ଆଖିରେ ଅନେଇବାର ଦେଖି ଅଂଜଳି ହସିଦେଇ କହେ—"ଆଖି ତମର ଘୋଟେଇ ହଉନି । ନୂଆ ନୂଆ ସିନା, ଆର ବର୍ଷକୁ ମନ ଗୁଡ଼ିଯିବ ଯେ..."

ପଛକଥା ପଦକ କହି ଅଂଜଳି ଅତିମାତ୍ରାରେ ଲଜ୍ଜିତ ହୋଇପଡ଼ିଲା । ବୁଲି ପଡ଼ି ପଛକୁ ଅନେଇଲା, ଆଉ କେହି ନାହାନ୍ତି । ନିରଂଜନ ଜାଣେ, ଅଞ୍ଜଳି ପୁଣି ଅନ୍ତଃସତ୍ତ୍ୱା ହୋଇଛି । ଆର ବର୍ଷକୁ ସେ ପୁଣି ଏକ ସନ୍ତାନର ଜନନୀ ହେବ । ଜୀବନର

ଛନ୍ଦରେ ସୃଷ୍ଟିର ଛନ୍ଦ କ୍ରମେ ପ୍ରଗାଢ଼ ହୋଇ ମିଶିବାକୁ ଯାଉଚି । ଆଜି ସେ ଛନ୍ଦକୁ ସେ ଆଗରୁ ଗଣନା କରୁଚି ନିଜ କଳ୍ପନା ଭିତରେ । ହସି ହସି ସେ ଅଂଜଳିର କାନ ପାଖରେ କହିଲା, "ବେଶି ଫୁଲ ଫୁଟିଲେ ଗଛ ସୁନ୍ଦର ଦିଶିବ ଆହୁରି ।"

ଦୂରରେ ରତ୍ନମଣିର ପାଦଶବ୍ଦ ଶୁଭିଲା । ଉଠିଯାଇ ବଗିଚାରେ ପଡ଼ ଖଣ୍ଡେ ବହି ଖୋଲେଇଲା ନିରଂଜନ । ରତ୍ନମଣି ଘରେ ପହଞ୍ଚି ଅଂଜଳି କୋଳରୁ ପୁଅକୁ ନେଇ ଗେଲ କରିବାକୁ ଲାଗିଲା ।

ବହୁ ଚେଷ୍ଟାସତ୍ତ୍ୱେ ଧନଞ୍ଜୟକୁ କିନ୍ତୁ ନିରଂଜନ ବାଗକୁ ଆଣିପାରିନି । ଦି ବର୍ଷ ତଳର କଥା, ବନ୍ଧୁର ଅନୁରୋଧ ରକ୍ଷା କରି ଧନଞ୍ଜୟ କିଛି ଦିନ ଗୋବିନ୍ଦକୁ ପାଠ ପଢ଼େଇବାକୁ ଆସିଥିଲା କିନ୍ତୁ ପାରିଲାନି, ଛାଡ଼ି ଦେଇ ଚାଲିଗଲା । ବିଶେଷ କଥା ଗୋବିନ୍ଦକୁ ଅ ଆ କ ଖ ପଢ଼େଇବା ପାଇଁ ସେ ତାର ସୃଜନକାମୀ ମନ ଭିତରେ ତିଳେ ହେଲେ ପ୍ରେରଣା ପାଇଲାନି । ଦୈନ୍ୟର କଷାଘାତ ମଧ୍ୟ ତାକୁ ଏ ଦିଗରେ ଅନୁବର୍ତ୍ତୀ କରିବାରେ ବିଫଳ ହେଲା । ନିରଞ୍ଜନକୁ ସେ ନିଃସଙ୍କୋଚରେ କହିଦେଲା, "ଗୋବିନ୍ଦ ଅକ୍ଷର ଚିହ୍ନି କିଛି ପାଠ ପଢ଼ିଯାଉ, କିଛିଦିନ ପରେ ମୁଁ ତାକୁ ଆସି ଶିକ୍ଷା ଦେବି ।"

ସାହିତ୍ୟ-ସାଧକ ବନ୍ଧୁକୁ ଆଉ କିଛି କହିପାରିଲାନି ନିରଞ୍ଜନ । ଗୋବିନ୍ଦ ପାଇଁ ତାକୁ କଣ ମାଷ୍ଟର ମିଳିବେନି···ହୁଏତ କୋଡ଼ିଏ ଟଙ୍କାରୁ କମ୍‌ରେ ମଧ୍ୟ ମିଳିବେ । ସେ ମନେ ମନେ ଭାବିଲା, କିନ୍ତୁ ଏତକ କାମ ପାଇଁ ତାକୁ ପଚିଶ ଟଙ୍କାରୁ କମ ଦେଇ ନ ଥାନ୍ତା । ହଁ, ଧନଂଜୟର ସାହିତ୍ୟ-ସାଧନା ଦିନେ ଏ ଜାତିର ଗୌରବ ବୃଦ୍ଧି କରିପାରେ । ମାତ୍ର ପଚିଶଟି ଟଙ୍କା ଦେଇ ସେ ସେହି ଜାତୀୟଶକ୍ତିର ଅପଚୟ କରିବ କାହିଁକି ? ସେ ବିନାବାକ୍ୟରେ ଅପସରିଗଲା ଧନଞ୍ଜୟର ବାଟରୁ ।

ସେସବୁ ଦୁଇ ବର୍ଷ ତଳର ଘଟଣା । ଗୋବିନ୍ଦ ପାଇଁ ଅନ୍ୟ ମାଷ୍ଟର ରହିଛି । ଗୋବିନ୍ଦକୁ ଏହା ଭିତରେ ଆଠବର୍ଷ ହେଲାଣି । ପାଠ ପଢ଼ା ତାର ଆଗେଇ ଚାଲିଛି । ଧନଞ୍ଜୟର କଥା ଆଜି ନିରଂଜନର ପ୍ରାୟ ମନେ ନାହିଁ । ଏହା ଭିତରେ ସେ ତାକୁ ଦେଖିନି କି ତାର ଖବର ମଧ୍ୟ ରଖିନି । କେବଳ ଦିନକ ତଳେ ହଠାତ୍ ଧୂମକେତୁ ଭଳି ସେ ଆସି ନିରଂଜନ ପାଖରେ ଉଭା ହୋଇଗଲା । କାମର ଜଂଜାଳ ମଧ୍ୟରେ ବୁଡ଼ି ରହିଥିଲେ ମଧ୍ୟ ସେ ଧନଂଜୟକୁ ଭଲଭାବରେ ଥରେ ଅନାଇଲା । ଅଫିସ୍‌ର ଗୋଟିଏ ଚୌକିରେ ଆପେ ବସିପଡ଼ିଲା ଧନଂଜୟ । ଗୋଡ଼ରେ ଛିଣ୍ଡା ଚଟି ମଧ୍ୟ ନାହିଁ । ପିଚୁ ରାସ୍ତାକୁ ଉଠିବା ପୂର୍ବରୁ ଗଳି ରାସ୍ତାରେ ବୁଲି ବୁଲି ପାଦରେ ଲାଲ

ଧୂଳି ବଦଳି ହୋଇ ଜମି ରହିଛି । ଜାମା ଖଣ୍ଡିକର ଅବସ୍ଥା ଆହୁରି ଶୋଚନୀୟ । ଗାଲରେ ପ୍ରାୟ ପନ୍ଦର ଦିନ ହେବ ଖୁର ବାଜିନି । ବାଳଗୁଡ଼ା ବିଲକୁଲ୍ ବିପର୍ଯ୍ୟସ୍ତ । ତାକୁ ଦେଖି ସେମିତି ଭିତରେ ଭୟ କରିଗଲା ନିରଂଜନ । ମୁଣ୍ଡ ଉପର ବିଜୁଳିପଙ୍ଖାର ଗତି ବଢେଇ ରେଗୁଲେଟର ଘୂରେଇଦେଲା ଚପରାଶି ।

ସେଦିନ ମାସର ପ୍ରଥମ ସପ୍ତାହର ଗୋଟିଏ ଦିନ । କିରାଣୀ ଓ ଚପରାଶିର ଦରମା ଦେବା ପାଇଁ ନିରଂଜନ ପ୍ରସ୍ତୁତ ହେଉଛି । ଏହା ଭିତରେ କାମ ପଡ଼ିବା ଫଳରେ ଆଉ ଜଣେ କିରାଣୀ ନିଯୁକ୍ତ ହୋଇଛି । ପୂର୍ବ କିରାଣୀଟି ଅଧୁନା ସୃଷ୍ଟ ହେଡ଼ କିରାଣୀ ପଦକୁ ଉନ୍ନୀତ ହୋଇଛି । ଆଗେ ତଳଆଡ଼ୁ ଦରମା ଟଙ୍କା ଦେବାକୁ ନିରଂଜନ ଆରମ୍ଭ କଲା । ବାବୁ ହାତରୁ ନେଇ ଚପରାଶି ଆଠଖଣ୍ଡ ଦଶଟଙ୍କିଆ ନୋଟ ଗଣିଲା ।

ଧନଂଜୟ ସ୍ଥିର ଆଖିରେ ଚାହିଁଛି । ହଁ, ଆଠଖଣ୍ଡ ଅର୍ଥ ନୂଆ ଦଶଟଙ୍କିଆ ନୋଟ୍ । ଏଇ ଚପରାଶିଟି ଏତିକି ଟଙ୍କା ପାଉଛି ମାସକୁ । ସେ ଆଉ କିଛି ଚିନ୍ତା କରି ପାରିଲାନି । ଗତ ପାଞ୍ଚ ବର୍ଷ ଭିତରେ ତାର ସାହିତ୍ୟ-ସାଧନାର ସ୍ମୃତିସ୍ତମ୍ଭ ରଚନାକରି ମୋଟ ଦୁଇଖଣ୍ଡି ବହି ପ୍ରକାଶ ପାଇଛି । କିନ୍ତୁ ଆୟଘରେ ଶୂନ୍ । କେତେଥର ସେ ପ୍ରକାଶକ ଦ୍ୱାରକୁ ଟଙ୍କା ପାଇବାକୁ ଦୌଡ଼ିଛି ତା ଧନଂଜୟ ଆଉ ମନେ ରଖିପାରିନି । ଆଶାରେ ମଣିଷ ବଞ୍ଚେ, ତାହାକୁ ସାର୍ଥକ କରିଛି ଧନଂଜୟ ନିଜ ଜୀବନରେ । ବର୍ତ୍ତ-ମାନ ସେ ଗୋଟିଏ ମେସରେ ମୁଣ୍ଡ ଗୁଂଜିଛି ! କିନ୍ତୁ ସେଠି ତା ପାଇଁ ଆହାରର ବ୍ୟବସ୍ଥା ନ ଥାଏ । କେତେବେଳେ ସେ କେଉଁ ଦୋକାନରେ କି ହୋଟେଲରେ ବସି ଖାଏ ତା କେହି ଦେଖିଛି ବୋଲି ମଧ୍ୟ କହିପାରିବନି । କିନ୍ତୁ ସେ ନ ଖାଇ ବଞ୍ଚିଛି ବୋଲି କହିଲେ ମଧ୍ୟ ପ୍ରଚୁର ଅତିଶୟୋକ୍ତି ହେବ । ହୁଏତ ଅନଶନରେ ସେ ମହାତ୍ମା ଗାନ୍ଧିଙ୍କୁ ମଧ୍ୟ ବଳିଯାଇଛି ବୋଲି ସାହିତ୍ୟ-ସାଧକ ସହ ସେ ଆଉ ଏକ ବିରାଟ ବିଶେଷଣର ଅଧି-କାରୀ ହୋଇ ବସିବ । କିନ୍ତୁ ପ୍ରକୃତିରେ ସେ ତାହାର ଅଧିକାରୀ ନୁହେଁ । ସେ କିଛି ଖାଏ । ମାତ୍ର କଣ କେତେବେଳେ ଖାଏ, ସେ କଥା ନିଜେ ମଧ୍ୟ ସେ କହିପାରିବ କି ନା ସନ୍ଦେହ ।

କିରାଣୀ ଦୁଇଜଣଙ୍କ ଦରମା ହିସାବ କରି ଅଢ଼େଇଶହରୁ ଊର୍ଦ୍ଧ୍ୱ ଟଙ୍କା ଚପ-ରାଶି ହାତକୁ ବଢ଼େଇଦେଲା ନିରଞ୍ଜନ । ଦରମା ଓ ଟଙ୍କାତକ ଧରି ଆର କୋଠରୀକୁ ଚାଲିଗଲା ଚପରାଶି । କିଛି ସମୟ ପରେ ଆଗର ଟେବୁଲ ଉପରେ ଦୁଇ ଗ୍ଲାସ ସରବତ ଆଣି ଚପରାଶି ଥୋଇଦେଲା । ନିରଞ୍ଜନ ଗୋଟିଏ ଗ୍ଲାସ ଧରିଲା । ଆର ଗ୍ଲାସଟି ଉଠେଇବା ପାଇଁ ଆଖିରେ ଇଙ୍ଗିତ ଦେଲା ବନ୍ଧୁକୁ । ନିରଂଜନ ଆଙ୍ଗୁଠିରେ ସୁନା ମୁଦିର ଦାମିକା ପଥରଗୁଡ଼ା ଝକ୍ ଝକ୍ କରୁଛି । ମୁଦିର ସଂଖ୍ୟା ଆହୁରି ବଢ଼ିଯାଇଛି ଏହା ଭିତରେ । ସବୁଗୁଡ଼ିକରେ ପଥରର ଝଲକ ।

ଧନଂଜୟ ଭାବିଲା, ଏଥିରୁ ଗୋଟିଏ ଦୁଇଟି ମୁଦି ହେଲେ ସେ ହୁଏତ ଗୋଟିଏ ପ୍ରକାଶନସଂସ୍ଥା ଛିଡ଼ା କରିଦେଇ ପାରନ୍ତା । ଦୁରାଶା ମାତ୍ର । ଭାବନା ଭିତରେ ସେ ସରବତ ଗ୍ଲାସକ ଏକ ନିଶ୍ୱାସରେ ଶେଷ କରିଦେଲା । ଚୂର୍ଣ୍ଣୀଭୂତ ବରଫ ଖଣ୍ଡରେ ସେ ଟିକେ ଦନ୍ତସ୍ପର୍ଶ କରିବାକୁ ମଧ୍ୟ ଭୁଲିଗଲା ।

ଆଉ ଜଣ···ହିଁ ସେ ଜଣ ଆଜ କହିବାକୁ ଆସିଥିଲା ନିରଞ୍ଜନକୁ ; କିନ୍ତୁ ନିରଞ୍ଜନ ଏପରି ନୀରବ କାହିଁକି ? ଭାବି ଭାବି ପିନ୍ଧା ଜାମାରେ ମୁହଁ ପୋଛି ଟିକେ ହସ ଟାଣିବାକୁ ଚେଷ୍ଟା କଲା ଧନଞ୍ଜୟ ।

"ମୁଁ ଗୋବନ୍ଦକୁ କାଲିଠୁଁ ପାଠ ପଢ଼େଇବାକୁ ଯିବି ନିରଞ୍ଜନ !"

ସମ୍ପୂର୍ଣ୍ଣ ଅଭାବିତ ପ୍ରସ୍ତାବ । ଦୀର୍ଘ ଦୁଇ ବର୍ଷ ପରେ ମଧ୍ୟ ଧନଂଜୟ ତାହେଲେ ପାଦେ ହେବ ଆଗକୁ ଯାଇନି ? ହୃଦୟରେ ଦୟାର ଉଦ୍ରେକ ହେଲେ ମଧ୍ୟ ନିରଞ୍ଜନ ତାହାକୁ ମୁହଁରେ ସ୍ୱୀକାର କରିପାରିଲାନି । ତାର କଣ୍ଠସ୍ୱର ଗମ୍ଭୀର ହୋଇ ଶୁଣାଗଲା—

"ଏ ବର୍ଷ ଭିତରେ ଗୋବନ୍ଦ ତେର ଆଗେଇ ଯାଇଚି । ଜଣେ ଗ୍ରାଜୁଏଟ୍ ତାକୁ ପଢ଼ଉଛନ୍ତି । ତୋ'ଠାରୁ ଶିକ୍ଷା ପାଇବାକୁ ତାର ଆଉ ଦରକାର ହବନି···"

ଏତେ ଦୁଃଖ ଭିତରେ ତା ପାଇଁ ଆହୁରି ଦୁଃଖ ଭୋଗ ଥିଲା ବୋଲି ଧନଞ୍ଜୟ କଳ୍ପନା କରି ନ ଥିଲା । ଆଉଥରେ ପାଇଁ ଆହାର୍ଯ୍ୟର ସଂସ୍ଥାନ ନାହିଁ, ଆହୁରି କେତେଥର ଲାଗି ମଧ୍ୟ ସଂସ୍ଥାନ କରିବାର କୌଣସି ସମ୍ଭାବନା ନାହିଁ, ତଥାପି ଏ ଦୁଃଖ ଧନଞ୍ଜୟ ପକ୍ଷରେ ଅତି ଅସହ୍ୟ ହୋଇପଡ଼ିଲା । ଯେମିତି ବଜ୍ରାଘାତରେ ଗ୍ଲେଟ ଗୁଳ୍ମ ଗୋଟିଏ ଜଳିଗଲା । ନିଜର ଅସ୍ତିତ୍ୱ ଅନୁଭବ କରିପାରିଲାନି ଧନଞ୍ଜୟ । ସେ ଏଠୁ ଉଠିବ କେମିତି, କେତେବେଳକେ, ସେ ତାହା ହିଁ ଚିନ୍ତା କରିବାକୁ ଲାଗିଲା । ସେତେବେଳକୁ ନିରଞ୍ଜନ ବସି ସିଗାରେଟ୍ ଟାଣୁଚି । ଏହି ବାରବୁଲା ସାହିତ୍ୟ-ସାଧକଠାରୁ ସେ ଯେଉଁ ପ୍ରତ୍ୟାଖ୍ୟାନ ପାଇଥିଲା, ଆଜ ସିଗାରେଟ୍‌ର ଧୂଆଁରେ ସେ ଯେମିତି ତାର ବିଜୟ ଘୋଷଣା କରୁଚି । ଧୂଆଁର କୁଣ୍ଡଳୀଗୁଡ଼ାକ ପଙ୍ଖାର ପବନରେ ପିଟିହୋଇ ବାହାରକୁ ଭାସି ଭାସି ଯାଉଚି ।

ଧନଞ୍ଜୟ ଉଠିବାକୁ ଚେଷ୍ଟା କଲା । ଧୂଆଁର କୁଣ୍ଡଳୀଗୁଡ଼ାକ ଗୋଟାଏ ଆସ୍ତରଣ ସୃଷ୍ଟି କରିଚି । ନିରଞ୍ଜନର ମୁହଁ ତାକୁ ଦେଖାଯାଉନି ଯେମିତି । ବନ୍ଧୁକୁ ଆଘାତ ଦେଲା ପରେ ନିରଞ୍ଜନ ମଧ୍ୟ ଜୋରରେ ଧୂଆଁ ଛାଡ଼ି ତାରି ଭିତରେ ଆତ୍ମଗୋପନ କରିବାକୁ ଚେଷ୍ଟା କଲା ।

॥ ୧୨ ॥

ଧନଞ୍ଜୟ ଚାଲିଗଲା ପରେ ନିରଞ୍ଜନ ଭିତରେ ଆତ୍ମଗ୍ଲାନିର ଧୂଆଁ ଭରିଯିବାକୁ ଲାଗିଲା । ଆମ ଦେଶର ସାହିତ୍ୟ-ସାଧକଙ୍କ ପ୍ରତୀକ ଏଇ ଧନଞ୍ଜୟ । ଅଭୁକ୍ତ କମ୍ବା ଅର୍ଦ୍ଧଭୁକ୍ତ, ଛିନ୍ନବାସ—ଯେମିତି ସବହାରା ଶ୍ରେଣୀର ଏକ ଜାଗ୍ରତ ପ୍ରତିନିଧି । ଶେଷରେ ତାହାକୁ ମଧ୍ୟ ଅତି ଅବହେଳା ସହ ପ୍ରତ୍ୟାଖ୍ୟାନ କଲା ନିରଞ୍ଜନ ।

ପୁଣି ଧନଞ୍ଜୟ ତାର ବନ୍ଧୁ । ଭାବି ଭାବି ନିରଞ୍ଜନ କ୍ଷୋଭ ଓ ଆତ୍ମବଞ୍ଚନାରେ ମ୍ରିୟ-ମାଣ ହୋଇପଡ଼ିଲା । ଧନଂଜୟକୁ କଣ ପାଇହେବନି ବର୍ତ୍ତମାନ ? ପ୍ରାୟ ଦଶମିନିଟ ହେବ ସେ ଏଠୁ ଯାଇଛି···ଗଲାବେଳେ ତା ମୁହଁକୁ ଚାହିଁପାରିନି ନିରଂଜନ···ଓଃ ସିଗାରେଟର ଧୂଆଁ ଗୁଡ଼ାକ କି ଦୁଷ୍ଟ···ଆତ୍ମପ୍ରବଞ୍ଚନାର ଏଇ ଭାବନାଟା ଆପଣାଛାଏଁ ଉଙ୍କି ମାରି ଉଠିଲା ନିରଞ୍ଜନର ମନ ଭିତରେ । ଯେମିତି ମଣିଷର ଜୀବନଟା କେବଳ ଫିସାଦରେ ପରିଣତ ହୋଇଗଲାଣି । ତଳେ ହୁ'ଦସ୍ତ ଗୋଡ଼ଟାକୁ ବାଡ଼େଇ ଦେଇ ପ୍ରବଞ୍ଚନାକୁ ମହାଘାତ କରି ହଠାତ୍ ଉଠିପଡ଼ି ନିରଂଜନ ଛିଡ଼ା ହେଲା । ହଁ, ରାସ୍ତାରେ ଯାଉଥିବ ଧନଞ୍ଜୟ···ତାକୁ ଧରିହେବ ନିଶ୍ଚୟ···

ଅଫିସରେ ନିଜର କାମ ବନ୍ଦ କରିଦେଇ ନିରଂଜନ ରାସ୍ତାକୁ ବାହାରି ପଡ଼ିଲା । ତାହାର ନିଜ ଦାମ ପାଇଁ କାହାକୁ କୈଫିୟତ ଦେବାର କିଛି ନାହିଁ । କିରାଣି ଓ ଚପରାସି ନିରଞ୍ଜନର ଗତିବିଧିରେ ବିସ୍ମିତ ହୋଇ ଅବଶ୍ୟ ଚାହିଁରହିଲେ ; କିନ୍ତୁ କୌଣସି ପ୍ରଶ୍ନ ଉଠାଇବାକୁ ସେମାନଙ୍କର ଅଧିକାର ନାହିଁ । ପକ୍ଷମାନଙ୍କର ଟଙ୍କା ଏପର୍ଯ୍ୟନ୍ତ ଅଫିସରେ ପହଞ୍ଚି ନାହିଁ । ଦୁଇ ତିନି ଦିନ ଭିତରେ କଲିକତ୍ତାର ପାର୍ଶଲ ନ ମୁକୁଳାଇଲେ ଡମରେଜ୍ ପଡ଼ିଯିବ । ଅଫିସର କାର୍ଯ୍ୟ ଭିତରେ କିରାଣିମାନଙ୍କ ପକ୍ଷରୁ ସେତିକି ନିରଞ୍ଜନ ସହ ପରାମର୍ଶ କରିବାର ଥିଲା । କିନ୍ତୁ ସେ ଏପରି ଆକସ୍ମିକ ଭାବରେ ଚାଲିଯିବ ବୋଲି କେହି ଚିନ୍ତା କରି ନ ଥିଲେ । ଅନ୍ୟ ଉପାୟ ନ ଦେଖି ଦ୍ୱିପ୍ରହରବେଳେ ଚପରାସି ହାତରେ ସେସବୁ କାଗଜପତ୍ର ବାବୁଙ୍କ ଘରକୁ ପଠାଇ ଦେବାକୁ ହେଡ୍ କିରାଣି ଠିକ କରି ନିଶ୍ଚିନ୍ତ ରହିବାକୁ ଚେଷ୍ଟା କଲେ ।

ବାଲୁବଜାର ଛକ ଉପରେ ପହଞ୍ଚି ନିରଂଜନ ନିଜର ଗନ୍ତବ୍ୟ ଆଉ ସ୍ଥିର କରିପାରିଲା ନାହିଁ । କୁଆଡେ ଯାଇଥିବ ଧନଞ୍ଜୟ ! ହଁ, ଆଗରେ ଦୁଇ ଚାରିଟା ବହି ଦୋକାନ ଆହୁରି ରହିଚି । କିନ୍ତୁ କେଉଁ ଦୋକାନ ଧନଞ୍ଜୟର ବହି ଛାପିଚି, ସେ କଥା ନିରଞ୍ଜନ ଜାଣେନା । ଆଉ ଏଇ ସକାଳଓଳି ତାକୁ କୋଉ ଦୋକାନୀ ପୁଣି ଟଙ୍କା ଦବ—ଧନଞ୍ଜୟ ହୁଏତ କାଲିଠୁଁ କିଛି ଖାଇନି—ତାର ଟଙ୍କା ଖୁବ୍ ଦରକାର—ସେଥିପାଇଁ କୋଉ ଦୋକାନକୁ ସେ ହେଲେ ଉଠି ଯାଇଥିବ । ପକେଟରେ ହାତ ମାରିଲା ନିରଞ୍ଜନ; ମନିବ୍ୟାଗ୍‌ଟା ଅଛି । ସେ ପୁଣି ଆଗକୁ ଚାଲିବାକୁ ଲାଗିଲା ।

"କୁଆଡେ ଏମିତି ଧାଇଁଚନ୍ତି ନିରଞ୍ଜନ ବାବୁ ?"

"କିଏ ?" ନିରଂଜନ ମୁହଁ ବୁଲେଇ ଅନେଇଲା । ସେ ଦେଖିଲା, ଭଲ କରି ଦୃଷ୍ଟି ନ ଦେଇ ଗୋଟାଏ ବହି ଦୋକାନ ସେ ଅତିକ୍ରମ କରି ଚାଲି ଯାଉଥିଲା, କିନ୍ତୁ ଏ ଦୋକାନ ଭିତରୁ ତାକୁ ଡାକିଲା କିଏ ?

ଫେରିପଡ଼ି ନିରଞ୍ଜନ ଦୋକାନ ଆଡ଼କୁ ଆସିଲା । ଦୋକାନରୁ ବାହାରି ଆସି ଜଣେ ତରୁଣୀ ତାକୁ ନମସ୍କାର କରି କହିଲା, "ମତେ ଚିହ୍ନିପାରୁ ନାହାନ୍ତି, ମୋ ନା ସରସ୍ୱତୀ । ସେଇ ଅନେକ ଦିନ ତଳେ ଥରେ ଟ୍ରେନ୍‌ରେ ଦେଖା ହୋଇଥିଲା—"

"ହଁ ହଁ, ସତେ ତ !" ନିରଞ୍ଜନର ସ୍ମୃତି-କୋଷରେ ଆଘାତ ଆସିଲା

"ନମସ୍କାର—ନମସ୍କାର—ହଁ ଆପଣ କୋଉ ଗୋଟିଏ କଲେଜର ସାଂସ୍କୃତିକ ସପ୍ତା-ହରେ ଭାଷଣ ଦେବାକୁ ଯାଉଥିଲେ—ଆଉ ମୁଁ ଯାଉଥିଲି ଗୋଟାଏ ଧାନକୁଟା କଳ ଡେଲିଭରି ଦେବାକୁ—ବୋଧହୁଏ ଦୁଇଟି ଷ୍ଟେସନ ଆମ୍ଭେ ଏକାଠି ଯାଇଥିଲେ—"

"ହଁ, ଆପଣଙ୍କର ଠିକ ମନେ ଅଛି । କିନ୍ତୁ ଆପଣଙ୍କୁ ମୁଁ ମୋର ଠିକଣାଟା ଦେଇଥିଲି—କାହିଁ ଆପଣ ତ ଥରେ ହେଲେ ଆସିଲେନି କି ଅଞ୍ଜଳିକି ମଧ୍ୟ ଥରେ ଆଣିଲେନି !"

ପ୍ରାୟ ଏକବର୍ଷ ତଳର କଥା । ନିରଞ୍ଜନ ଏ ଦିଗରେ ପ୍ରକୃତରେ କିଛି କରିନି । ଯେପରି ଏଥିପାଇଁ କିଛି ହେଲେ ସେ କରିବାକୁ ଚାହୁଁ ନ ଥିଲି । ଅଞ୍ଜଳିକି ସେ ଏସବୁ କଥା ମଧ୍ୟ କିଛି କହିନି । ଅନେକ ଦିନ ତଳେ ସେ ଖଣ୍ଡିଏ ଉପନ୍ୟାସ ପଢ଼ିଥିଲି ସରସୀ ନାମ୍ନୀ ଜଣେ ଉଚ୍ଚଶିକ୍ଷିତା ତରୁଣୀ ବିଷୟରେ । ଅଂଜଳିର ତଥ୍ୟ ଅନୁଯାୟୀ ସେ ତାହାର ମାଉସୀଝିଅ ଭଉଣୀ । କିନ୍ତୁ ନିଜ ବିଷୟରେ କୌଣସି ସତ୍ୟତା ନିରଞ୍ଜନ ଏପର୍ଯ୍ୟନ୍ତ ଉଦ୍‌ଘାଟନ କରିନି । ସେହି ସନ୍ଦେହ-ଦୋଳାରେ ଝୁଲି ନିରଞ୍ଜନ ପୁଣି ଏ ଦିଗରେ ଆଗେଇ ଯିବାକୁ ଉତ୍ସାହିତ ହେଇପାରିନି । ଯାହାର ସ୍ୱାମୀ ବୃଥା ସନ୍ଦେହର ବଶବର୍ତ୍ତୀ ହେଇ ନାନା ଅପକର୍ମ କରିପାରେ, ସେଠିକି ପାଦ ପକେଇବାକୁ ପ୍ରକୃତରେ ନିରଞ୍ଜନ ସାହସ ପାଇପାରିନି । ପୃଥିବୀରେ ଚିରଦିନ ଏହିପରି ଭଲ ମନ୍ଦର ସଂଗ୍ରାମ ଲାଗି ରହିବ । ସରସୀ ନିଜର ସଂସାର ଆଉ ଭାଗ୍ୟ ଧରି ରହିଥାଉ, ସେଠି ପୁଣି ସେ ନିମିତ୍ତ ହେବାକୁ ଯିବ କାହିଁକି ?

ସରସୀ ପାଖରେ କ୍ଷମାଭିକ୍ଷା କରି ନିରଞ୍ଜନ କହିଲି, "କାମର ଚାପରେ ମୁଁ ସବୁ ଭୁଲିଯାଇଚି । ଏଥିରେ ଆଉ କୌଣସି କାରଣ ନାହିଁ ।" ଏତକ ଅତି ବିନୟ ସହକାରେ କହି ବହି ଦୋକାନର ବେଞ୍ଚ୍ ଉପରେ ନିରଞ୍ଜନ ଟିକେ ବସିପଡ଼ିଲି । ବଜାର ଉପରେ ସରସୀ ମଧ୍ୟ ଏ ବିଷୟରେ ଆଉ କିଛି କହିବାକୁ ଇଚ୍ଛା କଲାନି । ସର-ସୀର କେତେକ ବହି ଏ ଦୋକାନ ପକ୍ଷରୁ ପ୍ରକାଶ ପାଇଚି । ଦୁଇଖଣ୍ଡି ସେଥିରୁ ପାଠ୍ୟ-ପୁସ୍ତକ ମନୋନୀତ ହୋଇ ବହୁ ସଂଖ୍ୟାରେ ବିକି ହେଇଚି । ସେଥିଯୋଗୁ ଦୋକା-ନରେ ସରସୀର ଖୁବ୍ ଖାତିର । କିଛିକ୍ଷଣ ପରେ ନିରଞ୍ଜନର ଆଖି ପଡ଼ିଲି ଖଣ୍ଡିଏ ବହି ଉପରେ । ଗ୍ରନ୍ଥକାର ରୂପେ ଧନଞ୍ଜୟର ନାଁ ସେଥିରେ ଛପା ହେଇଛି । ନିରଞ୍ଜନ ଦେଖିଲି ଖଣ୍ଡିଏ କବିତା ବହି, ଅଦ୍ଭୁତ ଭାବନାରେ ପୂର୍ଣ୍ଣ । ତାର ବନ୍ଧୁ ଧନଞ୍ଜୟ ସେ ସବୁ ଲେଖିଛି । ବହି ଖଣ୍ଡିକ କିଣିନେଲି ନିରଞ୍ଜନ ।

"ଏ ଲେଖକଙ୍କର ଆଉ କିଛି ବହି ଅଛି ?"

ଆଗରେ ଚଉକି ମାଡ଼ି ବସିଥିବା ମୁଖ୍ୟ ବ୍ୟବସାୟୀଟି ଉତ୍ତର ଦେଇ କହିଲେ, "ନା, ପ୍ରକାଶ ପାଇନି । ପ୍ରାୟ ଦଶ ମିନିଟ ଆଗରୁ ଖଣ୍ଡିଏ ପାଣ୍ଡୁଲିପି ତାଙ୍କର ପାଇଛୁ ।"

ସରସୀ ହଠାତ୍ କହିଉଠିଲି, "ଖୁବ ଶସ୍ତାରେ ।"

ନିରଞ୍ଜନ ଚମକି ଉଠିଲି । ନିଶ୍ଚୟ ଜୀବନ ରକ୍ଷା କରିବାକୁ ଧନଞ୍ଜୟ ଏ

କାଣ୍ଡ କରି ଚାଲିଯାଇଛନ୍ତି । ଆଜି କିଛି କଥାଭାଷା କରି ନିରଞ୍ଜନ ଜାଣିପାରିଲା, ମାତ୍ର ଦଶଟି ଟଙ୍କାରେ ଧନଞ୍ଜୟ ସେ ପାଣ୍ଡୁଲିପିଟି ଦେଇ ଚାଲିଯାଇଛି । କିନ୍ତୁ ଏଥିପାଇଁ ସେ ନିଜେ ଦାୟୀ । ପୂର୍ବର ଆତ୍ମଗ୍ଲାନିରେ ପୁଣି ଘାରି ହୋଇପଡ଼ିଲା ନିରଞ୍ଜନ । ଦୋକାନରୁ ଉଠି ପଡ଼ି ନିରଂଜନ ପୁଣି ଆଗକୁ ଚାଲିଲା । ସରସୀ ମଧ୍ୟ ଠିଆ ହେଲା ରାସ୍ତାରେ । ସେ ମଧ୍ୟ ଆଗକୁ ଚାଲିଲା । ନିରଞ୍ଜନ ବିସ୍ମିତ ହୋଇ ଅନେଇଲା ପଛକୁ । ହଁ, ସରସୀ ଚାଲିଛି ତା ପଛରେ ।

କିଏ ଏଇ ସରସୀ ? ଉପନ୍ୟାସର ନାୟିକା, ନା କଲେଜର ଅଧ୍ୟାପିକା, ନା ଅଞ୍ଜଳିର ମାଉସୀଝିଅ ଭଉଣୀ ? ସତେ ରହସ୍ୟମୟୀ ଏଇ ନାରୀ···କାହିଁକି ଚାଲୁଛି ତା ପଛରେ ଏଇ ରାସ୍ତାରେ ? ଗୋଟାଏ ବିରାଟ ପ୍ରଶ୍ନ ଉଠିଲା ନିରଞ୍ଜନର ମନରେ ।

ଧନଞ୍ଜୟ ଆଜି ଆଉ ମରିଯିବନି କେବେଁ । ନିତାନ୍ତ ପକ୍ଷରେ ଦଶ ଟଙ୍କା ତା ହାତରେ ଅଛି । ବୃଥାରେ ଏ ରାସ୍ତାରେ ବୁଲିବା ଲାଭ ନାହିଁ । ପାଖର ଜୋତା ଦୋକାନକୁ ଉଠିଗଲା ନିରଞ୍ଜନ । ହଁ, ହେଲେ ସ୍ୟାଣ୍ଡେଲ ନେବାକୁ ଅଞ୍ଜଳି କୋଉଦିନୁ କହିଥିଲା । ଗୋବିନ୍ଦ ପାଇଁ ବି ହେଲେ ଜୋତା ନେବାକୁ ହେବ ।

ଆରେ ସୁନ୍ଦର ସ୍ୟାଣ୍ଡେଲ ! ଅନେଇ ଅନେଇ ଦୋକାନ ଭିତରକୁ ପଶିଗଲା ସରସୀ ମଧ୍ୟ ।

ଦୁଇଜଣ ବିଶିଷ୍ଟ ଗ୍ରାହକଙ୍କୁ ଦେଖି ଦୋକାନୀ ସ୍ୱିଚ୍ ଟିପି ପଙ୍ଖା ଘୂରେଇ-ଦେଲା । ପବନର ଭଉଁରୀ ଭିତରେ ସରସୀର ପଣତଟା ଖସିଯାଇ ପିଟି ହୋଇଗଲା ନିରଞ୍ଜନର ଦେହରେ । ଯେମିତି ଦେହରେ ତାର ସାପ କାତି ଲାଗିଗଲା । ଚହିଁକି ଉଠି ନିରଞ୍ଜନ ପଛକୁ ଚାହିଁ ଦେଖିଲା, ସରସୀ ଆସି ଠିଆ ହୋଇଛି ହାତରେ ଭ୍ୟାନିଟି ବ୍ୟାଗ୍‌ଟା ଧରି । ପଣତ ତା'ର ଖସିଯାଇଛି ପବନରେ । ବସ୍ତ୍ରର ଆବରଣରୁ ମୁକ୍ତ ହୋଇ ଆକାଶୀ ନୀଳରଙ୍ଗର ପାତଳା ବ୍ଲାଉଜ ତଳେ ବଡ଼ସ୍ତନ ସତ୍ତ୍ୱ ଫୁଟି ଦିଶୁଛି । ତା ତଳର ରୁକ୍ଷିତ ମାଂସର ଉଚ୍ଚତାରେ ଆଖି ଠୋକର ଖାଇଯାଉଛି ।

"ମୋର ହେଲେ ଜୋତା ନେବାର କଥା । ଆପଣଙ୍କ ଗୋଡ଼ର ମାପରେ ନେଲେ ବୋଧେ ହୋଇଯିବ ନିରଞ୍ଜନ ବାବୁ ।" ପଣତଟା ଗୋଟେଇ ନେଉ ନେଉ ଏତିକି କହିଲା ସରସୀ ।

ଆରେ ସତେ ତ···ଅଞ୍ଜଳିର ସ୍ୟାଣ୍ଡେଲ ପାଇଁ ମାପ କାହିଁ ? ଦୋକାନର ଗୋଟିଏ ଚଉକିରେ ବସି ପଡ଼ି ସରସୀର ପାଦକୁ ଅନେଇଲା ନିରଞ୍ଜନ । କିନ୍ତୁ ସରସୀ ପ୍ରକୃତରେ କଣ ଜୋତା କିଣିବ ! ହୁଏତ ତାର ସ୍ୱାମୀ ପାଇଁ କିଣିବ ; ଏଇ ସରସୀ କଣ ସେଇ ଉପନ୍ୟାସର ନାୟିକା ? ଘଡ଼ି ଘଡ଼ି ଆଖି ତାର ଯାଇ ସରସୀ ମୁହଁରେ ଲାଗିଗଲା । ସରସୀର ଆଖି ହେଲେ ସୁନ୍ଦର ଦାମିକା ଜୋତା ଖୋଜିବାରେ ଲାଗିଛି ।

ଦେଖି ଦେଖି ହେଲେ ସୁନ୍ଦର ଜୋତା ପସନ୍ଦ କଲା ସରସୀ । ତାହାର ନିର୍ଦ୍ଦେ-ଶରେ ଦୋକାନୀ ଜୋତା ଯୋଡ଼ାକ କାଚ ଆଲମାରି ଭିତରୁ ବାହାର କରି ଆଣି ଟେବୁଲ

ଉପରେ ଥୋଇଲା । ସରସୀର ଅନୁରୋଧରେ ନିରଞ୍ଜନ ଜୋତାରେ ଗୋଡ଼ ପୂରାଇ ମାପ ପରୀକ୍ଷା କରିବାକୁ ଲାଗିଲା । ଜୋତାରେ ପାଦ ଭର୍ତ୍ତି କରି ନିରଞ୍ଜନ ପଚାରି ବସିଲା "କିନ୍ତୁ ମୋ ଗୋଡ଼ର ମାପ କଣ ଆଉ କାହା ଗୋଡ଼ସହ ସମାନ ହବ ?"

ନିରଞ୍ଜନକୁ ଉତ୍ତର ନ ଦେଇ ସରସୀ ଦୋକାନୀକି ପ୍ରଶ୍ନ କଲା, "ଜୋତାର ଦାମ୍ କେତେ କହିଲେ ?"

ଦୋକାନୀ ସଂକ୍ଷେପରେ କହିଲା, "ପଚାଶ ଟଙ୍କା ।"

ସରସୀ ଆଖି ଟେକି ଦେଖିଲା, ଆଲମାରି ଦେହରେ ଲେଖା ହୋଇଛି— 'ଫିକ୍ସଡ୍ ରେଟ୍' ମାନେ ଦରରେ ହଲଚଲ ନାହିଁ । ତାପରେ ହସି ହସି ନିରଞ୍ଜନକୁ ଅନେଇ ସେ କହିଲା, "ଜୋତା ଯୋଡ଼ାଟା ଖୁବ୍ ଭଲ ହୋଇଛି···ଆପଣଙ୍କ ଗୋଡ଼କୁ ବିଲ୍‌କୁଲ୍ ଫିଟ୍ କରିଛି । ଆପଣ ଏ ଯୋଡ଼ାଟା ନିଅନ୍ତୁ ନିରଞ୍ଜନବାବୁ ! ମୁଁ ଯାହାଙ୍କ ପାଇଁ ନବାକୁ ଭାବିଥିଲି, ସେ ହୁଏତ ଏ ଜୋତାକୁ ପସନ୍ଦ କରିବେନି···"

ଆରପାଖରେ ଏତିକିବେଳେ ଅନ୍ୟ ଖରିଦ୍‌ଦାର ପହଞ୍ଚିଲେ । ତାଙ୍କ କଥା ବୁଝିବାକୁ ଦୋକାନୀ ଆର ପାଖକୁ ଆଗେଇଗଲା । ଏହି ଅବସରରେ ନିରଞ୍ଜନ ପଚାରି ଉଠିଲା ସରସୀକି, "ଆପଣ କାହା ପାଇଁ ନବାକୁ ଭାବିଥିଲେ ?"

ସରସୀ ଏତେବେଳଯାଏ ଛିଡ଼ା ହୋଇଥିଲା । ଗୋଟିଏ ଚଉକି ଉପରେ ବସିପଡ଼ି କହିଲା, "ମୁଁ ବିଭା ହୋଇଛି ବୋଲି ଆପଣ କଣ ଜାଣି ନାହାନ୍ତି ?"

ନିରଞ୍ଜନ ହଠାତ୍ ସାହସସଂଗ୍ରହ କରି ଦ୍ୱିଧାହୀନ ଭାବରେ କହିଗଲା, "ଖାଲି ସେତିକି ନୁହେଁ, ଆପଣ ଏକାଧିକ ସନ୍ତାନର ଜନନୀ ବୋଲି ମଧ୍ୟ ମୁଁ ଜାଣିଛି ।"

"ମୁଁ ? ଜନନୀ ?" ପରମ ବିସ୍ମୟର ସହ ନିରଞ୍ଜନ ମୁହଁକୁ ଚାହିଁଲା ସରସୀ । ନିରଞ୍ଜନ ବିମୂଢ଼ ହୋଇପଡ଼ିଲା । ସରସୀର ମୁଖ ଓ ବକ୍ଷମଣ୍ଡଳରେ ସେ ପର୍ଯ୍ୟନ୍ତ ତାର ଦୃଷ୍ଟି ନିବଦ୍ଧ ହୋଇ ରହିଛି; କିନ୍ତୁ ଓଠରେ ସମାଧିସ୍ଥ ଜଡ଼ତା । ଏ କଣ ସେହି ଉପନ୍ୟାସର ନାୟିକା ସରସୀ ନୁହେଁ ! ଜାମା ଭିତରୁ ସରସୀର ଉନ୍ନତ ସ୍ତନାଗ୍ର ଯେମିତି ନିରଞ୍ଜନ ଆଖିରେ ବିଦ୍ଧ ହୋଇଯାଉଛି । ଏ ସରସୀ ତା'ହେଲେ କଣ ଜନନୀ ନୁହେଁ ? ଅବଶେଷରେ ନିରଞ୍ଜନ ନିଜର ଜଡ଼ତା ଭାଙ୍ଗି କହିବାକୁ ଚେଷ୍ଟାକଲା—"ଗୋଟାଏ ଉପନ୍ୟାସରୁ ମୁଁ ଆପଣଙ୍କ ବିଷୟରେ ଏସବୁ ଜାଣିବାକୁ ପାଇଥିଲି···ହୁଏତ ସେସବୁ ଭୁଲ···"

ସରସୀ ହସିଉଠିଲା । ଆଶ୍ଚର୍ଯ୍ୟ, ଗୋଟିଏ ଉପନ୍ୟାସର ଲେଖାକୁ ବିଶ୍ୱାସ କରି ଜଣେ ଶିକ୍ଷିତ ଯୁବକ ତା'ର ଜୀବନର ଇତିହାସ ସଂଗ୍ରହ କରିଛି । ସେ ସେମିତି ହସି ହସି କହିଲା, "ମୋ ବିଷୟରେ ସେଥିରେ ଆଉ କ'ଣ ଲେଖା ହୋଇଛି ?"

ନିରଞ୍ଜନ ଧୀରେ ଧୀରେ ଅଥଚ ଠେକ୍‌ଠୋକ୍ ଭାବରେ କହିଗଲା, "ଆପଣ ଅଧ୍ୟାପିକା । ଆପଣ ଏକାଧିକ ସନ୍ତାନର ଜନନୀ, ଆଉ ସ୍ୱାମୀଠାରୁ ଆପଣ ଯଥେଷ୍ଟ ନିର୍ଯାତନା ପାଆନ୍ତି । ଆପଣଙ୍କ ସ୍ୱାମୀ ଜଣେ କୁତ୍ସିତଦର୍ଶନ ଯୁବକ ଆଉ ଆଇନଜୀବୀ ।"

ଗଲାନି । ସେ ପୁଣି ହସି ଉଠି କହିଲା—"ଭାବିଥିଲି ଏମିଲ୍ ଜୋଲା ଖାଲି ସମସାମୟିକ ଜୀବନ ସମ୍ପର୍କରେ ନଭେଲ୍ ଲେଖୁଥିଲେ, ଆମ ସାହିତ୍ୟରେ ବି ଏ ଧାରା ପ୍ରବେଶ କରିଗଲାଣି । ମୋର ଜୀବନ କଥା ବର୍ତ୍ତମାନ ସାହିତ୍ୟର ସାମଗ୍ରୀ ହୋଇଚି ଜାଣି ମତେ ଖୁବ୍ ସୁଖ ଲାଗୁଚି ନିରଞ୍ଜନ ବାବୁ !...କିନ୍ତୁ ଆପଣ ଗୋଟାଏ ଉପନ୍ୟାସକୁ ଜଣେ ନାରୀର ଜୀବନୀ ବୋଲି ବିଶ୍ୱାସ କରୁଚନ୍ତି ଦେଖି ମତେ ବଡ଼ ବିସ୍ମୟ ଲାଗୁଚି..."

ନିରଞ୍ଜନ ମନରେ ଏତେବେଳେ ଅଞ୍ଜଳି କଥା ମନେ ପଡ଼ିଲା । ଅଞ୍ଜଳି ହିଁ ତାର ଏ ଭୁଲ ପାଇଁ ଦାୟୀ । ଉପନ୍ୟାସର ନାୟିକା ଭିତରେ ସେ ହିଁ ତା'ର ମାଉସୀଝିଅ ଭଉଣୀକି ଆଣି ସାମିଲ କରିଦେଇଚି । ତା'ହେଲେ...

"ଆପଣ କ'ଣ ଅଞ୍ଜଳିର ମାଉସୀଝିଅ ଭଉଣୀ ନୁହନ୍ତି ?"

ନିରଞ୍ଜନର ପ୍ରଶ୍ନ ଶୁଣି ସରସୀ ପୁଣି ହସିଉଠି କହିଲା—"ନିଶ୍ଚୟ, ନିଶ୍ଚୟ । ଏ ନିରାଟ ସତ୍ୟଟା ଆଉ ଉପନ୍ୟାସର ବସ୍ତୁ ହବ କେମିତି ? ଆପଣ ବିଶ୍ୱାସ କରନ୍ତୁ ନିରଞ୍ଜନ ବାବୁ, ମୁଁ ଅଞ୍ଜଳିର ଭଉଣୀ । ଆଉ ଯାହା ଆପଣ ସେ ଉପନ୍ୟାସ ବିଷୟ କହିଲେ, ସେଥିରୁ କେତେକ ବିଷୟ ସତ । ସବୁ ସତ ଲେଖିଥିଲେ ଲେଖକ ଆଉ ଉପ-ନ୍ୟାସ ଲେଖିଥାନ୍ତା କାହିଁକି ?...କିନ୍ତୁ ମୁଁ ଜନନୀ ନୁହେଁ । ଏପର୍ଯ୍ୟନ୍ତ ମୁଁ ଅସନ୍ତାନା । ମଝିରେ କେତୋଟି ଅରକ୍ଷ ପିଲାଙ୍କୁ ଆଣି ପାଳିଥିଲି । ଏହା ଭିତରେ ତାଙ୍କୁ ମୁଁ ଅନାଥା-ଶ୍ରମରେ ଛାଡ଼ିଦେଇଚି ।...ଆଉ ଗୋଟିଏ କଥା, ପ୍ରାୟ ଛ ମାସ ହେଲା ମୁଁ ମୋର ସ୍ୱାମୀଙ୍କୁ ଡାଇଭର୍ସ କରିଚି । କିନ୍ତୁ ବେଳେବେଳେ ସେ କଥା ମୋର ମନେ ରହେନା । ସେଥିଯୋଗୁ ତାଙ୍କ ପାଇଁ ଜୋତା କିଣିବାକୁ ଭାବିଥିଲି । ତେବେ ଆପଣ ଏ ଜୋତା ଯୋଡ଼ାଟା ପିନ୍ଧନ୍ତୁ...ମୁଁ ଟଙ୍କା ଦେଇଦଉଚି ।" କଥା ଶେଷରେ ସରସୀର ମୁହଁ ଥମ ଥମ ହୋଇ ଈଷତ୍ ଲାଲ ପଡ଼ିଆସିଲା ।

ନିରଞ୍ଜନ ଏକଦୃଷ୍ଟିରେ ଅନେଇ ରହିଲା ସେ ମୁହଁକୁ । 'ଦୁଧରେ ଅଳତାର ଆଭା' କହି ବଙ୍ଗାଳୀ ଲେଖକମାନେ ଉପମା ଦିଅନ୍ତି । ବର୍ତ୍ତମାନ ସରସୀର ମୁହଁଟା ଠିକ୍ ସେମିତି ଦିଶୁଛି ବୋଲି ନିରଞ୍ଜନ ମନେ କଲା ।

କିନ୍ତୁ ଅଞ୍ଜଳି ପାଇଁ ଚପଲ କିଣା ଆଉ ହେଲାନି । ଚପଲ କିଣି ତାକୁ ସରସୀକି ଦେଇଦେବା ପାଇଁ ନିରଞ୍ଜନ ମଧ୍ୟ ନିଜ ଭିତରୁ କିଛିର ସମର୍ଥନ ପାଇପାରି-ଲାନି । ନିଜ ଗୋଡରେ ସରସୀର ଦାନ ପଚିଶଟଙ୍କିଆ ଜୋତା । ସେ ସ୍ଥଳରେ ଚପଲ ଯୋଡ଼ାକରେ ତାକୁ ସେ କି ପ୍ରତିଦାନ ଦେଇପାରିବ ! ନା, ପ୍ରତିଦାନର ଏଠି ଦରକାର ନାହିଁ । ସରସୀ ବିଷଣ୍ଣ ହୋଇପଡ଼ିଚି । ପ୍ରତିଦାନର ଆଘାତରେ ସେ ହୁଏତ ସବୁ ଦମ୍ଭ ହରେଇ ବସିବ । ଦୁନିଆରେ କାହାକୁ କିଛି ଦେବା ପାଇଁ କଣ ତାର ଅଧିକାର ନାହିଁ ? ନିଜର ସ୍ୱାମୀକି ସେ ବହିଷ୍କାର କରିଦେଇଛି । ତାର ବିବାହ-ବିଚ୍ଛେଦ ଘଟିଚି । କଣ ଭୁଲ କରିଛି ଆଉ ସରସୀ ! ଜୀବନର ଶ୍ରେଷ୍ଠ ଆନନ୍ଦ ଉପଭୋଗ ପାଇଁ ଯେଉଁ ବିବାହର ସୃଷ୍ଟି, ତାହାର ପରିଣତି ଯଦି ବିପରୀତ ହୋଇଯାଏ, ସେଠି ଆଉ ବିବାହର ଆବଶ୍ୟକତା କ'ଣ ? କିନ୍ତୁ ବିବାହକୁ ବହିଷ୍କାର କରି ସରସୀ ପୁଣି ତ ଆନନ୍ଦ ପାଇବା

ଉଠନ୍ତି । ଭାବବା ଭିତରେ ସରସୀର ମୁହଁକୁ ଅନେଇଦେଲା ନିରଞ୍ଜନ । ଧନ୍ୟ ସରସୀର ସାହସ । ନାରୀ ଭିତରେ ଏହିଭଳି ସାହସ ସେ ଆଗେ କାମନା କରୁଥିଲା । ନା, ନା, ଅଞ୍ଜଳି ମନ୍ଦ ନୁହେଁ, ବିନା ଦୋଷରେ ଅଞ୍ଜଳି କ'ଣ ଆଉ ତାକୁ ଡାଇଭର୍ସ କରନ୍ତା । ତେବେ ସରସୀ ଭଳି ଅଞ୍ଜଳିର ଆର୍ଥିକ ସ୍ୱାଧୀନତା କାହିଁ ? ନା, ନା, ଅଞ୍ଜଳି ମନ୍ଦ ନୁହେଁ, ଆର୍ଥିକ ସ୍ୱାଧୀନତା ଥିଲେ ବି···। ଅଞ୍ଜଳି ବର୍ତ୍ତମାନ ପୁତ୍ରବତୀ, ପୁଣି ଆଗାମୀ ସନ୍ତାନର ସୃଷ୍ଟି ଚାଲିଛି ତାର ଜଠରରେ । ଖାଲି ଅନ୍ଧବିଶ୍ୱାସରେ ସଂସ୍କାରଗ୍ରସ୍ତ ହୋଇ-ପଡ଼ିଛି । ପୂଜା···ନବଗ୍ରହସ୍ତୋତ୍ର···ସେ କ'ଣ ତାହା ଭିତରୁ ପାଇଛି···ନିଜର ଜନ-ମୀଭ । ଆଉ କିଛି ସ୍ତୋତ୍ର ନାହିଁ ସ୍ୱାମୀ ଲାଭ ପାଇଁ···ଏଇ ସରସୀ ଧକାଶେ । ହଁ··· ପୁରାଣ କାଳରେ କୁନ୍ତୀ ଏଇଭଳି ଗୋଟାଏ ସ୍ତୋତ୍ର ପାଇଥିଲେ···କ'ଣ ସେ ସ୍ତୋତ୍ରଟା ବିଲକୁଲ ହଜଯାଇଛି ?

"ହଁ···ଆପଣଙ୍କ ପୁଅ ନାଁ କ'ଣ ରଖିଲେ ନିରଞ୍ଜନ ବାବୁ ?"

ସରସୀର ପ୍ରଶ୍ନରେ ନିରଞ୍ଜନର ଚିନ୍ତା ଠୋକର ଖାଇଗଲା । ଭ୍ୟାନିଟି ବ୍ୟାଗଟା ଫିଟେଇ ସରସୀ ଟଙ୍କା ଦେଉଛି ଦୋକାନୀକି । ଦୋକାନୀ ଖୁସି ମନରେ ଦୁଇ ଟଙ୍କା କାଟିଦେଲା । ଏମାନେ ହୁଏତ ପୁଣି ନିକଟରେ ଆସିବେ । କିଛି ନୂଆ ପାର୍ଟିର ସୂତ୍ରପାତ ହେଲାପରି ଜଣାଯାଉଛି । ଆଗରେ ଠିଆ ହୋଇଛି ସରସୀ । ହୃଷ୍ଟପୁଷ୍ଟ ଶରୀର, ପଶ୍ଚାଦ୍‌ଭାଗ ରହିଛି ନିରଞ୍ଜନ ଆଡକୁ । ନିତମ୍ବର ବିପୁଳ ପରିଧି ଭେଦ କରି ଝୁଲିପଡ଼ୁଛି ବେଣୀ, ପଙ୍ଖାର ପବନରେ ଶାଢ଼ୀର ଅଞ୍ଚଳଟା ଝିରିଝିରି ହୋଇ ଉଡ଼ୁଛି ।

ମାଂସର ଶୋଭାଯାତ୍ରା ଭିତରେ ନିରଞ୍ଜନ ଅନ୍ୟମନସ୍କ ରହି ସରସୀକୁ ଉତ୍ତର ଦେବା କଥା ଯେମିତି ଭୁଲିଗଲା । କାମ ସାରି ବୁଲିପଡ଼ିଲା ସରସୀ । ବକ୍ଷର ଗୋଟାଏ ପାଖରେ ଶାଢ଼ୀର ଆବରଣ ନାହିଁ, କେବଳ ବ୍ଲାଉସ୍ ଆଉ ବଡ଼ିସ୍‌ର ସମ୍ଭ୍ରାନ୍ତ । ନାଭିବନ୍ଧରେ କଟୀର ପରିଧିଯୁକ୍ତ ଓ ଗୁନ୍ତରର ବ୍ଲାଉସ୍ ମଧ୍ୟରେ ଚାରି ଆଙ୍ଗୁଳି ଫାଙ୍କ୍ । ମାଂସର ଲାବଣ୍ୟ ସେଠି ଝଲମଲ ହେଉଛି···ନା, ଅଂଜଳି ଏଭଳି ପରିପାଟୀରେ ସାଜି ପାରେନା···ଆଉ କିଛି ଭାବିପାରିଲାନି ନିରଂଜନ । ଅଂଜଳି ଓ ସରସୀର ସଂସ୍କୃତି ଓ ଶିକ୍ଷା ଭିତରେ କେତେ ପାର୍ଥକ୍ୟ ରହିଛି, ତା ମଧ୍ୟ ସେତେବେଳେ ସେ ଚିନ୍ତା କରି ପାରିଲାନି ।

"କ'ଣ କହିଲେନି ତ ?"

ହସ ଭିତରେ ପୁଣି କେତୋଟି କଥା ଝରିପଡ଼ିଲା ସରସୀର ଓଠରୁ ।

ହଁ, ତା ପୁଅର ନାଁ ପଚାରୁଛି ସରସୀ । ନିରଂଜନ ଆଖିରେ ନୂତନ ଶିଶୁର ମୁହଁଟି ଜଳ ଜଳ ହୋଇ ଭାସିଉଠିଲା । ସ୍ୱର୍ଗୀୟ କାନ୍ତି । ସେଥିରେ ଘର ତାର ଆନନ୍ଦ ଉଜ୍ଜ୍ୱଳ ହୋଇଉଠିଛି । ଆଉ ଭାସିଉଠିଲା ଅଂଜଳିର ଜନନୀର ରୂପ । ସେଠି ଅନ୍ତ ନିଷ୍ପ୍ରଭ ହୋଇ ପଡ଼ିଲା ସରସୀର ମାଂସ ଆଉ ବେଶଭୂଷାର ପରିପାଟୀ । ନିରଂଜନର ମନରେ ଗର୍ବ ଭରିଗଲା ଯେମିତି । ଉଠିପଡ଼ି ସେ ଦମ୍ଭର ସହ ଟିକେ ହସିଦେଇ କହିଲା, "ଆପଣ ତ ସଂସାର ଛାଡ଼ିଚନ୍ତି···ତାର ଖବର ରଖି ଆଉ ଲାଭ କଣ ?"

ଏ ଅବଶ୍ୟ ସରସୀ ପକ୍ଷରେ ଗୋଟାଏ ଆଘାତ, କିନ୍ତୁ ସେଥିରେ ସେ ଅନାହତ ହେଇ ଚାହିଁଲି ନିରଞ୍ଜନ ମୁହଁକୁ । କିଛିକ୍ଷଣ ପରେ ଠିକେ ହସିଦେଲି । ତାହାର ପରମୁହୂର୍ତ୍ତରେ ଧୀର କଣ୍ଠରେ କହିଲି—

"ମୁଁ ସଂସାର ଛାଡ଼ିଛି ନିରଂଜନ ବାବୁ ? ଆଉ ଆପଣ ଯଦି ଆଜି ଦୁଷ୍ଟ-ଶିଶୁ ସ୍ତ୍ରୀକ ବହିଷ୍କାର କରିଥାନ୍ତେ ସେଇଟା ହେଇଥାନ୍ତା ଖୁବ ନ୍ୟାଯ୍ୟ । ଖାଲି ନାସ୍ତିର କାର୍ଯ୍ୟଟା ସମର୍ଥନଯୋଗ୍ୟ ନୁହେଁ । ଆପଣ ଏଇଥିପାଇଁ ଜଣେଇଦବାକୁ ଚାହାନ୍ତି-- ନା ?"

ଏତିକ କହିବା ପରେ ଦୋକାନରୁ ଓହ୍ଲେଇ ଆସି ସରସୀ ରାସ୍ତାରେ ଛିଡ଼ା ହେଲି । ଜୋତାର ପ୍ୟାକେଟଟା ଧରି ନିରଞ୍ଜନ ମଧ୍ୟ ବାହାରି ଆସିଲି ପଦାକୁ । ବାଧ୍ୟ, ବିନମ୍ର ତାର ଭଙ୍ଗୀ—ଯେମିତି ବୁଦ୍ଧି ବିବେକ ତାର ସବୁ ଦେବାଳିଆ ହେଇଯାଇଛି । ବିଂଶ ଶତାବ୍ଦୀର ଏଇ ନାସ୍ତି-ପ୍ରତିନିଧି ପାଖରେ ସେ ଆଜି ଅପରାଧୀ ପାଲଟି ଯାଇଛି । ପରିସ୍ଥିତି ସମ୍ପର୍କରେ ବିଚାର ନ କରି ସରସୀର ଖୁବ୍ ପାଖକୁ ଲାଗି ଆସି ନିରଞ୍ଜନ ଆତ୍ମରକ୍ଷା ପାଇଁ ଚେଷ୍ଟା କରି କହିଲି, "ଭାଇଙ୍କର ପୁଅ ନାଁ ଗୋବିନ୍ଦ । ତା ସହିତ ସାମଞ୍ଜସ୍ୟ ରକ୍ଷା କରି ପୁଅର ନାଁ ମୁଁ ଅରବିନ୍ଦ ରଖିଛି ।"

"ଆପଣଙ୍କ ନାମନିର୍ବାଚନକୁ ପ୍ରଶଂସା କରିବାର କଥା ।" ଏତିକ କହି ପାଖରେ ଯାଉଥିବା ଗୋଟିଏ ଖାଲି ସାଇକେଲରିକ୍ସା ଅଟକେଇ ସରସୀ ଯାଇ ବସିପଡ଼ିଲି । ରିକ୍ସା ଆଗକୁ ମାଡ଼ି ଚାଲିଲି; କିନ୍ତୁ ନିର୍ବାକ ହେଇ ନିରଞ୍ଜନ ସେଇ ଗୋଟିଏ ଜାଗାରେ ଛିଡ଼ା ହେଇ ରହିଲି । ପ୍ରାୟ ଦଶଗଜ ଚାଲିଯିବା ପରେ ରିକ୍ସାର ପର୍ଦ୍ଦା ଟେକି ପଛକୁ ଚାହିଁଲି ସରସୀ । ହାତ ହଲେଇ ସେ କଣ ପୁଣି ଜଣେଇବାକୁ ଚେଷ୍ଟା କଲି । କିନ୍ତୁ ନିରଞ୍ଜନ ସେଥିରୁ କିଛି ହେଲେ ଜାଣିପାରିଲାନି ଯେମିତି । କେତେବେଳକେ ସେ ଚାଲିବାକୁ ଆରମ୍ଭ କଲି ।

ତାକୁ ଆଜ ଡାକୁଥିଲି କି ସରସୀ ! ମନରେ ଭାବନା ଉଠିଲେ ବି ସେଥି-ଲାଗି ନିରଞ୍ଜନ କୌଣସି କାର୍ଯ୍ୟ କରିପାରିଲାନି । ସରସୀର ସୁଫଳିତ ତନୁଲତା ମଧ୍ୟ ତା ଆଖିରେ ବେଳେବେଳେ ଭାସିଯିବାକୁ ଲାଗିଲି । ପକେଟରୁ ରୁମାଲ କାଢ଼ି ମୁହଁଟାକୁ ସେ ପୋଛିଦେଲି । ଆରେ, ରୁମାଲରେ ଅନେକଦିନ ତଳେ ଅଞ୍ଜଳି ଅତର ମାରି ଦେଇଥିଲି, ଆଜି ବି ତାର ବାସ୍ନା ଲାଗିରହିଛି । ରୁମାଲଟାକୁ ଆଉ ଥରେ ମୁହଁରେ ବୁଲେଇନେଲି ନିରଞ୍ଜନ ।

॥ ୧୩ ॥

ଘରେ ପହଞ୍ଚି ନିରଞ୍ଜନ ନିବିଡ଼ ଭାବରେ ଅଞ୍ଜଳି ସହ ମିଶିବାକୁ ଚେଷ୍ଟା-କଲି । କିନ୍ତୁ ସରସୀର କଥା ତାକୁ କିଛି କହିଲି ନି । କାନ୍ଥରେ ଦେବଦେବୀଙ୍କ ଛବିର ସଂଖ୍ୟା ସାଙ୍ଗରେ ଅଞ୍ଜଳିର ଫଟୋ ସଂଖ୍ୟା ମଧ୍ୟ ପ୍ରତିଯୋଗିତାରେ ଯୋଗ ଦେଇଛି ।

ଅଞ୍ଜଳିର ପ୍ରତ୍ୟେକ ଫଟୋକୁ ଗୋଟି ଗୋଟି କରି ଅନେଇଗଲା ନିରଞ୍ଜନ । ନୂତନ ଶିଶୁ ଅରବିନ୍ଦର ଫଟୋ ମଧ୍ୟ ଏହା ଭିତରେ ସଂଖ୍ୟାଗରିଷ୍ଠତା ଦାବୀ କରିବାକୁ ଚେଷ୍ଟା କରୁଛି । ହେଇ ସେଠି ଅଞ୍ଜଳିର କୋଳରେ ବସିଛି ଅରବିନ୍ଦ । ମାତୃତ୍ୱର ଆନନ୍ଦରେ ଅଞ୍ଜଳିର ମୁଖମଣ୍ଡଳ ଉଜ୍ଜ୍ୱଳ ହୋଇ ରହିଛି । ଆଉ ହେଇ ସେଠି ଟଙ୍ଗା ହୋଇଛି ଅଞ୍ଜଳିର ବଧୂବେଶରେ ଗୋଟିଏ ଫଟୋ । ଜଣେ ବନ୍ଧୁଠାରୁ କ୍ୟାମେରା ଆଣି ନିରଞ୍ଜନ ନିଜ ହାତରେ ସେ ଫଟୋଟି ଉଠେଇଥିଲା । ଅଞ୍ଜଳି ପାଖରେ ନ ଥିବାରୁ ଆଉ ମଫସଲ ଗାଁରେ ସୁବିଧା ନ ଥିବାରୁ ବିବାହର ପ୍ରଥମ ଦୁଇ ବର୍ଷ ଭିତରେ ନିରଞ୍ଜନ ପ୍ରିୟାର କୌଣସି ପ୍ରତିଛବି ରଖି ପାରି ନ ଥିଲା । ପରେ ଅଞ୍ଜଳିକି ବଧୂବେଶରେ ସଜାଇ ତାହାର ଆଲୋକଚିତ୍ର ଗ୍ରହଣ କରି ନିରଞ୍ଜନ ନିଜର ସେ କାମନା ଚରିତାର୍ଥ କରିନେଇଛି । ଛନ ଛନ ମୁହଁ, କପୋଳର ଚନ୍ଦନବିନ୍ଦୁର ବନ୍ଧ ପରିଧିମାଳାକୁ ଆଘାତ କରି ଚୂର୍ଣ୍ଣକୁନ୍ତଳ ଝୁଲି ପଡ଼ୁଛି । କଜ୍ଜ୍ୱଳରେଖାରେ ଚକ୍ଷୁକୋଣରେ ମୃଗନୟନର ଭ୍ରାନ୍ତି ସୃଷ୍ଟି କରାଯାଇଛି । ଚାହାଣିରେ ଗ୍ରାମ୍ୟସରଳତା । ଓଠରେ ଦରହାସ । ଗଣ୍ଡମଣ୍ଡଳରେ କେବଳ ନବଯୌବନର ପ୍ରଲେପ ।

ଛବିଟିକୁ ଚାହିଁ ଚାହିଁ ନିରଞ୍ଜନ ନିସ୍ପନ୍ଦ ଭାବରେ ଛିଡ଼ା ହୋଇ ରହିଲା । ଯେମିତି ଅଂଜଳିର ଏସବୁ ସମ୍ପଦ ଆଜି ମଧ୍ୟ ତାର ଦରକାର । ସରସୀ ଯେମିତି ସଂଗ୍ରାମ ଘୋଷଣା କରିଛି, ସେଥିରେ ।ସ ଦେବାକୁ ହେଲେ ସେଗୁଡ଼ିକ ହେବ ତାର ଆୟୁଧ । ଆଉ ଅଞ୍ଜଳିର ମାତୃତ୍ୱ କଣ ଆୟୁଧ ନୁହେଁ ! ନିଜର ବିଜୟୀ ଚିନ୍ତା ବିଦ୍ରୋହୀ ହୋଇ ଗର୍ଜିଉଠିଲା ନିରଞ୍ଜନର ମୁଣ୍ଡ ଭିତରେ । କିଏ ଏଇ ସରସୀ ? ଗୋଟିଏ ଉପନ୍ୟାସର ନାୟିକା, ସେ ପୁଣି ଆଜି ଜୀବନର ସ୍ୱାତନ୍ତ୍ର୍ୟ ଘୋଷଣା କରି ଛିଡ଼ା ହୋଇଛି ! ତା'ର ସ୍ୱାମୀଟା କଣ ନପୁଂସକ ନା ସୈତାନ···

ଶେଷ କଥାଗୁଡ଼ିକ ନିରଞ୍ଜନ ପାଟିକରି କହିଉଠିଲା । ପଲଙ୍କ ଉପରେ ମଶାରି ଭିତରେ ଶୋଇ ରହିଥିଲା ଅରବିନ୍ଦ, ଚମକି ପଡ଼ି ଚିର୍ ଚିର୍ ହୋଇ କାନ୍ଦିଉଠିଲା । ଶିପରୁ ଟେକି ଆଣି ତାକୁ କାନ୍ଧରେ ପକେଇ ନିରଞ୍ଜନ ବୋଧ କରିବାକୁ ଚେଷ୍ଟାକଲା । ପୁଅର କାନ୍ଦ ଶୁଣି ତଳଖଞ୍ଜାରୁ ଅଇଁଠା ହାତରେ ଦୌଡ଼ିଆସିଲା ଅଞ୍ଜଳି । ତା ପଛରେ ଗୋବିନ୍ଦ ମଧ୍ୟ ଆସି ପହଞ୍ଚିଲା । ସେମାନଙ୍କ ଆସିବାର ପଦଶବ୍ଦ ନିରଞ୍ଜନ ଆଗରୁ ଶୁଣି ପାରିଥିଲା । ପୁଅକୁ ଶୁଆଇବା ପାଇଁ ତାହାର ଯେ ଯଥେଷ୍ଟ ଯତ୍ନ ରହିଛି, ତାହା ପ୍ରମାଣ କରିଦେବା ଉଦ୍ଦେଶ୍ୟରେ ସେ ସାଙ୍ଗେ ସାଙ୍ଗେ ଗୀତ ଆରମ୍ଭ କରି ଦେଇଥିଲା ।

"ଖାଲି ସେଇ ଧୋରେ ବାୟା ଧୋ, ନା ଆଉ କିଛି ଆସେ ? ଦିଅ ଦିଅ, ପୁଅକୁ ଦିଅ, ମୁଁ ଭୁକି କରିଦେବି··· ।"

ଅଞ୍ଜଳିର କଥା ଶୁଣି ନିରଞ୍ଜନ ହସିଉଠିଲା; କିନ୍ତୁ ପୁଅ ସେ ପର୍ଯ୍ୟନ୍ତ କାନ୍ଦୁଛି । ସେଥିଯୋଗୁ ତାକୁ କୋଳାନ୍ତର କରିଦେବାକୁ କୌଣସି ଆପତ୍ତି କଲାନି । ତାର ଇଚ୍ଛା ହେଉଥାଏ ସେ ପଚାରନ୍ତା, ସେ ପୁଣି ଏଥି ପାଇଁ ସୁଯୋଗ ପାଇବ କେମିତି ? ମାତ୍ର କିଛି ପଚାରି ପାରିଲାନି । ଏତିକିବେଳେ ହଠାତ୍ ତାକୁ ଗୋବିନ୍ଦ ପଚାରିଲା, "ଅରୁ କାହିଁକି କାନ୍ଦିଲା ଦାଦା ?"

ସତେ ଖ କାହିଁକି କାନ୍ଦିଲା ଅରୁ ?—ଗୋବନ୍ଦର ମୁହଁକୁ ଅନେଇ ନିରଞ୍ଜନ ନିଜକୁ ପ୍ରଶ୍ନ କଲା । କିନ୍ତୁ ନିଜକୁ କିମ୍ବା ଗୋବନ୍ଦକୁ କାହାକୁ ସେ ଉତ୍ତର ଦେଇପାରିଲାନି, ନିଜେ ମଧ୍ୟ ସେ ଲଜ୍ଜା ଅନୁଭବ କଲା—ବାପର ଅମାନ୍ତ ଚନ୍ତାର ଚକ୍କାରରେ ପୁଅର ସୁଖସ୍ୱପ୍ନ ଭାଙ୍ଗି ଯାଇଚ । ଏହି ନିଷ୍ଠୁର ସତ୍ୟକୁ ନିରଞ୍ଜନ ପ୍ରକାଶ କରିବାର ସାହସ ପାଇପାରିଲାନି । କେତେବେଳକେ ସେ କଥା ଘୂରେଇ କହିଲା, "ତା ବାପାକୁ କିଏ ମାରୁଥିଲା ବୋଲି ସେ ସପନ ଦେଖିଲା ନା କଣ ?"

ଗୋବନ୍ଦ କର କର ହେଇ ହସି କହିଲା, "ଲୁହନ ଖଡ଼ୀ, ଦାଦାଙ୍କୁ କିଏ ମାରିବ ?"

ଅନେଇଲା ଅଞ୍ଜଳି । ନିରଞ୍ଜନ ଖାଲି ହସିଉଠିଲା । ପ୍ରାୟ ତିନି ମିନିଟ ପରେ ଚଳ ଖଞ୍ଜାରୁ ଗିଲାସେ ପାଣି ଆଣିବାକୁ ସେ ଗୋବନ୍ଦକୁ କହିଲା । ଗୋବନ୍ଦ ଦୌଡ଼ି ଦୌଡ଼ି ଚାଲିଗଲା ।

ପୁଅକୁ ନେଇ ଅଞ୍ଜଳି ଝୁଲେଇବାରେ ଲାଗିଛି । କାନ୍ଦ ତାର ବନ୍ଦ ହେଇଗଲାଣି । ଆଖିରେ ପୁଣି ନିଦ୍ରାର ଆଗମ ହେଉଚ । ବୁଲି ବୁଲି ପୁଅକୁ ଝୁଲେଇବା ଭିତରେ ଅଞ୍ଜଳିର ଉଦରର ସ୍ଫୀତ ଆଖିରେ ଲାଗିଯାଉଚ । ଅଞ୍ଜଳିର ରଙ୍ଗ ମଧ୍ୟ ପୁଣି ପାଲଟି ଯାଇଚ । ନିରଞ୍ଜନର ଆଖିରେ ସେସବୁ ନେସି ହେଇଯାଉଚ ଯେମିତି । ପାଖକୁ ପାଖକୁ ଲାଗିଆସିଲା ନିରଞ୍ଜନ । ତାର ଇଚ୍ଛା ହେଲା, ଆଲୋକରେ ଉଦ୍ଭାସିତ ଆଉ ଅନ୍ଧକାରରେ ରହିଥିବା ଉଭୟ ସନ୍ତାନ ସହ ଜନନୀକୁ ଟେକି ଧରି ସେ ଏ ଘରେ ନୃତ୍ୟ ଆରମ୍ଭ କରିଦିଅନ୍ତା । କିନ୍ତୁ ସେ ଇଚ୍ଛାକୁ ସମ୍ବରଣ କରି ହାତରେ ଅଞ୍ଜଳିର କଟୀ ବେଷ୍ଟନ କରି ବିମୁଗ୍ଧ ଆଖିରେ ଅନେଇ ରହିଲା ଜନନୀକ । ଆରକ୍ତ ମୁହଁରେ ହସିଉଠିଲା ଅଂଜଳି । ହସି ଉଠିଲା ମଧ୍ୟ ନିରଂଜନ । ସେ ହସର କୌଣସି ତୁଳନା ନାହିଁ । ସୃଷ୍ଟିର ଗୌରବ ସେଥିରେ ଭରିରହିଚ । ଭରିରହିଛି ପ୍ରଜନନର ଗର୍ବ । ଯେଉଁ ଦୁଇଟି ନର-ନାରୀର ନିବିଡ଼ ସହଯୋଗ ଭିତରେ ସୃଷ୍ଟି ଆଜ ମୁଖର ହୋଇଉଠିଛି ହର୍ଷବିଭୋର ଆଖିରେ ସେହି ଦୁଇଟି ନରନାରୀ ଚାହିଁରହିଲେ ଉଭୟଙ୍କୁ । ଯେପରି ଆଦାମ୍ ଆଉ ଇଭ୍ କିମ୍ବା କଶ୍ୟପ ଆଉ ମନୁ, ସର୍ଜନ-ପାଗଳ ହେଇ ଚାହିଁ ରହିଛନ୍ତି ପରସ୍ପରକୁ ।

"ନାରୀର ଏଇ ମୂର୍ତ୍ତି ଆରାଧ୍ୟା । ଏଠି ବିଳାସ କି ସମ୍ଭୋଗର ସ୍ଥାନ ନାହିଁ । ଯେଉଁ ବିଳାସ ସୃଷ୍ଟିର ଜନକ ତାହା କିନ୍ତୁ ବିଲୀନ ହୋଇଯାଏ ସୃଷ୍ଟିରେ । ସେହି ବିଳାସ ପୁଣି ସାଧନାରେ ହେଇଯାଏ ରୂପାନ୍ତର ।"

ପୁଅ ଶୋଇପଡ଼ିଛି । ଇଙ୍ଗିତରେ କରବେଷ୍ଟନୀରୁ ମୁକ୍ତ ଲଭିକରି ଅଞ୍ଜଳି ପୁଅକୁ ନେଇ ଶେଯରେ ଶୋଇ ଦେଇ ଆସିଲା । ନିରଞ୍ଜନର କଥା ତାର କାନରେ ଭେଦ କରିଚ । କିନ୍ତୁ ଯାହାର ସାଧନାର ସିଦ୍ଧି ଘଟିଚ, ତା ପକ୍ଷରେ ପ୍ରଶସ୍ତି ଶୁଣିବାର ଆଉ ବିଶେଷ ଦରକାର ନ ଥାଏ । ପୁଅକୁ ଶୋଇଦେଲା ପରେ ଅଞ୍ଜଳି ହସି ହସି ସରସ କଣ୍ଠରେ କହିଲା, "ଅମର କିନ୍ତୁ ସାଧନାରୁ ସୃଷ୍ଟି·····"

ଗୋବିନ୍ଦ ପାଣି ଗିଲାସେ ଧରି ଆସି ପହଞ୍ଚିଲା । ତୃଷାର କୌଣସି ତାଡ଼ନା ନ ଥିଲେ ବି ଗୋବିନ୍ଦ ହାତରୁ ଗ୍ଲାସଟା ନେଇ ନିରଞ୍ଜନ ସମ୍ପୂର୍ଣ୍ଣ ପାଣି ନିଃଶେଷ କରି ପିଇଦେଲା । ଅଞ୍ଜଳିକୁ ହଠାତ୍ ଏକାନ୍ତରେ ପାଇବା ପାଇଁ ସେ ତୃଷାର ଆଶ୍ରୟ ନେଇଥିଲା । ତାହାର ସଦ୍‌ବ୍ୟବହାର ନ କରି ଆଉ ଉପାୟ ନାହିଁ । ମନେ ମନେ ହସିଉଠିଲା ନିରଞ୍ଜନ । ଏ କେବଳ କ୍ଷଣକର ଠକାମି, ସୃଷ୍ଟି ପାଇଁ ନିବିଡ଼ ସହଯୋଗ ଦରକାର ହେଉଥିଲେ ମଧ୍ୟ ସେହି ସୃଷ୍ଟିର ଜାଲ ଭିତରେ ଅଞ୍ଜଳି ଖସିଯିବ ତା ପାଖରୁ ଖୁବ୍ ଦୂରକୁ । ଆଜି କେବଳ ତାହାର ଉପକ୍ରମ ହେଉଛି ।

ଅଞ୍ଜଳି ଖାଇବା ପାଖରୁ ଉଠି ଆସିଥିଲା । ତେଣେ ଅପା ଚାରି ଖାଇ ବସିଚନ୍ତି, ତାଙ୍କ ସାଙ୍ଗରେ ଖାଉଥିଲା ସେ । ଅପା ହୁଏତ ଏ ପର୍ଯ୍ୟନ୍ତ ହାତ ଟେକି ବସିଥିବେ । ତରତର ହୋଇ ଅଞ୍ଜଳି ଚାଲିଗଲା ତଳ ଖଞ୍ଜାକୁ ।

କିଛିକ୍ଷଣ ପରେ ନିରଞ୍ଜନ ମନରେ ଅଞ୍ଜଳିର କଥା ଖେଳିଯିବାକୁ ଲାଗିଲା । ହଁ···ଅଞ୍ଜଳି କହିଗଲା ଆମର ସୃଷ୍ଟି କିନ୍ତୁ ସାଧନା ଭିତରୁ । ନବଗ୍ରହ ସ୍ତୋତ୍ର, ଠାକୁରପୂଜା ଆଦିର କେତେ କ'ଣ···ହଁ ବିରାଟ ସାଧନା । କିନ୍ତୁ କେଉଁ ବିଧବା ଏ ସାଧନା କରି ସନ୍ତାନ ପାଇପାରିବ ? ସାଧନ କରି ନୂଆକରି ପାଇବେ ଗୋବିନ୍ଦର ବାପାକୁ ? ପୁରାଣରେ ସାବିତ୍ରୀ କଥା ରହିଚି—ସାଧନା ବଳରେ ମୃତ ସ୍ୱାମୀଙ୍କୁ ବଞ୍ଚାଇ ପାରିଥିଲା ସେ । ଆଉ କଣ ଗୋଟିଏ ନାରୀ ବାହାରୁନି ? ସେପରି ଆଉ କଣ ପୁରାଣ କେହି ଲେଖିନି ? ସେଥିରେ ଏଇ ଅଞ୍ଜଳିର କଥା ସ୍ଥାନ ପାଇପାରିବନି, ସ୍ଥାନ ପାଇବ ସରସୀର କଥା । ସ୍ୱାମୀର ଆରାଧନାରେ ଯେଉଁ ନାରୀ ଜୀବନ ଉତ୍ସର୍ଗ କରିଦିଏ, ସେ ଆଜି ସ୍ୱାମୀର ବହିଷ୍କାରରେ ହୋଇଚି ଉତ୍ଫୁଲ୍ଲ । ନୂତନ ପୁରାଣର ନାୟିକା ହେବ ସରସୀ, ଅଞ୍ଜଳି ନୁହେଁ । ପୁରୁଷର ପ୍ରଭୁତ୍ୱକୁ ସରସୀ ଅସ୍ୱୀକାର କରିଚି । ଆଉ ଅଞ୍ଜଳି ମଣିଷର ଶକ୍ତି ଭିତରେ ବୋଳିଦେଇଚି ଦେବତାର ଇଙ୍ଗିତ ।

ଏହା ପରେ ହଠାତ୍ ଗୋବିନ୍ଦକୁ ଟେକି ଉଠେଇନେଲା ନିରଞ୍ଜନ । କାଖରେ ନୁହେ, ଏକବାରେ ନେଇ କାନ୍ଧରେ ବସେଇଲା । ଦାଦା କେବେ ତାକୁ କାନ୍ଧରେ ବସେଇବାର ସେ ଅନୁଭବ କରିନି । ବର୍ତ୍ତମାନ ଦାଦାର ଏପରି ବ୍ୟବହାରରେ ସେ ଆଶ୍ଚର୍ଯ୍ୟ ହୋଇଗଲା ମନେ ମନେ ।

ଭାଇ ଥିଲେ ଗୋବିନ୍ଦକୁ ଏମିତି କେତେ ଆଦର କରୁଥାନ୍ତେ······କିନ୍ତୁ ଗୋବିନ୍ଦର ସୌଭାଗ୍ୟ-ପଥରେ ଏଇ ଦେବତାମାନେ ଶତ୍ରୁ ହୋଇ ଛିଡ଼ା ହୋଇଛନ୍ତି । କିନ୍ତୁ ଗୋବିନ୍ଦ ସେଇ ଦେବତାମାନଙ୍କର କିଛି କ୍ଷତି କରିନି । ଏହିପରି ଭାବନା ଭିତରେ ଗୋବିନ୍ଦକୁ କାନ୍ଧରେ ବସେଇ ନାଚି ବୁଲିଲା ନିରଞ୍ଜନ । ଯେମିତି ବାଟ ପାଇଲେ ସେ ଦେବତାର ଦେଶକୁ ଯାଇ ସେମାନଙ୍କ ସହ ଥରେ ମୁକାବିଲା କରିଦିଅନ୍ତା ।

ଏହିପରି ବୁଲେଇବା ଭିତରେ କାନ୍ଥର ଗୋଟାଏ ଛବି ଦେହରେ ଗୋବିନ୍ଦର ମୁଣ୍ଡ ବାଜିଗଲା ଖୁବ୍ ଜୋରରେ । ଗୋବିନ୍ଦ 'ଉହୁ' ହୋଇ ପାଟି କରି ଉଠିଲା । ଛବିଟା ମଧ୍ୟ ତଳେ ଖସି ପଡ଼ି ଠଣ୍ ଠଣ୍ ଶବ୍ଦ କଲା ।

ଏ ଘଟଣାରେ ନିରଞ୍ଜନ ଚମକି ପଡ଼ିଲା । ଗୋବନ୍ଦ ସେମିତି କାନ୍ଧ ଉପରେ ବସିଚି । ସେ ସଶଙ୍କିତ । ମୁଣ୍ଡର ଆଘାତ ସେ ଭୁଲିଯାଇ ଫଟୋ ପଡ଼ିଯିବା ଯୋଗୁ ସେ ମଧ୍ୟ ବିଚଳିତ ହୋଇ ପଡ଼ିଚି । ନିରଞ୍ଜନ ଆଶ୍ଚର୍ଯ୍ୟ ହୋଇ ଦେଖିଲା, ଦେବ-ଦେବୀର ଛବି ନୁହେଁ, ତଳେ ପଡ଼ି ଭାଙ୍ଗିଯାଇଚି ଅଂଜଳିର ସବୁଠୁଁ ଭଲ ଫଟୋଟି···ସେଇ ବଧୂବେଶର ଫଟୋ ଖଣ୍ଡିକ । ଫଟୋଟିର ଏପରି ଦଶା ଦେଖି ଚିତ୍ତ ତାର ଯେମିତି ଖଣ୍ଡ ଖଣ୍ଡ ହୋଇଗଲା । ତାରହାତ ଭାଙ୍ଗି ଯାଇଛି ତାହାର ପ୍ରିୟତମାର ଛବି ।

ଗୋବନ୍ଦକୁ ପଲଙ୍କ ଉପରେ ଓହ୍ଲେଇ ଦେଇ ନିରଞ୍ଜନ ଫଟୋଟିକୁ ଯାଇ ଉଠେଇ ନେଲା । ଦେଖିଲା, କାଚ ଭାଙ୍ଗି ଯାଇ ଫଟୋ ମଧ୍ୟ ଠାଏ ଠାଏ ଆଞ୍ଚୁଡ଼ି ହୋଇ ଯାଇଚି । ବଧୂବେଶରେ ତାର ପ୍ରେୟସୀ ଅଞ୍ଜଳି ଚାହିଁଚି ସେଇ ଭଙ୍ଗା କାଚ ଭିତରୁ । ବିବ୍ରତ ହୋଇ ପଡ଼ିଲା ନିରଞ୍ଜନ, କାହିଁକି ଏମିତି ଘଟିଲା । ଗୋବନ୍ଦର ମୁଣ୍ଡ ବାଜି ଫଟୋ ଖସି ପଡ଼ିବା ଭିତରେ ଯେମିତି ଆଉ କିଛି ଇଙ୍ଗିତ ରହିଚି ବୋଲି ତାର ଧାରଣା ହେବାକୁ ଲଗିଲା । ଆଶ୍ଚର୍ଯ୍ୟ, ସେଥିପାଇଁ ସେଇ ସବୁ ଦେବଦେବୀଙ୍କ ଛବି ବିରୁଦ୍ଧରେ ତାର ଆକ୍ରୋଶ ଜାତ ହୋଇଗଲା । ନିରଞ୍ଜନର ଯଥେଷ୍ଟ ଆଘାତ ପାଇ-ଲେ ବି ଦେବ-ଦେବୀବୃନ୍ଦ ଯେପରି ତାଙ୍କର ପୂଜାରଣୀ ଅଞ୍ଜଳିର ଫଟୋ ଖଣ୍ଡିକୁ ରକ୍ଷା କରିଥାନ୍ତେ । ଦୁର୍ଘଟଣା ପଛରେ ଯେ କିଛି ବାସ୍ତବବାଦୀ କାରଣ ରହିଛି ସେ କଥା ସେ ଭାବିବାକୁ ମଧ୍ୟ ଭୁଲିଗଲା ।

ଏହା ଭିତରେ ଖଟ ଉପରୁ ଖସି ତଳ ଖଞ୍ଜାକୁ ପଳେଇ ଯାଇ ଖୁଡ଼ୀ ପାଖରେ ପହଞ୍ଚିଛି ଗୋବନ୍ଦ । ଅଞ୍ଜଳି ସେତେବେଳକୁ ଖାଇ ସାରିଥିଲା । କେବଳ ନିରଞ୍ଜନ ପାଇଁ ନିଜ ହାତରେ ଦି'ଖଣ୍ଡ ପାନ ଭାଙ୍ଗି ତାର ଆସିବାର କଥା । ସେତକ କିନ୍ତୁ ହେଲାନି । ଗୋବନ୍ଦଠାରୁ ଛବି ଭାଙ୍ଗିବା କଥା ଶୁଣି ଛାତିରୁ ତାର ଯେମିତି ଅତଡ଼ା ଖସି ପଡ଼ିଛି । ହୁଏତ ତାର ଗୋଟିଏ ଠାକୁରଙ୍କ ଛବି ଭାଙ୍ଗିଗଲା । ଯୁାଙ୍କର କଣ ଏବେ ସୁଦ୍ଧା ଠାକୁରଙ୍କ ଉପରୁ ଆକ୍ରୋଶ ଯାଇନି ! ଏ ଭାବନା ମନରେ ଉଠି ମନରେ ମିଳେଇ ଗଲା ବେଳକୁ ସେ ଆସି ଦି' ଖେପାରେ ଉପର ଖଞ୍ଜାରେ ପହଞ୍ଚିଗଲା ।

ଦୁଆର ମୁହଁରୁ କହି କହି ଅଂଜଳି ଘର ଭିତରକୁ ପଶି ଆସିଲା—"ଠାକୁ-ରଙ୍କ କୋଉ ଛବିଟା ତମେ ଭାଙ୍ଗିଦେଲ ?"

ଦୁଃଖରେ ଭାଙ୍ଗି ପଡ଼ିଚି ନିରଞ୍ଜନର ମନ । ତା ଉପରେ ଅଞ୍ଜଳିର ବଙ୍କା କଥା ତାର କାନରେ ମଧ୍ୟ ବାଜିଲା । ହୁଏତ ଗୋଟିଏ ଠାକୁରର ଛବି ଭାଙ୍ଗି ଯାଇ-ଥିଲେ ନିରଞ୍ଜନ ଆଶ୍ୱସ୍ତ ହୋଇଥାନ୍ତା । କିନ୍ତୁ ଘଟିଚି ତାର ଓଲଟା । ଭାଙ୍ଗି ଯାଇଚି ପ୍ରେୟସୀର ଛବି । ସେଇ ପ୍ରିୟ ଛବିଟି ତାର ହାତରେ, ଭଙ୍ଗା କାଚ ତଳେ ପ୍ରେୟସୀ ଯେମିତି ଅଧୀର ହୋଇ କାନ୍ଦୁଚି, ଏତିକବେଳେ ପାଖରେ ଯାଇ ପହଞ୍ଚିଲା ଅଞ୍ଜଳି । ସ୍ୱାମୀ ହାତରେ ନିଜର ଭଙ୍ଗା ଛବିଟିକୁ ଦେଖି ମନର ଆଶଙ୍କା ତାର ଦୂର ହୋଇ ଅଶ୍ୱସ୍ତି ଭରି ଯିବାକୁ ଲଗିଲା ।

"ତା' ହେଲେ ଠାକୁରଙ୍କ ଛବି ତ ଭାଙ୍ଗିନି···!"

ଅଞ୍ଜଳି ମୁହଁରୁ ଏଭଳି ମନ୍ତବ୍ୟ ଶୁଣି ନିରଞ୍ଜନ ଆହୁରି ଦୁଃଖରେ ଘାରି ହୋଇଗଲା । ଯାହାର ଛବିଟି ଭାଙ୍ଗି ଯାଇଛି ବୋଲି ତାହାର ହୃଦୟ ବିଦୀର୍ଣ୍ଣ ହୋଇ ଯାଇଛି ସେ ନିଜେ ପୁଣି କହୁଛି କଣ । ନିରଞ୍ଜନର ଇଚ୍ଛା ହେଲା, ଅଞ୍ଜଳିର ସବୁ ଠାକୁରଙ୍କ ଛବି ଚୂର୍ଣ୍ଣି ପଡ଼ି ଭାଙ୍ଗି ଯାନ୍ତା କି, ସେ କି ଦୁଃଖ ପାଉଛି ସେ କଥା ଅଞ୍ଜଳି ହୃଦୟଙ୍ଗମ କରି ପାରନ୍ତା । କିନ୍ତୁ ସେ ବିଷୟରେ ସେ ଅଞ୍ଜଳିକୁ କିଛି ହେଲେ କହିଲାନି । ଛବି ଉପରୁ ଭଙ୍ଗା କାଚଖଣ୍ଡଗୁଡ଼ିକ କାଢ଼ି ଦେଇ ଫଟୋ ଖଣ୍ଡିକ ନେଇ ଟେବୁଲ ଉପରେ ରଖିଦେଲା । ଅଳ୍ପ କେତୋଟି ଜାଗା ଆଞ୍ଚୁଡ଼ି ହୋଇ ଯାଇଛି, ତାକୁ ଫଟୋ ଦୋକାନରୁ ସଜାଡ଼ି ଆଣି ହେବ, ଫଟୋ ପୁଣି ନୂଆ କାଚ ଲଗେଇ ଦେଲେ ସବୁ ଠିକ୍ ହୋଇଯିବ ବୋଲି ସେ ନିଜକୁ ପ୍ରବୋଧ ଦେବାକୁ ଚେଷ୍ଟା କଲା । କିନ୍ତୁ ଦିନକ ପାଇଁ ହେଲେ ମଧ୍ୟ ତାର ପ୍ରେୟସୀର ବଧୂବେଶର ଏଇ ବିକୃତି ତା ପକ୍ଷରେ ଯେମିତି ଅତି ଅସ୍ୱାଦ୍ୟ ଓ ଅସହ୍ୟ ହୋଇ ଉଠିଛି । ଛବି ଉପରୁ ମୁହଁ ଫେରେଇ ସେ ନୀରବରେ ଅନେଇଲା ଅଞ୍ଜଳିକୁ । ସେଠୁ ଘୁଞ୍ଚି ଯାଇ ଦରଜାର କବାଟ ବନ୍ଦ କରି ଦେଇ ଆସିଲା ଅଞ୍ଜଳି । ନିରଞ୍ଜନ ଉପରେ ଲେଟି ପଡ଼ି ଗଦ୍‌ଗଦ୍ କଣ୍ଠରେ କହିଲା—

"ମୁଁ ପରି ଅଛି, ଏତେ ଦୁଃଖ କାହିଁକି !"

ନିରଞ୍ଜନ ଭଲ କରି ତାକେ ଅନେଇଲା ଅଞ୍ଜଳିକୁ । ବାହୁବନ୍ଧନରେ ପ୍ରେୟସୀର ଦେହଯଷ୍ଟିକୁ ଆବୃତ କରି ଦେଲା । ଅଞ୍ଜଳିର ଗଣ୍ଡ ଉପରେ ନିଜର ଗଣ୍ଡଟି ଥାପି ଦେଇ ଆଖି ଛଳ ଛଳ କରି କହିଲା, "ହଁ, ତମେ ଅଛ ଅଞ୍ଜଳି, ମୁଁ ସେ କଥା ମୋଟେ ହେଲେ ଭୁଲି ଯାଇନି···।"

ସେ ଆଉ କିଛି କହି ପାରିଲାନି । ହୁଏତ ସେ କହିବାକୁ ଯାଉଥିଲା, ସେଇ ବଧୂବେଶର ଅଞ୍ଜଳି ଆଉ ନାହିଁ ! କିନ୍ତୁ ସେ କଥା ସେ ପ୍ରକାଶ କରି ପାରିଲାନି ! ସେଇ ବଧୂବେଶର ସ୍ମୃତି ବହନ କରିଥିବା ଜନନୀ ଓ ଅନ୍ତଃସତ୍ତ୍ୱା ପ୍ରେୟସୀର ମୁହଁରେ ଅନେକ ଦିନ ପରେ ଗୋଟିଏ ଗଭୀର ଚୁମ୍ବନ ଆଙ୍କି ଦେଲା । ଅଞ୍ଜଳି ଯେମିତି ଆତ୍ମହରା ହୋଇ ପଡ଼ିଛି । ମୁହଁରେ ତାର କିଛି ହେଲେ କଥା ଫୁଟୁନି । ଯେମିତି ସବୁ ଦେବତାର ଆଶୀର୍ବାଦରେ ଜୀବନ ତାର କେବଳ ପୁଣ୍ୟପଥରେ ଗତି କରିବାରେ ଲାଗିଛି । ସ୍ୱାମୀ ତାର କି ସୁନ୍ଦର !

## ॥ ୧୪ ॥

ଏହା ଭିତରେ ଧନଞ୍ଜୟକୁ ଠାବ କରିବା ପାଇଁ ନିରଞ୍ଜନ ଖୁବ୍ ଚେଷ୍ଟା କରିଛି, କିନ୍ତୁ ପାଇନି । ସେଥିରେ ତାର ପ୍ରାୟ ଦଶ ଦିନ ବିତି ଯାଇଛି । ସବୁ ସନ୍ଧାନ ବ୍ୟର୍ଥ ହୋଇଛି । ଯେମିତି ଜଣା ଯାଇଛି, ଧନଞ୍ଜୟ ଆଉ କଟକରେ ନାହିଁ ।

ନିରଞ୍ଜନ ମନରେ ଆଶଙ୍କା ଛୁଇଁଲା, ଜୀବନ ପଥରେ ହତାଶ ହୋଇ ଧନ-ଞ୍ଜୟ କିଛି ପାଗଳାମି କରି ବସିନି ତ । ନିଜର ବନ୍ଧୁ ହୋଇଥିଲେ ମଧ୍ୟ ଧନଞ୍ଜୟର ସହାନୁଭୂତିରେ ଯେତେ ଆନ୍ତରିକତା ପୂର୍ବରୁ ନ ଥିଲା, ଏହା ମଧ୍ୟରେ ତାହା ଅପ୍ରତ୍ୟାଶିତ ଭାବରେ ବଢ଼ି ଯାଇଛି । ଏହା ଘଟିଛି ଧନଞ୍ଜୟର ଅନୁପସ୍ଥିତିରେ ତାହାର କବିତାଗୁଡ଼ିକୁ ପଢ଼ି ପଢ଼ି । ସେ ଦିନ ଦୋକାନରୁ ଧନଞ୍ଜୟର ଯେଉଁ ବହିଟି ନିରଞ୍ଜନ କିଣି ଆଣିଥିଲା ସେଥିରୁ କେତୋଟି କବିତା ତାକୁ ଖୁବ ଭଲ ଲାଗୁଛି । କବିତାଗୁଡ଼ିକର ମର୍ମାନୁସନ୍ଧାନ ହୁଏତ ଏପର୍ଯ୍ୟନ୍ତ ନିରଞ୍ଜନ ପକ୍ଷରେ ସମ୍ଭବ ହୋଇନି, ମାତ୍ର ତାର କେମିତି ଗୋଟାଏ ଧାରଣା ହୋଇଛି, ସେଗୁଡ଼ିକ ସାଧାରଣ କବିତା ନୁହେଁ । ସେଥିଲାଗି ସେ ଥର ଥର କରି କବିତାଗୁଡ଼ିକୁ ଅନେକ ଥର ପଢ଼ିଛି । ସେଥିରୁ ତାର ବିଶ୍ୱାସ ହୋଇଛି କବିତା ଗୁଡ଼ିକର ଧାରହିଁ ଧନଞ୍ଜୟକୁ ଅସାମାଜିକ ଏବଂ ଅନର୍ଥନୈତିକ କରି ଦେଇଛି । ସେଥି-ଲାଗି ତାର ଜାମାରୁ ବୋତାମ ଆଉ ଚଟିରୁ ଫିତା ଛିଡି ଯାଇଛି । ଆଉ ବାଳ ଗୋଛି-କରୁ ଉଡ଼ି ଯାଇଛି ତେଲ । ସେଥିରେ ବା' ହବାକୁ ବସିଥିଲା କୋଉ ନର୍ମଦାକୁ, ସେ ମଧ୍ୟ ଶେଷକୁ ଖସି ଯାଇଛି । ସେ ସବୁ ହଉ ପଛକେ ଧନଞ୍ଜୟ ଭିତରେ ସାଧନା ଅଛି: ଆଉ ସେଇ ସାଧନା ସୃଷ୍ଟି କରିଛି ଅନନ୍ୟ ସାଧାରଣ କବିତା । ଧନଞ୍ଜୟ ଆସିଲେ ସେ ଏଥର ତାକୁ ସମ୍ବର୍ଦ୍ଧନା କରିବ । କିନ୍ତୁ ସେ ଆଜି କେଉଁଠି ? କିଛି ପାଗଳାମି କରି ବସିନି ତ !

ଅନେକ ଦିନ ତଳେ ଜଂଟଣୀ ରେଳ ଷ୍ଟେସନରେ ନିରଞ୍ଜନ ଗୋଟିଏ ଦୁର୍ଘ-ଟଣାର ଦୃଶ୍ୟ ଦେଖିଥିଲା । ଧନଞ୍ଜୟର ପାଗଳାମି ବିଷୟରେ ଚିନ୍ତା କରୁ କରୁ ସେହି ଦୃଶ୍ୟଟା ତା' ଆଖିରେ ଫୁଟି ଉଠିଲା । ରେଳର ଚକା ମାଡିଯାଇ ଲୋକଟାର ଦେହ ଖଣ୍ଡ ଖଣ୍ଡ ହୋଇ ଯାଇଛି । ଲୁହା ଧାରଣା ଆଉ ରେଳ ରାସ୍ତାର ପଥର ଗୋଟିଗୁଡାକ ରକ୍ତରେ ଜୁଡ଼ୁବୁଡୁ ହୋଇ ଭିଜି ଯାଇଛି । ଖଣ୍ଡେ ଦୂରରେ ଲୋକଟିର ମୁଣ୍ଡଟା ଅତି ବିକୃତ ଅବସ୍ଥାରେ ପଡ଼ି ରହିଛି । କି ବିଭତ୍ସ ଦୃଶ୍ୟ । ଆଜି ବି ତାହାର ଚମକ ଲାଗିଲା ନିରଞ୍ଜନ ଛାତିରେ । ସେ ଶିହରି ଉଠି ଆଖି ବୁଜି ଦେଲା ।···ତା'ହେଲେ ଧନଞ୍ଜୟ କଣ ଏମିତି କିଛି ପାଗଳାମି କରିଥିବ ? ଏହି ସବୁ ଭାବନା ଭିତରେ ନିରଞ୍ଜନର ମନେ ପଡ଼ିଲା ଗୋଟିଏ ସତ୍ୟ ଘଟଣା । ହଁ···ଏଇ ଓଡ଼ିଶାର ଜଣେ କବି, ଭଜମନ ଖଟୁଆ ତାଙ୍କ ନାଁ···ନିର୍ଜଳା ସାହିତ୍ୟ-ସାଧନା କରି ଶେଷକୁ ସ୍ତ୍ରୀ ଓ ଛୁଆ ପିଲାଙ୍କୁ ଭସେଇ ଦେଇ ନିଜେ ଜଙ୍ଗଲରେ ଫାଶୀ ଦେଇ ପ୍ରାଣ ତ୍ୟାଗ କଲେ । କି ନିର୍ମମ ଜୀବନ, ଏ ପଥରେ ଧନଞ୍ଜୟ ପାଦ ଦେଇଛି କାହିଁକି···କଣ ଲାଭ ମିଳିବ ସାହିତ୍ୟ-ସାଧନା କରି । ଧନଞ୍ଜୟର ସାଧନା ଲାଗି ଦିନେ ହୁଏତ ଓଡ଼ିଆ ସାହିତ୍ୟର ସ୍ୱୀକୃତି ଗଣନା କରାଯିବ, କିନ୍ତୁ ସେଦିନ ଧନଞ୍ଜୟର ଲାଭ ହେବ କଣ ? ଟିକିଏ ଶୁଷ୍କ ପ୍ରଶଂସା, ଏଇଥିପାଇଁ ସାରା ଜୀବନ ଧରି ସାଧନା । ହସି ଉଠିଲା ନିରଞ୍ଜନ, ତାଚ୍ଛଲ୍ୟର ହସ । ଜୀବନକୁ ପରିପୂର୍ଣ୍ଣ ଭାବରେ ଉପଭୋଗ କରିବା ଭିତରେ କ'ଣ ଗୌରବ ନାହିଁ ?

ଆଗରେ ଡାକ ପିଅନ ପହଞ୍ଚିଲା । ଗୋଟାଏ ବଡ଼ ପ୍ୟାକେଟ୍ ବାହାର କରି ଥୋଇଲା ଟେବୁଲ ଉପରେ । ନିରଞ୍ଜନ ଦେଖିଲା ରେଜଷ୍ଟ୍ରି ପାର୍ଶଲ···କମ୍ପାନିରୁ ଆସିନି, ସେ ଭଲ କରି ଆଖି ଟେକି ଦେଖିଲା, ପ୍ରେରକ ସ୍ଥାନରେ ଲେଖା ହୋଇଚି ଧନଞ୍ଜୟର ନାଁ । ସେ ବ୍ୟଗ୍ର ହୋଇ ଉଠିଲା, ଧନଞ୍ଜୟ ବଞ୍ଚିଛି···ଦୁଇ ଦିନ ତଳେ ସେ ନିଶ୍ଚୟ ବଞ୍ଚିଥିଲା···ଏହି ପାର୍ଶଲ ତାହାର ପ୍ରମାଣ···ହୁଏତ ଆଜି ମଧ୍ୟ ସେ ବଞ୍ଚିଛି । ଶୀଘ୍ର ରସିଦରେ ଦସ୍ତଖତ କରିଦେଇ ପାର୍ଶଲ ଖୋଲିବାରେ ଲାଗିଲା । କଣ ତା ପାଖକୁ ପଠେଇଚି ଆଉ ଧନଞ୍ଜୟ···? ପାର୍ଶଲ ଖୋଲି ତା ଭିତରୁ ନିରଞ୍ଜନ ଆଗେ ଗୋଟାଏ ଚିଠି ପାଇଲା । ହଁ, ଧନଞ୍ଜୟ ହାତର ଅକ୍ଷର, ଉପରେ ଦୁଇ ଦିନ ତଳର ତାରିଖ ଅଛି···ନିଶ୍ଚୟ ଦୁଇ ଦିନ ତଳେ ବଞ୍ଚିଥିଲା । ଏଣିକି ଚିଠି ପଢ଼ିବାରେ ଲାଗିଲା ନିରଞ୍ଜନ ।

ଚିଠି ପଢ଼ି ନିରଞ୍ଜନ ହସି ଉଠିଲା । ଧନଞ୍ଜୟ କେବଳ ବଞ୍ଚିନି···ଆଉ ପନ୍ଦର ଦିନ ଭିତରେ ବାହା ହେଉଚି ସେ ! ପାଣ୍ଡୁଲିପିଯାକ ପଠେଇ ଦେଇଚି ନିରଞ୍ଜନ ପାଖକୁ···କିଛି ଟଙ୍କା ଆଶାରେ, ବାହାଘର ଖର୍ଚ୍ଚ ପାଇଁ ।

ଚିଠି ପଢ଼ି ସାରି ନିରଞ୍ଜନ ଗୁମ୍ ହୋଇ ବସି ରହିଲା । କି ଉଦ୍ଭଟ କଳ୍ପନା! ପାଣ୍ଡୁଲିପି ବିକି ସାହିତ୍ୟିକ ନିଜର ବାହାଘର କରିବ । ତାପରେ ଆଉ ପରସ୍ତେ କାଗଜ ଖୋଲି ପାଣ୍ଡୁଲିପିଯାକ ନିରଞ୍ଜନ ବାହାର କଲା । ସଂଖ୍ୟାରେ ପାଞ୍ଚଟି । ଦୁଇଟି ପାଣ୍ଡୁ-ଲିପି ଖୁବ୍ ବଡ଼ । ହୁଏତ ରାଜ୍ୟର ଅଳିଆଯାକ ସେଥିରେ ପଶିଛି । କି ବାଜେ ଲେଖେ ଧନଞ୍ଜୟ, ସେଥିରେ ପୁଣି ପାଞ୍ଚଖଣ୍ଡ ପାଣ୍ଡୁଲିପି । ନିଜର ଭାବନା ଭିତରେ ଯୁଦ୍ଧ । ତାକୁ ସେ ଅପମାନିତ କରି ଯେ ଦିନ ଫେରେଇ ଦେଲା । ପୁଣି ତାରି ପାଖକୁ ପଠେଇଚି ସେ ପାଣ୍ଡୁଲିପିଗୁଡ଼ାକ । ଲୋକଟି ବଞ୍ଚିଚି···ପୁଣି ବାହାହେବ । ବୟସରେ ମୋଠୁ ସାନ ହେବ···ଏତେ ଡେରିରେ ବାହାହେବ ଖାଲି ପରିଚିଅଳୁ ମାଗିବା ସକାଶେ··· । ବଜା-ରରେ ସେ ଦଶ ଟଙ୍କାରେ ଖଣ୍ଡେ ପାଣ୍ଡୁଲିପି ବିକିଚି···ପାଞ୍ଚ ଖଣ୍ଡକୁ ପଚାଶ ଟଙ୍କା ହେବ । ହଁ ବଡ଼ ବଡ଼ ଦି ଖଣ୍ଡ ଅଛି···ଧରି ଆଉ କୋଡ଼ିଏ ଟଙ୍କା···ସତୁରି ଟଙ୍କା ହେଲା । ଏଇଥିରେ ହବ ବାହାଘର । ନିରଞ୍ଜନ ପୁଣି ହସି ଉଠିଲା ।

ଆଲମାରିର ଥାକରେ ପାଣ୍ଡୁଲିପି ଯାକ ରଖି ଦେଇ ନିରଞ୍ଜନ ନିଜର ବ୍ୟବସାୟୀ କାମରେ ମନ ଦେବାକୁ ଚେଷ୍ଟା କଲା । ଅଫିସରେ ତାର କେତେ କାମ ବାକି ରହି ଯାଉଚି । ଏଥରକ ସେ ସବୁ ଝଟମ ସାରି ଦେବାକୁ ମନେ ମନେ ସ୍ଥିର କଲା, କିନ୍ତୁ ବେଶି ସମୟ ସେ ସ୍ଥିର ମନରେ କାମ କରି ପାରିଲାନି । ଧନଞ୍ଜୟ ନିଜେ ନଷ୍ଟ ହେଲା, ତା ସାଙ୍ଗରେ ସମସ୍ତଙ୍କୁ ନଷ୍ଟ କରି ଦବ···ଏଇଠି ଥିଲେ ସେ ଆଜି ଦେଢ଼ଶ ଟଙ୍କା ପାଆନ୍ତାଣି···ମାତ୍ର ତା କଲିନ··ତା ପରିବର୍ତ୍ତେ ଗୁଡ଼ାଏ ଆବର୍ଜନା ବିକି ତା ପାଖରୁ ଆଜି ଟଙ୍କା ନବାକୁ ବସିଚି । ସେଦିନ ସବୁ ଗୋଳମାଳ ହେଲା ଏଇ ଧନଞ୍ଜୟ ଯୋଗୁ । ଗୋଳମାଳ···ତାକୁ ଗୋଳମାଳ କୁହାଯିବ···ତା ପଥରେ ସରସୀର ଆବିର୍ଭାବ କ'ଣ ସତେ ଏକ ଗୋଳମାଳ ? କଲମ ବନ୍ଦ କରି ନିରଞ୍ଜନ ତାହାର

ମୀମାଂସା ଖୋଜିବାକୁ ଲାଗିଲା । ସରସୀର ରୂପ ଅପେକ୍ଷା ଦେହଟା ବଡ଼ ସୁନ୍ଦର । ମାଂସଗୁଡ଼ାକ ଅଙ୍ଗ ପ୍ରତ୍ୟଙ୍ଗରେ ରୁନ୍ଧି ହୋଇଛି ଯେମିତି । ନା, ନା, ସରସୀର ଦେହ··· ସରସୀର ମାଂସରେ ତାର କି ଦରକାର୍? ହିଁ···ତା ବାଟରେ ସରସୀର ଦେଖାକୁ ଗୋଳ-ମାଳ ବୋଲି କହିବାକୁ ହେବ । କିନ୍ତୁ ତାକୁ ସେ ଦାମିକା ଯୋତା ହଳେ କିଣିଦେଇ ଦେଲା ଯେମିତି—ନିଜ ହାତରୁ ପଚାଶ ଟଙ୍କା ଦେଇ । କାହିଁକି···ସରସୀର ତା' ପ୍ରତି ଏ ବଦାନ୍ୟତା କାହିଁକି ? କିନ୍ତୁ ସୁନ୍ଦର ଯୋତା···ସେ ଏତେ ଟଙ୍କା ଦେଇ ନିଜେ ସେପରି ଯୋତା କେବେହେଲେ କିଣି ନ ଥାନ୍ତା । ଅଞ୍ଜଳି ସେସବୁ କଥା ଏ ପର୍ଯ୍ୟନ୍ତ କିଛି ଜାଣିନି । ଏ ସବୁ କଥା ଅଞ୍ଜଳି ଜାଣି ଆଉ ଲାଭ କଣ । ବଜାରରେ ସେ କେବେ ସେମିତି ଏକୁଟିଆ ଆସି ବୁଲି ଯିବନି । ସରସୀର ପଣତ ଉଡ଼ିଆସି ପିଟି ହୋଇ ଯାଉଥିଲା ତା ଦେହରେ···ଅଞ୍ଜଳିର ସବୁ ଅଙ୍ଗ ତା ଦେହରେ ଲେଟି ଯାଏ···ତଥାପି ସେଥିରେ ତଫାତ୍···ହିଁ···ଧନଞ୍ଜୟ କଣ ଚିଠି ଲେଖିଛି···

ଚିଠିଟା ସେ ପର୍ଯ୍ୟନ୍ତ ଟେବୁଲ ଉପରେ ରହିଥିଲା । ତାକୁ ଆଗ୍ରହରେ ସେ ବସି ପଢ଼ିବାକୁ ଲାଗିଲା । ଥାକରୁ ପାଣ୍ଡୁଲିପିଯାକ ଆଣି ସେ ପୁଣି ଦେଖିବାକୁ ଲାଗିଲା । ନିରଞ୍ଜନର ମନେ ପଡ଼ିଲା, ତାର ବିଭାଘରରେ ଧନଞ୍ଜୟ ଗୋଟାଏ କବିତା ଲେଖି ତାକୁ ଉପହାର ଦେଇଥିଲା । ବିବାହର ସବୁ ଯାନି ଯୌତୁକ ଭିତରେ ସେହି କବିତାଟି ତାକୁ ଲାଗିଥିଲା ଖୁବ୍ ଭଲ । ଆଜି ସେହି କବିତାର ଲେଖକ ଧନଞ୍ଜୟ ବା' ହଉଛି । ତାକୁ ସେ କି ଉପହାର ଦେବ । ନିଜର ସବୁ ସମ୍ବଳ ପଠେଇ ସେ ପୁଣି ଆଜି ତା ପାଖରେ ‹ ଋଣ ଧଣତ । ହୁଏତ ବିପଦ ତାର ଏତେ ଯେ ସେ ଧନର ଅପମାନକୁ ମଧ୍ୟ ମନରେ ସ୍ଥାନ ନ ଦେଇ କାମ କରି ବସିଛି । କିନ୍ତୁ ଧନଂଜୟ ବା' ହୋଇ କରିବ କଣ···ଚଳିବ କେମିତି···ଜୀବନରେ ଏତେ ପ୍ରଲୋଭନକୁ ଏଡ଼ି ସେ ନିଜର ସାଧନାକୁ ବଡ଼ ବୋଲି ମନେ କରିଥିଲା··· ଶେଷକୁ ସେ ପୁଣି ନିରାଟ ଅନାଟନର ଜୀବନ ଧରି ବିବାହ ଚକରେ ପଡ଼ିଗଲା ? କୋଉଠି···କାହାକୁ ବା' ହଉଛି ସେ···କିଏ ତାକୁ ଗ୍ରହଣ କରିବା ପାଇଁ ଆଜି ଆଗେଇଆସିଛି···ପୁଣି ସିଏ ବା କାହାକୁ ଗ୍ରହଣ କରୁଛି···

ଏହିପରି ଭାବନା ଭିତରେ ଧନଂଜୟ ପ୍ରତି ନିରଜଂନର ମନ କ୍ରମେ ସଦୟ ହୋଇ ଉଠିଲା । ପ୍ରତିଭା ଅଛି ଧନଂଜୟ ଭିତରେ·· ତା ପଛରେ ଠିଆହେବାକୁ ହେବ । ପ୍ରତିଭାଶାଳୀ ବାପୁକ ଦଧିଆ ମରି ଯାଇଛି···ତା ପୁଅ ନିଧିଆ ପଛରେ ସେ ଆଜି ଠିଆ ହୋଇଛି ତାକୁ ଉଠେଇବା ଲାଗି···ନିଧିଆ ମଧ୍ୟ ଉଠୁଛି···ଆଉ ଏଡ଼େ ବଡ ପ୍ରତିଭା ଧରି ଏହି ଯୁବକ ଧନଂଜୟ ମରିଯିବ ? ଯେଉଁମାନେ ମୁମୂର୍ଷୁ ସେମାନେ ମରନ୍ତୁ । ଶୋକସଭା ବନ୍ଦ ହେଉ, କିନ୍ତୁ ଜୀବନ୍ତମାନଙ୍କର ବଞ୍ଚିବା ପାଇଁ ବ୍ୟବସ୍ଥା ହେବା ଦର୍‌କାର । ସେହି ଜୀବନ୍ତମାନଙ୍କ ଭିତରୁ ଧନଞ୍ଜୟ ଅନ୍ୟତମ । ସେ ଆଜି ତା ପାଖରେ । ହେଇ ଆଗରେ ପଡ଼ିଛି ତାହାର ସାଧନାବଳି । ଏହି ପାଣ୍ଡୁଲିପିଗୁଡ଼ିକ ଛଡ଼ା ଧନଞ୍ଜୟର ସର୍ବ ଆଉ କ'ଣ ? ସେ ରକ୍ଷାକରିବ ବିକଶିତ ପ୍ରତିଭାର ଏହି ସ୍ୱାକ୍ଷରଗୁଡ଼ିକୁ । ସୁନ୍ଦର ସଂସ୍କରଣ କରି ଏ ସବୁ ପ୍ରକାଶ କରିଦେବ । ପ୍ରକାଶକ ଭାବରେ ସେଥିରୁ କୌଣସି ସର୍ତ୍ତ

ନେବନା ଧନଞ୍ଜୟପୁର ପ୍ରତିଷ୍ଠାର ରକ୍ଷା ପାଇଁ ଏହାହିଁ ଉତ୍କୃଷ୍ଟ ବ୍ୟବସ୍ଥା । ବନ୍ଧୁ ବନ୍ଧି ବାବଦ ସମସ୍ତ ଧନ ଧନଞ୍ଜୟ ପାଉ । ଧନଂଜୟର ବିବାହ ସାଙ୍ଗରେ ତାର କୌଣସି ସମ୍ପର୍କ ନାହିଁ···ବିବାହ ଭିତରେ ଧନଞ୍ଜୟର ବନ୍ଧିବାର ସେ କିଛି ହେଲେ ସମ୍ଭାବନା ଦେଖୁନ···ନା···ନା ଧନଞ୍ଜୟର ବିବାହକୁ ସେ କଦାପି ସମର୍ଥନ କରିପାରିବ ନି······ ପ୍ରତିଷ୍ଠା ପରିବର୍ତ୍ତେ ପ୍ରତିଷ୍ଠାଶାଳୀର ପାଗଳାମିକି ସେ ବରଦାସ୍ତ କରିପାରିବନି ।

ସେଦିନ ଅଫିସ୍ ଫେରନ୍ତି ନିରଞ୍ଜନ ଗୋଟିଏ ପ୍ରେସ୍‌କୁ ଯାଇ ଧନଞ୍ଜୟର ଖଣ୍ଡେ ବହି ଛାପିବା ପାଇଁ ଖର୍ଚ୍ଚର ହିସାବପତ୍ର ବୁଝି ଆସିଲା । ତିନିଶ' କି ଚାରି ଶ' ଟଙ୍କା ଲାଗିବ । ନିରଞ୍ଜନ ଭାବିଲା, ବହିଟା ଶୀଘ୍ର ଛାପିଦେଲେ ଧନଞ୍ଜୟର ବା'ଘର ବେଳକୁ ଗୋଟିଏ ମାତ୍ରବରିଆ ଉପହାର ଦେଇ ହୁଅନ୍ତା । ପୁଣି ଦୋ ଦୋ ପାଞ୍ଚ ହେଲା । ଟଙ୍କା ଅଭାବରୁ ବା'ଘର ଯଦି ନ ହୁଏ, ଉପହାରଟା ଶୁଖିଲାରେ ପଡ଼ି ମାରି ଯିବ କେବଳ । ହୁଏତ ସେହି ତିନିଶ'କି ଚାରି ଶ' ଟଙ୍କାରେ ଧନଞ୍ଜୟ ବିବାହ-ପଥର ବାଧାବିଘ୍ନ ଅନେକ ଅତିକ୍ରମ କରି ଚାଲିଯିବ । ହିଁ···ବଡ଼ ମୁସ୍କିଲ କଥା, କଣ କରାଯିବ ? ଅଞ୍ଜଳି ସାଙ୍ଗରେ ପରାମର୍ଶ କଲେ କେମିତି ହୁଅନ୍ତା ?

"ଆରେ ହୋ, ଶୁଣୁଚ !"

ତଳ ଖଞ୍ଜାରେ ରତ୍ନମଣି ପୁଅକୁ ହାଲିଆ ଲଗେଇ ଦଉଚି । ପୁଅର ଅସ୍ୱସ୍ତି କାନ୍ଦଣା ଭାସିଆସୁଚି ପବନରେ । ବଜାରକୁ ଚାକର ସାଙ୍ଗରେ ଯାଇଚି ଗୋବିନ୍ଦ । ଅଗଣା ପାରି ହୋଇ ଆରି ଖଞ୍ଜାକୁ ଅଞ୍ଜଳି ଚାଲିଯିବା ଉପରେ । ଗର୍ଭର ସ୍ଫୀତିରେ ଚାଲିବା ତାର ମନ୍ଥରୀଭୂତ ହୋଇପଡ଼ୁଛି । ନିରଞ୍ଜନର ଡାକ ଶୁଣି ସେ ଥମକି ଛିଡ଼ା ହେଲା । ମୁହଁ ଫେରେଇ ଅନେଇଲା । ଠିକ୍ ସାମନାର ପିଣ୍ଡା ଉପରେ ଖଣ୍ଡେ ଚୌକୀରେ ବସିଚି ନିରଞ୍ଜନ । ଆଗମୁହାଁ ହୋଇ ଆଗେଇ ଆସିବାକୁ ଅଞ୍ଜଳି କୁଣ୍ଠାବୋଧ କଲା । ଛାତିର ଲୁଗା ତଳକୁ ଖସେଇଦେଇ ଯେପରି କଣ କୃତ୍ରିମତାର ଆଶ୍ରା ନେବାକୁ ଚେଷ୍ଟା କଲା । ନିରଞ୍ଜନ ସେସବୁ ଉପଭୋଗ କରିବାରେ ଲାଗିଚି । ଅଞ୍ଜଳିର ଚାଲିବାର ଢଙ୍ଗ ଦେଖି ସେ ମୁରୁକି ମୁରୁକି ହସିଉଠିଲା । ଅଞ୍ଜଳି କିନ୍ତୁ ହଟିଲାନି, ଚାଲି ଚାଲି ଆସି ପାଖରେ ପହଞ୍ଚି କହିଲା, "ହସୁଚ କାହିଁକି, କ'ଣ ହେଇଚି କି···ଦୁଷ୍ଟ···"

ନିରଞ୍ଜନ ହସି ହସି କହିଲା···"କିଛି ନା, କିଛି ନା । କିଏ କହୁଚି କି କ'ଣ ହେଇଚି ବୋଲି—କବିଗୁଡ଼ାକ ନାରୀକୁ ତନ୍ୱୀ ରୂପରେ କଳ୍ପନା କରି ବଡ଼ ଭୁଲ କରିଛନ୍ତି । ବରଞ୍ଚ ଏ ରୂପଟା ତମର ଖୁବ୍ ଭଲ ଦିଶୁଚି···"

ପିଣ୍ଡାରେ ଠିଆ ନ ହେଇ ଅଞ୍ଜଳି ଏ କଥା ଶୁଣି ଘର ଭିତରକୁ ଚାଲିଗଲା । ନିରଞ୍ଜନ ଘର ଭିତରକୁ ଯାଇ ତାକୁ ଅନେଇ ପୁଣି ହସି ଉଠିଲା ।

"ତା' ହେଲେ ମତେ ଡାକିବାରେ କିଛି କାରଣ ନାହିଁ···ଏମିତି ହସୁଚ କାହିଁକି କହିଲ···?" କହି ଅଞ୍ଜଳି ଘରୁ ବାହାରି ଯିବାକୁ ଉଦ୍ୟତ ହେଲା । ତାର ଗତିରୋଧ କରି ଆଗରେ ଠିଆ ହେଲା ନିରଞ୍ଜନ । ଆଖିରେ ତାରଅଞ୍ଜଳିର ବିପୁଳ

ସମ୍ପଦ ପ୍ରତିଘାତ ହେଲା ଯେମିତି । ଲୋଭ ସମ୍ବରଣ କରି ନ ପାରି ସେ ଅଞ୍ଜଳିର ଦୁଇ କାନ୍ଧକୁ ଧରି ଛୁଡ଼ା ହେଲା । ଗର୍ଭବତୀ ନାରୀର ମୂର୍ତ୍ତି ଭିତରେ ଯେମିତି ଗୋଟାଏ ଉତ୍ସବ ରଚନା ଗ୍ୱଲିଚି । କିନ୍ତୁ ସେଥିରେ ବର୍ତ୍ତମାନ ପାଇଁ ପୁରୁଷର କୌଣସି ଦୈହିକ ଲିଭ ନାହିଁ । ଭବିଷ୍ୟତର ଜୟଗାନ ଭିତରେ ସୃଷ୍ଟିର କାମନା ଧରି ନିଜର ଉତ୍ସବ ମଧ୍ୟରେ ନାରୀ ଯେମିତି ନିଜେ ପୂର୍ଣ୍ଣ ହୋଇ ରହିଚି । ସେଇ ଉତ୍ସବ ରଚନାରେ ଦିନେ ପୁରୁଷର ହାତ ଥିଲା । ମାତ୍ର ସେ ଆଜି ଦୂରରେ, ସେ ଆଜି ଗ୍ୱହିଁରହୁଚି ବାଟରେ ଆଉ କାହାର ପାଦଗ୍ୱଲିକି ।

ଯେଉଁ ପରାମର୍ଶ ପାଇଁ ଅଞ୍ଜଳିକି ପାଖକୁ ଡାକିଥିଲା, ତାହା ଆଉ ନିରଞ୍ଜନ ପକ୍ଷରେ ସମ୍ଭବ ହେଲାନି । କାନ୍ଧରୁ ତାର ହାତ ଉଠେଇ ନେଇ କହିଲା—"ସେମିତି ଡାକିଥିଲି । ଖୁବ୍ ଭଲ ଦିଶୁଚି ତମେ..."

କାନରେ ସ୍ୱାମୀର ପ୍ରଶଂସାର ସ୍ୱର ବାଜିଲେ ମଧ୍ୟ ଅଞ୍ଜଳି କିନ୍ତୁ ସେଥିରେ ଉତ୍ସାହିତ ହୋଇପାରିଲାନି । ଅନେଇଲା ସ୍ୱାମୀର ମୁହଁକୁ, ବିରାଟ ଘୂର୍ଣ୍ଣିବାତ୍ୟା ଘୂରିବୁଲୁଚି ସେଠି ଯେମିତି । ନବଗ୍ରହ ସ୍ତୋତ୍ର ଆଉ ଦେବଦେବୀ ପୂଜାପାଠର ସେଠି କୌଣସି ଆଶୀର୍ବାଦ ନାହିଁ । ଅଞ୍ଜଳିର ନିରୁପାୟତା ମଧ୍ୟ ନିରଂଜନ ଅନୁଭବ କଲା । ହାତରେ ଗ୍ୱପିଧରିଲା ଅଂଜଳିର ମୁହଁଟିକୁ । ସେହି ମୁହଁ, ସେହି ଆଖି ଯେମିତି ଦିନେ ଡାକି ନେଇ ଯାଉଥିଲା ଖୁବ୍ ଦୂରକୁ ଆଜି ବି ସେମିତି ଡାକିପାରୁଚି । କିନ୍ତୁ ଯାଇ ହେଲାନି । ଆଖି ଫେରେଇ ଆଣିଲା ନିରଂଜନ । ଅଂଜଳି ସେତେବେଳକୁ କାନ୍ଥର ଗୋଟିଏ ଦେବତାର ଛବି ଉପରେ ଦୃଷ୍ଟି ନିବଦ୍ଧ କରିଛି । ଆଖି କଣରେ ଜମିଉଠିଛି ବାଷ୍ପବିନ୍ଦୁ ।

॥ ୧୫ ॥

କାହାର ପରାମର୍ଶ ନ କରି ନିରଂଜନ ଶେଷକୁ ତିନିଶହ ଟଙ୍କା ଧନଂଜୟକୁ ଦେବା ପାଇଁ ସ୍ଥିରକଲା । ଲେଖାଗୁଡ଼ାକ ସେମିତି ଥାଉ, କେବେ ଧନଂଜୟ ଆସିଲେ ତାହାର କିଛି ବ୍ୟବସ୍ଥା ହେବ । ଏହିପରି ନିଷ୍ପତ୍ତି କରି ବିଭାଘରର ଠିକ୍ ଆଠଦିନ ଆଗରୁ ନିରଂଜନ ଡାକ ଯୋଗେ ଧନଂଜୟ ପାଖକୁ ଟଙ୍କାତକ ପଠାଇଦେଲା ।

ତାପରେ ନିରଞ୍ଜନ ନିଜ କାମରେ ଲଗିଯାଇଚି । ଧନଞ୍ଜୟ କେଉଁଠାରେ ଆଉ କେଉଁଭଳି ଗୋଟିଏ ଝିଅକୁ ବାହେଲା, ସେଥି ଲାଗି ଅବଶ୍ୟ ତା' ମନରେ ବେଳେ ବେଳେ ଜିଜ୍ଞାସା ଦେଖାଦେଇଛି, କିନ୍ତୁ ଦୂରରେ ରହି ସେ ଦିଗରେ ବିଶେଷ ମୁଣ୍ଡ ଖେଳେଇବାକୁ ସେ ଚେଷ୍ଟା କରିନି । କିଛି ଦିନ ପରେ ବ୍ୟବସାୟ ଯୋଗୁ ସେ କଟକଠାରୁ ଦୂରକୁ ଗ୍ୱଲିଗଲା । ବାହାରେ ତା'ର ପ୍ରାୟ ପାଞ୍ଚ ଛ'ଦିନ କଟିଲା । ଫେରିଆସିବା

ପରେ ଅଫିସର ଚିଠି ଦେଖୁ ଦେଖୁ ସେଥିଭିତରୁ ଧନଞ୍ଜୟର ଖଣ୍ଡେ ଚିଠି ପାଇଲା । ଚିଠି ଭିତରେ ନିମନ୍ତ୍ରଣ ପତ୍ର । ସେତେବେଳକୁ ବା'ଘର ତିନି ଦିନ ଗତ ହୋଇଗଲାଣି । ନିରଞ୍ଜନ ଭାବିଲା – ଆଉ ତ ଯାଇ ହବନି ନିଶ୍ଚୟ । ଯିବାର ଆଉ କିଛି କାରଣ ମଧ୍ୟ ନାହିଁ । ତେବେ ଧନଞ୍ଜୟ ବା' ହେଲା କାହାକୁ ? ଚିଠି ଆଉ ନିମନ୍ତ୍ରଣ ପତ୍ରକୁ ନିରଞ୍ଜନ ଥର ଥର କରି ପଢ଼ିବାକୁ ଲାଗିଲା । ବିଶୁଦ୍ଧ ଓଡ଼ିଆ ଅକ୍ଷର ଓ ଓଡ଼ିଆ ଭାଷାରେ ଲେଖା; କିନ୍ତୁ ତାକୁ ପଢ଼ି ବୁଝିବା ଯେମିତି ନିରଞ୍ଜନ ପକ୍ଷରେ ଖୁବ୍ କଷ୍ଟକର ହୋଇପଡ଼ିଲା । ଧାଡ଼ିର ଅକ୍ଷର ଯେମିତି ଗୋଟା ଗୋଟା ଖସିପଡୁଛି । ଗୋଟାଏ ସିଗାରେଟ୍ ଟାଣିଲା । ଧୂଆଁ ଗୁଡ଼ାକ ବାଁ କାଳିଆ ମାରି ଟେବୁଲ ଉପରିଭାଗର ସ୍ଲେଟ ଶୂନ୍ୟମଣ୍ଡଳ ଭିତରେ ଘୂରି ବୁଲିବାକୁ ଲାଗିଲା । ଚିଠିର ଅକ୍ଷରଗୁଡ଼ାକ ସେଥିରେ ଆହୁରି ନିଭି ନିଭି ଯାଉଛି ; କିନ୍ତୁ ତା' ଭିତରୁ ଦି'ଟା ମୁହଁ ଭାସିଉଠୁଚି ଧୀରେ ଧୀରେ । ଦରଜଳା ସିଗାରେଟ୍‌ଟାକୁ ଫୋପାଡ଼ିଦେଲା ନିରଞ୍ଜନ । ମୁହଁଟାକୁ ଭଲକରି ପୋଛିନେଲା ରୁମାଲରେ । କାଚ ଡେଣୁଆର ଗୃପା ତଳେ ଚିଠି ଆଉ ନିମନ୍ତ୍ରଣ ପତ୍ର ଟେବୁଲ ଉପରେ ପଡ଼ିରହିଚି । ଓଡ଼ିଆ ଅକ୍ଷର ଛାପିବାରେ ପ୍ରେସ୍‌ର କୌଣସି ତ୍ରୁଟି ଘଟିନି···ଅଧ୍ୟାପିକା ସରସୀକୁ ବା' ହୋଇଚି ଧନଞ୍ଜୟ । ନିମନ୍ତ୍ରଣ ପତ୍ରରେ ହୁଏତ ବିବାହ ସମ୍ପନ୍ନ ହେବ ବୋଲି ଲେଖା ହୋଇଚି, କିନ୍ତୁ ତିନି ଦିନ ହେଲା ତାହା ସମ୍ପନ୍ନ ହୋଇ ସାରିବଣି । ନିରଞ୍ଜନ ଆଖିରେ ଖେଳିଗଲା ସରସୀର ସେଦିନର ଚେହେରା । ସୁଗଠିତ ମାଂସପୁଷ୍ଟ ଦେହଟା ଯେମିତି କେବଳ ସଂଗ୍ରାମର ଡାକରା ଦେଉଚି । ସେହି ସଂଗ୍ରାମ ବରଣ କରିନେଇଚି ଏବେ ଧନଞ୍ଜୟ । ଛିଃ ସରସୀ କି ମାଚ···ଗୋଟାଏ ଓକିଲ ସ୍ୱାମୀକୁ ଡ଼ାଇଭର୍ସ କରି ଶେଷରେ ବାରବୁଲା ଧନଞ୍ଜୟଟାକୁ ବା' ହେଲା । ଆଉ ଲକ୍ଷ୍ମୀର ତ୍ୟଜ୍ୟପୁତ୍ର ଭଣ୍ଡ ସାହିତ୍ୟ-ସାଧକ ଧନଞ୍ଜୟ ଆଜି ଜଣେ ଅଧ୍ୟାପିକାର ସ୍ୱାମୀ···ଆଉ କିଛି ଚିନ୍ତା କରିପାରିଲାନି ନିରଞ୍ଜନ । କିଛି ସମୟ ସ୍ତବ୍ଧ ହୋଇ ବସି ଦି'ତିନିଟା ସିଗାରେଟ୍ ପୋଡ଼ିବାରେ ଲାଗିଲା ।

କିଛି ସମୟ ପରେ ମନେପଡ଼ିଲା ତାର ସେଦିନର ଘଟଣା । ବହିଦୋକାନୀ ଦଶଟଙ୍କାରେ କିଣିଥିଲା ଧନଞ୍ଜୟର ଗୋଟାଏ ଲେଖାକୁ···ଆଉ ସେ କଥା ସରସୀ ତାକୁ ପ୍ରଥମେ ଜଣେଇଦେଲା । ତା ପୂର୍ବରୁ ସରସୀ ସହ ଧନଞ୍ଜୟର ଆଳାପ ହୋଇଚି, ନା ପରେ ? ଧନଞ୍ଜୟର ସେଇ ରୁକ୍ଷ ଛତରା ଚେହେରା ଭିତରେ ଗୋଟାଏ ପୁରୁଷସୁନ୍ଦର ବଳିଷ୍ଠତା ଥିଲା । ହୁଏତ ସେଇଟା ଆକର୍ଷଣ କରିଚି ସରସୀକି । ସେଦିନର ଘଟଣା ପରେ ହୁଏତ ଧନଞ୍ଜୟ ଭିତରେ ଆଉ କୌଣସି ଆଦର୍ଶ ନ ଥିଲା । ଟିଉସନ ଗୃହକର୍ତ୍ତ୍ରୀ ସେଥିରୁ ନିର୍ବାଶ ହୋଇ ପାଣ୍ଡୁଲିପିକି ଦଶଟା ଟଙ୍କାରେ ବିକିବା ପରେ ସାହିତ୍ୟ ସାଧକର ଆଉ କି ଆଦର୍ଶରେ ବିଶ୍ୱାସ ରହିପାରେ ? ତା ପରେ ସେ ଝାସ ଦେଉଚି ସରସୀର ଜଳନ୍ତା ମାଂସର ଉତ୍ସବରେ । ଆଉ ସରସୀ, କଣ କରିଥାନ୍ତା ସିଏ ? କୋଉ ଆତ୍ମମର୍ଯ୍ୟାଦା ସମ୍ପନ୍ନ ଆଉ ସ୍ୱନାମଧନ୍ୟ ଲୋକ ତାକୁ ବରଣ କରିବାକୁ ଆଗେଇ ଆସିଥାନ୍ତା ! ଖାଣ୍ଟି ଓଡ଼ିଆରେ କହିବାକୁ ଗଲେ, ସେ ଗୋଟେ ଛୁଞ୍ଚିର ମାଇକିନା ।

ହୁଁ...ତାକୁ ପୁଣି ବାଁ' ହେଲା ଧନଞ୍ଜୟ ଦୀର୍ଘ କାଳର କୌମାର୍ଯ୍ୟବ୍ରତ ଉଦ୍‌ଯାପନ କରି । ଘବ ଘବ ଗୋଟାଏ ବକୃତ ହସ ହସିଲା ନିରଞ୍ଜନ ।

ଚପରାସି କଣ ଗୋଟେ ଖାତା ଆଣି ଥୋଇଲା ଆଗରେ । ମୁଣ୍ଡବାଳ ଭିତରେ ଆଙ୍ଗୁଠି ପୂରେଇ ଚଡ଼ଉଠି କହିଲା ନିରଞ୍ଜନ, "ଯାଃ...ଆଜି ଆଉ ହବନି ।" ଫେରିଗଲା ଚପରାସି । ମନେ ପଡ଼ିଲା ଅଞ୍ଜଳିର ଗର୍ଭାଳସ ରୂପ, ଜ୍ୟେଷ୍ଠ ପୁଅ ଅରବିନ୍ଦର ଛନ ଛନ ମୁହଁ, ଆଉ ବାଳକ ଗୋବିନ୍ଦର ଚପଳ ଚେହେରା । ଉଠି ଠିଆ ହେଲା ନିରଞ୍ଜନ । ଘରକୁ ଯିବାକୁ ହେବ । ଘର ତାର ଖୁବ ସୁନ୍ଦର । ନବଗ୍ରହ ସ୍ତୋତ୍ର, ଦେବପୂଜାର ଗୁଞ୍ଜନରେ ଘର ତାର ଭରା, ଆଉ ଶିଶୁର କଳହାସ୍ୟରେ ମୁଖରିତ । ପୁଣି ତା ତଳେ ପ୍ରବହିତ ନୂଆଟୋକାଉ ରତ୍ନମଣିଙ୍କ ପବିତ୍ରତା, ଅଞ୍ଜଳିର ସାତ୍ତ୍ୱିକ ସାଧନା । ଅଫିସ ଛାଡ଼ ସେହି ଘର ଅଭିମୁଖରେ ନିରଞ୍ଜନ ଚାଲିଲା ।

ବାଟରେ ଦୌଡ଼ିଛି ନିଧିଆ । ନିରଞ୍ଜନକୁ ଦେଖି ଥକକା ହୋଇ ଠିଆ ହେଇପଡ଼ିଲା । ଯେମିତି ସେ ଖୁବ ହାଲିଆ ହେଇଯାଇଚି । କଥା ପରିବର୍ତ୍ତେ ପାଟିରୁ ତାର ଶ୍ୱାସ ବହିବାରେ ଲାଗିଚି । ନିରଞ୍ଜନ ମଧ ନିଧିଆକୁ ଏପରି ଅବସ୍ଥାରେ ଦେଖି ଆଶ୍ଚର୍ଯ୍ୟ ହୋଇଗଲା ।

"ଆରେ କଥା କଣ ? କାହିଁକି ଦୌଡ଼ୁଥିଲୁ ?"

ନିରଞ୍ଜନର ପ୍ରଶ୍ନ ଶୁଣି ନିଧିଆ କଥା କହିବାକୁ ଚେଷ୍ଟା କଲା; କିନ୍ତୁ ପାରି-ଲାନି । ପୁଣି ନିଶ୍ୱାସ ଛାଡ଼ିବାକୁ ଲାଗିଲା । ନିରଞ୍ଜନ ଆହୁରି ଆଶ୍ଚର୍ଯ୍ୟ ହେଲା । ମା,ଝିଅ ନାତି ବେଶ୍ ଭଲରେ ତ ଚଳୁଥିଲେ । ହଠାତ୍ କଣ ଏମିତି ଘଟିଲା ଯେ ନିଧିଆ ଇମିତି ହାଲିଆ ହେଇପଡ଼ିଚି । କାଲି ସଂଧ୍ୟାବେଳେ ତ ତା ପାଖରେ ଆସି ଚବଲା ବଜେଇ ଯାଇଚି । ସେତେବେଳେ କିଛି ତ କହୁ ନ ଥିଲା । କଣ ଘଟିଲା ସତେ ? ନିଜର ଯେତେ ଦୁଃଖ ଥିଲେ ବି ନିଧିଆର ଅବସ୍ଥା ଦେଖି ନିରଞ୍ଜନ ସେସବୁ ବିଲ୍ କୁଲ୍ ଭୁଲି-ଗଲା । ନିଧିଆର ଆହୁରି ପାଖକୁ ଘୁଞ୍ଚି ଆସି ସେ ଛିଡ଼ା ହେଲା ।

"ଆରେ କଥା କ', ମୁଁ ଅଛି, ଭୟ କଣ !"

ଜ୍ୟେଷ୍ଠ ଅଧା କମିଜ-ଖଣ୍ଡକର ପୁଳାଏ ଭିଜିଗଲାଣି ଝାଳରେ । ପିନ୍ଧାକାନିରୁ ମେଞ୍ଚାଏ ଧରି ମୁହଁରୁ ଝାଳ ପୋଛିଲା ନିଧିଆ । ଦମ୍ ରୋକି ଛଳ ଛଳ ଆଖିରେ କହିଲା, "ବାବୁ ପୁଲିଶ୍..."

"ଆରେ ପୁଲିଶ୍ କ'ଣ ନିଧି, ତୁ କଣ କୋଉଠି କିଛି ଚୋରି କରିଚୁ ?" ନିଧିଆ ମୁହଁକୁ ବଲବଲ କରି ଅନେଇଲା ନିରଞ୍ଜନ ।

"ବାବୁ ସେଇ ବୁଢ଼ା...ସେଇ ହରିବୋଲଆ ବୁଢ଼ା...ପୁଲିଶ୍ ଆମ ଘର ଘେରି ରହିଚନ୍ତି ବାବୁ ! ବେଗି ଚାଲ...ଆମକୁ ରକ୍ଷା କର...।" ଏତିକ କହିଁ ନିଧିଆ ପୁଣି ଜୋରରେ ନିଶ୍ୱାସ ଛାଡ଼ିବାକୁ ଲାଗିଲା ।

କିନ୍ତୁ ନିରଞ୍ଜନ ଏସବୁରୁ କିଛି ବୁଝି ପାରିଲାନି । ତେବେ ନିଧିଆ ଚୋରି-ହାରି କିଛି କରିନି । ନିଧିଆ କାନ୍ଧରେ ହାତ ପକେଇ ତାକୁ ସାହସ ଦେବାକୁ ନିର-ଞ୍ଜନ ଚେଷ୍ଟା କରି କହିଲା, "କଣ ଘଟିଚି ସବୁ କଥା ଖୋଲି କ' ।"

ନିଧିଆ ଗୋଟି ଗୋଟି କରି କହିଲା, "ମୁଁ ତୁମକୁ ସେ କଥା ଲୁଚେଇଥିଲି ବାବୁ, ହରିବୋଲିଆ ବୁଢ଼ା କୋଉ ଦିନୁ ଆଈକୁ ସଙ୍ଗ କରି ଆମ ପଡ଼ାରେ ଚୋରା ଗଞ୍ଜେଇ କାରବାର ଚଳେଇ ଆସୁ ଥିଲା । ଆଈ ତା ନିଜ ଟଙ୍କାକୁ ଯାଇ ବେଳେବେଳେ କାରବାର କରି ଆସୁଥିଲା । କାଲିଠୁଁ ହରିବୋଲିଆ ବଡ଼ା ଧରା ହେଇଗଲାଣି । ତାଠୁଁ ଖବର ପାଇ କରି ନା କଣ କେତେ ପୁଲିସ ଆସି ଆମ ଘର ଘେରିଗଲେଣି । ତମେ ଚଞ୍ଚଳ ଚାଲ, ନଇଲେ ଆଈକୁ ବାନ୍ଧି ନେଇଯିବେ..."

ଏସବୁ କଥା ଶୁଣି ନିରଞ୍ଜନ ଅବାକ୍ ହୋଇଗଲା । ଏତେ କଥା ଘଟିଗଲାଣି ଯା ଭିତରେ । ଚୋରା ଗଞ୍ଜେଇ ଅଫିମ କାରବାର ଯୋଗୁ ବୁଢ଼ୀ ପୁଲିଶ୍ ହାତରେ ପଡ଼ିଛି । ପୁଲିଶ୍ କେଶ୍ । ସେ ଯାଇ ସେଠି କଣ କରିବ ? ନା...ଯିବନି... । 'ଯାଉ, ବୁଢ଼ୀ ବନ୍ଦୀ ହେଇ ଯାଉ, କିଏ ଆଉ କଣ କରିବ !' ଏ କଥା କହିଦେଲା ପରେ ସେ ନିଧିଆ ମୁହଁକୁ ଚାହିଁଲା । ଭାବୀ ପ୍ରତିଭାବାନର ବିକାଶ ଘଟୁଛି ଏଇ ନିଧିଆ ଭିତରେ । ଆଗର ନିଧିଆ ଏବେ ତେର ବଦଳିଯାଇଛି । ସେହି ଜୀର୍ଣ୍ଣ ଶୀର୍ଣ୍ଣ ଚେହେରା ଏହି ଦୁ'ବର୍ଷ ଭିତରେ ତା ଦେହରୁ ପୂରାପୂରି ଲିଭିଯାଇଛି, କେବଳ ସେଇ ବୁଢ଼ୀ ଯୋଗୁ । ତିନି ପ୍ରାଣୀ କୁଟୁମ୍ବକୁ କଠିକ ସହରରେ ସମ୍ଭାଳିଛି ସେଇ ବୁଢ଼ୀ । ନିରଞ୍ଜନ ଉପରୁ ସେ କେତେ ଦାୟିତ୍ୱ ଉଠେଇ ନେଇଛି । ନିରଞ୍ଜନର କଥା ଶୁଣି ନିଧିଆର ମୁହଁ ଥନ ଥନ ହେଇ ଆଖିରେ ହତାଶା ଫୁଟିଉଠିଛି । ସେସବୁ ଲକ୍ଷ୍ୟ କଲା ନିରଞ୍ଜନ । ଆଉ କିଛି କଥା ନ କହି ଗୋଟାଏ ରିକ୍ସା ଡାକି ଉଠିପଡ଼ିଲା । ପାଖରେ ବସିଲା ନିଧିଆ ।

ଯୋଗ ଖୁବ୍ ଭଲ । ବସ୍ତିଆ ଘର ପାଖରେ ପହଞ୍ଚିଲା ପରେ ନିରଞ୍ଜନ ଜଣେ ପୁରୁଣା ବନ୍ଧୁର ଭେଟ ପାଇଲା । ପୁଲିଶ ଅଫିସର ରୂପେ ସେ ତଦନ୍ତ ଦାୟିତ୍ୱରେ ଆସିଛି । ନିରଞ୍ଜନ ତାଙ୍କଠାରୁ ବୁଝିଲା ବୁଢ଼ୀ ବିରୁଦ୍ଧରେ ସେପରି ବିଶେଷ ଅଭିଯୋଗ ନାହିଁ । ଚୋରା କାରବାର ସାବ୍ୟସ୍ତ ହେଲା ପରେ ଯାହା କିଛି ହେବ । ପ୍ରଧାନ କଥା, ଚୋରାମାଲ ଘରୁ ମିଳିବା ଉପରେ ସବୁ ପ୍ରମାଣ ପ୍ରାୟ ନିର୍ଭର କରୁଛି । ତା ପରେ ସାକ୍ଷୀ ଗୁହା କଥା । ପଡ଼ାର ଲୋକେ ସେଥିପାଇଁ କେହି ହୁଏତ ବାହାରିଥାନ୍ତେ, କିନ୍ତୁ ନିରଞ୍ଜନ ଦୃଢ଼ ହେଇ ଠିଆ ହେଲା ଆଗରେ । ତାପରେ ଘର ଖାନତଲାସ ଚାଲିଲା । ବୁଢ଼ୀ ବହୁତ ଆଗରୁ ହାତ ସଫେଇ କରିସାରିଛି । ସେଥିଲାଗି ଚୋରା ଜିନିଷର କୌଣସି ସନ୍ଧାନ ମଧ୍ୟ ମିଳିଲାନି । କୂଅ ଭିତରେ ପାଣିରେ ସେ ପର୍ଯ୍ୟନ୍ତ ଫୁଟିଫୁଟି ଉଠୁଛି । ଯେଉଁ ଚୋଟ ଟିଣ ବାକ୍ସଟି କାନ ତଳେ ଧରି ବୁଢ଼ୀ ପାଣି କାଢ଼ିବା ଲାଗି କୂଅମୂଳକୁ ଯାଇଥିଲା, ତା ଆଉ କେଉଁଠି ଥିବାର ଦେଖାଗଲାନି ।

"କୂଅରୁ କଢ଼େଇବ ନୋଟା..."

ରାସ୍ତାର ଛକ ମୁଣ୍ଡରେ ଡାକ ଡାକ ଯାଉଛି କୂଅବୁଡ଼ାଳୀ । ବୁଢ଼ୀର ଛାତିରୁ ଝୁଲିକାଏ ରକତ ଯେମିତି ଖସିପଡ଼ିଲା । କୁଆଡ଼େ ଥିଲା ଯୋଗଣୀଖିଆ...ପୁଲିସ ବାବୁ ସାଙ୍ଗରେ ନିରଞ୍ଜନ ବାବୁ ବେଶ୍ ଗପ ଜମେଇଚନ୍ତି । ମାଲେ, ଏ ନାଲିପଗଡ଼ିଆଗୁଡ଼ା କେହି ତା ଡାକ ଶୁଣିବେନି । ପୁଣି ପାଞ୍ଚ ମିନିଟ୍ ପରେ କୂଅବୁଡ଼ାଳୀର ଡାକ ଶୁଭିଲା ଦୂରରେ । ବୁଢ଼ୀ ଗୋଟାଏ ଦୀର୍ଘନିଶ୍ୱାସ ଛାଡ଼ିଲା ।

"ତା' ହେଲେ ଏ ଫ୍ଲେଟ ପରିବାରଟି ତୋର ଆଶ୍ରିତ ନା ?" ପୁଲିସ୍ ଅଫିସର ପଚାରିଲେ ନିରଞ୍ଜନକୁ । ସେ ଏହା ଭିତରେ ସବୁ କହିସାରିଛି । ବନ୍ଧୁ ପୁଲିସର ପ୍ରଶ୍ନ ଶୁଣି କେବଳ ହସରେ ସମ୍ମତି ଜଣେଇ ଦେଲା ।

ସିଗାରେଟ୍ କେଶ୍ ଖୋଲି ବନ୍ଧୁକୁ ଗୋଟିଏ ବଢ଼େଇଦେଲା ନିରଞ୍ଜନ ।

"ହଁ, କ'ଣ ଧନଞ୍ଜୟ କଥା କହୁଥିଲୁ ?" ମୁହଁରୁ ସିଗାରେଟ୍‌ର ଧୂଆଁ ଉଡ଼େଇ ପ୍ରଶ୍ନ କଲେ ପୁଲିସ୍ ବନ୍ଧୁ ।

ହଁ, ପଢ଼ିଲାବେଳେ ଧନଞ୍ଜୟର ଘନିଷ୍ଠ ବନ୍ଧୁ ଥିଲା ଏଇ ବସନ୍ତ । ନିରଞ୍ଜନ ହସି ହସି କହିଲା—"ଧନଞ୍ଜୟ ଏବେ ଜଣେ ମହିଳା ଅଧ୍ୟାପକଙ୍କୁ ବାହା କଲା । ଆଉ ଧନଞ୍ଜୟର ଲେଖା ତୁ ପଢ଼ିଚୁ ? ବଡ଼ ଚମତ୍କାର ଲେଖୁଚି ଆଜିକାଲି । କିନ୍ତୁ ସେମିତି ସେମିତି ଛତର ଭଳି ବୁଲୁଥିଲା । ବା' ହେଇ ତା'ର କ'ଣ ହେଇଚି କେଜାଣି···ଖଣ୍ଡେ ନିମନ୍ତ୍ରଣ ପତ୍ର ପଠେଇଥିଲା···ମୁଁ ଆଉ ଯାଇପାରିନି···"

ପୁଲିସ ବନ୍ଧୁ ବସନ୍ତ ହସି ହସି କହିଲା – "ଦୂର ମଫସଲକୁ ଦୌଡ଼ିଯିବା ବେଳୁ ବି ହେଇଥାନ୍ତା···ମୁଁ ସବୁ ଖବର ରଖିଚି···ବା'ଘର ତ କଟକରେ ହେଲା··· ଆଉ ସେହି ଦିନଠୁ ଧନଞ୍ଜୟ ଏଇ କଟକରେ ରହୁଚି, ନିଜ ସ୍ତ୍ରୀର ବସାରେ ।"

ଏ ବିଷୟରେ ନିରଞ୍ଜନ ଆଉ କିଛି ଉଠେଇବା ଉଚିତ ମନେ କଲାନି । ଗଲାବେଳେ ପୁଲିସ ବନ୍ଧୁ କହିଗଲେ, "ବୁଢ଼ୀକି ଟିକେ ସାବଧାନ ହେଇ ଚଳିବାକୁ କହିବୁ ରେ···!"

ସମସ୍ତେ ଚାଲିଗଲା ପରେ ଘର ଭିତରକୁ ନିରଞ୍ଜନ ପଶିଗଲା । ଦଧିଆର ଘର ଭିତରକୁ ଯିବା ଏହା ତା ପକ୍ଷରେ ସର୍ବପ୍ରଥମ ଘଟଣା । ଅଗଣା ଭିତରେ ନିରଞ୍ଜନର ଗୋଡ଼ ତଳେ ବୁଢ଼ୀ ଲମ୍ବିଯାଇ ହେଇ ପଡ଼ିଗଲା । ଘର ଭିତରେ କାନ୍ଦିଉଠିଲା ଦଧିଆର ସ୍ତ୍ରୀ । ଆଗଣାର ଗୋଟାଏ କଣରେ ଗାଈ ବାଛୁରି କେତୋଟି । ସେମାନେ ଯେମିତି ସଶଙ୍କ ଆଖିରେ ଅନେଇ ରହିଲେ ନିରଞ୍ଜନକୁ । ନିଧିଆ ଲୁହ ପୋଛୁବାରେ ଲାଗିଛି । ଏପରି ଅବସ୍ଥାରେ କାହାକୁ ଆଉ କ'ଣ କହିବ ? ନିରଞ୍ଜନ କିଛି ଭାବିପାରିଲାନି । ଶେଷକୁ କଡ଼ା କଥାରେ ଗାଳିଦେବା ପରିବର୍ତ୍ତେ ସମସ୍ତଙ୍କୁ ସାନ୍ତ୍ୱନାର ବାଣୀ ଶୁଣେଇ ନିରଞ୍ଜନ ଫେରିଲା ।

॥ ୧୭ ॥

ସେହି ଦିନର ରାତି ।

ଅଞ୍ଜଳି ଅନେକ ବେଳଯାଏ ଚେଇଁ ଶେଷରେ ଶୋଇପଡ଼ିଚି । ଟିକିଏ ଦୂରକୁ ଫ୍ଲେଟ ସେଯଟି ଉପରେ ଶୋଇଚି ଅରବିନ୍ଦ । ସମସ୍ତେ ଘରର ଚଟାଣରେ ଶୋଇଚନ୍ତି । ମୁଣ୍ଡ ଉପର ଛାତର କଳ ପଙ୍ଖାଟା ଖୁବ୍ ଜୋରରେ ଚାଲିଲାଣି, ସେଥିଲାଗି

ଶେଯ଼ର ଉପର ପଟରେ ଟେବୁଲ ପଙ୍ଖା ଘୁର୍ ଘୁର୍ ହୋଇ ବୁଲୁଚି । ବସନ୍ତ ସମୟ ଶେଷ ହୋଇ ଟିକେ ଟିକେ ଗରମ ପଡ଼ଗଲାଣି । ଶୁକ୍ଳ ପକ୍ଷ । ମାଧବୀ ନିଶାରେ ଆକାଶଟା ଖଣ୍ଡ ବୋଳାଇ ଭଲ ଦେଖାଯାଉଚି । ପଡ଼ଶା ବିପାଠୀ ଘର ଫାଟକରେ ମାଳତୀ ଫୁଲ ଲେଟଣୀ ଭାଙ୍ଗୁଚି । ପବନରେ ବେଳେ ବେଳେ ଭାସିଆସୁଚି ତାର ବାସ୍ନା ।

ନିରଞ୍ଜନ ସେ ପର୍ଯ୍ୟନ୍ତ ଶୋଇନି । ଅନେକ ବେଳୁ ସେ ଅନେକ ବିଷୟ ଚିନ୍ତା କରିବାରେ ଲାଗିଚି । ଅଞ୍ଜଳି ଚେଇଁଥିଲା ବେଳେ ଦୁହେଁ ମିଶି ଅନେକ ବିଷୟରେ ଗପ କରିଛନ୍ତି । ପୁଣି ନୂତନ ଅତିଥିର ଆଗମନ ,ହେବ···ହସିଉଠିବ ସଂସାର···ସଂସାର ବଢ଼ିବାରେ ଲାଗିଚି···ତାର ସୀମା ହୁଏତ ଆଜ ଖୁବ୍ ଦୂରରେ··· ବପୁସରେ ରହିଚି ଯଥେଷ୍ଟ ସତେଜତା···ଗୋବିନ୍ଦ ଆଉ ଅରବିନ୍ଦ ମଣିଷ ହେବେ··· ହୁଁ· ଝିଅ ହବ ନା ପୁଅ ହବ ଏଥର···ଲଜରେ ମୁହଁ ଢାଙ୍କିଦେଲା ଅଞ୍ଜଳି ।

ଅଞ୍ଜଳିର ମନେ ପଡ଼ିଲା ବିବାହ ପରେ ପାଞ୍ଚ ବର୍ଷ କଟିଥିଲା କେବଳ ପ୍ରଣୟର ଦୋଳାରେ ଝୁଲି ଝୁଲି । କିନ୍ତୁ ତାର ଭିତରେ ତା ସାଙ୍ଗର ଅନ୍ୟ ବୋହୂଙ୍କର ସନ୍ତାନ ହୋଇ ସାରିଥିଲା । କିନ୍ତୁ ପାଞ୍ଚବର୍ଷ ପରେ ସେଥିପାଇଁ ଆଲୋଡ଼ନ ଉଠିଲା ତା ମନରେ । ତାପରେ ଦୀର୍ଘ ଦୁଇବର୍ଷ କଟିଗଲା । ତାପରେ ଗର୍ଭକୁ ତାର ପବିତ୍ର ଓ ସାର୍ଥକ କରି ଆସିଲା ଅରବିନ୍ଦ । ସେତେବେଳକୁ ଅରବିନ୍ଦ ଶୋଇପଡ଼ିଚି, ଆନନ୍ଦରେ ଗୋଟିଏ ଚୁମା ଆଙ୍କି ହୋଇଲା ଅଞ୍ଜଳି ତା ମୁହଁରେ । ଖୁବ ପାଖକୁ ଲାଗିଆସିଲା ନିରଞ୍ଜନ ଯେମିତି ଅଞ୍ଜଳି ଦେହରେ ଘୃପି ହୋଇ ସେ ବିଲୀନ କରିଦିଅନ୍ତା ନିଜକୁ । କିନ୍ତୁ ସେ ବିଗରେ ସେ ଆଉ ଆଗେଇ ପାରିଲାନି । କେବଳ ଚାହିଁରହିଲା ଅଞ୍ଜଳିର ଜନନୀ ମୂର୍ତ୍ତିକୁ ···ପ୍ରଜନନର ଆରାଧନାରେ ସେ ମୂର୍ତ୍ତିରେ ଜାଗିଉଠିଚି ଏକ ଅପୂର୍ବ ପୂର୍ଣ୍ଣତା । ଥରେ ହାତ ବୁଲେଇ ଆଣିଲା ତା ଦେହରେ । ତାପରେ ପୁଣି ଚାଲିଲା କଳ୍ପନାମୁଖର ଆଲୋଚନା । ନିଜର ପୂର୍ଣ୍ଣତା ଭିତରେ ସନ୍ତୋଷ ଲାଭ କରୁ କରୁ ଅଞ୍ଜଳି ଶୋଇପଡ଼ିଲା ନିଦରେ ।

କିନ୍ତୁ ନିରଞ୍ଜନ ଚେଇଁଚି । ଆଖିରେ ଟିକେ ହେଲେ ନିଦ ନାହିଁ । ଟିକ୍ ଟିକ୍ ହୋଇ କାନ୍ଥ ଘଡ଼ିରେ ସମୟର ପଦକ୍ଷେପ ଆଗେଇ ଯାଉଚି । ସେହିଭଳି ଆଗେଇ ଚାଲିଚି ନିରଞ୍ଜନର ଭାବନା । କେତେ କଥା ସେ ଏ ପର୍ଯ୍ୟନ୍ତ କହିନି ଅଞ୍ଜଳିକି । ଆଜ ପୁଣି ଘଟିଯାଇଚି ଅନେକ କଥା । କିନ୍ତୁ ସେସବୁ ଅଞ୍ଜଳିକି କହିବାକୁ ଆଉ ଦରକାର ପଡୁନି । ଅଞ୍ଜଳି ଚାଲିଯାଉଚି ଯେମିତି ଖୁବ୍ ଦୂରକୁ । ସନ୍ତାନବତୀ ହେବା ଭିତରେ ନାରୀର ଯେଉଁ ସାର୍ଥକତା ସେ ଲଭ କରୁଚି, ତା ଭିତରେ ସେ ଭୁଲିଯାଉଚି ସ୍ୱାମୀର ସନ୍ତୋଷବିଧାନ କଥା । ଏକ ଅଭୁକ୍ତ ଆଉ ପିଆସୀ ଆତ୍ମା ଯେ ଘୂରିବୁଲୁଚି ତାର ସ୍ୱାମୀ ଭିତରେ, ସେ କଥା ଅଞ୍ଜଳି ହୁଏତ ଆଉ ଭାବୁନି । ସ୍ୱେମହନର ଯୌନଯୌନିକତା ସୃଷ୍ଟିର ଅଭିନବ ପ୍ରକାଶ ଘଟିବା ଛଡ଼ା ଆଉ କିଛି ହେଉନି । ବିରାଟ ପାଶବିକତା ଭିତରେ କେବଳ ଆବଦ୍ଧ ରହିଚି ସର୍ଜନାର ସ୍ୱପ୍ନ—ତଥାପି ତୃଷିତ ଆତ୍ମାର ଶବ୍ଦ-

ତାର । ସେସବୁ କିନ୍ତୁ ପଡ଼ିଥିବ ଅଞ୍ଜଳି ପାଖରେ । ପୁଣି ହୁଏତ ବର୍ଷକ ପରେ ଫେରିବ ତାର ଚେତନା । ଆଉ ସେଥିଲାଗି ଦୀର୍ଘ ସମୟ ଧରି ପୁରୁଷ ମଧ୍ୟ ଗତି କରିବ-କେବଳ ନିର୍ବିକାର ସାଧନା ଭିତରେ । ହୁଁ…ଏ ପୁରୁଷଟା ତାହେଲେ ଗୋଟାଏ କଣ ଯନ୍ତ୍ର… ସବୁ କାମ, ସବୁ ଚିନ୍ତା କରି ମଧ୍ୟ ଶେଷକୁ ବିରାଟ ନିଷ୍କ୍ରିୟତା ଭିତରେ ପଡ଼ି ରହିବ ! ଅତି ଅସହ୍ୟ ଏଇ ବନ୍ଧନ । ବିନା ଦାୟିତ୍ୱରେ ଯେପରି ଏ ଗୋଟାଏ ସାଧନା । ଅଞ୍ଜଳିଠାରୁ ଦୂରକୁ ଯାଇ ପୁଣି କଣ ଆସି ମିଶି ହବନି । ସନ୍ତାନଲାଭର ଉପାଦାନ ତାର ଦରକାର…ସେଥିପାଇଁ ହିଁ ଚାକିରିର ବ୍ୟବସ୍ଥା କାହିଁକି, କିନ୍ତୁ କେଉଁ ଦୂରକୁ ସେ ଯିବ…ସରସୀ…ଗୋଟାଏ ଉପନ୍ୟାସର ନାୟିକା, ଶେଷକୁ ବାସ୍ତବ ରକ୍ତମାଂସର ନାରୀ ହେଇଉଠିଲି । ଆଉ କଟକ ଗଳି ରାସ୍ତାର ଯାତ୍ରୀ ଶେଷକୁ ତାର ଅଧିକାରୀ ହେଇ ବସିଲି । ଓଃ…ପବନରେ ଆଉ ବାସ୍ନା ଭାସିଆସୁଚି କାହିଁକି… କଣ ଏଇ କାଗଜର ଦେବ-ଦେବୀଗୁଡ଼ାଙ୍କୁ ଭ୍ରଷ୍ଟ କରିବାକୁ…ସେସବୁ ପୁଣି ହେଇଚି ଅଞ୍ଜଳିର ଆଶ୍ରୟ ଆଉ ମୁଁ ହେଇଚି ବାଧା… ।

ଉତ୍ତେଜନାରେ ବୁଲିପଡ଼ିଲା ନିରଞ୍ଜନ । ଦେହ ତାର ଛୁଇଁ ଖାଇଗଲା ଅଞ୍ଜଳିର ଦେହରେ । ସେଥିରେ ଅଞ୍ଜଳିର ନିଦ ପାତଳ ହେଇଆସିଲା…ପୁଅ କାନ୍ଦିଲା କି ଆଉ, ସେଥିପାଇଁ ତାକୁ ଡାକୁଚନ୍ତି ସ୍ୱାମୀ । କାନ ପାରିଲା ଅଞ୍ଜଳି । ନିରଞ୍ଜନ ଗୋଟାଏ ଦୀର୍ଘଶ୍ୱାସ ଛାଡ଼ିଲା । ଅଞ୍ଜଳି ଅନେଇଲା, ଉଠି ଠିଆହେଲା ଶେଷକୁ । କାନ୍ଥ କରକୁ ଯାଇ ସ୍ୱିଚ୍ ଟିପି ଆଲୁଅ ଜଳେଇଦେଲା । ତକିଆରେ ମୁହଁ ମାଡ଼ିଦେଲା ନିରଞ୍ଜନ । ନା, ପୁଅ ମଧ୍ୟ ଉଠିନି । ବାୟୁମଣ୍ଡଳ ଥଣ୍ଡା ପଡ଼ି ଆସିଲାଣି । ପବନରେ ଶୀତଳ ପରଶ । ସ୍ୱିଚ ଟିପି ଅଞ୍ଜଳି ପଙ୍ଖା ବନ୍ଦ କରିଦେଲା । ଆଲୁଅ ସେମିତି ଜଳୁଚି । ନିରଞ୍ଜନ ତକିଆରେ ମୁହଁ ମାଡ଼ି ରହିବା ଭିତରେ ଅନୁଭବ କଲା, ମୁଣ୍ଡ ପାଖରେ ଅଞ୍ଜଳିର ପରଶ ଲାଗି ଲାଗି ଆସୁଚି ।

"ନିଦ ହଉନି…?"

ଅଞ୍ଜଳି ଜାଣେ, ତାଙ୍କୁ ରାତିରେ ଏମିତି ବେଳେବେଳେ ନିଦ ହୁଏନା… ପୁଣି ହୁଏ…ନିଘୋଡ଼ ନିଦରେ ଶୋଇପଡ଼ନ୍ତି, ରାତି ପାହିବା ଖବର ପଡ଼ଗଲେ ବି ଢେନେ ଢେନେ ଉଠନ୍ତିନି ।

ନିରଞ୍ଜନ କିଛି କହିଲାନି । ପୁଣି କର ଲେଉଟେଇଲା । ହୁଏତ ଭାଷା ଏଠି ଦରକାର ନାହିଁ, ସେଥିଲାଗି ନିରଞ୍ଜନର ଏ ନୀରବତା । ହୁଏତ ଅଞ୍ଜଳି ସେସବୁ ସଙ୍କେତର ଅର୍ଥ ବୁଝୁଚି । କିନ୍ତୁ ସେ ମଧ୍ୟ ନୀରବ । ନିରଞ୍ଜନର ମୁଣ୍ଡର ବାଳ ଭିତରେ ଆଙ୍ଗୁଠି ପୂରେଇ ଅଞ୍ଜଳି ସାଉଁଳେଇବାକୁ ଲାଗିଲା ।

କେତେବେଳକେ ନିରଞ୍ଜନ ଅନୁଭବ କଲା ଦୁଇଟୋପା ଜଳବିନ୍ଦୁ ପଡ଼ିଲା ତା'ର ଉପରେ । ନିରଞ୍ଜନ ଚମକି ପଡ଼ି ହାତ ଉଠେଇ ଅଞ୍ଜଳିର ମୁହଁ ଅଣ୍ଡାଳିଲା । ଅଶ୍ରୁ । ଅଞ୍ଜଳି ଆଖିରେ ଅଶ୍ରୁ ପ୍ରତି ସବୁଢେନେ ନିରଞ୍ଜନ ଭିତରେ ପ୍ରବଳ ଅସହିଷ୍ଣୁତା ରହିଚି । ଯେମିତି ଅଞ୍ଜଳି ତା'ଘରକୁ ଅଶ୍ରୁ ଢାଳିବାକୁ ଆସିନି, ଆଉ ତାର ନିରୋଧ

ପାଇଁ ସବୁ ଚେଷ୍ଟା ସେ କରିବ । ଉଠିପଡ଼ି ନିଜର ପାପୁଲିରେ ନିରଞ୍ଜନ ଅଞ୍ଜଳି ମୁହଁରୁ ଅଶ୍ରୁ ପୋଛିବାକୁ ଲଗିଲା । କିନ୍ତୁ ଅଞ୍ଜଳିର ଅଶ୍ରୁ ଯେମିତି ବାଧା ମାନିବାକୁ ଚାହେଁନା । ନିରଂଜନ ଏ ପର୍ଯ୍ୟନ୍ତ କୌଣସି କଥା କହିନି, କିନ୍ତୁ ଏବେ ସେ କଣ କହିବ ତା ମଧ ଭାବିପାରିଲାନି । ଆଗରେ ଅଂଜଳି, ଘର ଭିତରେ ଆଲୁଅ ବାଝି ହୋଇ ପଡ଼ିଚି । ପାଖରେ ମଶାରି ତଳେ ଶୋଇଚି ନବଜାତ ପୁତ୍ର ଅରବିନ୍ଦ । ଅଂଜଳିର ଜଠର ଭିତରେ ଆଉ ଜଣେ ଆଗନ୍ତୁକର ପ୍ରସ୍ତୁତି । ଏସବୁ ଅଂଜଳିର କୀର୍ତ୍ତି, ଆଉ ତ୍ୟାଗର ଫଳ । ଜଗତକୁ ଜନସଂଖ୍ୟାରେ ଭରି ଦେଇ ଗତିମୁଖର କରୁଚି ଏଇ ନାରୀ । ନିରଂଜନର ଶ୍ରେଷ୍ଠ ଘରକୁ ଅପୂର୍ବ ମହିମାରେ ମଣ୍ଡିତ କରିଚି ସେହି ନାରୀ । ସେହି ନାରୀ ପୁଣି ବୈରୁଦ୍ୟମାନା ହୋଇ ବସିଚି ତାର ଆଗରେ । ସତେ ସେ କଣ ଏଡ଼େ ନିଷ୍ଠୁର, ଏ ସବୁର ଗୁରୁତ୍ୱ ସେ କିଛି ଉପଲବ୍ଧି କରୁନି ? ଧିକ୍କାର ଆସିଲା ନିରଞ୍ଜନର ମନରେ ।

ସେ ପାଖକୁ ଘୁଞ୍ଚିଯାଇ ଅଞ୍ଜଳିକି ଟେକିଆଣିଲା ନିଜର କୋଳକୁ । ସେଥିପାଇଁ ଟିକେ ଆୟାସ କରିବାକୁ ପଡ଼ିଲା, ଆଉ ଅଞ୍ଜଳି ମଧ ସେଥିରେ ସହଯୋଗ ପ୍ରକାଶ କଲା । ବଡ଼ ସୁନ୍ଦର ଦିଶୁଚି ଅଞ୍ଜଳି । ଏମିତି ସେ ପୂର୍ବେ ତାକୁ କେତେ କେତେ ଥର କୋଳରେ ବସେଇଚି । ସେତେବେଳେ ଦୁନିଆର ଆଉ ସବୁ କଥା ଭୁଲିଯାଏ ନିରଞ୍ଜନ । କିନ୍ତୁ ଆଜି ଯେମିତି ତା' ଆଉ ହେବନି । ଯେମିତି ଅଞ୍ଜଳିର ଦେହଟା ଆଜି ଗୋଟିଏ ପୂଜାର୍ଚ୍ଚନାର ପୁଷ୍ପଥାଳି । ତାକୁ ଧରି ହେବ, ମାତ୍ର ଆଘାତ କରି ହେବନି । ଯେମିତି ଏକ ନୈସର୍ଗିକ ନିଷେଧ-ଆଦେଶର ଘୋଷଣା ।

ଲୁଗା କାନିରେ ଅଂଜଳିର ମୁହଁକୁ ଭଲକରି ପୋଛିଦେଲା ନିରଂଜନ । ଅଶ୍ରୁଧାରା କ୍ରମେ କ୍ଷୀଣତର ହୋଇଆସିଛି !

"ଅନେକ ଦିନ ତଳେ ଗୋଟିଏ ରାତିରେ ତମେ ଏମିତି ଅଶ୍ରୁ ଢାଳିଥିଲ··· ଆଉ ମୁଁ ଗୋଟିଏ ଉପନ୍ୟାସ ପଢ଼ି ସମାପ୍ତ କାଟିଥିଲି ସେଦିନ ରାତିରେ···ତମର ମନେ ଅଛି ଅଞ୍ଜଳି ?"

ଅନ୍ୟ କିଛି ଉପାୟ ନ ପାଇ କଥା ଆରମ୍ଭ କରିବାକୁ ନିରଞ୍ଜନ ଚେଷ୍ଟା କଲା । ଅଞ୍ଜଳି କିଛିକ୍ଷଣ ପରେ ମୁଣ୍ଡ ହଲାଇ ସମ୍ମତି ଦେଲା···ହଁ ତା'ର ମନେ ଅଛି । କିନ୍ତୁ ପାଟି ଖୋଲି ସେ କିଛି କଥା କହିପାରିଲାନି । ଯେମିତି ନିବିଡ଼ ସହଯୋଗ ଭିତରେ ବାନ୍ଧି ହୋଇ ଦୁହେଁ ଦୂରକୁ ଦୂରକୁ ଚାଲି ଯାଉଛନ୍ତି । ଆଉ ଏ କଥାର ଆଶ୍ରୟ ଗୋଟାଏ ଛଳନା । ସବୁ ବୁଝୁଥିଲେ ବି ଅଞ୍ଜଳି ନିରୁପାୟ ହୋଇ ସ୍ୱାମୀର କଥା ଶୁଣିବାକୁ ଅପେକ୍ଷା କରି ରହିଲା । ହଁ ସେ ପଢ଼ୁଥିଲେ ଗୋଟିଏ ଉପନ୍ୟାସ···ସେଥିରେ ଥିଲା ସରସୀ ଅପାର କଥା···ତାର ସ୍ୱାମୀ ତାକୁ ମାଡ଼ ମାରେ···କିନ୍ତୁ ସେଭଳି ଦୁର୍ଭାଗ୍ୟରୁ ସେ ଆଜି ମଧ ଖୁବ୍ ଦୂରରେ ରହିଚି···ହଁ ସେଦିନ ସେଇ ସରସୀ ଅପାର କଥା ଦୁହିଁଙ୍କର ଅପଡ଼ ଭାଙ୍ଗି ଦେଇଥିଲା···ଆଉ ଆଜି···ଆଜି ତ ଅପଡ଼ ନାହିଁ······ କିନ୍ତୁ ଗୋଟାଏ ଅବ୍ୟକ୍ତ ବିଷାଦ······ସେଥିରେ ସରସୀ ଅପାର କଥା ଆଉ କି ଉପଶମ ଆଣିବ···

ମୁହଁ ଖୋଲି କଥା କହିଲା ଅଞ୍ଜଳି, "ତମକୁ କାଟୁଥିବ···ମୁଁ ବିଛଣାରେ ବସୁଚି ।"

ଏତିକି କହିଦେଲା ପରେ ଅଞ୍ଜଳିର ମନେ ହେଲା, ଯେମିତି ସ୍ୱାମୀଙ୍କୁ ସେ କୋଳରେ ଧରି ବସନ୍ତା···ଗେଲି କରି ଆଜି ରାତିଟା ସେ ପୁହାଇ ଦିଅନ୍ତା···କିନ୍ତୁ ସେ କଥା ସେ କହିପାରିଲାନି···ଦେହର ଅବସ୍ଥା ମଧ୍ୟ ସେଥିପାଇଁ ଅନୁକୂଳ ନୁହେଁ । ନିଜେ ଦେହ ଖସେଇ ସ୍ୱାମୀଙ୍କ କୋଳରୁ ଖସିପଡ଼ିଲା ବିଛଣା ଉପରକୁ । ନିରଞ୍ଜନ ହସିଉଠିଲା କରି କରି ହେଇ—ଯେମିତି ଅଶ୍ୱସ୍ତିର ଅନୁଭୂତିକି ସେ ଘୋଡ଼େଇ ଦେବାକୁ ଚେଷ୍ଟା କଲା । ସତେ···କେତେ ଭାରି ହେଇଚି ଅଞ୍ଜଳିର ଦେହ··· ।

ଅଞ୍ଜଳି ମଧ୍ୟ ନିରଂଜନର ଅସୁବିଧା ଅନୁଭବ କରି ପାରିଥିଲା । ହସ ଭିତରୁ ତାର ଆଶ୍ୱସ୍ତି ମଧ୍ୟ ସେ ବୁଝିଛି । ନିରଂଜନର ହସକୁ ଦୃଢ ସମର୍ଥନ କରି ସେ ମଧ୍ୟ ହସିଉଠିଲା ।

ନିରଂଜନ ପୁଣି ବକ୍ତବ୍ୟ ଆରମ୍ଭ କଲା ।

"ସେହି ଉପନ୍ୟାସର ଦୁଃଖିନୀ ପ୍ରକୃତିରେ ତମରି ସରସୀ ଅପା । କିନ୍ତୁ ସେ ଆଉ ଦୁଃଖିନୀ ନୁହେଁ ।"

ଆଶ୍ଚର୍ଯ୍ୟତା ଭିତରେ ଆନନ୍ଦିତ ହେଇ ଅଂଜଳି ପଚାରି ବସିଲା, "ତା' ହେଲେ ତା ସ୍ୱାମୀ ଆଉ ତାକୁ ମାରୁନି ? ଦି'ଜଣଙ୍କ ଭିତରେ ଭଲ ପଡ଼ିଲାଣି ତା ହେଲେ ?"

ନିରଞ୍ଜନ ହସିଉଠି କହିଲା, "ଏଥର ତମର ସରସୀ ଅପା ସ୍ୱାମୀକି ମାଡ଼ ଦେଇଚି । ସେଥିରେ ସବୁ ଠିକ୍ ହୋଇଯାଇଚି ।"

ଅଞ୍ଜଳି ଆଉ କିଛି ପଚାରି ପାରିଲାନି । ସ୍ତ୍ରୀ ମାରିଚି ସ୍ୱାମୀକି···ନିଜର କଳ୍ପନା ଭିତରେ ଅଞ୍ଜଳି ଏ କଥାରି ଅବଧାରଣା କରି ପାରିଲାନି । ହଁ, କିଏ ଆଉ କରିବ···ଅତି ଦୁଃଖରେ ପଡ଼ି ସରସୀ ଅପା ଏ କଥା କରିଥିବ ସିନା··· ! କିନ୍ତୁ ମୁହଁରେ ଏ କଥା ପ୍ରକାଶ କଲାନି ଅଞ୍ଜଳି । ଯେମିତି ସମଗ୍ର ନାରୀସମାଜ ବିରୁଦ୍ଧରେ ପୁରୁଷର ଅଭିଯୋଗ ଆଗତ ହେଇଚି, ଆଉ ନାରୀମାନଙ୍କର ପ୍ରତିନିଧିରୂପେ ଅଞ୍ଜଳି ସେଥିରେ ମ୍ରିୟମାଣ ହେଇପଡ଼ିଚି । ପୁଣି ସେ ଅଭିଯୋଗ ଆଗତ କରିଛନ୍ତି ତାର ସ୍ୱାମୀ ।

କେତେବେଳେ ନିରଞ୍ଜନ ପୁଣି କହିଲା, "ସରସୀ ତମ ଭଳି ଜଣେ ଅବଳା ନୁହେଁ ଅଞ୍ଜଳି ! ଶିକ୍ଷା ସାଙ୍ଗକୁ ତାହାର ସାହସ ଆଉ ଦେହର ଶକ୍ତି ମଧ୍ୟ ରହିଛି । ସେଇ ଓକିଲ ସ୍ୱାମୀକି ଛାଡ଼ପତ୍ର ଦେଇ ସେ ଏହା ଭିତରେ ଆଉ ଜଣକୁ ବା' ହେଇଚି ।"

ଅଞ୍ଜଳି ଚମକି ଉଠିଲା । ଯେମିତି ଗୋଟାଏ ବିଛା କି ସାପ ଚଢ଼ିଗଲା ତା ଦେହରେ । ବଲ ବଲ କରି ଅନେଇଲା ନିରଂଜନର ମୁହଁକୁ । ଯେମିତି ତାର ଅପା ବିରୁଦ୍ଧରେ ଏ କୁତ୍ସିତ ଅଭିଯୋଗ ସେ ବରଦାସ୍ତ କରିପାରୁନି ।

• ନିରଞ୍ଜନ ପ୍ରଥମେ ହସି ଦେଇ ପରେ ଗମ୍ଭୀର ହୋଇ କହିଲା, "ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି କଥା ନାହିଁ ଅଞ୍ଜଳି ! ଏ କଥା ପ୍ରକୃତରେ ଘଟିଛି, ଆଉ ସେ କଥା ତମ ଅବଳା ସମାଜ ପକ୍ଷରେ ଅତି ଗର୍ବର ବିଷୟ । ଆଜି ନିଜର ଦୁଃଖକୁ ନିଭେଇଦେଇ ସରସୀ ଜୀବନର ଯୋଉ ଜୟ ଘୋଷଣା କରିଚି, ତାକୁ ଗୌରବର ବିଷୟ ମଧ୍ୟ କହିବାକୁ ହବ । ଏଥିପାଇଁ ସରକାର ଆଇନ କରିଚି । କିନ୍ତୁ ତାକୁ ତମର ସରସୀ ଅପା ହିଁ ପ୍ରଥମେ ଆମ ଭିତରୁ ନିଜ ଜୀବନରେ ଗ୍ରହଣ କରିନେଇଚି । ସରସୀକି ଏଥିପାଇଁ ଖୁବ୍ ଧନ୍ୟବାଦ ଦବାର କଥା । ଆମ ଘରକୁ ତାକୁ ଡାକି ଦିନେ ସମ୍ବର୍ଦ୍ଧନା ଦେଲେ ହୁଅନ୍ତାନି ଅଞ୍ଜଳି ?"

କାନ୍ଥର ଦେବଦେବୀ ଛବି ଆଲୁଅରେ ଜଳ ଜଳ ହୋଇ ଦିଶୁଛି । ସବୁ ଛବି ଉପରେ ଥରେ ଅଞ୍ଜଳି ଆଖି ବୁଲେଇନେଲା । ଯେମିତି କାନରେ ସେ ଯେଉଁ ପାପ କଥା ଶୁଣିଚି ଆଖିର ଦିବ୍ୟ ଦର୍ଶନରେ ସେସବୁ ଧୋଇଧାଇ ସଫା ହୋଇଯିବ । ଏ ଘରେ ପୁଣି ତାର ସମ୍ବର୍ଦ୍ଧନା ହେବ······ହଉ ସେ ତାର ଭଉଣୀ·········ହଉ ସେ କଲେଜର ମାଷ୍ଟ୍ରାଣୀ······ଛିଃ, ସ୍ୱାମୀକି ଛାଡ଼ି ଆଉ ଗୋଟାଏ ଲୋକକୁ ଧରି ସେ ଶୋଉଛି । ଘୃଣାରେ ଦେହମୁଣ୍ଡ ତାର ଝିମ୍ ଝିମ୍ ହେଇଉଠିଲା ।

"କିଏ ତାକୁ ବା' ହେଲା ପୁଣି ?" ହଠାତ୍ ଏ କଥା ଅଞ୍ଜଳି ପାଟିରୁ ବାହାରି ପଡ଼ିଲା ।

ନିରଞ୍ଜନ କହିଲା—"ସେ ମଧ୍ୟ ସେମିତି ଜଣେ ଉଦାର ଲୋକ । ତାକୁ ଆମ ଧନଂଜୟ ବା' ହେଇଚି । ଧନଞ୍ଜୟକୁ ତମେ ଜାଣିଥିବ ?"

"ସେଇ ତମରି ସାଙ୍ଗ ନା···ଆମ ଗୋବିନ୍ଦ ପାଇଁ ଥରେ ଯାହାକୁ ଟିଉସନ ମାଷ୍ଟ୍ର କରି ଆଣିଥିଲ ? ବାଳଗୁଡ଼ାକ ଛଇଳଙ୍କ ଭଳି···ଦେହରେ ଛିଣ୍ଡା ମଇଳା ଜାମା···ସେଇ ବା' ହେଲା ?"

ପ୍ରତିବାଦର ସ୍ୱର ଫୁଟିଉଠିଲା ନିରଞ୍ଜନର ଭାଷାରେ । ସେ କହିଉଠିଲା, "ତମେ ଧନଞ୍ଜୟକୁ ସେମିତି ବାଜେ ଲୋକ ବୋଲି ଭାବନା ଅଞ୍ଜଳି । ସେ ଜଣେ ଉଚ୍ଚ ଧରଣର ଲେଖକ । ହୁଏତ ଆମ ତମ ଭଳି ସାଧାରଣ ରୀତିନୀତିରେ ସେ ବିଶ୍ୱାସ କରେନା । କିନ୍ତୁ ତା ଭିତରେ ବିରାଟ ଲକ୍ଷ୍ୟ ରହିଚି, ଆଉ ସେ ଲକ୍ଷ୍ୟ ଭିତରେ ପୂରି ରହିଚି ସବୁ ମଣିଷଙ୍କ ପାଇଁ ସମାନ ସ୍ନେହ ମମତା । ସେଇ ଲକ୍ଷ୍ୟ ଭିତରେ ସେ ହୁଏତ ସରସୀର ପ୍ରସ୍ତାବକୁ ଗ୍ରହଣ କରି ତାକୁ ନିଜର ପତ୍ନୀରୂପେ ବରଣ କରିଚି ।"

"ଆଉ ସରସୀ ଅପାର ପୁଅ ଝିଅ କା' ପାଖରେ ରହିଲେ ?"

ହସିଉଠି ନିରଞ୍ଜନ କହିଲା, "କ'ଣ ତମେ ସେ ଉପନ୍ୟାସ ପଢ଼ି ଏକଥା କହୁଚ ନା ସତ କଥା କିଛି ଜାଣିଚ ? ବାସ୍ତବିକ ସରସୀର ଆଦୌ ପୁଅ ଝିଅ ନାହାନ୍ତି । ନ ହେଲେ ଆଜି ସେ ନାରୀତ୍ୱର ବିଜୟ ଘୋଷଣା କରିପାରି ନ ଥାନ୍ତା···"

ଏ କଥାରେ ଅଞ୍ଜଳି ଆହତ ହେଲା ଯେମିତି । କିନ୍ତୁ ସ୍ୱାମୀକି ସେ ବିଷୟରେ କିଛି କହିଲାନି । ମଶାରି ଟେକି ଅରବିନ୍ଦକୁ କୋଳରେ ଧରି ତାକୁ

ନିର୍ନିମେଷ ଆଖିରେ ଅନେଇ ରହିଲା । ଅରବିନ୍ଦ କଣ ତା ଜୀବନରେ ପରାଜୟ ଘୋଷଣା କରୁଚ ? ଗୋଟିଏ ଚୁମ୍ବା ଦେଲା ପୁଅର ଗଣ୍ଡରେ । ଆଖି ତାର ଛଳ ଛଳ ହୋଇ ଆସିଲା । ତା କୋଳରେ ଏ ସନ୍ତାନକୁ ଦେଇ ତାର ସ୍ୱାମୀ ଆଜ ଭଳେ କଥା କହୁଚନ୍ତି କାହିଁକି ? ଶେଷରେ ଅରବିନ୍ଦକୁ ନେଇ ନିରଞ୍ଜନର କୋଳରେ ଟେକିଦେଲା । ଗଭୀର ନିଦରେ ଶିଶୁ ପୁତ୍ରର ଆଖି ମୁଦ ହୋଇ ରହିଚ ।

ଅଂଜଳି ଓଦା ଓଦା କଣ୍ଠରେ କହିଲା, "କିନ୍ତୁ ଅରବିନ୍ଦ ଭିତରେ ଯେ ତମର ବିଜୟ ଘୋଷଣା ସ୍ପଷ୍ଟ ହୋଇଉଠିଚ, ସେ କଥା ତମେ ମନା କରିପାରିବନି... ତମର ବିଜୟରେ ମଧ୍ୟ ମୋର ବିଜୟ, ମୁଁ ତାକୁ ପରାଜୟ ବୋଲି କଦାପି କହିପାରିବନି...।"

ନିଜ ଭୁଲର ଏଭଳି ସଂଶୋଧନ ଘଟିବ ବୋଲି ନିରଞ୍ଜନ କଳ୍ପନା କରି ନ ଥିଲା । ତାର ମନେ ହେଲା, ଅଞ୍ଜଳିର ପାଦ ଯୋଡ଼ିକ ଧରି ସେ କ୍ଷମା ମାଗି ବସନ୍ତା, କିନ୍ତୁ ହଠାତ୍ କିଛି କରି ପାରିଲାନି । ଏହି ସମୟରେ ଅଞ୍ଜଳିର କାର୍ଯ୍ୟରେ ସେ ଆହୁରି ଆଶ୍ଚର୍ଯ୍ୟ ହୋଇପଡ଼ିଲା । ଅଞ୍ଜଳି ସ୍ୱାମୀର ପାଦ ଯୋଡ଼ିକ ନିଜ କୋଳକୁ ଟାଣି ନେଇ ମଞ୍ଜାଳି ଦେବାକୁ ଆରମ୍ଭ କଲା । ମୁହଁରେ ତାର କଥା, "ଆଗେ ଅନେକ ସମୟରେ ମୁଁ ତମର ଗୋଡ଼ ଘଷି ଦେଉଥିଲି...ଏବେ କିନ୍ତୁ ସୁବିଧା ହୁଏନା...ହେଲେ ବରାବର ସେ କଥା ମନରେ ଥାଏ..."

ନିରଞ୍ଜନ ଅବାକ୍ ହୋଇ ଚାହିଁରହିଲା । କୋଳରେ ଅରବିନ୍ଦ ଶୋଇ ରହିଚ । ଏ ଏକ ଅପୂର୍ବ ଚିତ୍ର । ଯେମିତି ସୃଷ୍ଟିର ବିଜୟ ଘୋଷଣାର ଛବି । ନିରଞ୍ଜନ ମର୍ମେ ମର୍ମେ ସେ କଥା ଅନୁଭବ କଲା । ପ୍ରାଣ ତାର ଗର୍ବରେ ଭରିଯିବାକୁ ଲାଗିଲା । ସେ ମନେକଲା ଅଞ୍ଜଳିର ପ୍ରାଣପ୍ରାଚୁର୍ଯ୍ୟ ଭିତରେ ସରସୀର ସଂସ୍କୃତିର ଶୋଭାଯାତ୍ରା ଯେମିତି ହଜି ହଜି ଯାଉଚ ।

॥ ୧୭ ॥

ଏହା ଭିତରେ ନିରଞ୍ଜନ ମନରେ ସରସୀ ଓ ଧନଞ୍ଜୟର କଥା ବିଶେଷ ପ୍ରଭାବ ବିସ୍ତାର କରିଚ । ସେ ଦୁହିଁଙ୍କି ସେ କ୍ରମେ ଯେପରି ଭଲ ପାଇବାରେ ଲାଗିଚ । ଯେମିତି ସରସୀ ଆଉ ଅଞ୍ଜଳି ଦୁଇଟି ସ୍ୱତନ୍ତ୍ର ଆଦର୍ଶର ପ୍ରତୀକ...ଏ କଥା ସେ ଭଲ ଭାବରେ ଅନୁଭବ କରିପାରିଚ । ସମାଜ ପାଇଁ ଏ ଦୁଇଟିଯାକ ଆଦର୍ଶର ଆବଶ୍ୟକତା ରହିଚ । ସରସୀ ଭିତରେ ଜୀବନର ଓ ଅଞ୍ଜଳି ଭିତରେ ପ୍ରାଣର ବିକାଶ ଘଟିଚ । ଜୀବନଟା ଶରୀରଧର୍ମୀ ଆଉ ପ୍ରାଣଟା ଆତ୍ମିକ । କିନ୍ତୁ ପ୍ରାଣର ବିକାଶ ଆତ୍ମିକ ହେବା ହେତୁ ତାହା ପ୍ରଚ୍ଛନ୍ନ ଆଉ ଜୀବନର ବିକାଶ ବାହ୍ୟିକ ହେବା ଫଳରେ ତାହା ପ୍ରକାଶ ପାଇ ସହଜରେ ଆକର୍ଷଣ କରି ପାରିଥାଏ । ଏ ସବୁର ଅନୁଶୀଳନ ଭିତରେ

ନିରଂଜନ ନିଜକୁ ମଧ୍ୟ ଆସାମୀ କରି ଠିଆ କଲା । ଆଗରେ ଠିଆ ହୋଇଛି ଯେମିତି ଧନଂଜୟ, ତାର ପ୍ରତିଯୋଗୀରୂପେ । ନିରଂଜନ ମନେ ମନେ ଭାବିଲା, ହଁ…ଆମ ଦୁହିଁଙ୍କ ଭିତରେ ବି ଯଥେଷ୍ଟ ସ୍ୱାତନ୍ତ୍ର୍ୟ ରହିଛି । ଜଣେ ପାଇଛି ଜୀବନ-ଉପଭୋଗର ବଶୀକରଣ ମନ୍ତ୍ର, ଆଉ ଜଣେ ଲକ୍ଷ୍ୟସାଧନାର ଯାଯାବରୀ ଖିଆଲ । ସେଇ ଯାଯାବରୀ ଖିଆଲ ଭିତରେ ଧନଂଜୟ ଆଜି ଜଣେ ଅଧ୍ୟାପିକାକୁ ପତ୍ନୀରୂପେ ଲାଭ କରିଛି । ସରସୀକି ପତ୍ନୀରୂପେ ଗ୍ରହଣ କରିବା ଭିତରେ ଗୌରବ ଅପେକ୍ଷା ଅଗୌରବର ମାତ୍ରା ଯେ ଅଧିକ, ଏ କଥା ନିରଞ୍ଜନ ଭଲରୂପେ ଜାଣେ । ସେଥିପାଇଁ ସେ ଧନଂ-ଜୟକୁ ବାହାଦୁରୀ ଦେଲା ବେଶୀ ।

ଆଉ ସରସୀ । ଏବେ ମଧ୍ୟ ତା' ଅଙ୍ଗର ସୁସ୍ପଷ୍ଟ ଗଠନଭଙ୍ଗୀ ନିରଞ୍ଜନ ଆଖିରୁ ପୂରାପୂରି ଲିଭିନି । ଆଖିରେ ସେହି ଦିନର ସେଇ ଛବି, ବେଣୀଟା ମଝିରେ ଖସିପଡ଼ି ନିତମ୍ବର ପରିସରକୁ ଆହୁରି ସୁସ୍ପଷ୍ଟ କରିଦେଇଛି । ବକ୍ଷର ଗୋଟିଏ ପାଖରୁ ଖସିଯାଇଛି ବସ୍ତ୍ର । ବ୍ଲାଉଜ୍ ଭିତରେ ଉନ୍ନତ ମାଂସପିଣ୍ଡ ଯେମିତି ସଂଗ୍ରାମୀ ହୋଇ ଗୁହିଁରହିଛି ।

ହଁ…ଏସବୁ ଜୀବନର ବିକାଶ । ଏହା ପରେ ନିରଂଜନର ଆଖିରେ ଭାସିଉଠେ ଅଞ୍ଜଳି । ସବୁ ଅଛି, ଅଥଚ କ'ଣ ଅଛି ଅଂଜଳି ଭିତରେ ସେ ସହଜରେ କିଛି ସ୍ଥିର କରିପାରେନା । ଯେମିତି ଅଞ୍ଜଳିର ଦେହଟା ପ୍ରାଣ-ରସର ଗୋଟାଏ ସ୍ପନ୍ଦନ । ଶରୀର ବ୍ୟବଚ୍ଛେଦ କରି ସେଠି ରସର ସନ୍ଧାନ ମିଳିବନି । ପୁଣି ଶରୀରର କେଉଁ ଅଙ୍ଗଟି ଅସୁନ୍ଦର, ତାହା ମଧ୍ୟ କହି ହେବନି । ଅଞ୍ଜଳିର କେବଳ ଭୁଲ ଯେ ସେ ତନୁ-ସମ୍ପଦର ପ୍ରଦର୍ଶନୀ ଉଦ୍‌ଘାଟନ କରିପାରିନି । ଏହି ଦେଶର ଓ ମାଟିର ସେ ଚିରନ୍ତନୀ ନାରୀ । ପରିସ୍ଥିତିର ପରିବର୍ତ୍ତନରେ ସେ ବିକ୍ଷୁବ୍ଧ ନୁହେଁ । ତରଙ୍ଗ ଅଛି, କିନ୍ତୁ ସଂଘାତ ନାହିଁ । କେବଳ କଲ୍ଲୋଳ ପିଟି ଦେଇ କୂଳକୁ କଳନାଦରେ ମୁଖରିତ କରି ରଖିଛି । କିନ୍ତୁ ସବୁଯାକ ପ୍ରଚ୍ଛନ୍ନ । ସେଥିଯୋଗୁ ତାହାର ଶୋଭାଯାତ୍ରା ପ୍ରାଣ-ପ୍ରାଚୁର୍ଯ୍ୟରେ ପୂର୍ଣ୍ଣ ହେଲେ ମଧ୍ୟ ଆଡ଼ମ୍ବରହୀନ । ଏସବୁ ବିଷୟ ନିରଞ୍ଜନ ପୂର୍ଣ୍ଣରୂପେ ଉପଲବ୍ଧି କଲା । ଅଞ୍ଜଳିର ପ୍ରତ୍ୟେକ ବିଷୟ ଗୋଟି ଗୋଟି ଉଦ୍ଭାସିତ ହୋଇ ତା ଆଗରେ ଏକ ମହିମା-ମଣ୍ଡିତ ନାରୀ ମୂର୍ତ୍ତିର ଆବିର୍ଭାବ ଘଟିଲା ।

ବିଛଣାରେ ଶୋଇ ଶୋଇ ନିରଞ୍ଜନ ଏ ସବୁ ଚିନ୍ତା କରୁଥିଲା । ହଠାତ୍ ଉଠି ସେ ବସିପଡ଼ିଲା । ଅଞ୍ଜଳିର ଗର୍ଭ ଯନ୍ତ୍ରଣା ଆରମ୍ଭ ହୋଇଛି । ଆଜି ଏ ଘରେ ନୂତନ ଅତିଥିର ଆବିର୍ଭାବ ହେବ । ତଳ ଖଞ୍ଜାରେ ତାର ଆୟୋଜନ ଚାଲିଛି । ନର୍ସ, ଧାଈ ସମସ୍ତେ ଆସି ଠୁଳ ହୋଇଛନ୍ତି । ଶିଶୁର ଜନ୍ମ ଓ ମାତାର ପୁନର୍ଜନ୍ମ । ଏକଥା ନିରଞ୍ଜନ ଅନୁଭବ କରି କାତର ହୋଇ ରହିଛି । ଉଠି ପଡି ସେ କାନ ଡେରିଲା । ପବନରେ କରୁଣ ଚିତ୍କାର ଭାସି ଆସୁଛି । କିଏ ବନ୍ଦ କରି ଦିଅନ୍ତା ନି ଏ ବିପଦକୁ । ସବୁ ଦେବ ଦେବୀଙ୍କର ଛବିକି ଅନେଇ ଗଲା ନିରଞ୍ଜନ । ଏତେ ଠାକୁରଙ୍କ ଭିତରୁ କାହାକୁ ସେ ଡାକିବ । ସେମାନଙ୍କ ବିରୁଦ୍ଧରେ ତାର ସେଇ ପୁରାତନ ଅଭିଯୋଗ ମଧ୍ୟ ରହିଛି ।

ଆଖି ଫେରେଇ ଆଣିଲା ସେ। ଆଖି ପଡ଼ିଲା ଗୋବିନ୍ଦ ଆଉ ଅରବିନ୍ଦର ଫଟୋ ଉପରେ। ଏମାନଙ୍କ ସାଙ୍ଗରେ ଆଉ ଗୋଟିଏ ଶିଶୁ ଆସି ଆଜି ଯୋଗ ଦେବ। ଏତିକି, ଆଉ ଦରକାର ନାହିଁ। ପୁଣି ଭାସି ଆସିଲା ଅଞ୍ଜଳିର ଚିତ୍କାର। ନିରଞ୍ଜନର ଶିହରି ଉଠିଲା। ଦୌଡ଼ି ଚାଲିଗଲା ତଳ ଖଞ୍ଜାର ଦରଜା ଯାକେ। ପୁଣି ଫେରି ଆସିଲା। ଘୁଞ୍ଚି ଭିତରେ ତାର କିଏ ଯେମିତି କଣ ପିଟୁଚି। ସେ ଅଥୟ ହୋଇ ଭିତରେ ବୁଲି-ବାକୁ ଲଗିଲା।

ଏତିକିବେଳେ ଅରବିନ୍ଦକୁ କାଖରେ ଧରି ସେ ଘରେ ଧଁ ଅଁ ସଁ ହୋଇ ଆସି ପହଞ୍ଚିଲା ରୁକ୍ମଣି। ନୀଳରଙ୍ଗର ଚନ୍ଦ୍ରଧାରୀ ଦେବତା ସେଇ ବିଷ୍ଣୁ ମୂର୍ତ୍ତିକି ହାତ ବଢ଼େଇ ତାକୁ ଖୋଲି ଦେବାକୁ ଇଙ୍ଗିତ ଦେଲା। ଅଞ୍ଜଳିର କାମନା, ତାର ସଙ୍କଟ ସମୟରେ ନିଜର ଆରାଧ୍ୟ ଦେବତାକୁ ଦେଖି ଦୁଃଖ ମୋଚନ କରିବ। ରୁକ୍ମଣି କିଛି ନ କହିଲେ ବି ଘଟଣାରୁ ନିରଞ୍ଜନ ସବୁ ବୁଝି ପାରିଲା, ଆଉ ହଠାତ୍ ଛବିଟାକୁ ଖୋଲି ନିଜେ ନେଇ ତଳ ଖଞ୍ଜାରେ ଦେଇ ଆସିଲା। କିନ୍ତୁ ସେଠି ରହି ପାରିଲାନି, ଅଞ୍ଜଳିର ଆର୍ତ୍ତସ୍ୱରରେ ବାୟୁମଣ୍ଡଳ ଭାରାକ୍ରାନ୍ତ ହୋଇ ପଡ଼ିଚି।

ଫେରି ଆସି ଉପର ଖଞ୍ଜାର ଦକ୍ଷିଣ ପାଖ ପିଣ୍ଡାରେ ନିରଞ୍ଜନ ବସି ପଡ଼ିଲା। ଗୋଟାଏ ଦାରୁଣ ନିର୍ବେଦ ଅବସ୍ଥା ଯେମିତି ଅତିକ୍ରମ କରିବାକୁ ପଡ଼ୁଚି। ସକାଳ ସମୟ ପ୍ରାୟ ଦଶଟାବେଳ ହେବ। ଚତୁର୍ଦ୍ଦିଗର ଉଜ୍ଜ୍ୱଳ ଆଲୋକ ଭିତରେ ନିରଞ୍ଜନ ଯେମିତି ପଥ ହରେଇବାକୁ ଲଗିଲା। ଆଉ କିଛି ବିପଦ ଘଟିବନି ତ। କିନ୍ତୁ ସେ ବିପଦ କଣ ତାହା ସେ ଚିନ୍ତା କରିବାକୁ ସାହସ କରି ପାରିଲାନି। ନିଶ୍ଚଳ ହୋଇ ବସି ରହିଲା କେବଳ।

ପ୍ରାୟ ପାଞ୍ଚ ମିନିଟ୍ ପରେ ଗୋଟିଏ ସଦ୍ୟ ଜାତ ଶିଶୁର କ୍ରନ୍ଦନ ଧ୍ୱନିରେ ତଳ ଖଞ୍ଜାର ପବନ ଚହଲି ଉଠିଲା। ଉପର ଖଞ୍ଜାରେ ତାହାର ଧକ୍କା ହଠାତ୍ ଲଗିଲା ନିରଞ୍ଜନ କାନରେ। ଆନନ୍ଦରେ ଅଧୀର ହୋଇ ସେ ଠିଆ ହୋଇ ପଡ଼ିଲା। ଦୁଃଖ-ନିଶାର ଅବସାନ ହୋଇଚି। ଅଞ୍ଜଳିର ସାଧନା ଅଛି, ଭକ୍ତି ଅଛି, ଐକାନ୍ତିକତା ଅଛି। ସେଥିଲାଗି ତାର ଆରାଧ୍ୟ ଦେବତା ତାର ଆକୁଳ କାକୁତି ଶୁଣି-ଛନ୍ତି। ଏକଥା ନିରଞ୍ଜନର କ୍ରମେ ବିଶ୍ୱାସ ହେବାକୁ ଲଗିଲା। ଶିଶୁର ଚିତ୍କାର ପୁଣି ଶୁଣାଗଲା। ନିରଞ୍ଜନ କାନ ଦେଇ ଶୁଣିଲା। ବଡ଼ ଅସ୍ୱାଭାବିକ ଶବ୍ଦ। କିନ୍ତୁ କେହି ଆସୁ ନାହାନ୍ତି କାହିଁକି? ପୁଅ ନା ଝିଅ, କଣ ହେଲା? ହୃଦୟର ବ୍ୟଗ୍ରତା ଭିତରେ ସେ ଆଗକୁ ଆଗକୁ ଚାଲିଲା।

କିଛି ସମୟ ଭିତରେ ନର୍ସ ତାହାର କାମ ସାରି ପଦାକୁ ବାହାର ଆସି ପାଟି କରି ଉଠିଲା—

"ପୁଅ ହୋଇଚି ପୁଅ, ମିଠେଇ ଆଣ, ବାବୁ କୁଆଡେ ଗଲେ !"

ନିରଞ୍ଜନ ଆଉ ଆଗେଇ ପାରିଲାନି। ଆନନ୍ଦରେ ଦ୍ରବୀଭୂତ ହୋଇ ଛିଡ଼ା-ହୋଇ ରହିଲା। ନାଚି ଉଠିଲା ରୁକ୍ମଣି। ଗୋବିନ୍ଦ ଦୌଡ଼ିଗଲା ଦାଦା ପାଖକୁ। ରୁଣ୍ଡ

ହୋଇଥିବା ପଡ଼ୋଶୀ ନାରୀମାନେ ଆନନ୍ଦର ଗୁଞ୍ଜନ ତୋଳିଦେଲେ । ନିଧିଆର ଆଈ ଆସି ମିଶିଚି ସେମାନଙ୍କ ଭିତରେ । ତା କାଖରେ ଅରବିନ୍ଦକୁ ଠେକି ଦେଇ ରତ୍ନମଣି ପ୍ରସୂତି ଘରକୁ ଧାଇଁଗଲା । କେମିତି ଅଛି ଅଞ୍ଜୁ ! ଅଞ୍ଜଳିକୁ ଦେଖି ବିସ୍ମିତ ହୋଇଗଲା ରତ୍ନମଣି । ସେ ସେ ପର୍ଯ୍ୟନ୍ତ ଚାହିଁ ରହିଚି ସେଇ ଠାକୁରଙ୍କ ଛବିକି । ରତ୍ନମଣି ମନେ ମନେ ଭାବିଲା, ଧନ୍ୟ ଅଞ୍ଜଳିର ନିଷ୍ଠା ! ଆଗେ ବାଳ ବୟସ ଅଛି, ଝିଅପିଲା ଆଉ କଣ ବୁଝନ୍ତା ନାଇଁ···ଆଉ ଏତେ ନିଷ୍ଠା ଭକ୍ତି କାହିଁକି; ସେଥିରେ ତାହାର ଯେମିତି ଈର୍ଷା ହେଲା । ଛାତି ଭିତରେ ତାର କିଏ ଚାବୁକ୍ ପିଟିଲା ଯେମିତି । ମନ ତାର ପୁଣି ବଦଳି ଗଲା । ଭଲ···ଭଲ···ଅଞ୍ଜଳି ଯୋଗୁଁ ଏ ଘର ସୁବର୍ଣ୍ଣ ହୋଇଚି···ନ୍ୟାୟ ଆଉ ଆତ୍ମର ଧର୍ମରେ ପୂରି ରହିଚି···ଏଠି ଅଧର୍ମ କି ପାପ ପଶି ପାରିବ ନି···ଏସବୁ ଅଞ୍ଜଳିର କୀର୍ତ୍ତି···ନିରଞ୍ଜନର ଉନ୍ନତି ସବୁ ଅଞ୍ଜଳି ଯୋଗୁଁ···। ଅଞ୍ଜଳି ପ୍ରତି ରତ୍ନମଣି ମନରେ ଯେମିତି କୃତଜ୍ଞତା ଭରିଯିବାକୁ ଲାଗିଲା ।

ଫେରିଆସି ନିଧିଆ ଆଈଠୁଁ ରତ୍ନମଣି ପୁଅକୁ ନିଜ କୋଳକୁ ନେଲା । ଉଠିଆସି ଉଠିବାଯାକେ ତାକୁ କେମିତି ସେ ସମ୍ଭାଳି ରଖିବ ତାହାର ଏହି ଚିନ୍ତା । ତେବେ ପିଲାଟା ଏହା ଭିତରେ ତାକୁ ଟିକେ ଆଦରି ଯାଇଚି । ସେତିକି ତା ପକ୍ଷରେ ଆଶ୍ୱାସନାର ବିଷୟ ।···ସେ ପାଖରେ ନିରଞ୍ଜନ କା' ସାଙ୍ଗରେ ଗପିଲେଣି । କିଏ ? ଅଞ୍ଜଳି କଥା ତାଙ୍କୁ ଟିକେ କହିଦେଇ ଆସନ୍ତି । ଭଲ ଅଛି ଅଞ୍ଜଳି । ଭାବି ଭାବି ଆଗକୁ ଗଲା ରତ୍ନମଣି । ଓ···ଗୋବିନ୍ଦର ମାଷ୍ଟର ପ୍ରଣବ ବାବୁ । ମୁଣ୍ଡ ଉପରେ ଲୁଗା ସଜାଡ଼ି ଦେଲା ରତ୍ନମଣି···ନାକ ତଳେ ଧାରେ କଳାଜାଇ । ସବୁବେଳେ ଧୋବ ପଞ୍ଜାବୀ ପିନ୍ଧନ୍ତି···ରଙ୍ଗଟା ଆଉ ଟିକେ ସଫା ହୋଇଥିଲେ···ଯେମିତି···ଆରେ ଗୋବିନ୍ଦ···

ଆଉ ଆଗକୁ ଗଲାନି ରତ୍ନମଣି । ଫେରି ଆସି ପୁଣି ଗୋବିନ୍ଦକୁ ଡାକିଲା । ବୋଉ ଡାକ ଶୁଣି ଗୋବିନ୍ଦ କୁଆଡ଼େ ଥିଲା ଆସି ପହଞ୍ଚିଗଲା ।

ବୋଉ କଥା ଶୁଣିବା ଆଗରୁ ଗୋବିନ୍ଦ ଆଗେ ପାଟିକରି କହିଲା, "ଆରେ ଅରବିନ୍ଦ, ଆମର ଆଜି ଗୋଟିଏ ଭାଇ ହେଲା । ଆମେ ତିନି ଭାଇ ହେଲେ । ବୋଉ, ଗାଁରେ ଆଉ କେତେ ଭାଇ ଅଛନ୍ତି···"

ରତ୍ନମଣି ଆକଟ କରି କହିଲା, "ଛି, ଭାଇଙ୍କି ଗଣନ୍ତି ନି । ଯା, ଦାଦାଙ୍କୁ କହିଦେବୁ ଯା, ଖୁଡ଼ି ବହୁ ଖୁବ୍ ଭଲ ଅଛି ।"

ଗୋବିନ୍ଦ ଦୌଡ଼ି ଦୌଡ଼ି ଖବର ଦେବାକୁ ଚାଲିଗଲା । ଅରବିନ୍ଦ କହିବାରେ ଲାଗିଲା, "ବାଇ···ବାଇ···ବାଇ···"

॥ ୧୮ ॥

ନିରଂଜନର ମନ ଏହା ଭିତରେ ସଂପୂର୍ଣ୍ଣ ବଦଳି ଯାଇଚି । ଆନନ୍ଦର ପରିପୂର୍ଣ୍ଣତାକୁ ସେ ଯେମିତି ଏବେ ଖାଲି ଅନୁଭବ କରିବାରେ ଲଗିଚି । ଆଉ ସେହି ଆନନ୍ଦର କେନ୍ଦ୍ରସ୍ଥଳ ହୋଇଚି ଅଂଜଳି । ବେଳେ ବେଳେ ତାର ଇଚ୍ଛାହୁଏ ଯେମିତି ସେ ଖୁବ ବଡ଼ ପାଟି କରି 'ଅଂଜଳି ଅଂଜଳି' ବୋଲି କହି ବୁଲନ୍ତା । ଆଉ ଉଦଣ୍ଡ ନୃତ୍ୟ ରଚି ଦିଅନ୍ତା ଅଂଜଳିର ଝିଅ ଦୁଇଟିକି ଧରି । କିନ୍ତୁ ମନ କଥା ତା'ର ମନରେ ରହେ, ସେ ସବୁ କରିବା ପାଇଁ ଯେମିତି ବୟସ କିମ୍ବା ପରିସ୍ଥିତି ଆଉ ଅନୁକୂଳ ନୁହେଁ । ଗୋବିନ୍ଦ ବଡ଼ହେଲାଣି, 'ନୂଆବୋଉ ଅଛନ୍ତି, ଗୃହର କୁରୁପାଠ ମଧ୍ୟ ଯୁବା ହୋଇ ଉଠିଲାଣି, ଏ ସମସ୍ତଙ୍କୁ ଆଉ ଅସ୍ୱୀକାର କରି ହେବନି । ତେବେ ମନ ତାର ସମାଳି ହୁଏନା, ନିରୋଳା ସମୟ ଦେଖିଦେଖି ଛଳଗଞ୍ଜାକୁ କାମ ଥିବା ବାହାନାରେ ଯାଇ ପ୍ରସୂତିଘରକୁ ଉଙ୍କିମାରି ଝିଅ ଆଉ ତା'ର ମାଆକୁ ଉଜ୍ଜ୍ୱଳ ଆଖିରେ ଅନେଇ ରହେ । ନିରଞ୍ଜନର ଏ ଢଙ୍ଗ ଆଉ ଚପଳତା ଦେଖି ଅଞ୍ଜଳି ହସି ଉଠେ । ଝିଅକୁ ଆଙ୍ଗୁଠି ଦେଖେଇ ଆଖିରେ ଇସାରା ଦିଏ । ମନେ ମନେ ଭାବେ, ସାନ ପୁଅଟି ବଡ଼ ଗୃହ ଆହୁରି ସୁନ୍ଦର ହବ···ଏଥର ସିଏ ମତେ ଆହୁରି ଭଲ ପାଇବେ । ପୁଣି ଆଖି ପିଛୁଳାକେ ପଛ କଥା ସବୁ ମନେ ପଡ଼ଯାଏ···ଆଉ କିଛି ଭାବିପାରେ ନା । ପୁଣି ଇସାରା ଦେଇ ହସି ଦିଏ ।

"ଯିବ ? ଛୁଇଁଦେବ ଏକା !"

ଏତକ ଧୀରେ ଧୀରେଁ କହି ପଛକୁ ଅନେଇ ଦିଏ ନିରଞ୍ଜନ । ନୂଆବୋଉ ଦୂରରେ, ଗୋବିନ୍ଦ ଆଉ ଅରବିନ୍ଦକୁ କଥା କହି ଖେଳଉଚନ୍ତି । ଆଉ ଟିକେ ଘର ଭିତରକୁ ପଶିଯାଏ ।

ଅଞ୍ଜଳିର ଆଶଙ୍କା ହୁଏ ସତେ ଆସି ଛୁଇଁ ଦେବେ କି ? ଉଠିଆଖି ଉଠିବାକୁ ଆହୁରି ଦିନଦିନ । ସେତିକ କଣ ସେ ଜାଣି ନ ଥିବେ । କିନ୍ତୁ ବାରଣ କରିପାରେ ନା । ଛୁଇଁଲେ ଛୁଇଁବେ ପଛକେ, କଣ କରିବ ଆଉ, ତାଙ୍କର ଠେଇଁ ତ ସବୁ···। ଅନେଇଁ ରହେ ନିରଞ୍ଜନ ଆଖିକି ।

ନିରଞ୍ଜନ ଆଉ କିନ୍ତୁ ଆଗାଏ ନା । ପିଲାଟାକୁ ଅନେଇ ସବୁ କଥା ଭୁଲିଯାଏ । ଭାରି ଗୋରିଟା ହବ । ନାକଟା ବି ଉଚ୍ଚ ଅଛି । ମୁଣ୍ଡରେ କେତେ ବାଳ ମ ? "ଅଞ୍ଜଳି, ତମେ କ'ଣ ଖାଇଥିଲ ମ···ପୁଅ ମୁଣ୍ଡରେ ଏତେ ବାଳ ହେଲା । କିନ୍ତୁ ଆ ପାଇଁ ତମେ ଏଥର ଭାରି କଷ୍ଟପାଇଲ ଏକା···ମୋର ମନ ହେଉଥାଏ···"

"କଣ ?"

"ନା କିଛି ନାହିଁ, ଦେହ ତମର ଭାରି ଶୁଖିଯାଇଚି···"

ଅଞ୍ଜଳି ହସିଦେଇ ଅନାଏ ପୁଅକୁ । ହଁ, ଦେହର ମାଂସ ସବୁ ଏଇ ପୁଅ ଘିଚି ଆଣିଚି···ଭାବି ଭାବି ନିରଞ୍ଜନ ମଧ୍ୟ ପୁଅକୁ ଅନାଏ । ନିକଟରେ କାହାର ପାଦଶବ୍ଦ ଶୁଭିଲା । ନିରଞ୍ଜନ ଦୁଆରମୁହଁକୁ ଆସି ବଡ଼ ପାଟିରେ କହିଲା, "ସେଇ ମୋ ଶ୍ରେଷ୍ଠ ବାକ୍‌ସର ଗୃବିଟା କୋଉଠି ରଖିଚ ମୁଁ ତ ପାଉନି ?"

କେବଳ ଖଣ୍ଡେ ହସ ହସି ଦେଲା ଅଞ୍ଜଳି । ନିରଞ୍ଜନ ଗ୍ଲଲଗଲା ଦୂରକୁ । ନିକଟରେ ନୂଆବୋଉଙ୍କ ପାଦଶବ୍ଦ । ଗୋବିନ୍ଦ ମଧ୍ୟ କ'ଣ କହି କହି ଆସୁଚି । ଆହୁରି ଦୂରକୁ ଗ୍ଲଲଗଲା ନିରଞ୍ଜନ । ଆତ୍ମା ତାରି ପଡ଼ି ରହିଲା ଯେମିତି ଅଞ୍ଜଳି ଆଉ ଶ୍ରେଷ୍ଠ ଶିଶୁଟି ପାଖରେ ।

ଖଗବେଳେ ଗୋବିନ୍ଦ ଆଉ ଅରବିନ୍ଦକୁ ଧରି ଧରି ଦିନେ ଦିନେ ନିରଞ୍ଜନ ହସ ଖୁସି ଓ ଖେଳରେ ମାତିଯାଏ । ଯେମିତି ନିଜର ଶ୍ରେଷ୍ଠ ଘରର ପରିସ୍ଥିତି ଭିତରେ ସେ ଖଣ୍ଡେ ସ୍ୱର୍ଗ ଭୂମି ରଚନା କରିଦେବ ବୋଲି ଚିନ୍ତା କରିଚି, ନିରଞ୍ଜନର କାର୍ଯ୍ୟ ଦେଖିଲେ ସେହି କଥା ମନେ ହୁଏ । ଉଠିଆସି ଉଠିଲା ପରେ ଅଞ୍ଜଳି ମଧ୍ୟ ଶ୍ରେଷ୍ଠ ଶିଶୁଟିକୁ ଧରି ପାଖକୁ ଗ୍ଲଲି ଆସିଚି । ସେଥିରେ ଆନନ୍ଦର ପରିବେଶ ଯେପରି ପୂର୍ଣ୍ଣାଙ୍ଗ ହୋଇ ପଡ଼ିଚି । ନିଜର ପାଖର ତିନୋଟି ଶିଶୁଙ୍କୁ ଅନେଇ ନିରଞ୍ଜନ ଭାବେ, ବାସ୍ତବିକ ଏଇ ଶିଶୁମାନଙ୍କଠାରେ ହିଁ ସ୍ୱର୍ଗ ରହିଚି, ସେଥିଲାଗି ଯିଶୁ ପିଲାମାନଙ୍କୁ ଏତେ ଭଲ ପାଉଥିଲେ । ଆଉ ସେଇ ସ୍ୱର୍ଗ ସୃଷ୍ଟି କରିଚି ଏଇ ଶିଶୁମାନଙ୍କର ମା—ଅଞ୍ଜଳି ସେମାନଙ୍କ ଭିତରୁ ଅନ୍ୟତମ ।

ସୁବିଧା ଦେଖି ଅଞ୍ଜଳି ବେଳେ ବେଳେ ଆସି ସ୍ୱାମୀର ଖୁବ୍ ପାଖକୁ ଲାଗି ବସିଯାଏ । ଦୁଇଟି ପିଲାର ମା ହେଲାଣି । କୋଉ କଥାକୁ ନିଜ ଭିତରେ ଆଉ ଭୟ ନାହିଁ ଯେମିତି । ତେବେ ରତ୍ନମଣିକ ତାର ଏବେ ବି ଡର ରହିଚି । ତା ଆଗରେ ସେ ସ୍ୱାମୀର ଘନିଷ୍ଠ ସାନ୍ନିଧ୍ୟ ଉପଭୋଗ କରିବାକୁ ସାହସ ପାଇ ପାରେନା । କିନ୍ତୁ ଘରର କବାଟ ଦେଲେ ସେ ଭୟ ଦୂର ହୋଇଯାଏ । ଅନେକ ସମୟରେ ଗୋବିନ୍ଦ ଆଉ ଅରବିନ୍ଦ ଖଗବେଳେ ରତ୍ନମଣି ପାଖରେ ରହନ୍ତି । ଶ୍ରେଷ୍ଠ ଶିଶୁଟିକୁ ଧରି ଅଞ୍ଜଳି ରହେ ସ୍ୱାମୀ ପାଖରେ । ଶିଶୁଟିକୁ ନିରଞ୍ଜନ ନେଇ ନିଜର ଗ୍ଣ୍ଡି ଉପରେ ପକାଏ । ଅରବିନ୍ଦକୁ ଧରିଲା ବେଳର ସେଇ ଅନାଡ଼ି ଭାବ ଏବେ ତାର ତେର କଟିଯାଇଛି । ଗତ ଦୁଇଟି ବର୍ଷ ଭିତରେ ସେ ଯେମିତି ଖୁବ୍ ଅଭିଜ୍ଞ ଆଉ ବୟସ୍କ ହୋଇ ପଡ଼ିଚି । ବର୍ତ୍ତମାନ ସେ ମସ୍ତବଡ଼ ଗୃହସ୍ଥ । ଏ ଧାରଣା କ୍ରମେ ତା ମନରେ ଦୃଢ଼ ହୋଇଯାଇଚି । ଦାମ୍ପତ୍ୟ ସୁଖ ଏବେ ବାତ୍ସଲ୍ୟସୁଖରେ ପରିଣତ ହୋଇଯାଇଛି । ଦୁଇଟି ସନ୍ତାନର ଜନ୍ମଦାତା ଧରି କେତେବେଳେ କେମିତି ସେଇ ଆଦିମ ତାଡ଼ନାର ମୁକାବିଲା କରି ନିଆ ଯାଇପାରେ ; କିନ୍ତୁ ମଧୁବନ ରଚନା ଆଉ ସମ୍ଭବ ନୁହେଁ । ବେଳେବେଳେ ମନେ ପଡ଼ିଯାଏ ଶ୍ରେଷ୍ଠ ଶିଶୁର ଜନ୍ମବେଳର ଅଞ୍ଜଳିର ଯନ୍ତ୍ରଣା । ସେତେବେଳେ ଚମକି ଉଠି ନିରଞ୍ଜନ ମନେ ମନେ ଆହୁରି ଦୁରେଇ ଯାଏ । ହୁଏତ ଦେହଟା ତାର ଢଳିଯାଇଥିଲା ସେଥିରେ । କାନ୍ଦଉଠେ ଶିଶୁଟି ଗ୍ଣ୍ଡି ଉପରେ । ତାକୁ ଟିକେ ଚପି ଧରେ ନିରଞ୍ଜନ, ଟିକେ

ଥାପୁଡ଼େଇ ଦିଏ । କିନ୍ତୁ ସେ ହଠାତ୍ ଚୁପ ହୁଏନା । ଅଞ୍ଜଳି ଉଠି ତାକୁ ନିଜର କୋଳକୁ ନିଏ ! ନିରଞ୍ଜନ କାନ ପାରି ଶୁଣେ, ପୁଅର କାନ୍ଦିବା ସ୍ୱରଟା ସୁଖକର ନୁହେଁ । ଏକଥା ସେ ଶିଶୁର କନ୍ଦନରୁ ହିଁ ଅନୁମାନ କରିଛି । ହୁଏତ ପିଲାଟା ଦୁଷ୍ଟ ପ୍ରକୃତିର ହେବ । ଅଣ୍ଡିରାପିଲା । ସ୍ୱର ସାଙ୍ଗରେ କିଛି ଯାଏ ଆସେନା । ଏ କଥା ସେ ଅଞ୍ଜଳିକି ମଧ୍ୟ କିଛି କହେନା ।

କାହିଁକି କେଜାଣି ଅଞ୍ଜଳି କୋଳରେ ମଧ୍ୟ ଛୁଆଟା ଚୁପ ହେଲାନି । ଘୁଞ୍ଚିରୁ ଲୁଗା ଆଡ଼େଇ ଅଞ୍ଜଳି ତାକୁ ଅମୋଘ ଔଷଧ ଦେଇ ଶୋଇପକାଇଲା । ତା ପରେ ତାକୁ ନେଇ ସ୍ପ୍ରିଂ ଝୁଲାରେ ଶୋଇଦେଲା । ଖଟର ଧାରକୁ ଲାଗି ଝୁଲା । ନିରଞ୍ଜନ ଆସ୍ତେ ଆସ୍ତେ ଝୁଲା ହଲେଇବାକୁ ଲାଗିଲା । ଏମିତି ବେଳ କଟିଯାଏ ଅନେକ ସମୟରେ । ନିରଞ୍ଜନ କାନ୍ଥର ଦେବାଦେବୀ ଛବିଗୁଡ଼ାକୁ ଅନେଇ ଅନେଇ ଭାବେ, ଏମାନଙ୍କ ପାଖରେ ଅଞ୍ଜଳିର ପୂଜା-ଅର୍ଚ୍ଚନା ସାର୍ଥକ ହୋଇଛି ।

ଦିନେ ଖରାବେଳେ ଶୋଇପଡ଼ିଛି ନିରଞ୍ଜନ । ଅଞ୍ଜଳି ତାକୁ ହଲେଇ ହଲେଇ ଉଠେଇ ଦେଇ କହିଲା, "କିଏ ତମକୁ ଡାକୁଛି ।"

ନିରଞ୍ଜନ ନିଦବାଉଳା ଅବସ୍ଥାରେ ବାହାରର ଡାକ ଶୁଣିବାକୁ ଚେଷ୍ଟା କଲା; ହଁ, ତାରି ନାଁ ଧରି କିଏ ଡାକୁଛି । ଉଠି ପଡ଼ିଲା ସେ । କେବଳ "ନିରଞ୍ଜନ ! ନିରଞ୍ଜନ" ବୋଲି ତାକୁ କିଏ ଡାକୁଛି କଟକ ସହରରେ ? ନିଜ ଘରର କବାଟ ଫିଟେଇ ସେ ବାହାରକୁ ଆସି ଦରଜା କବାଟ ଖୋଲିଦେଲା । ଏକ ସୌମ୍ୟକାନ୍ତ ଯୁବକ । ବୟସରେ ନିରଞ୍ଜନଠାରୁ ଯେମିତି ଟିକେ ସାନ ହେବ । ପୋଷାକ ପରିଧାନର ପରିପାଟୀ, ପରିଧେୟ ପୁଣି ଦାମିକା । ହଠାତ୍ ଚହ୍ନି ପାରିଲାନି ନିରଞ୍ଜନ । ଯେମିତି ପରିଚିତ ଖଣ୍ଡେ ଧୂଳିଆ ମେଘ ଦେହରେ ଇନ୍ଦ୍ରଧନୁ ଝଟକି ଉଠିଛି । କିନ୍ତୁ ସେଥିପାଇଁ ବେଶୀ ଡେରି ହେଲାନି । ଭଦ୍ରଲୋକ ଅପମାନିତ ମନେ କରିବାର ଯଥେଷ୍ଟ ଆଗରୁ "ଆରେ ଧନଞ୍ଜୟ" ବୋଲି ପାଟି କରି ଯୁବକଟିକୁ ନିରଞ୍ଜନ କୁଣ୍ଢେଇ ଧରିଲା ।

ଏହି ସେଦିନର ସାହିତ୍ୟ-ସାଧକ ଧନଞ୍ଜୟ । ତାହାର ପୁରାତନ ବନ୍ଧୁ । ଆଜି ଅଧ୍ୟାପିକା ସରସୀ ଦେବୀଙ୍କ ସ୍ୱାମୀ । ନିରଞ୍ଜନ ଏକାବେଳକେ ଧନଞ୍ଜୟର ସବୁଗୁଡ଼ିକ ଅବସ୍ଥାକୁ ଆଲିଙ୍ଗନ କରିନେଲା ଯେପରି ।

ଏହା ପରେ ନିରଞ୍ଜନର ଆଖି ପଡ଼ିଲା ରାସ୍ତା ଉପରେ । ଖଣ୍ଡେ ସାଇକେଲ ରିକ୍ସା ରହିଛି । ସେଥିରୁ ପଦାକୁ ଦୋହଲି ଉଠୁଛି ଆକାଶୀ ରଙ୍ଗର ରେଶମ ଶାଢ଼ୀର କେତେକ ଅଂଶ । ନିରଞ୍ଜନ ଆଗକୁ ବାହାରିଗଲା । ଦେଖିଲା, ରିକ୍ସାରେ ସରସୀ । ଆସନ୍ତୁ, ଆସନ୍ତୁ, କହି ନିରଞ୍ଜନ ହାତ ବଢେଇଦେଲା ଯେମିତି ସେକହ୍ୟାଣ୍ଡ ଆଶାରେ; କିନ୍ତୁ ତାହାର ହାତକୁ ନିବଡ଼ ଭାବରେ ଭିଡ଼ି ଧରି ଉଠି ଆସିଲା ସରସୀ । ଦେହରେ ଟେସ୍ତଭଳି ଯୌବନ ଓ ମାଂସର ଉତ୍ସବ । ତାହାର ଆକର୍ଷଣରେ ଟିକେ ଦୋହଲି

ପଡ଼ିଲା ଯେମିତି ନିରଞ୍ଜନ । ପର ମୁହୂର୍ତ୍ତରେ ରୂପଯୌବନସମ୍ପନ୍ନା ସରସୀ ମାଟିର ଧରଣୀରେ ପାଦ ରଖି ନିରଞ୍ଜନ ସାଙ୍ଗରେ ତାହାର ଘରକୁ ଆସିଲା ।

ସମସ୍ତେ ବୈଠକଖାନାରେ ଆସି ବସିଲେ । ସେତେବେଳକୁ ଅଞ୍ଜଳି ଉଠିଆସି କୌଶଳରେ ସମସ୍ତଙ୍କୁ ଦେଖିସାରିଛି । ଧନଞ୍ଜୟଙ୍କୁ ସେ କେତେ ଥର ଦେଖିଥିଲା ଆଗରୁ । ତାର ପରିବର୍ତ୍ତନ ଭିତରେ ମଧ୍ୟ ସେ ତାଙ୍କୁ ଚିହ୍ନିବାରେ ଟିକେ ହେଲେ ଭୁଲ କରିନି । ତାହାର ବିବାହର କାହାଣୀ ସେ ନିରଞ୍ଜନଠାରୁ ଶୁଣିଛି । ସେଥିଲାଗି ନାରୀ ମୂର୍ତ୍ତିଟିକି ଚିହ୍ନିବାରେ ତାର ମଧ୍ୟ ଭୁଲ ହେଇନି । ଆନନ୍ଦ ଓ ବିସ୍ମୟରେ ତା କଣ୍ଠରେ ନୀରବରେ ଫୁଟିଉଠିଲା—'ସରସୀ ଅପା !' ସରସୀର ରୂପ ଓ ପରିପାଟୀ ତା ଆଖିରେ ନାଚିଗଲା । ସତେ ମ ସରସୀ ଅପା କେଡ଼େ ସୁନ୍ଦର, ଆଉ ଭଲ ବରଟିଏ ତ । ଧନଞ୍ଜୟ ବାବୁ ସେତେବେଳେ ଏମିତି କାହିଁ ଦିଶୁଥିଲେ । ଆଲେ, ସରସୀ ଅପାଙ୍କୁ ସେ ଛୁଇଁଲେ । ମୋର ବଡ଼ ଭଉଣୀ, ତାଙ୍କର ଦେଢ଼ଶାଶୁ ହବ··· । ଏ ଭାବନା ଭିତରେ ଅଞ୍ଜଳିର ପାଟିକରି ଉଠିବାକୁ ଇଚ୍ଛାହେଲା । କିନ୍ତୁ ଆଖି ତାର ଆହୁରି ଚମକି ପଡ଼ିଲା । ସରସୀ ଅପା ତାଙ୍କର ଗୋଟିଏ ହାତକୁ ଧରି ଧରି ଆସୁଛି । ଘଇଲାଗୁଡ଼ୀ ···ଆଲେ, ତୁ ପୁଣି ବନ୍ଧୁ ବାନ୍ଧବ ଘରକୁ କାହିଁକି ଆଇଚୁ······ ?

ଅଞ୍ଜଳି ଆଉ କିଛି ଭାବିବାକୁ ସମୟ କରି ପାରିଲାନି । ପୁଅକୁ ଝୁଲାରେ ଥରେ ଅନେଇ ଦେଇ ଦୌଡ଼ି ଦୌଡ଼ି ଚାଲି ଖଞ୍ଜାକୁ ଗଲା । ସମସ୍ତଙ୍କୁ ଜଣେଇଦେଲା ସେମାନଙ୍କ ଉପସ୍ଥିତି । ରତ୍ନମଣି ଭିତରେ ଆଗ୍ରହ ଜଳିଉଠିଲା । ବାବୁଙ୍କ ଫରମାସୀ ଆଶାକରି ଉପରି ଖଞ୍ଜାକୁ ଚାଲିଗଲା କୁରୁପା । କେତେଖଣ୍ଡ ପାନ ଓ ସିଗାରେଟ ଥୋଇ ଗୋଟିଏ ଥାଳିଆ ଗୋବିନ୍ଦ ହାତରେ ଧରେଇ ଦେଇ ରତ୍ନମଣି ବାହାରି ପଡ଼ିଲା । କିନ୍ତୁ ତାଙ୍କୁ ବେଶି ଦୁର ଯିବାକୁ ପଡ଼ିଲାନି । ସମସ୍ତଙ୍କ ଆଗରେ ଆସି ହସି ହସି ଛିଡ଼ା ହେଇଗଲା ସରସୀ । ଚେହେରାରୁ ଅନୁମାନ କରି ରତ୍ନମଣିଙ୍କ ଭୂମିଷ୍ଠ ପ୍ରଣାମ କଲା । ଆଉ ଅଞ୍ଜଳିକ କୋଳକୁ ଭିଡ଼ିନେଲା ପରେ ଚଞ୍ଚୁ ଉଠେଇନେଲା ଅରବିନ୍ଦକୁ ।

ପ୍ରାୟ ପଇଁଚାଳିଶ ମିନିଟ ଯାଏ ସରସୀ ରହିଲା ନିରଞ୍ଜନ ଘରେ । ସେତିକି ସମୟ ଭିତରେ ବହୁ ଆଦର ଅଭ୍ୟର୍ଥନା ଓ ଆଦାନପ୍ରଦାନ ହୋଇଗଲା । ଗୋବିନ୍ଦକୁ, ଅରବିନ୍ଦକୁ ଆଉ ଛୋଟ ପୁଅଟିକି କୋଡ଼ିଏ କୋଡ଼ିଏ ଟଙ୍କା ଦେଇଗଲା ସରସୀ । କୁରୁପା ଚାକରକୁ ଦେଲା ପାଞ୍ଚ ଟଙ୍କା । ଅଞ୍ଜଳିକ ପିନ୍ଧେଇଦେଲା ଦାମିକା ପଥରବସା ଗୋଟିଏ ମୁଦି । ସରସୀର ଭ୍ୟାନିଟିବ୍ୟାଗ୍‌ଟିକୁ ଅନେକ ବେଳଯାଏ ଅନେଇ ରହିଲା ଗୋବିନ୍ଦ । ଯେମିତି ସେଥିରେ ଆହୁରି କେତେ କ'ଣ ଭର୍ତ୍ତି ହେଇଚି । ଶେଷରେ ଗୋବିନ୍ଦର ଆକାଂକ୍ଷାର ଉଦ୍ଦେଶ୍ୟ ବୁଝି ସରସୀ ବ୍ୟାଗ ଫିଟେଇ ଖଣ୍ଡେ ଛୋଟ ରୁମାଲ କାଢି ଗୋବିନ୍ଦକୁ ଦେଲା । ବାସ୍ନାରେ ଭୁରୁ ଭୁରୁ ହେଉଚି ରୁମାଲ ଖଣ୍ଡିକ । ଟଙ୍କାରେ ତାର କାମନା ମେଣ୍ଟି ନ ଥିଲା, ରୁମାଲ ଖଣ୍ଡିକ ପାଇଲାକ୍ଷଣି ଆନନ୍ଦରେ ଅଧୀର ହେଇ ଚାଲି ଭଳି ଛୁଟି ପଳେଇଲା ଗୋବିନ୍ଦ ।

ସରସୀ ଓ ଧନଞ୍ଜୟ ଚାଲିଯିବା ପରେ ସେମାନଙ୍କ ପ୍ରତି ଅଞ୍ଜଳିର ଧାରଣା ପ୍ରାୟ ବଦଳିଗଲା । ତାଙ୍କ ମାଉସୀଝିଅ ଭଉଣୀ—ସରସୀ ଅପା—ଏମ୍. ଏ. ପାଶ କରି କଲେଜରେ ପ୍ରଫେସର ହୋଇଛି—କ'ଣ ହେଲା, ତା ଭଳି ଜଣେ ଲୋକ ସ୍ୱାମୀଠଉଁ ମାଡ଼ ଖାଇ ଆଉ ପଡ଼ି ରହିଥାନ୍ତା, ଭଲ କରିଚି—ଭଲ କରିଚି । ଶିକ୍ଷିତା ସ୍ତ୍ରୀ, ସିଏ ଯା କରିପାରିବ, ତା କ'ଣ ସମସ୍ତେ କରିପାରିବେ···ଧନଞ୍ଜୟ ବାବୁ ବି ଭାରି ସୁନ୍ଦର ଲୋକ······

ଅଞ୍ଜଳିର ଏହିପରି ଅନେକ କଥା ଶୁଣିଲା ରତ୍ନମଣି; କିନ୍ତୁ କିଛି କହିଲାନି । କୋଉ କାଳରୁ ତ ସେ ବିଧବା ହୋଇଚି ସେକଥା ସେ ଭୁଲିଯିବାକୁ ବସିଲାଣି···ପୁଣି ସ୍ୱାମୀକି ଛାଡ଼ି ମାଇପେ ଆହୁରି ସ୍ୱାମୀ କରୁଛନ୍ତି, ସେ ଆଜି ଦେଖିଲା । ଅଞ୍ଜଳି ମୁହଁରୁ ତାହାର ଅନେକ ପ୍ରଶଂସା ମଧ୍ୟ ଶୁଣିଲା । ଯେମିତି ଶିକ୍ଷିତା ଆଉ ଅଶିକ୍ଷିତା ସ୍ତ୍ରୀଲୋକର ପ୍ରାଣ ଭିନ୍ନ । ଏତିକିବେଳେ ସେଇ ବାସ୍ନା ରୁମାଲଟା ଆଣି ତା ନାକରେ ଶୁଙ୍ଘେଇଦେଲା ଗୋବିନ୍ଦ । ସତେ ମ, ରୁମାଲର ବାସନା କେଡ଼େ ମଧୁର । ଆଉ କେଡ଼େ ମଧୁର ହୋଇ ନ ଥିବ ସେମାନଙ୍କର ଜୀବନ । ପର ମୁହୂର୍ତ୍ତରେ ରୁମାଲ ଆଉ ତାର ବାସ୍ନାକୁ ଭୁଲିଗଲା ରତ୍ନମଣି । କେବଳ ଗୋବିନ୍ଦକୁ ସେ ପାଇଲା ଖୁବ୍ ପାଖରେ । ତା ଭାଗ୍ୟରେ ଆଉ କିଛି ନାହିଁ । ଏହି ଗୋବିନ୍ଦ ହିଁ ତାହାର ପରମ ସମ୍ପଦ—ତାହାର ସାନ୍ତ୍ୱନା, ତାର ସବୁ । ଗୋବିନ୍ଦକୁ କାଖ କରି ଦୁଆରେ ଥରେ ବୁଲିଆସିଲା ରତ୍ନମଣି ।

ଅନେକ ଦିନ ପରେ ସେଦିନ ନିରଞ୍ଜନର ମନଟା ବି କେମିତି ଟିକେ ବେବାଗିଆ ଧରିଲା । କିନ୍ତୁ ସେ ସେଥିରେ ଅଧିକ ବିଚଳିତ ହେଲାନି । ମନକୁ ପୂରା ବାଗ ଭିତରେ ରଖିବାକୁ ସନ୍ଧ୍ୟାବେଳେ ସଙ୍ଗୀତର ଆୟୋଜନ ଲାଗି ଡକେଇ ପଠେଇଲା ନିଧିଆକୁ । ନିଧିଆ ଏବେ ବଜାବଜରେ ଖୁବ୍ ପାରିଗଲାଣି । ତବଲା ଠେକା ତା ଆଙ୍ଗୁଠିରେ ଏବେ ଖୁବ୍ ସ୍ପଷ୍ଟ ହୋଇ ଉଠିଛି ।

ସଙ୍ଗୀତ ଆରମ୍ଭ ହେଲା ବୈଠକ ଘରେ । ସେଦିନ ଆଉ ଗୋବିନ୍ଦର ପାଠପଢ଼ା ସେଠି ହେଲାନି । ହେଲା ତଳ ଖଞ୍ଜାର ଗୋଟିଏ କୋଠରୀରେ । ବେଳେବେଳେ ଏହିପରି ବ୍ୟତିକ୍ରମ ଘଟିଥାଏ । ପ୍ରଣବ ତଳଖଞ୍ଜାରେ ଯାଇ ଗୋବିନ୍ଦକୁ ପାଠ ପଢ଼େଇବାରେ ପ୍ରାୟ ଅଭ୍ୟସ୍ତ ହୋଇଗଲାଣି । ବେଳେବେଳେ ତଳଖଞ୍ଜାରେ ପ୍ରଣବ ପାଇଁ ଚର୍ବ୍ୟ, ଚୋଷ୍ୟ, ପେୟର ମଧ୍ୟ ବ୍ୟବସ୍ଥା ହୋଇଯାଏ । ସେ ଗୋବିନ୍ଦର ମାଷ୍ଟର । ଗୋବିନ୍ଦ ଏ ଘରର ସବୁଠାରୁ ସ୍ନେହ ଓ ଆଦରର ପାତ୍ର । ସୁତରାଂ ପ୍ରଣବର ଆଦର ଆପ୍ୟାୟନ ପାଇଁ କାହାରି ଆପତ୍ତି ନ ଥାଏ ।

କିନ୍ତୁ ନିରଞ୍ଜନର ମନଭୁଲା ସଙ୍ଗୀତସାଧନା ବେଶି ଦୂର ଆଗେଇ ପାରିଲାନି । ଅଞ୍ଜଳି ଓ ରତ୍ନମଣିର ଆକୁଳ ଚିତ୍କାରରେ ସବୁ ସ୍ତବ୍ଧ ହୋଇଗଲା ।

ଚିତ୍କାର ପରେ ପରେ ଅଞ୍ଜଳି କାନ୍ଦିବା ଆରମ୍ଭ କରିଦେଇଛି । ଅରବିନ୍ଦକୁ ଗୃକର ହାତରେ ଚଳଖଞ୍ଜାକୁ ବଢ଼ା କରିଦେଲା । ଶ୍ରେଷ୍ଠ ପୁଅର କ'ଣ ହୋଇଯାଉଛି, ଗୋଡ଼ ଛନ୍ଦି ହାତ ମୁଠା ମୁଠା କରିଦେଉଛି । ଆଖିର ଡୋଳା ରହି ରହି ଓଲଟାଇ ପକଉଛି । ଅଞ୍ଜଳିର କାନ୍ଦଣାରେ ପଡ଼ିଆର ଲୋକମାନେ ମଧ୍ୟ ଉଠି ଆସିଲେ ।

ବୈଠକଘରୁ ଧାଇଁ ଆସି ନିରଞ୍ଜନ ଅବାକ୍ ହୋଇ ଅନେଇ ରହିଲା ପୁଅକୁ । ମାତ୍ର ପନ୍ଦର ଦିନର ଛୁଆ, ଦିନବେଳେ ଖୁବ୍ ଭଲ ଥିଲା, କଣ ହେଲା ହଠାତ୍ ? ପାଖରେ ନଇଁପଡ଼ି ନିରଞ୍ଜନ ଛୁଆଟିର ହୃତ୍ପିଣ୍ଡର ସ୍ପନ୍ଦନ ଦେଖିବାକୁ ଚେଷ୍ଟା କଲା । ତାର ଆଖିରେ ପଡ଼ିଲା ପୁଅ ଦେହର ଠାଏ ଠାଏ ମନ୍ଦା ମନ୍ଦା ନେଳିଆ ଦାଗ ଫୁଟି ଉଠିଛି । କେତୋଟି ସ୍ଥାନ ନାଳିଆ ନାଳିଆ ମଧ୍ୟ ହୋଇଯାଇଛି । ପୁଅର ଏପରି ଅବସ୍ଥା ଦେଖି ସେ ଭିତରେ ଭିତରେ ଭାଙ୍ଗି ପଡ଼ିଲା । କିନ୍ତୁ ବାହାରେ ଦୃଢ଼ତା ପ୍ରକାଶ କରି ଅଞ୍ଜଳି ପ୍ରଭୃତିଙ୍କୁ ଆଶ୍ୱାସନା ଦେବାକୁ ଚେଷ୍ଟା କଲା । ଅଞ୍ଜଳି ସେତେବେଳକୁ ତାର ଆରାଧ୍ୟ ଦେବତାଙ୍କ ପାଖରେ ଆରାଧନା ଆରମ୍ଭ କରିଦେଇଛି, ଯେମିତି ଯା' କିଛି ହେବ ସେଇଠୁ, ଏ ମଣିଷଙ୍କ ହାତରେ କିଛି ନାହିଁ ।

ଆଉ କାହା ହାତରେ କାମ ନ କରାଇ ନିଜେ ସାଇକେଲଟା ଧରି ନିରଞ୍ଜନ ଡାକ୍ତର ଡାକିବାକୁ ଚାଲିଗଲା । ପ୍ରାୟ ଦଶ ମିନିଟ୍ ପରେ ସେ ଡାକ୍ତର ଧରି ଆସି ପହଞ୍ଚିଲା । କିନ୍ତୁ ସେତିକି ସମୟ ଭିତରେ ପିଲାଟିର ଅବସ୍ଥା ଆହୁରି ଖରାପ ହୋଇ ଯାଇଛି । ରୋଗ ନିରୂପଣ କରି ନ ପାରିଲେ ମଧ୍ୟ ଡାକ୍ତର ଅଗତ୍ୟା ଚିକିତ୍ସା କରିବାରେ ଲାଗିଗଲେ । କେତୋଟି ଅମୋଘ ଔଷଧ ଓ ଇଞ୍ଜେକ୍ସନ ଦୈବ କୃପାରୁ ଆବିଷ୍କୃତ ହୋଇଛି । ତାହାରି ଉପରେ ଭରସା ରଖି ଡାକ୍ତର ନିଜର ଦକ୍ଷତା ଓ ଅଭିଜ୍ଞତା ଶ୍ରେଷ୍ଠ ପିଲାଟିର ଦେହ ଖଣ୍ଡିକରେ ପ୍ରୟୋଗ କରିବାରେ ଲାଗିଲେ । ପ୍ରାୟ ଅଧଘଣ୍ଟାଏ ଖଣ୍ଡେ ତାଙ୍କର ଏଭଳି ଚିକିତ୍ସାର ନାନା ପ୍ରକ୍ରିୟା ଚାଲିଲା, କିନ୍ତୁ ଶିଶୁଟି ଦେହରେ କୌଣସି ଅନୁକୂଳ ପରିବର୍ତ୍ତନ ଦେଖା ଗଲାନି । ସକାଳ ଯାଏ ଅପେକ୍ଷା କରିବାକୁ କହି ଅବଶେଷରେ ଡାକ୍ତର ବିଦାୟ ନେଇ ଗଲେ । ଡାକ୍ତରଟି ବୟସ୍କ, ଆଉ ଖୁବ୍ ଉତ୍ତମ ଲୋକ । ନିଜର ଅଭିଜ୍ଞତା ଓ ଚିକିତ୍ସାପ୍ରଣାଳୀ ଉପରେ ତାଙ୍କର ଖୁବ୍ ବିଶ୍ୱାସ ଥିଲେ ବି ଏ କ୍ଷେତ୍ରରେ ସେ ଯେମିତି ସନ୍ଦେହରେ ପଡ଼ି ଯାଇଛନ୍ତି । ସେଥିପାଇଁ ଗଲାବେଳେ ସେ କୌଣସି ଅର୍ଥ ଗ୍ରହଣ ନ କରି ଔଷଧପତ୍ରର ଦାମ ପରେ ନେବେ ବୋଲି କହି ଚାଲିଗଲେ । ନିରଞ୍ଜନର ଇଚ୍ଛା ହେଉଥାଏ, ଯେତେ ଟଙ୍କା ପଡୁ ପଛକେ, ତାଙ୍କୁ ଯେମିତି ଆଜି ରାତିଯାକ ଏଠି ଅଟକେଇ ରଖନ୍ତା । କିନ୍ତୁ ଡାକ୍ତରଙ୍କ ମନୋଭାବ ଦେଖି ସେ ଆଉ କିଛି କହିବାକୁ ସାହସ କରି ପାରିଲାନି । ତା ପରେ ଅଞ୍ଜଳିର ଆରାଧନା ଚାଲିଛି···ସେଥିରେ କ'ଣ ସଙ୍କଟର ଅବସାନ ହେବନି । ସବୁ ଭାବି ଶେଷକୁ ନୀରବ ରହିଲା ନିରଞ୍ଜନ ।

ପ୍ରାୟ ଘଣ୍ଟାକ ଭିତରେ ଶିଶୁର ଅବସ୍ଥାରେ ସାମାନ୍ୟ ଉନ୍ନତି ଦେଖାଗଲା କିନ୍ତୁ ପାଞ୍ଚ ମିନିଟ୍ ପରେ ପୁଣି ବ୍ୟତିକ୍ରମ । ଏହି ସମୟରେ ପୂର୍ବୋକ୍ତ ଡାକ୍ତର ହଠାତ୍

ଆସି ପହଞ୍ଚିଲେ । ତାଙ୍କ ସାଙ୍ଗରେ ଆଉ ଜଣେ ବଡ଼ ଡାକ୍ତରଙ୍କୁ ସେ ଆଣିଛନ୍ତି । ଉଭୟେ ମିଶି ଶିଶୁଟିକୁ ଖୁବ୍ ପରୀକ୍ଷା କରିବାକୁ ଲାଗିଲେ । ମାତ୍ର ଆଶାର କୌଣସି ସନ୍ଧାନ ପାଇଲା ଭଳି ସେମାନଙ୍କ ଭାବଭଙ୍ଗୀରୁ ଜଣାଗଲାନି । ବଡ଼ ଡାକ୍ତର ଜଣକ ପୂର୍ବବର୍ତ୍ତୀ ଡାକ୍ତରଙ୍କ ଔଷଧ ପ୍ରୟୋଗର ସବୁ ବିବରଣୀ ସଂଗ୍ରହ କଲେ । ତାଙ୍କର ଯେମିତି ବିଶ୍ୱାସ ହେଲା, ଚିକିତ୍ସା ଠିକ୍ ଧାରାରେ ଚାଲିଛି । ଯାହା ଔଷଧ ଦିଆହେଉଛି ସେଥିରେ ସକାଳ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେବ । ପରେ ଦୁଇଏକ ଅନ୍ୟ ଚିକିତ୍ସା ଚାଲିବ । ସମସ୍ତଙ୍କୁ ଆଶ୍ୱାସନା ଦେଇ ସେମାନେ ଶେଷରେ ଚାଲିଗଲେ । ନିରଞ୍ଜନ ବଡ଼ ଡାକ୍ତରଙ୍କୁ ପଚାଶଟି ଟଙ୍କା ବିଦାୟ ଦେଲା । ସେତକ ଚଟ୍‌କରି ପକେଟରେ ପକେଇ ଗମ୍ଭୀର ମୁହଁରେ ସେ ମଟରରେ ଚଢ଼ି ବାହାରିଗଲେ । ତାଙ୍କ ଭାବଭଙ୍ଗୀରୁ ଜଣାଗଲା, ଯେମିତି ଅବସ୍ଥା ଖୁବ୍ ସାଂଘାତିକ, ଆଉ ଏ ବିଦାୟ ଅତି ସାମାନ୍ୟ । ନିରଞ୍ଜନ କିନ୍ତୁ ନିରୁପାୟ ହୋଇ କେବଳ ଅନେଇ ରହିଲା ପଛରେ ।

ଏହା ଭିତରେ ଗୋବିନ୍ଦ ଆଉ ଅରବିନ୍ଦକୁ ଖୋଇ ପେଇ ଶୁଆଇ ଦିଆ ହୋଇଛି । ଅନ୍ୟ ସମସ୍ତେ ଅଭୁକ୍ତ ଆଉ ଅନିଦ୍ରା । ରାତି ପ୍ରାୟ ଗୋଟାଏ ବାଜିଗଲାଣି । ରାତିଟା କୌଣସି ମତେ କଟିଯାଉ, ସକାଳେ ନୂତନ ଚିକିତ୍ସା ଚାଲିବ—ନିରଞ୍ଜନ ମନେ ମନେ ଏହି ଆଶା ଧରି ବସିଛି । ଶିଶୁଟିର ପାଖରେ ବସିରହିଛି ଅଞ୍ଜଳି । ତା ପାଖକୁ ରତ୍ନମଣି । ନିରଞ୍ଜନ ବସି ରହିଛି ଟିକିଏ ଦୂରକୁ । ଟିକିଏ ଦୂର ଛଡ଼ାରେ ବସି ଚାକର କୁରୁପା ଢୋଳଉଛି । ଖବର ପାଇ ନିରଞ୍ଜନ ଅଫିସର ଦୁଇଜଣଯାକ କିରାଣୀ ମଧ୍ୟ ଆସିଛନ୍ତି । ପ୍ରଣବ ମଧ୍ୟ ରହିଯାଇଛି । ସମସ୍ତେ ବୈଠକଖାନାରେ ବସି ଶୁଭମୁହୂର୍ତ୍ତର ପ୍ରତୀକ୍ଷା କରୁଛନ୍ତି । କିନ୍ତୁ ସେ ମୁହୂର୍ତ୍ତ ଆଉ ଆସିଲାନି । ଠିକ୍ ରାତି ସାଢ଼େ ଗୋଟାଏ ବେଳେ ନିରଞ୍ଜନର ଘରଟି ବୁକୁଫଟା କରୁଣ ଚିତ୍କାର ଓ ଆକୁଳ କ୍ରନ୍ଦନର କେନ୍ଦ୍ର-ଭୂମିରେ ପରିଣତ ହେଲା । ଯେଉଁ ଶିଶୁର ଆଗମନ ପନ୍ଦରଦିନ ତଳେ ଏ ଘରେ ଅଭିନବ ଆନନ୍ଦର ପ୍ରଦୀପ ଜାଳି ଦେଇଥିଲା, ତାହା ଆଜି ହଠାତ୍ ନିର୍ବାପିତ ହୋଇଗଲା ।

ଚଟାଣରେ ମୁଣ୍ଡ ପିଟିଦେଲା ଅଞ୍ଜଳି । ନିରଞ୍ଜନ ମଧ୍ୟ ସାହସ ହରେଇ ଭେ ଭେ ହୋଇ କାନ୍ଦିଉଠିଲା । ରତ୍ନମଣିର କାନ୍ଦଣାର ସ୍ୱର ଗଗନ-ପବନ ମଥିତ କରି ଏକ ଅନନୁଭୂତ ଆର୍ତ୍ତ-କାତର ପରିସ୍ଥିତି ସୃଷ୍ଟି କରିଦେଲା ।

କିଛିକ୍ଷଣ ପରେ ନିରଞ୍ଜନ ଆଖି ଦିଟାକୁ ମେଲା କରି ଶିଶୁଟିକୁ ଚାହିଁରହିଲା ଅସ୍ୱାଭାବିକ ଭାବରେ । ତା'ପରେ ତାକୁ ଅତି ଧୀରେ ଟେକି ଆଣିଲା କୋଳକୁ । ଘର-ସାରା ବୁଲି ବୁଲି କାନ୍ଥରେ ସଜ୍ଜିତ ହୋଇଥିବା ସବୁ ଦେବ-ଦେବୀଙ୍କ ଛବିକୁ କରୁଣ ଆଖିରେ ଚାହିଁଲା । କୋଳରେ ପୁଅ ଯେମିତି ତାର ଶୋଇଛି, ଏଇ ଦେବତାମାନଙ୍କ ଆଶୀର୍ବାଦରେ ସେ ପୁଣି ଜାଗିଉଠିବ । କ୍ଷଣକ ପରେ ଗୋଟାଏ ବିରାଟ ଚିତ୍କାର କରି ସେ ହସିଉଠିଲା । ତାପରେ ମୃତ ଶିଶୁଟିକୁ ଆଣି ଶୁଆଇଦେଲା ଝୁଲାରେ । ପାଗଳ ପରି ଝୁଲାଟାକୁ ବସି ଦୋହଲାଇବାରେ ଲାଗିଲା । ନାରୀକଣ୍ଠର କରୁଣ କ୍ରନ୍ଦନ ସେପର୍ଯ୍ୟନ୍ତ ଅବିରାମ ଗତିରେ ଚାଲିଛି । ରତ୍ନମଣି ଦେଖିଲାଣି, ଅଞ୍ଜଳିର ମୁଣ୍ଡ ଫାଟି ରକ୍ତ ବୋହି-ବାରେ ଲାଗିଛି; କିନ୍ତୁ ସେ ନିରୁପାୟ ହୋଇ ଅନେଇ ରହିଛି କେବଳ ।

## ॥ ୧୯ ॥

ସ୍ତେଟ ପୁଅଟି ମରିଯିବା ଦିନଠାରୁ ଅଞ୍ଜଳି ପ୍ରାୟ ବୋକା ପାଲଟିଗଲା । ପିଲାଟିର ମୃତ୍ୟୁ ତା ପକ୍ଷରେ ଯେପରି ବିରାଟ ଏକ ବିପର୍ଯ୍ୟୟ ସୃଷ୍ଟି କରି ଦେଇଗଲା । ସ୍ୱାମୀର ମାତ୍ର, ନିଷ୍ଠା, କର୍ତ୍ତବ୍ୟପରାୟଣତା ପାଳନ କରି ଚଳିବା ତା ପକ୍ଷରେ ଆଉ ପ୍ରାୟ ସମ୍ଭବ ହେଲାନି । ଜଳକା ପରି ଅନେକ ସମୟରେ ଚାହିଁରହେ ଅରବିନ୍ଦକୁ । ଯେମିତି ସବୁ ମାୟା, ଗୋଟାଏ ବୁଦ୍‌ବୁଦ ଭଳି ଏହି ଶିଶୁର ବିକାଶ, କିଛି ସ୍ଥାୟୀ ନୁହେଁ । ଚମକିପଡେ ପର ମୁହୂର୍ତ୍ତରେ । ଅରବିନ୍ଦକୁ ଖୁବ୍ ଜୋରରେ ଜାକିଧରେ ନିଜର ବକ୍ଷରେ । ନା ନା...ମାୟା ନୁହେ...ସେ ଏଇ ଦେହର ଅଂଶ । ପୁଣି ଭାବେ, ନା ନା...ତା ଦେହର ଅଂଶ ସେଇ ସ୍ତେଟ ଛୁଆଟି...ସେ ଗୋଟିଏ ପାଣି ଫୁଟୁକା ଭଳି କୁଆଡେ ମିଳିଯାଇଛି । ଏ ତା'ର ବାପାର ଅଂଶ । ପରମ ପବିତ୍ର ଲୋକ ତାର ବାପା...ତାରି ଅଂଶ । ବାପାର ମନ ତାର ବଜ୍ର ଭଳି କଠିନ... ସେଇ ବାପର ପୁଅ ଅରବିନ୍ଦ...ସେ ବଜ୍ର ହେଇ ରହିବ...। ଭାବି ଭାବି ଅରବିନ୍ଦକୁ ଧରି ଜୋର୍‌ରେ ଚୁମା ଦିଏ । ଅରବିନ୍ଦକୁ କୋଳରେ ଧରି ଘୂରିଆଡ଼େ ଚନ୍ମ ଚନ୍ମ କରି ବୁଲେ । କୋଉଠି ଯେମିତି ଶୋଇପଡ଼ିଛି ତାର ସାନ ପୁଅଟି । ହଜିଯାଇଛି । ତାକୁ ଖୋଜି ଆଉ ବାହାର କରିହବନି ? ଚାଲିଗଲା ଦାଣ୍ଡଦୁଆର ମୁହଁକୁ । ଏଇବାଟେ ସେ ଦିନ ତାକୁ ନେଇ ଚାଲିଗଲେ । କୁଆଡ଼େ ନେଲେ ? କୋଉଠି ରଖିଲେ ତାକୁ ? କୋଉଠି ରହିଲା ସେ ଆଜିଯାଏ ? ଖରା କାକରରେ କୋଉଠି ରହିଛି ? କ'ଣ ଖାଉଛି ?

ଆଖିରେ ତାର ପୁଅର ଗୋରା ଦେହର ମାଂସ ପିଣ୍ଡୁଳାଟି ନାଚଉଠିଲା । ତାର ଆଖି, ନାକ, କଳା ବାଳକେରାକ ସବୁ ଗୋଟି ଗୋଟି ହୋଇ ଖେଳିଗଲା । ଆଉ ଚାହିଁପାରିଲାନି ସେ ଆଗକୁ । ଯେମିତି ନିପଟ ଶଠତା ଧରି ତା ମୁହଁକୁ ଚାହିଁଛି ଏଇ ପୃଥିବୀ । ମୁହଁ ବୁଲେଇ ଫେରି ଠିଆ ହେଲା ଖଞ୍ଜା ଆଡ଼କୁ । ହଠାତ୍ ଆଖି ପଡ଼ିଲା ତାର ଦ୍ୱାରବନ୍ଧ ଉପରେ । ନବଗ୍ରହର ଚିତ୍ର । ଅନେଇ ରହିଲା ନିର୍ନିମେଷ ଆଖିରେ । ଝରି ଝରି କରି ଲୁହ ବୋହିଗଲା ତାର ଆଖିରୁ ।

ନିରଞ୍ଜନ କେତେକ ଭାବରେ ପ୍ରକୃତିସ୍ଥ ହୋଇଥିଲେ ମଧ୍ୟ ପୁତ୍ରଶୋକ ଭୁଲିନି । ସେଥିରେ ଅଞ୍ଜଳିର କାତରତା ତାକୁ ଅଧିକ ବିଭ୍ରାନ୍ତ କରିଦେଇଛି । ତାର ଆଶ୍ରୟ ହେଇଛି ଗୋବିନ୍ଦ । ଯେମିତି ଅରବିନ୍ଦ ଉପରେ ତାର ଭରସା ନାହିଁ । ଦେବତାର ଆଶୀର୍ବାଦ ବିରୁଦ୍ଧରେ ଅଭିଯାନ କରି ଯେମିତି ଗୋବିନ୍ଦ ଛୁଟିଗଲା ହେଇଛି । ଭିକ୍ଷା ଅଶ୍ରେୟ ନୁହେଁ । ସେହି ଅଶ୍ରେୟତାକୁ ପଦାଘାତ କରିଛି ଗୋବିନ୍ଦର ବିକାଶ । ଗୋବିନ୍ଦର ଜନ୍ମ ପାଇଁ ଯଜ୍ଞ ହେଇନି, ସାଧନା ହେଇନି; କାହାରିଠାରେ ଭିକ୍ଷା କରାଯାଇନି । ସେ ମନୁଷ୍ୟ ପରି ଆସିଛି ପୃଥିବୀକି । ବଞ୍ଚିବ ମନୁଷ୍ୟ ପରି । ଗୋବିନ୍ଦର କଥା ଭାବି ସେ ଖୁବ୍ ଗର୍ବ ଅନୁଭବ କରେ । ଅରବିନ୍ଦକୁ ଅନେଇ ଅନେଇ ତା ଭିତରେ ଦୟା ଆସେ । ସହସ୍ର ଭିକ୍ଷାରେ ଭରିଛି ଏଇ ଥାଳ । ତଥାପି ଗୋବିନ୍ଦ ଭାଇଙ୍କର ଦାୟାଦ

ଆଉ ଅରବିନ୍ଦ ତାହାର···। ଅରବିନ୍ଦ ଭିତରୁ କେମିତି ଭିକ୍ଷାର ସେଇ ଲାଞ୍ଛନାଗୁଡ଼ାକୁ କାଢ଼ିଦେବାକୁ ହେବ, ଅନେକ ସମୟରେ ସେ ତାହାର ଚିନ୍ତା କରେ ।

ରତ୍ନମଣି ଏ ଘଟଣାରେ କମ୍ ମର୍ମାହତ ହୋଇନି । ଗୋଟି ଗୋଟି ହୋଇ ଶିଶୁଙ୍କର ଆବିର୍ଭାବରେ ସେ ଯେମିତି କ୍ରମେ ଆତ୍ମହରା ହୋଇ ଉଠୁଥିଲା । ଯେଉଁ ଆନନ୍ଦର ସଂସାର ତାର ବିନଷ୍ଟ ହୋଇଛି, ତା ଭିତରେ ତାହାର ସନ୍ତାନର ଉଦଗ୍ର ବ୍ୟାକୁଳତା ଭରି ରହିଥିଲା । ଜନ୍ମଲୀଳାର ବିକାଶ ଭିତରେ ସେ ଦେଖୁଥିଲା ତାହାର ସ୍ୱପ୍ନ । ତାହା ଏବେ ଆଂଶିକ ନଷ୍ଟ ହୋଇଗଲା । କିନ୍ତୁ ଅଞ୍ଜଳିର ମତି ବରାବର ଧର୍ମରେ ରହିଛି··· ତାର ପୁଣି ଉନ୍ନତି ହବ···ଅଞ୍ଜଳିର ପୁଣି ପିଲା ହବ—। ଏ ବିଶ୍ୱାସ ରତ୍ନମଣିର ବଦ୍ଧମୂଳ ହୋଇ ରହିଛି । ସେଥିପାଇଁ ସେ ଗୃହେଁ, ଅଞ୍ଜଳି ସବୁ ଦୁଃଖ ଭୁଲିଯାଇ ପୁଣି ସ୍ୱାମୀସୋହାଗିନୀ ହେଉ···ଦିନ ପୁଣି ଫେରିଆସିବ । ଝିଅ କ'ଣ ଆଉ ମରିବେନି··· କିନ୍ତୁ ସେ କେଡ଼େ ସୁନ୍ଦର ପୁଅଟିଏ ହୋଇଥିଲା, ଯେମିତି ମଲା ପୁଅ ମଧୁସୂଦନ । ଆଖିରୁ ଲୁହ ପୋଛିଦିଏ ରତ୍ନମଣି । ·

ଦିନେ ଦିନେ ଅଞ୍ଜଳିକି ଧରି ବାସ୍ନାତେଲ ବୋଳିଦେଇ ତାର ମୁଣ୍ଡ ବାନ୍ଧି-ଦେବାକୁ ଚେଷ୍ଟା କରେ ରତ୍ନମଣି । ସେତେବେଳେ ଅଞ୍ଜଳି କୌଣସି ଆପତ୍ତି କରେନା । ପ୍ରସାଧନ ପରେ ଖୁବ୍ ଲୋଭନୀୟ ଦିଶେ ଅଞ୍ଜଳିର ମୁହଁ । ଆଗରେ ତାର ଦର୍ପଣ ଦେଖାଏ ରତ୍ନମଣି । ପିଠିରେ ତାର ନାଉ ହୋଇ ଖେଳୁଥାଏ ଅରବିନ୍ଦ । ଅଞ୍ଜଳି ବହୁ କଷ୍ଟରେ ଶୁଖିଲା ହସଟିଏ ହସିଦିଏ । କିନ୍ତୁ ଅଞ୍ଜଳିର ସେ ପ୍ରସାଧନ ପରିପାଟୀ ବେଶୀ ସମୟ ରହେନା । ରତ୍ନମଣି ଦେଖେ ପ୍ରାୟ ପାଞ୍ଚ ମିନିଟ ପରେ ବାଳସବୁ ତାର ମୁକୁଳା ହୋଇ ଝୁଲୁଛି । ଅଳ୍ପ ସମୟ ଭିତରେ ସଫା ବାସି ଲୁଗାଟା ମଇଳା ହୋଇ-ଗଲାଣି । ଅଞ୍ଜଳିର ମନ ଫେରାଇବା ପାଇଁ ରତ୍ନମଣି ପୁଣି ନାନା ଉପାୟ ଚିନ୍ତାକରେ, କିନ୍ତୁ ସହଜରେ କିଛି କୂଳ କିନାରା ପାଏନା ।

ଏହିପରି ଅବସ୍ଥା ଭିତରେ ତିନି ମାସ ଗତ ହୋଇଗଲା । କିନ୍ତୁ ଅଞ୍ଜଳିର ସେଇ ଏକ ଭାବ, ମନ ତାର କେଉଁଥିରେ ହେଲେ ବଦଳିଲାନି । ବିଶେଷ କାର୍ଯ୍ୟବ୍ୟସ୍ତ ରହି ଏହା ଭିତରେ ନିରଞ୍ଜନ ଅତୀତର ସବୁ ଘଟଣାକୁ ଗୋଟାଏ ଦୁଃସ୍ୱପ୍ନ ଭଳି ଭୁଲି ଯିବାକୁ ଚେଷ୍ଟାକରି କେତେକାଂଶରେ ସଫଳ ହୋଇଛି । ମାତ୍ର ସେ ବିବ୍ରତ ହୋଇ ପଡ଼ୁଛି ଅଞ୍ଜଳି ଲାଗି । ଯେମିତି ବୃନ୍ତରୁ ଖସି ଝଡ଼ରେ ଉଡ଼ି ଉଡ଼ି ଗୋଟିଏ ଚମ୍ପାଫୁଲର ଯାହା ଦଶା ହୁଏ, ଅଞ୍ଜଳିର ଅବସ୍ଥା ପ୍ରାୟ ସେହିଭଳି ହୋଇଛି । ଅଞ୍ଜଳିକୁ ଦେଖି ନିରଞ୍ଜନର ଖୁବ ଦୟା ହୁଏ । ବିଧାତାକୁ ପାଇଲେ ସେ ଯେମିତି ତାର କାନମୋଡ଼ି ଦିଅନ୍ତା, ଆଉ ତାକୁ ଆଦେଶ ଦେଇ ଅଞ୍ଜଳି କୋଳରେ ଶିଶୁଟିଏ ପୁନର୍ବାର ଜନ୍ମବିଧାନ କରିଦିଅନ୍ତା । ପାଖକୁ ଲାଗିଆସି ବେଳେ ବେଳେ ଅଞ୍ଜଳିକି କ'ଣ କହିବାକୁ ଚେଷ୍ଟା କରେ, ପାରେନା । ଅଞ୍ଜଳିକି ଭିଡ଼ିଧରି ପୂର୍ବର ସେଇ ନୀଡ଼ ଭିତରକୁ ଫେରିଯାଇ ସଂସାରକୁ ଭୁଲିଯିବାକୁ ମଧ୍ୟ ସେ ଇଚ୍ଛାକରେ, କିନ୍ତୁ ସାହସ ପାଏନା । ଧିରେଧିରେ ଖୁବ୍ ଦୂରକୁ ଚାଲିଯାଉଛି ଯେମିତି ଅଞ୍ଜଳି । ପଛରୁ ନିରଞ୍ଜନ କେବଳ ହତାଶ ହୋଇ

ଅନେଇ ରହେ । ତାର ସ୍ତ୍ରୀ, ତାର ପୁଅ, ସମସ୍ତେ କିନ୍ତୁ ଦୂରକୁ ଦୂରକୁ ଚାଲିଯାଉ-ଛନ୍ତି ! ଧରି ହୁଏନା କାହାକୁ । ଭାଙ୍ଗିପଡ଼େ ନିରଞ୍ଜନ ।

ଜୀବନର ଗତି ତା' ହେଲେ କ'ଣ ? କର୍ମ ! କେତେ କାମ ପୁଣି ସିଏ କରିବ ? କାମ କରି କରି ଫେରିଆସେ ଘରକୁ—ଯେଉଁ ଘର ଦିନେ କେବଳ ଆନ-ନ୍ଦର ନୀଡ଼ ଥିଲା, ସେଠିକି ସେ ଆଜି ଆଉ କାହିଁକି ଫେରିବ ? କିନ୍ତୁ ସ୍ୱପ୍ନଂଚାଳିତ ହେଇ ଗୋଡ଼ ଦି'ଟା ତାର ଚାଲି ଚାଲି ଆସି ଘର ଦୁଆର ଆଗରେ ଲାଗିଯାଏ । କାନ୍ଧକୁ ଧରି ପିଣ୍ଡ ଉପରେ ଅରବିନ୍ଦ, "ବା ବା" କହି ଚାଲିଆସେ । ତାହାର ଦାୟାଦ ଏହି ଶିଶୁଟି । ପୃଥିବୀରେ ଏହି ଶିଶୁଟି ତାହାର ସ୍ମୃତି ରକ୍ଷା କରିବ । ଅରବିନ୍ଦକୁ କୋଳ କରିନିଏ ନିରଞ୍ଜନ । ନିତି ନିତି ନୂଆ ନୂଆ ଖେଳନା ଆଣି ଘର ଭର୍ତ୍ତି କରିଦିଏ । ସେଥିରୁ କେତୋଟି ଖେଳନା ମଧ୍ୟ ଅରବିନ୍ଦ ଭାଙ୍ଗିଦେଇ ସାରିଲାଣି । ଭଙ୍ଗା ଖେଳନାଗୁଡ଼ାକ ନିରଞ୍ଜନ ଆଖିରେ ବିଚିତ୍ର ଭାବନା ଧରି ଫୁଟିଉଠେ । ତା'ହେଲେ ତାର ସେଇ ଗ୍ରେଟ ଛୁଆଟିକୁ ଏଇ ଖେଳନା ପରି କିଏ କ'ଣ ଭାଙ୍ଗିଦେଲା ? ତା ପରେ ଖେଳନାଗୁଡ଼ାକୁ ନ ଭାଙ୍ଗିବାକୁ ସେ ଅରବିନ୍ଦକୁ ବୁଝାଇବାରେ ଲାଗେ । ପର ମୂହୂର୍ତ୍ତରେ ଅରବିନ୍ଦ ହୁଏତ ଆଉ ଗୋଟାଏ ଖେଳନା ଭାଙ୍ଗିଦିଏ । ନିରଞ୍ଜନ ନିରୁପାୟ ହୋଇ ଅନେଇ ରହେ ନିଜର ପୁଅକୁ । ସ୍ରଷ୍ଟା ବୋଲି ଯଦି କେହି ଅଛି, ତା ହେଲେ ସେ ଏଇ ଅରବିନ୍ଦ ଭଳି ଗୋଟିଏ ଶିଶୁ । ସେ ଗଢେ ଆଉ ଭାଙ୍ଗେ । ତାର ଭାଙ୍ଗିବାରେ ଅନ୍ୟର ଯେ କେତେ ଦୁଃଖ ହୁଏ, ସେ ଆଦୌ ସେ କଥା ଜାଣେ ନା ।

ଏସବୁ ଯେତେ ଚିନ୍ତା କଲେ ବି ନିରଞ୍ଜନ କିନ୍ତୁ ଅଞ୍ଜଳିକି କିଛି କହିପାରେନା । ରାତିରେ ଏକାଠି ଶୋଇ ଶୋଇ ଅଞ୍ଜଳିର ମୁହଁ ଉପରେ ମୁହଁ ରଖି ତାକୁ କେତେ କଥା କହିଯିବାକୁ ନିରଞ୍ଜନର ଇଚ୍ଛା ହୁଏ । କିନ୍ତୁ କାର୍ଯ୍ୟରେ କିଛି କରି ହୁଏନା । ଅଞ୍ଜଳି ବିଲ୍‌କୁଲ୍ ବଦଳି ଯାଇଛି । ଯେମିତି ଅରବିନ୍ଦ ଉପରେ ବି ତାର ଆଉ ଆସ୍ଥା ନାହିଁ । କାନ୍ଥର ଦେବ ଦେବୀ ଚିତ୍ରଗୁଡ଼ିକରେ ବହୁତ ଧୂଳି ଜମିଗଲାଣି, ତେଣିକି ମଧ୍ୟ ଅଞ୍ଜଳିର ଆଉ ନିଘା ନାହିଁ । ଯେମିତି ଅନାସକ୍ତ ଆଉ ନିର୍ବିକାର ଭାବ । ନିରଞ୍ଜନ ସମ୍ପୂର୍ଣ୍ଣରୂପେ ନିରାଶ ହୋଇପଡ଼େ ।

ଶେଷକୁ ନିରଞ୍ଜନ ସ୍ଥିର କଲା, ଅଞ୍ଜଳିର ସ୍ଥାନ ପରିବର୍ତ୍ତନ ଦରକାର । କିଛି ଦିନ ସେ ଯାଇ ରହୁ ତାର ବାପଘରେ କିମ୍ବା ତାର ଭାଇ ପାଖରେ, ପୁରୀରେ । ସେଠି ଅବକାଶ ବିଭାଗର ଅଫିସରେ ଅଛି ତାର ଭାଇ । ହଁ, ଧୁରୀକି ଯାଉ । ରତ୍ନମଣି ମଧ୍ୟ ସେ ପ୍ରସ୍ତାବକୁ ସମର୍ଥନ କଲା । ଅବଶେଷରେ ତାହା ହିଁ ହେଲା । ଅଞ୍ଜଳିର ଭାଇ ନିରଞ୍ଜନଙ୍କ ଅନୁରୋଧ ରଖି ତାକୁ ଆସି ପୁରୀକି ନେଇଗଲା ।

ଘରେ ରହିଲେ ରତ୍ନମଣି ଆଉ ଗୋବିନ୍ଦ, ନିଜେ ନିରଞ୍ଜନ, ଆଉ ଚାକର କୁରୁପା । ସନ୍ଧ୍ୟାରେ ଆସନ୍ତି ଗୋବିନ୍ଦର ମାଷ୍ଟର ପ୍ରଣବ ବାବୁ ।

ଏଣିକି ଦିନର ଅଧିକାଂଶ ସମୟ ନିରଞ୍ଜନ ପଦାରେ ରହେ । ସନ୍ଧ୍ୟାରେ ଫେରି ଗାଉଣା ବାଜଣାରେ କଟେଇଦିଏ ଅନେକବେଳ । ନିଧିଆ ଦିନେ ଦିନେ

ତାବଲା ପିଟି ପିଟି ହାଲିଆ ହେଇଯାଏ । ତଥାପି ନିରଞ୍ଜନର ସଙ୍ଗୀତଚର୍ଚ୍ଚା ସରେନା । ଶେଷକୁ ରତ୍ନମଣିର ଆବଦାର୍‌ରେ ସଙ୍ଗୀତ ଆସର ବନ୍ଦ ହୁଏ ।

କିଛିଦିନ ପରେ ବ୍ୟବସାୟ କାମରେ ନିରଞ୍ଜନ ବାହାରିଗଲା କଟକରୁ ଦୂରକୁ । ବିଭିନ୍ନ ଜାଗାରେ ବିଭିନ୍ନ ବିଷୟର ସମାଧାନ କରି ଆସିବାକୁ ହେବ । ପ୍ରାୟ ପନ୍ଦର ଦିନ ଲାଗିଯିବ । ସେହି ଅନୁସାରେ ନୂଆବୋଉକୁ ସବୁକଥା ଜଣାଇ ଦିନେ ନିରଞ୍ଜନ ଜନତା ଗାଡ଼ି ଧରି ବାହାରିପଡ଼ିଲା ପଦାକୁ ।

କିନ୍ତୁ ନିରଞ୍ଜନ ବେଶିଦିନ ବାହାରେ ରହିପାରିଲାନି । ତାର ଖାଲି ମନେହେଲା, ଗୋବିନ୍ଦ ଯେମିତି ଘରି ତାକୁ ଖୋଜୁଛି । ସାତଟି ଦିନ ପରେ ସେ କଟକ ଅଭିମୁଖରେ ଫେରିଲା । ଓଃ, କଟକ ଷ୍ଟେସନ ! ଯେମିତି ଅତି ପରିଚିତ ନିଜର କ୍ୟାନ୍‌ଭାସ୍ ଇଳଚେୟାର ଖଣ୍ଡିକ । ଗାଡ଼ିରୁ ଓହ୍ଲେଇ ମନଇଚ୍ଛା ଥରେ ଷ୍ଟେସନ ସାରା ବୁଲିଗଲା ନିରଞ୍ଜନ । ଆଗରେ ଗଲେ ଦୁଇ ତିନୋଟି ଦକ୍ଷିଣୀ ଯୁବତୀ । ବେଣୀରେ ଚମ୍ପାଫୁଲର ଗୁଚ୍ଛ । ସନ୍ଧ୍ୟାର ବିଜୁଳି ଆଲୁଅ ଭିତରେ ସେମାନଙ୍କର ବେଶପରିପାଟୀ ଖୁବ୍ ସୁନ୍ଦର ଦିଶୁଚି । ରୁମାଲ କାଢ଼ି ମୁହଁ ପୋଛିଲା ନିରଞ୍ଜନ । କେଉଁ ଦୀର୍ଘ କାଳ ତଳେ ରୁମାଲରେ ବାସନା ଅତର ମାରି ଦେଇଥିଲା ଅଞ୍ଜଳି । ସବୁ ଉଡ଼ିଗଲାଣି । ପୁଣି ଥରେ ରୁମାଲ ବୁଲେଇ ଆଣିଲା ମୁହଁରେ ।

ଚାଲି ଚାଲି ନିରଞ୍ଜନ ଷ୍ଟେସନ ବାହାରକୁ ଆସିଲା । ଖଣ୍ଡେ ରିକ୍‌ସା ଉଦ୍ଦେଶ୍ୟରେ ଅନେଇଲା ଆଗକୁ ।

"ଆରେ ନିରଞ୍ଜନ ବାବୁ ! ନମସ୍କାର, ନମସ୍କାର !"

ପରିଚିତ ସ୍ୱର । ନିରଞ୍ଜନ ଦେଖିଲା, ଆଗରେ ଆସି ପହଞ୍ଚିଛି ସରସୀ । ଓଠରେ ହସ । ଦେହରେ ମଧ୍ୟ ମାଂସର ସେହି ଉଚ୍ଛ୍ୱାସ । ହାତ ଉଠେଇ ନିରଞ୍ଜନ ପ୍ରତିନମସ୍କାର କଲା ।

"ମୁଁ ଆପଣଙ୍କର ସବୁ ଘଟଣା ଜାଣିଛି । ମୁଁ ଯେଉଁଦିନ ଆପଣଙ୍କ ପାଖକୁ ଗଲି ସେଇଦିନ ବିପର୍ଯ୍ୟୟ ଘଟିଲା । ସେଥିଲାଗି ଆଜଯାଏ ମୁଁ ହାଲୁବୁଦେଇ ରହିଛି । ଆଜି ପୁଣି ଦେଖା । ମୁଁ ଆଉ ଯିବିନି । ଏଥର ଆପଣ ଆମ ଘରକୁ ଆସନ୍ତୁ । ମୋ କ୍ୱାଟରଟା ହେଇ ଅଳ୍ପ ଦୂରରେ ।"

ସବୁସାକ ସରସୀର କଥା । କଥା କହିବାର ଭଙ୍ଗୀ ମଧ୍ୟ ଅପୂର୍ବ । ଗୋଟାଏ ମାଦକତା ଅଛି । କିନ୍ତୁ ନିରଞ୍ଜନ ନୀରବ । ସେ ଅନୁଭବ କଲା ତା ହାତକୁ ଭିଡ଼ି ନେଇ ଯାଉଚି ସରସୀ ଗୋଟାଏ ସାଇକେଲ ରିକ୍‌ସା ଉପରକୁ । କିଛି ହେଲେ ସେ ବାଧା ଦେଇ ପାରିଲାନି । ନୀରବରେ ଯାଇ ବସିଲା । ବଡ଼ ଚମଡ଼ା ବ୍ୟାଗ୍ ଖଣ୍ଡିକ ରଖିଲା ଆଗରେ । ଦୁହିଁଙ୍କର ଦେହ ଅନେକ ସ୍ଥଳରେ ଲାଗିଯାଇଛି ।

ପୁଣି ସରସୀର କଥା—"ଅଞ୍ଜଳି ପୁଣି ଯାଇଚି, ମୁଁ ଜାଣେ, ବିଜୁଭାଇଙ୍କ ପାଖରେ ଅଛି । ଆପଣ ଆଉ କିଛି ଖବର ପାଇଛନ୍ତି ?"

ନିରଞ୍ଜନ ମୁହ ଟେକିଲା । ସରସୀ ଲିପ୍‌ଷ୍ଟିକ୍ ଘଷିଛି ଓଠରେ ।

"ନା, ମୁଁ କିଛି ଖବର ପାଇନି । ସାତ ଦିନ ହେଲା ମୁଁ କଟକରେ ନ ଥିଲି । ହୁଏତ ସ୍ୱା ଭିତରେ ଚିଠିପତ୍ର କିଛି ଆସିଥିବ…"

"ମୁଁ କାଲି ବଜୁଭାଇଙ୍କଠୁ ଚିଠି ପାଇଚି, ଗୋଟାଏ ଆଶ୍ଚର୍ଯ୍ୟ ଖବର ।" ରିକ୍ସା ଚାଲିଚି, ସରସୀ ଉତ୍‌ଫୁଲ୍ଲ ହୋଇ କହିଉଠିଲା, "ଅଞ୍ଜଳି ସ୍ୱା ଭିତରେ ପାଗଳ ହୋଇ ଯାଇଥିଲା…"

ସରସୀର ହାତଟାକୁ ମୁଠେଇ ଧରିଲା ନିରଞ୍ଜନ, ଆଖିରେ କେବଳ ପ୍ରଶ୍ନ । କିଛି ବିପଦର ଆଶଙ୍କା କରି ସରସୀ ହଠାତ୍ ଶେଷ ଧାଡ଼ିଟା କହିବସିଲା, "କିନ୍ତୁ ସେ ହଠାତ୍ ଭଲ ହୋଇଯାଇଚି । ଦିନେ ସମୁଦ୍ରକୂଳରେ ବୁଲୁ ବୁଲୁ ସେ ସମୁଦ୍ରକୁ ଡେଇଁ-ପଡ଼ିଲା । ତାପରେ ତାକୁ ବହୁ କଷ୍ଟରେ ପାଣିରୁ ଉଦ୍ଧାର କରାଗଲା । କିନ୍ତୁ ଆଶ୍ଚର୍ଯ୍ୟ କଥା, ତା ପରଠଉଁ ସେ ସମ୍ପୂର୍ଣ୍ଣ ଭଲ ହୋଇଯାଇଚି ବୋଲି ବଜୁଭାଇ ଲେଖିଛନ୍ତି ।"

ନିରଞ୍ଜନ ଉଦ୍‌ଗ୍ରୀବ ହୋଇ ପଚାରିଲା, "ଏସବୁ ସତ ? ଅଛି ଆପଣଙ୍କ ପାଖରେ ସେ ଚିଠି ?"

"ଆରେ, ମୁଁ ଆଉ କ'ଣ ମିଛରେ କହୁଚି !"

ଉଭୟେ ଆସି ସରସୀର ଘରେ ପହଞ୍ଚିଲେ । ଚିଠି ଦେଖିଲା ନିରଞ୍ଜନ । ସବୁ କଥା ସତ ।

ମୁହଁରୁ ଝାଳ ପୋଛି ପୋଛି ଗୋଟାଏ ସୋଫାରେ ବସିପଡ଼ିଲା ନିରଞ୍ଜନ । ତାର କିଛି ପିଇବାକୁ ଇଚ୍ଛା ହେଉଥିଲା ; କିନ୍ତୁ ତା ପରିବର୍ତ୍ତରେ ଗୋଟାଏ ସିଗାରେଟ୍ ବସି ଟାଣିଲା । ତେବେ ଭଲ ହୋଇଯାଇଚି ଅଞ୍ଜଳି । ସ୍ୱସ୍ତିର ନିଃଶ୍ୱାସ ଗୋଟିଏ ବାହାରିଗଲା ।

ଏହି ସମୟରେ ଗ୍ଲାସ୍‌ରେ ସରବତ୍ ଧରି ପହଞ୍ଚିଲା ସରସୀ । ନିରଞ୍ଜନ ତା ହାତରୁ ଗ୍ଲାସଟା ଛଡ଼େଇ ଢକ୍ ଢକ୍ କରି ପିଇଗଲା । ତା ପରେ ସୋଫା ଉପରକୁ ଗୋଡ଼ ଟେକି ସେ ଲମ୍ବ ହୋଇ ଶୋଇପଡ଼ିଲା । ମିନିଟିକ ଭିତରେ ନିଦ ଘୋଟିଗଲା ଆଖିରେ ।

ପ୍ରାୟ ଦଶଟାବେଳେ ସରସୀ ଡାକରେ ନିରଞ୍ଜନ ଉଠି ବସିଲା । ଆଗରୁ ଟେବୁଲରେ ରାତ୍ରି ଭୋଜନର ଆୟୋଜନ ହୋଇଚି । ଆଗରେ ଧନଞ୍ଜୟ ବସିଚି । କରମର୍ଦ୍ଦନ କରି ହାତଟାକୁ ତାର ଖୁବ୍ ଜୋର୍‌ରେ ଦୋହଲାଇ ଦେଲା ନିରଞ୍ଜନ । ଖାଇସାରି ସେ ଏଗାରଟା ବେଳେ ଫେରିଲା ଘରକୁ ।

ସରସୀର କ୍ୱାର୍ଟରଠାରୁ ନିରଞ୍ଜନ ଘର ପ୍ରାୟ ଦୁଇମାଇଲ ବାଟ । ପ୍ରଧାନ ରାସ୍ତା ଭାଙ୍ଗି ଗୋଟିଏ ଗଳି ଭିତରେ ଘର । ଗଳି ମୁଣ୍ଡରେ ସାଇକେଲ ରିକ୍ସାର ବଣ୍ଟା ନିଭିଗଲା । ତେଲଙ୍ଗା ରିକ୍ସାବାଲା । କୋଉଦିନ ପୁଲିସର ଚୁଲୁକ୍ ବାଜିଚି ପିଠିରେ, ସେଥିଲାଗି ପୁଲିସର ନାମଗନ୍ଧ ନ ଥିବା ଗଳିରେ ମଧ ସେ ବିନା ଆଲୁଅରେ ରିକ୍ସା ଚଳେଇବାକୁ ମଙ୍ଗିଲାନି । ବ୍ୟାଗଖଣ୍ଡିକୁ କାନ୍ଧରେ ବସାଇ ନିରଞ୍ଜନ ଘରଯାଏ ଚାଲି ଚାଲି ଆସିଲା ।

ଦ୍ୱାର ମୁହଁରେ ପହଞ୍ଚି ନିରଞ୍ଜନ ଆଶ୍ଚର୍ଯ୍ୟ ହେଲା । ଘରଆଡ଼ ଶୂନଶାନ । ଗୋବିନ୍ଦ ପଢ଼ୁନି, ତା ମାଷ୍ଟରର ପାଟି ଶୁଣାଯାଉନି । ନୂଆବୋଉ ଆଉ କୁରୁପା କ'ଣ କରୁଛନ୍ତି ? କାହାରି ହେଲେ ପାଟି ଶୁଭୁନି ! କ'ଣ ହେଲା ? ବିପଦର ଆଶଙ୍କାରେ ନିରଞ୍ଜନର ଗୋଟିକଯାକ ଛାତି ଥରିଗଲା ।

କବାଟ ଭିତରୁ ବନ୍ଦ ହୋଇଛି । ମନର ବ୍ୟସ୍ତତା ଭିତରେ ନିରଞ୍ଜନ କବାଟରେ ଜୋର୍‌ରେ ଧକ୍‌କା ମାରିଲା । ଦୁଇ ତିନି ଧକ୍‌କା ପରେ କବାଟ ଖୋଲିଲା । ଆଗରେ ଠିଆ ହେଲେ ଗୋବିନ୍ଦର ମାଷ୍ଟର ପ୍ରଣବ ବାବୁ । କିନ୍ତୁ ଆଗରେ ନିରଞ୍ଜନକୁ ଦେଖି ସେ ଭୟରେ କାଠ ପାଲଟିଗଲା । ନିରଞ୍ଜନ ଏହାର ରହସ୍ୟ କିଛି ବୁଝି ପାରିଲାନି । କେବଳ ସନ୍ଦେହରେ ବିଚଳିତ ହୋଇପଡ଼ିଲା ।

"ଗୋବିନ୍ଦ", "ଗୋବିନ୍ଦ" ଡାକି ପଶିଗଲା ଭିତରକୁ ।

ଅଗଣା ଭିତରକୁ ଯାଉଁ ଯାଉଁ ହଠାତ୍ ନିଜର କୋଠରି ଭିତରେ ତାର ଆଖି ପଡ଼ିଲା । ଘରଟା ଗୋଲି, ପୁଣି ବଜୁଳି ଆଲୁଅ ବନ୍ଦ ହୋଇ ପଡ଼ିଛି ଘର ସାରା । ପଙ୍ଖା ବୁଲିବାର ଶବ୍ଦ ମଧ୍ୟ ଶୁଭୁଛି । ଘର ଭିତରକୁ ପଶିଗଲା ନିରଞ୍ଜନ । କବାଟ କଣରେ କାଠ ପିତୁଳା ପରି ଛିଡ଼ାହୋଇଛି ତାର ନୂଆବୋଉ ରତ୍ନମଣି । ଘରଟା ଅତର ଗନ୍ଧରେ ମହକି ଉଠୁଛି । ପଲଙ୍କ ଉପରେ ଅଞ୍ଜଳର ବିଛଣାସବୁ ବିଶୃଙ୍ଖଳ ହୋଇ ପଡ଼ିଛି । କାନ୍ଥରେ ତାର ଆରାଧ୍ୟ ଦେବତାର ଛବି । ନିରଞ୍ଜନର ଆଖିରୁ ନିଆଁ ଖସି ପଡ଼ିବାକୁ ଲାଗିଲା ।

ଘରୁ ବାହାରିଆସି ନିରଞ୍ଜନ ବାହାର ପିଣ୍ଡାରେ ବସିପଡ଼ିଲା । ସେଇ ପକ୍‌କା ଚଟାଣରେ ମୁଣ୍ଡଟାକୁ ଖୁବ୍ ଜୋର୍‌ରେ ପିଟିଦେଲେ ସେ ଯେମିତି ରକ୍ଷା ପାଇପାରନ୍ତା । କିନ୍ତୁ ପରମୁହୂର୍ତ୍ତରେ ନିଜକୁ ସେ ଖୁବ୍ ଅଦ୍ଭୁତ ଭାବରେ ରକ୍ଷା କଲା । ଘର ଭିତରକୁ ଫେରିଯାଇ ରତ୍ନମଣିର ଗୋଡ଼ତଳେ ଲମ୍ବ ହୋଇ ପଡ଼ିଯାଇ କହିଲା, "ମୋର ଗୋବିନ୍ଦ କୋଉଠି ଅଛି କୁହ ନୂଆବୋଉ ! ତାକୁ ଦେଖିବା ପାଇଁ ମୁଁ ସବୁକାମ ଛାଡ଼ିକରି ପଳେଇ ଆସିଛି । କୁହ ନୂଆବୋଉ !"

ରତ୍ନମଣି ନୀରବ ।

କିନ୍ତୁ ରତ୍ନମଣିର ସେ ନୀରବତା ନିରଞ୍ଜନ ପକ୍ଷରେ ଅତି ଅସହ୍ୟ ହେଲା । ଚଳ୍ପ ଉଠି ସେ ଠିଆ ହୋଇପଡ଼ି ଚିତ୍କାର କରି କହିଲା—

"ଗୋବିନ୍ଦ କାହିଁ ନୂଆବୋଉ ?"

ରତ୍ନମଣି ଲଜ୍ଜା, ଅପମାନ, ଆତ୍ମଗ୍ଲାନି ଓ ଭୟରେ ଥରିବାକୁ ଲାଗିଲା । ଥରି ଥରି ସେ ଦୁଲ୍ କରି ତଳେ କଚାଡ଼ି ହୋଇ ପଡ଼ିଲା । ଏହି ସମୟରେ ଦ୍ୱାର ମୁହଁରେ ଗୋବିନ୍ଦ ଆଉ କୁରୁପାର ସ୍ୱର ଶୁଣାଗଲା । ନିରଞ୍ଜନ ଦୌଡ଼ିଯାଇ ଗୋବିନ୍ଦକୁ କୋଳରେ ପୂରେଇ ଅଗଣାରେ ଅଥୟ ହୋଇ ବୁଲିବାକୁ ଲାଗିଲା । ପ୍ରଣବ ଏହା ଭିତରେ ନରକର ଏକ କୃମି ପରି ନିଜର ସତ୍ତା ଅନ୍ତର୍ହିତ କରିନେଇଛି ।

ଗୋବିନ୍ଦଠାରୁ ନିରଞ୍ଜନ ଜାଣିଲା, କୁରୁପା ସାଙ୍ଗରେ ସିଏ ଥିଏଟର ଦେଖି ଯାଇଥିଲା । କୁରୁପା ପାଖରେ ଗୋବିନ୍ଦକୁ ଦାଣ୍ଡଘରେ ବସେଇ ଦେଇ ନିରଞ୍ଜନ ରତ୍ନମଣି ପାଖରେ ଯାଇ ପହଞ୍ଚିଲା । ସେତେବେଳକୁ ରତ୍ନମଣି ଉଠି ବସିଚି । ତାର ଗୋଡ଼କୁ ଧରି ନିରଞ୍ଜନ କରୁଣ ସ୍ୱରରେ କହିଲା, "ମୁଁ ଗୋବିନ୍ଦକୁ ପାଇ ଆଜି ସବୁ କଥା ଭୁଲିଯାଇଚି ନୂଆବୋଉ ! ତମେ ମଧ୍ୟ ଭୁଲିଯାଅ । ଗୋବିନ୍ଦ ମୁହଁକୁ ତମେ ଥରେ ଅନାଅ ନୂଆବୋଉ, ବିଲ୍‌କୁଲ୍ ଯେମିତି ତା' ବାପାର ଚେହେରା । ତା' ଭିତରେ ତା' ବାପା ତମକୁ ଅନେଇ ରହିଚି ।"

ରଚନାକାଳ :
ମଇ ୧୯୫୭

